# ପ୍ରବୀଣ ବିଧାୟକ

# ଡକ୍ଟର ଶ୍ରଦ୍ଧାକର ସୂପକାର



ଆବିର୍ଭାବ : ତା ୮-୪-୧୯୧୫

ତିରୋଭାବ : ତା ୫-୧-୧୯୯୩

ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ତାଲିମ ବିଭାଗ
ବିଧାନସଭା ସଚିବାଳୟ, ଭୁବନେଶ୍ୱର



ORISSA LEGISLATIVE ASSEMBLY

ପ୍ରବୀଣ ବିଧାୟକ

# ଡକ୍ଟର ଶ୍ରଦ୍ଧାକର ସୂପକାର

# 3

ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ତାଲିମ ବିଭାଗ,
ବିଧାନ ସଭା ସଚିବାଳୟ, ଭୁବନେଶ୍ୱର

# ମୁଖବନ୍ଧ

ଓଡ଼ିଶା ବିଧାନସଭାକୁ ବିଭିନ୍ନ ସମୟରେ ନିର୍ବାଚିତ ହୋଇଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କର ବ୍ୟକ୍ତିତ୍ୱର ଅନୁଶୀଳନ କରି ଗବେଷଣାତ୍ମକ ପୁସ୍ତକ ପ୍ରଣୟନ ଲାଗି ୧୯୯୫ ମସିହାରେ ଯେଉଁ ନିଷ୍ପତ୍ତି ଗ୍ରହଣ କରଯାଇଥିଲା, ତାର ଫଳଶ୍ରୁତି ସ୍ୱରୂପ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ, ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପର୍କରେ ଏହାପୂର୍ବରୁ ଦୁଇଟି ପୁସ୍ତକ ପ୍ରକାଶ ପାଇସାରିଛି । ଏହା ହେଉଛି ସେହି ପ୍ରକାଶନ ଧାରାର ତୃତୀୟ ଅର୍ଘ୍ୟ । ଆନନ୍ଦର କଥା, ଏହି ତୃତୀୟ ପ୍ରକରଣ ପୁସ୍ତକଟି ଓଡ଼ିଶା ବିଧାନସଭାର ଜଣେ ପୁରୁଖା ବିଧାୟକ, ପ୍ରଥମ ବିରୋଧୀ ଦଳର ନେତା, ପ୍ରବୀଣ ସାଂସଦ, ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ, ସାମ୍ବାଦିକ, ଗବେଷକ, ଶିକ୍ଷାବିତ୍ ସ୍ୱର୍ଗତ ଡଃ ଲକ୍ଷ୍ମୀକର ସୂପକାରଙ୍କ ବିଗ୍ରହ ଓ ବ୍ୟକ୍ତିତ୍ୱ ଉପରେ ଆଧାରିତ ।

ସ୍ୱର୍ଗତ ସୂପକାର କେବଳ ଓଡ଼ିଶା ବିଧାନସଭା ନହେଁ, ଭାରତୀୟ ସଂସଦରେ ମଧ୍ୟ "ପ୍ରାକ୍‌କଳନ କମିଟି" ଓ "ସରକାରୀ ହିସାବ କମିଟି" ପରି ଗୁରୁତ୍ୱପୂର୍ଣ୍ଣ କମିଟିର ସଭ୍ୟ ରହି ନିଜର ସକ୍ରିୟ ଭୂମିକା ନିର୍ବାହ କରିଥିଲେ । ତାଙ୍କର ବକ୍ତବ୍ୟକୁ ପଣ୍ଡିତ ନେହେରୁ ମଧ୍ୟ ଗୁରୁତ୍ୱ ପ୍ରଦାନ କରୁଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟ୍ ସଭ୍ୟ ଭାବରେ, ଲାଲା ଲଜପତ୍ ରାୟ ଆଇନ ମହାବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ, ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଓଡ଼ିଶାରେ ଉଚ୍ଚଶିକ୍ଷାର ପ୍ରସାର କ୍ଷେତ୍ରରେ ତାଙ୍କର ଅବିସ୍ମରଣୀୟ ଅବଦାନ ରହିଥିଲା । ଏହିଭଳି ଜଣେ ମହାନ୍ ବ୍ୟକ୍ତିଙ୍କର ରାଜନୈତିକ ଅବଦାନ ଓ ଅଭିବ୍ୟକ୍ତି ସମ୍ପର୍କରେ ଏକ ଉପାଦେୟ ପୁସ୍ତକ ସମ୍ପାଦନା ଓ ସଙ୍କଳନ କରିଥିବାରୁ ପ୍ରଫେସର ଡକ୍ଟର ଜଗନ୍ନାଥ ମହାନ୍ତି ଆମମାନଙ୍କର ଧନ୍ୟବାଦର ପାତ୍ର । ଓଡ଼ିଶା ବିଧାନସଭାର ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ପ୍ରଶିକ୍ଷଣ ବିଭାଗର କର୍ମକର୍ତ୍ତା-ମାନଙ୍କର ସାହାଯ୍ୟ, ସହଯୋଗ ଓ ପ୍ରୋତ୍ସାହନ ଫଳରେ ଏହା ସମ୍ଭବପର ହୋଇଥିବାରୁ ସେମାନେ ସମସ୍ତେ ଧନ୍ୟବାଦାର୍ହ । ଓଡ଼ିଶାର ସୁଧୀ ପାଠକ ମହଲରେ ଏହି ତଥ୍ୟଭିତ୍ତିକ ପୁସ୍ତକଟି ବିଶେଷ ଆଦୃତ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

**ଚିନ୍ତାମଣି ଦ୍ୟାନସାମନ୍ତରାୟ**

ମାର୍ଚ୍ଚ, ୧୯୯୮

ବାଚସ୍ପତି

ଓଡ଼ିଶା ବିଧାନସଭା

# ପୂର୍ବାଭାଷ

ରାଜନୈତିକ ବ୍ୟକ୍ତି ବିଶେଷଙ୍କ ବ୍ୟକ୍ତିତ୍ୱର ଅଧ୍ୟୟନ ଓ ଅନୁଧ୍ୟାନ ରାଜନୀତି ବିଜ୍ଞାନରେ ଏକ ନୂଆ ଦିଗ ସୃଷ୍ଟି କରିଛି । ଓଡ଼ିଶା ବିଧାନସଭାର ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ପ୍ରଶିକ୍ଷଣ ବିଭାଗ ମଧ୍ୟ ଏ କ୍ଷେତ୍ରରେ ନିଜର ଯଥାଯୋଗ୍ୟ ଅବଦାନ ଦେଇ ଆସୁଛି । ଆମପାଇଁ ଆନନ୍ଦର ବିଷୟ ଯେ ଏଯାବତ୍ ଆମ ବିଧାନସଭା ତରଫରୁ ଦୁଇଜଣ ବିଶିଷ୍ଟ ବିଧାୟକଙ୍କ ସମ୍ପର୍କରେ ଦୁଇଟି ପୁସ୍ତକ ପ୍ରଣୀତ ଓ ପ୍ରକାଶିତ ହୋଇସାରିଲାଣି । ସ୍ୱର୍ଗତ ଡଃ ଶ୍ରଦ୍ଧାକର ସୂପକାରଙ୍କ ବିଧାୟକ ତଥା ରାଜନୈତିକ ବ୍ୟକ୍ତିତ୍ୱକୁ ନେଇ ଏଇଟା ହେଉଛି ଆମର ତୃତୀୟ ଉଦ୍ୟମ । ମୋର ପରମ ସୌଭାଗ୍ୟ ସ୍ୱର୍ଗତ ସୂପକାରଙ୍କ ପରି ମହାନ ବ୍ୟକ୍ତିତ୍ୱ ସମ୍ପନ୍ନ ବ୍ୟକ୍ତିଙ୍କ ସହିତ କିଛିଦିନ ରାଜ୍ୟ ବିଧାନସଭାରେ କାର୍ଯ୍ୟ କରିବାର ସୁଯୋଗ ପାଇଥିଲି । ଓଡ଼ିଶାର ଶିକ୍ଷା, ସାହିତ୍ୟ, ରାଜନୀତି ଓ ସମାଜ ସେବା କ୍ଷେତ୍ରରେ ଏବଂ ଓଡ଼ିଶା ବିଧାନସଭାରେ ବହୁକାଳ ଧରି ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ସ୍ୱର୍ଗତ ସୂପକାରଙ୍କ ଅବଦାନକୁ କେହି କେବେ ଭୁଲିଯାଇ ପାରିବେ ନାହିଁ । ମାତ୍ର ଏହାକୁ ସ୍ମରଣୀୟ କରି ରଖିବା ଦିଗରେ ଏହାର ସଙ୍କଳନ ତଥା ସମ୍ପାଦନା ଦାୟିତ୍ୱ ଗ୍ରହଣ କରି ପ୍ରଫେସର ଡକ୍ଟର ଜଗନ୍ନାଥ ମହାନ୍ତି ଆମକୁ ଅନୁଗୃହୀତ କରିଛନ୍ତି । ଏହାର ପ୍ରକାଶନକୁ ତ୍ୱରାନ୍ୱିତ କରିବାରେ ଓଡ଼ିଶା ବିଧାନସଭାର ସଚିବ, ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ପ୍ରଶିକ୍ଷଣ ବିଭାଗର କର୍ମକର୍ତ୍ତାମାନେ ମଧ୍ୟ ନିଜର ସହଯୋଗ ପ୍ରଦାନ କରିଛନ୍ତି । ମୁଁ ସେ ସମସ୍ତଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ଏବଂ ଆଶା କରୁଛି "ବିଶିଷ୍ଟ ବିଧାୟକ ପ୍ରକରଣ ପୁସ୍ତକମାଳା"ର ରଚନା ଓ ପ୍ରକାଶନ କାର୍ଯ୍ୟ ଅବ୍ୟାହତ ରହିବ ।

ଭି. ବି. ସିଂ ମର୍ଦ୍ଦରାଜ

ଉପବାଚସ୍ପତି

ଓଡ଼ିଶା ବିଧାନସଭା

ମାର୍ଚ୍ଚ, ୧୨୨୪

# ପ୍ରାକ୍ କଥନ

"ବିଶିଷ୍ଟ ବିଧାୟକ ପ୍ରକରଣ ପୁସ୍ତକମାଳା" ପ୍ରକାଶନ କ୍ଷେତ୍ରରେ ଏହା ହେଉଛି ଆମର ତୃତୀୟ ସୋପାନ । ସୁନାମଧନ୍ୟ ବ୍ୟବସ୍ଥାପକ, ବିରୋଧୀଦଳର ନେତା, ସଂସଦ, ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ, ଶିକ୍ଷାବିତ୍, ଗବେଷକ ଓ ସାମ୍ବାଦିକ ସ୍ୱର୍ଗତ ଡକ୍ଟର ଶ୍ରଦ୍ଧାକର ସୁପକାରଙ୍କ ଅବଦାନ ଓ ଅଭିବ୍ୟକ୍ତିକୁ ନେଇ ରଚିତ ଏହି ଗବେଷଣାମୂଳକ ପୁସ୍ତକ ଓଡ଼ିଶାର ସୁଧୀ ପାଠକ ଓ ଗବେଷକମାନଙ୍କ ପାଇଁ ଯେ ଅତ୍ୟନ୍ତ ଉପାଦେୟ ହେବ, ଏ ସଂପର୍କରେ ମୁଁ ନିଃସନ୍ଦେହ । 1949 ମସିହାରେ ମାତ୍ର 34 ବର୍ଷ ବୟସରେ ଜଣେ ସ୍ୱାଧୀନ ସଭ୍ୟ ଭବରେ ସ୍ୱର୍ଗତ ସୁପକାରଙ୍କର ଓଡ଼ିଶା ବିଧାନସଭାକୁ ପ୍ରଥମ ପ୍ରବେଶ । ମାତ୍ର ପରେ ବିରୋଧୀଦଳର ନେତା ଏବଂ ବିଧାନସଭାରେ ବହୁ ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ସେ ତାଙ୍କର ବିଗ୍ଧର, ବୁଦ୍ଧିମତ୍ତା ଓ ବିଦ୍ୱତ୍ତାର ପରିଚୟ ଦେଇଥିଲେ । ଜଣେ ବୁଦ୍ଧିଜୀବୀ ବିଧାୟକ ଭବରେ ଡକ୍ଟର ସୁପକାରଙ୍କର ଏକ ସ୍ୱତନ୍ତ୍ର ପରିଚୟ ଥିଲା । ଯାହାଫଳରେ ଉତ୍କଳ ବିଶ୍ୱବିଦ୍ୟାଳୟର ବିକାଶ କ୍ଷେତ୍ରରେ, ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ, ଶ୍ରୀକ୍ଷେତ୍ରରେ ଶ୍ରୀ ଜଗନ୍ନାଥ ସଂସ୍କୃତି ବିଶ୍ୱବିଦ୍ୟାଳୟର ଶୈଶବ କାଳରେ ସ୍ୱଳ୍ପକାଳୀନ କୁଳପତି ଭବରେ ତାଙ୍କୁ ଦିଗ୍‌ଦର୍ଶନ ଦେବାକୁ ପଡ଼ିଥିଲା ।

ଏହିଭଳି ଜଣେ ମହାନ୍ ବ୍ୟକ୍ତିଙ୍କର ବିଗ୍ଧର ଓ ବକ୍ତବ୍ୟ ସଂପର୍କରେ ପ୍ରଣୀତ ପୁସ୍ତକକୁ ପ୍ରକାଶ କରି ଆମେ ଗର୍ବିତ । ଓଡ଼ିଶା ବିଧାନସଭାର ପୂର୍ବତନ ମାନ୍ୟବର ବାଚସ୍ପତି ଶ୍ରୀଯୁକ୍ତ କିଶୋରଚନ୍ଦ୍ର ପଟେଲଙ୍କ ପ୍ରସ୍ତାବ ଓ ପ୍ରୋତ୍ସାହନ, ମାନ୍ୟବର ବାଚସ୍ପତି ଶ୍ରୀଯୁକ୍ତ ଚିନ୍ତାମଣି ଦ୍ୟାନସାମନ୍ତରାଙ୍କ ଆଗ୍ରହ ଓ ଉତ୍ସାହ, ପ୍ରେରଣା ପ୍ରଫେସର ଡକ୍ଟର ଜଗନ୍ନାଥ ମହାନ୍ତିଙ୍କର ଅନୁଶୀଳନ ଓ ଆଲୋଚନା ଏବଂ ଆମ ବିଧାନସଭାର ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ପ୍ରଶିକ୍ଷଣ ବିଭାଗର କର୍ମକର୍ତ୍ତାମାନଙ୍କର ସାହାଯ୍ୟ ଓ ସହଯୋଗ ଫଳରେ ଏହା ସମ୍ଭବ ହୋଇଥିବାରୁ ମୁଁ ସମସ୍ତଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି । ସ୍ୱର୍ଗତ ଶ୍ରଦ୍ଧାକର ସୁପକାରଙ୍କ ରାଜନୈତିକ ବ୍ୟକ୍ତିତ୍ୱର ଆକଳନ ଦିଗରେ ଏ ପୁସ୍ତକଟି ବିଶେଷ ସହାୟକ ହେବବୋଲି ମୁଁ ଆଶା କରୁଛି ।

ରବିନାରାୟଣ ସ୍ୱାଇଁ
ସଚିବ
ଓଡ଼ିଶା ବିଧାନସଭା ସଚିବାଳୟ

ମାର୍ଚ୍ଚ, 1998

# ବିଷୟସୂଚୀ

# ପ୍ରଥମ ଅଧ୍ୟାୟ

## ଡକ୍‌ଟର ଶ୍ରଦ୍ଧାକର ସୁପକାରଙ୍କ ଜୀବନୀ

### କେବଳ ଶ୍ରଦ୍ଧାର ଆକାର ନ ଥିଲେ ସେ ଥିଲେ ସିଦ୍ଧିର ସୂପକାର

ପିତାମାତା ଅନେକ ସମୟରେ ସନ୍ତାନର ନାମ ଦେଲବେଳେ ବିଶେଷ କିଛି ଭାବି ନଥିଲେ ହେଁ ତାହା ଯେତେବେଳେ ଜୀବନ କ୍ଷେତ୍ରରେ ସାର୍ଥକ ହୋଇଥାଏ ବିସ୍ମିତ ହେବାକୁ ପଡ଼େ । ଡଃ ଶ୍ରଦ୍ଧାକର ସୂପକାରଙ୍କ ନାମ ଏହିପରି ଏକ ବିସ୍ମୟ । ଜୀବନର ସ୍ତରେ ସ୍ତରେ ବହୁ ଘାତ ପ୍ରତିଘାତ ଓ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ ମଧ୍ୟ ସେ ରାଜନୀତିର ଝଡ଼ଝଞ୍ଜା ମଧ୍ୟରେ ତାଙ୍କ ଜୀବନର ବହୁ କାଳ ଅତିବାହିତ ହୋଇଥିଲେ ହେଁ ଶ୍ରଦ୍ଧାକର ସମସ୍ତଙ୍କ ଶ୍ରଦ୍ଧାର ଭଣ୍ଡାର ବା ପ୍ରିୟପାତ୍ର ତଥା ଅଜାତଶତ୍ରୁ ଭାବରେ ପରିଚିତ ହୋଇଛନ୍ତି । ଉଜ୍ଜ୍ୱଳ ପ୍ରତିଭାର ଅଧିକାରୀ ହୋଇଥିବାରୁ ଜୀବନ ସଂଗ୍ରାମରେ ସେ ସଫଳ ସେନାନୀ ତଥା ସେନାପତି ଭାବରେ ଅତୁଳନୀୟ କୃତିତ୍ୱ ଅର୍ଜନ କରିଛନ୍ତି । ଛାତ୍ରାବସ୍ଥାରୁ ସେ ବୌଦ୍ଧିକ ଦକ୍ଷତା ଦେଖାଇବା ସଙ୍ଗେ ସଙ୍ଗେ ଜାତିର ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନକୁ ଦୃଢ଼ତାର ସହିତ ଗ୍ରହଣ କରିଥିଲେ । ସାହିତ୍ୟରେ ସେ ବହୁ କଥା, କବିତା, ପ୍ରବନ୍ଧ, ଉପନ୍ୟାସ, ଭ୍ରମଣ କାହାଣୀ, ଆତ୍ମଜୀବନୀ ଆଦି ରଚନା କରି ସ୍ୱକୀୟ ସାରସ୍ୱତ ପ୍ରତିଭାର ପରିଚୟ ଦେଇଛନ୍ତି । ଆଇନଜୀବୀ ଭାବରେ ଦଳିତ, ନିର୍ଯ୍ୟାତିତ, ଦରିଦ୍ର ନିଃସ୍ୱ ଜନସାଧାରଣଙ୍କୁ ନ୍ୟାୟ ଦେବା ପାଇଁ ସେ ସଫଳ ସଂଗ୍ରାମ କରିଛନ୍ତି । ବିଧାୟକ ତଥା ସାଂସଦ ଭାବରେ ତାଙ୍କର ବାକ୍‌ପଟୁତା, ପାଣ୍ଡିତ୍ୟ ଓ କର୍ମନିଷ୍ଠା ବଳରେ ନ୍ୟାୟୋଚିତ ଓ ଯୁକ୍ତିଯୁକ୍ତ ଭାବରେ ଦେଶ ତଥା ରାଜ୍ୟର ବିଭିନ୍ନ ଜ୍ୱଳନ୍ତ ସମସ୍ୟା ଉପରେ ସେ ନିଜର ମତାମତ ପ୍ରକାଶ କରିଥିଲେ । ଅଧ୍ୟାପକ ଓ ଅଧ୍ୟକ୍ଷ ଏମିତିକି କୁଳପତି ଭାବରେ ସେ ଶିକ୍ଷାକ୍ଷେତ୍ରରେ ଉଚ୍ଚକୋଟୀର ସାଫଲ୍ୟ ଅର୍ଜନ କରିଥିଲେ । ସ୍ଥୂଳତଃ, ଜନୈକ ବୁଦ୍ଧିଜୀବୀ, ଆଇନଜୀବୀ, ଜନନାୟକ, ବିଧାୟକ, ସାଂସଦ, ସାହିତ୍ୟିକ, ଶିକ୍ଷାବିଦ୍ ଓ ଶିକ୍ଷାପ୍ରଶାସକ ଭାବରେ ଶ୍ରଦ୍ଧାକର ଥିଲେ ଅସାଧାରଣ ସାଧନା ଓ ସିଦ୍ଧିର ପାଚକ ତଥା ସୂପକାର ।

### ବାଲ୍ୟକାଳ

ଡକ୍‌ଟର ସୂପକାର 1915 ମସିହା ଏପ୍ରିଲ ମାସ ୫ ତାରିଖରେ ସମ୍ବଲପୁରର ମହାନଦୀ କୂଳରେ ପ୍ରସିଦ୍ଧ ବ୍ରହ୍ମପୁରା ମନ୍ଦିର ନିକଟସ୍ଥ ଝାଡ଼ୁଆ ପଡ଼ାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଜେଜେବାପା ଥିଲେ ବଳଭଦ୍ର ସୂପକାର, ଯେ ସହରର ଏକମାତ୍ର ଏଣ୍ଟ୍ରାଂ ଭର୍ନାକୁଲର ସ୍କୁଲରେ ଶିକ୍ଷା ସମାପ୍ତ କରିଥିଲେ ଏବଂ ଧନଶାଳୀ ମଧ୍ୟ ଥିଲେ ।

ଦୁର୍ଭିକ୍ଷ ସମୟରେ ଅନ୍ନଦାନ କରିବାଠାରୁ ଆରମ୍ଭ କରି ସମ୍ବଲପୁର କୋର୍ଟ କଚେରୀରୁ ଓଡ଼ିଆ ଭାଷା ଉଠାଇ ଇଂରେଜ ସରକାର . ହିନ୍ଦି ଭାଷା ପ୍ରଚଳନ କରିବାରୁ ପ୍ରବଳ ଜନ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଯେଉଁ ପାଞ୍ଚଜଣ ବିଶିଷ୍ଟ ଓଡ଼ିଆ ତତ୍କାଳୀନ ରାସ୍ତାଘାଟ, ଯାନବାହନର ଅଭାବ ଅସୁବିଧା ସତ୍ତ୍ୱେ ସୁଦୂର ଶିମଳା ସହର ବଡଲାଟ ଲର୍ଡ କର୍ଜନଙ୍କ ପାଖରେ ସମ୍ବଲପୁରବାସୀଙ୍କ ତରଫରୁ ଆପତ୍ତି କରିବାକୁ ଯାତ୍ରା କରିଥିଲେ, ସେମାନଙ୍କ ମଧ୍ୟରେ ଜେଜେ ବଳଭଦ୍ର ସୂପକାର ଥିଲେ ଅନ୍ୟତମ । ତାଙ୍କର ପୁତ୍ର ଜନାର୍ଦ୍ଦନ ସୂପକାର ଓ ବଧୂ ତ୍ରିବେଣୀ ଦେବୀଙ୍କ ଔରସରୁ ଶ୍ରଦ୍ଧାକର ଜନ୍ମ ଗ୍ରହଣ କରିଥିଲେ ।

ଶ୍ରଦ୍ଧାକର ନିଜେ ତାଙ୍କର ପ୍ରଥମ ଆତ୍ମକାହାଣୀ "ମଧ୍ୟମ ପୁରୁଷ" (1982 ପୃ 15)ରେ ଲେଖିଛନ୍ତି ଜେଜେବାପା ଯେଉଁ ବର୍ଷ ଇହଧାମ ତ୍ୟାଗ କଲେ ସେହି ବର୍ଷ ତାଙ୍କ ମୃତ୍ୟୁର ଆଠମାସ ପୂର୍ବେ ମୋର ଜନ୍ମ । ସେହି ବର୍ଷ 1915 ମସିହା ଡ଼ିସେମ୍ବର ମାସରେ ସମ୍ବଲପୁର ସହରରେ ବୁଢାରଜା ପାହାଡ଼ ପାଖରେ ଉତ୍କଳ ସମ୍ମିଳନୀର ଅଧିବେଶନ ହେଉଥାଏ । "ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସି ଉକ୍ତ ସମ୍ମିଳନୀରେ ଯୋଗ ଦେଇଥିବା ନେତୃବୃନ୍ଦଙ୍କ ମଧ୍ୟରେ ଥିଲେ କୁଳବୃଦ୍ଧ ମଧୁସୂଦନ, ବ୍ୟାସକବି ଫକୀରମୋହନ, ସ୍ୱଭାବକବି ଗଙ୍ଗାଧର ପ୍ରମୁଖ । ବରିଷ୍ଠ ନେତା ଚନ୍ଦ୍ରଶେଖର ବେହେରା ଥିଲେ ଏହି ସମ୍ମିଳନୀର ମୁଖ୍ୟ ଉଦ୍ୟୋକ୍ତା ଓ ଜେଜେବାପା ବଳଭଦ୍ର ଥିଲେ ବିଶିଷ୍ଟ ସହଯୋଗୀ" ।

ପିତାମାତା ଓ ସେମାନଙ୍କ ବୃତ୍ତି ସଂପର୍କରେ ଶ୍ରଦ୍ଧାକର କହିଛନ୍ତି (ପୃ. 18,19) "ମୋର ବାପା ଖୁବ୍ ଭଲ ଚାଷୀ ଥିଲେ ଓ ସେ ଚାଷରେ ଖୁବ୍ ପରିଶ୍ରମ କରୁଥିଲେ । ଇବ୍ ନଦୀ କୂଳରେ ଆମ୍ଭ ଚାଷ ଗାଆଁ ଭୁଲକାର ପ୍ରାକୃତିକ ପରିବେଶ ଭଲ ଥିଲା । ଏକ ଛୋଟ ଡୁଙ୍ଗରରୁ ବହି ଆସୁଥିବା ବର୍ଷା ପାଣି ଗୋଟିଏ କଟାରେ ପଡୁଥିଲା । ସେଥିପାଇଁ ମରୁଡ଼ିର ଆଶଂକା ପ୍ରାୟ ନ ଥିଲା । ଜମି ଉର୍ବର ଥିଲା । ଗାଆଁର ଅନ୍ୟ ପାଖରେ ଇବ୍ ନଦୀ । ସେ ବନ୍ୟାର ପଟୁମାଟି ଯୋଗୁଁ ନଦୀକଳରେ ଆଖୁ ଓ ମୁଗ ମଧ୍ୟ ଖୁବ୍ ଭଲ ହେଉଥିଲା । ଗାଁର କୁଲଟା ଚାଷୀମାନେ ମଧ୍ୟ ଖୁବ୍ ପରିଶ୍ରମୀ ଥିଲେ ପଡ଼ୋଶୀ ଗାଆଁମାନଙ୍କ ତୁଳନାରେ ଭୁଲକା ତେଣୁ ଏକ ସମୃଦ୍ଧ ଗାଆଁ ଥିଲା । ବାପା ତାଙ୍କର ଯୌବନରେ ଏକ ପକ୍କା ଦୋମହଲା ଖମାର ଘର ତିଆରି କଲେ । × × ମୋର ମାଆ ତ୍ରିବେଣୀ ଦେବୀ ଇବ୍ ନଦୀ କୂଳରେ ଥିବା କୁର୍ଲା ଗାଆଁର ଭଗୀରଥି ପଣ୍ଡାଙ୍କର ମଝିଆଁ ଝିଅ ଥିଲେ" ।

## ବାଲ୍ୟ ଶିକ୍ଷା

1919 ମସିହା ଆରମ୍ଭରେ ଗୁରୁପଡ଼ା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ସୂପକାରଙ୍କ ନାମ ଲେଖା ହେଲା । ସମ୍ଭବତଃ ସେତେବେଳେ ନାମ ଲେଖା ବୟସ ଆବଶ୍ୟକତା ଦୃଷ୍ଟିରୁ ତାଙ୍କର ଜନ୍ମ ତାରିଖ ପରକୁ ଘୁଞ୍ଚାଇ 1914 ସେପ୍ଟେମ୍ବର 14 ତାରିଖ କରାଯାଇଥିଲା । ତାହାହିଁ ହେଲା ତାଙ୍କର "ସରକାରୀ ଜନ୍ମ ଦିନ" ସେ ଜଣେ ସାଧାରଣ

ଛାତ୍ର ଥିଲେ ହେଁ, ବିଦ୍ୟା ପ୍ରତି ତାଙ୍କ ଅନୁରାଗ ବଢ଼ାଇବା ପାଇଁ ଶ୍ରଦ୍ଧାକରଙ୍କ ପିତା ବିଶେଷ ଉଦ୍ୟମ କରିଥିଲେ । ସେ ଏହି ପ୍ରସଙ୍ଗରେ କହିଛନ୍ତି, "ମୋତେ ସୁଯୋଗ୍ୟ ସନ୍ତାନ ରୂପେ ଗଢ଼ିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ଥିଲା । ମୁଁ ଦ୍ୱିତୀୟ ଶ୍ରେଣୀରେ ପଢ଼ୁଥିଲାବେଳେ ବାପା ନିଜେ ମୋତେ ବଙ୍ଗଳା ଓ ହିନ୍ଦି ଭାଷାର ବର୍ଣ୍ଣମାଳାରେ ପରିଚିତ କରାଇଥିଲେ ସେହି ସମୟରେ "ଶିଶୁ ପାଠ୍ୟ ଗ୍ରନ୍ଥାବଳୀ" ନାମକ ଗୋଟିଏ ସରସ ଓ ବିଭିନ୍ନ ରଙ୍ଗରା ଚିତ୍ର ଶୋଭିତ ଗୋଟିଏ ବଙ୍ଗଳା ବହି କଲିକତାରୁ ମଗାଇ ଦେଇଥିଲେ । ସେହି ବହିଟି ମୁଁ ଖୁବ୍ ଆଗ୍ରହ ସହକାରେ ପଢ଼ିବାର ମୋର ମନେ ଅଛି "(ତତ୍ରୈବ ପୃ. 26) । ହିନ୍ଦୀ ଅକ୍ଷର ଓ ଭାଷା ମଧ୍ୟ ସେ ସେହି ସମୟରୁ ଶିଖିଥିଲେ । ଜେଜେବାପାଙ୍କ ଜୀବିତାବସ୍ଥାରୁ ଶ୍ରଦ୍ଧାକରଙ୍କ ଘରେ ଅନେକ ଛାତ୍ର ମାଗଣାରେ ରହି ଓ ଖାଇ ପାଠ ପଢ଼ୁଥିଲେ । ତାଙ୍କ ପରେ ମଧ୍ୟ ଜେଜେମା ସେମାନଙ୍କର ତତ୍ତ୍ୱ ନେଇଥିଲେ ଏମିତିକି ସେମାନଙ୍କୁ ପାଠ ପଢ଼ାଉଥିଲେ । ତାଙ୍କ ଘରେ ବହୁତ ସ୍ଥାନ ଥିବାରୁ ଅନେକ ପିଲା ପାଖ ପଡ଼ିଶାରୁ ଆସି ପାଠ ପଢ଼ୁଥିଲେ ସ୍କୁଲରେ ପଢ଼ୁଥିବା ପିଲାମାନେ ସେ ଯୁଗରେ ବିବାହିତ ଜୀବନ ଯାପନ କରୁଥିଲେ । ଏମିତିକି ସୁପକାରଙ୍କ "ଦୁଇ ଜଣ ସହପାଠୀ 1930 ମସିହାରେ ମେଟ୍ରିକ୍ ପାଠ ପଢ଼ୁଥିବା ସମୟରେ ସନ୍ତାନର ପିତା ହେବାର ସୌଭାଗ୍ୟ ଅର୍ଜନ କରିଥିଲେ "(ତତ୍ରୈବ ପୃ: 67) ।

ସେ ସମୟରେ ପୁରୀର ସୁନାମଧନ୍ୟ ପଣ୍ଡିତ ଫକୀର ମିଶ୍ର କାବ୍ୟତୀର୍ଥ ସମ୍ବଲପୁର ଜିଲ୍ଲା ସ୍କୁଲରେ ମୁଖ୍ୟ ସଂସ୍କୃତ ଶିକ୍ଷକ ଥିଲେ । ସେ ସେତେବେଳକୁ ସମ୍ବଲପୁରରେ 15 ବର୍ଷରୁ ଅଧିକ କାଳ ରହିଥିଲେ । ସେ ଛାତ୍ର ସମାଜର ଯେମିତି ପ୍ରିୟପାତ୍ର ଥାଇ ଶୃଙ୍ଖଳାଜ୍ଞାନ ଶିକ୍ଷା ଦେଇଥିଲେ, ସେମାନଙ୍କ ପିତାମାତାଙ୍କର ସେମିତି ତାଙ୍କ ପ୍ରତି ଭାରି ସମ୍ମାନ ଥିଲା । ସେତେବେଳେ ସଂସ୍କୃତ ଶିକ୍ଷାର ଏତେ ଆଦର ବଢ଼ିଯାଇଥିଲା, ପଣ୍ଡିତଙ୍କୁ ଘରୋଇ ଶିକ୍ଷକ ଭାବରେ ନିଯୁକ୍ତି କରି ପିଲାମାନଙ୍କୁ ସଂସ୍କୃତ ଶିକ୍ଷାଦାନର ବ୍ୟବସ୍ଥା କରାଯାଉଥିଲା । ଶ୍ରଦ୍ଧାକରଙ୍କୁ ମଧ୍ୟ ପଣ୍ଡିତ ଫକୀର ମିଶ୍ର ସଂସ୍କୃତ ଶିକ୍ଷା ଦେଇଥିଲେ । ତାଙ୍କ ଯୋଗୁଁ ଶ୍ରଦ୍ଧାକରଙ୍କର ବିଦ୍ୟାପ୍ରତି ଖୁବ୍ ଅନୁରାଗ ବଢ଼ିଥିଲା । ଶ୍ରଦ୍ଧାକର ଯଥାର୍ଥରେ କହିଛନ୍ତି, "ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କ ମତରେ ଶିଶୁ ଜୀବନର ପ୍ରଥମ ପାଞ୍ଚ ବର୍ଷରେ ଯେତେ ଶିକ୍ଷା କରେ, ତାହା ତାହାର ଜୀବନର ଚିରସ୍ଥାୟୀ ପ୍ରଭାବ ପକାଏ । ଏତେବେଳକୁ ମୋର ବୟସ ଛଅ ସାତ ବର୍ଷ ହୋଇଥିଲେ ସୁଦ୍ଧା ପଣ୍ଡିତ ମିଶ୍ରଙ୍କର ଏହି ସମୟର ଅଧ୍ୟାପନା ମୋତେ ପରବର୍ତ୍ତୀ ଛାତ୍ର ଜୀବନରେ ବିଶେଷ ସହାୟକ ହୋଇଥିଲା ବୋଲି ମୁଁ ମନେ କରେ" (ତତ୍ରୈବ ପୃ. 29) । ଶ୍ରଦ୍ଧାକର ତେଣୁ ପିଲାଦିନୁ ସଂସ୍କୃତ ବିଶେଷତଃ କାହାଣୀଗୁଡ଼ିକ ପଢ଼ି ଆନନ୍ଦ ଲାଭ କରୁଥିଲେ ।

ସୁପକାରଙ୍କ ପିଲାଦିନେ ସମ୍ବଲପୁର ସହରରେ ଭାରତୀୟ ଜାତୀୟ ଆନ୍ଦୋଳନର ଏକ ବାତାବରଣ ଖେଳିଯାଇଥିଲା । ରବିବାର ଓ ଛୁଟି ଦିନଗୁଡ଼ିକରେ ଛାତ୍ରମାନେ ସହରର ବିଭିନ୍ନ ରାସ୍ତାରେ ଓ ଗଳିମାନଙ୍କରେ ବୁଲି ଖଦଡ଼ କପଡ଼ା ବିକ୍ରୀ କରିବାକୁ

ବାହାରନ୍ତି । ସୂପକାର ମଧ୍ୟ ସେମାନଙ୍କ ସହିତ ଲୁଗା ବିକ୍ରି କରିବାକୁ ଯାଉଥିଲେ । କାନ୍ଧରେ ଥାନେ, ଦୁଇଥାନ ଖଦୀଲୁଗା ଧରି ବୁଲ୍ତ ବିକାଳିଂକ ପରି "ସ୍ୱଦେଶୀ କପଡ଼ା" ବୋଲି ଡାକି ପାଉଥିଲେ । ପ୍ରାଥମିକ ସ୍କୁଲର ଛାତ୍ର ଥିଲାବେଳେ ସେ ଅରଟରେ ସୂତା କାଟୁଥିଲେ ଏବଂ ସେହି ସୂତାରେ ଶାଢ଼ୀ ବା ଧୋତି ବୁଣାଯାଉଥିଲା । 1921 ମସିହାରୁ ଶ୍ରଦ୍ଧାକରଙ୍କ ପିତା ଓ ସେ ନିଜେ ସର୍ବଦା ଖଦଡ଼ ଲୁଗା ବ୍ୟବହାର କରୁଥିଲେ । କଲେରା, ମହାମାରୀ ହେଲେ ସେ ଗାଁଗହଳିରେ ରୋଗୀମାନଙ୍କର ସେବା କରିବାକୁ ଯାଉଥିଲେ ।

ଶ୍ରଦ୍ଧାକର ନିମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷା ଦେବା ପାଇଁ ନିର୍ବାଚିତ ହେଲେ, ମାତ୍ର କୃତକାର୍ଯ୍ୟ ହୋଇପାରିଲେ ନାହିଁ, ପଣିକିଆ ଗଣିତ ଶାସ୍ତ୍ରର ମୂଳଦୂଆ ପରି ହୋଇଥିବାରୁ ଶ୍ରଦ୍ଧାକର ସେଥିରେ ଧୁରନ୍ଧର ହୋଇ ଗଣିତରେ ଭଲ କରୁଥିଲେ । ସେ ଯୁଗରେ ପ୍ରାଥମିକ ଶିକ୍ଷକମାନଙ୍କର ଦରମା ଖୁବ୍ କମ୍ ଥିଲା । ମାତ୍ର ସମାଜରେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ଆସନ ନିର୍ଦ୍ଧାରିତ ହେଉଥିଲା । ସଂପ୍ରତି ସେମାନଙ୍କର ବେତନ ବୃଦ୍ଧି ଘଟିଥିଲେ ହେଁ ସମ୍ମାନରେ ହ୍ରାସ ପାଇଛି । ପଣ୍ଡିତ ନୀଳକଣ୍ଠ ଦାସ ଗୋଟିଏ ଜାତୀୟ ବିଦ୍ୟାଳୟ ସମ୍ବଲପୁରରେ ପ୍ରତିଷ୍ଠା କରିଥିଲେ । ତାହା ଶୀଘ୍ର ଭାଙ୍ଗିଗଲା । ଶ୍ରଦ୍ଧାକର ଲେଖିଛନ୍ତି, "1923 ମସିହା ବେଳକୁ ସମ୍ବଲପୁରରେ ଆଉ ଉତ୍ସାହ ନଥିଲା । ଖଦଡ଼ ପ୍ରୀତି ଅନେକଙ୍କ ଠାରେ ରହିଗଲା । ଆନ୍ଦୋଳନ ଦବିଗଲେ ସୁଦ୍ଧା ମନରୁ ସଚେତନତା ଲିଭେ ନାହିଁ" (ତତ୍ରୈବ ପୃ. 39) ।

## ମାଧ୍ୟମିକ ଶିକ୍ଷା

1922 ମସିହାରେ ଶ୍ରଦ୍ଧାକର ନିମ୍ନ ପ୍ରାଥମିକ ଶିକ୍ଷା ଶେଷ କରି ତା ପରବର୍ଷ ଜାନୁୟାରୀ ମାସରେ ସମ୍ବଲପୁର ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ ସେ ସମୟରେ ଜିଲ୍ଲା ସ୍କୁଲଟି ବର୍ତ୍ତମାନ ଯେଉଁଠାରେ ଲେଡ଼ିଲୁଇସ୍ ଉଚ୍ଚ ବାଳିକା ବିଦ୍ୟା ଅଛି, ସେଠାରେ ଥିବାରୁ, ଶ୍ରଦ୍ଧାକରଙ୍କ ନିଜ ଘରଠାରୁ ପାଖ ଥିଲା । ସେ ଲେଖିଛନ୍ତି, "ମୁଁ 1923 ମସିହାରେ ଜିଲ୍ଲା ସ୍କୁଲ ଛାତ୍ର ହୋଇ ଶୈଶବ ଅବସ୍ଥା ଅତିକ୍ରମ କଲି । ନାରଦ ସ୍ମୃତି ଅନୁସାରେ ଜନ୍ମରୁ ପ୍ରଥମ ଆଠବର୍ଷ ଶୈଶବ ଓ ପରବର୍ତ୍ତୀ ଆଠ ବର୍ଷ ପୌଗଣ୍ଡ କାଳ । ନାରଦଙ୍କ ଯୁଗରେ ଷୋହଳ ବର୍ଷ ବୟସରେ ପିଲା ସାବାଳକ ହେଉଥିଲେ । ଶିକ୍ଷା ମନୋବିଜ୍ଞାନ ଅନୁସାରେ ମଧ୍ୟ ଆଠ ବର୍ଷ ପରେ ଶିଶୁମାନଙ୍କର ଶାରୀରିକ ଓ ମାନସିକ ବିକାଶରେ ଏକ ନୂତନ ଯୁଗ ଆରମ୍ଭହୁଏ । ମୋର ମଧ୍ୟ ବୋଧହୁଏ ଏହି ସମୟରୁ ମାନସିକ ବିକାଶ କ୍ଷିପ୍ରତର ହେଲା" (ତତ୍ରୈବ ପୃ 40) ।

1923 ମସିହାରେ ଜିଲ୍ଲା ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ ମଧୁସୂଦନ ଦାଶ । ପଣ୍ଡିତ ବିମଳେଶ୍ୱର ନନ୍ଦ ଶ୍ରଦ୍ଧାକରଙ୍କୁ ଇଂରେଜି ଓ ଓଡ଼ିଆ ପଢ଼ାଉଥିଲେ । ପିଲାଦିନେ ସୂପକାର ଇଂରେଜି ବର୍ଣ୍ଣ ପରିଚୟ ଓ ଶବ୍ଦ ଶିକ୍ଷା କରିଥିଲେ ଘରେଇ ଭାବରେ । ମୌଲବୀ ଏବ୍ରାର ବକ୍ସଂଙ୍କ ପ୍ରତି ପିଲାମାନଙ୍କର ଭାରି ଭୟ ଥିଲା । ଶ୍ରଦ୍ଧାକର ଏକଥା ସରସ ଭାବରେ ଲେଖିଛନ୍ତି (ତତ୍ରୈବ ପୃ 43), "ଖୁବ୍ କଡ଼ା ଶିକ୍ଷକ ହିସାବରେ ସେ ଆମ ସମସ୍ତଙ୍କ ମନରେ ଆତଙ୍କ

ଜନ୍ମାଉଥିଲେ । ସେ କ୍ଲାସକୁ ଆସିଲ ବେଳେ ଆମେ ସମସ୍ତେ ଛିଡ଼ା ହୋଇ ଡାହାଣ ହାତ କପାଳକୁ ନେଇ ସଲାମ କରୁଥିଲୁ " । କ୍ଲାସରେ ପାଟି ଫିଟାଇବା ବା ହସିବାର ଉପାୟ ନାହିଁ । କୌଣସି ଛାତ୍ର ଯଦି ତାଙ୍କର ପ୍ରଶ୍ନର ଉତ୍ତର ଦେଇନପାରେ ବା ଦୁର୍ବିନୟ ଦେଖାଏ, ତେବେ ସେ ମୌଲବୀଙ୍କ ଠାରୁ ଦୁଇ ଗାଲରେ ଅସଂଖ୍ୟ ଚପେଟାଘାତ ଭୋଗ କରେ । ତେଣୁ ଯଦି ସେ କୌଣସି ଅପରାଧୀ ଛାତ୍ର ପାଖକୁ ଆସନ୍ତି, ତେବେ ଛାତ୍ରଟି ଦୁଇବାହୁରେ ଦୁଇଗାଲ ଢାଙ୍କି ଦିଏ ଓ ପିଠିରେ ବିଧାମାଡ଼ ସହିବା ପାଇଁ ପ୍ରସ୍ତୁତ ହୁଏ । କିନ୍ତୁ ମୌଲବୀ ସାହେବଙ୍କର ବିଧାମାଡ ଥିଲା ଟିକିଏ ନରମ । ଏବ୍ରାର ବକ୍ସ ଆମ୍ଭମାନଙ୍କୁ ଇତିହାସ ପଢ଼ାଉଥିଲେ" ।

ଶ୍ରଦ୍ଧାକର ନିଜେ କହିଛନ୍ତି "ନିୟମିତ ବ୍ୟାୟାମ କରୁଥିଲେ ସୁଦ୍ଧା ଖେଳକୁଦରେ ମୁଁ ଥିଲି ସବୁଠାରୁ ପଛୁଆ ଇଂରେଜିରେ ଯାହାକୁ smartness କହନ୍ତି, ସେ ଗୁଣଟି ମୋଠାରେ ମୂଳରୁ ନଥିଲା (ଚତ୍ରେିବ ପୃ. 43)" ।

ପଣ୍ଡିତ ଚକ୍ରଧର ଗୁରୁ ଥିଲେ ଡ୍ରଇଂ ଶିକ୍ଷକ । ଡ୍ରଇଂ ଖାତାରେ ଗୋଟିଏ ଗୋଲ କାଟିବାକୁ ପିଲମାନଙ୍କୁ ତିନି ଚାରି ମାସ ଲାଗି ଯାଉଥିଲା, କାରଣ ଛାଗୁରୁଙ୍କୁ ସନ୍ତୁଷ୍ଟ କରିବା ବଡ଼ ଦୁରୁହ ବ୍ୟାପାର ଥିଲା ।

1925 ମସିହା ଏପ୍ରିଲ ମାସରେ ମାତା ମାତ୍ର 30 ବର୍ଷ ବୟସରେ ଇହଲୀଳା ସାଙ୍ଗ କଲେ । ସେତେବେଳକୁ ଶ୍ରଦ୍ଧାକରଙ୍କ ବୟସ ମାତ୍ର ଦଶବର୍ଷ ପାଞ୍ଚଦିନ । ମାତାଙ୍କ ସ୍ନେହମମତାରୁ ବଞ୍ଚିତ ହୋଇ ସେ ଖୁବ୍ ମାନସିକ ଦୁଃଖକଷ୍ଟ ଅନୁଭବ କଲେ । ମାଆଛେଉଣ୍ଡ ପିଲାର ଦୁଃଖ ସତେ ଦୁର୍ବିସହ ।

ଡ଼ାକ୍ତର ପୂଜାରୀଙ୍କ ନିର୍ଦ୍ଦେଶନାରେ ବଙ୍ଗଳାରୁ ଅନୂଦିତ ନାଟକମାନ ଅଭିନୀତ ହୁଏ । ସୂପକାର ସେ ସବୁ ଦେଖି ଆନନ୍ଦିତ ହୁଅନ୍ତି ଏବଂ ସେଥିରେ ଭାଗ ନେବାକୁ ମନ କରନ୍ତି । ସାଙ୍ଗସାଥୀ କେତେଜଣ ବାଳକ ଭୂମିକାରେ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୁଅନ୍ତି । ଶ୍ରଦ୍ଧାକର ସେମାନଙ୍କୁ ଇର୍ଷା କରନ୍ତି । ମାତ୍ର ଭଲ ଛାତ୍ର ହୋଇଥିବାରୁ ନାଟକରେ ତାଙ୍କୁ ଭର୍ତ୍ତି କରାଯାଏ ନାହିଁ । ନାଟକ ଛଡ଼ା ବୈଷ୍ଣବ ପାଣିକ ସୁଆଙ୍ଗ ସେ ଯୁଗରେ ଖୁବ୍ ଲୋକପ୍ରିୟ ଥିଲା ।

ପିତାଙ୍କର ଘରିରେ ଶୋଇଲା ବେଳେ ପତ୍ର ପତ୍ରିକା ପାଠ କରିବାର ଅଭ୍ୟାସ ଥିଲା । ଶ୍ରଦ୍ଧାକର ସେ ସବୁ ପତ୍ରିକା ପଢିବାରେ ଆଗ୍ରହୀ ହେଲେ ଫଳରେ ତାଙ୍କର ସ୍ମରଣ ଶକ୍ତି ମାର୍ଜିତ ହେଲା । ଘରେ ଥିବା ବଙ୍ଗଳା ବହି ପତ୍ର ମଧ୍ୟ ସେ ପାଠକରିବାରେ ଲାଗିଲେ । ପିତା ତାଙ୍କୁ ଅଧିକ ସଂସ୍କୃତ ଶିକ୍ଷାଦେବାରେ ଲାଗିଲେ । ଜଣେ ପଣ୍ଡିତ ଘରକୁ ଆସି ତାଙ୍କୁ ସଂସ୍କୃତ ବ୍ୟାକରଣ, ରଘୁବଂଶ, ତର୍କସଂଗ୍ରହ ଆଦି ସଂସ୍କୃତ ବହି ସବୁ ପଢ଼ାଇଲେ । ରଘୁବଂଶର ଦ୍ୱିତୀୟ ଓ ତୃତୀୟ ସର୍ଗ ତାଙ୍କୁ ଭରି ଚୁମ୍ବକ ପରି ଆକୃଷ୍ଟ କରିଥିଲା ।

1924 ମସିହାରୁ ଶ୍ରଦ୍ଧାକର ଶ୍ରେଣୀରେ ପ୍ରଥମ ହେବାକୁ ଲାଗିଲେ । ଇତିହାସ ପଢିବା ପ୍ରତି ଭରି ଘୃଣା ଥିଲା । ଅସହଯୋଗ ଆନ୍ଦୋଳନ ଯେତେବେଳେ ମନରେ ଜାଗରଣ ଆଣିଥିଲା, ଇତିହାସରୁ ପୂର୍ବ ପୁରୁଷମାନଙ୍କର ବିଫଳତା ହିଁ ଜାଣି ସୂପକାର ହତାଶ ହେଉଥିଲେ ।

ମଧୁସୂଦନ ଦାଶ ସେଠାରେ ଅବସର ଗ୍ରହଣ କରିବାରୁ ତାଙ୍କ ସ୍ଥାନରେ ଆସିଲେ ଆନନ୍ଦଚନ୍ଦ୍ର ପତି । ପରେ ସେ ରାୟସାହେବ ଉପାଧି ପାଇଥିଲେ ଏବଂ ତଳ କ୍ଲାସରେ ସେ ପଢ଼ାଉଥିଲେ । ସହକାରୀ ଶିକ୍ଷକ ଚିନ୍ତାମଣିଙ୍କର ଖୁବ୍ ପ୍ରଶଂସାଭାଜନ ହୋଇଥିଲେ ଏବଂ ପତିଙ୍କ ପରେ ହେଡ଼ମାଷ୍ଟର ହୋଇଥିଲେ ।

ସମ୍ବଲପୁରର ବିଶିଷ୍ଟ ନାଗରିକ ଓ ପ୍ରଶାସକ ଶ୍ରୀ ଭରତ ଚନ୍ଦ୍ର ନାୟକଙ୍କର ଜ୍ୟେଷ୍ଠପୁତ୍ର ସତ୍ୟଗୋପାଳ ବଣାଇରୁ ଆସି ସମ୍ବଲପୁର ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ। ମାତ୍ର 1927 ମସିହାରୁ ଅର୍ଥାତ୍ ଅଷ୍ଟମ ଶ୍ରେଣୀରୁ ମେଟ୍ରିକ ପରୀକ୍ଷା ପର୍ଯ୍ୟନ୍ତ ସବୁଥିରେ ଶ୍ରଦ୍ଧାକର ପ୍ରଥମ ସ୍ଥାନ ଅଧିକାର କରୁଥିଲେ ମାତ୍ର 13 ବର୍ଷ ବୟସରେ ଅର୍ଥାତ୍ ନବମ ଶ୍ରେଣୀରେ ପଢୁଥିଲା ବେଳେ ସୁପକାରଙ୍କର ପୁର୍ନବିବାହ ଉତ୍ସବ ପାଳିତ ହୋଇଥିଲା ।

1930 ମସିହା ମାର୍ଚ୍ଚ ମାସ 12 ତାରିଖରୁ ଗାନ୍ଧୀଜୀଙ୍କର ଐତିହାସିକ ଦାଣ୍ଡିଯାତ୍ରା ଆରମ୍ଭ ହେଲା । ସେତେବେଳେ ଶ୍ରଦ୍ଧାକର ଥିଲେ ଏକାଦଶ ଶ୍ରେଣୀର ଛାତ୍ର । ସମ୍ବଲପୁରରେ ଜନଜାଗରଣ ଅତି ତୀବ୍ର ହୋଇ ଉଠିଲା ଏବଂ ଛାତ୍ରମାନଙ୍କ ମଧ୍ୟରେ ଶ୍ରଦ୍ଧାକର ସ୍କୁଲକଲେଜରେ ଧର୍ମଘଟ କରିବାରେ ନେତୃତ୍ୱ ନେଇଥିଲେ । 1930-31 ମସିହାରେ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ନିଶାନିବାରଣ, ଖଜଣା ବନ୍ଦ ଆନ୍ଦୋଳନ, ମଦଦୋକାନ ଆଗରେ ପିକେଟିଂ କରିବାରେ ସୁପକାରଙ୍କ ଯୋଗଦାନ ଥିଲା ଉଲ୍ଲେଖ ଯୋଗ୍ୟ । ଏହି ପ୍ରସଙ୍ଗରେ ଶ୍ରଦ୍ଧାକର ଲେଖିଛନ୍ତି (ତତ୍ରୈବ ପୃ. 67) "ମେଟ୍ରିକୁଲେସନ ପରୀକ୍ଷା ସରିବା ପରେ ମୁଁ ପୁରାପୁରି ବେକାର ଥିଲି ମୁଁ କଂଗ୍ରେସର ନିଷ୍ଠାପର ଭକ୍ତ ଥାଏ । ସମ୍ବଲପୁରର କେତେକ ବିଶିଷ୍ଟ କଂଗ୍ରେସ କର୍ମୀଙ୍କ ପରାମର୍ଶ କ୍ରମେ ମୁଁ ମଦଦୋକାନ ଆଗରେ ପିକେଟିଂ କରିବା ପାଇଁ ବାହାରିଲି" । ଏଥିପାଇଁ ତାଙ୍କୁ ପୋଲିସ ଅତ୍ୟାଚାର ସହିବାକୁ ପଡ଼ିଥିଲା । ଜେଲ ଦଣ୍ଡରୁ ଅଳ୍ପକେ ରକ୍ଷା ପାଇ ଶ୍ରଦ୍ଧାକର ଲେଖିଛନ୍ତି (ତତ୍ରୈବ ପୃ. 71) ।

"ମୁଁ ଯଦି କୌଣସି ଚାକିରିଆ ଲୋକଙ୍କର ପୁଅ ବା ବିଦେଶୀ ସରକାରଙ୍କ ଅନୁରକ୍ତ ଲୋକର ପୁଅ ହୋଇଥାନ୍ତି, ତେବେ ଭଲ ପାଠ ପଢିଥିବାରୁ ଓ ଆନ୍ଦୋଳନଠାରୁ ଦୂରରେ ରହିଥାନ୍ତି ଏବଂ ପ୍ରଜ୍ଞାର ବିକାଶ ଦିନଠାରୁ ଆଇ. ସି. ଏସ୍. ହେବାର ଆକାଂକ୍ଷା (ଯାହାକି ସେ ଯୁଗରେ ପ୍ରତ୍ୟେକ ଭଲ ଛାତ୍ରର କାମ୍ୟ ଥିଲା) ନେଇ ଭବିଷ୍ୟତକୁ ଗଢିଥାନ୍ତି । ଉଗ୍ର ସ୍ୱଦେଶବାଦୀ ହୋଇଥିଲେ ତିନି ସପ୍ତାହ ଜେଲ ଦଣ୍ଡ ଭୋଗିଥାନ୍ତେ ଓ ପରେ ହୁଏତ ପଢ଼ା ବନ୍ଦ କରି ଜଣେ ନେତା ହୋଇଥାନ୍ତି । କିନ୍ତୁ ମୁଁ ମଝି ରାସ୍ତାରେ ପଡ଼ିଗଲି । ଚାକିରୀ ଦୃଷ୍ଟିରୁ

ମୋ ଚରିତ୍ରରେ ଏ ଜଳକ୍ (?) ଲଗିଲା ପରେ ମୁଁ ଆଉ ଭବିଷ୍ୟତରେ ଚାକିରୀ ପାଇଁ କେବେ ଚେଷ୍ଟା କରିବି ନାହିଁ । ସ୍ୱାଧୀନ ଭାବରେ ଜୀବିକାର୍ଜ୍ଜନ କରି ମୋର ଭବିଷ୍ୟତ ଗଢିବାର ଏହି ସଂକଳ୍ପ ମୁଁ ସେହି ସମୟରେ ଗ୍ରହଣ କଲି" ।

ଏହି ବିଦ୍ୟାଳୟ ଛାତ୍ରାବସ୍ଥାରୁ ସେ ଜଣେ ସାହିତ୍ୟିକ ହେବାର ସ୍ୱପ୍ନ ଦେଖିଥିଲେ । ସେଥିପାଇଁ ଛାତ୍ରାବସ୍ଥାରୁ ତାଙ୍କର ପ୍ରସ୍ତୁତି ମଧ୍ୟ ଥିଲା ଅସାଧାରଣ ଭାବରେ । ଏହି ପ୍ରସଙ୍ଗରେ ସେ ଗୋଟିଏ ଘଟଣା ବର୍ଣ୍ଣନା କରିଛନ୍ତି, (ତଦ୍ରୈବ ପୃ. 75-76) "1930 ମସିହାରେ ସ୍କୁଲରେ ଆଉ ଏକ ସ୍ମରଣୀୟ ଘଟଣା ଘଟିଲା । ସେ ବର୍ଷର ମେଟ୍ରିକୁଲେସନ ପରୀକ୍ଷାର୍ଥୀ ଛାତ୍ର ଶ୍ରୀ ଅନିରୁଦ୍ଧ ଦାଶ 'ସ୍ୱର୍ଗଜା ସମର' ନାମକ ଏକ କାବ୍ୟ ପୁସ୍ତିକା ପ୍ରକାଶ କଲେ । ଏଥିରେ ଆମ୍ଭମାନଙ୍କ ମନରେ ପ୍ରଶଂସା ଓ ଇର୍ଷାର ସଞ୍ଚାର ହୋଇଥିଲା ସେ । ଯୁଗରେ ସ୍କୁଲରେ କୌଣସି ପତ୍ରପତ୍ରିକା ପ୍ରକାଶିତ ହେଉନଥିଲା" ।

ଏହି ପରିସ୍ଥିତିରେ ଜଣେ ଛାତ୍ର ପକ୍ଷରେ ଏକ କ୍ଷୁଦ୍ର ଐତିହାସିକ କାବ୍ୟ ପ୍ରକାଶ କରିବ ଏକ ଗୌରବର ବିଷୟ ଥିଲା । ଅନିରୁଦ୍ଧ ଦାଶ ସୁନାମଧନ୍ୟ ସ୍ୱପ୍ନେଶ୍ୱର ଦାଶ କବିଭୂଷଣଙ୍କର କନିଷ୍ଠ ପୁତ୍ର । ତାଙ୍କର ନିଜର "ସାଧନାପ୍ରେସ"ରେ ପୁସ୍ତିକାଟି ମୁଦ୍ରିତ ହୋଇଥିଲା । ଏହି ଅନିରୁଦ୍ଧବାବୁ ଆଇ. ଏ. ଏସ. ପାଇ ଓଡ଼ିଶା ସରକାରଙ୍କ ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇଥିଲେ ଏବଂ କେତେଖଣ୍ଡ ଉପାଦେୟ ପୁସ୍ତକର ପ୍ରଣେତା ହୋଇଥିଲେ । ଏ ଘଟଣା ଶ୍ରଦ୍ଧାକରଙ୍କ ମନରେ ସାହିତ୍ୟ ସୃଷ୍ଟି ପାଇଁ ନୂତନ ପ୍ରେରଣା ପ୍ରଦାନ କରିଥିଲା ।

ମହାବିଦ୍ୟାଳୟ ଶିକ୍ଷା

1931 ମସିହା ଜୁନ୍ ମାସ ଶେଷ ସପ୍ତାହରେ କଟକରେ ରେଭେନ୍‌ସା କଲେଜରେ ନାମ ଲେଖାଇବା ପାଇଁ ଯାତ୍ରାରମ୍ଭ କଲେ । ସେତେବେଳେ ସମ୍ବଲପୁରରୁ ମେରମୁଣ୍ଡଳୀ ପର୍ଯ୍ୟନ୍ତ ଅଳ୍ପ କେତୋଟି ବସ୍ ଚାଲିଥିଲା ଏବଂ ରାସ୍ତା ମଧ୍ୟ ଖୁବ୍ ଖରପ ଥିଲା । ତେଣୁ ବହୁ କଷ୍ଟରେ ଗୋଟିଏ ବସ୍‌ରେ ସମ୍ବଲପୁର ବାହାରିଲେ ଏବଂ ମେରମୁଣ୍ଡଳୀ ଷ୍ଟେସନରୁ ଟ୍ରେନରେ କଟକ ଯାତ୍ରା କଲେ । ସମ୍ବଲପୁରର ଅଧିବାସୀ ଅଧ୍ୟାପକ ଘନଶ୍ୟାମ ଦାସ ରେଭେନସା କଲେଜ ପଶ୍ଚିମ ଛାତ୍ରାବାସର ସହକାରୀ ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ । ତେଣୁ ସମ୍ବଲପୁର ଛାତ୍ରମାନେ ପଶ୍ଚିମ ଛାତ୍ରାବାସରେ ରହିବାକୁ ମନକଲେ । ସେତେବେଳେ ଉକ୍ତ ଛାତ୍ରାବାସର ଓ୍ୱାର୍ଡେନ ଥିଲେ ଶ୍ରୀ ପ୍ରାଣକୃଷ୍ଣ ପରିଜା । କଲେଜ ହଷ୍ଟେଲ ଘର ଖାଲି ପଡ଼ିଥାଏ । ମାତ୍ର ଜଳ ଓ ଆଲୋକର ସୁବିଧା ହୋଇନଥିଲା । ପ୍ରଥମେ ଶ୍ରଦ୍ଧାକର ବିଶେଷ କଷ୍ଟ ଅନୁଭବ କରିଥିଲେ । ଅଧ୍ୟାପକ ନାରାୟଣ ମିଶ୍ରଙ୍କ ତତ୍ତ୍ୱାବଧାନ ଓ ଆଦର ଯତ୍ନରେ ଛାତ୍ରାବାସର ରହଣି କ୍ରମେ ସୁଖକର ହୋଇଥିଲା । ଏହି ସମୟରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସାନ୍ନିଧ୍ୟ ଲାଭ କରିଥିଲେ ଏବଂ ତାଙ୍କର ଅନେକ ସହପାଠୀ ପରବର୍ତ୍ତୀ ଜୀବନରେ ଉଚ୍ଚ ପଦ ପଦବୀର ଅଧିକାରୀ ହୋଇଥିଲେ ।

ଚଟ୍‌କା ଜୀନ ରେଭେନସା କଲେଜର ଏକ ଘଟଣା ଉଲ୍ଲେଖ କରି ଶ୍ରଦ୍ଧାକର କହିଛନ୍ତି (ତନ୍ତ୍ରେ ବ ପୃ. ୪୦), "ରେଭେନସା କଲେଜରେ ସେ ସମୟରେ ପ୍ରତିବର୍ଷ ବାର୍ଷିକ ଉତ୍ସବ ହୋଇଥିଲା ଓ ଏହି ଉପଲକ୍ଷେ ବାହାରୁ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ମୁଖ୍ୟ ଅତିଥି ରୂପେ ଡକା-ଯାଉଥିଲା । 1932 ମସିହା ଜାନୁୟାରୀ ମାସରେ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଡକ୍‌ଟର ଚନ୍ଦ୍ରଶେଖର ଭେଙ୍କଟରମଣଙ୍କୁ ଡକାଯାଇଥିଲା । ସେ ତହିଁର ପ୍ରାୟ ବର୍ଷ ପୂର୍ବରୁ ନିଜର ଉଦ୍‌ଭାବନା ଯୋଗୁଁ ପଦାର୍ଥ ବିଦ୍ୟାରେ ନୋବେଲ ପୁରସ୍କାର ପାଇଥାନ୍ତି । ଭାରତବର୍ଷର ସର୍ବପ୍ରଥମ ବୈଜ୍ଞାନିକ ନୋବେଲ ପ୍ରାଇଜ ଅପେକ୍ଷାକୃତ ଅଳ୍ପ ବୟସରେ ପାଇଥିବାରୁ ସେ ସର୍ବତ୍ର ପ୍ରଶଂସିତ ହୋଇଥିଲେ । ମୁଖ୍ୟ ଅତିଥି ରୂପେ ବକ୍ତୃତା ଦେବାର ପରବର୍ତ୍ତୀ ଦିନ ତାଙ୍କୁ ତାଙ୍କର ପୁରସ୍କାର ଓ ଉଦ୍‌ଭାବନାର ବିଷୟବସ୍ତୁ 'ରମଣରଶ୍ମି' ଉପରେ ବକ୍ତୃତା ଦେବାକୁ ଅନୁରୋଧ କରାଗଲା । କଲେଜର ପଦାର୍ଥ ବିଜ୍ଞାନ ବକ୍ତୃତାଳୟରେ ସେ ଅପରାହ୍ଣରେ ବକ୍ତୃତା ଦେଲେ । ପ୍ରାୟ ଅଧଘଣ୍ଟା ଆମେ ତାଙ୍କ ବକ୍ତୃତାର ବିନ୍ଦୁ ବିସର୍ଗ ବୁଝିପାରିଲୁ ନାହିଁ । ଉପସ୍ଥିତ ଶ୍ରୋତାମଣ୍ଡଳୀରୁ ଅଧିକାଂଶ ଲୋକ ବିଶେଷ କିଛି ବୁଝିପାରିଲେ ନାହିଁ ବୋଲି ମୋର ଧାରଣା ହେଲା" ।

ଶ୍ରଦ୍ଧାକାର ଉତ୍ତମ ଛାତ୍ର ଥିବାରୁ ବିଜ୍ଞାନ ଅଧ୍ୟାପକମାନେ ତାଙ୍କୁ ଚିହ୍ନିଥିଲେ, ଶ୍ରଦ୍ଧା କରୁଥିଲେ ଏବଂ ସାହାଯ୍ୟ ମଧ୍ୟ କରୁଥିଲେ ମାତ୍ର ଆଇ. ଏ. ଏସି. ପଢ଼ାର ଦୁଇ ବର୍ଷ ମଧ୍ୟରେ ତାଙ୍କର ଦୁଇଟି ଦୁର୍ବଳତା ସମ୍ପର୍କରେ ସେ ନିଜେ ସଚେତନ ହୋଇଥିଲେ, "ଲେଖା ପଢ଼ାରେ ମୁଁ ଯେତେ କୁଶଳୀ ଥିଲି, ପ୍ରାକ୍‌ଟିକାଲ କାମରେ ମୁଁ ସେମିତି ଅକୁଶଳୀ ଥିଲି । ଏଥିପାଇଁ ମୋର ସ୍ନାୟୁବିକ ଦୁର୍ବଳତା ଦାୟୀ, କାଚ ଟ୍ୟୁବ ବଙ୍କା କରିବାରେ ମଧ୍ୟ ମୁଁ କଳାକୌଶଳ ଦେଖାଇ ପାରୁନଥିଲି । ଏଥିପାଇଁ ମୁଁ ଅଧ୍ୟାପକମାନଙ୍କ ଠାରୁ ବିଶେଷତଃ ଡକ୍‌ଟର ବଳଭଦ୍ର ପ୍ରସାଦଙ୍କ ଠାରୁ ସ୍ନେହମୟ ଭର୍ତ୍ସନା ଅନେକଥର ଶୁଣିଛି । ମାତ୍ର ମୋର କର୍ମପଟୁତା ବୃଦ୍ଧି ନ ହୋଇ ବରଂ ହ୍ରାସ ହୋଇଥାଏ" । କି ସ୍ପଷ୍ଟବାଦିତା ! କି ଆତ୍ମବିଶ୍ଳେଷଣ !

ଏହି "ଅକୁଶଳତା" ଫଳରେ ସେ ପଦାର୍ଥ ବିଜ୍ଞାନରେ ଭଲ କରିଥିଲେ ହେଁ ରସାୟନ ଶାସ୍ତ୍ର ପ୍ରାକ୍‌ଟିକାଲରେ ପାସ୍ ମାର୍କ 20 ରୁ ଦୁଇ ନମ୍ବର କମିଗଲା । ମାତ୍ର ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ତାଙ୍କୁ ଫେଲ ନ କରି ଦୁଇ ନମ୍ବର ବଢ଼ାଇ ତାଙ୍କୁ ଉତ୍ତୀର୍ଣ୍ଣ କରାଇଥିଲେ ଏବଂ ବିଶ୍ୱବିଦ୍ୟାଳୟର ବିଜ୍ଞାନ ବିଭାଗରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ଶ୍ରଦ୍ଧାକର ନିଜର ସବୁ ଦୁର୍ବଳତା ଓ ସବଳତା ସମ୍ପର୍କରେ ସଚେତନ ହୋଇ ଭବିଷ୍ୟତରେ ସ୍ୱାଧୀନ ଜୀବିକାର୍ଜନ ପାଇଁ ଓକିଲତି କରିବା ଓ ତା'ସହିତ ଦେଶସେବା କରିବାକୁ ସ୍ଥିର କରିଥିଲେ । ଏଥିପାଇଁ କଳା ବିଭାଗରେ ପଢି ଇଂରେଜି ଜ୍ଞାନରେ ଉନ୍ନତି କରିବାକୁ ଚାହିଁଲେ । ତେଣୁ ସେ ଗଣିତ ଅନର୍ସ ସହିତ ସଂସ୍କୃତକୁ ଦ୍ୱିତୀୟ ପାଠ୍ୟ ବିଷୟ ରୂପେ ନେଇ ବି. ଏ. ଶ୍ରେଣୀରେ ନାମ ଲେଖାଇଲେ ।

ସେ ସମୟରେ ମହାନଦୀରେ ପ୍ରବଳ ବନ୍ୟା ଆସି ଓଡ଼ିଶାର ଉପକୂଳ ଅଞ୍ଚଳରେ ବହୁ ଧନଜୀବନର ଧ୍ୱଂସ ସାଧନ କରୁଥିଲା । ଡକ୍ଟର ପର୍ଶୁରାମ ମିଶ୍ରଙ୍କ ନେତୃତ୍ୱରେ ଛାତ୍ରମାନେ ଯାଇ ବନ୍ୟା ବିଧ୍ୱସ୍ତ ଅଞ୍ଚଳରେ ରିଲିଫ କାର୍ଯ୍ୟ କରୁଥିଲେ । ସେ ପଢ଼ାପଢ଼ିରେ ଭଲ କରୁଥିବାରୁ ଅଧ୍ୟାପକମାନଙ୍କ ପ୍ରଶଂସାଭାଜନ ହୋଇଥିଲେ । ମାତ୍ର ତୃତୀୟ ବର୍ଷ ଦୁଇଥର ପରୀକ୍ଷା ଦେଇ ମଧ୍ୟ ଆଶାନୁରୂପ କୃତିତ୍ୱ ଲାଭ କରିପାରିନଥିଲେ । ସେ ଏହି ଘଟଣାଟି କେତେ ସରସ ଭାବରେ ଆତ୍ମସମୀକ୍ଷା କରିଛନ୍ତି ଦେଖନ୍ତୁ (ତତ୍ରୈବ ପୃ. 94),

"ବସ୍ତୁତଃ 1933 ମସିହାରେ ମୋର ଛାତ୍ର ଜୀବନର ଏକ ଅତିଗ୍ରାରିକାଳ ଥିଲା । ସେହି ବର୍ଷରୁ ମୁଁ ଆଉ ଉପରକୁ ନ ଉଠି ତଳକୁ ଖସିବାକୁ ଆରମ୍ଭ କଲି । ଦୈବଯୋଗରେ ବିଶ୍ୱାସ କରୁଥିବା ଲୋକେ କହିବେ ମୋ ଉପରେ ଦୁଷ୍ଟ ଗ୍ରହ ଓ ପ୍ରଭାବ ଆରମ୍ଭ ହେଉଥିଲା । ହରଲିକ୍ସ ବିଜ୍ଞାପନଦାତା କହିବେ ସେହି ସମୟରେ ଯଦି ମୁଁ ହର୍ଲିକ୍ସ ପିଇବା ଆରମ୍ଭ କରିଥାନ୍ତି, ତେବେ ମୋର ମାନସିକ ଶକ୍ତି ଅପଚୟର କ୍ଷତିପୂରଣ ହୋଇଥାନ୍ତା । ସେଇଟା ବୋଧହୁଏ ଯୌବନର ପ୍ରଭାବ । ମୋର ସମସ୍ତ ସଂଯମପରାୟଣତା ସତ୍ତ୍ୱେ ପଢ଼ାବେଳେ ଅନ୍ୟମନସ୍କତା ଦେଖାଯାଉଥିଲା । ପାଠରେ ପୂର୍ଣ୍ଣ ମନୋଯୋଗର ଶକ୍ତି ବୋଧହୁଏ ଊଣା ପଡ଼ିଆସୁଥିଲା । ଅଥବା ଅଶାନ୍ତିର ପ୍ରଭାବ ପରୋକ୍ଷଭାବରେ ମୋର ମନ ଉପରେ ପଡୁଥିଲା ।"

ଶ୍ରଦ୍ଧାକର ପୂର୍ବ ଛାତ୍ରାବାସର ହସ୍ତଲିଖିତ ପତ୍ରିକା 'ଜାଗରଣୀ'ର ସଂପାଦକ ଥିଲେ ଏବଂ ଜଗତ୍‌ସିଂହପୁର ଅଞ୍ଚଳର ବନ୍ୟା ସାହାଯ୍ୟ କାହାଣୀ ବିଷୟରେ ଏକ ପ୍ରବନ୍ଧ ଲେଖି ସେଥିରେ ସେ ନିଜେ ଉଠାଇଥିବା ଫଟୋଗୁଡ଼ିକ ଛାପିତ କରିଥିଲେ । ଫଳରେ ଲେଖାଟି ସମସ୍ତଙ୍କ ଦ୍ୱାରା ବିଶେଷ ଭାବରେ ତତ୍‌କାଳୀନ ଅଧ୍ୟକ୍ଷ ମିଃ. ଡବ୍ଲ୍ୟୁ. ଭି. ଜିଉକଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ।

ଆଇ. ଏସ୍. ସି.ରୁ କଳା ବିଭାଗକୁ ଯାଇଥିବାରୁ ସୂପକାରଙ୍କୁ ବି. ଏ. ଶେଷ ପରୀକ୍ଷା ଦେବା ପୂର୍ବରୁ କଳାରେ ଆ. ଏ. ପାସ୍ କରିବା ଦରକାର ଥିଲା । ତେଣୁ ସେ ତର୍କ ଶାସ୍ତ୍ରରେ ପରୀକ୍ଷା ଦେଇ ଆ. ଏ. ପାସ୍ କରେ । ଦର୍ଶନ ଓ ତର୍କ ଶାସ୍ତ୍ର ବିଭାଗର ଅଧ୍ୟାପକ ମୋହିନୀ ମୋହନ ସେନାପତି ଓ ଅଧ୍ୟାପକ ବିପିନ ବିହାରୀ ରାୟଙ୍କର ନାମ ଉଲ୍ଲେଖ ଯୋଗ୍ୟ । ବି. ଏ. ଶେଷ ବର୍ଷ ପରୀକ୍ଷାରେ ସୁପକାର ଚକ୍ଷୁରୋଗରେ ଆକ୍ରାନ୍ତ ହୋଇ ଗଣିତ ଅନର୍ସରେ ସନ୍ତୋଷଜନକ ମାର୍କ ରଖିପାରିନଥିଲେ ଏବଂ ପ୍ରଥମ ଶ୍ରେଣୀରେ ପାସ କରିବାରୁ ବଂଚିତ ହୋଇଥିଲେ ।

ଆଇନଜୀବୀ ହେବାକୁ ସ୍ଥିର କରିଥିବାରୁ ଶ୍ରଦ୍ଧାକର କଲେଜର ସବୁ ତର୍କ ସଭାରେ ଯୋଗ ଦେଉଥିଲେ । ସାଧାରଣ ଜ୍ଞାନରେ ମଧ୍ୟ ସେ "ଟିକିଏ ଅସାଧାରଣ" ଥିଲେ । 1935 ମସିହାରେ ସେ ସଂସ୍କୃତରେ "ସାହିତ୍ୟାଗ୍ରର୍ଯ୍ୟ" ପାସ୍ କଲେ ଏବଂ ସର୍ବୋଚ୍ଚ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିବାରୁ ସମସ୍ତଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ ।

କଟକ ସହର ଶ୍ରଦ୍ଧାକରଙ୍କ ଜୀବନରେ କିପରି ଗଭୀର ରେଖାପାତ କରିଥିଲା, ତାହା ସେ ନିଜେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି, ମୋର ଯୌବନର ଉନ୍ମେଷ ହୋଇଛି କଟକରେ । ମୋର ଛାତ୍ର ଜୀବନରେ କୃତିତ୍ୱର ସର୍ବୋଚ୍ଚ ସୀମାକୁ ମୁଁ ପହଞ୍ଚି ପାରିଥିଲି କଟକରେ । ଛାତ୍ରଜୀବନରେ ସେ ଚାରି ବର୍ଷ ସ୍ମୃତି ମୋ ପକ୍ଷରେ ଏକ ଅମୂଲ୍ୟ ସମ୍ପଦ । ମହାନଦୀ ଓ କାଠଯୋଡ଼ି ଯେପରି ଦୁଇ ବାହୁରେ ଏ ନଗରୀକୁ ଆଲିଙ୍ଗନ କରି ରହିଛନ୍ତି, ଏହାକୁ ରକ୍ଷା କରିଛନ୍ତି ଏହାକୁ ସମୃଦ୍ଧ କରିଛନ୍ତି । କେତେବେଳେ ସହରଟିଏ ଆଲିଙ୍ଗନରେ ରୁଦ୍ଧଶ୍ୱାସ ହୁଏ, ମାତ୍ର କ୍ଷଣକ ପାଇଁ କଟକର ଇତିହାସ ବହୁ ଶତାବ୍ଦୀ ଧରି ଓଡ଼ିଶାର ଇତିହାସକୁ ପ୍ରଭାବିତ କରିଆସିଛି ( ଚତ୍ରେଚ ପୃ. 104 ) ।

କଟକ ସହରର ଉତ୍‌ଥାନ ପତନ ପରି ତାଙ୍କ ଜୀବନରେ ମଧ୍ୟ କେତେ ଉତ୍‌ଥାନ ପତନ ଘଟିଛି ବୋଲି ଗ୍ରନ୍ଥକାର କହିଛନ୍ତି । ଉଚ୍ଚତର ଶିକ୍ଷାର ସୁବିଧା ଥିଲେ କଟକରେ "ମୋର ଛାତ୍ର ଜୀବନ ଚାରିବର୍ଷରେ ଶେଷ ହୋଇନଥାନ୍ତା" । କାରଣ ଟ୍ରେନ୍‌ରେ ସମ୍ବଲପୁରରୁ କଟକ ଯିବା ଅପେକ୍ଷା ପାଟନା ଯିବାରେ କମ୍ ସମୟ ଓ କମ୍ ଅର୍ଥ ଖର୍ଚ୍ଚ ହେଉଥିଲା । ତେଣୁ ସ୍ନାତକୋତ୍ତର ଶିକ୍ଷାପାଇଁ ସେ ପାଟନାକୁ ଯିବା ପାଇଁ ସ୍ଥିର କଲେ ।

## ସ୍ନାତକୋତ୍ତର ଶିକ୍ଷା

1935 ମସିହାରେ ପାଟନା କଲେଜରେ ଇଂରେଜିରେ ଏମ୍. ଏ. ଓ ପାଟଣା ଆଇନ କଲେଜରେ ଆଇନ ପ୍ରଥମ ଭାଗରେ ନାମ ଲେଖାଇ ଶ୍ରଦ୍ଧାକର ଗଙ୍ଗାକୂଳରେ ଥିବା ସ୍ନାତକୋତ୍ତର ଛାତ୍ରାବାସରେ ସ୍ଥାନ ପାଇଲେ । ସେତେବେଳେ ପାଟନାରେ ଅନେକ କୃତୀ ଓଡ଼ିଆ ଛାତ୍ର ବିଭିନ୍ନ ବିଷୟରେ ଅଧ୍ୟୟନ କରୁଥିଲେ । ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ପ୍ରହ୍ଲାଦ ପ୍ରଧାନ, ତୀର୍ଥବାସୀ ପ୍ରଧାନ, କୃପାସିନ୍ଧୁ ନାୟକ, ମନିନ୍ଦ୍ର କୁମାର ରାଉତ, ବୈଦ୍ୟନାଥ ରଥ, ଦୀନବନ୍ଧୁ ମହାପାତ୍ର, ସୀତାରାମ ପାଢ଼ୀ, ଶିବଶଙ୍କର ବେହେରା, ରବିନାରାୟଣ ପାଢ଼ୀ ଓ ମାଧବ ପାଣି ଉଲ୍ଲେଖଯୋଗ୍ୟ । ଏହାଛଡ଼ା ଓଡ଼ିଆମାନଙ୍କ ମଧ୍ୟରୁ କେତେଜଣ ପ୍ରସିଦ୍ଧ ଏଡଭୋକେଟ୍ ଉଚ୍ଚପଦାଧିକାରୀ ମଧ୍ୟ ଥିଲେ । ଗଙ୍ଗାକୂଳରେ ଛାତ୍ରବାସଟି ଅବସ୍ଥିତ ହୋଇଥିବାରୁ ଗ୍ରନ୍ଥକାର ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ ଏବଂ ଗଙ୍ଗା ତାଙ୍କର "ଶରୀର ଓ ମନକୁ ଶୀତଳ କରୁଥିଲା" ।

1936 ମସିହା ଏପ୍ରିଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ସେଦିନ ସନ୍ଧ୍ୟାରେ ଓଡ଼ିଶା ଲିଗ୍ ତରଫରୁ ଏକ ସାଧାରଣ ସଭା ହେଲା ଏବଂ ସ୍ୱତନ୍ତ୍ର ପ୍ରଦେଶ ହେବାରେ ସମସ୍ତେ ଆନନ୍ଦ ପ୍ରକାଶ କଲେ । ପାଟନାରେ ଖାଦ୍ୟପେୟ କଟକଠାରୁ ଶସ୍ତା ଥିଲା । ପ୍ରାୟ 15 ଟଙ୍କାରେ ମେସ୍ ଖର୍ଚ୍ଚ ଚଳି ଯାଉଥିଲା । ମାତ୍ର କଟକରେ ଶ୍ରଦ୍ଧାକରଙ୍କ ସ୍ୱାସ୍ଥ୍ୟ ଭଲ ରହୁଥିଲା ଏବଂ ପାଟନାରେ ବିଭିନ୍ନ ରୋଗରେ ଆକ୍ରାନ୍ତ ହେଉଥିଲେ ।

ଇଁରେଜି ସାହିତ୍ୟରେ ଅନର୍ସ ନଥାଇ ଶ୍ରଦ୍ଧାକର ସିଧା ଏମ୍. ଏ. ପଢୁଥିବାରୁ କଷ୍ଟକର ହେଉଥିଲା । ସେତେବେଳେ ପାଟନା କଲେଜରେ ଦୁଇଜଣ ଖୁବ୍ ଭଲ ଅଧ୍ୟାପକ ଥିଲେ । ପ୍ରଫେସର ଜେ. ଏଲ୍. ହିଲ ଓ ଅଧ୍ୟକ୍ଷ ପ୍ରଫେସର ଏଚ. ଏସ୍.ଆର୍ମର । ଅଧ୍ୟାପକ ହିଲ ପ୍ରତ୍ୟେକ ସ୍ନାତକୋତ୍ତର ଛାତ୍ରଙ୍କୁ ଜାଣିଥିଲେ ଏବଂ ବିଭିନ୍ନ ପ୍ରଶ୍ନର ଉତ୍ତର ଲେଖି ତାଙ୍କୁ ଦେଲେ ସେ ସଂଶୋଧନ କରି ନିଜର ମନ୍ତବ୍ୟ ଦେଉଥିଲେ । ଏମିତିକି ଛୁଟି କଟାଇବାକୁ ଗାଁରେ ରହୁଥିଲେହେଁ ଛାତ୍ରମାନଙ୍କର ଉତ୍ତର ଡାକରେ ଫେରାଇ ଦେଉଥିଲେ । ତାଙ୍କର ଅଧ୍ୟାପନା ମଧ୍ୟ ଭାରି ଚିତ୍ତାକର୍ଷକ ଥିଲା ।

1937 ମସିହା ମଇ ମାସରେ ଇଁରେଜିରେ ଏମ୍. ଏ ପରୀକ୍ଷା ଦେବାର କଥା । ମାତ୍ର ଅନେକ ସମୟରେ ଅସୁସ୍ଥ ରହିବାରୁ ଏବଂ ଘରେ ଘଟୁଥିବା ଦୁଃସମ୍ବାଦମାନ ପାଇ ଶ୍ରଦ୍ଧାକର ଏକାଗ୍ରତାର ସହିତ ଅଧ୍ୟୟନ କରିପାରୁନଥିଲେ । ଫଳତଃ ଏମ୍. ଏ. ପରୀକ୍ଷାରେ ସେ ତୃତୀୟ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କର ଶତକଡ଼ା ଅଣଚାଶ ନମ୍ବର ଥିଲା, ଶତକଡ଼ା 50 ନମ୍ବର ରଖିଲେ ଦ୍ୱିତୀୟ ଶ୍ରେଣୀ ହେଉଥିଲା । ଶ୍ରଦ୍ଧାକର 1937 ମସିହା ଜୁଲାଇ ମାସରେ 'ଲ' କଲେଜରେ ଦ୍ୱିତୀୟ ଭାଗରେ ଛାତ୍ର ହେଲେ ଏବଂ 1938 ଜାନୁୟାରୀ ମାସରେ ଆଇନ ପରୀକ୍ଷା ପ୍ରଥମ ଭାଗ ପରୀକ୍ଷା ଦେଲେ ଫଳାଫଳ ସନ୍ତୋଷଜନକ ହୋଇନଥିଲା । 1938 ଜୁନ୍ ମାସରେ ଦ୍ୱିତୀୟ ଭାଗ ପରୀକ୍ଷା ଦେଇ ଶ୍ରଦ୍ଧାକର ପ୍ରଥମ ଶ୍ରେଣୀରେ ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

## ଆଇନ ବ୍ୟବସାୟ ଓ ରାଜନୀତି

ସରକାରୀ ଚାକିରୀ ନକରି ସ୍ୱାଧୀନଚେତା ଶ୍ରଦ୍ଧାକର ଆଇନ ବ୍ୟବସାୟ କରିବା ପାଇଁ 1939 ମସିହା ମାର୍ଚ୍ଚ ମାସରେ ଜିଲ୍ଲା ଜଜ୍‌ଙ୍କ ଠାରୁ ଓକିଲାତି ପାଇଁ ଅନୁମତି ପତ୍ର ବା ଲାଇସେନ୍‌ସ (License) ପାଇଲେ । ସେ ସମୟରେ କଟକ ଓ ସମ୍ବଲପୁର ଜିଲ୍ଲା ଜଣେ ଜିଲ୍ଲା ଜଜ୍‌ଙ୍କ ନିୟନ୍ତ୍ରଣାଧୀନ ଥିଲା । ତେଣୁ ଏଥିପାଇଁ ତାଙ୍କୁ କଟକ ଯିବାକୁ ପଡ଼ିଥିଲା ।

ଓକିଲାତି ସହିତ ଶ୍ରଦ୍ଧାକର ସକ୍ରିୟ ରାଜନୀତିରେ ମଧ୍ୟ ଯୋଗଦେଲେ । 1939 ଜାନୁୟାରୀ ମାସରେ ସମ୍ବଲପୁର ପୌରସଭା ନିର୍ବାଚନରେ ନିଜ ପଡ଼ାରୁ ଜଣେ ଓ୍ୱାର୍ଡ ମେମ୍ବର ହେବାପାଇଁ ପ୍ରାର୍ଥୀ ହେଲେ ମାତ୍ର ତାଙ୍କର ବୟସ ଓ ଅଭିଜ୍ଞତା ବିଶେଷ ହୋଇ ନଥିବାରୁ ବହୁ ଭୋଟରେ ପରାଜିତ ହୋଇଥିଲେ । ସ୍ପଷ୍ଟବାଦୀ ସୂପକାର ଏ ପ୍ରସଙ୍ଗରେ ଲେଖିଛନ୍ତି, "ଆମ ପଡାଟି ଆୟତନରେ ଛୋଟ ହେଲେ ମଧ୍ୟ ଜନବହୁଳ ଥିଲା ମୁଁ ଘରଘର ବୁଲି ମଧ୍ୟ ମାତ୍ର ଭୋଟ ଫଳାଫଳରୁ ଦେଖାଗଲା ଯେ ଦୁଇଜଣ ପ୍ରାର୍ଥୀ ଦୁଇ ଶହରୁ ଅଧିକ ଲେଖାଏଁ ଭୋଟ ପାଇଥିବା ସ୍ଥଳେ ମୁଁ ମାତ୍ର 35ଟି ଭୋଟ ପାଇଲି । ସେ ସମୟରେ ପ୍ରାର୍ଥୀମାନଙ୍କୁ କୌଣସି ଅମାନତ ଦେବାକୁ ପଡୁ ନଥିଲା ବା ଅମାନତ ବାଜ୍ୟାପ୍ତ

ହେବାର ପ୍ରଶ୍ନ ନଥିଲା । ମୋତେ ଖର୍ଚ୍ଚ ମଧ୍ୟ କରିବାକୁ ପଡ଼ି ନଥିଲା । ଯାହାହେଉ ନିର୍ବାଚନ୍ ରାଜନୀତିରେ ପ୍ରଥମ ଅଭିଜ୍ଞତା ହେଲା ସେ ଭୋଟରେ । ସେ ଭୋଟରେ କୌଣସି ଦଳଗତ ପ୍ରଶ୍ନର ହୋଇ ନଥିଲା ।'' (ତତ୍ରୈବ ପୃ. 12) ।

ସେତିକିବେଳେ କଂଗ୍ରେସ ତରଫରୁ ନିର୍ବାଚନରେ ଜିଣି ଓଡ଼ିଶାପରି ବିଭିନ୍ନ ପ୍ରଦେଶରେ ସରକାର ଗଢ଼ିଥିଲେ । ଶ୍ରୀ ବୋଧରାମ ଦୁବେ ଶିକ୍ଷାମନ୍ତ୍ରୀ ଥିଲେ ଏବଂ ଶ୍ରଦ୍ଧାକରଙ୍କୁ ପାଠ୍ୟପୁସ୍ତକ କମିଟିରେ ଜଣେ ସଭ୍ୟ ଭାବରେ ନେଇଥିଲେ । ଦୁବେ ଶ୍ରଦ୍ଧାକରଙ୍କ ଶିକ୍ଷାଗତ ଯୋଗ୍ୟତା ଦୃଷ୍ଟିରୁ ଏହି ସଭ୍ୟପଦ ପାଇଁ ସୁପାରିଶ କରିଥିଲେ । ମାତ୍ର ସେତେବେଳେ ନୂଆକରି ପ୍ରକାଶ ପାଇଥିବା ''ନିଆଁଖୁଣ୍ଟା'' ରେ ଗୋଦାବରିଶ ମହାପାତ୍ର 'ପାଠ୍ୟପୁସ୍ତକ ରୋଷେଇ' ଶୀର୍ଷକ ଏକ ଲେଖାରେ ତାଙ୍କୁ ବିଦ୍ରୂପ କରିଥିଲେ । ଶ୍ରଦ୍ଧାକର ସରସ ଭାଷାରେ ଏହି ଘଟଣାକୁ ଉଲ୍ଲେଖ କରିଛନ୍ତି ''ମୋତେ ଭଲଭାବରେ ଚିହ୍ନି ନଥିବା ଲୋକ ପକ୍ଷରେ ଏପରି ସମାଲୋଚନା କରିବା ଅତି ସ୍ୱାଭାବିକ ଥିଲା । ମାତ୍ର ମୁଁ ଏହି ସମାଲୋଚନାରେ ବିବ୍ରତ ହୋଇ 'ନିଆଁଖୁଣ୍ଟା' ସମ୍ପାଦକଙ୍କ ପାଖକୁ ବିଦ୍ରୂପାତ୍ମକ ଚିଠି ଲେଖିଲି । ତା ଉପରେ ପୁଣି ନିଆଁଖୁଣ୍ଟାର ଚେଙ୍କା ମିଳିଲା । ତହିଁର ଅନେକ ବର୍ଷ ପରେ ଗୋଦାବରିଶ ବାବୁ ମୋତେ ଚିହ୍ନିଲେ ଓ ବନ୍ଧୁରୂପେ ଗ୍ରହଣ କଲେ ବିଶେଷତଃ 1942 ମସିହା ପରେ'' (ତତ୍ରୈବ ପୃ. 126) । ଶ୍ରଦ୍ଧାକରଙ୍କ ନାମ ପଛରେ ସୂପକାର ସଂଜ୍ଞାଟି ଥିବାର ନିଆଁଖୁଣ୍ଟାରେ ରୋଷେଇ କଥା ଲେଖିଥିଲେ । ସେତେବେଳେ ବହୁ ଦଶନ୍ଧି ଧରି ପ୍ରଚଳିତ ହୋଇଥିବା ବର୍ଣ୍ଣାନୁକ୍ରମିକ ଅକ୍ଷର ଶିକ୍ଷା ବଦଳରେ ଶବ୍ଦଭିତ୍ତିକ ମା, ରମା, ଘର ଆଦିକୁ ନେଇ ଅକ୍ଷର ଶିକ୍ଷା ଦିଆଗଲା ।

1939 ମାର୍ଚ୍ଚ ମାସରୁ ଶ୍ରଦ୍ଧାକର ଓକିଲାତି ବ୍ୟବସାୟ ଆରମ୍ଭ କରି ଖୁବ୍ ଲୋକପ୍ରିୟ ହେବେ ଓ ଅଧିକ ରୋଜଗାର କରିବେ ବୋଲି ଭାବିଥିଲେ । ମାତ୍ର ନୂଆ ଓକିଲଙ୍କୁ କେହି ସହଜରେ ଭରସା କରନ୍ତି ନାହିଁ । ପୁଣି ଆଇନ ପାଠ ପଢ଼ିବା ଓ ମହକିଲଙ୍କ ମଧ୍ୟରେ ଲୋକପ୍ରିୟତା ଅର୍ଜନ କରିବା ଦୁଇଟି ଅଲଗା କଥା । ତେଣୁ ସାଙ୍ଗ ଓକିଲମାନଙ୍କ ସହିତ ଗପସପ କରିବାରେ ଅନେକ ସମୟ କଟୁଥିଲା । ବହିପଢ଼ି ଜ୍ଞାନ ଅର୍ଜନ କରିବାର ପ୍ରବୃତ୍ତି ଓ ବାତାବରଣ ନଥିଲା । ତେଣୁ ଅନେକ ସମୟରେ ସୂପକାର ଆର୍ଥିକ ଅନାଟନ ମଧ୍ୟରେ ଚଳନ୍ତି । ସେ ଲେଖିଛନ୍ତି, ''ଓକିଲତି ଆରମ୍ଭ କରିବାର ପରେ ପ୍ରାୟ ଦଶବର୍ଷ ପର୍ଯ୍ୟନ୍ତ ଓକିଲାତିରୁ ମୋର ଆୟ ଖୁବ୍ କମ୍ ଥିଲା ଏହାର କାରଣ ମୋର ନିଜର ଅଯୋଗ୍ୟତା ନୁହେଁ । ମୁଁ ପୂର୍ବ ଅଭ୍ୟାସ ଯୋଗୁଁ ପ୍ରତ୍ୟେକ ରାଜନୀତିରେ ଭାଗ ନେଉଥିଲି ଓ ସେଥିରେ ମୋର ଅନେକ ସମୟ ଯାଉଥିଲା ।'' (ତତ୍ରୈବ ପୃ. 128) ସେ ଯଥାର୍ଥରେ ପୁଣି କହିଛନ୍ତି ''ଏକାଗ୍ରତା ବିନା କୌଣସି ବ୍ୟବସାୟରେ ସଫଳତା ଲାଭ କରିବା ସମ୍ଭବ ନୁହେଁ । ମୋ ପକ୍ଷରେ କିନ୍ତୁ ରାଜନୀତି ଧନ୍ଦା ଛାଡ଼ିବା ସମ୍ଭବ ନଥିଲା ।''

ପୂର୍ବେ କେତେକ ସ୍ଥାନରେ ଓକିଲ ଅଭାବ ଥିବାରୁ ଶ୍ରଦ୍ଧାକର ଦେବଗଡ଼, ବଣେଇ, ଆଠମଲ୍ଲିକ ଆଦି ସ୍ଥାନକୁ ଯାଇ ଓକିଲତି କରୁଥିଲେ । ତେବେ ନ୍ୟାୟ ଓ ସତ୍ୟ ପାଇଁ ସେ ଲଢେଇ କରୁଥିଲେ । ଥରେ ଥରେ ସେ ଖୁନି କେସ୍‌ରେ ସରକାରଙ୍କ ତରଫରୁ "ଧର୍ମ ଓକିଲ" ଭାବରେ ନିଯୁକ୍ତି ପାଇ ମୁଦାଲା ପକ୍ଷ ସମର୍ଥନ କରି ଓକିଲତି କରିଥିଲେ । ତତ୍କାଳୀନ ଓକିଲତି ସମ୍ପର୍କରେ ସେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି, "ସେ ସମୟରେ ମିଷ୍ଟର ବାୟାର୍ସ ନାମରେ ଜଣେ କଡ଼ା ଡ୍ରିଷ୍ଟ୍ରିକ୍ଟ ଜଜ୍ ଥିଲେ । ବଡ଼ ବଡ଼ ଓକିଲମାନେ ସୁଦ୍ଧା ତାଙ୍କ କୋର୍ଟରେ ଜବାବ ସୁଆଲ କଲାବେଳେ ସେ ଅବଜ୍ଞା ପ୍ରଦର୍ଶନ କରି ଡକାଇ ପଡ଼ନ୍ତି । ସେସନସ ଅଦାଲତରେ ମୁଦାଲା ଓକିଲ ଅଧଘଣ୍ଟାଏ ସାକ୍ଷ୍ୟକୁ ଜେରା କଲାପରେ ମଧ୍ୟ ଜେରା କରଯାଇନାହିଁ ବୋଲି ଲେଖନ୍ତି । ଅଦାଲତରେ ବିଚାରପତିଙ୍କୁ ଉତ୍ତର ନାହିଁ କି ସ୍ୱର୍ଗକୁ ନିଶୁଣି ନାହିଁ । ବଡ଼ ବଡ଼ ଓକିଲମାନେ ମଧ୍ୟ ପ୍ରତିବାଦ କରନ୍ତି ନାହିଁ । ଯେଉଁମାନେ କେବେ ପ୍ରତିବାଦ କରନ୍ତି ତେବେ ସେସବୁ ମୋକଦ୍ଦମାରେ ହାରନ୍ତି ।" (ତତ୍ରୈବ ପୃ. 131)

1940 ମସିହାରେ ସମ୍ବଲପୁରରେ ଜିଲ୍ଲାବୋର୍ଡ ନିର୍ବାଚନ ହେଲା । କଂଗ୍ରେସ ଦଳ ତରଫରୁ ଶ୍ରଦ୍ଧାକର ମୁରା ଥାନାରୁ ପ୍ରତିନିଧି ମନୋନୀତ ହେଲେ । ତାଙ୍କ ବିରୁଦ୍ଧରେ ଜଣେ ବିଶିଷ୍ଟ ଗୌନ୍ତିଆଙ୍କ ପୁଅ ଠିଆ ହୋଇଥିଲେ । ସବୁ ପ୍ରତିପତ୍ତି ଓ ଅର୍ଥବଳ ସତ୍ତ୍ୱେ ସେ ସୂପକାରଙ୍କଦ୍ୱାରା ପରାଜିତ ହୋଇଥିଲେ । କଂଗ୍ରେସ ଦଳର ବହୁ ସଭ୍ୟ ଜିଲ୍ଲା ବୋର୍ଡକୁ ନିର୍ବାଚିତ ହୋଇଥିଲେ ହେଁ ଆଉ ଜଣେ ପ୍ରତିପତ୍ତିଶାଳୀ ଯଥା ପୌର ସଭାର ଚେୟାରମ୍ୟାନ ଥିବା ଜଣେ ବ୍ୟକ୍ତି ଜିଲ୍ଲାବୋର୍ଡ ଚେୟାରମ୍ୟାନ ପଦ ପାଇଁ ଶ୍ରଦ୍ଧାକରଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ଜୟଯୁକ୍ତ ହୋଇଥିଲେ । ତାଙ୍କୁ ଭାଇସ ଚେୟାରମ୍ୟାନ ହେବାକୁ ଅନୁରୋଧ କରିଥିଲେ ହେଁ ସେ ମନା କରିଥିଲେ । ଉକ୍ତ ପଦରେ ରହି ସେ ବହୁ ଲୋକଙ୍କ ସହିତ ପରିଚିତ ହୋଇ ଜିଲ୍ଲାରେ ଅନେକ ଉନ୍ନତିମୂଳକ କାର୍ଯ୍ୟ କରିଥାନ୍ତେ । ମାତ୍ର ଅଭିମାନରେ ଉକ୍ତ ପଦ ପାଇଁ ସେ ଅସମ୍ମତ ହୋଇ ପରେ ଅନୁତାପ କରିଥିଲେ ବୋଲି କହିଛନ୍ତି ।

1949 ମସିହାରେ ଶ୍ରଦ୍ଧାକର ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ଥିଲେ ଏବଂ ଗ୍ରାମକଣିଆ ପ୍ରାଥମିକ ସଭ୍ୟ ସଂଗ୍ରହ ଓ ନିୟମିତ ସୁତାକଟାରେ ସେ ବହୁ ସମୟ ଓ ଶକ୍ତି ବିନିଯୋଗ କରିଥିଲେ । 1939 ସେପ୍ଟେମ୍ବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା ଏବଂ କଂଗ୍ରେସ ଏଥିରେ ସହଯୋଗ କରିବ ନାହିଁ ବୋଲି କହି ସରକାରରୁ ବିଦାୟ ନେଲେ । ଏହି ସରକାର ରାଜ୍ୟରେ ପ୍ରାୟ 27 ମାସ ଶାସନ ଦାୟିତ୍ୱରେ ଥିଲେ । ଶ୍ରୀ ବୋଧରାମ ଦୁବେଙ୍କ ସ୍ଥାନରେ ଶ୍ରୀ ଗୋଦାବରୀଶ ମିଶ୍ର ଓଡ଼ିଶାର ଶିକ୍ଷାମନ୍ତ୍ରୀ ହେଲେ ଓ ତାଙ୍କ ମନ୍ତ୍ରିତ୍ୱକାଳରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କଲେ ।

ସେହିବର୍ଷ ରାମଗଡ଼ଠାରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେଇଥିଲେ । ଶ୍ରୀ ଶ୍ରଦ୍ଧାକର ସୂପକାର, ମୌଲନା ଆବୁଲ କାଲମ ଆଜାଦ ସଭାପତି ଥିଲେ ଏବଂ ବିଶୁଦ୍ଧ ଉର୍ଦ୍ଦୁ ଭାଷାରେ ଭାଷଣ ଦେବାରୁ ତାଙ୍କ ପକ୍ଷେ ବୁଝିବା କଷ୍ଟକର ଥିଲା । ପୂର୍ବରୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଥିବାରୁ ସଂଗ୍ରାମ ପନ୍ଥା ଗ୍ରହଣ କରିବାକୁ ସ୍ଥିର କରୁଥିଲେ । ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ କଂଗ୍ରେସ ଆହ୍ୱାନ ଦେଲା । ଭାରତ ରକ୍ଷା ଆଇନ ବିରୁଦ୍ଧରେ ଆନ୍ଦୋଳନ ହେଲା । ଯୁଦ୍ଧ ବିରୋଧୀ ଧ୍ୱନି ଦେଇ ବହୁ ଲୋକ ଜେଲରେ ଭର୍ତ୍ତି ହେଲେ ।

ଶ୍ରଦ୍ଧାକର ସୋନପୁର କୋର୍ଟରେ ମଧ୍ୟ ଓକିଲାତି କରିବାକୁ ଯାଉଥିଲେ । ଭାରତ ରକ୍ଷା ଆଇନରେ ଏକ କେସ୍‌ର ଫଳାଫଳ ପୂର୍ବରୁ ଜଣାଥିଲା । ତେବେ ଶ୍ରଦ୍ଧାକର ନିଷ୍ଠାର ସହିତ କୋର୍ଟରେ ଜବାବ ସୁଆଲ କରୁଥିଲେ । ସେତେବେଳେ ମଧ୍ୟ ଓଡ଼ିଆ ଭାଷା କିପରି ସୋନପୁର କୋର୍ଟରେ ପ୍ରଚଳିତ ଥିଲା, ଉଲ୍ଲେଖ କରି ଶ୍ରଦ୍ଧାକର କହିଛନ୍ତି "ସୋନପୁରରେ ସବୁଦିନ କୋର୍ଟ କାମ ଓଡ଼ିଆ ଭାଷାରେ ଚାଲୁଥାଏ । ଏହା ବୋଧହୁଏ ସୋନପୁରର ଏକ ପ୍ରଶଂସନୀୟ ବିଶେଷତ୍ୱ ଥିଲା । ସେଠାରେ ମାଜିଷ୍ଟ୍ରେଟ ବଙ୍ଗାଳି ହେଲେ ମଧ୍ୟ ସାକ୍ଷୀମାନଙ୍କର ବକ୍ତବ୍ୟ ଆଦି ଓଡ଼ିଆ ଭାଷାରେ ଲେଖାଥିଲେ" ।

1942 ମସିହାରେ ଭାରତ ଛାଡ଼ ଆନ୍ଦୋଳନ ଆରମ୍ଭ ହେଲା । ସମ୍ବଲପୁରରୁ ଅନେକ କଂଗ୍ରେସ କର୍ମୀ ସେ ଆନ୍ଦୋଳନରେ ଯୋଗଦେଇ ଜେଲ ବରଣ କଲେ । ବହୁ ଜଣା ଶୁଣା କଂଗ୍ରେସ କର୍ମୀ ଓ ନେତା ଜେଲରେ ବନ୍ଦୀ ହେଲେ । ମାତ୍ର ଘରେ କ୍ରମାଗତ ଅଶାନ୍ତି ଓ ଅସୁବିଧା ଲାଗି ରହି ଥିବାରୁ ଶ୍ରଦ୍ଧାକର ଏହି ଆନ୍ଦୋଳନରେ ସକ୍ରିୟ ଭାବରେ ଯୋଗ ଦେଇ ନ ଥିଲେ । ଏହି ସମୟରେ ଓକିଲାତି କାମରେ ବିଶେଷ ଭିଡ଼ ନ ଥିବାରୁ ସେ ନିଜର ଚାଷ କାମ ଦେଖୁଥିଲେ । ଧାନ ଅମଳ ଓ ଆଖୁପେଡ଼ା ସମୟରେ ସେ ଗ୍ରାମରେ ଅନେକ ଦିନ ରହି ଯାଉଥିଲେ ଏବଂ ହାତରେ ରୋଷେଇ କରି ଖିଆପିଆ କରୁଥିଲେ । ତେଣୁ ମଜା କରି ସେ ଲେଖିଛନ୍ତି "ଏହିପରି କ୍ରମାଗତ ଭାବରେ ଅନେକ ଦିନ ରାନ୍ଧିବାକୁ ପଡୁଥିବାରୁ ମୁଁ ଭଲ ରାନ୍ଧିବା ଶିଖିଗଲି । ଆଜି ସୁଦ୍ଧା ମୋର ସୂପକାର ନାମ ସାର୍ଥକ ବୋଲି ସାମାନ୍ୟ ଆତ୍ମଶ୍ଳାଘା ମୋ ମନରେ ଅଛି " କି ସରଳ ନିଷ୍କପଟତା ! (ପୃ. 145) ।

1942 ମସିହାରେ ଯୁଦ୍ଧର ଘନଘଟା ବୃଦ୍ଧି ପାଇଲା । ଜାପାନ, ବ୍ରହ୍ମଦେଶ, ସିଙ୍ଗାପୁର ଆଦି ଦଖଲ କରିବା ପରେ ଓଡ଼ିଶା ଉପକୂଳ କୂଳଙ୍ଗରେ ବୋମା ବୃଷ୍ଟି କଲେ । ଏହା ଫଳରେ ଓଡ଼ିଶା ସରକାରଙ୍କ ସେକ୍ରେଟେରୀଏଟ୍ କଟକରୁ ସମ୍ବଲପୁରକୁ ସ୍ଥାନାନ୍ତରିତ ହେଲା । ତତ୍‌କାଳୀନ ସମ୍ବଲପୁର ଜିଲ୍ଲା ସ୍କୁଲ (ଆଜିର ଗଙ୍ଗାଧର ମେହେର କଲେଜ) ଟାଉନ ହଲ ଓ ମ୍ୟୁନିସିପାଲିଟି ଅଫିସରେ ଅନେକ ସରକାରୀ ବିଭାଗ ଅବସ୍ଥାପିତ ହେଲା ।

କଟକରୁ ବହୁ କର୍ମଚାରୀ ଯାଇ ସମ୍ବଲପୁରରେ ରହିଁଲେ । ତେଣୁ ପରିବାପତ୍ର, ଚାଉଳ, ଡାଲି ଆଦି ଜିନିଷପତ୍ରର ଦର ବହୁତ ବଢିଗଲା । ଚାଳ ଛପର ଘର ତୋଳାଯାଇ ସେଥିରେ ପିଲାମାନଙ୍କ ପଢ଼ାକାମ ଚାଲିଲା । ଏହି ସମୟରେ ନେତାଜୀ ଆଜାଦ ହିନ୍ଦ ଫଉଜ ଗଢି ବ୍ରହ୍ମଦେଶ ଆଉ ଆସାମ ଦେଇ ମାଡ଼ି ଆସୁଥିବାର ଖବର ଶୁଣାଗଲା ।

ସେତେବେଳେ ବିଶେଷତଃ 1943 ମସିହାରେ ବଙ୍ଗ ଦେଶରେ କରାଳ ଦୁର୍ଭିକ୍ଷ ପଡ଼ିଲା । ଲୋକେ ଖାଇବାକୁ ନ ପାଇ ପୋକମାଛି ପରି ମଲେ । ମାତ୍ର ସମ୍ବଲପୁର ଜିଲ୍ଲା ଓ ସୋନପୁର, ବଲାଙ୍ଗୀର ଆଦି ଗଡ଼ଜାତ ଅଞ୍ଚଳରେ ବଳକା ଅଞ୍ଚଳ ବୋଲି ପରିଚିତ ହୋଇଥିଲା । ତେଣୁ ଏହି ଅଞ୍ଚଳରୁ ରେଳ ଯୋଗେ ବଙ୍ଗଦେଶକୁ ଲକ୍ଷ ଲକ୍ଷ ବସ୍ତା ଚାଉଳ ପଠାଗଲା । ପ୍ରତ୍ୟେକ ବସ୍ତା ଉପରେ ଜିଲ୍ଲା କର୍ତ୍ତୃପକ୍ଷ ଟଙ୍କାଏ ଲେଖାଁ ଚାନ୍ଦା ସଂଗ୍ରହ କଲେ ଏବଂ ଏହି ସଂଗୃହୀତ ଅର୍ଥକୁ ନେଇ ଏକ ଯୁଦ୍ଧ ପାଣ୍ଠି ଗଠନ କରାଗଲା । ମାତ୍ର 1945 ମସିହାରେ ଯୁଦ୍ଧ ବନ୍ଦ ହୋଇଯିବାରୁ ଏହି ପାଣ୍ଠିରୁ ଥିବା ପ୍ରାୟ ସାତ ଲକ୍ଷ ଟଙ୍କାରେ ଏକ ଟ୍ରଷ୍ଟ ଫଣ୍ଡ ବା ଦାତବ୍ୟ ନ୍ୟାସ ସ୍ଥାପିତ ହେଲା । ସେହି ଟ୍ରଷ୍ଟ ଆନୁକୂଲ୍ୟରେ ଏକ ମାତୃମଙ୍ଗଳ କେନ୍ଦ୍ର ସ୍ଥାପିତ ହେବା ପରେ ଶିକ୍ଷାର ବିକାଶ ଓ ପ୍ରସାର କ୍ଷେତ୍ରରେ ବହୁ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହେଲା । ଗଙ୍ଗାଧର କଲେଜ, ଲାଲ ଲଜପତ ରାୟ କଲେଜ ଆଦି ଏହି ଟ୍ରଷ୍ଟ ଅର୍ଥରେ ପ୍ରଥମେ ସ୍ଥାପିତ ହୋଇଥିଲା । ସମ୍ବଲପୁରକୁ ପଶ୍ଚିମ ଓଡ଼ିଶାର ଏକ ବିଶିଷ୍ଟ ଶିକ୍ଷାକେନ୍ଦ୍ର କରିବାରେ ଏହି ଟ୍ରଷ୍ଟ ଫଣ୍ଡ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ।

1947 ମସିହା ଏପ୍ରିଲ ମାସରେ ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ ପ୍ରବଳ ଆକାର ଧାରଣ କଲା । ଓଡ଼ିଶା ବିଧାନ ସଭାର ସଭ୍ୟ ଶ୍ରୀ ବୋଧରାମ ଦୁବେ ବନ୍ଧ ନିର୍ମାଣର ପ୍ରତିବାଦ ସ୍ୱରୂପ ବିଧାନ ସଭାର ସଭ୍ୟ ପଦରୁ ଇସ୍ତଫା ଦେଲେ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ନାରୀମାନଙ୍କର ଶୋଭାଯାତ୍ରା ହେଉଥିଲା । ସମ୍ବଲପୁରର ଲୋକପ୍ରିୟ ଡାକ୍ତର ଜନାର୍ଦ୍ଦନ ପୂଜାରୀ ଓ ତାଙ୍କର ଧର୍ମପତ୍ନୀ ଶ୍ରୀମତୀ କମଳା ଦେବୀଙ୍କର ନେତୃତ୍ୱରେ ପ୍ରଥମ ସତ୍ୟାଗ୍ରହ ଦଳ ବାହାରିଲେ ଏବଂ ଆଇନ ଅମାନ୍ୟ କରି 3 ମାସ ଲେଖାଏଁ କାରାଦଣ୍ଡ ଆଦେଶ ପାଇଲେ । ତାଙ୍କୁ ଅନୁସରଣ କରି ଅନେକ ଲୋକ ଆଇନ ଅମାନ୍ୟ କରି ଜେଲ୍ ଗଲେ । ଶହାକର ମଧ୍ୟ କାରାବରଣ କଲେ । କ୍ରମେ ଆନ୍ଦୋଳନର ପ୍ରଖରତା ବଢିବାରେ ଲାଗିଲା । ମାତ୍ର ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଭରତ ଚନ୍ଦ୍ର ନାୟକ ପ୍ରମୁଖ ବୁଦ୍ଧିଜୀବୀମାନେ ହୀରାକୁଦ ବନ୍ଧର ଉପକାରୀତା କହି ଉକ୍ତ ଆନ୍ଦୋଳନର ବିରୋଧ କରିଥିଲେ ।

ଶେଷରେ ବାସଚ୍ୟୁତ ହେବାକୁ ଥିବା ଲୋକଙ୍କ ପାଇଁ 1948 ମସିହାରେ ଯେଉଁ ସ୍ୱତନ୍ତ୍ର ଆଇନ ପାସ ହେଲା ତାଫଳରେ କର୍ମଚାରୀମାନେ ମନମୁଖୀ ଭାବରେ କ୍ଷତିପୂରଣ ଦେଲେ । ଜମି ମାଲିକଙ୍କ ସହିତ ଚୁକ୍ତିପତ୍ର କରାଯାଇ ଯାହା "ଘର ପୋଡ଼ିରୁ କୁଟାଖିଅ

ପାଇଲେ ଭଲ" ନ୍ୟାୟରେ ପାଇଲେ ସେଥିରେ ସନ୍ତୁଷ୍ଟ ହେଲେ । ଯେ ନନେଲେ କୋର୍ଟ କଚେରୀକୁ ଦଉଡ଼ି ଦଉଡ଼ି ସର୍ବସ୍ୱାନ୍ତ ହେଲେ । ଡଃ ସୂପକାର ବିଧାନ ସଭାର ସଭ୍ୟ ଥିଲାବେଳେ ଚେଣ୍ଟା କହିଥିଲେ କ୍ଷତିପୂରଣ ଦେବାରେ ପାତର ଅନ୍ତର କରିବା ଆଇନ-ଭଙ୍ଗ ଥିଲା କହିଲେ ଚଳେ । ସେଥିପାଇଁ ମୁଁ ଥରେ ଯଦୁମଣିଙ୍କ ଉକ୍ତିକୁ ଉଦ୍ଧାର କରି କହିଥିଲି—

"କେତେବେଳେ ଖଡ୍ଡୁ, ଗଡ୍ଡୁ
କେତେବେଳେ ମୁଦି
କେତେବେଳେ ବୋଲଉଛୁ କରୁଣା ବାରିଧି" ।

ଏହିସବୁ କାରଣରୁ ବୁଡ଼ି ଅଞ୍ଚଳର ହଜାର ହଜାର ଲୋକ ନିଜର ଜମିଡଜ ହରାଇ ସର୍ବସ୍ୱାନ୍ତ ହେଲେ । ଦୁଃଖର ସହିତ ସୂପକାର କହିଛନ୍ତି 1947 ମସିହା ଅଗଷ୍ଟ ପନ୍ଦର ତାରିଖ ଦେଶ ସ୍ୱାଧୀନ ହେଲା । ଜେଲରୁ ଅନେକ ସେଦିନ ମୁକ୍ତି ପାଇଲେ । ଆମେ ଯେଉଁମାନେ ବିଚାରାଧୀନ ବନ୍ଦୀଥିଲୁ, ଆମେ ମଧ୍ୟ ସେହିଦିନ ମୁକ୍ତ ହେଲୁ । ଆନ୍ଦୋଳନର ନିଆଁ ଲିଭିଯାଇ-ଥିଲା (ତତ୍ରୈବ ପ. 163) । ଡଃ ସୂପକାର ସ୍ୱାଧୀନତା ଦିବସରେ ମାତୃହୀନ ପୁତ୍ରମାନଙ୍କ ପାଖକୁ ଫେରି ଆସିଥିଲେ । ସେମାନଙ୍କର ଶିକ୍ଷାର ବ୍ୟବସ୍ଥା ହୋଇପାରିନଥିଲା । ସେମାନେ ପିତୃସ୍ନେହରୁ ମଧ୍ୟ ବଞ୍ଚିତ ହୋଇଥିଲେ ।

### ସିନେଟ ଓ ବିଧାନ ସଭାର ସଭ୍ୟ

1948 ମସିହାରେ ଡଃ ସୂପକାର ସିନେଟ ନିର୍ବାଚନରେ ଜୟ ଲାଭ କରି ସିଣ୍ଡିକେଟର ସଭ୍ୟ ନିର୍ବାଚିତ ହୋଇଥିଲେ ଏବଂ ଶ୍ରୀ ଚିନ୍ତାମଣୀ ଆଚାର୍ଯ୍ୟଙ୍କୁ କୁଳପତି କରାଇବାରେ ସାହାଯ୍ୟ କରିଥିଲେ । 1949 ମସିହାରେ ବିଧାନ ସଭା ପାଇଁ ନିର୍ବାଚନ ହେଲା । କଂଗ୍ରେସର ଦଳୀୟ ପ୍ରାର୍ଥୀ ଭାବରେ ଝାରସୁଗଡ଼ାର କେନ୍ଦୁପତ୍ର ବ୍ୟବସାୟୀ ଶ୍ରୀ ଶିଓମଙ୍ଗଳ ଅଗସ୍ତି ମନୋନୀତ ହେଲେ ଏବଂ ତାଙ୍କ ବିରୁଦ୍ଧରେ ଡକ୍ଟର ସୂପକାର ସ୍ୱାଧୀନ ପ୍ରାର୍ଥୀ ଭାବରେ ଠିଆ ହେଲେ । ହୀରାକୁଦ ବାନ୍ଧ ବିରୋଧୀ ଆନ୍ଦୋଳନ ଯୋଗୁଁ ସମ୍ବଲପୁରରେ କଂଗ୍ରେସ ଅପ୍ରିୟ ହୋଇ ପଡ଼ିଥିଲା । ଅଧିକାଂଶ ନେତା ଡ଼ଃ ସୂପକାରଙ୍କୁ ସମର୍ଥନ ଜଣାଇଲେ । ଅଗସ୍ତିଙ୍କ ପ୍ରବଳ ଭୋଟ ପ୍ରଚାର, ଅର୍ଥବ୍ୟୟ ସତ୍ତ୍ୱେ ଡ଼ଃ ସୂପକାର ଭୋଟରେ ଜୟ ଲାଭ କରିଥିଲେ ଏବଂ 1949 ମସିହା ମାର୍ଚ୍ଚ ମାସ ପ୍ରଥମ ସପ୍ତାହରେ ଓଡ଼ିଶା ବିଧାନ ସଭାର ସ୍ୱାଧୀନ ସଭ୍ୟ ରୂପେ ଶପଥ ଗ୍ରହଣ କରିଥିଲେ । ସେତେବେଳେ ତାଙ୍କର ବୟସ ମାତ୍ର 34 ବର୍ଷ "ବିଧାନ ସଭାରେ ସେଇଟା ଥିଲା ମୋର ପ୍ରଥମ ପ୍ରବେଶ । ତଥାପି ସମସ୍ତ ଆନ୍ତରିକତା, ବୁଦ୍ଧି, ବିବେକ ସହିତ ମୁଁ ସେହି ହଜାର ହଜାର ପରିବାରଙ୍କର ଭାଷାକୁ ବିଧାନ ସଭାରେ ପ୍ରତିଧ୍ୱନିତ କରିବାକୁ ଚାହୁଁଥିଲି । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କଠାରୁ ମୁଁ ମୂଳରୁ ଯଥେଷ୍ଟ ସହାନୁଭୂତି ପାଉଥିଲି" (ତତ୍ରୈବ ପୃ. 170) ।

ସେତେବେଳେ ଓଡ଼ିଶା ବିଧାନ ସଭାର ବୈଠକ ରେଭେନ୍‌ସା କଲେଜ ହଲରେ ବସୁଥାଏ । ଡ଼ଃ ସୂପକାରଙ୍କ ପ୍ରଥମ ବଜେଟ ସମାଲୋଚନା ପାଇଁ ମୁଁ ଡ଼ାଲଟନ୍ ଆଦିଙ୍କର ପୁସ୍ତକ ଅଧ୍ୟୟନ କରି ଏକ ଭଲ ବକ୍ତୃତା ଲେଖି ପ୍ରସ୍ତୁତ କଲି ଓ ମୁଖସ୍ଥ ପ୍ରାୟ କଲି । ତହିଁ ଆରଦିନ ମୋର ପ୍ରଥମ ଭାଷଣ । ସେ ଭାଷଣଟି ସାମ୍ବାଦିକ, ଶ୍ରୀ ରାମଚନ୍ଦ୍ର ଦାସ ଓ ଅନ୍ୟମାନଙ୍କ ଦ୍ୱାରା ସମ୍ବାଦପତ୍ର ମାନଙ୍କରେ ପ୍ରଶଂସିତ ହେଲା (ତତ୍ରୈବ ପୃ. 171) । ହୀରାକୁଦ ବୃତ୍ତି ଅଞ୍ଚଳ ବା ସମ୍ବଲପୁର ଜିଲ୍ଲାର ସମସ୍ୟାମାନଙ୍କ ଛଡ଼ା ସେ ବିଭିନ୍ନ ବିଷୟରେ ପ୍ରଶ୍ନ ପଚାରୁଥିଲେ ଏବଂ ଅତିରିକ୍ତ ପ୍ରଶ୍ନ ପଚାରିବାରେ ଦକ୍ଷତା ଅର୍ଜନ କରିଥିଲେ । ଓକିଲ ହିସାବରେ ଜେରା କରିବାରେ ପୂର୍ବରୁ କୌଶଳ ଶିକ୍ଷା କରିଥିଲେ ଏବଂ ବିଧାନ ସଭାର ଅତିରିକ୍ତ ପ୍ରଶ୍ନ ଥିଲା ତାର ମାର୍ଜିତ ସଂସ୍କରଣ । ସେ ଏ ସମ୍ପର୍କରେ କହନ୍ତି, "ବିରୋଧୀ ପକ୍ଷର ଅଧିକାଂଶ ସଭ୍ୟ ଓ ନେତାମାନେ ସେ ସମୟରେ ନରମପନ୍ଥୀ ଓ ସରକାରଙ୍କୁ କଠୋର ସମାଲୋଚନା କରୁନଥିଲେ । ବିରୋଧୀ ପକ୍ଷର ନେତାମାନେ ମୋର ବକ୍ତୃତାମାନଙ୍କୁ ହୁଏତ କଠୋର ସମାଲୋଚନା ବୋଲି ଭାବୁଥିଲେ । ଯେଉଁ ଦିନ ମୁଁ ବଜେଟ୍‌ରେ କାଟ ପ୍ରସ୍ତାବ ଆଗତ କରି ତହିଁ ଉପରେ ଭୋଟଦାବୀ କଲି ତାହା ଶୁଣି ସମସ୍ତେ ତାଟକା ହେଲେ । ବୋଧହୁଏ ହୀରାକୁଦ ବନ୍ଧ ଖର୍ଚ୍ଚ ବିଷୟରେ କାଟ ପ୍ରସ୍ତାବ ଥିଲା । ଏଥିରେ ମୁଁ ସ୍ୱଳ୍ପ ସଂଖ୍ୟକ ସମର୍ଥନ ସୁଦ୍ଧା ପାଇଲି ନାହିଁ । ତଥାପି ମୁଁ ମୋର ଏକକ ପ୍ରତିବାଦ ଲିପିବଦ୍ଧ କରାଇବାକୁ ଚାହୁଁଥିଲି (ତେତ୍ରୈବ ପୃ. 171 )।

କ୍ରମେ ଡ଼ଃ ସୂପକାର ବିରୋଧୀ ଦଳର ଏକ ମୁଖ୍ୟ ଭୂମିକା ଗ୍ରହଣ କଲେ । ତାଙ୍କର ବକ୍ତୃତା, ପ୍ରଶ୍ନ ଆଦି ସମ୍ବାଦ ପତ୍ରରେ ନିୟମିତ ଭାବରେ ପ୍ରକାଶିତ ହେଲା । ଅବିଚଳିତ ଭାବରେ ସେ ସରକାରଙ୍କୁ ତୀବ୍ର ସମାଲୋଚନା କଲେ । 1949 ରୁ 1951 ମସିହାର ବିଧାନ ସଭା ବିବରଣୀରେ ସେଗୁଡ଼ିକ ଲିପିବଦ୍ଧ ହୋଇ ତାଙ୍କ କର୍ମପ୍ରବଣତାର ସାକ୍ଷର ବହନ କଲେ ।

1951 ମସିହାର ଛାତ୍ର ଆନ୍ଦୋଳନ (ଦେରମା ବୃଦ୍ଧି ଯୋଗୁଁ )ରେ ବୋଧହୁଏ ସରକାର ହୃଦୟଙ୍ଗମ କଲେ ଯେ ଏକ କଲେଜର ଗୋଟିଏ ଅଂଶରେ ରାଜ୍ୟର ବିଧାନ ସଭା ବସାଇବା ଓ ତହିଁର ଅଫିସ ପରିଚାଳନା କରିବା ବାଞ୍ଛନୀୟ ନୁହେଁ । ପୂର୍ବରୁ ସରକାର ରାଜଧାନୀକୁ ଭୁବନେଶ୍ୱର ଉଠାଇନେବା ପାଇଁ ନିଷ୍ପତ୍ତି କରିଥିଲେ ଏବଂ ଭୁବନେଶ୍ୱରରେ କୋଠାବାଡ଼ି ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା । 1951 ମସିହା ଶେଷ ଭାଗରେ ଓଡ଼ିଶା ବିଧାନ ସଭା ବୈଠକ ଭୁବନେଶ୍ୱରରେ ଏକ ଟିଣ ତିଆରି ଗୋଦାମ ଘରେ ଡକାଗଲା । ମନ୍ତ୍ରୀ ଓ ସଭ୍ୟମାନେ ରହିବା ପାଇଁ ବହୁ ଅସୁବିଧା ଅନୁଭବ କରିଥିଲେ ।

ବିରଳା କମ୍ପାନୀର କାଗଜକଳର ଆବର୍ଜନା ଇବ ନଦୀର ପାଣିକୁ ବିଷାକ୍ତ କଲା । ଫଳରେ ମାଛମାନେ ମଲେ ଏବଂ ଲୋକମାନେ ତାର ଦୂଷିତ ଜଳ ପାଣିକୁ ବ୍ୟବହାର କଲେ ନାହିଁ ଏବଂ ଯେଉଁମାନେ ବାଧ୍ୟରେ କଲେ ବିଭିନ୍ନ ପେଟ ଓ ଚର୍ମ ରୋଗରେ ଆକ୍ରାନ୍ତ ହେଲେ । ଉକ୍ତ ଓରିଏଣ୍ଟ କାଗଜ କଳର ସେକ୍ରେଟାରୀ, ଶ୍ରୀ ଘନଶ୍ୟାମ ଦାସ ଝିଗନୀ ସେତେବେଳେ

ଶିଳ୍ପପତିମାନଙ୍କର ପ୍ରତିନିଧିରୂପେ ଓଡ଼ିଶା ବିଧାନସଭାରେ ସଭ୍ୟ ହୋଇଥିଲେ । ବିରଜା କମ୍ପାନୀର ସର୍ବତ୍ର ଅଖଣ୍ଡ ପ୍ରତିପତ୍ତି । ନଦୀଜଳ ପ୍ରଦୂଷଣ ପ୍ରତିକାର ପାଇଁ ବିଧାନ ସଭାରେ ଡାକ୍ତର ସୂପକାର ସ୍ୱର ଉତ୍ତୋଳନ କଲେ ଏବଂ ଶେଷରେ ଆଇନ ଅଦାଲତର ଆଶ୍ରୟ ନେଲେ । ଯଥେଷ୍ଟ ଆତ୍ମ ବିଶ୍ୱାସର ସହିତ ଜବାବ ସୁଆଲ କରି ଏବଂ ଏଥିପାଇଁ ବହୁ ଶ୍ରମ ଓ ଅର୍ଥ ବ୍ୟୟ କରି ଏପରି ସମାଜ ବିରୋଧୀ କାର୍ଯ୍ୟର ତୀବ୍ର ବିରୋଧ କରିଥିଲେ । ଶେଷରେ ସେ ଉକ୍ତ ମୋକଦ୍ଦମାରେ ଜୟ ଲାଭ କରି ସମଗ୍ର ସମ୍ବଲପୁର ଜିଲ୍ଲାରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ । ଓରିଏଣ୍ଟ କାଗଜ କଳ ପୁଣି ହାଇକୋର୍ଟରେ ଅପିଲ କରି ତାର ଏକ ନାଟକୀୟ ପରିଣତି ଘଟାଇଥିଲେ ।

## ସାଧାରଣ ନିର୍ବାଚନ, 1951 ଓ ଓଡ଼ିଶା ବିଧାନ ସଭାରେ ବିରୋଧୀ ଦଳ ନେତା

1951 ମସିହା ଶେଷାର୍ଦ୍ଧରେ ସ୍ୱାଧୀନ ଭାରତର ସାବାଳକ ଭୋଟରେ ପ୍ରଥମ ନିର୍ବାଚନ ଅନୁଷ୍ଠିତ ହେଲା । ସେତେବେଳେ କଂଗ୍ରେସ ଛଡ଼ା କମ୍ୟୁନିଷ୍ଟ, ଜନସଂଘ, ପ୍ରଜାସମାଜବାଦୀ, ହିନ୍ଦୁ ମହାସଭା ଆଦି ଦଳ ଗଢି ଉଠିଥିଲେ ଏବଂ ଓଡ଼ିଶାରେ ପ୍ରଦେଶର ବିଶେଷ ସମସ୍ୟାମାନଙ୍କୁ କେନ୍ଦ୍ର କରି ଏକ ପ୍ରାଦେଶିକ ଦଳ ଗଠିତ ହୋଇଥିଲା । ଗଡଜାତ ଅଞ୍ଚଳମାନଙ୍କରେ ଏହି ଦଳ ଖୁବ୍ ଲୋକପ୍ରିୟ ହୋଇଥିଲେ । ସମ୍ବଲପୁର ସହର ଏହି ଦଳର ମୁଖ୍ୟ କେନ୍ଦ୍ର ହେଲା । ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ ଯୋଗୁଁ ସମ୍ବଲପୁର ସହରର କଂଗ୍ରେସ ଦଳ ଅପ୍ରିୟ ହୋଇ ପଡ଼ିଥିଲା । 1949 ରୁ 1951 ମଧ୍ୟରେ ଡକ୍ଟର ସୂପକାର ଓଡ଼ିଶା ବିଧାନସଭାରେ ଓ ବାହାରେ ବିଭିନ୍ନ କାର୍ଯ୍ୟକରି ଲୋକପ୍ରିୟ ହୋଇଥିଲେ । 1951ରେ ତାଙ୍କୁ ଗଣତନ୍ତ୍ର ପ୍ରାର୍ଥୀ ରୂପେ ମନୋନୀତ କରାଗଲା ।

ସେତେବେଳେ କିନ୍ତୁ ସମଗ୍ର ଭାରତ ବର୍ଷରେ କଂଗ୍ରେସ ଦଳର ଅଖଣ୍ଡ ପ୍ରତିପତ୍ତି । 1952 ମସିହାରେ ସାବାଳକ ଭୋଟ ପଦ୍ଧତିର ପ୍ରଚଳନ ଯୋଗୁଁ ଭୋଟର ସଂଖ୍ୟା ବହୁଗୁଣିତ ହେଲା । ହାରାହାରି ଏକ ଲକ୍ଷ ବିଶିଷ୍ଟ ଏକକ ନିର୍ବାଚନ ମଣ୍ଡଳୀର ଭୋଟ ସଂଖ୍ୟା ଥିଲା 50 ହଜାରରୁ ଅଧିକ । ହରିଜନ ଆଦିବାସୀ ପ୍ରଭୃତି ଭୋଟାଧିକାର ପାଇଲେ ଏବଂ ସେମାନେ ଥିଲେ ଗାନ୍ଧୀଜୀଙ୍କର ଅନୁରକ୍ତ । ତେଣୁ କଂଗ୍ରେସ ପ୍ରାର୍ଥୀମାନେ ବହୁ ସଂଖ୍ୟାରେ ଜୟଯୁକ୍ତ ହେଲେ । ତେବେ ଗଣତନ୍ତ୍ର ଦଳ ଉକ୍ତ ସାଧାରଣ ନିର୍ବାଚନରେ ପର୍ଯ୍ୟାପ୍ତ ସାଫଲ୍ୟ ଅର୍ଜନ କରିଥିଲେ । 1952 ବିଧାନସଭାରେ ଶ୍ରଦ୍ଧାକର ଏହି ଦଳର ନେତା ନିର୍ବାଚିତ ହେଲେ । କଂଗ୍ରେସ ଦଳ ବିଧାନ ସଭାରେ 64 ଟି ଆସନ ଲାଭକରି ପୂର୍ଣ୍ଣ ସଂଖ୍ୟା ଗରିଷ୍ଠ ଦଳ ହୋଇପାରିଲାନାହିଁ । ଗଣତନ୍ତ୍ର ପରିଷଦ 32ଟି, ପ୍ରଜାସମାଜବାଦୀ ଦଳ ମାତ୍ର 11ଟି, କମ୍ୟୁନିଷ୍ଟ ଦଳ ମୋଟ 7ଟି ସ୍ଥାନ ପାଇଥିଲେ । ସ୍ୱାଧୀନ ସଭ୍ୟମାନଙ୍କର ମୋଟ ସଂଖ୍ୟା 20 ରୁ କିଛି ଅଧିକ ଥିଲା । ତେଣୁ ଶ୍ରଦ୍ଧାକର ଗଣତନ୍ତ୍ର ପରିଷଦର ନେତା ଭାବରେ ବିରୋଧ ଦଳର ନେତା ହେବାର ଗୌରବ ଲାଭ କଲେ ।

ନିର୍ବାଚନ ପରେ ସମସ୍ତ ବିରୋଧୀ ଦଳର ସଭ୍ୟମାନଙ୍କୁ ଏକତ୍ରିତ କରି ଏକ ଅଣ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବାର ଉଦ୍ୟମ ହୋଇଥିଲା । ଏଥିପାଇଁ ଡକ୍ଟର ସୂପକାର ବିଭିନ୍ନ ଅଣ କଂଗ୍ରେସ ନେତାମାନଙ୍କୁ ଡକାଇଥିଲେ ମାତ୍ର କମ୍ୟୁନିଷ୍ଟ ଦଳର କେନ୍ଦ୍ର ନେତାମାନେ ଗଣତନ୍ତ୍ର ପରିଷଦର ନେତୃତ୍ୱରେ ପରିଚାଳିତ ହେବାକୁ ଅସ୍ୱୀକାର କଲେ ଏବଂ ଏହା ରାଜରାଜୁଡ଼ା ଦଳ ହୋଇଥିବାରୁ ତା ସହିତ ସହଯୋଗ କରିବେ ନାହିଁ । ତା'ଫଳରେ ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ଶ୍ରୀ ନବକୃଷ୍ଣ ଚୌଧୁରୀ ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ଆହ୍ୱାନ କଲେ । "ଆମେ ବିରୋଧୀ ଦଳରେ ଥିଲୁ । ଆମର ବିରୋଧୀ ଦଳ ଅଭିଜ୍ଞ ଓ ଦୂରଦର୍ଶୀ ନେତାମାନଙ୍କ ଦ୍ୱାରା ଅଳଂକୃତ ଥିଲା । ଗୁଣାତ୍ମକ ଦୃଷ୍ଟିରୁ ବିରୋଧୀ ପକ୍ଷ ସରକାରୀ ପକ୍ଷଠାରୁ ଅଧିକ ଓଜନିଆ ଥିଲା ବୋଲି କୁହାଯାଇ ପାରେ । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଶ୍ରୀ ଦିବାକର ପଟ୍ଟନାୟକ, ଶ୍ରୀ ଗୋବିନ୍ଦ ପ୍ରଧାନ, ଖଲ୍ଲିକୋଟର ରାଜା ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେବଙ୍କର ବିଧାନସଭାରେ ବହୁ ବର୍ଷର ଅଭିଜ୍ଞତା ଓ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କର ବିରାଟ ବ୍ୟକ୍ତିତ୍ୱ ବିରୋଧୀ ପକ୍ଷର ଗୌରବ ବୃଦ୍ଧି କରିଥିଲା ।" (ତତ୍ରୈବ ପୃ. 197) ।

ଡକ୍ଟର ସୂପକାର ବିରୋଧୀ ଦଳ ନେତା ହୋଇଥିବାରୁ ଅଧିକାଂଶ ବିତର୍କରେ ପ୍ରଥମେ ତାଙ୍କୁ ଭାଷଣ ଦେବାକୁ ପଡୁଥିଲା । ଏହି ଭାଷଣମାନଙ୍କୁ ସେ ସରସ ଅଥଚ ଗମ୍ଭୀର କରିବାକୁ ଚେଷ୍ଟା କରୁଥିଲେ । ଖବର କାଗଜର ଖବର ପତ୍ରି ବିଧାନ ସଭାର ବିବରଣୀ ସାଧାରଣତଃ କିଛି ସମୟ ପରେ ବାହାରି ହୋଇଥାଏ । ମାତ୍ର ଶ୍ରଦ୍ଧାକରଙ୍କର ଭାଷଣରେ "ସାହିତ୍ୟିକ ଛଟା ଓ ଛିଟା" ଭରି ରହିଥିଲା ଓ ସାର୍ବକାଳୀନ ପାଠ୍ୟ ଭାବରେ ଗୁରୁତ୍ୱ ଲାଭ କରିଥିଲା । ପରିପୂରକ ପ୍ରଶ୍ନ ପଚାରିବାରେ ସେ ଅନ୍ୟମାନଙ୍କ ତୁଳନାରେ ଅଧିକ ଆଗ୍ରହୀ । ଉଭୟ ପକ୍ଷ ପ୍ରାୟ ସମସଂଖ୍ୟକ ହୋଇଥିବାରୁ ଅନେକ ଥର ଭୋଟରେ ଡ଼ିଭିଜନ ଦାବି କରାଯାଉଥିଲା । ଅନେକ ସମୟରେ ଅତର୍କିତ ଡ଼ିଭିଜନ ମଧ୍ୟ ହେଉଥିଲା । ପ୍ରତିଦିନ ଡଃ ସୂପକାରଙ୍କ ପ୍ରଶ୍ନ ଓ ଭାଷଣ ଓଡ଼ିଆ ଓ ଇଂରେଜି ଖବର କାଗଜମାନଙ୍କରେ ପ୍ରକାଶିତ ହେଉଥିଲା । ସରକାର ଓ ବାଚସ୍ପତିଙ୍କ ବିରୁଦ୍ଧରେ ଦୁଇଥର ଅନାସ୍ଥା ପ୍ରସ୍ତାବ ମଧ୍ୟ ଆଗତ ହୋଇଥିଲା ।

## ଦେଶ ମିଶ୍ରଣ ଆନ୍ଦୋଳନ

1952 ମସିହା ପରବର୍ତ୍ତୀ ବିଧାନ ସଭାରେ ଦେଶ ମିଶ୍ରଣ ସମସ୍ୟା ବିରୋଧୀ ପକ୍ଷ ସଭ୍ୟମାନଙ୍କୁ ବିଶେଷଭାବେ ବିବ୍ରତ କରିଥିଲା । ବିଶେଷତଃ ଷଢେଇକଳା ଓ ଖରସୁଆଁ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ବିହାରରେ ମିଶିବା ଫଳରେ ସମସ୍ତଙ୍କ ମନସ୍ତାତ୍ତ୍ୱିକ ଗ୍ଳାନି ଅନୁଭବ କରିବାକୁ ହୋଇଥିଲା । ଓଡ଼ିଶାରେ ମିଶିବା ପାଇଁ ଷଢେଇକଳା ରାଜା ମକଦ୍ଦମା କରିଥିଲେ ।

ମାତ୍ର ସୁନାରାମ ସେରେନ ଆଦିଙ୍କର ଓଡ଼ିଶା ବିରୋଧୀ କାର୍ଯ୍ୟକଳାପ ବିହାରର କେତେକ ନେତାଙ୍କୁ ଉତ୍ସାହିତ କରିଥିଲା । ଓଡ଼ିଶା ବିଧାନ ସଭାରେ ଗଣତନ୍ତ୍ର ପରିଷଦ ତରଫରୁ ଏଥିପାଇଁ ବିଭିନ୍ନ ପଦକ୍ଷେପ ନିଆଯାଇଥିଲା । 1953 ମସିହାରେ ଭାଷା ସୂତ୍ରରେ ପ୍ରଦେଶ ଗଠନ ଏକ ଜଟିଳ ସମସ୍ୟା ସୃଷ୍ଟି କରିଥିଲା । ମାନ୍ଦ୍ରାଜର ସବୁ ତେଲୁଗୁଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ଆନ୍ଧ୍ରପ୍ରଦେଶ କରିବାକୁ ଆନ୍ଦୋଳନ ହେଲା । ବିଶିଷ୍ଟ ଗାନ୍ଧୀବାଦୀ ନେତା ପୋଟ୍ଟି ଶ୍ରୀ ରାମୁଲୁ ଆମରଣ ଅନଶନ କରି ପ୍ରାଣତ୍ୟାଗ କଲେ । ସେହି ବର୍ଷ ଶେଷ ଭାଗରେ କେନ୍ଦ୍ର ସରକାର ଆନ୍ଧ୍ରପ୍ରଦେଶ ଗଠନ କଲେ ଏବଂ ଭାଷା ସୂତ୍ରରେ ପ୍ରଦେଶ ଗଠନ ପାଇଁ ଏକ କମିଶନ ବସାଇଲେ । ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଓ ସୁପ୍ରିମକୋର୍ଟର ଭୂତପୂର୍ବ ବିଚାରପତି ସୟଦ ଫଜଲ ଅଲ୍ଲୀ ଏହି କମିଶନର ଅଧ୍ୟକ୍ଷ ହୋଇଥିଲେ ମାତ୍ର ଓଡ଼ିଆମାନଙ୍କର ସମସ୍ତ ଆଶାକୁ ଧୂଳିସାତ କରି 1955 ମସିହାରେ ରାଜ୍ୟ ପୁର୍ନଗଠନ କମିଶନର ତାଙ୍କ ରିପୋର୍ଟ ଦେଲେ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ସେମିତି ବିଭିନ୍ନ ରାଜ୍ୟରେ ଅଙ୍ଗୀଭୁତ ହୋଇ ରହିଗଲା । ଓଡ଼ିଶାର ଜନତାଙ୍କ ମନରେ ବିଦ୍ରୋହର ଅଗ୍ନି ଜଳି ଉଠିଲା । ରାଜ୍ୟ ସାରା ପ୍ରବଳ ଆନ୍ଦୋଳନ ହେଲା । 1956 ମସିହାରେ ପୁରୀ ଛାତ୍ର ଆନ୍ଦୋଳନରେ ବେଙ୍ଗ ପାଣିଆ ଗୁଳି ଚୋଟରେ ମୃତ ହୋଇ ସହୀଦ୍ ହେଲା । ସମ୍ବଲପୁରରେ ମଧ୍ୟ ଗଣ ଆନ୍ଦୋଳନ ଖୁବ୍ ତୀବ୍ର ହୋଇ ଉଠିଲା । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହିତ ବ୍ରହ୍ମପୁର ଯାଇଥିଲା ବେଳେ ଡଃ ସୂପକାର ଖବର ପାଇଲେ ଯେ ତାଙ୍କ ପୁଅ ହରିଶ୍ ଚନ୍ଦ୍ର ପୋଲିସ ଗୁଳି ଆଘାତରେ ବଡ଼ ସଂକଟଜନକ ଅବସ୍ଥାରେ ପଡ଼ିଛି । ତେଣୁ କାଳବିଳମ୍ବ ନକରି ତାଙ୍କୁ ସମ୍ବଲପୁର ଯିବାକୁ ପଡ଼ିଲା । ବହୁକଷ୍ଟରେ ଯାଇ ସମ୍ବଲପୁରରେ ପହଞ୍ଚି ଜାଣିବାକୁ ପାଇଲେ ଯେ ସେ ନିଶ୍ଚିତ ମୃତ୍ୟୁମୁଖରୁ ଅତି ଅଳ୍ପକେ ରକ୍ଷା ପାଇଯାଇଛି ।

ଉକ୍ତ ବର୍ଷ ବଜେଟ୍ ଅଧିବେଶନ ସମୟରେ କଂଗ୍ରେସ ଦଳ ସରକାର ତୀବ୍ର ବିରୋଧର ସମ୍ମୁଖୀନ ହେଲେ । ରାଜ୍ୟ ପୁନର୍ଗଠନ କମିଶନ ରିପୋର୍ଟ ପ୍ରକାଶିତ ହେବା ଠିକ୍ ପରେ ରାଜ୍ୟ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେବାକୁ ସ୍ଥିର କରିଥିଲେ ଏବଂ ତତ୍‌କାଳୀନ ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ଶ୍ରୀ ବିଶ୍ୱନାଥ ଦାଶ ମଧ୍ୟ ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ଥିଲେ । ଶ୍ରୀଯୁକ୍ତ ଦାଶ ଓ ଶ୍ରୀଯୁକ୍ତ ଚୌଧୁରୀ ଓଡ଼ିଶା ବାସୀଙ୍କ ଅସନ୍ତୋଷ ଜଣାଇ ଇସ୍ତଫା ଦେବାକୁ ଦିଲ୍ଲୀ ଗଲେ । ମାତ୍ର ପଣ୍ଡିତ ଜବାହାରଲାଲଙ୍କ ପ୍ରବୋଧନା ଫଳରେ ସେମାନେ ମତ ପରିବର୍ତ୍ତନ କଲେ । ହଠାତ୍ ସରକାରଙ୍କ ତରଫରୁ ଆନ୍ଦୋଳନକୁ କଠୋର ଭାବରେ ଦମନ କଲେ । ଏହା ଫଳରେ କଂଗ୍ରେସ ସରକାର ରାଜ୍ୟରେ ଖୁବ୍ ନିନ୍ଦିତ ହେଲା ଏବଂ ଏହି ଆନ୍ଦୋଳନ ପରେ କଂଗ୍ରେସ ଅଧିକ ଦୁର୍ବଳ ହୋଇ ପଡ଼ିଲା ।

ଦେଶମିଶ୍ରଣ ଆନ୍ଦୋଳନ ମଧ୍ୟ ବ୍ୟର୍ଥ ହେଲା । ସେ ସମୟର ଅବସ୍ଥାକୁ ଅନୁଧ୍ୟାନ କରି ସେ ଯଥାର୍ଥରେ କହିଛନ୍ତି, "ସେ ସମୟରେ ନବବାବୁଙ୍କ ବଦଳରେ ଅନ୍ୟ କେହି ଟାଣୁଆ ଲୋକ ଯଦି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତେ, ତେବେ ଓଡ଼ିଶାର ଏହି ଆନ୍ଦୋଳନରେ କିଛି ସଫଳତା ମିଳିଥାନ୍ତା କି ? ଏ ପ୍ରଶ୍ନ ମନକୁ ସମୟ ସମୟରେ ଆଲୋଚିତ କରେ । କିନ୍ତୁ ଏସବୁର

ସମ୍ଭାବନା ବିଷୟକୁ କଳ୍ପନାରେ କି ଲାଭ ? ନବବାବୁ ଭଲ ଲୋକ ଓ ଭଦ୍ରଲୋକ । ମାତ୍ର ସେ ଟାଣୁଆ ଲୋକ ନଥିଲେ । ସବୁଥିରେ ତାଙ୍କର ସର୍ବୋଦୟ ଦୃଷ୍ଟିଭଙ୍ଗୀ'' (ତତ୍ରୈବ ପୃ. 211) । ପଣ୍ଡିତ ଗୋଦାବରୀଶ ଏହି ଆୟୋଜନରେ ଝାସ ଦେଇ ପୀଡ଼ିତ ହେଲେ ଏବଂ ଇହଧାମରୁ ବିଦାୟ ନେଲେ ।

1952ରୁ 1957 ମସିହା ପର୍ଯ୍ୟନ୍ତ ଡ଼ାଃ ସୂପକାରଙ୍କ ଜୀବନର ଏକ ଉଜ୍ଜ୍ୱଳ ଅଧ୍ୟାୟ । ଏହି ସମୟରେ ସେ ବିରୋଧୀ ଦଳ ନେତା ଭାବରେ ବିଧାନ ସଭା ଭିତରେ ଓ ବାହାରେ ଖୁବ୍ ପ୍ରଶଂସିତ ହୋଇଥିଲେ । ଓଡ଼ିଶାର ଓ ଓଡ଼ିଶା ବାହାରର ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ବନ୍ଧୁତ୍ୱ ଲାଭ କରିଥିଲେ । ବିରୋଧୀ ଦଳ ନେତା ଭାବରେ ସେ ପବ୍ଲିକ ଏକାଉଣ୍ଟସ କମିଟିର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ନିଜର କର୍ମନିଷ୍ଠା ବଳରେ ସେ ଓଡ଼ିଆମାନଙ୍କର ମଙ୍ଗଳ ନିମନ୍ତେ ସର୍ବଦା ସଚେତନ ଥିଲେ ଏବଂ ସରକାରଙ୍କ କାର୍ଯ୍ୟପ୍ରତି ସତର୍କ ଦୃଷ୍ଟି ରଖିଥିଲେ ।

## ପାରିବାରିକ ଝଡ଼ଝଞ୍ଜା

ଡକ୍ଟର ସୂପକାର କର୍ମଦକ୍ଷ ଥିଲେ ହେଁ ତାଙ୍କର ପାରିବାରିକ ଜୀବନ ସୁଖମୟ ଓ ଶାନ୍ତିପୂର୍ଣ୍ଣ ହୋଇ ପାରିନଥିଲା । ତାଙ୍କର ଧର୍ମପତ୍ନୀ ଓ ମାଉସୀମାଆଙ୍କ ମଧ୍ୟରେ ମନୋମାଳିନ୍ୟ କ୍ରମାଗତ ରହିବାରୁ ଅଧ୍ୟୟନ ଓ ପରେ ନିଜର ବୃତ୍ତିରେ ବାଧା ସୃଷ୍ଟି ହୋଇଥିଲା । ଭାଇଭଉଣୀମାନଙ୍କର ଭରଣ ପୋଷଣ, ଅଧ୍ୟୟନ, ବିବାହ ଆଦିରେ ସେ ସର୍ବଦା ଚିନ୍ତିତ ଓ ବ୍ୟସ୍ତ ରହୁଥିଲେ । ନିଜର ଉର୍ବର ଜମିତକ ହୀରାକୁଦ ବନ୍ଧର ବୁଡ଼ି ଅଞ୍ଚଳରେ ଥିବାରୁ ତାଙ୍କ ପିତା ପୂର୍ବରୁ ବିଶେଷ କଷ୍ଟ ଅନୁଭବ କରିଥିଲେ ଏବଂ ଆର୍ଥିକ ଅଭାବ ଅସୁବିଧା ମଧ୍ୟ ଭୋଗ କରିଥିଲେ । ଶେଷରେ ତାଙ୍କର ପତ୍ନୀ ଯକ୍ଷ୍ମା ରୋଗାକ୍ରାନ୍ତ ହେବାରୁ ନିଜ ପିଲାମାନଙ୍କର ଦାୟିତ୍ୱ ଆଇଶାଶୁ ରେବତୀ ପଣ୍ଡିଆଣୀଙ୍କ ଉପରେ ପଡ଼ିଥିଲା । ପତ୍ନୀଙ୍କର ଚିକିତ୍ସା ନିମନ୍ତେ ବହୁତ ଅସୁବିଧା ସହିଲେ ଓ ଅର୍ଥ ବ୍ୟୟ କଲେ ସୁଦ୍ଧା ସୁଫଳ ମିଳିନଥିଲା । ବୃଦ୍ଧାମାତାଙ୍କ ମୃତ୍ୟୁ ସମୟରେ ଶ୍ରଦ୍ଧାକର ଓ ତାଙ୍କର ଭଉଣୀମାନେ ପାଖରେ ରହି ସେବାଯତ୍ନ କରୁଥିଲେ । ମାତ୍ର ସ୍ତ୍ରୀଙ୍କର ଅନ୍ତିମ ଶଯ୍ୟା ନିକଟରେ ତାଙ୍କର ତିନିପୁଅଙ୍କୁ ଛାଡ଼ିବାର ଉପାୟ ନଥିଲା ରୋଗ ସଂକ୍ରମଣ ଭୟରେ । ମାତାର ଶେଷାବସ୍ଥାରେ ମଧ୍ୟ ତାଙ୍କର ସ୍ନେହର ପିଲାମାନଙ୍କୁ ଦୂରେଇ ରଖିବା ଡଃ ସୂପକାରଙ୍କ ପକ୍ଷେ କଷ୍ଟଦାୟକ ଥିଲା । 1947 ମସିହା ଜାନୁୟାରୀ ମାସ 9 ତାରିଖରେ ତାଙ୍କର ପତ୍ନୀ ପରଲୋକ ଗମନ କଲେ ଏବଂ ଗାଁରେ ତାଙ୍କର ଅନ୍ତିମ ସଂସ୍କାର ଓ ଶୁଦ୍ଧିକ୍ରିୟା ସଂପାଦିତ ହେଲା ।

ସାଧାରଣ ଜୀବନ ଯୋଗୁଁ ଦୂରରେ ରହିବାରୁ ଡଃ ସୂପକାର ନିଜ ପିଲାମାନଙ୍କର ପାଠପଢ଼ା ପ୍ରତି ଦୃଷ୍ଟି ଦେଇ ପାରୁନଥିଲେ । ସେ ତେଣୁ କ୍ଷୁବ୍ଧ ପ୍ରକାଶ କରି ଲେଖିଛନ୍ତି, "ମାସ ମାସ ଧରି ବାହାରେ ରହୁଥିଲି । ରାଜନୀତିରେ ଲିପ୍ତ ହେବା ବ୍ୟକ୍ତିମାନଙ୍କର

ଜୀବନରେ ଏହି ବିଡମ୍ବନା ପ୍ରାୟ ଅପରିହାର୍ଯ୍ୟ । ବିଶେଷତଃ ଯେଉଁ ସନ୍ତାନମାନେ ମାତୃହୀନ, ସେମାନେ ପିତୃସ୍ନେହରୁ ମଧ୍ୟ ବଞ୍ଚିତ ହୁଅନ୍ତି" (ତତ୍ରୈବ ପୃ. 164) । ସେ ପୁଣି କହିଛନ୍ତି (ପୃ. 187) " ଆମର ପରିବାର ବିରଟ ଥିଲ କହିଲେ ଚଳେ । ଆର୍ଥିକ ସଚ୍ଛଳତା ବିଶେଷନଥିଲ । ମୋର ଶିଶୁ ପୁତ୍ରମାନଙ୍କର ରକ୍ଷଣାବେକ୍ଷଣ ଥିଲ ମୋ ପକ୍ଷରେ ଏକ ଗୁରୁତ୍ୱପୂର୍ଣ୍ଣ ପାରିବାରିକ ସମସ୍ୟା । ସେମାନଙ୍କର ଉପଯୁକ୍ତ ଶିକ୍ଷାର ବ୍ୟବସ୍ଥା ଥିଲ ଏକ ଗୁରୁ ଦାୟିତ୍ୱ ମୁଁ ସେଥିପ୍ରତି ଦୃଷ୍ଟି ଦେଇପାରି ନ ଥିଲି । ଉତ୍କଳ ବିଶ୍ୱ ବିଦ୍ୟାଳୟ ସିଣ୍ଡିକେଟ ସଭ୍ୟ ଓ ଓଡ଼ିଶା ବିଧାନସଭାର ସଭ୍ୟ ଥିବାରୁ ମୋତେ ଅନେକ ଥର କଟକ ଓ ଭୁବନେଶ୍ୱରକୁ ଯିବାକୁ ପଡୁଥିଲ । ପ୍ରତିନିଧି ରୂପେ ଲୋକସଂପର୍କ ରକ୍ଷା ପାଇଁ ନିର୍ବାଚନ ମଣ୍ଡଳୀର ବିଭିନ୍ନ ସ୍ଥାନରେ ମଧ୍ୟ ଅନେକ ସମୟ ଗସ୍ତରେ ବ୍ୟସ୍ତ ରହିବାକୁ ପଡୁଥିଲ । ପୁଣି ଆଈ ଶାଶୁଙ୍କର ମୃତ୍ୟୁ ହେବାରୁ ଶ୍ରୀ ସୂପକାରଙ୍କ ସ୍ନାନପୁଅଟି ଦ୍ୱିତୀୟ ବାର ଛେଉଣ୍ଡ ହେଲ ।

ଧର୍ମପତ୍ନୀଙ୍କ ମୃତ୍ୟୁ ସମୟରେ ଡକ୍ଟର ସୂପକାରଙ୍କ ବୟସ ମାତ୍ର 36 ବର୍ଷ । ପୁଣି ତାଙ୍କର ପିଲମାନଙ୍କୁ ଚଳାଇବା ଥିଲ କଷ୍ଟକର କଥା । ତେଣୁ ତାଙ୍କର ଦ୍ୱିତୀୟ ବିବାହ ପାଇଁ ସ୍ୱଗୃହରୁ ଆରମ୍ଭ କରି ବନ୍ଧୁ ବାନ୍ଧବ ଯାଏ ସମସ୍ତେ ଲଗାଇଲେ । ତେଣୁ ସେ ତପସ୍ୱିନୀଙ୍କର ପାଣି ଗ୍ରହଣ କଲେ । ମାତ୍ର ବିବାହର ଠିକ୍ ମାସକ ପରେ ତାଙ୍କର ପତ୍ନୀ ମାନସିକ ରୋଗରେ ଆକ୍ରାନ୍ତ ହେଲେ । ତାଙ୍କର ଅବସ୍ଥା ପୁଣି ଦିନକୁ ଦିନ ଆହୁରି ଖରପ ହେଲ । ଭବିଷ୍ୟତର ଉଜ୍ୱଳ ସ୍ୱପ୍ନ ଧୂଳିସାତ ହେଲ । 1951ରେ ବଡପୁଅ ଗଜେନ୍ଦ୍ର ମାଟ୍ରିକ ପାସ୍ କରି କଲେଜ ପଢା ଆରମ୍ଭ କରିଥାନ୍ତି ।

ବିବାହର ଦୁଇବର୍ଷ ମଧ୍ୟରେ ତାଙ୍କ ସ୍ତ୍ରୀଙ୍କର ସ୍ୱାସ୍ଥ୍ୟ ନିତାନ୍ତ ଶୋଚନୀୟ ହୋଇପଡ଼ିବାରୁ 1952 ମସିହାରେ କିଛି ସମୟ ପାଇଁ ଭୁବନେଶ୍ୱରରେ ରଖିଲେ । ମାତ୍ର ସେ ଶେଷରେ ଅସ୍ଥିଚର୍ମସାର ଓ ଚଳନଶକ୍ତି ରହିତ ହୋଇ ମୁମୂର୍ଷୁ ଅବସ୍ଥାରେ ରହିଲେ ଏବଂ ତାଙ୍କୁ ନେଇ ରାଞ୍ଚିର ମାନସିକ ଆରୋଗ୍ୟାଳୟରେ ଭର୍ତ୍ତିକରଗଲ । ଡଃ ସୂପକାର ପୁଣି ଲେଖିଛନ୍ତି," ମୋର ସ୍ତ୍ରୀ ରାଞ୍ଚି ମାନସିକ ଆରୋଗ୍ୟଶାଳାରେ ପ୍ରାୟ ଚଉଦ ମାସ ରହିଲ ପରେ 1954 ମସିହା ଅଗଷ୍ଟ ବା ସେପ୍ଟେମ୍ବର ମାସରେ ସେଠାରୁ ଛାଡ ପାଇଲେ, ଏହାପରେ ତାଙ୍କର ମାନସିକ ସ୍ୱାସ୍ଥ୍ୟ ସ୍ୱାଭବିକ ଅବସ୍ଥାକୁ ନ ଫେରିଲେ ସୁଦ୍ଧା ସେ ଭୁବନେଶ୍ୱରରେ ଓ ସମ୍ବଲପୁରରେ ମୋ ସାଙ୍ଗରେ ରହିପାରିଲେ ।"

ବିରୋଧୀ ଦଳର ନେତା ରୂପେ ସେ ଅନେକ ସମୟରେ ଘରେ ଅନୁପସ୍ଥିତ ରହିଲେ । ଘରେ ପିଲମାନେ ପିତାମାତାଙ୍କ ଯତ୍ନ ଓ ସ୍ନେହରୁ ବଂଚିତ ହୋଉଥିଲେ । ତଥାପି ବଡ ପୁଅ ଗଜେନ୍ଦ୍ର 1953ରେ କୃତିତ୍ୱର ସହିତ ଆଇ. ଏସ୍. ସି. ପାସ୍ କଲେ ଏବଂ ପରେ ଯାଦବପୁର ଇଂଜିନିୟରିଂ କଲେଜରେ ଅଧ୍ୟୟନ କରିଥିଲେ ।

1955 ମସିହାରେ ବିମାତାର ମୃତ୍ୟୁ ଘଟିବାରୁ ଏବଂ ତାପରେ ସାନ ସାନ ପିଲା ତିନୋଟି ଥିବାରୁ ପାରିବାରିକ ଦୁର୍ଦ୍ଦଶା ଖୁବ୍ ବଢିଗଲା । ବଡ ଭଉଣୀମାନେ ବିବାହ କରିନଥିବାରୁ ଏହି ପିଲାମାନଙ୍କୁ ସମ୍ଭାଳି ନେଇଥିଲେ । ବୃଦ୍ଧ ପିତା ମଧ୍ୟ ବିପତ୍ନୀକ ହୋଇ ଓ ହିରାକୁଦ ବନ୍ଧର ଅତି ଉର୍ବର ଭୂମି ହରାଇ ଘୋର ମାନସିକ ଅଶାନ୍ତି ଅନୁଭବ କଲେ । ତାର କୁପ୍ରଭାବ ଡଃ ସୂପକାରଙ୍କ ପରିବାର ତଥା ତାଙ୍କ ନିଜ ଉପରେ ମଧ୍ୟ ପଡ଼ିଥିଲା ।

1965 ମସିହା ଜୁନ ମାସ 15 ତାରିଖ ଭୁବନେଶ୍ୱରରେ ଉତ୍କଳ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ ବୈଠକରେ ଯୋଗଦେବାକୁ ଆସି ଡଃ ସୂପକାର ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନଙ୍କ ଘରେ ରହୁଥିଲେ । ସେଦିନ ସକାଳ ପ୍ରାୟ ଦଶଟା ସମୟରେ ପ୍ରହ୍ଲାଦବାବୁ ତାଙ୍କୁ ଜଣାଇଲେ ଯେ ପିତାଙ୍କର ମୃତ୍ୟୁ ହୋଇଯାଇଛି । ବଜ୍ରପାତ ପରି ସେ ଅନୁଭବ କଲେ ଏବଂ କିଂ କର୍ତ୍ତବ୍ୟ ବିମୂଢ଼ ହୋଇପଡ଼ିଲେ । ଶ୍ରୀ ବିଜୁ ପଟ୍ଟନାୟକ ସେତେବେଳେ ଭୁବନେଶ୍ୱରରେ ଥିଲେ ଏବଂ ଏହି ଖବର ପ୍ରଥମେ ପାଇଥିଲେ । ସେ ମଧ୍ୟ ଡଃ ସୂପକାରଙ୍କୁ ସମ୍ବଲପୁରରେ ଶୀଘ୍ର ପହଞ୍ଚାଇବାର ବ୍ୟବସ୍ଥା କରିଦେଲେ । ସେ ଲେଖିଛନ୍ତି (ତତ୍ରୈବ ପୃ. 293) "ବାପାଙ୍କର ଶେଷ ଜୀବନ ଅତି ଦୁଃଖମୟ ଥିଲା । ତାଙ୍କର ଦୁଃଖ ଲାଘବ କରିବା ପାଇଁ ମୁଁ କିଛି କରିପାରିଲି ନାହିଁ । ତାଙ୍କର ମୃତ୍ୟୁ ଶଯ୍ୟା ପାଖରେ ରହିନପାରିବା ମୋର ଚରମ ଦୁର୍ଭାଗ୍ୟ ଥିଲା ।" "ବାପାଙ୍କର ମୃତ୍ୟୁପରେ ନାନା ପ୍ରକାର ଦୁଶ୍ଚିନ୍ତା ଯୋଗୁଁ ତାଙ୍କ ସ୍ୱାସ୍ଥ୍ୟ ଖରାପ ହେଲା ।"

## ପାର୍ଲାମେଣ୍ଟ ସଭ୍ୟ ଓ ଦିଲ୍ଲୀ ରହଣୀ

1957 ମସିହାରେ ଭାରତ ବର୍ଷରେ ଦ୍ୱିତୀୟ ସାଧାରଣ ନିର୍ବାଚନ ହେଲା । ସେତେବେଳେ ଓଡ଼ିଶାରେ କଂଗ୍ରେସ ଦଳ ଖୁବ୍ ଅପ୍ରିୟ ହୋଇ ପଡ଼ିଥିଲା । ବିଶେଷତଃ 1956 ସୀମା ଆନ୍ଦୋଳନକୁ ରାଜ୍ୟ ସରକାର ଖୁବ୍ ନିଷ୍ଠୁର ଭାବରେ ଦମନ କରିଥିଲେ ଏବଂ ଏଥିଯୋଗୁଁ ଛାତ୍ର ସମାଜ ଓ ଶିକ୍ଷିତ ମହଲରେ କଂଗ୍ରେସ ବିରୋଧୀ ମନୋଭାବ ଖୁବ୍ ତୀବ୍ର ହୋଇ ଉଠିଥିଲା । ପକ୍ଷାନ୍ତରରେ ଗଣତନ୍ତ୍ର ପରିଷଦ ପକ୍ଷରେ ଅଧିକ ଅନୁକୂଳ ପରିସ୍ଥିତି ପୂର୍ବରୁ କେବେ ହୋଇନଥିଲା । କାରଣ ପ୍ରାଦେଶିକ ଦଳ ହୋଇଥିବାରୁ ଓଡ଼ିଶାର ସ୍ୱାର୍ଥରକ୍ଷା ପାଇଁ ନିରଂକୁଶ ଭାବରେ କାର୍ଯ୍ୟ କରିବା ପାଇଁ ଯଥେଷ୍ଟ ସୁଯୋଗ ଥିଲା । କଂଗ୍ରେସର ପ୍ରତିକୂଳ ପରିସ୍ଥିତି ଦୃଷ୍ଟିରୁ ଡକ୍ଟର ହରେକୃଷ୍ଣ ମହତାବ ପୁନରାୟ ଓଡ଼ିଶାର ରାଜନୈତିକ ନେତୃତ୍ୱ ନେଇଥିଲେ । ଏ ସଂପର୍କରେ ଡଃ ସୂପକାର ଯଥାର୍ଥରେ ଲେଖିଛନ୍ତି । "ମାତ୍ର ସେତେବେଳକୁ ନେତୃତ୍ୱ କହୁଣୀକୁ ବୋହି ଯାଇଥିଲା କହିଲେ ଚଳେ । ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ନିର୍ବାଚନ ସମୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ଆସି ବ୍ୟାପକ ପରିଭ୍ରମଣ ଚଳାଇଲେ । ମାତ୍ର ତାହାବିଶେଷ ଫଳପ୍ରଦ ହୋଇ ପାରିଲା ନାହିଁ" (ତତ୍ରୈବ ପ. 242) ।

ଡଃ ସୂପକାର ପୂର୍ବରୁ ଆଠବର୍ଷ ପାଇଁ ବିଧାନସଭା ସଭ୍ୟ ହୋଇଥିବାରୁ 1957 ସାଧାରଣ ନିର୍ବାଚନରେ ଲୋକସଭା ପାଇଁ ଗଣତନ୍ତ୍ର ପରିଷଦକୁ ଦରଖାସ୍ତ କରି ମନୋନୀତ ହୋଇଥିଲେ । ସମ୍ବଲପୁର ଜିଲ୍ଲାର ସାତୋଟି ଓ ବଲାଙ୍ଗୀର ଜିଲ୍ଲାର ସାତୋଟି ବିଧାନସଭା ନିର୍ବାଚନ ମଣ୍ଡଳୀକୁ ନେଇ ଏକ ଯୁଗ୍ମ ନିର୍ବାଚନ ମଣ୍ଡଳୀ ହୋଇଥିଲା । ବଲାଙ୍ଗୀର ଜିଲ୍ଲା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେଓଙ୍କ ପ୍ରବଳ ଲୋକପ୍ରିୟତା ଯୋଗୁଁ ଗଣତନ୍ତ୍ର ପରିଷଦର ଏକ ଦୁର୍ଗବୋଲି ବିବେଚିତ ହେଉଥିଲା । ଡଃ ସୂପକାର ମଧ୍ୟ ବିରୋଧୀ ଦଳର ନେତା ଭାବରେ ଓଡ଼ିଶାର ପ୍ରାୟ ସବୁ ଅଞ୍ଚଳରେ ଖୁବ୍ ଜଣାଶୁଣା ହୋଇଥିଲେ । ତେଣୁ ଲୋକସଭା ନିର୍ବାଚନରେ ତାଙ୍କର ବିଜୟ ସମ୍ଭାବନା ଖୁବ୍ ଉଜ୍ଜ୍ୱଳ ଥିଲା ଏବଂ ସେ ମଧ୍ୟ ଏକ ବ୍ୟାପକତାର ଅଞ୍ଚଳରେ ନିଜର ପ୍ରତିଷ୍ଠା ବୃଦ୍ଧି ପାଇଁ ଆଗ୍ରହୀ ଥିଲେ ।

ସମ୍ବଲପୁର–ବଲାଙ୍ଗୀର ଲୋକସଭା ଯୁଗ୍ମ ନିର୍ବାଚନ ମଣ୍ଡଳୀରୁ ବଲାଙ୍ଗୀର ଜିଲ୍ଲା ନିବାସୀ ଶ୍ରୀ ବନମାଳୀ କୁମ୍ଭାର, ହରିଜନ ପ୍ରାର୍ଥୀ ରୂପେ ଓ ଡକ୍‌ଟର ସୂପକାର ସାଧାରଣ ପ୍ରାର୍ଥୀ ରୂପେ ମନୋନୟନ ପତ୍ର ଦାଖଲ କରିଥିଲେ । ସେମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ କଂଗ୍ରେସ ଦଳ ତରଫରୁ ଅଧ୍ୟାପକ ଘନଶ୍ୟାମ ଦାସ ଓ ହରିଜନ ପ୍ରାର୍ଥୀ ଥିଲେ ବରପାଲିର ଶ୍ରୀ ମୋହନ ନାଗ । ଅଧ୍ୟାପକ ଘନଶ୍ୟାମ ଦାସ ଡଃ ସୂପକାରଙ୍କ ଶିକ୍ଷକ ଥିଲେ ଏବଂ ରେଭେନସା କଲେଜ ହଷ୍ଟେଲରେ ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ୍ ଥିଲେ । ମାତ୍ର ଶେଷରେ ଡଃ ସୂପକାର ଓ ଶ୍ରୀ ବନମାଳୀ କୁମ୍ଭାର ନିର୍ବାଚନରେ ବିଜୟୀହୋଇଥିଲେ ।

ଓଡ଼ିଶା ବିଧାନସଭାରେ ଗଣତନ୍ତ୍ର ପରିଷଦର ସଭ୍ୟ ସଂଖ୍ୟା ହେଲା 51 ଓ କଂଗ୍ରେସ ଦଳର ହେଲା 51ଟି ଆସନ । ଡକ୍‌ଟର ମହତାବ କୌଣସି ପ୍ରକାରେ ମୁଖ୍ୟମନ୍ତ୍ରୀତ୍ୱରେ ଓଡ଼ିଶାରେ କଂଗେସ ମନ୍ତ୍ରୀମଣ୍ଡଳ ଗଢିଥିଲେ । ମାତ୍ର ତାର ଅବସ୍ଥା ଟଳମଳ ହେବାରୁ ଦୁଇବର୍ଷ ପରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଢା ହେଲା । ସେଥିରେ ଡଃ ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓ ଉପମୁଖ୍ୟମନ୍ତ୍ରୀ ହୋଇଥିଲେ । ଡଃ ସୂପକାରଙ୍କ ଅଭିଜ୍ଞତା ଓ ପ୍ରତିଷ୍ଠା ଦୃଷ୍ଟିରୁ ଲୋକସଭା ପରିବର୍ତ୍ତେ ବିଧାନସଭାର ସଭ୍ୟ ହୋଇଥିଲେ । ଜଣେ ଟାଣୁଆ ମନ୍ତ୍ରୀ ଭାବରେ ସେ ନିଶ୍ଚୟ ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇଥାନ୍ତେ ।

ଅନ୍ୟପକ୍ଷରେ ଲୋକସଭାରେ ଦୁଇ ତୃତୀୟାଂଶରୁ ଅଧିକ ସଭ୍ୟ କଂଗ୍ରେସ ଦଳର ଏବଂ ଗଣତନ୍ତ୍ର ପରିଷଦର ସଭ୍ୟ ସଂଖ୍ୟା ଥିଲା ମାତ୍ର ସାତ । ମାତ୍ର ଡଃ ସୂପକାର ବିଧାନସଭା ପରି ଲୋକସଭାରେ ମଧ୍ୟ ସକ୍ରିୟ ଭାବରେ ଭାଗନେଉଥିଲେ ଏବଂ ତାଙ୍କର କର୍ମନିଷ୍ଠା ପ୍ରଥମରୁ ସବୁ ସଭ୍ୟଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଦ୍ୱିତୀୟ ଲୋକସଭାରେ ନିର୍ବାଚିତ କଂଗ୍ରେସ ସଭ୍ୟମାନଙ୍କ ମଧ୍ୟରୁ ଓଡ଼ିଶାରୁ କେନ୍ଦ୍ର ମନ୍ତ୍ରୀ ଥିଲେ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ଉପମନ୍ତ୍ରୀ ଥିଲେ ଶ୍ରୀ ବିବୁଧେନ୍ଦ୍ର ମିଶ୍ର । ମନ୍ତ୍ରୀମଣ୍ଡଳରେ ସେତେବେଳେ ଦେଶର ବହୁ ବରିଷ୍ଠ ନେତା ଓ ସ୍ୱାଧୀନତା ସଂଗ୍ରାମୀ ସ୍ଥାନ ପାଇଥିଲେ ।

ଡଃ ସୂପକାର ଲୋକସଭାରେ ନୂତନ ଓ ଅଳ୍ପବୟସ୍କ ପୁଣି ବିରୋଧୀ ଦଳ ସଭ୍ୟ ହୋଇଥିଲେ ହେଁ ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ତାଙ୍କ କଥାକୁ ଗୁରୁତ୍ୱ ଦେଉଥିଲେ ଏବଂ ତାଙ୍କର ଗଣତାନ୍ତ୍ରିକ ଚିନ୍ତାଧାରା ପ୍ରତି ଶ୍ରଦ୍ଧାକରି ପ୍ରଶଂସାମୁଖର ହୋଇ ଲେଖିଛନ୍ତି ଯେ କୌଣସି ଏକ ଅଗଣତାନ୍ତ୍ରିକ ବିଧାନସଂପର୍କରେ ତାଙ୍କୁ ଚିଠି ଲେଖି ମାତ୍ର 3 ଦିନ ଭିତରେ ଉତ୍ତର ପାଇଥିଲେ ଯାହାର ସାରମର୍ମ ହେଉଛି "ଯାଞ୍ଚ କମିଟିରେ ସଂଶୋଧନ ପ୍ରସ୍ତାବ ଦିଅନ୍ତୁ, ଆଶାକରେ ଯାଞ୍ଚ କମିଟି ଓ ସଦନ ଏଥିପ୍ରତି ପୂର୍ଣ୍ଣ ଗୁରୁତ୍ୱ ଦେବେ" । ପଣ୍ଡିତ ନେହେରୁ ବିରୋଧୀ ଦଳର ଯୁକ୍ତିଯୁକ୍ତ ପ୍ରସ୍ତାବ ଗ୍ରହଣ କରିବାକୁ ସର୍ବଦା ପ୍ରସ୍ତୁତଥିଲେ ।

ପଣ୍ଡିତ ନେହେରୁ ପ୍ରଧାନମନ୍ତ୍ରୀ ରହିବା ଛଡ଼ା ବିଦେଶ ବିଭାଗର ମନ୍ତ୍ରୀ ମଧ୍ୟ ଥିଲେ ଏବଂ ତାଙ୍କ ସମୟରେ ଦେଶ ବିଦେଶରେ ଭାରତର ମର୍ଯ୍ୟାଦା ଖୁବ୍ ବୃଦ୍ଧିପ୍ରାପ୍ତ ହୋଇଥିଲା 1957ରୁ 1962 ପର୍ଯ୍ୟନ୍ତ ଡଃ ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ଓ ଡଃ ସର୍ବପଲ୍ଲୀ ରାଧାକୃଷ୍ଣ ଥିଲେ ଉପରାଷ୍ଟ୍ରପତି । ଉଭୟେ ପରବର୍ତ୍ତୀ କାଳରେ ଯଥାକ୍ରମେ ରାଷ୍ଟ୍ରପତି ଓ ଉପରାଷ୍ଟ୍ରପତି ରୂପେ ନିର୍ବାଚିତ ହୋଇଥିଲେ । ଲୋକସଭାର ଅଧ୍ୟକ୍ଷ ଥିଲେ ଶ୍ରୀ ଅନନ୍ତଶୟନମ୍ ଆୟାଂଗାର ଏବଂ ସେ ଜଣେ ବିଦ୍ୱାନ ଓ ଅଭିଜ୍ଞ ସାଂସଦ ଭାବରେ ପ୍ରତିଷ୍ଠା ଲାଭ କରିଥିଲେ । ବରିଷ୍ଠ ମନ୍ତ୍ରୀମାନଙ୍କ ମଧ୍ୟରେ ଥିଲେ ମୌଲାନା ଆବୁଲକାଲମ ଆଜାଦ୍, ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ, ଶ୍ରୀ ଲାଲ ବାହାଦୁର ଶାସ୍ତ୍ରୀ, ଶ୍ରୀ ଟି. ଟି. କୃଷ୍ଣମାଚାରୀ ପ୍ରମୁଖ ।

ଶ୍ରୀ କୃଷ୍ଣମାଚାରୀ ଅର୍ଥମନ୍ତ୍ରୀ ଥିଲା ବେଳେ ପ୍ରଥମ ବଜେଟରେ ଆୟକର ବ୍ୟବସ୍ଥାରେ ଏକ ନୂତନତ୍ୱ ଆଣିଥିଲେ ଯାହାଫଳରେ ଅବିବାହିତ କରଦାତା ବିବାହିତ କରଦାତାଙ୍କଠାରୁ ଅଧିକ ଆୟକର ଦେବାକୁ ପଡ଼ିଲା । ତେଣୁ ଡଃ ସୂପକାର ବଜେଟ ଆଲୋଚନାରେ ଭାଗନେଇ କହିଥିଲେ, "ଦେଶରେ ଜନସଂଖ୍ୟା ବଢିଚାଲିଛି, ଅଥଚ ମାନ୍ୟବର ଅର୍ଥମନ୍ତ୍ରୀ ବିବାହିତ ବ୍ୟକ୍ତିଙ୍କୁ କର ରିହାତି ଦେଇ ବ୍ରହ୍ମଚର୍ଯ୍ୟ ଉପରେ ଧାର୍ଯ୍ୟ କରୁଛନ୍ତି । ଏହାର ଫଳ ସ୍ୱରୂପ, ବିବାହିତ ବ୍ୟକ୍ତି ଧନ ଓ ମଧୁ (money & honey) ଉପଭୋଗ କରିବାର ସୁବିଧା ପାଇବେ । ମାତ୍ର ଅବିବାହିତ ବ୍ୟକ୍ତି ଏ ଉଭୟରୁ ବଞ୍ଚିତ । ଇତ୍ୟାଦି.... ତାଙ୍କର ବକ୍ତବ୍ୟ ସଂସଦରେ ହାସ୍ୟରୋଳ ସୃଷ୍ଟି କରିଥିଲା ଏବଂ କଲିକତାର ବିଖ୍ୟାତ ଦୈନିକ ସମ୍ବାଦପତ୍ର "ଆନନ୍ଦ ବଜାର ପତ୍ରିକା" ସଂପାଦକୀୟ ଟିପ୍ପଣୀରେ ଲେଖିଥିଲେ, "ଶ୍ରୀ ସୂପକାର ନିଶ୍ଚୟ ଅବିବାହିତ । ବିବାହିତ ଜୀବନର ବିଡମ୍ବନା ସେ କ'ଣ ବୁଝିବେ ? ବିବାହିତ ଜୀବନରେ ମଧୁ ସଂଗରେ ଗୃହିଣୀଙ୍କର ଚୁଡ଼ିର ଝଣ ଝଣ ସହିତ ମଧୁପ ଦଂଶନର କେତେ ଜ୍ୱାଳା ଭୋଗ କରିବାକୁ ପଡ଼େ, ତାହା ସେ ଜାଣନ୍ତି ନାହିଁ । ଇତ୍ୟାଦି.. " (ତତ୍ରୈବ ପୃ. 249), ଡଃ ସୂପକାର ପ୍ରଥମ ବର୍ଷରୁ ହିଁ ଲୋକସଭାର ପ୍ରାକକଳନ କମିଟି (Estimates Committee)ର ଜଣେ ସଭ୍ୟ ଭାବରେ ନିର୍ବାଚିତ ହୋଇ

ପାରିଥିଲେ । ସ୍ୱନାମଧନ୍ୟ ସାଂସଦ ଶ୍ରୀ ବଳବନ୍ତ ରାୟ ମେହେଟା ଏହି କମିଟିର ସଭାପତି ଥିଲେ । ଓଡ଼ିଶାର ସ୍ୱାଧୀନ ସଭ୍ୟ ଶ୍ରୀ ଉମାଚରଣ ପଟ୍ଟନାୟକ ଏହାର ଜଣେ ଟାଣୁଆ ସଭ୍ୟ ଥିଲେ ଏବଂ ପ୍ରତିରକ୍ଷା ବିଷୟରେ ଜଣେ ବିଶେଷଜ୍ଞ ଥିଲେ । ଡଃ ସୂପକାର କମିଟିର କାର୍ଯ୍ୟପ୍ରଣାଳୀ ସଂପର୍କରେ ଅନେକ ଶିକ୍ଷା କରିଥିଲେ । ସେ ଦୁଇବର୍ଷ ଏହି ସଭ୍ୟ ଭାବରେ ଦେଶର ବିଭିନ୍ନ ସ୍ଥାନ ପରିଦର୍ଶନ କରିଥିଲେ । ତୃତୀୟ ବର୍ଷ ସେ ସରକାରୀ ହିସାବ କମିଟି (Public Accounts Committee)ର ସଭ୍ୟ ହେଲେ ଏବଂ ତାଛଡ଼ା ସ୍ୱାଧିକାର ସମିତି (Previleges Committee)ରେ ପାଞ୍ଚବର୍ଷ ପାଇଁ ସଭ୍ୟ ହୋଇଥିଲେ ।

ଏହି ସମୟରେ ଦିଲ୍ଲୀରେ ଓଡ଼ିଆମାନେ ଦୁଇଟି ସାମାଜିକ ଅନୁଷ୍ଠାନ ଗଢିଥିଲେ । ଗୋଟିଏ ଥିଲା "ଦିଲ୍ଲୀ ଓଡ଼ିଆ ସମାଜ" ଓ ଅନ୍ୟଟି "ଓଡ଼ିଶାକ୍ଲବ" । ଦୁଇଟି ଅନୁଷ୍ଠାନ ମଧ୍ୟରେ ଥିବା ବିଭେଦ ଦୂର କରିବାକୁ ଉଦ୍ୟମ କରିଥିଲେ ଡଃ ସୂପକାର । ଓଡ଼ିଆ-ମାନଙ୍କ ମଧ୍ୟରେ ଏକତା ଅଭାବରୁ ଓଡ଼ିଶାର ପ୍ରଗତି କିପରି ବାଧାପ୍ରାପ୍ତ ଡଃ ସୂପକାର ତାର ଏକ ଉଦାହରଣ ଦେଇଛନ୍ତି (ତତ୍ରୈବ ପୃ. 253) । 1959 ମସିହାରେ ଗୋଟିଏ ଫରାସୀ କଂପାନୀ ପାରଦ୍ୱୀପଠାରେ ଗୋଟିଏ ବଂଦର ନିର୍ମାଣ ପାଇଁ ସୁପାରିଶ କରି ଏକ ରିପୋର୍ଟ ଭାରତ ସରକାରକୁ ଦେଇଥିଲା । କେନ୍ଦ୍ର ସରକାରଙ୍କ ଉପରେ ଚାପ ପକାଇବା ପାଇଁ ସେ ପାର୍ଲାମେଣ୍ଟରେ ବେସରକାରୀ ପ୍ରସ୍ତାବ ଆଗତ କରିଥିଲେ ଏବଂ ସୌଭାଗ୍ୟକୁ ଆଲୋଚନା ପାଇଁ ଗୃହୀତ ହୋଇଥିଲା । ମାତ୍ର ଓଡ଼ିଶାର ଅନେକ ବ୍ୟକ୍ତି ତାଙ୍କୁ ଚିଠିଦେଇ, ଲେଖିଥିଲେ "ଦୟାକରି ଆପଣଙ୍କର ପ୍ରସ୍ତାବଟି ଆଗତ କରନ୍ତୁ ନାହିଁ । ଚାନ୍ଦବାଲି ଭଳି ବନ୍ଦରୋପଯୋଗୀ ସ୍ଥାନ ଥାଉଁ ଥାଉଁ ପାରଦ୍ୱୀପରେ ବନ୍ଦର ପ୍ରତିଷ୍ଠା କରିବା ମୂର୍ଖତା ଓ ଅର୍ଥର ଅପବ୍ୟୟ ହେବ—ଇତ୍ୟାଦି" ।

ମାତ୍ର ଡଃ ସୂପକାର ପ୍ରସ୍ତାବଟି ଆଗତ କରିଥିଲେ ଏବଂ ତାହା ଲୋକସଭାରେ ସମର୍ଥିତ ହୋଇଥିଲା । ପରେ ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶାର 1961 ମସିହାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢି ପାରଦ୍ୱୀପ ଠାରେ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ।

ଲୋକସଭାର ଜଣେ ଧୁରୀଣ ସଭ୍ୟ ଥିବାରୁ ବହୁ ଦିଗରୁ ତାଙ୍କୁ ସମ୍ମାନ ମିଳୁଥିଲା । ଏହି ଅବସରରେ ସେ କେଦାରନାଥ, ବଦ୍ରିନାଥ ପ୍ରଭୃତି ଦର୍ଶନୀୟ ତୀର୍ଥ ସ୍ଥାନମାନ ଦର୍ଶନ କରିଥିଲେ । ମାତ୍ର ଲୋକସଭାର ସଭ୍ୟ ଭାବରେ ନିଜର କର୍ତ୍ତବ୍ୟ ସଂପାଦନରେ ତିଳେମାତ୍ର ତ୍ରୁଟି କରୁନଥିଲେ । ବରଂ ଦଳ ମଧ୍ୟରେ ସମୟ ବଣ୍ଟନରେ ସେ ଗଣତନ୍ତ୍ର ପରିଷଦର ସଭ୍ୟ ଭାବରେ ଆଶାନୁରୂପ ସୁଯୋଗ ପାଇପାରୁ ନ ଥିଲେ, ଲୋକସଭାର ଆଲୋଚନାରେ ଭାଗ ନେବା ପାଇଁ । ସେ ଏହି ପ୍ରସଙ୍ଗରେ ଲେଖିଛନ୍ତି (ତତ୍ରୈବ ପୃ. 267), "ଅନେକଦିନ କହିବାର ସୁଯୋଗ ପାଇ ଘଣ୍ଟାପରେ ଘଣ୍ଟା ଲୋକସଭାରେ ଅପେକ୍ଷା କରିବାକୁ ପଡେ ।

ମାତ୍ର ସମୟ ସରିଯାଏ । ଶେଷରେ ନିରଶ ହେବାକୁ ପଡ଼େ । ମନ୍ତ୍ରୀଙ୍କର ଉତ୍ତର ପାଇଁ ସମୟ ଆସିଯାଇଥାଏ । ପରବର୍ତ୍ତୀ ସୁଯୋଗ ପାଇଁ ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ପଡ଼େ ।" ସେଇ ଅପେକ୍ଷା ଓ ଧୈର୍ଯ୍ୟରେ ନିଜର ବ୍ୟକ୍ତିତ୍ୱ ଧୀରେ ଧୀରେ ସଙ୍କୁଚିତ ହେଉଥିଲା ପରି ବୋଧ ହେଲା । ତେବେ ସେ ନିଷ୍ଠାର ସହିତ ଉଦ୍ୟମ କରି ସମ୍ବଲପୁର ନିର୍ବାଚନ ମଣ୍ଡଳୀର ବହୁବିଧ ଉନ୍ନତି ଘଟାଇଥିଲେ ।

## ଓଡ଼ିଶା ବିଧାନସଭା ପାଇଁ ନିର୍ବାଚନରେ ପ୍ରାର୍ଥୀ ଓ ପରାଜିତ

1961 ମସିହାରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ସ୍ଥାନରେ ଦଳର ନେତୃତ୍ୱ ନେଲେ ଶ୍ରୀ ବିଜୁ ପଟନାୟକ । ଡକ୍ଟର ସୂପକାରଙ୍କର ଲୋକସଭା ସଭ୍ୟ ପଦ ସରିବାକୁ ପ୍ରାୟ ଏକ ବର୍ଷ ବାକି ଥିଲା । ତେଣୁ ସେ ଗଣତନ୍ତ୍ର ପରିଷଦ ପକ୍ଷରୁ ସମ୍ବଲପୁରରୁ ବିଧାନସଭା ପାଇଁ ପ୍ରାର୍ଥୀ ହେଲେ । ତାଙ୍କର ବିଜୟୀ ହେବାର ଆଶା ମଧ୍ୟ ଦୃଢ ଥିଲା । ମାତ୍ର ତାଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦୀ ହେଲେ କଂଗ୍ରେସ ଦଳ ପ୍ରାର୍ଥୀ ଶ୍ରୀ ବନମାଳୀ ବାବୁ । ବିରୋଧୀ ଦଳ ପକ୍ଷରୁ ତାଙ୍କ ବିରୁଦ୍ଧରେ ମିଥ୍ୟାରେ ବହୁ ଅପପ୍ରଚାର ହେଲା । ଡଃ ସୂପକାର ରେଳଲାଇନ ସଂପ୍ରସାରଣ, ପାରାଦ୍ୱୀପ ବନ୍ଦର ସ୍ଥାପନ, ଉଚ୍ଚ ଶିକ୍ଷାର ପ୍ରସାର ଆଦି କ୍ଷେତ୍ରରେ ତାଙ୍କର ସଫଳ ଭୂମିକା ସଂପର୍କରେ ଜନସାଧାରଣଙ୍କୁ ବୁଝାଇଲେ । କେତେଜଣ ବନ୍ଧୁ ତାଙ୍କ ପାଇଁ ପ୍ରଚାର କରିବାକୁ ଜିପ୍ ନେଇ ଗଡି ସାର ବଣରେ ଶିକାର କଲେ । ସେ ତେଣୁ ଲେଖିଛନ୍ତି "ଭାଗ୍ୟ ଫଳିତ ସର୍ବତ୍ର ନ ବିଦ୍ୟା ନଚ ପୌରଷମ" । ମୋର ଓ ଆନ୍ତରିକତା କର୍ମପ୍ରବଣତା ମୂଲ୍ୟାୟନ ହେଲା ନାହିଁ ।

ମାତ୍ର ଅଢେଇ ହଜାର ଭୋଟରେ ସେ ପରାସ୍ତ ହେଲେ । ଏହି ପରାଜୟ ତାଙ୍କର "ରାଜନୈତିକ ମେରୁଦଣ୍ଡକୁ ଦୁର୍ବଳ କରିଦେଲା" "ଆଜି ସେ ରାଜେନ୍ଦ୍ରାସନେ କାଲି ସେ ଫକୀର" ବିଶେଷତଃ ରାଜନୀତିରେ ଏହା କିପରି ସ୍ୱାଭାବିକ ତାହା ସେ ଉଲ୍ଲେଖ କରି କହିଛନ୍ତି (ତତ୍ରୈପ ପୃ. 278), ଆଜି ସେ ମୁଖ୍ୟମନ୍ତ୍ରୀ ରୂପେ ସହସ୍ର ସହସ୍ର ଲୋକଙ୍କର ନୟନର ମଣୀ, ଭୁବନେଶ୍ୱର ସଚିବାଳୟର ଶୀତତାପ ନିୟନ୍ତ୍ରିତ ପ୍ରକୋଷ୍ଠରେ ବହୁ ଲୋକଙ୍କର ହାରି ଗୁହାରି, ବହୁ ରାମରାଜାଙ୍କର ଚାଟୁବାଣୀ, ବହୁ ଉଚ୍ଚପଦସ୍ଥ ଅଫିସରଙ୍କ ସ୍ତୁତି ଶୁଣିବାରେ ଅଭ୍ୟସ୍ତ, ଆସନ୍ତା କାଲି ହୁଏତ ସେ କେଉଁ ଅଖ୍ୟାତ ଅଞ୍ଚଳକୁ ଫେରିଯାଇ ଅତି ମାମୁଲି ହୋଇଯିବେ । ସେମାନଙ୍କ ତୁଳନାରେ ମୁଁ ଜଣେ କ୍ଷୁଦ୍ର ଜୀବ ଥିଲି । ତେଣୁ ମୁଁ ନିଜକୁ ସାନ୍ତ୍ୱନା ଦେଲି ଯେ, କାଳକ୍ରମେ ବିସ୍ମୃତି ଗର୍ଭରେ ଲୀନ ହେବା ରାଜନୈତିକ ବ୍ୟକ୍ତିତ୍ୱର ଧର୍ମ । ତେଣୁ "ତତ୍ରକା ପରିବେଦନା ?"

## 1962 ତୃତୀୟ ଲୋକସଭା ପାଇଁ ନିର୍ବାଚନ ଓ ତାପରେ ଶ୍ରଦ୍ଧାକରଙ୍କ ସ୍ଥିତି

ସେ ପୁଣି ଯଥାର୍ଥରେ କହିଛନ୍ତି ଯେ, ନେତାମାନେ ପରାଜୟ ପରେ ଦୀର୍ଘ ଦିନ, ମାସ, ବର୍ଷ ଅପେକ୍ଷା କରିଛନ୍ତି ପରବର୍ତ୍ତୀ ସୁଯୋଗ ଅପେକ୍ଷାରେ । କିନ୍ତୁ ଡଃ ସୂପକାରଙ୍କର ଏଥିପାଇଁ

ଧୈର୍ଯ୍ୟ ନଥିଲା । ଲୋକସଭା କାର୍ଯ୍ୟାଳୟ ପୂରିବାକୁ ଆହୁରି ନଅ ମାସ ବାକି ଥିଲା । ସେହି ସମୟ ପୂରି ଗଲେ ସେ ପୁଣି ଓକିଲତିରେ ଯୋଗ ଦେବାକୁ ସ୍ଥିର କଲେ 1962 ମସିହାରେ ତୃତୀୟ ଲୋକସଭା ପାଇଁ ନିର୍ବାଚନ ହେଲା । ମାତ୍ର ସେ ଏଥିରେ ପ୍ରାର୍ଥୀ ହେବା ପାଇଁ ଇଚ୍ଛା କଲେ ନାହିଁ । ସେ କିନ୍ତୁ ଗଣତନ୍ତ୍ର ପରିଷଦର କର୍ତ୍ତୃପକ୍ଷଙ୍କୁ ରାଜ୍ୟସଭା ପାଇଁ ପ୍ରାର୍ଥୀ କରିବାକୁ ଅନୁରୋଧ କଲେ । ମାତ୍ର 1961 ମସିହା ନିର୍ବାଚନରେ ପରାଜିତ ହୋଇଥିବାରୁ ଏବଂ ପରାଜିତ ପ୍ରାର୍ଥୀଙ୍କୁ ରାଜ୍ୟସଭାକୁ ପ୍ରାର୍ଥୀ ନ କରିବା ପାଇଁ ଏକ ନୀତିଗତ ନିଷ୍ପତ୍ତି ନିଆଯାଇଥିଲା । ହୁଏତ ଯେଉଁମାନେ କେବେ ପ୍ରତ୍ୟକ୍ଷ ନିର୍ବାଚନ ରଣାଙ୍ଗନରେ କେବେ ଅବତୀର୍ଣ୍ଣ ହୋଇ ନ ଥିଲେ ଏବଂ ଲୋକପ୍ରିୟତାର କଷଟି ପଥରରେ ଆଦୌ ପରୀକ୍ଷିତ ହୋଇନଥିଲେ, ସେମାନେ ବାରମ୍ବାର ରାଜ୍ୟସଭାକୁ ଯିବାରେ କୌଣସି ବାଧା ନ ଥିଲା । ହୁଏତ ଅନ୍ୟ ଦଳରେ ଏମିତି ନୀତି ଅନୁସୃତ ହେଉ ନ ଥିଲା । ତେଣୁ ଡଃ ସୂପକାର ଲେଖିଛନ୍ତି (ତତ୍ରୈବ ପୃ. 280), "ମୋର ପରାଜୟ ଥିଲା ଏକ କଳଙ୍କ, ଏକ ଅଯୋଗ୍ୟତା ପୂର୍ବ ଦଶବର୍ଷରେ ଗଣତନ୍ତ୍ର ପରିଷଦ ପ୍ରତି ମୋର ଅବଦାନର ଆଉ କିଛି ମୂଲ୍ୟ ରହିଲା ନାହିଁ । ମୋର ରାଜନୈତିକ ଅବମୂଲ୍ୟନ ଚରମ ସୀମାରେ ପହଞ୍ଚି ଯାଇଥିଲା ।"

1955 ମସିହାର ହୀରାକୁଦ ଜଳଭଣ୍ଡାରରେ ଜଳମଗ୍ନ ହୋଇଥିବା ଜମିର କ୍ଷତିପୂରଣ 1964 ସୁଦ୍ଧା ମିଳି ନ ଥିଲା । ଆର୍ବିଟ୍ରେଟରଙ୍କ ଅଦାଲତରେ ଉକ୍ତ କ୍ଷତିପୂରଣ ମକଦ୍ଦମାମାନ ଡଃ ସୂପକାରଙ୍କ ଜ୍ଞାନ ଓ ଆନ୍ତରିକତା ଫଳରେ ଯଥାଶୀଘ୍ର ତୁଟି ଗଲା । ଅନେକ ଯଥା ସମୟରେ ଆର୍ବିଟ୍ରେଟରଙ୍କ ପାଖରେ ଗୁହାରି କରି ନ ପାରି ଆଶାନୁରୂପ କ୍ଷତିପୂରଣ ପାଇଲେ ନାହିଁ । ଏହିପରି ହଜାର ହଜାର ଲୋକ ନିଜର ନ୍ୟାଯ୍ୟ ପାଉଣାରୁ ବଞ୍ଚିତ ହେଲେ । ବୁଡ଼ି ଅଞ୍ଚଳରେ ବହୁ ଦେବଦେବୀ ମନ୍ଦିର ଜଳମଗ୍ନ ହେଲା । ସେମାନଙ୍କର ଥଇଥାନ 15 ବର୍ଷ ସୁଦ୍ଧା ବିଶେଷ ହେଲା ନାହିଁ । ଏହି ପ୍ରସଙ୍ଗରେ ଡକ୍‌ଟର ସୂପକାର ଲେଖିଛନ୍ତି (ତତ୍ରୈବ ପୃ- 285)," ଠାକୁରମାନେ ବର୍ଷ ବର୍ଷ ଧରି ଭୋକ ଉପାସରେ ରହିଲେ, ଗରିବ ସେବାୟତମାନେ ମଧ୍ୟ । ବହୁତ ଡେରିରେ ସରକାରଙ୍କ ନିଦ ଭାଙ୍ଗିଲା । ମନ୍ଦିର ଆଦି ବୁଡ଼ି ଯିବାର ପନ୍ଦର ବର୍ଷପରେ ବୁଡ଼ି ଅଞ୍ଚଳ ଦେବୋତ୍ତର ପରାମର୍ଶଦାତା କମିଟି ଗଠିତ ହେଲା ।"

1961 ମସିହାର ବିଧାନସଭା ନିର୍ବାଚନ ପରେ ସମ୍ବଲପୁରରେ ଦୁଇଟି ଉଲ୍ଲେଖଯୋଗ୍ୟ ମକଦ୍ଦମା ଜିଲ୍ଲା ଜଜ୍ ଅଦାଲତରେ ବିଚାର ହୋଇଥିଲା । ଉଭୟ ମକଦ୍ଦମାରେ ଡଃ ସୂପକାର ଗଣତନ୍ତ୍ର ପ୍ରାର୍ଥୀଙ୍କ ତରଫରୁ ଓକିଲାତି କରିଥିଲେ । ଗୋଟିଏ ହେଲା, ଲଏକେରା ଆଦିବାସୀ ନିର୍ବାଚନ ମଣ୍ଡଳୀର କଂଗ୍ରେସ ପ୍ରାର୍ଥୀ ବିନୋଦ ବିହାରୀ ବରିହା ନିର୍ବାଚିତ ହୋଇଥିଲେ । ମାତ୍ର ସେତେବେଳେ ତାଙ୍କର ବୟସ ପଚିଶ ବର୍ଷ ହୋଇ ନ ଥିବାରୁ ତାଙ୍କ ବିରୁଦ୍ଧରେ ନିର୍ବାଚନ ମକଦ୍ଦମା ହେଲା । ସ୍କୁଲ ପ୍ରବେଶିକା ରେଜିଷ୍ଟର ଅନୁସାରେ ତାଙ୍କର ବୟସ ପଚିଶ ବର୍ଷରୁ ଅଧିକ ହୋଇଥିବାର ପ୍ରମାଣ କରିବା ପାଇଁ ନିଜର ବିଧବା ମାଆଙ୍କୁ ସାକ୍ଷୀ ଦେଲେ

ଏବଂ ଏକ ହାତଲେଖା ଜାତକ ପେଶ୍ କଲେ ଜାତକର ଲେଖକ ଜଣେ ସାକ୍ଷୀ ଥିଲେ, ମାତ୍ର ତାଙ୍କର ଜ୍ୟୋତିଷ ଜ୍ଞାନ ନ ଥିଲା । ଡଃ ସୂପକାର ଲେଖିଛନ୍ତି (ତତ୍ରୈବ ପୃ. 286),'' ମୁଁ ତହିଁ ପୂର୍ବରୁ ଫଳିତ ଓ ଗଣିତ ଜ୍ୟୋତିଷ ବିଦ୍ୟା କିଛି କିଛି ଅଧ୍ୟୟନ କରିଥିଲି । ମୁଁ ସେ ସାକ୍ଷୀକୁ ଜେରକଲି । ସାକ୍ଷୀଙ୍କର ଜ୍ୟୋତିଷ ଜ୍ଞାନ ତ ଦୂରର କଥା, ସାଧାରଣ ସଂସ୍କୃତ ସଂଖ୍ୟା ଜ୍ଞାନ (ଯଥାୟନ–2, ବେଦ–4, ଗ୍ରହ–9 ଆଦି) ମଧ୍ୟ ନ ଥିବା ଜେରରୁ ପ୍ରମାଣିତ ହେଲା । ଫଳରେ ଶ୍ରୀ ବରିହାଙ୍କର ନିର୍ବାଚନ ଅସିଦ୍ଧ ଘୋଷିତ ହେଲା । ସେ ଅପିଲରେ ମଧ୍ୟ ହାରିଲେ । ''ସେମିତି ଆଉ ଏକ ମକଦ୍ଦମାରେ ସେ ମଧ୍ୟ ବିଜୟୀ ହୋଇଥିଲେ । ଦକ୍ଷ ଓକିଲ ଭାବରେ ତାଙ୍କର ଲୋକପ୍ରିୟତା ବଢିଗଲା ।

## ସାମାଜିକ ଓ ଶିକ୍ଷାକ୍ଷେତ୍ରରେ କାର୍ଯ୍ୟ

ଡଃ ସୂପକାର କ୍ରମେ ସାମାଜିକ ଓ ଶିକ୍ଷା କ୍ଷେତ୍ରକୁ ଅଧିକ ପରିମାଣରେ ଆକୃଷ୍ଟ ହେଲେ । ପୂର୍ବରୁ କଲେଜ ଟ୍ରଷ୍ଟ ଫଣ୍ଡ କମିଟିର ଏକ ମୁଖ୍ୟ ସଭ୍ୟ ରୂପେ ସମ୍ବଲପୁରରେ ଏକ ମହିଳା କଲେଜ ସ୍ଥାପିତ ହେବାରେ ସେ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ । ସମ୍ବଲପୁର ପରେ ପୁରୀ ଓ ବାଲେଶ୍ୱର ସହରରେ ସରକାରୀ ଉଦ୍ୟମରେ ମହିଳା କଲେଜ ସ୍ଥାପିତ ହେଲା । ସେ ବୁର୍ଲା ଇଞ୍ଜିନିୟରିଂ ଓ ମେଡ଼ିକାଲ କଲେଜ ଦ୍ୱୟରେ ପରିଗ୍ରହଣା ସମିତିର ସଭ୍ୟ ଥିଲେ ଏବଂ ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ ସମ୍ପୃକ୍ତ ହୋଇଥିଲେ ।

1963 ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସିନେଟ୍ ନିର୍ବାଚନରେ ପ୍ରାର୍ଥୀ ହେଲେ । ପୂର୍ବରୁ 1948ରୁ 1951 ପର୍ଯ୍ୟବେକ୍ଷକ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟର ସଭ୍ୟ ମଧ୍ୟ ଥିଲେ । 1963 ମସିହାରେ ମଧ୍ୟ ସିନେଟ୍‌ର ସଭ୍ୟ ହୋଇ ସେଠାରୁ ସିଣ୍ଡିକେଟ୍‌କୁ ନିର୍ବାଚିତ ହୋଇଥିଲେ । ଡକ୍‌ଟର ପ୍ରାଣକୃଷ୍ଣ ପରିଜା ସେତେବେଳେ ବିଶ୍ୱ-ବିଦ୍ୟାଳୟର କୁଳପତି ଓ ଡକ୍‌ଟର ସଦାଶିବ ମିଶ୍ର ଶିକ୍ଷା ବିଭାଗର ନିର୍ଦ୍ଦେଶକ, ଅନ୍ୟ ସିଣ୍ଡିକେଟ୍ ସଭ୍ୟମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ସର୍ବଶ୍ରୀ ଅଶୋକ ଦାସ, ସୁରଜମଲ ସାହା ଓ ଡଃ ଶ୍ରୀ ରାମଚନ୍ଦ୍ର ଦାଶ । ସେହି ସମୟରେ ଓଡ଼ିଶାରେ ଉଚ୍ଚ ଶିକ୍ଷାର ପ୍ରସାର ଓ ଉତ୍କଳ ବିଶ୍ୱବିଦ୍ୟାଳୟର ବିକାଶ ପାଇଁ ଡଃ ସୂପକାର ବହୁତ କିଛି କରିଥିଲେ ।

ସମ୍ବଲପୁର ଜିଲାରେ କଲେଜ ଟ୍ରଷ୍ଟ ଫଣ୍ଡ କମିଟି ତରଫରୁ ଉଚ୍ଚ ଶିକ୍ଷାର ପ୍ରସାର କ୍ଷେତ୍ରରେ ନେତୃତ୍ୱ ନିଆଯାଇଥିଲା । ସମ୍ବଲପୁରରେ ମହିଳା କଲେଜ ଛଡ଼ା ଇରମା, ବରଗଡ଼, ପଦ୍ମପୁର ଆଦି ସ୍ଥାନରେ କଲେଜ ସ୍ଥାପିତ ହୋଇଥିଲା । ପରେ ଝାରସୁଗୁଡ଼ାଠାରେ ଏକ ନୂଆ କଲେଜ ପ୍ରତିଷ୍ଠିତ ହେଲା । ସରକାରୀ ଉଦ୍ୟମରେ ସମ୍ବଲପୁରଠାରେ ଏକ ପ୍ରଶିକ୍ଷଣ ମହାବିଦ୍ୟାଳୟ ମଧ୍ୟ ସ୍ଥାପିତ ହୋଇଥିଲା । 1965 ମସିହାରେ ଏକ ଆଇନ କଲେଜ ସ୍ଥାପିତ ହେବାର ଉଦ୍ୟମ କରାଗଲା । ଡଃ ସୂପକାର ସେତେବେଳେ ଟ୍ରଷ୍ଟ ଫଣ୍ଡ କମିଟିର

ସେକ୍ରେଟେରୀ ଥିଲେ ଆଇନ କଲେଜ ସ୍ଥାପନ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ମଞ୍ଜୁରୀ (Affiliation) ସହଜରେ ମିଳିଲା ନାହିଁ । ସିଣ୍ଡିକେଟ୍‌ରେ ପ୍ରବଳ ବିରୋଧ ହେଲା । ସିଣ୍ଡିକେଟ୍ ମିଟିଙ୍ଗ୍‌ରେ ଡଃ ସୂପକାରଙ୍କ ଦୃଢ଼ଯୁକ୍ତି ମଧ୍ୟ କାଟ ଖାଇଲା । ଡଃ ପରିଜା ସେଦିନ ଅନୁପସ୍ଥିତ ଥିଲେ । ତେଣୁ ଡଃ ସୂପକାର ସିଣ୍ଡିକେଟରୁ ଇସ୍ତଫା ପତ୍ର ଲେଖି କୁଳପତି ଡଃ ପରିଜାଙ୍କ ପାଖକୁ ପଠାଇଦେଲେ ।

ସେତେବେଳେ ସିଣ୍ଡିକେଟ୍ ବୈଠକ କଟକରେ ବସୁଥିଲା । ଡକ୍‌ଟର ପରିଜା ତା ପରଦିନ ଅନୁଷ୍ଠିତ ସିଣ୍ଡିକେଟ୍ ବୈଠକକୁ ଜଣେ ବରିଷ୍ଠ ସଭ୍ୟଙ୍କ ଦ୍ୱାରା ଡଃ ସୂପକାରଙ୍କୁ ଡକାଇଲେ । ସେ ସେଠାରେ ଉପସ୍ଥିତ ହେବାରୁ ତାଙ୍କୁ ଇସ୍ତଫାପତ୍ର ପ୍ରତ୍ୟାହାର କରି ନେବାପାଇଁ କହିଲେ । ତାଙ୍କ କଥାକୁ ଶିରୋଧାର୍ଯ୍ୟ କରି ସେ ଇସ୍ତଫାପତ୍ର ପ୍ରତ୍ୟାହାର କରିନେଲେ ଏବଂ ସେଦିନର ସିଣ୍ଡିକେଟ୍ ମିଟିଙ୍ଗରେ ସେହି ବିଷୟର ପୁନର୍ବିଚାର ହୋଇ ସମ୍ବଲପୁରରେ ଆଇନ କଲେଜ ସ୍ଥାପନ କରିବା ପାଇଁ ମଞ୍ଜୁରୀ ମିଳିଲା । 1965 ମସିହା ନଭେମ୍ବର ମାସରେ ସମ୍ବଲପୁର ନାରୀ ସେବା ସଦନରେ ଆଇନ୍ କଲେଜର ଶୁଭ ଉଦ୍‌ଘାଟନ ଉତ୍ସବ ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ଶ୍ରୀ ଅଯୋଧ୍ୟାନାଥ ଖୋସଲାଙ୍କ ଦ୍ୱାରା ସମ୍ପନ୍ନ ହୋଇଥିଲା । ଆଇନ୍ ମନ୍ତ୍ରୀ ଶ୍ରୀ ବନମାଳୀ ବାବୁ ଉକ୍ତ ଉତ୍ସବରେ ସଭାପତି ହୋଇଥିଲେ ଏବଂ ସେହିବର୍ଷ ସ୍ୱାଧୀନତା ସଂଗ୍ରାମୀ ଶହୀଦ ପଞ୍ଜାବ କେଶରୀ ଲାଲ ଲଜପତ୍ ରାୟଙ୍କର ଜନ୍ମ ଶତବାର୍ଷିକୀ ପାଳିତ ହେଉଥିଲା । ତେଣୁ ତାଙ୍କ ପବିତ୍ର ସ୍ମୃତିରେ କଲେଜଟି ଲାଲ ଲଜପତ୍ ରାୟ ଆଇନ୍ କଲେଜ ନାମରେ ନାମିତ ହେଲା ।

## କଂଗ୍ରେସ ଦଳରେ ଯୋଗଦାନ

ଡଃ ସୂପକାର ତିନିବର୍ଷ କାଳ ରାଜନୀତିରୁ ଦୂରରେ ରହି 1965 ମସିହାରେ କଂଗ୍ରେସ ଦଳରେ ଯୋଗ ଦେବାକୁ ସ୍ଥିର କଲେ । ଏ ବିଷୟରେ କଂଗ୍ରେସ ଶୀଘ୍ର ନିଷ୍ପତ୍ତି ନେଇ ଆଦରର ସହିତ ଦଳରେ ତାଙ୍କୁ ଗ୍ରହଣ କଲେ ଏବଂ ଗଣ ମାଧ୍ୟମରେ ଏ ବିଷୟ ପ୍ରଚାରିତ ହେଲା । ଇତି ମଧ୍ୟରେ ରାଜ୍ୟ ସଭାର ସଭ୍ୟ ଢେଙ୍କାନାଳ ରାଜା ଶ୍ରୀ ଶଙ୍କର ପ୍ରସାଦ ସିଂହ ଦେଓଙ୍କ ପରଲୋକ ହେଲା (1965 ମସିହାରେ) । ସେ ମାତ୍ର ବର୍ଷକ ପୂର୍ବରୁ ରାଜ୍ୟ ସଭାକୁ ନିର୍ବାଚିତ ହୋଇଥିଲେ । ତାଙ୍କ ଶୂନ୍ୟ ସ୍ଥାନରେ ଓଡ଼ିଶା ବିଧାନସଭା ଦ୍ୱାରା ଜଣେ ନିର୍ବାଚିତ ହେବାର କଥା । ଓଡ଼ିଶାରେ କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠ ଥିବାରୁ ଉକ୍ତ ଦଳରୁ ଜଣେ ସଭ୍ୟ ନିର୍ବାଚିତ ହେବା ସ୍ୱାଭାବିକ ଡଃ ସୂପକାର ଏହାପାଇଁ ପ୍ରାର୍ଥୀ ହେବାକୁ ଦରଖାସ୍ତ କଲେ । ଶ୍ରୀ ସଦାଶିବ ତ୍ରିପାଠୀ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ତାଙ୍କ ନେତୃତ୍ୱକୁ ମାନିନେବାକୁ କଂଗ୍ରେସ ଦଳର ଅନେକ ବିଧାୟକ ଅନିଚ୍ଛୁକ ଥିଲେ । ଦୀର୍ଘ ସମୟ ଅପେକ୍ଷା କରି ଶେଷରେ ମନୋନୟନ ପତ୍ର ଦାଖଲ କଲେ । ସେ ଅଧିକାଂଶ କଂଗ୍ରେସ ସଭ୍ୟଙ୍କର ଭୋଟ ପାଇ ରାଜ୍ୟସଭାକୁ ନିର୍ବାଚିତ

ହେଲେ । ଏହି ପ୍ରସଙ୍ଗରେ ସେ କହିଥିଲେ (ତତ୍ରୈବ ପୃ. 296), "ସେଥର ରାଜ୍ୟ ସଭା ଆସନ ଯେପରି ଅଯାଚିତ ଥିଲା, ସେପରି ପୂର୍ବରୁ କେବେ ହୋଇ ନ ଥିବ । ପରେ ମଧ୍ୟ କେବେ ହୋଇନାହିଁ । ବିଧାନ ସଭାର ଅଧିକାଂଶ ସଭ୍ୟ ମୋର ପୂର୍ବପରିଚିତ ଥିଲେ । ତେଣୁ ମୁଁ କଂଗ୍ରେସ ଦଳରେ ଯୋଗ ଦେଇଥିବାରୁ ଓ ରାଜ୍ୟ ସଭାକୁ ନିର୍ବାଚିତ ହୋଇ ଥିବାରୁ ଖୁସି ହେଲି ।"

## ସାହିତ୍ୟିକ ସାଧନା

ଡଃ ସୂପକାରଙ୍କ ପିତା ବାଲ୍ୟକାଳରୁ ତାଙ୍କର ସାରସ୍ୱତ ସାଧନା ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଥିଲେ । ଏମିତି କି ତାଙ୍କୁ 7/8 ବର୍ଷ ହେଲାବେଳେ ବଙ୍ଗଳା ଭାଷାରେ ଲିଖିତ ଶିଶୁ ସାହିତ୍ୟ ପାଠ କରୁଥିଲେ ଏବଂ ସଂସ୍କୃତ ଶିକ୍ଷା ଆରମ୍ଭ କରିଥିଲେ । ମାଟ୍ରିକ୍ ପଢିଲାବେଳୁ ରଘୁବଂଶ, ମେଘଦୂତମ୍ ଆଦି କାବ୍ୟ ପାଠ କରୁଥିଲେ । ସଂସ୍କୃତ ଭାଷା ଶିକ୍ଷା ଯୋଗୁଁ ତାଙ୍କର ଓଡ଼ିଆ ଭାଷା ମାର୍ଜିତ ହେଲା ଏବଂ ସାହିତ୍ୟିକ ଦକ୍ଷତା ତଥା ଅଭିରୁଚି ଉନ୍ନତତର ହେଲା । ରେଭେନ୍ସା କଲେଜରେ ଅଧ୍ୟୟନ କଲାବେଳେ ଛାତ୍ରାବାସର ହାତଲେଖା ପତ୍ରିକା ଊର୍ମି ଓ ଜାଗରଣର ସମ୍ପାଦକ ହୋଇଥିଲେ । ତାଙ୍କର ଅନେକ ସମସାମୟିକ/ଅର୍ଥନୈତିକ ପ୍ରବନ୍ଧ ଓ ହାସ୍ୟ ରସାତ୍ମକ ରମ୍ୟରଚନା ତତ୍କାଳୀନ ସାହିତ୍ୟ-ପତ୍ରିକା ନବଭାରତ, ଚତୁରଙ୍ଗ ନବଯୁଗ ଶଙ୍ଖ ହୀରାଖଣ୍ଡରେ ଆତ୍ମପ୍ରକାଶ କରିଥିଲା ।

ତତ୍କାଳୀନ ଓଡ଼ିଶାରେ ମଧ୍ୟ ସାହିତ୍ୟ ସୃଷ୍ଟି କରିବାରେ ଯେତେ ପ୍ରକାର ବାଧାବିଘ୍ନ ଥିଲା, ସେ ଜଣେ "ସାଧାରଣ ସାହିତ୍ୟିକ" ଭାବରେ ଗଭୀର ଦୁଃଖ ଓ ନୈରାଶ୍ୟର ସହିତ ଉଲ୍ଲେଖ କରିଛନ୍ତି । (ତତ୍ରୈବ ପୃ. 222) "ମାସିକ ସାହିତ୍ୟ ପତ୍ରମାନ ଲେଖକମାନଙ୍କ ପକ୍ଷରେ ଲୋକପ୍ରିୟ ହେବାର ଏକ ସୁଲଭ ମାଧ୍ୟମ । କିନ୍ତୁ ଓଡ଼ିଶାର ଅଧିକାଂଶ ପ୍ରତିଷ୍ଠିତ ମାସିକ ସାହିତ୍ୟ ପତ୍ରମାନଙ୍କରେ ଧରାବନ୍ଧା ଲେଖକମାନଙ୍କୁ ଛାଡ଼ିଦେଲେ ଅନ୍ୟ ଲେଖକ-ମାନଙ୍କ ପାଇଁ ପ୍ରାୟ 'ପ୍ରବେଶ ନିଷେଧ' କହିଲେ ଚଳେ । ଲେଖକମାନଙ୍କ ପକ୍ଷରେ ସମ୍ପାଦକଙ୍କର 'ମୁଡ୍' କୁ ଜଗି ଚଳିବା ମଧ୍ୟ ଏକ ଗ୍ରରୁକଳା × × × ଲେଖା ପ୍ରକାଶିତ କରାଇବା ଗରଜ ଲେଖକଙ୍କର ମାସିକ ପତ୍ର ସମ୍ପାଦକଙ୍କର ନୁହେଁ—ଏ ବିଷୟରେ ମୁଁ ସର୍ବଦା ସଚେତନ, ଓଡ଼ିଆ ମାସିକ ପତ୍ରିକାମାନ ଲେଖକମାନଙ୍କୁ ଲେଖାର ପାରିଶ୍ରମିକ ଦିଅନ୍ତି ନାହିଁ, ସାଧାରଣତଃ ଚିଠିର ଜବାବ ମଧ୍ୟ ଦିଅନ୍ତି ନାହିଁ ।"

ସେ 1967 ମସିହାରୁ 1970 ମସିହା ପର୍ଯ୍ୟନ୍ତ ଲୋକସଭାର ସଭ୍ୟ ଥିଲାବେଳେ ଅବସର ସମୟରେ ସାହିତ୍ୟ ଚର୍ଚ୍ଚାରେ ମନ ଦେଉଥିଲେ । ସେତେବେଳେ ରାଜନୀତିରେ ବହୁ ନାଟକୀୟ ପରିବର୍ତ୍ତନ ଘଟୁଥିଲା । ବହୁ ଆୟାରାମ ଓ ଗୟାରାମ ଥିଲେ । ସେ ଇଂରେଜୀରେ କେତେକ ରାଜନୈତିକ ବ୍ୟଙ୍ଗ ରଚନା ଲେଖୁଥିଲେ । ସେଥିରୁ ଅନେକ କାର୍ଟୁନବହୁଳ ଓ ଲୋକପ୍ରିୟ ସାପ୍ତାହିକୀ Shankar's Weekly ରେ ପ୍ରକାଶିତ ହୋଇଥିଲା । ତା'ର ସମ୍ପାଦକ ଫୋନରେ

ଲେଖାପାଇଁ ଧନ୍ୟବାଦ ଦିଅନ୍ତି ଏବଂ ମନୋନୀତ ହେଲବୋଲି ଜଣାଇ ଦିଅନ୍ତି । Complimentary copy 2/3 ଦିନ ମଧ୍ୟରେ ପାଉଥିଲେ । ପ୍ରତି ଲେଖାପାଇଁ ଚେକ୍‌ଟିଏ ମଧ୍ୟ ଅବିଳମ୍ବେ ପହଞ୍ଚୁଥିଲା । ଓଡ଼ିଶାର ତିକ୍ତ ଅଭିଜ୍ଞତା ତୁଳନାରେ ତାହା କେତେ ଉତ୍ସାହପ୍ରଦ! ଡଃ ସୂପକାର ପୁଣି ପୁସ୍ତକ ପ୍ରକାଶକମାନଙ୍କ ସମ୍ପର୍କରେ କହିଛନ୍ତି, "କଟକ ସହର ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ମୁଖ୍ୟ କେନ୍ଦ୍ର । ଓଡ଼ିଶାର ଅଧିକାଂଶ ପୁସ୍ତକ ପ୍ରକାଶନ ସଂସ୍ଥା କଟକରେ ଅବସ୍ଥିତ । ଏହି ସଂସ୍ଥାମାନଙ୍କର ଅନୁଗ୍ରହ ଦ୍ୱାରା ଓଡ଼ିଶାର ସାହିତ୍ୟିକ ପ୍ରତିଭା ନିୟନ୍ତ୍ରିତ ହୁଏ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ" । ସମ୍ବଲପୁର, ଜୟପୁର ପ୍ରଭୃତି ସହରରେ ପ୍ରକାଶନ ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି ହୋଇନଥିଲା ।

ଡଃ ସୂପକାର ନିଜ ଖର୍ଚ୍ଚରେ "ଗଳ୍ପାଞ୍ଜଳି" ଓ "ବିଷକନ୍ୟା" ଗଳ୍ପପୁସ୍ତକ ଦୁଇଟି ପ୍ରକାଶ କରିଥିଲେ । ତା'ପରେ ତୃତୀୟ ପୁସ୍ତକ "ଜୁଆରଭଟ୍ଟା" ମଧ୍ୟ ସେମିତି ନିଜ ଦାୟିତ୍ୱରେ ପ୍ରକାଶ କଲେ । ଉକ୍ତ ବହିଟି ଗଳ୍ପ ଓ ଏକାଙ୍କିକାର ଏକ ସଙ୍କଳନ । ସମ୍ବଲପୁରର ଋଷିପ୍ରତିମ ଡାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ପରଲୋକ ହେଲାପରେ ତାଙ୍କ ଜୀବନୀ ଲେଖି "ଅମର ଜୀବନ" ନାମରେ ପ୍ରକାଶ କରିଥିଲେ । ଅଳ୍ପ ଦିନ ମଧ୍ୟରେ ବହିଟି ବିକ୍ରି ହୋଇଗଲା ଏବଂ ଖର୍ଚ୍ଚ ଟଙ୍କାଟକ ସେ ପାଇଥିଲେ । ଅମରନାଥ ଯାତ୍ରାର ଅନୁଭୂତିକୁ ନେଇ ଲିଖିତ ଭ୍ରମଣ କାହାଣୀ "ତୀର୍ଥ ପଥେ" 1964 ରେ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଦ୍ୱାରା ପ୍ରକାଶିତ ହୋଇଥିଲା ।

ସମ୍ବଲପୁରର ଦୁଇଜଣ ବରପୁତ୍ର ହେଲେ—ସୁରେନ୍ଦ୍ର ସାଏ ଓ ଗଙ୍ଗାଧର ମେହେର । "ସୁରେନ୍ଦ୍ର ସାଏ" ଶୀର୍ଷକ ଏକ ନାଟକ ଏବଂ ଗଙ୍ଗାଧରଙ୍କ ଉପରେ "କସ୍ତୁରୀମୃଗ" ନାମକ ଏକାଙ୍କିକା ରଚନା କରିଥିଲେ । ଶେଷୋକ୍ତ ଏକାଙ୍କିକାଟି ଗଙ୍ଗାଧର ମେହେର କଲେଜରେ ମଞ୍ଚସ୍ଥ ହୋଇଥିଲା ଏବଂ ଏକାଧିକବାର ରେଡ଼ିଓରେ ପ୍ରସାରିତ ହୋଇଥିଲା । 1967 ମସିହାରେ ଦ୍ୱିତୀୟ ଥର ପାଇଁ ଲୋକ ସଭାକୁ ନିର୍ବାଚିତ ହେଲା ପରେ ଡଃ ସୂପକାର ଥରେ ସଂସଦୀୟ ପ୍ରତିନିଧି ମଣ୍ଡଳୀରେ ସୋଭିଏଟ୍ ଋଷକୁ ଯାଇଥିଲେ । ଉକ୍ତ ବିଦେଶ ଭ୍ରମଣ ଶେଷରେ "ଋଷିଆ ଭ୍ରମଣ" ନାମକ ଏକ ପୁସ୍ତକ ରଚନା କରିଥିଲେ ଏବଂ ତାକୁ ମଧ୍ୟ ନିଜେ ପ୍ରକାଶ କରିଥିଲେ । ସେ ଅନେକ ପୁସ୍ତକ ରଚନା ଓ ପ୍ରକାଶ କରି ଛାପାଖର୍ଚ୍ଚ ମଧ୍ୟ ପାଇପାରି ନଥିଲେ । ଭଲ ପ୍ରକାଶକମାନଙ୍କର ଦ୍ୱାରସ୍ଥ ହେବାକୁ ସେ କୁଣ୍ଠିତ ହୋଇଥିଲେ । କବିତା ବହି ପ୍ରକାଶ କରିବାକୁ ନେଇ ପ୍ରକାଶକମାନେ ପାଣ୍ଡୁଲିପି ହଜାଇଥାନ୍ତି, ପ୍ରକାଶ କରିବାରେ ଆଗ୍ରହୀ ହୋଇନଥାନ୍ତି । ସେ ତେଣୁ କହିଛନ୍ତି, "ମୁଁ ପ୍ରାୟ ସର୍ବ ଜନ ବୋଧଗମ୍ୟ କବିତା ଲେଖେଁ । ସେ ପ୍ରକାର କବିତା ଆଜିକାଲି ବଜାରରେ ହୁଏତ ଚଳୁନାହିଁ । ଅବଶ୍ୟ ସାହିତ୍ୟ ପତ୍ରମାନେ ମୋର କବିତା ପ୍ରକାଶ କରିବାରେ ଦ୍ୱିଧା ବୋଧ କରନ୍ତି ନାହିଁ" (ପୃ. 233) ।

ଡଃ ସୂପକାର ତାଙ୍କ ସାହିତ୍ୟିକ ଜୀବନର ଅତୃପ୍ତି ଓ ଅସନ୍ତୋଷ କେଉଁଠାରେ ସିଧା ତ କେଉଁଠି ବ୍ୟଙ୍ଗାକାରରେ ବର୍ଣ୍ଣନା କରିଛନ୍ତି । ଗଳ୍ପ, ଉପନ୍ୟାସ, ନାଟକ, ଏକାଙ୍କିକା ଆଦି ରଚନା କଲାବେଳେ ମନ ସର୍ଜନର ଆନନ୍ଦରେ ବିଭୋର ଥାଏ । ତେଣୁ ପରିଶ୍ରମ ବାଧେ ନାହିଁ ।

କିନ୍ତୁ ତହିଁର ପ୍ରତିଲିପି କରିବାରେ ପରିଶ୍ରମ କଷ୍ଟକର । ତାହା ପ୍ରକାଶକଙ୍କ ପାଖରେ ଅବହେଳିତ ହେଲେ ଖୁବ୍ ଦୁଃଖଦାୟକ । ସେ ଲେଖିଛନ୍ତି 'ବିଶେଷତଃ ପାଞ୍ଚ-ଛଅ ପୃଷ୍ଠାର ଏକ ବିରାଟ ଉପନ୍ୟାସ ବା ନାଟକର ପାଣ୍ଡୁଲିପି ପଠାଇ ଯଦି ଲେଖକ ପ୍ରକାଶକଠାରୁ କୌଣସି ଉତ୍ତର ନ ପାଏ ବା ପାଣ୍ଡୁଲିପି ଫେରସ୍ତ ନ ପାଏ, ତେବେ ସେଇଥିରେ ତା'ର ଲେଖକ-ଜୀବନର ସମାଧି ହୁଏ ବା ହେବା ଉଚିତ । ଓଡ଼ିଶାର କେତେ ଭାଗ୍ୟବାନ ସାହିତ୍ୟିକଙ୍କୁ ଛାଡ଼ିଦେଲେ ବାକି ସମସ୍ତଙ୍କର ଅନୁଭୂତି ସହିତ ମୋର ଅନୁଭୂତି ସମାନ ହୋଇଥିବ ବୋଲି ମୁଁ ଭାବେ" (ତତ୍ରୈବ ପୃ. 234) ।

1972 ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପ୍ରକାଶିତ ମାସିକ ପତ୍ରରେ ସେ "ମନୁସ୍ମୃତିରେ ଆଇନ" ଶୀର୍ଷକ କେତେକ ପ୍ରବନ୍ଧ ଧାରାବାହିକ ଭାବରେ ପ୍ରକାଶ କରିବାକୁ ଦେଉଥିଲେ । ମୋଟ 24 ଟି ସଂଖ୍ୟାରେ ପ୍ରବନ୍ଧମାଳା ପୂର୍ଣ୍ଣାଙ୍ଗ ହୋଇଥିଲା । ତା'ପରେ ସେ ଭାବିଲେ, "ଏହାକୁ ଟିକିଏ ସଜାଇ ଇଂରେଜୀରେ ଲେଖିଲେ ପି.ଏଚ.ଡ଼ି, ପାଇଁ ଥେସିସ୍‌ଟିଏ ହୋଇପାରନ୍ତା । ଆହୁରି ପଢ଼ିଲି ଓ ଭଲକରି ଦେଖିଲି ବିଶ୍ଳେଷଣାତ୍ମକ ରୂପେ । ତିନିଶହ ପୃଷ୍ଠାରୁ ଅଧିକ ଥେସିସ୍‌ଟିଏ ହୋଇଗଲା । ସେଇଥିରେ ପି. ଏଚ. ଡ଼ି. ଉପାଧି ମଧ୍ୟ ମିଳିଗଲା" (ପୃ. 235) ।

ଡଃ ସୂପକାର ଗୋଟିଏ ନିରଟ ସାରଗର୍ଭକ ସତକଥା ଲେଖିଛନ୍ତି "ସାହିତ୍ୟ, ରାଜନୀତି, ଶିକ୍ଷା ଆଦି ପ୍ରାୟ ସବୁ କ୍ଷେତ୍ରରେ ପ୍ରତିଭାର ଆଦର ଜୀବନ କାଳରେ ହୁଏନାହିଁ । ଯେତେବେଳେ ଉପେକ୍ଷା ଓ ଲାଞ୍ଛନାରେ ଜର୍ଜର ସାହିତ୍ୟକାର ହତାଶ ହୋଇ ଲେଖନୀ ତ୍ୟାଗ କରେ ଓ ପରେ ଇହଧାମରୁ ବିଦାୟ ନିଏ, ସେତେବେଳେ ଆରମ୍ଭହୁଏ ତା'ର ପ୍ରତିଭାର ପୂଜା, କବିଙ୍କର ଜନ୍ମଦିନ, ଶ୍ରାଦ୍ଧବାସର ମହା ସମାରୋହରେ ପାଳିତ ହୁଏ । ତାଙ୍କର ପଥର ଓ ଧାତୁ ମୂର୍ତ୍ତି ବହୁ ବ୍ୟୟରେ କଲିକତାରୁ ତିଆରି ହୋଇ ଆସେ । ସେତିକି ପଇସା କଲିକତା ଆଦି ନଗରୀର ମୂର୍ତ୍ତିକାରମାନଙ୍କୁ ଦିଆଯାଏ, ତହିଁର ଅଧେରୁ ଅଧେ ଯଦି କବିଙ୍କୁ ତାଙ୍କର ଜୀବନ-କାଳରେ ଦିଆଯାଇଥାନ୍ତା, ତେବେ କବିଙ୍କର ଜୀବନଯାତ୍ରା ହୁଏତ ସୁଗମ ହୋଇଥାନ୍ତା । ଯେଉଁମାନେ କବିଙ୍କର ଜୀବନକାଳରେ ତାଙ୍କର ଖଣ୍ଡିଏ ପୁସ୍ତକ ବହି ପଢିବାକୁ ସମୟ ଓ ଅର୍ଥର ଅପବ୍ୟୟ ମଣୁଥିଲେ, ସେମାନେ ଅଜ୍ଞାତରେ ଶହ ଶହ ଟଙ୍କା ମାର୍ବଲ ମୂର୍ତ୍ତି ବା କାଂସ୍ୟ ମୂର୍ତ୍ତି ସ୍ଥାପନ ପାଇଁ ଦାନ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । କବିଙ୍କର ନାମରେ ନାନା ଅନୁଷ୍ଠାନକୁ ନାମିତ କରି ଆମେ ଆମର ପବିତ୍ର କର୍ତ୍ତବ୍ୟ—ପ୍ରତିଭା ପୂଜା ସମ୍ପନ୍ନ କରୁଁ । କବିଙ୍କର ଜୀବିତାବସ୍ଥାରେ ତାଙ୍କର ପ୍ରାପ୍ୟ ଯାଏ ପୁସ୍ତକ ପ୍ରକାଶକଙ୍କ ପାଖକୁ, ପୁସ୍ତକ ବିକ୍ରେତାଙ୍କ ପାଖକୁ, ମାସିକ ସାହିତ୍ୟ ପତ୍ରର ପ୍ରକାଶକଙ୍କ ପାଖକୁ କବିଙ୍କର ମୃତ୍ୟୁପରେ ଯାହା ତାଙ୍କର ଉତ୍ତରାଧିକାରୀଙ୍କ ପ୍ରାପ୍ୟ ତାହା କଲିକତାର ମୂର୍ତ୍ତିକାରଙ୍କ ପାଖକୁ । ଆମେ ପଥର ବା ବ୍ରୋଞ୍ଜର ପୁତଳିକାର ପୁଷ୍ପମାଲ୍ୟ ଅର୍ପଣ କରୁଁ । ପଥର ଭିତରେ କିଛି ରସ ନଥାଏ" (ତତ୍ରୈବ ପୃ. 236—37) । 1997 ମସିହାରେ ଡଃ ସୂପକାରଙ୍କ ଲିଖିତ ଆତ୍ମଜୀବନୀ ପୁସ୍ତକ "ଅସ୍ତରାଗ" ଓଡ଼ିଶା ସାହିତ୍ୟ

ଏକାଡ଼େମୀ ଦ୍ୱାରା ତାଙ୍କ ମୃତ୍ୟୁର ତିନିବର୍ଷପରେ ପୁରସ୍କୃତ ହେଲବେଳେ ଉପରୋକ୍ତ ଉକ୍ତିର ସତ୍ୟତା ପ୍ରମାଣିତ ହୁଏ ।

ଡଃ ସୂପକାର ଥିଲେ ଜଣେ ଉଚ୍ଚକୋଟୀର ବୁଦ୍ଧିଜୀବୀ ଏବଂ ତାଙ୍କର ଜୀବନ ଥିଲ ଖୁବ୍ ବର୍ଣାଢ୍ୟ ଓ ବିଚିତ୍ର । ତାଙ୍କର ବହୁମୁଖୀ, ରସାଳ ଓ ଉନ୍ନତ ଅଭିଜ୍ଞତାର ରୂପାୟନ ତାଙ୍କ ଲିଖିତ ପୁସ୍ତକଗୁଡ଼ିକୁ ଉଚ୍ଚକୋଟୀକୁ ନେଇଯାଇଛି । ତେବେ ତାଙ୍କର ଅତୃପ୍ତ ପ୍ରାଣରେ ଆଶାନୁରୂପ ସାହିତ୍ୟ ସୃଷ୍ଟି ହୋଇପାରି ନାହିଁ ବୋଲି ସେ ଅନୁଭବ କରି ଦୁଃଖିତ ହୋଇଛନ୍ତି । ରାଜନୈତିକ ଘନଘଟା, ସାଧାରଣ ଲୋକଙ୍କ ସେବା ଓ ପାରିବାରିକ ଜଞ୍ଜାଳ ଯୋଗୁଁ ତାଙ୍କର ସାହିତ୍ୟ ସୃଷ୍ଟି ପର୍ଯ୍ୟାପ୍ତ ହୋଇନାହିଁ ବୋଲି କହନ୍ତି । 'ସାହିତ୍ୟିକ ତପସ୍ୟା ମୋ ଭାଗ୍ୟରେ ଲେଖା ନଥିଲ....ଓଡ଼ିଶା ରାଜନୀତିରେ କେତେ ସୁନାମୁଣ୍ଡାଠାରୁ ଗୁଞ୍ଜର ଓଜନ ଅଧିକ ହେବାର ଲକ୍ଷ୍ୟ କରିଛି । କେତେଥର ଭାଗ୍ୟର ବିଡ଼ମ୍ବନାରେ ପାରିପ୍ରାର୍ଶ୍ୱର ଆଗରେ ଆନ୍ତରିକତା ଲାଞ୍ଛିତ ହେଉଥିବାର ଲକ୍ଷ୍ୟ କରିଛି ସେସବୁ ଶରତ କାଳର ମେଘପରି, ଅର୍ଦ୍ଧ ରାତ୍ରିର ସ୍ୱପ୍ନପରି ବିଚିତ୍ର ରୂପରେ ଦୂରେଇ ଯାଇଛନ୍ତି । ମୋ କଲମରେ ଧରାଦେଇ ନାହାନ୍ତି "(ତତ୍ରୈବ ପୃ. 237)" । ପଣ୍ଡିତ ଲକ୍ଷ୍ମୀନାରାୟଣ ସାହୁଙ୍କ ଭାଷାରେ ପ୍ରତ୍ୟେକ ଲୋକ ଗୋଟିଏ ଭାସମାନ ବରଫ ପାହାଡ଼ ବା (Iceberg) ତା'ର ଏକ ଅଷ୍ଟମାଂଶ ଆମର ଦୃଷ୍ଟିଗୋଚର ହୁଏ । ସେହିପରି ଡକ୍ଟର ସୂପକାରଙ୍କ ସାରସ୍ୱତ ସାଧନା ବିଭିନ୍ନ ସମୟରେ ଓ ବିଭିନ୍ନ କାରଣରୁ ବାଧାପ୍ରାପ୍ତ ହେଲେ ହେଁ ଯେତିକି ସେ ଅବଦାନ ଦେଇଯାଇଛନ୍ତି, ତାହାର ପରିମାଣ ଗୁଣାତ୍ମକ ଦୃଷ୍ଟି-କୋଣରୁ ଉଲ୍ଲେଖଯୋଗ୍ୟ ।

## ରାଜ୍ୟ ସଭା ଓ ଲୋକ ସଭାରେ ସଭ୍ୟ

1965 ରେ ଡକ୍ଟର ସୂପକାର ରାଜ୍ୟ ସଭାର ସଭ୍ୟ ନିର୍ବାଚିତ ହେଲେ । ସେଠାରେ ତାଙ୍କର ଅନେକ ପୂର୍ବପରିଚିତ ସାଂସଦ ବନ୍ଧୁ ଥିଲେ । ଡକ୍ଟର ଜାକିର୍ ହୋସେନ ଥିଲେ ଉପରାଷ୍ଟ୍ରପତି ତଥା ରାଜ୍ୟ ସଭାର ଅଧ୍ୟକ୍ଷ । ତାଙ୍କର ବାମ ଆଖିକୁ ଭଲ ଦିଶେ ନାହିଁ ଏବଂ ଦୁର୍ଭାଗ୍ୟକୁ ଡଃ ସୂପକାରଙ୍କ ଆସନ ତାଙ୍କର ବାମ ପଟକୁ ଥିଲ । ତେଣୁ ପ୍ରଶ୍ନୋତ୍ତର କାଳରେ ତାଙ୍କର ଦୃଷ୍ଟି ଆକର୍ଷଣ କରିବା କଷ୍ଟକର ଥିଲ । "ଯେଉଁଦିନ ମୋର କୌଣସି ମୂଳପ୍ରଶ୍ନ, ପ୍ରଥମ ଘଣ୍ଟା ଶେଷ ହେବା ପୂର୍ବରୁ ଆସିଯାଉଥିଲ ତେବେ ଅଧ୍ୟକ୍ଷଙ୍କର ଦୃଷ୍ଟି ସ୍ୱତଃ ମୋ ପ୍ରତି ଆକୃଷ୍ଟ ହେଉଥିଲ ଓ ତତ୍‌ସଂପୃକ୍ତ ପରିପୂରକ ପ୍ରଶ୍ନ ପଚାରିବାରେ ଅସୁବିଧା ନଥିଲ । ସେ ମୋତେ ଏହିପରି ଚିହ୍ନିଲେ" (ଅସ୍ତରାଗ, 1993 ପୃ. 16) ।

1967 ମସିହା ଚତୁର୍ଥ ଲୋକ ସଭା ନିର୍ବାଚନ । ପଣ୍ଡିତ ନେହେରୁଙ୍କ ବଳିଷ୍ଠ ନେତୃତ୍ୱ ନଥିଲ । ମୌଲନା ଆଜାଦ, ଲାଲ ବାହାଦୂର ଶାସ୍ତ୍ରୀ, ଗୋବିନ୍ଦ ବଲ୍ଲଭ ପନ୍ଥ ପ୍ରମୁଖ ଇହଧାମରୁ ଅନ୍ତର୍ହିତ । କେନ୍ଦ୍ରରେ ନେତୃତ୍ୱର କନ୍ଦଳ । ଶେଷରେ ମୋରାରଜୀ ଦେଶାଇଙ୍କୁ ପରାସ୍ତ କରି ଇନ୍ଦିରା ଗାନ୍ଧୀ ନେତୃତ୍ୱ ଗ୍ରହଣ କଲେ ।

ଡଃ ସୂପକାର ଉକ୍ତ ଲୋକ ସଭରେ ପ୍ରାର୍ଥୀ ହୋଇ ଲୋକମାନଙ୍କ ସହିତ ନିଜର ପୂର୍ବ ସମ୍ପର୍କ ଓ ଲୋକପ୍ରିୟତା ଯୋଗୁଁ ଆଶାନୁରୂପ ଭବରେ କଂଗ୍ରେସ ଦଳର ସାହାଯ୍ୟ ପାଇନଥିଲେ ସୁଦ୍ଧା ସମ୍ବଲପୁର ନିର୍ବାଚନମଣ୍ଡଳୀରୁ ଜୟଯୁକ୍ତ ହୋଇଥିଲେ । ଓଡ଼ିଶାରେ କିନ୍ତୁ କଂଗ୍ରେସର ବିପର୍ଯ୍ୟୟ ଘଟିଥିଲା । ମାତ୍ର ସୌଭଗ୍ୟକୁ ଲୋକସଭରେ କଂଗ୍ରେସଦଳ ସଂଖ୍ୟାଗରିଷ୍ଠତା ଲଭ କରିଥିଲା । ବୟୋଜ୍ୟେଷ୍ଠ ନେତାମାନଙ୍କର ବିଦାୟ ପରେ ଯୁବ ଗୋଷ୍ଠୀର ଅଭ୍ୟୁଦୟ ହେଲା ।

ଡକ୍‌ଟର ସୂପକାର ଲୋକ ସଭରେ ପ୍ରଶ୍ନ ଓ ଆଲୋଚନା ମାଧ୍ୟମରେ ଓଡ଼ିଶା, ଭରତ ତଥା ଆନ୍ତର୍ଜାତୀୟ ସମସ୍ୟାଗୁଡ଼ିକ ପ୍ରତି ସରକାର ଓ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । ଲୋକ ସଭର ଅଧ୍ୟକ୍ଷ ନୀଲମ୍ ସଂଜୀବ ରେଡ୍ଡି ଓ ବିଭିନ୍ନ ମନ୍ତ୍ରୀମାନଙ୍କ ସହିତ ସେ ପରିଚିତ ହେଲେ । 1968 ମସିହା ଜୁନ ମାସରେ ଏକ ସଂସଦୀୟ ପ୍ରତିନିଧି ଦଳରେ ବିଦେଶ ଭ୍ରମଣରେ ଋଷ ଯାତ୍ରା କରିଥିଲେ । ଜଣେ ନିଷ୍ଠାପର ସଭ୍ୟ ଭବରେ ସେ ଯିବା ପୂର୍ବରୁ ଋଷ ଭଷା ଶିକ୍ଷା କରିବାକୁ ଚେଷ୍ଟା କରିଥିଲେ । ମାତ୍ର ଆଶାନୁରୂପ ଦକ୍ଷତା ହାସଲ କରିପାରି ନଥିଲେ । ଋଷର ବିଭିନ୍ନ ଅଞ୍ଚଳ ଓ ଅନୁଷ୍ଠାନ ବୁଲି ଦେଖିଥିଲେ ଏବଂ ସେଠାରୁ ହଂଗେରୀ, ଇଂଲଣ୍ଡ, ଫ୍ରାନସ୍ ଇତ୍ୟାଦି ଦେଶ ଭ୍ରମଣରେ ଯାଇଥିଲେ ।

1969 ମସିହା ମଇ ମାସ 3 ତାରିଖରେ ରାଷ୍ଟ୍ରପତି ଜାକିର୍ ହୋସେନଙ୍କ ହୃଦରୋଗରେ ମୃତ୍ୟୁ ହେଲା । କଂଗ୍ରେସ ଦଳରେ ଗୋଷ୍ଠୀ କନ୍ଦଳ ମୁଣ୍ଡ ଟେକିଲା, ରାଷ୍ଟ୍ରପତି ନିର୍ବାଚନରେ ଡଃ ସୂପକାର ଏହି ପ୍ରସଙ୍ଗରେ ଲେଖିଛନ୍ତି, "ଭରତୀୟ ରାଜନୀତିର ଏହା ଏକ ଅଶୁଭ ଲକ୍ଷଣ । ଦିଲ୍ଲୀରୁ ମୋଗଲ ଯୁଗର ଦରବାରୀ ଗନ୍ଧ ଦୂର ହୋଇ ପାରୁନାହିଁ । ଗଣତନ୍ତ୍ର ଶାସନରେ ସ୍ତାବକମାନଙ୍କର ଚାଟୁକାରିତାରେ ଗଗନ ପବନ ମୁଖରିତ ହୁଏ" (ତତ୍ରୈବ ପୃ. 56) । ଇନ୍ଦିରା ଗାନ୍ଧୀଙ୍କ କେତେକ କାର୍ଯ୍ୟକୁ ଅନୈତିକ ମନେକରି ସେ ନାପସନ୍ଦ କରିଥିଲେ । ଫଳରେ ସେ ତାଙ୍କର ଚକ୍ଷୁଃଶୂଳ ହୋଇ କଂଗ୍ରେସ ଦଳର ବହୁ ସୁବିଧାରୁ ବଞ୍ଚିତ ହୋଇଥିଲେ । ସେ ଏହି ପ୍ରସଙ୍ଗରେ ମନୁସ୍ମୃତିରୁ ଗୋଟିଏ ବାକ୍ୟ ଉଦ୍ଧୃତ କରିଛନ୍ତି,

"ସଭ ବା ନ ପ୍ରବେଷବ୍ୟା ବକ୍ତବ୍ୟଂ ବା ସମଂଜସମ
ଅବ୍ରୁବନ୍ ବିବ୍ରୁବିନ୍ ବାଽପି ନରୋଭବତ୍ କିଲ୍ବିଷ"

ଅର୍ଥାତ ସଭରେ ବରଂ ପ୍ରବେଶ କରିବ ନାହିଁ । ମାତ୍ର ସଭରେ ଥାଇ ଉଚିତ କଥା ନ କହି (ଚୁପ ରହିଲେ) ବା ଭୁଲ କଥା କହିଲେ ଲୋକ ପାପଭଗୀ ହୁଏ ।

1971 ମସିହା ସାଧାରଣ ନିର୍ବାଚନରେ କଂଗ୍ରେସର ବିପୁଳ ସଂଖ୍ୟାଗରିଷ୍ଠତା ଲଭ ହେଲା ମାତ୍ର ଓଡ଼ିଶା ବିଧାନ ସଭରେ କୌଣସି ଦଳ ସଂଖ୍ୟାଗରିଷ୍ଠତା ଲଭ କରି ପାରିଲା ନାହିଁ । ସଂଗଠନ କଂଗ୍ରେସରୁ ପ୍ରାର୍ଥୀ ହୋଇ ଶ୍ରୀ ବନମାଳୀ ବାବୁଙ୍କ ଦ୍ୱାରା ଡଃ ସୂପକାର ପରାସ୍ତ ହେଲେ । ସେ ଏହି ସମ୍ପର୍କରେ କହିଛନ୍ତି, "ମୋର ରାଜନୈତିକ ସନ୍ନ୍ୟାସ ନେବା

ହୁଏତ ବିଧିର ବିଧାନ ଥିଲା । କିନ୍ତୁ ବିଧିର ବିଧାନ ସଙ୍ଗେ ଭାଗ୍ୟର ବିଡ଼ମ୍ବନା । ଏତେଦିନ ଆନ୍ତରିକତାର ସହିତ କାମ କଲାପରେ ଶେଷକୁ ଭୋଟରେ ଅମାନତ ହରାଇବା ଜନସାଧାରଣଙ୍କ ଦ୍ୱାରା ସମ୍ପୂର୍ଣ୍ଣ ଭାବେ ଉପେକ୍ଷିତ ହେବା ! ସର୍ବଶୂନ୍ୟା ଦରିଦ୍ରତା । ........ ସବୁଠାରୁ ବଡ କଥା ହାଓ୍ୱା । ଭାରତୀୟ ରାଜନୀତିରେ ସାବାଳକ ଭୋଟରେ ମନୋନୟନ-ପତ୍ର ଦାଖଲ କଲାବେଳେ ସବୁଦଳର ପ୍ରାର୍ଥୀ ବିଜୟ ଆଶା ପୋଷଣ କରିଥାନ୍ତି । ମାତ୍ର ମାସକରୁ ଅଳ୍ପ ସମୟ ମଧ୍ୟରେ ମୃଦୁ ସମୀର ଝଞ୍ଜାବାତରେ ପରିଣତ ହୁଏ ଓ ବିରାଟ ମହୀରୁହମାନେ ମଧ୍ୟ ଟଳି ପଡ଼ନ୍ତି" (ପୃ. 61) ।

ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରାରମ୍ଭିକ କାଳ

1967 ମସିହାର କଥା । ଡକ୍‌ଟର ରାଧାକୃଷ୍ଣଙ୍କ ପରେ ଡକ୍‌ଟର ଜାକିର ହୋସେନ ରାଷ୍ଟ୍ରପତି ଓ ପରେ ଭି. ଭି. ଗିରି ଉପରାଷ୍ଟ୍ରପତି ଭାବରେ ନିର୍ବାଚିତ ହେଲେ । ଡଃ ସୂପକାର ରାଜ୍ୟ ସଭା ସଭ୍ୟ ଥିଲାବେଳେ ଡଃ ହୋସେନଙ୍କ ସହିତ ପରିଚିତ ଥିଲେ । ରାଷ୍ଟ୍ରପତି ହେଲାପରେ ଡଃ ହୋସେନଙ୍କୁ ସାକ୍ଷାତ କରିବାକୁ ଥରେ ରାଷ୍ଟ୍ରପତି ଭବନକୁ ଯାଇଥିଲେ ଏବଂ ଓଡ଼ିଶାର ପଶ୍ଚିମାଞ୍ଚଳକୁ ପରିଦର୍ଶନରେ ଯିବାପାଇଁ ଅନୁରୋଧ କଲେ । ସେ କହିଲେ "ଏଥିପାଇଁ କୌଣସି ଉତ୍ତମ ଅବସର ଓ କାର୍ଯ୍ୟକ୍ରମ ଥିଲେ ଭଲ ହେବ" ।

ଡଃ ସୂପକାର କହିଲେ, "ଏବର୍ଷ ସମ୍ବଲପୁରରେ ଏକ ନୂତନ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଉଛି । ଆପଣଙ୍କର କରକମଳରେ ସେହି ବିଶ୍ୱବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ ପାଇଁ ଆପଣଙ୍କର ସଦୟ ସ୍ୱୀକୃତି ପାଇଁ ପ୍ରାର୍ଥନା କରୁଛୁ" ।

ସେ କହିଲେ "ଠିକ୍ କଥା । କିନ୍ତୁ ଆପଣ ତ ପ୍ରୋଟୋକଲ ଜାଣନ୍ତି । ତଦନୁଯାୟୀ କାର୍ଯ୍ୟ ହେବା ଦରକାର" ।

ମୁଁ କହିଲି "ମୁଁ ଅବଶ୍ୟ ଜାଣେ । କିନ୍ତୁ ଏଇଟା ତାର ପୂର୍ବାଭାସ । ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଓ ବିଶ୍ୱବିଦ୍ୟାଳୟର କୁଳାଧିପତି ଡକ୍‌ଟର ଅଯୋଧ୍ୟାନାଥ ଖୋସଲା ଏ ବିଷୟରେ ଯଥାବିଧି କାର୍ଯ୍ୟାନୁଷ୍ଠାନ କରିବେ । ଆପଣ ରାଷ୍ଟ୍ରପତି ଓ ବିଶିଷ୍ଟ ଶିକ୍ଷାବିତ୍ । ଆପଣଙ୍କର ଆଶୀର୍ବାଦ ପାଇଲେ ଆମର ବିଶ୍ୱବିଦ୍ୟାଳୟର ଉତ୍ତରୋତ୍ତର ଉନ୍ନତି ହେବ" ।

ତାପରେ ସେ ଲୋକପ୍ରତିନିଧି ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଦସ୍ୟ ଭାବରେ କୁଳପତି ଡକ୍‌ଟର ପର୍ଶୁରାମ ମିଶ୍ରଙ୍କ ସହିତ ପରାମର୍ଶକ୍ରମେ କୁଳାଧିପତି ଡକ୍‌ଟର ଖୋସଲାଙ୍କୁ ଅନୁରୋଧ କରାଗଲା । ଡକ୍‌ଟର ହୋସେନ 1968 ଜାନୁଆରୀ 5 ତାରିଖ ଦିନ ଡକ୍‌ଟର ଖୋସଲାଙ୍କ ସହିତ ଭୁବନେଶ୍ୱରରୁ ବିମାନ ଯୋଗେ ଆସି ଜମାଦାରପାଲୀ ଉଡାଜାହାଜ ପଡ଼ିଆରେ ଅବତରଣ କଲେ । କଟାପାଲି ପାଖରେ ବିଶ୍ୱବିଦ୍ୟାଳୟ ପାଇଁ ଚିହ୍ନିତ ସ୍ଥାନରେ ଭିତ୍ତିପ୍ରସ୍ତର ସ୍ଥାପନ କଲେ । ଡକ୍‌ଟର ନବୀନ କୁମାର ସାହୁ ଥିଲେ ତତ୍କାଳୀନ ବିଶ୍ୱବିଦ୍ୟାଳୟ ରେଜିଷ୍ଟ୍ରାର । ସମ୍ବଲପୁର ପକ୍ଷେ ଏହା ଥିଲା ଏକ ଐତିହାସିକ

ଘଟଣା । ଏହାର ଅଳ୍ପଦିନ ପରେ କୁଳପତି ପଦରୁ ଡକ୍ଟର ପର୍ଶୁରାମ ମିଶ୍ର ଅବସର ଗ୍ରହଣ କଲେ । ଦିଲ୍ଲୀର ଡ଼କ୍ଟର ଆର. କେ. କପୁର ନୂତନ କୁଳପତି ଭବରେ ଯୋଗ ଦେଲେ । ସେ ଯୋଗ ଦେଲାପରେ ବିଶ୍ୱବିଦ୍ୟାଳୟର ସିନେଟ ଓ ସିଣ୍ଡିକେଟ ସଭ୍ୟ ହେବାକୁ ଆଗ୍ରହୀ ହେଲେ । ମାତ୍ର ବିଦେଶ ଯାତ୍ରାରେ ଅନୁପସ୍ଥିତ ରହିବାରୁ ଯେ ପଞ୍ଜୀକୃତ ସ୍ନାତକମାନଙ୍କୁ (Registered graduates) ଏହି ଅସୁବିଧା ଜଣାଇ ତାଙ୍କୁ ଭୋଟ ଦେବାକୁ ଅନୁରୋଧ ପତ୍ର ଦେଇଥିଲେ । ବହୁ ଅଧିକ ଭୋଟରେ ସେ ବିଜୟୀ ହୋଇଥିଲେ, ତାପରେ ସେ ବିଦେଶଭ୍ରମଣରୁ ଫେରି ସିଣ୍ଡିକେଟ ପାଇଁ ପ୍ରାର୍ଥୀ ହୋଇ ସଫଳତା ଲାଭ କରିଥିଲେ । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରେ ନୂତନ କୁଳପତି ଡକ୍ଟର କାପୁର ଖୁବ୍ ପରିଚିତ ଥିବାରୁ ଆଶା କରାଯାଇଥିଲା ଯେ ସେ ଶିଶୁ ବିଶ୍ୱବିଦ୍ୟାଳୟର ଅଭାବ ଅସୁବିଧା ଦୂର କରିପାରିବେ । ମାତ୍ର ତାଙ୍କର ଦୁଇଟି ପତ୍ନୀ ଥିବାରୁ ସେ ଅନେକ ସମୟ ଦିଲ୍ଲୀରେ କଟାଇଲେ ଏବଂ ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେବାକୁ ଯାଇ ପ୍ଲେନରେ ପ୍ରାଣତ୍ୟାଗ କଲେ । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ସଭ୍ୟ ହୋଇ ଲୋକ ସଭା ବୈଠକ ନ ଥିଲାବେଳେ ଏହାର ବୈଠକରେ ଦୁଇ ତିନିଥର ଯୋଗ ଦେଇଥିଲେ ।

ଅଧ୍ୟାପନା କାର୍ଯ୍ୟ

1971 ମସିହା ଲୋକ ସଭା ନିର୍ବାଚନରେ ପରାଜିତ ହେଲା ପରେ ଡକ୍ଟର ସୂପକାର ଖୁବ୍ ନିରାଶ ହୋଇପଡ଼ିଥିଲେ । ପାରିବାରିକ ଅସୁବିଧା ମଧ୍ୟ ଅସମ୍ଭାଳ ଥିଲା । କିନ୍ତୁ ସେ ଧୈର୍ଯ୍ୟଧରି ସବୁ ସମାସ୍ୟାର ମୁକାବିଲା କରିଥିଲେ, ସେ ଆତ୍ମଜୀବନୀ (ପୃ. 62) ରେ ଯଥାର୍ଥରେ ଲେଖିଛନ୍ତି "ଉଷାର ଉଦୟ ପୂର୍ବଘଡ଼ି କୁଆଡେ ଅହୋରାତ୍ରର ଅନ୍ଧକାରତମ ମୁହୂର୍ତ୍ତ । ଜୀବନର ଘନାନ୍ଧକାର ସମୟରେ ମୁଁ କ୍ଷୀଣ ଆଲୋକର ସନ୍ଧାନରେ ଥିଲି । ମହାତ୍ମାଗାନ୍ଧୀ କୁଆଡେ ନିଜ ଜୀବନର ବହୁ ବିଡମ୍ବନା ମଧ୍ୟରେ 'Lead kindly light' କବିତାର ଆବୃତ୍ତି କରୁଥିଲେ । ଛାତ୍ର ଜୀବନର ଚରମ ବିଫଳତା ମୋତେ ଜନସେବା ପ୍ରତି ଆକୃଷ୍ଟ କରିଥିଲା । ଏବେ ଜନସେବାରେ ସମସ୍ତ ଆନ୍ତରିକତା ସତ୍ତ୍ୱେ ଏକ ଦାରୁଣ ବିଡମ୍ବନା ମଧ୍ୟରେ ମୁଁ ଦେଖିପାରିଲି ଏକ କ୍ଷୀଣ ଆଲୋକ–ଅଧ୍ୟାପନା " ।

ତାଙ୍କ ଚେଷ୍ଟାରେ 1965 ମସିହାରେ ସ୍ଥାପିତ ଲଜପତ୍ ରାୟ ଆଇନ କଲେଜରେ ସେ ପ୍ରଥମରୁ ଅଧ୍ୟାପକ ଓ ପରେ ଅଧ୍ୟକ୍ଷ ହୋଇ ରହିପାରିଥାନ୍ତେ । ଏବେ ସାମୟିକ ଅଧ୍ୟାପକ (Part-time Lecturer) ପଦଟିଏ ଖାଲି ଥିବାରୁ ଦରଖାସ୍ତ କରି ନିଯୁକ୍ତି ପାଇଲେ । ମାସିକ ତିନିଶହ ଟଙ୍କା ପାରିଶ୍ରମିକ ଓ ସନ୍ଧ୍ୟାରେ ସପ୍ତାହକୁ ଛଅଟି କ୍ଲାସ ନେବାକୁ ହେଲା । ମାତ୍ର ଏଥିପାଇଁ ସିନେଟ ଓ ସିଣ୍ଡିକେଟର ସଭ୍ୟପଦକୁ ଛାଡ଼ିବାକୁ ପଡ଼ିଲା । କିନ୍ତୁ ହୁଏତ ସେଇ କଲେଜର ଆଉଜଣେ ଅଧ୍ୟାପକ ନିର୍ବାଚିତ ହୋଇ ସେ ସବୁର ସଭ୍ୟ ହୋଇ ରହିଲେ ।

ଭାରତୀୟ ସମ୍ବିଧାନ, ହିନ୍ଦୁ ଓ ମୁସଲମାନ ଆଇନ୍ ଅଧ୍ୟାପନାର ଦାୟିତ୍ୱ ତାଙ୍କ ଉପରେ ପଡ଼ିଥିଲା । ସମ୍ବଲପୁର ବିଶ୍ୱବିଦ୍ୟାଳୟର ପତ୍ରିକା "ସପ୍ତର୍ଷି"ର ସମ୍ପାଦନା ମଣ୍ଡଳୀରେ ରହିଲେ । ସେଥିରେ ଧାରାବାହିକ ଭାବରେ "ମନୁ ସ୍ମୃତିରେ ଆଇନ୍" ଶୀର୍ଷକ ପ୍ରବନ୍ଧମାଳା ପ୍ରକାଶିତ ହେଲା ।

1973 ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଘରୋଇ ଭାବରେ ଏଲ୍. ଏଲ୍. ଏମ୍. ପରୀକ୍ଷା ଦେଲେ । ବିଶେଷ ପରିଶ୍ରମ କରି ପ୍ରଶ୍ନୋତ୍ତର ଓ ନୋଟ ପ୍ରସ୍ତୁତି ଆଦି କରୁଥିଲେ । ଅଧ୍ୟୟନ ଓ ସାଧନା ଫଳ ସ୍ୱରୂପ ସେ ଏଲ. ଏଲ. ଏମ୍. ପରୀକ୍ଷା ଉତ୍ତୀର୍ଣ୍ଣ ହେଲେ । ଡକ୍ଟର ନବୀନ କୁମାର ସାହୁଙ୍କ ତତ୍ତ୍ୱାବଧାନ ମନୁସ୍ମୃତି ଉପରେ ପି. ଏଚ୍. ଡ଼ି. ଥେସିସ୍ (ଶୋଧନିବନ୍ଧ) ଲେଖି ଦାଖଲ କରିଥିଲେ ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ଲାଭ କଲେ 1978 ମସିହାରେ ।

କେନ୍ଦ୍ର ସରକାରଙ୍କ ସରକାରୀ ଭାଷା (ଆଇନ୍) ଆୟୋଗର ସଭ୍ୟ

1974 ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ଶ୍ରୀମତୀ ନନ୍ଦିନୀ ଶତପଥୀ କାର୍ଯ୍ୟ ଆରମ୍ଭ କଲେ । କେନ୍ଦ୍ର ସରକାରଙ୍କ ଆଇନ୍ ଓ କମ୍ପାନୀ ମନ୍ତ୍ରଣାଳୟ ଦ୍ୱାରା ପରିଚାଳିତ ସରକାରୀ ଭାଷା (ଆଇନ୍) ଆୟୋଗରେ ଓଡ଼ିଆ ସଭ୍ୟ ଭାବରେ ଯୋଗ ଦେବା ପାଇଁ ଡଃ ସୂପକାରଙ୍କ ଯୋଗ୍ୟତା ଥିବାରୁ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ସେଥିପାଇଁ ତାଙ୍କ ନାମ ସୁପାରିଶ କଲେ । ବହୁ ଦ୍ୱିଧା ଓ ଦ୍ୱନ୍ଦ ମଧ୍ୟରେ ସେ କାର୍ଯ୍ୟରେ ଯୋଗ ଦେବାକୁ ରାଜି ହେଲେ । ସେତେବେଳେ ଡଃ ସୂପକାରଙ୍କ ବୟସ 59 ବର୍ଷ । ଏତେବେଳେ ଘରଦ୍ୱାର ଛାଡ଼ି କେନ୍ଦ୍ର ସରକାରଙ୍କ ଅଧୀନରେ ଚାକିରୀ କରିବାକୁ ଗଲେ ।

ସରକାରୀ ଭାଷା (ଆଇନ୍) ଆୟୋଗଙ୍କ ଅଫିସ ସୁପ୍ରିମ କୋର୍ଟ ପାଖରେ Indian Law Institute ଭବନରେ ଭଡ଼ାରେ ଚାଲୁଥିଲା । ସେଠାରେ ବହୁ ଗବେଷକଙ୍କ ପରି ଡ଼ଃ ସୂପକାର ନିଜ ଗବେଷଣା ପାଇଁ "ରତ୍ନଭଣ୍ଡାର" ପାଇଲା ପରି ଅନୁଭବ କଲେ । ଅନେକ ଦୁର୍ଲଭ ଆଇନ୍ ଗ୍ରନ୍ଥ ସେଠାର ପୁସ୍ତକାଗାରରେ ଥିଲା । କେନ୍ଦ୍ର ସରକାରଙ୍କ ବିଭିନ୍ନ ଆଇନ୍‌କୁ ସମ୍ବିଧାନ ସ୍ୱୀକୃତ ଭାରତୀୟ ଭାଷାରେ ଅନୁବାଦ କରିବା ପାଇଁ ଏହି ଆୟୋଗଟି ପ୍ରତିଷ୍ଠିତ ହୋଇଥିଲା । ଏହି ଦାୟିତ୍ୱରେ ଥିବା ଅଧିକାଂଶ ସଭ୍ୟ (ଅଫିସର ଥିଲେ ଅବସର ପ୍ରାପ୍ତ ଜିଲ୍ଲାଜଜ ପାହ୍ୟାର ବ୍ୟକ୍ତିଗଣ ଡଃ ସୂପକାର କେବେ ଜିଲ୍ଲା ଜଜ୍ ହୋଇନଥିଲେ ସୁଦ୍ଧା ତାଙ୍କର ସ୍ନାତକୋତ୍ତର ଆଇନ୍ ଡ଼ିଗ୍ରୀ, ସଂସ୍କୃତ ଜ୍ଞାନ ଓ ସାହିତ୍ୟ ସୃଷ୍ଟି ଯୋଗୁଁ ଏହି ପଦବୀ ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । 1976 ମସିହା ମାର୍ଚ୍ଚ ମାସ 31 ତାରିଖରେ ପୂରିଯାଉଥିବାରୁ ସେ ଇସ୍ତଫା ଦେଇ ଲାଲା ଲଜପତରାୟ ଆଇନ୍ କଲେଜରେ ଅଧ୍ୟକ୍ଷ ଭାବରେ ଯୋଗ ଦେବାକୁ ସମ୍ବଲପୁର ପ୍ରତ୍ୟାବର୍ତ୍ତନ କଲେ ।

## ଆଇନ୍ କଲେଜରେ ଅଧ୍ୟକ୍ଷତା ଓ ଗବେଷଣା

ସମସ୍ତ କଲେଜ ବିଶେଷତଃ ଆଇନ୍ କଲେଜର ଆଧ୍ୟକ୍ଷ ପଦ ଏକ କଣ୍ଟକ ମୁକୁଟ । 1970 ମସିହାରେ ବିଶିଷ୍ଟ ପ୍ରଫେସର ଦେଶପାଣ୍ଡେଙ୍କୁ ଛାତ୍ରମାନେ ଜବରଦସ୍ତ ବିଶ୍ୱବିଦ୍ୟାଳୟର ଅଜ୍ଞାତସାରରେ କଲେଜରୁ ତଡ଼ି ଦେଇଥିଲେ । ସେମିତି ହୋଇଥିଲା 1975 ମସିହାରେ ତତ୍କାଳୀନ କଲେଜ ଅଧ୍ୟକ୍ଷ ପ୍ରଫେସର ଜନାର୍ଦ୍ଦନ ରଓଙ୍କ ଅବସ୍ଥା । ଆଇନ୍ କଲେଜରେ ଦୁଇଟି ବ୍ୟାଧି—ପ୍ରକ୍ସି ଓ କପି । ସେହି କଲେଜରେ କପିର ପ୍ରାଦୁର୍ଭାବ ପ୍ରବଳ ଥିଲା । ଅଧ୍ୟାପକମାନଙ୍କଠାରୁ କପିକୁ ବନ୍ଦ କରିବାରେ ସହଯୋଗ ମିଳୁ ନଥିଲା । ବରଂ ସେମାନେ ଏ ଦିଗରେ ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ ।

ଡଃ ସୂପକାର ଖୁବ୍ ସରସତାର ସହିତ ଏହି କପି ବିଷୟ ଘଟଣା ବର୍ଣ୍ଣନା କରିଛନ୍ତି, (ଅସ୍ତରାଗ ପୃ. 77) "ବୋଧହୁଏ 1977 ମସିହା ଜୁଲାଇ ମାସର କଥା । ପରୀକ୍ଷା ଚାଲିଥାଏ । ବିଶ୍ୱବିଦ୍ୟାଳୟର ଦୁଇଜଣ ପରୀକ୍ଷା ପର୍ଯ୍ୟବେକ୍ଷକ ଡକ୍ଟର ପ୍ରଫୁଲ୍ଲ କୁମାର ପତି ଓ ଡକ୍ଟର ଗଜେନ୍ଦ୍ର ପ୍ରସାଦ ଦାସ ଆସି ପହଞ୍ଚିଲେ । ସେମାନେ ପ୍ରଥମେ ଯେଉଁ କୋଠରୀରେ ପ୍ରବେଶ କଲେ, ସମସ୍ତ ପରୀକ୍ଷାର୍ଥୀଙ୍କୁ ଉଠି ଠିଆ ହେବାକୁ ଅନୁରୋଧ କଲେ । ସମସ୍ତେ ଠିଆ ହେବା ଫଳରେ କେତେଜଣ ପରୀକ୍ଷାର୍ଥୀଙ୍କ ସାର୍ଟ ତଳୁ ମୋଟା ବହିମାନ ତଳକୁ ସଶବ୍ଦେ ଖସି ପଡ଼ିଲା । ପର୍ଯ୍ୟବେକ୍ଷକ ଦ୍ୱୟ ସ୍ମିତ ହାସ୍ୟ ସହ ସେହି ବିରାଟ ପୁସ୍ତକମାନ (ବୋଧହୁଏ Salmond's Jurisprudence) ତଳୁ ଗୋଟାଇ ସଂଗ୍ରହ କଲେ । ଏହି ଆବିଷ୍କାର ଦ୍ୱାରା ଉତ୍ସାହିତ ହୋଇ ପର୍ଯ୍ୟବେକ୍ଷକ ଦ୍ୱୟ ପ୍ରତ୍ୟେକ ଶ୍ରେଣୀ ଗୃହରେ ପରୀକ୍ଷାର୍ଥୀମାନଙ୍କୁ ଠିଆ ହେବା ପାଇଁ ଅନୁରୋଧ କରିଥିଲେ । ଭାଗ୍ୟକ୍ରମେ ସେଦିନ ଅତି ଅଳ୍ପ ସଂଖ୍ୟକ ପରୀକ୍ଷାର୍ଥୀଙ୍କ 'ଗର୍ଭପାତ' ହୋଇଥିଲା ।"

ଆଇନ୍ ଶିକ୍ଷାର ମାନରେ ଅଧୋଗତି ଓ ଦୁର୍ନୀତି ସ... ଡଃ ସୂପକାର ଖୁବ ଦୁଃଖିତ ହୋଇଥିଲେ ଏବଂ ସ୍ପଷ୍ଟଭାବରେ ଅଧ୍ୟାପକମାନଙ୍କ... ଶା ବିଷୟରେ ଉଲ୍ଲେଖ କରିଥିଲେ । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ସନାମଧନ୍ୟ ଆଇନ୍ ପ୍ରାଧ୍ୟାପକ ପ୍ରଫେସର କେ. କେ. ନିଗମ୍ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ମଧୁସୂଦନ ଆଇନ୍ କଲେଜର ଅଧ୍ୟକ୍ଷ ଭାବରେ ନିଯୁକ୍ତ ହୋଇଥିଲେ । ଆଇନ୍ କଲେଜରେ ସେ ଯୋଗଦେଲେ ଫେବୃୟାରୀ ମାସରେ । ଶିକ୍ଷାବର୍ଷ ଶେଷ ହେଉଥିଲା ଏପ୍ରିଲ ମାସରେ । କେତେକ ଛାତ୍ର ଅଧ୍ୟକ୍ଷଙ୍କ ପାଖରେ ଯୁକ୍ତିକଲେ ସେମାନଙ୍କର ନାମ ଲେଖାଇବା ପାଇଁ ପ୍ରଫେସର ନିଗମ ଟାଟକା ହେଲେ । ସେ କହିଲେ—"ଶିକ୍ଷାବର୍ଷର ଶେଷ ଭାଗରେ ମୁଁ ଏଡ଼ମିସନ ଦେଇ ପାରିବି ନାହିଁ" ଯୁକ୍ତିତର୍କ ପରେ କୁଆଡ଼େ ଜଣେ ପିଲା ଓଡ଼ିଆରେ କହିଲେ, "ତୁ ଏଡ଼ମିସନ ନ ଦେଲେ ତୋର ବାପା ଦେବ" । ପ୍ରଫେସର ନିଗମ ଓଡ଼ିଆ ଭାଷା ଭଲ ଭାବରେ ବୁଝିପାରୁ ନଥିଲେ ମଧ୍ୟ ଆକ୍ଷେପୋକ୍ତି ଦ୍ୱାରା ମ୍ରିୟମାଣ ହେଲେ ଏବଂ କଲେଜରେ ତାଙ୍କ କାର୍ଯ୍ୟକାଳ ଏକ ସପ୍ତାହ ପୂରା ନ ହେଉଣୁ ଇସ୍ତଫା ଦେଇ ଦିଲ୍ଲୀକୁ ଫେରିଗଲେ

(ତତ୍ରୈବ ପୃ. ୪୦) । ଡଃ ସୂପକାର 1979 ପର୍ଯ୍ୟନ୍ତ ଲାଲ ବାହାଦୁର ଆଇନ୍ କଲେଜରେ ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରିଥିଲେ । ଉକ୍ତବର୍ଷ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ପି. ଏଚ୍. ଡ଼ି. ଉପାଧି ମିଳିଥିଲା । କେନ୍ଦ୍ର ଇସ୍ପାତ ମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ଏଲ୍. ଏଲ୍. ଡ଼ି. ଉପାଧି ପ୍ରଦାନ କରାଯାଇଥିଲା ।

ପୂର୍ବ ଗବେଷଣା କାର୍ଯ୍ୟର ଅଧେ ବାକି ଥିଲା ଏବଂ ସେହି ଲେଖାଗୁଡ଼ିକ ସଜାଡ଼ି 'The Law of Evidence in Ancient India'. ଶୀର୍ଷକ ଏକ ଥେସିସ୍ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ 1983 ମସିହାରେ ଦାଖଲ କରିଥିଲେ । ଏହି ପ୍ରସଙ୍ଗରେ ବ୍ୟଙ୍ଗରସିକ ଡଃ ସୂପକାର କିପରି ଆତ୍ମସମୀକ୍ଷା କରିଛନ୍ତି, ତାହା ଉପଭୋଗ୍ୟ. "ମୋ ପରି ଜଣେ ଜରଦ୍‌ଗବ (ସତୁରୀ ବର୍ଷ ପାଖାପାଖି ବୟସର) ପକ୍ଷରେ ସେଟା ବୋଧହୁଏ ଅଶୋଭନୀୟ ଥିଲା, ଠିକ୍ ସତୁରୀ ବର୍ଷର ବୁଢା ବିବାହ ପାଇଁ ପଗଡ଼ି ମୁକୁଟ ବାନ୍ଧି ବାଣ ଫୋଟକା ବେଣ୍ଡବାଜା ସହିତ ବରଯାତ୍ରାରେ ବାହାରିଲା ପରି । ମୋର ଉଦ୍ୟମ ପଣ୍ଡନୀୟ (ପଣ୍ଡ କରିବାର ଯୋଗ୍ୟ) ଥିଲା । ତେଣୁ ବହୁତ ଖୋଳତାଡ଼ ପରେ ଦେଖାଗଲା ଯେ, ଥିସିସର ଦୁଇଜଣ ଭାରତୀୟ ପରୀକ୍ଷକ ଏହାକୁ ଡ଼ିଗ୍ରୀ ଯୋଗ୍ୟ ବୋଲି ସୁପାରିଶ କରିଥିଲେ । ଅଥଚ ଦୁଇଜଣ ବିଦେଶୀ ପରୀକ୍ଷକ ଏହାକୁ ପସନ୍ଦ କଲେ ନାହିଁ, ଥେସିସ୍ ଯଦି ଡ଼ିଗ୍ରୀ ପାଇଁ ଗୃହୀତ ନ ହୁଏ, ତେବେ ଗବେଷକ ପୁନରାୟ ଭ୍ରମ ସଂଶୋଧନ କରି ପୁନରାୟ ଏକ ପରିବର୍ତ୍ତିତ ଥେସିସ୍ ଦେଇ ପାରିବା କଥା (ତତ୍ରୈବ ପୃ. ୫୨) । ଡଃ ସୂପକାର ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷକୁ ନିବେଦନ କଲେ ମଧ୍ୟ କୌଣସି ବିଦେଶୀ ପରୀକ୍ଷକଙ୍କ ପ୍ରତିକୂଳ ମନ୍ତବ୍ୟ ମିଳିନଥିଲା । ତେଣୁ ଆଉ ଥରେ ସଂଶୋଧନ କରି ଥେସିସ୍‌ଟିକୁ ଦାଖଲ କରିବା ସମ୍ଭବ ହୋଇନଥିଲା ।

## ପୁସ୍ତକ ପ୍ରକାଶନରେ ତିକ୍ତ ଅନୁଭୂତି

ଡଃ ସୂପକାର ତାଙ୍କର ଏହି ତିକ୍ତ ଅନୁଭୂତି କେତେ ସରସ ଆତ୍ମସମୀକ୍ଷାତ୍ମକ ଶୈଳୀରେ ଲେଖିଛନ୍ତି (ଅସ୍ତରାଗ ପୃ. ୫୨) ଦେଖନ୍ତୁ । "ମୁଁ ଡ଼ିଗ୍ରୀ ଲିପ୍‌ସା ତ୍ୟାଗ କଲି । କ'ଣ ମିଳିଥାନ୍ତା ବା ସେ ଡିଗ୍ରୀରୁ ? ଅଧ୍ୟାପନାର ସର୍ବୋଚ୍ଚ ବୟସ ସୀମା ମୁଁ ବହୁ ପୂର୍ବରୁ ଅତିକ୍ରମ କରି ସାରିଥିଲି । ସେ ପୁସ୍ତକ ପ୍ରକାଶର ଉଦ୍ୟମ କଲି । ଜ୍ୟୋତି ବିହାରରୁ ପ୍ରାଧ୍ୟାପକମାନଙ୍କର ପରାମର୍ଶ କ୍ରମେ କଲିକତାର 'Punthi Pustaka' ପ୍ରାଚ୍ୟ ବିଦ୍ୟା ପ୍ରକାଶକଙ୍କୁ ଲେଖିଲି । 1990 ମସିହାରେ ପୁସ୍ତକଟି ପ୍ରକାଶିତ ହେଲା । ତହିଁର ପ୍ରୁଫ୍ ସଂଶୋଧନ ହୋଇ ନଥିଲା । ମୁଦ୍ରଣ ତ୍ରୁଟି ଏତେ ରହିଗଲା ଯେ ସେ ପୁସ୍ତକର ପାଠକମାନଙ୍କର ଧାରଣା ହେବ ଯେ ସମ୍ବଲପୁର ବିଦ୍ୟାଳୟ ମୋତେ ଏଲ୍. ଏଲ୍. ଡ଼ି/ଡ଼ି. ଲିଟ୍. ଉପାଧି ନ ଦେଇ ଠିକ୍ କରିଛି । ତଥାପି ପୁସ୍ତକର ମୂଲ୍ୟ ହେଲା ଦୁଇଶହ ଅଶି ଟଙ୍କା । ଗୁଡ଼ିଆର ପୁଅ ଝିଅ ସନ୍ଦେଶ ରସଗୋଲା ଖାଆନ୍ତି ନାହିଁ । ଫଳ ବିକ୍ରେତାମାନଙ୍କର ପରିବାର

ପକ୍ଷରେ କଦଳୀ କମଳା, ସେଉ ଭକ୍ଷଣ ଏକ ମହାର୍ଗ ବହୁ ଭକ୍ଷିତା ।" କେତେଜଣ ଓଡ଼ିଆ ପାଠକ ଅନ୍ୟୁନ ଅଢ଼େଇ ଶହ ଟଙ୍କା ଦେଇ ତାଙ୍କ ଆଇନ୍ ବହି ପଢି ପାରିବେ ?

ତାଙ୍କର ବହି 'The Law of Procedure and Justice in Ancient India' ଏପରି ଦୁର୍ମୂଲ୍ୟ ଓ ପ୍ରମାଦପୂର୍ଣ୍ଣ ହେବାପରେ ସେ ଉକ୍ତ ପୁସ୍ତକର ଓଡ଼ିଆ ଅନୁବାଦ କଲେ । ତାଙ୍କର ଆଶାଥିଲା ଓଡ଼ିଆରେ ପ୍ରକାଶିତ ହେଲେ ମୂଲ୍ୟ କମ୍ ରହିବ ଓ ଓଡ଼ିଶାର ବେଶୀ ଲୋକ ପାଠ କରି ପାରିବେ । ଆଉ ଏକ ପାଣ୍ଡୁଲିପିର ଶୀର୍ଷକ ହେଲା "ଆଇନ୍ ଓ ଆମେ" ଉଭୟ ପାଣ୍ଡୁଲିପିର ମୁଖବନ୍ଧ ଲେଖିବା ପାଇଁ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ଗୌରାଙ୍ଗ ଚରଣ ନାୟକଙ୍କ ପାଖକୁ ପଠାଇଥିଲେ । ସେ ବହୁମୂଲ୍ୟ ସମୟ ଦେଇ ମୁଖବନ୍ଧମାନ ଲେଖିଦେଲେ । 1990 ନଭେମ୍ବର ମାସରେ ଉକ୍ତ ପାଣ୍ଡୁଲିପି ଦ୍ୱୟ କଟକର ପୁସ୍ତକ ପ୍ରକାଶକଙ୍କ ପାଖକୁ ପଠାହେଲା । ମାତ୍ର 1991 ମସିହା ଅଗଷ୍ଟ ମାସରେ ତାଙ୍କ ପାଖକୁ ଫେରିଆସିଲା । ସେ ପୁଣି ପସ୍ତକ ପ୍ରକାଶନର ଆଂଶିକ ବ୍ୟୟ ଭର ବହନ କରିବା ପାଇଁ ପ୍ରସ୍ତୁତ ଥିଲେ । "କିନ୍ତୁ ଭଆଁସୀ ଝିଅ ପରି" ମୋର ଦୁଇଟି ପାଣ୍ଡୁଲିପି ପ୍ରକାଶ ପାଇବାର ସମ୍ଭାବନା ନାହିଁ । ଗଳ୍ପ, ଉପନ୍ୟାସ, ନାଟକ ଛଡ଼ା ଅନ୍ୟ ପ୍ରକାର ବହିର ଚାହିଦା ଓଡ଼ିଶାରେ ସୀମିତ ଥିବାରୁ ବୋଧହୁଏ ପ୍ରକାଶକ ପାଣ୍ଡୁଲିପି ଦୁଇଟି ଫେରାଇ ଦେଲେ (ତତ୍ରୈବ ପୃ. ୪୪) ।

ଡଃ ସୂପକାର ଆଉ ଜଣେ ପ୍ରକାଶକଙ୍କୁ ପରେ ଏକ ଗଳ୍ପ ସଂକଳନ ପ୍ରକାଶ କରିବା ପାଇଁ ଅନୁରୋଧ କରିଥିଲେ । ତହିଁର ଉତ୍ତରରେ ସେ ଯାହା ଲେଖିଲେ, ସେଥିରୁ କେତୋଟି ବାକ୍ୟ ହେଲା, "ଆପଣ ଗଳ୍ପ ସଙ୍କଳନ ପ୍ରକାଶ କରିବାକୁ ଇଚ୍ଛା କରି ମୁଁ ଦାୟିତ୍ୱ ନେଇ ପାରିବି କି ପଚାରିଛନ୍ତି । ଗତ 37 ବର୍ଷ ଧରି କଠିନ ପରିଶ୍ରମ କରି ମୁଁ ବର୍ତ୍ତମାନ କ୍ଲାନ୍ତ ଓ ଅସୁସ୍ଥ । ଦାୟିତ୍ୱ ଠିକ୍ ତୁଲାଇ ପାରିବି ନାହିଁ । ତେଣୁ କ୍ଷମା ମାଗି ନେଉଛୁ" (ପୃ. ୪୪) । ତାଙ୍କ ପୁସ୍ତକ ଗୁଡ଼ିକର ପ୍ରକାଶନ ପୂର୍ବରୁ ଓ ପରେ ଯେଉଁ ସବୁ ତିକ୍ତ ଅନୁଭୂତି ତାଙ୍କ କରୁଣ ରସାତ୍ମକ ଭାଷାରେ ପ୍ରକାଶ କରିଛନ୍ତି, ଦେଖନ୍ତୁ "ସୁନ୍ଦରୀ ଝିଅ ଅଭିଆଡ଼ୀ ହୋଇ ରହିଗଲେ ବାପ ମାଆଙ୍କ ମନରେ କେତେ କଷ୍ଟ ହୁଏ ତାହା ଭୁକ୍ତଭୋଗୀ ବାପ ମାଆମାନେ ଜାଣନ୍ତି । ବହୁ ପରିଶ୍ରମ, ବହୁ ଗବେଷଣାରେ ଲିଖିତ ପୁସ୍ତକ ପ୍ରକାଶିତ ନ ହେଲେ, ଲେଖକର ମନରେ ଯେଉଁ ଖେଦ ହୁଏ, ତାହା କେବଳ ଲେଖକ ବୁଝିପାରେ" (ପୃ. ୪୨) ।

ଏହି ପ୍ରସଙ୍ଗରେ ଡଃ ସୂପକାରଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଅଭିବ୍ୟକ୍ତି ଏଠାରେ ଉଲ୍ଲେଖ କରିବାର ଲୋଭ ସମ୍ବରଣ କରି ହେଉନାହିଁ । ପ୍ରାଚୀନ କାଳର ସଂସ୍କୃତ କବି ମଧ୍ୟ ସାହିତ୍ୟକୃତିକୁ ସାହିତ୍ୟକାରଙ୍କ ଦୁହିତା ସହିତ ତୁଳନା କରି ଲେଖିଥିଲେ—

"କବିତା ରସମାଧୁର୍ଯ୍ୟଂ ସୁଧୀର୍ବେତ୍ତି ନତତ୍ କବିଃ ।
ବନିତା ମୁଖମାଧୁର୍ଯ୍ୟଂ ପତିର୍ବେତ୍ତି ନତତ୍ ପିତା ।।"

ସୁନ୍ଦରୀ ବନିତାର ମୁଖ ମାଧୁର୍ଯ୍ୟ ପତିହିଁ ଜାଣିବ, ପିତା କାହୁଁ ଜାଣିବ ? ସେହିପରି କବିତାର ରସ ମାଧୁରୀ ସହୃଦୟ ପାଠକ ସିନା ଜାଣିବ, କବିତା ରଚନା କରି କବି କାହୁଁ ଜାଣିବ ? ଅନେକ ସାହିତ୍ୟକୃତି (ମାନସ ସନ୍ତାନ) ବାତୁଅଝିଅ ପରି ରହିଗଲେ । ଓଡ଼ିଆ ଲେଖକ ଚେଣ୍ଟ ଜନ୍ମ ନିୟନ୍ତ୍ରଣ ପାଇଁ ବୌଦ୍ଧିକ ପିଲ ସେବନ ବା ଅସ୍ତ୍ରୋପଚାର ନ କଲେ ପଶ୍ଚାତ୍ ତାପ କରିବାକୁ ବାଧ୍ୟ । ବନର ମାଳତୀ ବନରେ ଫୁଟି ବନରେ ଝରିଯାଏ । ମୁଁ ଝରିଯିବା ପାଇଁ ପ୍ରସ୍ତୁତ ନ ଥିଲି । କାରଣ ସନ୍ଧ୍ୟା ବନ୍ଦନାରେ ଆଦର୍ଶ ଅଛି, "ଜୀବେମ ଶରଦାଂ ଶତମ୍, ପଶ୍ୟେମ ଶରଦା ଶତଂ, ଶୃଣୁୟାମ ଶରଦାଂ ଶତମ୍, ପ୍ରବ୍ରବାମ ଶରଦାଂ ଶତଂ, ଭୂୟଶ୍ଚ ଶରଦାଂ ଶାତାତ୍" ଷାଠିଏ ବର୍ଷରେ ଜୀବନର ପୂର୍ଣ୍ଣଚ୍ଛେଦ ପଡ଼େ ନାହିଁ । ମନୁଷ୍ୟର ଗୋଟିଏ ମାତ୍ର ଜୀବନ । ସବୁଦ୍ୱାର ବନ୍ଦ ନ ହେବା ପର୍ଯ୍ୟନ୍ତ ଜୀବନକୁ ଜୀବନୀୟ କରିବାକୁ ହେବ । "କୁର୍ବନ୍ନ ଦେହ କର୍ମାଣି ଜିଜୀବିଷେଚ୍ଛତଂ ସମାନ" । ସମସ୍ତ ନୈରାଶ୍ୟର କଳାଅନ୍ଧାର ମଧ୍ୟରେ ସେ ଆଶାର ଆଲୋକ ଢାଳି ଦେଇଛନ୍ତି ।

## ସମ୍ବଲପୁରରେ ସାମ୍ବାଦିକତା

୧୯୪୧ ମସିହା ଏପ୍ରିଲ ମାସରେ ସମ୍ବଲପୁରରୁ ଏକ ନୂତନ ଦୈନିକ ସମ୍ବାଦପତ୍ର ପ୍ରକାଶ କରିବାକୁ ଉଦ୍ୟମ କରିଥିଲେ ଡଃ ହରେକୃଷ୍ଣ ମହତାବ । 'ହୀରାଖଣ୍ଡ' ନାମରେ ଏହାର ଶୁଭ ଉଦ୍‌ଘାଟନ ଉତ୍ସବ ତତ୍କାଳୀନ ରାଜ୍ୟପାଳ ଶ୍ରୀ ସି. ଏମ୍. ପୁନଚ୍ଚରଙ୍କ ଦ୍ୱାରା ସମାହିତ ହେଲା । ଡକ୍‌ଟର ସୂପକାର ହେଲେ ଏହାର ପ୍ରଥମ ସମ୍ପାଦକ । ସମ୍ବଲପୁର ସହର ତଥା ସମଗ୍ର ଅଞ୍ଚଳରେ ପ୍ରବଳ ଉତ୍ସାହ ଖେଳିଗଲା । ସ୍ୱର୍ଗତ ବିଶ୍ୱକ୍‌ସେନ୍ ବହିଦାର, ଗୋପାଳକୃଷ୍ଣ ରଥ, କୁମାର ହାସେନ୍ ପ୍ରମୁଖ ସମ୍ପାଦକ ଓ ସାହିତ୍ୟିକମାନେ ବିଭିନ୍ନ ପ୍ରକାରେ ସମ୍ପାଦନାରେ ତାଙ୍କୁ ସାହାଯ୍ୟ କଲେ । ଅଳ୍ପ କେତୋଟି ମାସ ମଧ୍ୟରେ ଏହାର ଗ୍ରାହକ ସଂଖ୍ୟା ପ୍ରାୟ ସାତ ହଜାର ହେଲା । ମାତ୍ର କାଗଜ (News Print) ସଂଗ୍ରହ କରିବା ସହିତ ଆର୍ଥିକ ସମସ୍ୟା ଏକ ଜଟିଳ ସମସ୍ୟା ହେଲା । ତା' ମଧ୍ୟରେ 'ପ୍ରଜାତନ୍ତ୍ର' ବିଷୁବ ମିଳନ ପରେ ପ୍ରତିବର୍ଷ ସରସ୍ୱତୀ ପୂଜାଦିନ 'ହୀରାଖଣ୍ଡ' ପରିସରରେ 'ବସନ୍ତ ମିଳନ' ଅନୁଷ୍ଠିତ ହେଲା । ଏପ୍ରିଲ ମାସରେ ଏହାର ବାର୍ଷିକ ଉତ୍ସବ ମଧ୍ୟ ପାଳିତ ହେଲା । ଏହି ଅବସରରେ ଶ୍ରେଷ୍ଠ କବିତା, ଗଳ୍ପ ଓ ପ୍ରବନ୍ଧର ଲେଖକମାନେ ପୁରସ୍କୃତ ହେଲେ ।

ହୀରାକୁଦ, ଝାରସୁଗୁଡ଼ା, ସୁନ୍ଦରଗଡ଼, ବଲାଙ୍ଗୀର ଆଦି ସ୍ଥାନର ସମ୍ବାଦଦାତାମାନେ ବିନା ପାରିଶ୍ରମିକରେ ସମ୍ବାଦ ଯୋଗାଇ 'ହୀରାଖଣ୍ଡ'କୁ ପ୍ରାଥମିକ ଅବସ୍ଥାରେ ବିଶେଷ ସାହାଯ୍ୟ କରିଥିଲେ । ମାତ୍ର ବିତରଣ ପ୍ରଣାଳୀରେ ଅବ୍ୟବସ୍ଥା ଯୋଗୁଁ ଦୈନିକଟି କ୍ରମେ ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ହେଲା ବର୍ଷାଧିକ କାଳ ସମ୍ପାଦନା ଦାୟିତ୍ୱରେ ରହି ଡଃ ସୂପକାର ଶେଷରେ ସେଥିରୁ ଅବସର ଗ୍ରହଣ କଲେ ।

ଶ୍ରୀବଲ୍ଲଭ ପାଣିଗ୍ରାହୀ ତାଙ୍କ ପରେ ହୀରଖଣ୍ଡର ସଂପାଦକ ହେଲେ । ସେତେବେଳେ ସେ ଲୋକ ପ୍ରତିନିଧି ନଥିଲେ । ସେ ସକ୍ରିୟ ରାଜନୀତିରେ ଯୋଗ ଦେବାରୁ ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ଓ ତାଙ୍କ ପରେ ଶ୍ରୀ ପତିତପାବନ ପ୍ରଧାନ ପତ୍ରିକାଟିର ସଂପାଦକ ହୋଇଥିଲେ । କ୍ରମେ ପତ୍ରିକା ପ୍ରକାଶନରେ ଖୁବ୍ ଶିଥିଳତା ଅନୁଭୂତ ହେଲା । ବର୍ତ୍ତମାନ ତାହା ମୃତ ।

## ପୁରୀ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ସହିତ ସମ୍ବନ୍ଧ

୧୯୮୧ ମସିହାରେ ପୁରୀଠାରେ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା । ପୁରୀ ରାଜଭବନର ଏକ ଅଂଶରେ ବିଶ୍ୱବିଦ୍ୟାଳୟ ଅଫିସ କାମ ଆରମ୍ଭ ହେଲା । ଡକଟର ସୁପକାରଙ୍କ ପରମ ବନ୍ଧୁ ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଏହି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଓ ପ୍ରଫେସର ତ୍ରିଲୋଚନ ମିଶ୍ର ଏହାର ପ୍ରଥମ କୁଳସଚିବ ମନୋନୀତ ହେଲେ । ପଣ୍ଡିତ ସଦାଶିବ ରଥଶର୍ମା, ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ପଣ୍ଡିତ ରଙ୍ଗାଧର ଷଡ଼ଙ୍ଗୀ, ଡକଟର ସାବିତ୍ରୀ ରାଉତ ଓ ଡକ୍‌ଟର ଶ୍ରଦ୍ଧାକର ସୁପକାର ସିଣ୍ଡିକେଟର ସଭ୍ୟ ରହିଲେ । ଡକଟର ସୁପକାର ପ୍ରାୟ ପ୍ରତ୍ୟେକ ସିଣ୍ଡିକେଟ ବୈଠକରେ ଯୋଗଦେଇ ବିଶ୍ୱବିଦ୍ୟାଳୟର ଶୈଶବ କାଳରେ ଏହାର ବିକାଶ ସାଧନରେ ସହାୟକ ହୋଇଥିଲେ ।

ତୀର୍ଥକ୍ଷେତ୍ର ପୁରୀ, ବାରଣାସୀ ପରି ସଂସ୍କୃତ ଭାଷା ଓ ଭାରତୀୟ ସଂସ୍କୃତିର ଏକ କେନ୍ଦ୍ରସ୍ଥଳ ଥିଲା । ପୂର୍ବରୁ ଉତ୍କଳ ସଂସ୍କୃତ ସମିତି ଓ ପରେ କେନ୍ଦ୍ରୀୟ ସଂସ୍କୃତ ଅନୁଷ୍ଠାନମାନଙ୍କ ଆନୁକୂଲ୍ୟରେ ମହାମହୋପାଧ୍ୟାୟ ସଦାଶିବ ସଂସ୍କୃତ ମହାବିଦ୍ୟାଳୟ ସ୍ଥାପିତ ହୋଇଥିଲା । ସଂସ୍କୃତ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା ପରେ ପ୍ରଥମା, ମଧ୍ୟମା ଓ ଆଚାର୍ଯ୍ୟ ପରୀକ୍ଷାମାନ ଏହା ଦ୍ୱାରା ପରିଚାଳିତ ହେଲା । କ୍ରମେ ବ୍ୟାକରଣ, ଧର୍ମଶାସ୍ତ୍ର, ଦର୍ଶନ, ବେଦ ଆଦି ବିଷୟରେ ଉପାଧ୍ୟୁତ୍ତର ବିଭାଗର ଅଧ୍ୟାପନା ଓ ଗବେଷଣା କାର୍ଯ୍ୟ ପରିଚାଳନା କରାଯାଇ ପାରେ ବିଦ୍ୟାବାରିଧି ( ପି. ଏଚ. ଡ଼ି. ) ଓ ବିଦ୍ୟାବାଚସ୍ପତି (ଡି. ଲିଟ୍ ) ଆଦି ଉପାଧି ପ୍ରବର୍ତ୍ତନ କରାଗଲା ।

୧୯୮୨ ମସିହାରେ ପ୍ରଫେସର ପ୍ରଧାନ ହୃଦରୋଗରେ ଆକ୍ରାନ୍ତ ହୋଇ ଆକସ୍ମିକ ଭାବରେ ଶେଷ ନିଶ୍ୱାସ ତ୍ୟାଗ କଲେ । ରାଜ୍ୟ ତଥା ବିଶ୍ୱବିଦ୍ୟାଳୟ ଏକ ପ୍ରତିଭାଶାଳୀ ସଂସ୍କୃତ ପଣ୍ଡିତଙ୍କୁ ହରାଇଲେ । ପ୍ରଫେସର ତ୍ରିଲୋଚନ ମିଶ୍ର ଉକ୍ତ ବିଶ୍ୱବିଦ୍ୟାଳୟର ଅସ୍ଥାୟୀ କୁଳପତି ଭାବରେ ନିଯୁକ୍ତ ହେଲେ । ସଂସ୍କୃତ ଓ ଇଂରେଜି ଭାଷାରେ ତୁଳନାତ୍ମକ ଅଧ୍ୟୟନମାନ ସଂପାଦିତ ହେଲା । ଆଧୁନିକ ଭାଷା ବିଜ୍ଞାନ ଓ ପାଶ୍ଚାତ୍ୟ ଦାର୍ଶନିକମାନଙ୍କର ଦୃଷ୍ଟିକୋଣର ଶିକ୍ଷା ଦିଆଗଲା । ପ୍ରଫେସର ସତ୍ୟବ୍ରତ ଶାସ୍ତ୍ରୀ କୁଳପତି ସ୍ଥାୟୀ ଭାବରେ ନିଯୁକ୍ତ ହେଲେ । ସେ ତିନିମାସ ପାଇଁ ବିଦେଶ ଗସ୍ତରେ ଯିବାରୁ ୧୯୮୩ ମସିହା ଏପ୍ରିଲ ୧2 ତାରିଖରୁ ଜୁନ ଶେଷ ପର୍ଯ୍ୟନ୍ତ ଡକ୍‌ଟର ସୁପକାର ଉକ୍ତ ବିଶ୍ୱବିଦ୍ୟାଳୟର ଅସ୍ଥାୟୀ କୁଳପତି ରୂପେ

ନିଯୁକ୍ତ ହୋଇଥିଲେ । ସେତେବେଳେ ପୁରୀ ଗଜଭବନର ଏକ ଭାଗରେ ସେ ସପରିବାର ରହୁଥିଲେ । ପ୍ରତିଦିନ ପଦ ବ୍ରଜରେ ସେ ବଡ ଦେଉଳକୁ ଯାଇ ଜଗନ୍ନାଥଙ୍କ ଦର୍ଶନ କରିବା ଓ ସମୁଦ୍ର କୂଳରେ ବୁଲିବାକୁ ସୌଭାଗ୍ୟର ବିଷୟବୋଲି ମନେ କରୁଥିଲେ । 1985 ମସିହାରେ ସେ ବିଧାନ ସଭାକୁ ନିର୍ବାଚିତ ହେଲାପରେ ସେଠାରୁ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ସିନେଟକୁ ସଭ୍ୟ ନିର୍ବାଚିତ ହୋଇଥିଲେ । ବର୍ଷକୁ ଥରେ ସେ ସିନେଟ୍ ମିଟିଂରେ ଯୋଗ ଦେଉଥିଲେ ଏବଂ ଧର୍ମଶାସ୍ତ୍ର ବୋର୍ଡ ଅଫ ଷ୍ଟଡ଼ିଜ୍‌ରେ ଜଣେ ସଭ୍ୟ ଥିଲେ ।

## ଦୀର୍ଘ ଅସୁସ୍ଥତା ଓ ଚିକିତ୍ସା

1982 ମସିହାରେ ସମ୍ବଲପୁର ଅଞ୍ଚଳରେ ପ୍ରବଳ ବନ୍ୟା ହୋଇଥିଲା । ସେଥିରେ ବହୁ ଧନଜୀବନ କ୍ଷୟ ହୋଇଥିଲା । ରିଲିଫ୍ କାର୍ଯ୍ୟରେ ଲାଗି ସେ ଦୁର୍ବଳ ହୋଇ ପଡ଼ିଥିଲେ । ପୁରୀ ଅବସ୍ଥାନ ଫଳରେ ତାଙ୍କ ଶରୀରରେ ବାତଜ୍ୱର ଜୀବାଣୁ ପ୍ରବେଶ କରିଥିଲେ । ସେଥିଯୋଗୁ ତାଙ୍କୁ ଜ୍ୱର ହୋଇଥିଲା ଓ ବାମ ଗୋଡ଼ ଫୁଲି ଯାଇଥିଲା । 1983 ମସିହାରେ ସେ ହିକକ୍କା ରୋଗରେ ଆକ୍ରାନ୍ତ ହେଲେ । ଏଥିଯୋଗୁଁ ରାତ୍ରରେ ତାଙ୍କୁ ନିଦ୍ରା ହେଉନଥିଲା । ସେ ପୁଣି ମୂତ୍ର ରୋଗରେ ସଂକ୍ରମିତ ହେଲେ । ଧୀରେ ଧୀରେ ସେ ଦୁର୍ବଳ ହୋଇ ପଡ଼ିଲେ ଏବଂ ପେଟ ଗୋଳମାଳ ହେଲା । ହାଡ଼ ମାନଙ୍କରେ ଦରଜ ହେଲା ଓ ସେ ଚାଲିବାରେ ମଧ୍ୟ କଷ୍ଟ ଅନୁଭବ କଲେ ।

1984 ବର୍ଷ ଜୁଲାଇ ମାସରେ ବିଶ୍ୱକସେନ ବହିଦାର ମୂତ୍ରରୋଗ ପାଇଁ ଏକ ଅପରେସେନ ବୁର୍ଲାରେ କରାଇଲେ । ମାତ୍ର ସମ୍ବଲପୁରକୁ ଫେରି ଡାକ୍ତରଖାନାରେ ଥିଲାବେଳେ କ୍ଷତ ପଚି ଯାଇ ତାଙ୍କ ମୃତ୍ୟୁର କାରଣ ହେଲା । ଏହା ଡଃ ସୂପକାରଙ୍କ ପକ୍ଷେ ଏକ ଦାରୁଣ ଆଘାତ ହେଲା । ସେ ନିଜେ ହିକ୍କା ବାନ୍ତି ଓ ନିଦ୍ରାହୀନତା ରୋଗରେ ଖୁବ୍ ଆକ୍ରାନ୍ତ ହେଲେ । ଶାରୀରିକ କ୍ଳାନ୍ତି ଓ ମାନସିକ ଅଶାନ୍ତି ଯୋଗୁ ସେ ଖୁବ୍ ଦୁର୍ବଳ ହୋଇ ପଡ଼ିଲେ । ଶେଷରେ ତାଙ୍କୁ ବମ୍ବେ-ଟାଟା ମେମୋରିଆଲ ହସ୍‌ପିଟାଲରେ ନିର୍ଦ୍ଦେଶକ ଡାକ୍ତର ପ୍ରଫୁଲ୍ଲ ଭାଇ ଦେଶାଇ ନିଜେ ପରୀକ୍ଷା କରି ତାଙ୍କୁ 1984 ସେପେଟମ୍ବର 14 ତାରିଖ ଦିନ ଉକ୍ତ ହସ୍‌ପିଟାଲରେ ଭର୍ତ୍ତି କରାଗଲା । ଡଃ ସୂପକାର ନିଜେ ଲେଖିଛନ୍ତି (ତଦ୍ରୈବ ପୃ. 100) "ମୋ ସ୍ୱାସ୍ଥ୍ୟର ଅବସ୍ଥା ସେତେବେଳେ ଶୋଚନୀୟ ଥିଲା । ମୁଁ ଜୀବନର ଆଶା ତ୍ୟାଗ କରିଥିଲି । 17 ତାରିଖ ସେପ୍‌ଟମ୍ବର ସନ୍ଧ୍ୟାରେ ମୋର ଏକ ଅପରେସନ ହେବାର କଥା । ଅପରେସନ ପୂର୍ବରୁ ରୋଗୀଙ୍କୁ ଏକ ଫର୍ମରେ ଦସ୍ତଖତ ଦେବାକୁ ହୁଏ ଯେ, ଅସ୍ତ୍ରୋପଚାର ଫଳରେ କିଛି ଅଘଟଣ ଘଟିଲେ ହସପିଟାଲ କର୍ତ୍ତୃପକ୍ଷ ଦାୟୀ ନୁହନ୍ତି । ମୁଁ ମୋର ପୁଅ ଓ ଭାଇଙ୍କୁ ଜଣାଇ ଦେଇଥିଲି ଯେ, ଯଦି କିଛି ଅଘଟଣ ଘଟେ ତେବେ ସେମାନେ ଧୈର୍ଯ୍ୟ ନ ହରାଇ ବମ୍ବେରେ ହିଁ ମୋର ଅନ୍ତେଷ୍ଟିକ୍ରିୟା ସମାପନ କରିଦେବେ" ।

ମାତ୍ର ଅସ୍ତ୍ରୋପଚାରର କାର୍ଯ୍ୟ ସଫଳ ହେଲା ଏବଂ ସେ ଦୁଇ ତିନି ଦିନ ପରେ ସୁସ୍ଥତା ଅନୁଭବ କଲେ । ହିକ୍କା ଓ ବାନ୍ତି ବନ୍ଦ ହୋଇଗଲା । ତାପରେ ସେ ସମ୍ବଲପୁର ଫେରି ଆସିଥିଲେ । ଦୁଇମାସ କାଳ ଶଯ୍ୟାଶାୟୀ ହୋଇଥିଲେ ହେଁ ସେ ଶକ୍ତି ସଞ୍ଚାର ହୋଇଥିବା ଜାଣି ଆଶ୍ୱସ୍ତ ହେଲେ ।

## 1985 ମସିହା ଓଡ଼ିଶା ବିଧାନ ସଭା ପାଇଁ ପ୍ରାର୍ଥୀ

ଡଃ ସୂପକାର ପୂର୍ବରୁ ରାଜନୈତିକ ସନ୍ୟାସ ବ୍ରତ ଗ୍ରହଣ କରିଥିଲେ । 1971 ମସିହାରେ ଲୋକସଭା ନିର୍ବାଚନରେ ପରାଜୟ ପରେ ସେ ଦଳୀୟ ରାଜନୀତିରୁ ଯଥାସମ୍ଭବ ଦୂରେଇ ରହିଥିଲେ । ତା'ର ଏକ ପ୍ରଧାନ କାରଣ ଥିଲା ତାଙ୍କର ଅର୍ଥନୈତିକ ସଂକଟ । ପାରିବାରିକ ଦାୟିତ୍ୱ ଖୁବ୍ ବଢ଼ି ଯାଇଥିଲା । 1984 ମସିହାରେ ଅଧିକାଂଶ ସମୟ ସେ ଗୁରୁତର ବ୍ୟାଧିରେ ପୀଡ଼ିତ ଓ ଶଯ୍ୟାଶାୟୀ ହୋଇଥିଲେ । ତା ସତ୍ୱେ 1985 ବିଧାନ ସଭା ନିର୍ବାଚନ ପାଇଁ ସେ ପ୍ରାର୍ଥୀ ହେବାକୁ ଆଶାୟୀ ହେଲେ ଏବଂ କଂଗ୍ରେସ ଟିକେଟ ପାଇଁ ଦଳୀୟ କର୍ତ୍ତୃପକ୍ଷଙ୍କୁ ଜଣାଇଥିଲେ । 1985 ଫେବୃଆରୀ 8 ତାରିଖ ଦିନ ପ୍ରାର୍ଥୀପତ୍ର ଦାଖଲ କରିବାର ଶେଷ ତାରିଖ ଧାର୍ଯ୍ୟ ହୋଇଥିଲା । ସମ୍ବଲପୁରରୁ ଅନେକ ଆଶାୟୀ ପ୍ରାର୍ଥୀ ଭୁବନେଶ୍ୱରରୁ ଦିଲ୍ଲୀ ପର୍ଯ୍ୟନ୍ତ ଧାଁ ଧପଡ଼ କଲେ । ବେସରକାରୀ ସୂତ୍ରରୁ ଡାଃ ସୂପକାର ଜାଣିବାକୁ ପାଇଲେ ଯେ ସେ ସମ୍ବଲପୁର ବିଧାନ ସଭା ଆସନ ପାଇଁ ଟିକେଟ ପାଇଛନ୍ତି । ସେ ପ୍ରାର୍ଥୀପତ୍ର ଯଥାସମୟରେ ଦାଖଲ କରିଥିଲେ ଏବଂ ବିଧିବଦ୍ଧ ଭାବରେ କଂଗ୍ରେସ ପ୍ରାର୍ଥୀ ହୋଇଥିଲେ ।

ମାତ୍ର ସଭା ସମିତିରେ ତାଙ୍କୁ ଦୁଇଟି ପ୍ରଶ୍ନ ହୋଇଥିଲା । ପ୍ରଥମତଃ ସେ ମନୋନୟନ ପତ୍ର ଦାଖଲ କରିବା ସମୟରେ ଏତେ ଅଳ୍ପ ଲୋକ ଧରି ବିନା ଶୋଭାଯାତ୍ରାରେ ନିର୍ବାଚନ ଅଫିସକୁ ଗଲେ କାହିଁକି ? ଦ୍ୱିତୀୟତଃ ତାଙ୍କର ମନୋନୟନ ପତ୍ରରେ ଶ୍ରୀ ମୁରାରି ପ୍ରସାଦ ମିଶ୍ର ଦସ୍ତଖତ କଲେ କାହିଁକି ? ତାଙ୍କୁ ଏହି ସବୁ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିଥିଲା । ତାଙ୍କର ସୁପରିଚିତ ସମ୍ବଲପୁର ସହର ତାଙ୍କ ନିର୍ବାଚନ ମଣ୍ଡଳୀର ଏକ ବିଶିଷ୍ଟ ଅଂଶ ଥିଲା । ଭୋଟରମାନେ ସମସ୍ତେ ତାଙ୍କୁ ଜାଣିଥିଲେ ସୁଦ୍ଧା ସ୍ୱାର୍ଥାନ୍ଧ ହୋଇ କେତେଜଣ ତାଙ୍କର ବିରୋଧ ଭିତରେ ଭିତରେ ରହି କରୁଥିଲେ । ଡକ୍ଟର ସୂପକାର କହିଛନ୍ତି (ତତ୍ରୈବ) "ମୋତେ ଯେଉଁମାନେ ବିଶେଷ ସମ୍ମାନ କରନ୍ତି ସେମାନେ ମଧ୍ୟ ସୁରେଶ ପୂଜାରୀ (ପ୍ରତିଦ୍ୱନ୍ଦୀ)ଙ୍କୁ ଜିତାଇବା ପାଇଁ ଆପ୍ରାଣ ଉଦ୍ୟମ କରୁଥିଲେ । ବୋଧହୁଏ, ମହାଭାରତ ଯୁଦ୍ଧ ସମୟରୁ କିମ୍ବା ତହିଁ ପୂର୍ବରୁ ମଧ୍ୟ ଏ ପ୍ରକାର ରାଜନୈତିକ ନିର୍ଲିପ୍ତତା ଆମର ଦେହସୁହା ହୋଇ ଆସିଛି । ଗୀତାର ମହତ୍ ବାଣୀ "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ଅନେକେ ଅକ୍ଷରେ ଅକ୍ଷରେ ପାଳନ କରନ୍ତି । ସେଥିରେ ଅସତ୍ୟର, ଅକ୍ଷମର, ଦୁର୍ନୀତିର ବିଜୟ ହେଲେ କାହିଁକି ବିବ୍ରତ ହେବା ? କାରଣ ବିଜୟ ହେଉଛି ଫଳମାତ୍ର" ।

ଡଃ ସୂପକାରଙ୍କ ପକ୍ଷରେ ପରିସ୍ଥିତି ନିର୍ବାଚନ ପାଇଁ ଅନୁକୂଳ ଥିଲା । ରାଜୀବ ଗାନ୍ଧି ହାଓ୍ୱା ଲୋକସଭା ନିର୍ବାଚନ ବେଳେ ଯେପରି ସହାୟକ ହୋଇଥିଲା, ବିଧାନ ସଭା ନିର୍ବାଚନ ବେଳେ ସେମିତି ସହାୟକ ହେବାର ଆଶା କରାଯାଉଥିଲା । କେତେକ ନେତା ତ ତାଙ୍କୁ ଅପ୍ରତିଦ୍ୱନ୍ଦ୍ୱୀ ରୂପେ ବିଧାନ ସଭାକୁ ଛାଡ଼ି ଦେବା ପାଇଁ ମତ ଦେଉଥିଲେ । ମାତ୍ର ତହାତ ଦଳୀୟ ନିର୍ବାଚନରେ ଏତେ ସହଜସାଧ୍ୟ ନୁହେଁ । ତେବେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ତୁଳନାରେ ସେ ନିର୍ବାଚନରେ ଖର୍ଚ୍ଚ କରିପାରିନଥିଲେ । ଆର୍ଥିକ ଅନାଟନ ତାଙ୍କୁ ମୌଳିକ ବ୍ୟବସ୍ଥା କରିବାରେ ବାଧକ ହୋଇଥିଲା । ପୁଣି ସେ ବିଶେଷ ବୃଦ୍ଧ ଓ ଦୁର୍ବଳ ହେଲେଣି, ଆଉ କେତେଦିନ ବଞ୍ଚିବେ, ଭୋଟ ଦେଲେ କି ଲାଭ ହେବ ଆଦି ପ୍ରଶ୍ନ ଭୋଟରମାନଙ୍କ ମନରେ ସୃଷ୍ଟି କରାଗଲା । ମାତ୍ର ବାସ୍ତବ କ୍ଷେତ୍ରରେ ସ୍ୱାସ୍ଥ୍ୟ ହାନି ପରିବର୍ତ୍ତେ ତାଙ୍କର ଶ୍ରମ ଓ ଉତ୍ସାହ ବଢ଼ି ସ୍ୱାସ୍ଥ୍ୟରେ ଉନ୍ନତି ପରିଲକ୍ଷିତ ହୋଇଥିଲା ।

ମାତ୍ର ସବୁଦଳ ଅପେକ୍ଷା ଇନ୍ଦିରା କଂଗ୍ରେସର ଅଧିକ ସଂହତି, ସମ୍ଭାବନା ଓ ସଫଳତାର ଆଶା ରହିଥିଲା । ପୂର୍ବରୁ ଲୋକସଭା ନିର୍ବାଚନରେ ଜିତେଇବା ଡ଼ଃ କୃପାସିନ୍ଧୁ ଭୋଇ ଓ ସୁପରିଚିତ କଂଗ୍ରେସ ନେତା ଶ୍ରୀ ବନମାଳୀ ବାବୁ, ଡ଼ଃ ସୂପକାରଙ୍କ ସପକ୍ଷରେ ପ୍ରଚାର କରିଥିଲେ । ମାତ୍ର ସମ୍ବଲପୁର ନିର୍ବାଚନ ମଣ୍ଡଳୀରୁ ଠିଆ ହୋଇଥିଲେ, ଯୁବନେତା ଶ୍ରୀ ସୁରେଶ ପୂଜାରୀ ଏବଂ ଯୁବସଂପ୍ରଦାୟ ତାଙ୍କ ସପକ୍ଷରେ ଖୁବ୍ ଉତ୍ସାହର ସହିତ ପ୍ରଚାର କରୁଥିଲେ । ଉକ୍ତ ବର୍ଷଟି ପୁଣି ଥିଲା ଆନ୍ତର୍ଜାତୀୟ ଯୁବବର୍ଷ । ତେଣୁ ଜଣେ ଯୁବ ଲୋକପ୍ରତିନିଧି ହେବା ଉଚିତ୍ ବୋଲି ଅନେକ ଦାବି କରୁଥିଲେ । ସେମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ଅଭିଜ୍ଞ ରାଜନୀତିଜ୍ଞ ଶ୍ରୀ କିଶୋର ପଟ୍ଟନାୟକ । ପୁଣି ଡାଃ ସୂପକାରଙ୍କ ଆଉଜଣେ ପ୍ରତିଦ୍ୱନ୍ଦ୍ୱୀ ଜଗଦୀଶ ବକ୍ସିପାତ୍ର ନିଜକୁ ଜଣେ ବଦାନ୍ୟ ବ୍ୟକ୍ତି ଭାବରେ ହଜାର ହଜାର ଟଙ୍କା ସାଧାରଣ ଅନୁଷ୍ଠାନଗୁଡ଼ିକୁ ଅନୁଦାନ ଆକାରରେ ଏବଂ କ୍ଲବ ଘରଗୁଡ଼ିକୁ ରଙ୍ଗୀନ ଟିଭିସେଟ୍ ଦେବାରେ ଖୁବ୍ ଉଦାର ଥିଲେ ।

1985 ମାର୍ଚ୍ଚ 5 ତାରିଖ ଦିନ ଭୋଟଦାନ କରାଗଲା । ଭୋଟ ଫଳାଫଳରୁ ଜଣାପଡ଼ିଲା ଯେ ଅଳ୍ପ କେତୋଟି ଭୋଟ କେନ୍ଦ୍ର ଛଡ଼ା ଡଃ ସୂପକାର ଅଧିକାଂଶ ଭୋଟକେନ୍ଦ୍ରରେ ଅଧିକ ଭୋଟ ପାଇଥିଲେ । ମୋଟ ଭୋଟ ସଂଖ୍ୟା 36 ହଜାରରୁ ଅଧିକ ହୋଇଥିଲା । ଡଃ ସୂପକାର ଏହି ପ୍ରସଙ୍ଗରେ କହିଛନ୍ତି (ତତ୍ରୈବ ପୃ. 123) "ମୋର ତପସ୍ୟା ସଫଳ ହେଲା । ଶେଷ ଜୀବନରେ ମୋର ରାଜନୈତିକ ସାଫଲ୍ୟ, ଜନସାଧାରଣଙ୍କ ମୋ ପ୍ରତି ଆସ୍ଥା ସୁଗ୍ଭଇଲା । ମୁଁ ସମସ୍ତଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଇ ସମଲେଶ୍ୱରୀ ମନ୍ଦିରକୁ ଯାଇ ମାଆଙ୍କର ଆରାଧନା କଲି ।" ସବୁଠାରେ ତାଙ୍କୁ ଅଭିନନ୍ଦନ ଓ ସମ୍ବର୍ଦ୍ଧନା ପ୍ରଦାନ କରାଗଲା ଏବଂ ତାଙ୍କ ରାଜନୈତିକ ଜୀବନରେ ଏକ ନୂତନ ଅଧ୍ୟାୟ ଉନ୍ମୋଚିତ ହେବାର ଆଶା ରହିଲା ।

ବିଜୟ ପରେ ନୈରାଶ୍ୟ

ଡକ୍ଟର ଶ୍ରଦ୍ଧାକର ସୂପକାର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବେ ବୋଲି ନିର୍ବାଚନ ପୂର୍ବରୁ କଳ୍ପନାଜଳ୍ପନା ଚାଲିଥିଲା । ଏଥିରେ ଖୋରାକ ଯୋଗାଇଥିଲା କଲିକତାର ପ୍ରସିଦ୍ଧ ଦୈନିକ ସମ୍ବାଦପତ୍ର ଟେଲିଗ୍ରାଫ । ମାତ୍ର ଡଃ ସୂପକାର ଅନୁଭବ କରିଥିଲେ ଯେ କୌଟିଲ୍ୟଙ୍କ ମତରେ "ଅର୍ଥମୂଳ ହି ପ୍ରଭୁତ୍ୱମ୍" । ଭୋଟ ପରେ ମାତ୍ର ସେ ନିଃସ୍ୱ ହୋଇ ପଡ଼ିଥିଲେ । ଅନେକ ବନ୍ଧୁଙ୍କ ଆର୍ଥିକ ସାହାଯ୍ୟରେ ନିର୍ବାଚନ ପରିଚାଳନା କରି ବିଜୟ ଲାଭ କରିବାକୁ ସମର୍ଥ ହୋଇଥିଲେ । ସମ୍ବଲପୁରର ସମସ୍ତ ବିଧାୟକ ଓ କଟକ-ଭୁବନେଶ୍ୱରର ଅଳ୍ପ କେତେକ ବିଧାୟକଙ୍କ ବ୍ୟତୀତ ସେ ଅନ୍ୟମାନଙ୍କ ନିକଟରେ ଅପରିଚିତ ଥିଲେ ।

ପକ୍ଷାନ୍ତରରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ 1980 ମସିହାରେ ମୁଖ୍ୟମନ୍ତ୍ରୀ ହୋଇଥିଲେ ଏବଂ 1985 ମସିହା ନିର୍ବାଚନରେ ସମଗ୍ର ରାଜ୍ୟରେ କଂଗ୍ରେସ ଦଳ ପ୍ରାର୍ଥୀମାନଙ୍କୁ ବହୁ ସଂଖ୍ୟାରେ ଜିଣାଇବାରେ ସାହାଯ୍ୟ କରିଥିଲେ । ସେ ପୂର୍ବରୁ ସ୍ୱର୍ଗତା ଇନ୍ଦିରା ଗାନ୍ଧି ଓ ସେତେବେଳେ ରାଜୀବ ଗାନ୍ଧୀଙ୍କର ପ୍ରିୟପାତ୍ର ଥିଲେ । ବିଜୟୀ ପ୍ରାର୍ଥୀଗଣ ତାଙ୍କର ଅନୁଗତ ହେବା ସ୍ୱାଭାବିକ ଥିଲା । ମୁଖ୍ୟମନ୍ତ୍ରୀ ଭାବରେ ତାଙ୍କର ଦୀର୍ଘ ଅଭିଜ୍ଞତା ରହିଥିଲା ଏବଂ ରାଜନୈତିକ ତଥା ସାମାଜିକ ସାଧନ ଓ ସାଫଲ୍ୟର ଅଭାବ ନଥିଲା, ତେଣୁ ତାଙ୍କ ସହିତ ଡଃ ସୂପକାର "ନିଜର ତୁଳନା କରିବାର ଧୃଷ୍ଟତା" କରିନଥିଲେ ।

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଦଳୀୟ ବ୍ୟବସ୍ଥାପକମାନଙ୍କ ଦ୍ୱାରା ଦଳର ନେତା ତଥା ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବରେ ନିର୍ବାଚିତ ଓ ଶପଥ ଗ୍ରହଣ କରିଥିଲେ । ଡଃ ସୂପକାର ଜଣେ ମନ୍ତ୍ରୀ ହେବେ ବୋଲି ସମସ୍ତେ ଆଶା କଲେ । ଏମିତି କି କେତେଜଣ ବନ୍ଧୁ ତାଙ୍କୁ ଅଭିନନ୍ଦନ ଜଣାଇଦେଲେ । ମୁଖ୍ୟମନ୍ତ୍ରୀ ଦିଲ୍ଲୀ ଗଲେ । "ମୁଁ ଓଡ଼ିଶା ଫେରିଲେ ବୁଝିବି" ବୋଲି କହି ଡଃ ସୂପକାର ଏହି ପ୍ରସଙ୍ଗରେ ଲେଖିଛନ୍ତି (ତତ୍ରୈବ ପୃ. 139) "ମୁଖ୍ୟମନ୍ତ୍ରୀ ଓଡ଼ିଶା ଫେରିଲା ପରେ ସବୁ ଓଲଟପାଲଟ ହେଲା ପରି ଜଣାପଡ଼ିଲା । ଫୁଲମାଳ ଧରି ବିମାନଘାଟିରେ ତାଙ୍କୁ ଭେଟିବା ପାଇଁ ଯାଇଥିଲେ ହୁଏତ କିଛି ସୁଫଳ ମିଳିଥାନ୍ତା । ଏହା ଥିଲା ତାଙ୍କର ବ୍ୟଙ୍ଗୋକ୍ତି ।

ମୁଖ୍ୟମନ୍ତ୍ରୀ ଭୁବନେଶ୍ୱର ଫେରି ତାଙ୍କୁ ଫୋନରେ ଜଣାଇଲେ, ଆପଣ (ପ୍ରୋଟେମ) ଅସ୍ଥାୟୀ ବାଚସ୍ପତି ପଦ ପାଇଁ ଶପଥ ନିଅନ୍ତୁ । ତାଙ୍କୁ ସେ "ଅନୁପ ସିଂହଦେଓ ପରା ପ୍ରୋଟେମ୍ ସ୍ପିକର ରୂପେ ଶପଥ ନେଇଛନ୍ତି ବୋଲି ଜଣାଇଲେ । ମାତ୍ର ଉତ୍ତର ମିଳିଲା ସେ ମନ୍ତ୍ରୀ ହେବେ" । ରାଜଭବନ ପରିସର ମଧ୍ୟରେ ନୂତନ ମନ୍ତ୍ରୀମଣ୍ଡଳ ଶପଥ ଗ୍ରହଣ କଲେ । ଏହା ପୂର୍ବରୁ ମନ୍ତ୍ରୀମଣ୍ଡଳରେ ଶ୍ରଦ୍ଧାକରଙ୍କ ନାମ ଅନ୍ତର୍ଭୁକ୍ତ ହୋଇଥିବା ବିଷୟ ପ୍ରଚାରିତ ହୋଇଥିଲା । ଏମିତି କି "ସମାଜ" ରେ ତାଙ୍କର ଫଟୋ ସହିତ ସେ ମନ୍ତ୍ରୀ ରୂପେ ଶପଥ ନେଉଥିବା ଖବର ସେଦିନ ପ୍ରକାଶିତ ହୋଇଥିଲା । ଡଃ ସୂପକାର ମତ ଦେଇଛନ୍ତି

'ଆଧୁନିକ ନାଟକମାନଙ୍କରେ ସବୁ ଅଭିନେତା ପର୍ଦ୍ଦା ଆଢୁଆଳରୁ ସିଧା ରଙ୍ଗମଞ୍ଚକୁ ଉଠିଯାଇ ଚମକ ସୃଷ୍ଟି କରନ୍ତି । ମୁଁ ସେପରି ପୋଖତ ଅଭିନେତା ନୁହେଁ × × × ଭରତୀୟ ଗଣତନ୍ତ୍ର ଛାଞ୍ଚାରେ ଗଡ଼ଜାତି ମନୋବୃତ୍ତି କାଳକ୍ରମେ ପ୍ରଖର ହେଉଛି । ମନ୍ତ୍ରୀମାନେ ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀଙ୍କର ସବୁ କଥାରେ "ହାଁଜୀ" କହିବା ଦରକାର ପଡୁଛି । ଚକ୍ରଦ୍ୱାରା ଶିରଚ୍ଛେଦ ପରେ ଶିଶୁପାଳଙ୍କର ଆତ୍ମା ନିଶ୍ଚୟ ବୈକୁଣ୍ଠକୁ ଯାଇଥିବ । କିନ୍ତୁ ଯୁଗେ ଯୁଗେ ବିଗ୍ରହ ଶିଶୁପାଳ ବ୍ୟଙ୍ଗ ଓ ବିଦ୍ରୂପର ଶରବ୍ୟ ହୋଇ ଆସିଛି" (ପୃ. 142) । ସେ ପୁଣି ଯଥାର୍ଥରେ କହିଛନ୍ତି ଯେ ଚାକିରୀରେ ଯୋଗ୍ୟତା ଠାରୁ ବରିଷ୍ଠତା (Seniority)କୁ ଅଧିକ ଗୁରୁତ୍ୱ ଦିଆଯାଇଥାଏ । ମାତ୍ର ମନ୍ତ୍ରୀମାନଙ୍କର ବିଭାଗ ବଣ୍ଟନରେ ଯୋଗ୍ୟତାଠାରୁ ଘନିଷ୍ଠତାକୁ ଅଧିକ ଗୁରୁତ୍ୱ ଦିଆଯାଏ ।

ଓଡ଼ିଶା ବିଧାନ ସଭାରେ କଂଗ୍ରେସଦଳର ଅଖଣ୍ଡ ପ୍ରତିପତ୍ତି ଯୋଗୁଁ କଂଗ୍ରେସ ଦଳ କେରଳର ଶ୍ରୀ ପାନିକରଙ୍କୁ ଓଡ଼ିଶାରେ ଭୋଟର ତାଲିକା ଭୁକ୍ତ କରି ତାଙ୍କୁ ରାଜ୍ୟସଭାକୁ ଓଡ଼ିଶାର ପ୍ରତିନିଧି ରୂପେ ପଠାଇଲେ । ସେମିତି 1992 ରେ ବିଜୁ ପଟନାୟକ କର୍ଣ୍ଣାଟକର ଶ୍ରୀ ଏସ୍. ଆର. ବୋମାଇଙ୍କୁ ରାଜ୍ୟସଭାକୁ ପଠାଇଲେ । "ଏହା ଏକ ଅସୁସ୍ଥ ପରମ୍ପରା, ସମ୍ବିଧାନର ମୌଳିକ ନୀତି ବିରୋଧୀ" ବୋଲି ଡଃ ସୂପକାର କହିଛନ୍ତି । ସେ ଜଣେ ଗଣତନ୍ତ୍ରବାଦୀ ନିଷ୍ଠାପର ବ୍ୟବସ୍ଥାପକ ଭାବରେ ବିଧାନ ସଭା ମଧ୍ୟରେ ହେଉଥିବା ହୋହଲା, ଧସ୍ତାଧସ୍ତି, ମାଡ଼ମାରି, ମାଇକଷ୍ଟାଣ୍ଡ, ଚଉକି ଗୋଡ଼, କାଗଜପତ୍ର ଆଦି ଫିଙ୍ଗାଫିଙ୍ଗି କରିବା ଯେ ନିତାନ୍ତ ନିନ୍ଦନୀୟ ଏହା କହିଛନ୍ତି । ରାଜ୍ୟପାଳଙ୍କ ଭାଷଣରେ ବାଧା ସୃଷ୍ଟି କରିବା ପ୍ରତି ବର୍ଷର ଏକ ସାଧାରଣ ଘଟଣା ହୋଇଛି । କାଳକ୍ରମେ ଏହା ବରଂ ଉତ୍କଟତର ହେଉଛି ବୋଲି ଡଃ ସୂପକାର ଦୁଃଖ ପ୍ରକାଶ କରିଛନ୍ତି । "ବର୍ଷକରେ ଥରେ ରାଜ୍ୟପାଳ ବିଧାନ ସଭା ଗୃହରେ ପ୍ରାୟ ଘଣ୍ଟାକରୁ ଅଳ୍ପ ସମୟ ପାଇଁ ପ୍ରବେଶ କରନ୍ତି କିଛି କହିବା ପାଇଁ, କିନ୍ତୁ ତାଙ୍କୁ କୁହାଇ ନଦେବା ଅବସ୍ଥା ଦୟନୀୟ ହୋଇଥାଏ" (ପୃ. 148) ।

ବିଧାନ ସଭା ମଧ୍ୟରେ ଏହିପରି ଏକ ବିଶେଷ ଗଣ୍ଡଗୋଳ ପ୍ରସଂଗରେ ସେପ୍ଟେମ୍ବର 6, 1986 ତାରିଖ "ମାତୃଭୂମି"ରେ ସଂପାଦକ ବିଚିତ୍ରାନନ୍ଦ କର "ବିଧାନ ସଭାରେ କ'ଣ କରୁଛ ?" ଶୀର୍ଷକ ଏକ ଲେଖାକୁ ଉଲ୍ଲେଖ କରିଛନ୍ତି । "ବିଧାନ ସଭାର ବିଚିତ୍ର ଦୃଶ୍ୟ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଛି । ମାନ୍ୟବର ସଭ୍ୟଙ୍କ ହୋହଲ୍ଲା, ଧସ୍ତାଧସ୍ତି, ଜାମାଚିରା ସାଙ୍ଗକୁ ଗୀତ, ନାଚ ଓ କୀର୍ତ୍ତନ ବେଶ୍ କୌତୂହଳ ସୃଷ୍ଟି କରିଛି । ବିଭିନ୍ନ ସ୍ଲୋଗାନ, ଅଶ୍ଳୀଳ ଭାଷା ଓ ବିଶୃଙ୍ଖଳା ଆଚରଣ ତଥା ବାଚସ୍ପତିଙ୍କ ନିର୍ଦ୍ଦେଶ ଅମାନ୍ୟ ଇତ୍ୟାଦି ବିସ୍ମୟ ସୃଷ୍ଟି କରିଛି । * * * ବିଧାନ ସଭାକୁ କେତେକ ସଭ୍ୟ ବୋଧହୁଏ ରଣାଂଗନ କିମ୍ବା ନାଟ୍ୟଶାଳା ମନେ କରୁଥିବେ । ନ ହେଲେ ଏଭଳି କୁତ୍ସିତ ଆଚରଣ ପ୍ରଦର୍ଶନ କରନ୍ତେ କିପରି ?" "ଏହି ସଂପର୍କରେ ସୂପକାର କହିଛନ୍ତି ଯେ ଦୂରଦର୍ଶନ ମାଧ୍ୟମରେ ଏହି ସବୁ ବିବରଣୀ ସଂପ୍ରସାରିତ ହେଲେ ସଭ୍ୟମାନଙ୍କ ଆଚରଣ ସଂଯତ ହେବ । ମାତ୍ର ପ୍ରକୃତରେ କ'ଣ ହେଉଛି ଆଜିକାଲି ସମସ୍ତେ ଦେଖୁଛନ୍ତି ।

ଆମେରିକା ଯାତ୍ରା

ଡଃ ସୂପକାର "ଆମେରିକା ଅନୁଭୂତି" ଶୀର୍ଷକ ଏକ ପୁସ୍ତକ ରଚନା କରି ଆମେରିକା ଦର୍ଶନକାଳୀନ ଅଭିଜ୍ଞତାମାନ ଲିପିବଦ୍ଧ କରିଛନ୍ତି । ଆମେରିକା ଯୁକ୍ତରାଷ୍ଟ୍ର, କାନାଡା ପ୍ରଭୃତି ଦେଶରେ ବହୁ ଓଡ଼ିଆ ବାସ କରିଛନ୍ତି । Orissa Society of America ନାମକ ସେମାନଙ୍କର ଏକ ସଙ୍ଗଠନ ରହିଛି । ତାର ବାର୍ଷିକ ଉତ୍ସବରେ ଡଃ ସୂପକାର ଯୋଗ ଦେଇଥିଲେ । ତାଙ୍କର ବଡ ପୁଅ ରାଜେନ୍ଦ୍ର ଚିକାଗୋରେ 1959ରୁ ବାସ କରୁଥିଲେ । ତାଙ୍କ ପରିବାରଙ୍କ ସହିତ ରହିଥିଲେ । ସେଠାରେ ଅନେକ ପରିଚିତ ବନ୍ଧୁ ପରିଜନ ମଧ୍ୟ ତାଙ୍କୁ ସାକ୍ଷାତ କରିଥିଲେ ।

ପୂର୍ବ ପରିଚିତ ଡକ୍‌ଟର ଅର୍ଜ୍ଜୁନ ପୁରୋହିତଙ୍କ ଘରେ ସେ ରହୁଥିବା ସମୟରେ ଦିନେ ସଂଧ୍ୟାରେ ଆସିଥିଲେ ଫ୍ଲୋରା ମେକ୍‌ଡୋନାଲଡ, କାନାଡାର କେନ୍ଦ୍ରମନ୍ତ୍ରୀ । ଏକାକୀ ନିଜେ ମୋଟର ଚଳାଇ ଅଙ୍ଗରକ୍ଷୀ ବିନା ଓ ପୂର୍ବ ସୂଚନା ନଥାଇ ସେ କେତେକ ବିଷୟରେ କଥାବାର୍ତ୍ତା ହେବା ପାଇଁ ଆସିଥିଲେ । ଆମ ଦେଶରେ କେନ୍ଦ୍ର ମନ୍ତ୍ରୀମାନେ ନିରାପତ୍ତା ଦୃଷ୍ଟିରୁ କିପରି ନିର୍ଭରଶୀଳ, ତାହା ଡଃ ସୂପକାର ସୂଚାଇଛନ୍ତି । ଯୁକ୍ତରାଷ୍ଟ୍ର ଆମେରିକାରେ ରାଜ୍ୟପାଳଙ୍କ ସହଧର୍ମିଣୀ ନିଜେ ମୋଟର ଚଳାଇ ବଜାର କରିବାକୁ ଯାନ୍ତି । ଦିନେ ରାଷ୍ଟ୍ରପତି ରୋନାଲଡ୍ ରିଗାନଙ୍କର ଦୂରଦର୍ଶନ ଭାଷଣ ପରେ ପରେ ସାଧାରଣ ଲୋକଙ୍କର ସମାଲୋଚନାମୂଳକ ଟିପ୍‌ପଣୀ ଶୁଣିଥିଲେ । ସୁପ୍ରିମକୋର୍ଟ ବିଚାରପତିଙ୍କ ନାମ ପୂର୍ବରୁ ନ୍ୟାୟମୂର୍ତ୍ତି ଉପାଧି ଯୋଡ଼ିବା ନିଷ୍ପ୍ରୟୋଜନ । ଆଭିଜାତ୍ୟର ଗଂଧ କେଉଁଠି ନଥାଏ ବୋଲି ସେ କହିଛନ୍ତି ।

ତାଙ୍କର ଜଣେ ବନ୍ଧୁ ଡଃ ନୀତିରଞ୍ଜନ ବହିଦାରଙ୍କ ସଙ୍ଗେ ସେ ଥରେ ପ୍ରିନ୍‌ସଟନ ବିଶ୍ୱବିଦ୍ୟାଳୟକୁ ବୁଲିଯାଇଥିଲେ । ସେଠାରେ ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକ ଆଇନଷ୍ଟାଇନ୍ ଗବେଷଣା କାର୍ଯ୍ୟରେ ପ୍ରବୃତ୍ତ ଥିଲେ । ରାଷ୍ଟ୍ରପତି ରୁଜଭେଲଟ୍ ଅବସର ନେଲା ପରେ ଉକ୍ତ ବିଶ୍ୱବିଦ୍ୟାଳୟର ନିର୍ଦ୍ଦେଶକ ହୋଇଥିଲେ ।

ଆମ ଦୃଷ୍ଟିକୋଣରୁ ସେ ଦେଶର ବୁଢ଼ାବୁଢ଼ୀଙ୍କ ଅବସ୍ଥା ଶୋଚନୀୟ । ପୁଅ ଝିଅ ସାବାଳକ ହୋଇଗଲେ ବାପାମାଆଙ୍କଠାରୁ ଦୂରେଇ ଯାଆନ୍ତି । ବୁଢ଼ାବୁଢ଼ୀମାନେ ଜରାନିବାସରେ ସମୟ ବିତାଇଥାନ୍ତି । ଆମର ପ୍ରାଚୀନ ଯୌଥ ପରିବାରର ପରଂପରାକୁ ସେ ପ୍ରଶଂସା କରିଛନ୍ତି ।

କୁହାଯାଏ ଯେ ଆମେରିକାରେ ହାରାହାରି ଦୁଇ ବର୍ଷରେ ମୋଟର ଗାଡ଼ି ଓ ପାଞ୍ଚ ବର୍ଷରେ ଘର ବଦଳାଇଥାନ୍ତି । ଆମ ଦେଶରେ ଗୋଟିଏ ସ୍ଥାନରେ ଚଳିଯିବା ପରେ ଅନ୍ୟତ୍ର ଯିବାକୁ ଅନିଚ୍ଛୁକ । ପୈତୃକସ୍ଥାନ ବା ଗୃହ ଯେତେ ପୁରୁଣା ହେଲେ

ବି ତାର ଆକର୍ଷଣ ଛାଡ଼ି ହୁଏ ନାହିଁ । ପାରିବାରିକ ବଂଧନ ଆମ ପରି ସଦୃଢ଼ ନୁହେଁ । ବିବାହ ପରି ଛାଡ଼ପତ୍ର ସଂଖ୍ୟା ସୀମାତୀତ । ଜଣେ ଜଣେ ଅଭିନେତ୍ରୀ ୫/10 ଥର ବିବାହ କରିବା କଥା ସେ ଉଲେଖ କରିଛନ୍ତି । ଅଳ୍ପ ଖର୍ଚ୍ଚରେ ସେ ବହୁ ବଂଧୁଙ୍କ ଆତିଥ୍ୟ ଲଭ କରି ଆମେରିକାର ବହୁସ୍ଥାନ ପରିଦର୍ଶନ କରିପାରିଥିଲେ ।

## ରାଜନୈତିକ ବିପର୍ଯ୍ୟୟ ପରେ ଅବସର ଗ୍ରହଣ

ଡଃ ସୂପକାର ସାଂପ୍ରତିକ ରାଜନୈତିକ ବ୍ୟଭିଚାର, ସଂକୀର୍ଣ୍ଣ ସ୍ୱାର୍ଥ ସିଦ୍ଧି ଓ ନୀତିହୀନତା ସଂପର୍କରେ ଅନେକ ମୂଲ୍ୟବାନ ମନ୍ତବ୍ୟ ଦେଇଛନ୍ତି । ଦଳୀୟ ସ୍ୱାର୍ଥ-ସାଧନ ପାଇଁ 1990 ମସିହା ଭୋଟ ପୂର୍ବରୁ ବିଜୁ ପଟ୍ଟନାୟକଙ୍କର ଦସ୍ତଖତରେ ଏକ ପ୍ରଚାରପତ୍ର ବଣ୍ଟାଯାଇଥିଲ । ଜନତା ଦଳ ସରକାର ଗଠନ କଲେ ଦଶହଜାର ଯାଏ ଋଣ ଛାଡ଼ କରିଦେବେ ବୋଲି କହିଥିଲେ । ଅନ୍ୟ ରାଜ୍ୟରେ ମଧ୍ୟ ଏହିପରି ପ୍ରତିଶ୍ରୁତି ଦେଇ ଭୋଟରମାନଙ୍କୁ ଲୋଭସକ୍ତ କରିବାକୁ ଉଦ୍ୟମ ହୋଇଥିଲ ।

ଭାରତୀୟ ଜନତା ପାର୍ଟି ତରଫରୁ ଶ୍ରୀ ଲାଲକୃଷ୍ଣ ଆଡଭାନୀଙ୍କର ରଥଯାତ୍ରା ବହୁ ରାଜ୍ୟରେ ଚାଲିଲ । ଏହି ପ୍ରସଂଗରେ ଶ୍ରଦ୍ଧାକର ଲେଖିଛନ୍ତି ଯେ ଚକ୍ରବର୍ତ୍ତୀ ହେବାକୁ ଚାହୁଁଥିବା ରାଜାମାନେ ଅଶ୍ୱମେଧ ଯଜ୍ଞର ଆୟୋଜନ କରୁଥିଲେ ଏବଂ ଯଜ୍ଞର ଘୋଡ଼ା ଚାରିଆଡ଼େ ଯିବାକୁ ଛାଡ଼ି ଦିଆଯାଉଥିଲ । ଏହି ରଥ ଯାତ୍ରା ସଫଳ ହୋଇଥିଲେ ପରବର୍ତ୍ତୀ ନିର୍ବାଚନରେ ଭାରତୀୟ ଜନତାଦଳ ସଂଖ୍ୟାଧିକ ହେବାକୁ ଆଶା କରିଥିଲ । ପ୍ରଧାନମନ୍ତ୍ରୀ ଶ୍ରୀ ଭି. ପି. ସିଂହଙ୍କୁ ଏଥିପାଇଁ ତାଗିଦ କରାଯାଇଥିଲ । ମାତ୍ର କେତେକ ରାଜ୍ୟରେ ଏହି ରଥଯାତ୍ରାରେ ବାଧା ସୃଷ୍ଟି ହେବାରୁ ରାଷ୍ଟ୍ରୀୟ ମୋର୍ଚ୍ଚା ସରକାରରୁ ଭା.ଜ.ପା. ସମର୍ଥନ ପ୍ରତ୍ୟାହାର କରିନେଲେ ।

କଂଗ୍ରେସ ସଭାପ ରାଜୀବ ଗାନ୍ଧିଙ୍କ ସମର୍ଥନରେ ଚନ୍ଦ୍ର ଶେଖରଙ୍କ ନେତୃତ୍ୱରେ ଭାରତ ସରକାରଙ୍କ ମନ୍ତ୍ରିମ[illegible]ଳ ଗଢ଼ାଗଲ । ଜନତା ଦଳରୁ କେତେ ଜଣ ଅଲଗା ହୋଇ ସେଥିରେ ଯୋଗ ଦେଲେ । 1991ରେ ପୁଣି ଲୋକସଭା ନିର୍ବାଚନରେ ରାଜୀବ ଗାନ୍ଧିଙ୍କ ହତ୍ୟାକାଣ୍ଡ ଏକ ଅତ୍ୟ[illegible] ଦୁଃଖଦ ଘଟଣା ହୋଇ ରହିଗଲ । ଓଡ଼ିଶାରୁ ଲୋକସଭା ନିର୍ବାଚନରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପରାଜୟ ଘଟିଲ ।

1990 ମସିହା ବିଧାନ ସଭା ନିର୍ବାଚନରେ ଓଡ଼ିଶାରେ ଜନତା ଦଳ ଅଭୂତପୂର୍ବ ସଫଳତା ଲଭ କରି ବିଜୁ ପଟନାୟକଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଢିଲ । ଏହା କେତେକାଂଶରେ ନିର୍ବାଚନ ପ୍ରତିଶ୍ରୁତିର ଫଳ ବୋଲି କୁହାଗଲ । ମୁଖ୍ୟମନ୍ତ୍ରୀ ବିଜୁ ପଟନାୟକଙ୍କ ମାଡ଼ତତ୍ତ୍ୱ ଅସାଧୁ କର୍ମଚାରୀ କର୍ତ୍ତବ୍ୟ ପାଳନରେ ଅବହେଳା କଲେ ଜନ-ସାଧାରଣ ମୁଖ୍ୟମନ୍ତ୍ରୀଙ୍କୁ ଟେଲିଫୋନ ଦ୍ୱାରା ଜଣାଇ ଉକ୍ତ କର୍ମଚାରୀଙ୍କୁ ମାଡ଼ ମାରିବା ସରକାର ତଥା ଶାସନରେ ଅଯଥା ବିଶୃଙ୍ଖଳା ଓ ଅରାଜକତାର ପଦ ଧ୍ୱନି ଶୁଣାଇଥିଲ ।

1990 ମସିହା ବିଧାନ ସଭା ନିର୍ବାଚନ ପରେ ଡଃ ସୂପକାର ସକ୍ରିୟ ରାଜନୀତିରୁ ଅବସର ଗ୍ରହଣ କରିଥିଲେ । ତାଙ୍କର ସ୍ୱାସ୍ଥ୍ୟ ମଧ୍ୟ ଭଲ ରହୁ ନଥିଲା । ସମସ୍ତ ଯତ୍ନ ସତ୍ତ୍ୱେ ସେ 1991 ମସିହା ଡିସେମ୍ବର ମାସରେ ମୂତ୍ରରୋଗରେ ପୀଡ଼ିତ ହୋଇ ବୁର୍ଲା ଭେଷଜ ମହାବିଦ୍ୟାଳୟରେ କିଛି ଦିନ ଚିକିତ୍ସିତ ହେଲେ । ଆଶାନୁରୂପ ସୁଫଳ ନ ମିଳିବାରୁ ଉକ୍ତ ବର୍ଷ ଶେଷରେ ବମ୍ବେସ୍ଥ ଟାଟା ମେମୋରିଆଲ ହସପିଟାଲରେ ଭର୍ତ୍ତି ହୋଇଥିଲେ । 1992 ମସିହା ଜାନୁଆରୀ 1 ତାରିଖରେ ସେଠାରେ ମଧ୍ୟ ଏକ ଅସ୍ତ୍ରୋପଚାର କରାଯାଇ ଜାନୁଆରୀ 12 ତାରିଖରେ ଘରକୁ ଫେରିଲେ । ବ୍ୟାଧି-ପୀଡ଼ାର ଉପଶମ ନ ହେଲାରୁ ସେ ଶଯ୍ୟାଶାୟୀ ହୋଇ ପଡ଼ି ରହିଲେ, ଚଳତ୍ ଶକ୍ତି ମଧ୍ୟ କ୍ରମଶଃ ହ୍ରାସ ପାଇଲା ।

ସେ ସତୁରୀ ବର୍ଷ ବୟସରୁ ଜରାର ହିମ ସ୍ପର୍ଶ ଅନୁଭବ କଲେ । ଶାରୀରିକ ଅକ୍ଷମତା ସଂପର୍କରେ ସେ ସଚେତନ ଥିଲେ ମଧ୍ୟ ଜରାକୁ ଯଥାଶକ୍ତି ପ୍ରତିରୋଧ କରିବାକୁ ଉଦ୍ୟମ କରିଥିଲେ । "ଏହା ଫଳରେ ପାଞ୍ଚ ବର୍ଷ ବିଧାନ ସଭାର ସଭ୍ୟ ରୂପେ ତତ୍‌ପରତାର ସହିତ ନିଜର କର୍ତ୍ତବ୍ୟ ପାଳନ କରିଲି । ବହୁ ଦୂର ଗଲିଲେ ମଧ୍ୟ ବିଶେଷ କ୍ଳାନ୍ତି ଅନୁଭବ କରି ନାହିଁ । ତଥାପି ଅସ୍ତଗାମୀ ସୂର୍ଯ୍ୟ ପରି ଅସ୍ତାଚଳର ନିକଟରୁ ନିକଟତର ହେଉଛି" (ତତ୍ରୈବ ପୃ. 166) । ତେବେ ସେ ପ୍ରଶ୍ନ କରିଛନ୍ତି ଜୀବନରେ ତ ବହୁ ପତନ ଓ ଉତ୍‌ଥାନ ଘଟିଛି, କିନ୍ତୁ "ସତ୍ୟମେବଜୟତେ" ଏହି ଉକ୍ତିଟି କ'ଣ ଯଥାର୍ଥ ? ନିଷ୍ଠା ଓ ଆନ୍ତରିକତାର ପୁରସ୍କାର କିଛି ଅଛି ତ ? ପୁରୁଷାର୍ଥକୁ ଦୈବ କାହିଁକି ପଦେ ପଦେ ପ୍ରତିହତ କରେ ?

1993 ମସିହା ଜାନୁଆରୀ ମାସ 5 ତାରିଖ ଦିନ ଉତ୍କଳମାତାର ଅନ୍ୟତମ ବରପୁତ୍ର, ବରିଷ୍ଠ ଜନନାୟକ, ପ୍ରବୀଣ ବ୍ୟବସ୍ଥାପକ, ପୂର୍ବତନ ବିରୋଧୀ ଦଳ ନେତା, ଧୂରୀଣ ସାଂସଦ, ସ୍ୱନାମଧନ୍ୟ ଶିକ୍ଷାବିତ୍, ଦକ୍ଷ ଆଇନଜୀବୀ, ସୁଦକ୍ଷ ଶିକ୍ଷାପ୍ରଶାସକ ଓ ପ୍ରତିଭାଶାଳୀ ସାହିତ୍ୟିକ ଡଃ ଶ୍ରଦ୍ଧାକର ସୂପକାରଙ୍କ ମହାପ୍ରୟାଣ ଘଟିଥିଲା ।

# ଦ୍ୱିତୀୟ ଅଧ୍ୟାୟ

## ଡକ୍‌ଟର ଶ୍ରଦ୍ଧାକର ସୂପକାରଙ୍କ ଓଡ଼ିଶା ବିଧାନ ସଭାରେ ପ୍ରଦତ୍ତ ଭାଷଣ

ପୂର୍ବ ଅଧ୍ୟାୟରେ ଆଲୋଚନା କରାଯାଇଛି, ଡଃ ଶ୍ରଦ୍ଧାକର ସୂପକାର 1949 ମସିହା ମାର୍ଚ୍ଚ ମାସରେ ଓଡ଼ିଶା ବିଧାନ ସଭାକୁ ଜଣେ ସ୍ୱାଧୀନ ସଭ୍ୟ ଭାବରେ ନିର୍ବାଚିତ ହୋଇ ଶପଥ ଗ୍ରହଣ କରିଥିଲେ । ସେ ସେତେବେଳେ 34 ବର୍ଷର ଯୁବକ ଏବଂ ସେ ଛାତ୍ରାବସ୍ଥାରୁ ସମ୍ବଲପୁର ଜନସାଧାରଣଙ୍କ ସମସ୍ୟା ସଂପର୍କରେ କେବଳ ସଚେତନ ନଥିଲେ, କଠୋର ସଂଗ୍ରାମ କରି ଦୁଃଖୀ ଓ ଅତ୍ୟାଚାରିତ ମନୁଷ୍ୟର ଭାଷା ଓ ଭାବକୁ ଆପଣାର କରିଥିଲେ । ସେ ତେଣୁ ଯଥାର୍ଥରେ କହିଥିଲେ, "ସମସ୍ତ ଆନ୍ତରିକତା, ବୁଦ୍ଧି, ବିବେକ ସହିତ ମୁଁ ସେହି ହଜାର ହଜାର ପରିବାରଙ୍କର ଭାଷାକୁ ବିଧାନ ସଭାରେ ପ୍ରତିଧ୍ୱନିତ କରିବାକୁ ଚାହୁଁଥିଲି" (ମଧ୍ୟମ ପୁରୁଷ, 1982 ପୃ. 170) । ପ୍ରଥମ ବଜେଟ ଭାଷଣ ପାଇଁ ସେ ରାଜନୀତି ବିଜ୍ଞାନ ତଥା ସଂସଦ ସଂବନ୍ଧୀୟ ପୁସ୍ତକ ଅଧ୍ୟୟନ କରିଥିଲେ । ଏମିତିକି ଏକ ଲିଖିତ ଭାଷଣ ପ୍ରସ୍ତୁତ କରି ତାକୁ ପ୍ରାୟ ମୁଖସ୍ଥ କରି ଦେଇଥିଲେ । ପ୍ରଥମ ଭାଷଣ ଦକ୍ଷତାର ସହିତ ପ୍ରଦାନ କରିଥିଲେ ହୀରାକୁଦ ବୁଡ଼ି ଅଞ୍ଚଳର ପ୍ରବକ୍ତା ଭାବରେ ସେ ସେଠାର ସମସ୍ୟାଗୁଡ଼ିକ ଦୃଢ଼ତାର ସହିତ ବିଧାନ ସଭାରେ ଉପସ୍ଥାପନ କରିଥିଲେ । ଓକିଲ ଭାବରେ ଜେରା କରିବା ଅଭିଜ୍ଞତା ଥିବାରୁ ବିଧାନ ସଭାରେ ପ୍ରଶ୍ନ ଓ ଅତିରିକ୍ତ ପ୍ରଶ୍ନ ପଚାରିବାରେ ସଫଳ ହୋଇଥିଲେ ।

ତାଙ୍କର ପ୍ରଚୁର ଯୌବନସୁଲଭ ଉତ୍ସାହ ଓ ଉନ୍ମାଦନା ଥିବାରୁ ଓ ତତ୍କାଳୀନ ବିରୋଧୀ ପକ୍ଷର ଅଧିକାଂଶ ସଭ୍ୟ ନରମପନ୍ଥୀ ଥିବାରୁ ସରକାରଙ୍କୁ ତାଙ୍କ ପରି କେହି କଠୋର ସମାଲୋଚନା କରିପାରୁ ନଥିଲେ ବୋଲି ସେ ନିଜେ ଅନୁଭବ କରିଛନ୍ତି । ହୀରାକୁଦ ବନ୍ଧର ଖର୍ଚ୍ଚ ବିଷୟରେ ସେ କାଟପ୍ରସ୍ତାବ ଆଣି ସ୍ୱଳ୍ପ ସଂଖ୍ୟକ ସମର୍ଥନ ଲାଭ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ମାତ୍ର ତାଙ୍କ ଏକକ ପ୍ରତିବାଦକୁ ସେ ବିଧାନ ସଭା ବିବରଣୀରେ ଲିପିବଦ୍ଧ କରିବାକୁ ଦାବି କରିଥିଲେ । ତାଙ୍କର ସରକାରୀ ସମାଲୋଚନା କଠୋର ହେଉଥିଲା ବୋଲି ବିରୋଧୀ ଦଳର ନେତାମାନେ କହୁଥିଲେ । ତେବେ ସେ କ୍ରମେ ବିରୋଧୀଦଳର ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ତାଙ୍କର ବକ୍ତୃତା ଓ ପ୍ରଶ୍ନମାନ ସମ୍ବାଦପତ୍ରରେ ନିୟମିତ ଭାବରେ ତାଙ୍କର ପ୍ରତିକୃତି ସହିତ ପ୍ରକାଶିତ ହେଉଥିଲା ।

ନିମ୍ନରେ ତତ୍କାଳୀନ ଅର୍ଥମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଦ୍ୱାରା ବିଧାନ ସଭାରେ ଆଗତ ଅତିରିକ୍ତ ଖର୍ଚ୍ଚ ଦାବି ଉପରେ ଡଃ ସୂପକାର ଜାନୁୟାରୀ 21ରେ ମୋଟ 3ଟି କାଟ ପ୍ରସ୍ତାବର ଉପସ୍ଥାପନ ଓ ତତ୍‌ପ୍ରସଂଗୀୟ ଭାଷଣ ସଂକ୍ଷିପ୍ତ ହେଲେ ବି କେତେ ଦୂର ଯୁକ୍ତିଯୁକ୍ତ, ଦୃଢ଼ ଓ କଠୋର ଥିଲା, ତାହା ଅନୁଧ୍ୟାନ କରନ୍ତୁ । ଏଥିରେ ସେ ବିଚାର ବିଭାଗ

ଓ ଶାସନ ବିଭାଗ ମଧ୍ୟରେ ସଂପୂର୍ଣ୍ଣ ସ୍ୱତନ୍ତ୍ରତା ଓ ତା'ର ଅଭାବରୁ ବିଭ୍ରାନ୍ତ ଓ ବିଭ୍ରାଟପୂର୍ଣ୍ଣ ବିଚାର, ଗଡ଼ଜାତ ରାଜ୍ୟଗୁଡ଼ିକରେ ବହୁ ପଦବୀ ଶୂନ୍ୟ ପଡ଼ିଥିବା ଯୋଗୁଁ ପ୍ରଶାସନରେ ଅଧିକ ବିଶୃଙ୍ଖଳା, ପ୍ରଚାର ବିଭାଗର ନିଷ୍ଫଳ ବ୍ୟୟ, ଅପଚୟ ସରକାରୀ କର୍ମଚାରୀମାନଙ୍କର ଘନ ଘନ ବଦଳି, ଗସ୍ତକାଳୀନ ଆଡମ୍ବର ଓ ଅତ୍ୟାଚାର, ଦୁର୍ନୀତି, ସରକାରୀ ଓ ସାହାଯ୍ୟପ୍ରାପ୍ତ ବିଦ୍ୟାଳୟର ମୌଳିକ ସୁବିଧା ସୁଯୋଗ ମଧ୍ୟରେ ବିରାଟ ପାର୍ଥକ୍ୟ, ପରିଚାଳନା ସମିତିର ସୀମିତ କ୍ଷମତା ଆଦି ସଂପର୍କରେ ଡଃ ସୂପକାରଙ୍କ ମନ୍ତବ୍ୟ ଆଜି ବି କେତେ ପ୍ରାସଂଗିକ, ତାହା ଦେଖିବା କଥା ।

## ହୀରାକୁଦ ବନ୍ଧଦ୍ୱାରା ଆକ୍ରାନ୍ତ ହୋଇଥିବା ଲୋକମାନଙ୍କର ପୁନର୍ବାସ ସଂପର୍କରେ ମୁଲତବୀ ପ୍ରସ୍ତାବ

ଡକ୍ଟର ସୂପକାର ଥିଲେ ସମ୍ବଲପୁରର ଯଥାର୍ଥ ଭୂମିପୁତ୍ର ଏବଂ ସେଠାର ଜନସାଧାରଣଙ୍କ କରୁଣ ଅନୁଭୂତି ଓ ନିର୍ଯ୍ୟାତନାକୁ ମର୍ମେ ମର୍ମେ ଅନୁଭବ କରି ତା'ର ପ୍ରତିକାର ପାଇଁ ଦୃଢ଼ ଦାବି ଉପସ୍ଥାପନ କରିବା ଥିଲା ଲୋକ ପ୍ରତିନିଧି ଭାବରେ ତାଙ୍କର ପରମ କର୍ତ୍ତବ୍ୟ । ସୁତରାଂ ସେ ବିଧାନ ସଭାରେ ବଜେଟ ଭାଷଣ ବେଳେ ବୁଡ଼ିଅଞ୍ଚଳ ଲୋକମାନଙ୍କର ଜ୍ୱଳନ୍ତ ସମସ୍ୟା ସଂପର୍କରେ କହିବା ସଂଗେ ସଂଗେ ସ୍ୱତନ୍ତ୍ର ମୁଲତବୀ ପ୍ରସ୍ତାବ ଆଗତ କରୁଛନ୍ତି । ଏସବୁ ମାଧ୍ୟମରେ ସେ ସରକାରଙ୍କ ସ୍ଥାଣୁତା, ଉଦାସୀନତା ଓ ଦାୟିତ୍ୱହୀନତା ସଂପର୍କରେ ଘନଘନ ଆପତ୍ତି ଓ ପ୍ରତିବାଦ କରିଥିଲେ । ତୀକ୍ଷ୍ଣ ଓ ବିଷାକ୍ତ ଶର ନିକ୍ଷେପ କଲା ପରି ସେ ସର୍ବଦା ଓ ସର୍ବତ୍ର ସରକାରଙ୍କୁ ଆକ୍ରମଣ କରିଛନ୍ତି, କଠୋର ସମାଲୋଚନା କରିଛନ୍ତି ଏବଂ ପ୍ରଶ୍ନବାଣ ମାରିଛନ୍ତି ।

1950 ମାର୍ଚ୍ଚ 13 ତାରିଖରେ ସେ ଏକ ମୁଲତବୀ ପ୍ରସ୍ତାବ ଦେଇ କହିଛନ୍ତି ଯେ ହୀରାକୁଦ ବନ୍ଧଦ୍ୱାରା ଯେଉଁମାନେ ଜମି ଓ ଗୃହ ହରାଇବେ ସେମାନଙ୍କୁ ପ୍ରଥମେ ତତ୍ତୁଲ୍ୟ ଭୂମି, ଗୃହ ବା ଆର୍ଥିକ କ୍ଷତିପୂରଣ ନଦେଇ ସରକାର ସେମାନଙ୍କୁ ବାସଚ୍ୟୁତ କରିପାରିବେ ନାହିଁ । ଡଃ ସୂପକାର ଏ ସମ୍ପର୍କରେ ବୁଡ଼ିଅଞ୍ଚଳରେ ବଣ୍ଟା ଯାଇଥିବା ସରକାରଙ୍କ ପ୍ରଚାରପତ୍ରରୁ କେତେକ ଅଂଶ ବିଧାନ ସଭାରେ ଉଦ୍ଧାର କରିଥିଲେ । ଉକ୍ତ ପ୍ରଚାର ଅନୁରୂପ କାର୍ଯ୍ୟ ଦେଉନଥିବାରୁ ଶ୍ରଦ୍ଧାକର ଅସ୍ଥିର ଓ ଅସହିଷ୍ଣୁ ହୋଇ ପଡ଼ିବା ସ୍ୱାଭାବିକ । ତାଙ୍କର ନିଜ ଉର୍ବର ଜମିବାଡ଼ି ଘର ଦ୍ୱାର ମଧ୍ୟ ହୀରାକୁଦ ଜଳଭଣ୍ଡାର ମଧ୍ୟରେ ଲୀନ ହୋଇ ଥିଲା । ଏତଦ୍ୱାରା ତାଙ୍କ କୃଷିପ୍ରାଣ ପିତା ଖୁବ୍ ବ୍ୟଥିତ ହେବା ଓ ଉପଯୁକ୍ତ ପୁତ୍ର ଭାବରେ ଶ୍ରଦ୍ଧାକର ତାଙ୍କ ସହିତ ସମଦଶାପନ୍ନ ଜନତାଙ୍କର ଦୁଃଖ ହୃଦୟରେ ଅନୁଭବ କରିବା ସାଧାରଣ କଥା ।

ହୀରାକୁଦ ବନ୍ଧ ଯୋଜନାର ସୂତ୍ରଧାର ଓ ନିୟନ୍ତ୍ରକ ଓ ଖୋସଲାଙ୍କ ପ୍ରସ୍ତୁତ ଯୋଜନା ପୁସ୍ତକରୁ ଉଦ୍ଧାର କରି ସେ କିପରି ଜମିଦଖଲ କରିବା ପୂର୍ବରୁ ତତ୍ତୁଲ୍ୟ ଜମି ଓ ଗୃହ

ନିର୍ମାଣ କରିବା, ନୂତନ ଗ୍ରାମ ପ୍ରତିଷ୍ଠା କରି ଆଧୁନିକ ସମସ୍ତ ସୁବିଧା ସୁଯୋଗ ଯୋଗାଇବା ଏବଂ ଆକ୍ରାନ୍ତ ଅଧିକାରୀଙ୍କ ପ୍ରତି ସଦୟ ଓ ସହାନୁଭୂତିଶୀଳ ହେବା ପରାମର୍ଶ ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । " ଉପଯୁକ୍ତ ସୁବିଧା ସୁଯୋଗନଦେଇ ଲୋକଙ୍କ ଘରଦ୍ୱାର ଓ ଜମିବାଡ଼ି ଦଖଲ କରାଯିବ କି ? " ଦୃଷ୍ଟି ଆକର୍ଷଣକାରୀ ପ୍ରଶ୍ନ ପଚାରିଛନ୍ତି ଏବଂ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ "ନାହିଁ" ବୋଲି ଉତ୍ତର ଦେଇଥିଲେ ହେଁ ଡଃ ସୂପକାରଙ୍କ ମନ ବୁଝିନାହିଁ । ଏଦିଗରେ ସରକାରଙ୍କ ନିଷ୍କ୍ରିୟତାକୁ ସେ ତୀବ୍ର ଆକ୍ଷେପ କରିଛନ୍ତି ।

ଏ ସଂପର୍କରେ ଘନଘନ ପ୍ରଶ୍ନ ଓ ଅତିରିକ୍ତ ପ୍ରଶ୍ନ ପଚାରି ସେ ମନ୍ତ୍ରୀମାନଙ୍କୁ ଅସ୍ତବ୍ୟସ୍ତ କରି ପକାଉଛନ୍ତି । ଆବଶ୍ୟକ ଆଗତୁରା ପଦକ୍ଷେପ ନେବା ତ ଦୂରର କଥା ତାପରେ ମଧ୍ୟ ବର୍ଷ ବର୍ଷ ଧରି ବନ୍ଧ ଦ୍ୱାରା ଆକ୍ରାନ୍ତ ଲୋକମାନଙ୍କର ଅବସ୍ଥାରେ ଉନ୍ନତି କରିବାକୁ ସେ ବାରମ୍ବାର ଦାବି କରିଛନ୍ତି । ସେ ସଂସ୍କୃତ କାବ୍ୟରୁ ଏକ ଉଦ୍ଧୃତ ଦେଇ ସରକାର କିପରି ସାହାଯ୍ୟ କରିବା ପରିବର୍ତ୍ତେ ହଇରାଣ ହରକତ କରୁଛନ୍ତି, ତାହା ବୁଝାଉଛନ୍ତି "ରାଜା ହରତ ସର୍ବସ୍ୱ ଶରଂଣ କସ୍ୟ ଗମ୍ୟତେ" ବୁଡ଼ି ଅଞ୍ଚଳର ଲୋକଙ୍କର ଦୁର୍ଦ୍ଦଶାକୁ ସେ ବର୍ଣ୍ଣନା କରି ସମୁଦ୍ର ମନ୍ଥନ ଦୃଷ୍ଟାନ୍ତ ଦେଇଛନ୍ତି, "ରାଜା ଯଦି ସବୁ ହରଣ କରନ୍ତି ତାହେଲେ କାହାଠାରେ ଶରଣ ପଶିବୁ ? ଯେଉଁ ହୀରାକୁଦ ଯୋଜନା ଅଛି, ତାକୁ ଆମେ ସମୁଦ୍ର ମନ୍ଥନ ସଙ୍ଗେ ତୁଳନା କରିବା, ତାହାହେଲେ ଏଥିରୁ ଯେଉଁ ଲକ୍ଷ୍ମୀ ବାହାରୁଛନ୍ତି ବା ବାହାରିବେ ଏବଂ ଯେଉଁ କୌସ୍ତୁଭ ମଣୀ ବା ଅନ୍ୟାନ୍ୟ ରତ୍ନ ବାହାରିବ, ତାକୁ ଅନ୍ୟାନ୍ୟ ଲୋକେ ଭୋଗ କରିବେ ବା କରୁଛନ୍ତି ଏବଂ ତହିଁରୁ ଯେଉଁ ବିଷ ଓ ଅର୍ଦ୍ଧ ଚନ୍ଦ୍ର ବାହାରୁଛି, ତାକୁ ଆମେ ଭୋଗ କରୁଛୁ ଅର୍ଥାତ ଏହି ବୁଡ଼ି ଅଞ୍ଚଳ ଲୋକେ । ଏକଥା ଆମେ 1947 ସାଲ ସେଠି ଘୁର୍ଦ୍ଦ (charge) ସମୟରୁ ବୁଝିପାରୁଛୁ "

ସ୍ୱାର୍ଥତ୍ୟାଗ କରିବା ଜନସାଧାରଣଙ୍କ ପ୍ରାପ୍ୟ ଅଧିକାର ମିଳୁନଥିବାରୁ ସେ ଦୁଃଖିତ ହୋଇଛନ୍ତି ଏବଂ ଏହି ତ୍ୟାଗ ପରିବର୍ତ୍ତେ ସେମାନଙ୍କୁ ନିର୍ଯ୍ୟାତିତ କରାଯାଉଛି ବୋଲି ଡଃ ସୂପକାର ଅଭିଯୋଗ କରିଛନ୍ତି । ସେମାନଙ୍କୁ ଦଧିଚୀ ଓ ଧର୍ମପଦ ହେବାକୁ ଅନେକ ସମୟରେ ଉପଦେଶ ଦିଆଯାଏ ଏଥିରେ ଶ୍ରଦ୍ଧାକର ବିଶେଷ କ୍ଷୁବ୍ଧ ହୋଇ ସ୍ୱାର୍ଥପର ନେତାଗଣ "ଫୁଲମାଳ" ପିନ୍ଧିବେ ଆଉ ସ୍ୱାର୍ଥତ୍ୟାଗ କରୁଥିବା ଲୋକେ "ଧର୍ମପଦ" ହେବେ କହିବା ନିତ୍ୟାନ୍ତ ଅଶୋଭନୀୟ ଓ ପ୍ରବଞ୍ଚନା hypocrisy ବୋଲି ଶ୍ରଦ୍ଧାକର ବାରମ୍ବାର କହିଛନ୍ତି ।

ଏହି ପ୍ରସଙ୍ଗରେ ଉତ୍କଟ ସମାଲୋଚନା କରିବାରୁ ସମ୍ଭବତଃ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ଖୁବ୍ ଅତିଷ୍ଠ ହୋଇପଡ଼ି ଡଃ ସୂପକାରଙ୍କୁ ଜିଲ୍ଲା କଚେରୀରେ ଓକିଲ (District Court Lawer) ବୋଲି କହିଥିଲେ । ତାର ପ୍ରତ୍ୟୁତ୍ତର ଦେବାକୁ ସୂପକାର କାହାରି ଜମିର କ୍ଷତିପୂରଣ ଅତି କମ୍ ହାରରେ ଦେବା ଦ୍ୱାରା କିପରି ଅନ୍ୟାୟ କରାଯାଉଛି ତାହା

Cost of living Index ର ଦୃଷ୍ଟାନ୍ତ ଦେଇ ବୁଝାଇଛନ୍ତି । ବାସଗୃହସବୁ ହୀରାକୁଦ ବନ୍ଧରେ ସରକାର ଦଖଲ କରୁଥିବାରୁ ଅନ୍ୟତ୍ର ବାସଗୃହ ଯୋଗାଇଦେବାକୁ ଦାବି କରି ସେ ସାନପଥର ପରି କେତୋଟି ଗାଁର ଦୟନୀୟ ଅବସ୍ଥା ବର୍ଣ୍ଣନା କରିଛନ୍ତି । କିନ୍ତୁ ନିତ୍ୟାନ୍ତ ବ୍ୟଥିତ ହୃଦୟରେ ସେ ଲୋକମାନଙ୍କର ଦୁର୍ଗତିକୁ ଭାବାବେଗ ସହିତ ପ୍ରକାଶ କରୁଥିଲେ କି ସଂଯତ ଭାଷା । ସେ କହିଛନ୍ତି ( 13-3-50 ) କିପରି ଭାବରେ ସୁବିଧା କରି ଦିଆଯାଇଛି, ସେ ବିଷୟରେ ମାନ୍ୟବର ପ୍ରଧାନମନ୍ତ୍ରୀଙ୍କୁ ମୁଁ ବିନୀତ ଅନୁରୋଧ କରୁଛି ଯେ, ଯେଉଁ ଲୋକମାନେ ବର୍ତ୍ତମାନ Displaced ହୋଇଯାଇଛନ୍ତି ସାନପଥର ଗାଁରେ ସେମାନଙ୍କ ଅବସ୍ଥା ଏବଂ ଯେଉଁ ନୂଆ Land reclamation ହୋଇ ଲମ୍ବୁଡଂଗୁରିରେ ଯାଇ ପୁଣିଥରେ ଦେଖି ଆସନ୍ତୁ ଏବଂ ସେଠାର ଅବସ୍ଥା ଦେଖି ଯଦି ସେ ସନ୍ତୁଷ୍ଟ ହୁଅନ୍ତି ଯେ ଲୋକମାନେ ସୁବିଧାରେ ଅଛନ୍ତି ତାହେଲେ ସେ ବିଷୟରେ ମୋର କିଛି କହିବାର ନାହିଁ ।

ଯେଉଁ ଜମିମଧ୍ୟ ବାସ୍ତୁହରା ତଥା ବସ୍ତୁହରା ଲୋକଙ୍କୁ ସରକାର ଯୋଗାଇଛନ୍ତି ତାହା ଅନୁର୍ବର ଓ ପାହାଡ଼ିଆ ହୋଇଥିବାରୁ ସହଜରେ ଚାଷ କରି ଫସଲ ଉତ୍ପାଦନ କରିବା କଷ୍ଟକର ଆକର୍ଷଣୀୟ ଜମିବାଡ଼ି ଅନ୍ୟତ୍ର ମିଳିଲେ ଲୋକମାନେ ଆନନ୍ଦରେ ଯାଆନ୍ତେ । ଶ୍ରଦ୍ଧାକର ଏହି ପ୍ରସଙ୍ଗରେ ପୁଣି କହିଛନ୍ତି (13-3-50) ଯେଉଁଥିରେ କି ଲୋକେ ସ୍ୱତଃ ଆକୃଷ୍ଟ ହୋଇ ସେହି ଜାଗାକୁ ଯାଆନ୍ତେ । କିନ୍ତୁ ଆମେ ଦେଖୁ ଗତବର୍ଷ ଛଅ ଏକର ଜମିରେ ପରୀକ୍ଷାମୂଳକ ଚାଷ କରାଯାଇଥିଲା ସେଥିରେ କିଛି ହେଲା ନାହିଁ । ଏଥିରୁ ଜମିର ପ୍ରକୃତ ଅବସ୍ଥା ବୁଝାଯିବ । ଏପରି ଜମି ଲୋକଙ୍କୁ ଯଦି ଦିଆଯାଏ.... ତାହେଲେ ମହରଗରୁ ଯାଇ କାନ୍ତାରେ ପଡ଼ିବେ ଏବଂ ଏହି ନୂଆ ଜମି ଏପରି ଭାବରେ ସରକାର ସେମାନଙ୍କୁ ଦେଉଛନ୍ତି ଯେପରିକି ତାହା ଧଳାହାତୀ ପୋଷିଲା ପରି ହୋଇଯିବ ଏବଂ ଆଦାୟଠୁ ଖର୍ଚ୍ଚ ଖୁବ୍ ଅଧିକ ହେବ ।

ସେମିତି ଶ୍ରଦ୍ଧାକର Model Villageର ଉଦାହରଣ ଦେଇଛନ୍ତି । ଗୋଟିଏ ଗୋଟିଏ ଗାଁ ସଂପୂର୍ଣ୍ଣଭାବରେ ଜଳମଗ୍ନ ହୋଇଥିବାରୁ ସରକାର ଭଲ ସ୍ଥାନରେ ଆଦର୍ଶ ଗ୍ରାମ Model Village ନିର୍ମାଣକରି ଏହି ବାସଚ୍ୟୁତ ଲୋକମାନଙ୍କୁ ଉକ୍ତ ଗ୍ରାମରେ ରଖାଇବା କଥା ମାତ୍ର ଆଦର୍ଶ ଗ୍ରାମ ନାଁରେ ଯାହା ହୋଇଥିଲା ତାହା ନିତ୍ୟାନ୍ତ ଅସନ୍ତୋଷ ଜନକ ହୋଇଥିବାରୁ ଶ୍ରଦ୍ଧାକର ଖୁବ୍ ଭଦ୍ରଭାବରେ କହିଛନ୍ତି, "ସେହି Model Village କୁ ଦେଖି ଓଡ଼ିଶାର ଲାଟ୍‌ସାହେବ ଯେଉଁ ମନ୍ତବ୍ୟ ପ୍ରକାଶ କରିଛନ୍ତି ସେଥିପ୍ରତି ମୁଁ ଆମର ପ୍ରଧାନ ମନ୍ତ୍ରୀ (ମୁଖ୍ୟମନ୍ତ୍ରୀ)ଙ୍କ ଦୃଷ୍ଟି ଆକର୍ଷଣ କରୁଛି । ତା'ପରେ ଯଦି ସେ Model Village କୁ ପ୍ରକୃତରେ Model ବା ଆଦର୍ଶ ବୋଲି ବିଚାର କରୁଛନ୍ତି, ତାହାହେଲେ ମୋର ସେଥିରେ କିଛି କହିବାର ନାହିଁ । ଏହି Model Village ର ଅବସ୍ଥା ଯେ ଦେଖିଛି, ସେ କେବଳ ବୁଝି ପାରିବ" ।

ସରକାର ପତିଶ୍ରୁତି ଦେଇଥିଲେ ଯେକୌଣସି ଲୋକଙ୍କୁ ନିରାଶ୍ରୟ (Destitute) କରାଯିବ ନାହିଁ । ଅନ୍ୟ ଜାଗାରେ ଜମି ଓ ଘରର ବନ୍ଦୋବସ୍ତ ନକଲେ ଲୋକଙ୍କୁ ନିଜ ଜମି ଓ ଘର ଛାଡ଼ି ଯିବାକୁ କୁହାଯିବ ନାହିଁ" । ତାଙ୍କର ପ୍ରତିଶ୍ରୁତି ବଡ଼ ଶ୍ରୁତି ମଧୁର, ନିଶଚୟ ମୁଁ

ସ୍ୱୀକାର କରୁଛି । ଏହି ପ୍ରତିଶ୍ରୁତିକୁ ପାଳନ କରିବାକୁ ଯେ ଘରେ ସାଧନା ଦରକାର, ତା ଆମ ସରକାରଙ୍କର ନାହିଁ (ଡ଼ଃ ସୂପକାର, ତା 13-3-1950) ଏପରି ସମ୍ବେଦନଶୀଳ ପରିସ୍ଥିତିରେ ସରକାରଙ୍କର ଯେଉଁ ନିଷ୍ଠା ଓ ଆନ୍ତରିକତା ଦରକାର ତା'ର ଅଭାବ ତୀବ୍ର ଭାବରେ ଅନୁଭୂତ ହେଉଛି, ଏହା ହେଲା ଶ୍ରଦ୍ଧାକରଙ୍କ ଅଭିଯୋଗ ।

ଅର୍ଡର (Order) ଦେବାସତ୍ତ୍ୱେ ପୁନର୍ବସତି ଯୋଜନା ପାଇଁ ଆବଶ୍ୟକ ଯନ୍ତ୍ରପାତି ଆସିପାରୁନାହିଁ, ଅଥଚ ହୀରାକୁଦ ବନ୍ଧ ନିର୍ମାଣ ପାଇଁ ଯନ୍ତ୍ରପାତି ନିୟମିତ ଭାବରେ ଚାଲି ଆସୁଛି । ବଡ଼ ବଡ଼ ଅଧିକାରୀ ଏଥିପାଇଁ ନିଯୁକ୍ତ ହୋଇ ସୁଦ୍ଧା ଫଳ କିଛି ହେଉନାହିଁ ବୋଲି ଆପତ୍ତି କରି ଡଃ ସୂପକାର କହିଛନ୍ତି" ଯେପରିକି ଆମର Grow More ଆଦି ଅଧିକ ଶସ୍ୟ ଉତ୍ପାଦନକାରୀ ଯୋଜନାରେ ବଡ଼ ବଡ଼ ଅଫିସର ନିଯୁକ୍ତି କରି ଦାୟିତ୍ୱ ଲଦି ଦେଲେ । କିନ୍ତୁ ପ୍ରକୃତରେ କାର୍ଯ୍ୟ କ'ଣ ହେଲା । ତାହାହେଲେ ଏଥର ଫଳ ଆମେ କ'ଣ ପାଇବା" । ଏହିପରି ଶ୍ରଦ୍ଧାକର ଯଥାର୍ଥ ଅଭିଯୋଗ କରି ସରକାରଙ୍କ ଦୃଷ୍ଟି ହୀରାକୁଦ ବନ୍ଧରେ ଆକ୍ରାନ୍ତ ଅଧିକାରୀମାନଙ୍କର ଦୁଃଖ ଦୁର୍ଦ୍ଦଶା ପ୍ରତି ଆକର୍ଷଣ କରି ସେ ସବୁର ଆଶୁପ୍ରତିକାର ପାଇଁ ଦାବି କରିଛନ୍ତି ।

## Resolution regarding the rehabilitation of the persons effected by the Hirakud Dam Project

**ଶ୍ରୀ ଶ୍ରଦ୍ଧାକର ସୂପକାର**—ମାନନୀୟ ସଭାପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ,

That this Assembly recommends to the Government of Orissa to see that the lands and houses of no person affected by the Hirakud Dam Project is acquired and taken possession of without first providing such persons with suitable lands and houses elswhere.

ଅର୍ଥାତ୍ ଏହି ବିଧାନ ସଭ ପ୍ରସ୍ତାବ କରୁଅଛନ୍ତି କି, ହୀରାକୁଦ ବନ୍ଧ ଯୋଜନା ଅନୁସାରେ ଯେଉଁମାନଙ୍କର ଜମି ଏବଂ ଘର ନିଆଯିବ, ସେମାନଙ୍କ ପାଇଁ ପ୍ରଥମରେ ଅନ୍ୟ ଜାଗାରେ ସୁବିଧାଜନକ ଜମି ଓ ଘର ବନ୍ଦୋବସ୍ତ ନ କରିବା ପର୍ଯ୍ୟନ୍ତ ସରକାର କୌଣସି ଲୋକର ଜମି acquire ନ କରନ୍ତୁ ଓ ଦଖଲ ନ ନିଅନ୍ତୁ । ଏ ବିଷୟରେ ବିଶେଷ ଆଲୋଚନା କରିବା ପୂର୍ବରୁ ଏହି ସମସ୍ୟାର ଟିକିଏ ସଂକ୍ଷିପ୍ତ ଇତିହାସ ଦେବା ଦରକାର । ଯେତେବେଳେ 1946 ସାଲରେ ହୀରାକୁଦ ବନ୍ଧ ଯୋଜନା ଆରମ୍ଭ ପ୍ରସ୍ତାବ କରାଗଲା, ସେହି ସମୟରେ ସମ୍ବଲପୁରର ଅନେକ ନେତୃସ୍ଥାନୀୟ ଲୋକ ଆଶଙ୍କା ପ୍ରକାଶ କରିଥିଲେ ଯେ, ସରକାର ଜମି ବଦଳରେ ଜମି, ଘର ବଦଳରେ ଘର ଦେଇ ପାରିବେ ନାହିଁ ଏବଂ ଯେ ପ୍ରକାର ସୁବିଧା ଲୋକମାନଙ୍କ ପାଇଁ କରି ଦେବା ଉଚିତ, ସେଇଆ କରିପାରିବେ

ନାହିଁ । ତା'ରି ଫଳରେ 1946ରେ ସରକାର ଆମକୁ କହିବାକୁ ଆରମ୍ଭ କଲେ ଯେ, ଯେଉଁମାନଙ୍କର ଘରଦ୍ୱାର, ଜମି ବାଡ଼ି, ଏହି ଯୋଜନା ଫଳରେ ବୁଡ଼ିଯିବ, ସେମାନେ କୌଣସି ପ୍ରକାର ଚିନ୍ତିତ ହେବାର ଦରକାର ନାହିଁ । ସେମାନଙ୍କୁ ଜମି ବଦଳରେ ଜମି, ଘର ବଦଳରେ ଘର ଦିଆଯିବ । ଏହି ସଂପର୍କରେ ସରକାରଙ୍କର ପ୍ରଚାର ବିଭାଗ ତରଫରୁ ଗୋଟିଏ ପ୍ରଚାର ପତ୍ର ବଣ୍ଟା ଯାଇଥିଲା । ସେଥିରୁ ମୁଁ କେତେକ ଅଂଶ ଉଦ୍ଧୃତ କରିବାକୁ ଚାହେଁ । ଏହି ସରକାରୀ ପ୍ରଚାର ପତ୍ରରେ ଅଛି, ଗୋଟିଏ ଆଦର୍ଶ ଗ୍ରାମର ଚିତ୍ର, ଭଲ ଘର, ପାଣିକଳ ଓ ରାସ୍ତାମାନଙ୍କର ଚିତ୍ର ମଧ୍ୟ ଦିଆ ଯାଇଛି ଏବଂ ସେଥିରେ କୁହା ଯାଇଛି ଯେ, "ଯେଉଁମାନଙ୍କର ଘର ଜଳମଗ୍ନ ହେବ ବୋଲି ଆଶଙ୍କା କରା ଯାଉଛି ।

*   *   *   *   *

**ଶ୍ରୀ ଶ୍ରଦ୍ଧାକର ସୂପକାର**—"ଯେଉଁମାନଙ୍କର ଘରଦ୍ୱାର ଜଳମଗ୍ନ ହେବ ବୋଲି ଆଶଙ୍କା କରାଯାଉଛି, ସେମାନଙ୍କପାଇଁ ଠିକ ଏହିପରି ଗାଁ ବସାଇବା ସମ୍ଭବ କି ନାହିଁ ସେ କଥା ଏପର୍ଯ୍ୟନ୍ତ ସରକାର ସ୍ଥିର କରି ନାହାନ୍ତି ସତ, କିନ୍ତୁ ଏ କଥା ସତ ଯେ ଠିକ୍ ଏହିପରି କିମ୍ବା ଏହାଠାରୁ ଟିକିଏ ଉଣା ଅଧିକ ଢଙ୍ଗରେ ନୂତନ ଘର ଓ ଗାଁ ତୋଳାଇବାକୁ ସରକାର ବିଚାର କରୁଛନ୍ତି ।"

"ତା'ପରେ ମୋଟ ଉପରେ 1 ଲକ୍ଷ 20 ହଜାର ଏକର ଜମି ଲୋକଙ୍କ ପାଇଁ ଦରକାର ହେବ ବୋଲି ହିସାବ କରାଯାଇଛି । ଜିଲ୍ଲାରେ ଏଇ ପରିମାଣର ଚାଷ ଉପଯୋଗୀ ପଡ଼ିଆ ଜମି ଖୋଜିବାକୁ ଯେଉଁମାନେ ଲାଗିଛନ୍ତି, ସେମାନେ ଏଥିରୁ ପ୍ରାୟ 99 ହଜାର ଏକର ବାହାର କରି ସାରିଲେଣି ।"

ତା'ପରେ ଶେଷରେ ଅଛି, ଏତେ ଜମି କିପରି ଅଳ୍ପ ସମୟରେ ଆବାଦ ହୋଇ ପାରିବ, ତାହା ଅନ୍ୟ ସମୟରେ ଗୋଟିଏ ବଡ଼ ସମସ୍ୟା ହୁଅନ୍ତା । ଆଜିକାଲି କିନ୍ତୁ ଏ କାର୍ଯ୍ୟ ସହଜରେ ହେବ । ପାଖରେ ଯେଉଁ କଳ ଦିଶୁଛି, ତାହାପରି ଅନେକ କଳ ସମ୍ବଲପୁରରେ ଆସି ଜମା ହୋଇଗଲଣି । ଏହି କଳ ଓ ଏହାରି ପରି କଳ ସାହାଯ୍ୟରେ ସହଜରେ ଅଳ୍ପ ଲୋକରେ ସବୁ କାମ ହୋଇପାରିବ । ଏ କଳ ସାହାଯ୍ୟରେ କାମ କିପରି ସହଜରେ ହୋଇଛି, ତାହା ଲୋକେ ଅଳ୍ପ ଦିନରେ ଦେଖି ପାରିବେ ।"

ତା' ପରେ ଆପଣମାନଙ୍କ ସମ୍ମୁଖରେ Khosla Reportର କେତେକ ଅଂଶ ଉଦ୍ଧୃତ କରୁଛି । Khosla Report ଯାହାକି 1947ରେ ପ୍ରକାଶିତ ହୋଇଥିଲା ତା'ର ନାମ ହେଉଛି "Mahanadi Valley Development Hirakud Dam Project" ଏବଂ ଏଥିର ମୁଖବନ୍ଧର X ପୃଷ୍ଠା ପ୍ରତି ବର୍ତ୍ତମାନ ମୁଁ ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରୁଛି । (Page X)

"The policy of the Government in respect of compensation should be given as far as possible, land in exchange for land and that well ahead of the date of actual submergence. The compensation in kind or cash should be on terms which are equitable and if anything, generous. Government should assist the people in rehabilitatin, and strive to great condition in the new colonies, which should be a definite improvement on the existing ones. This can be done by setting up model villages in providing them with essential amenities of life of drinking water, sanitation, public schools, community centres, electricity, etc. Any expenditure on such improvements which is in excess of the compensation allowance in the project, should be met from general revenues as a contribution towards raising the standard of living of the people. Such a scheme of rehabilitation will be welcomed in the longrun even by the dispossessed people."

ତାହାପରେ ଏହାକୁ ଓଡ଼ିଆରେ ଅନୁବାଦ କରି କହିବା ପାଇଁ ସମୟ ନଷ୍ଟ ହେବ ବୋଲି ଓଡ଼ିଆରେ ଅନୁବାଦ କରୁ ନାହିଁ । ତା'ପରେ ସରକାର ଯେଉଁ ଅନ୍ୟାନ୍ୟ ପ୍ରତିଶ୍ରୁତିମାନ ଦେଇଛନ୍ତି, ସେ ବିଷୟରେ କେତେକ ବିଷୟର ଅବତାରଣା କରିବି । ଗତ 1948 ସାଲରେ ଯେତେବେଳେ ଗୋଟିଏ Bill ଆଗତ କରା ହୋଇଥିଲା । Orissa Devlopment of Industries Irrigation, Agriculture, Capital Construction or Resettlement of displaced persons Land acquisition Bill, 1948. I am drawing your attention to that. ମୁଁ ଆପଣମାନଙ୍କର ଦୃଷ୍ଟି Orissa Legislative Assembly Proceedings, Second Assembly, 8th Session, Saturday, 11th December 1948, 196 ପୃଷ୍ଠା ପ୍ରତି ଆକର୍ଷଣ କରୁଛି । ଏଥିରେ ବକ୍ତୃତା ପ୍ରସଙ୍ଗରେ ମାନ୍ୟବର ସଦାଶିବ ତ୍ରିପାଠୀ କହିଥିଲେ, "ଟଙ୍କା ଛଡା ମଧ୍ୟ ଯେଉଁମାନଙ୍କର ଜମି ସରକାର ନେବେ, ସେମାନଙ୍କର ଜମି ଦରକାର ହେଲେ ମହୀଶୂର ଷ୍ଟେଟରେ ଯେପରି ଭାବରେ ଜମି ପରିବର୍ତ୍ତେ ଜମି ଦେବାର ବ୍ୟବସ୍ଥା କରାଯାଉଥିଲା, ସେହିଭଳି ଅବସ୍ଥା ସରକାରଙ୍କ ତରଫରୁ ହୋଇଛି ଏବଂ ସେପରି ବ୍ୟବସ୍ଥା କରାଯିବ । ଜଣକର ଯଦି ଭଲ ଜମି ବୁଡ଼ିଗଲା କିମ୍ବା ଅନ୍ୟ କାମ ପାଇଁ ନିଆଗଲା ଏବଂ ତାହା ଜମି ବଦଳରେ ସେ ଯଦି ଭଲ ଜମି ନ ପାଇଲେ ବା ତାହାଠାରୁ କମ ଉତ୍ପନ୍ନ ହେଉଥିବା ଜମି ରଖେ ତା'ହେଲେ ତାଙ୍କୁ ଜମି ଦେବା ସଙ୍ଗେ ସଙ୍ଗେ କିଛି ଟଙ୍କା ଦିଆଯିବ । ଏଥିରେ ଲକ୍ଷ୍ୟ କରିବା କଥା ଯେ, ଯେପରି ଭାବରେ ଜମି ପରିବର୍ତ୍ତେ ଜମି ଦେବାର ବ୍ୟବସ୍ଥା କରାଯାଉଥିଲା, ସେହି ଭଳି ବ୍ୟବସ୍ଥା ସରକାରଙ୍କ ତରଫରୁ ହୋଇଛି । ଅର୍ଥାତ୍ ସେ ସମୟରେ ସେପରି ହୋଇଛି ବୋଲି ମାନ୍ୟବର ମନ୍ତ୍ରୀ

ମହାଶୟ କହିଥିଲେ । ତା'ପରେ କିନ୍ତୁ ସେ ସମ୍ପର୍କରେ ଗୋଟିଏ କଥା ଲକ୍ଷ୍ୟ କରିବାର କଥା ଯେ, ସରକାରଙ୍କର ଏହି ପୂନର୍ବସତି ଯୋଜନା, ଅର୍ଥାତ୍ ଜମି ଆବାଦ ଇତ୍ୟାଦି ଯାହା କରିବାର ସେଟା ସେ ସମୟରେ ମୋଟେ ଆରମ୍ଭ ହୋଇ ନ ଥିଲା । ସେଟା ଆରମ୍ଭ ହେଲା 3-2-1949ରେ । ତା' ପରେ ଭରତର ପ୍ରଧାନ ମନ୍ତ୍ରୀ ଆମର ପୂଜ୍ୟ ନେତା ଯେତେବେଳେ ସମ୍ବଲପୁର ଆସିଥିଲେ, 1948 ଏପ୍ରିଲ 13 ତାରିଖରେ ସେ ମଧ୍ୟ ସାଧାରଣ ସଭାରେ ଆମ୍ଭମାନଙ୍କୁ ଏ ବିଷୟରେ ଅନେକ ଆଶ୍ୱାସନା ଦେଇଥିଲେ । ତା'ପର ଗତ 1949 ମାର୍ଚ୍ଚ Assembly ବୈଠକରେ ପ୍ରଶ୍ନୋତ୍ତର ସମୟରେ ମାନ୍ୟବର ପ୍ରଧାନ ମନ୍ତ୍ରୀ ଯାହା କହିଥିଲେ, ସେଥିର କେତେକାଂଶ ପ୍ରତି ମୁଁ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । Sunday the 5th March, 1949, Orissa Legislative Assembly Proceedings, 2nd Assembly, 9th Session:—

Q. No. 42: Will the persons whose lands and houses will be acquired for the Mohanadi Valley Project be asked to quit their land and homes before arrangements are made for their rehabilitation ?

ଏହି ପ୍ରଶ୍ନ ମୁଁ ପଚାରି ଥିଲି । ମାନ୍ୟବର ପ୍ରଧାନ ମନ୍ତ୍ରୀ ଉତ୍ତର ଦେଇଥିଲେ ଯେ "The answer is in the negative" ଅର୍ଥାତ ଏପରି ଲୋକଙ୍କୁ ଛାଡ଼ି ଯିବାକୁ କୁହା ହେବ ନାହିଁ । ଏହିପରି ସବୁ ପ୍ରତିଶ୍ରୁତି ଏବଂ ଆଶ୍ୱାସନା ସେ ଦେଇଥିଲେ ଏବଂ ତା'ପରେ ମଧ୍ୟ ଆମେ ଦେଖିବା ଯେ ଯେଉଁ ହୀରାକୁଦ ବନ୍ଧ ଅଞ୍ଚଳ ଯୋଗୁଁ ଓଡ଼ିଶାର ସମୃଦ୍ଧି ହେବ, ଲକ୍ଷ ଲକ୍ଷ କିଲୋଓ୍ୱାଟ ବିଜୁଳି, ପ୍ରକାଣ୍ଡ ପ୍ରକାଣ୍ଡ ଶିଳ୍ପ କାରଖାନାମାନ, କେନାଲ, କୃଷି ଏବଂ ଅନ୍ୟାନ୍ୟ ଉନ୍ନତି ହେବ, ମହୁ ଓ ଦୁଗ୍ଧଧାର ବହିବ, ସେଟା କେବଳ ସମ୍ବଲପୁରର ସେହି ଅଞ୍ଚଳ ଯୋଗୁଁ ସମ୍ଭବ ହେବ । ଓଡ଼ିଶାର ବନ୍ୟାକଷ୍ଟ ମଧ୍ୟ ଦୂର ହେବ । ତେଣୁ ଫଳରେ ଏବଂ ନ୍ୟାୟ ଅନୁସାରେ ଏ ଅଞ୍ଚଳ ଲୋକଙ୍କ ପାଇଁ ପୂନର୍ବସତିର ସବୁ ସୁବିଧା କରିବା ସରକାରଙ୍କର ପ୍ରଧାନ କର୍ତ୍ତବ୍ୟ । କିନ୍ତୁ ଆମ୍ଭମାନଙ୍କର ଦେଖିବାର କଥା ଯେ, ସରକାର ଆଜି ପର୍ଯ୍ୟନ୍ତ ଏବିଷୟରେ ଆମ ପାଇଁ କଅଣ କରିଛନ୍ତି । 1946 ସାଲ ଏପ୍ରିଲ ମାସରେ ହୀରାକୁଦ ବନ୍ଧ ଯୋଜନା ଶୁଭ ଦିଆଯାଇଛି । ତା' ପରେ 1946 ଗଲା, 1947-48 ଏହିପରି 3ଟି ବର୍ଷ ଗଲା । କିନ୍ତୁ ପୂନର୍ବସତି ଦିଗରେ କୌଣସି କାର୍ଯ୍ୟ କରାଯାଇ ନାହିଁ । ହଁ ଅବଶ୍ୟ ଏ ବିଷୟରେ ପ୍ରଚାର ହୋଇଛି ବହୁତ । ପ୍ରତିଶ୍ରୁତି ମଧ୍ୟ ଅନେକ ଦିଆଗଲା । ଏ ଦୁଇ ବର୍ଷ ମଧ୍ୟରେ କିଛୁ କାମ ଆରମ୍ଭ ହେଲା 5th February 1945. ତା ପୂର୍ବରୁ କେବଳ 1948 ସାଲରେ ନରୁପଙ୍କ ନାମକ ଗୋଟିଏ ଆଦର୍ଶ ଗ୍ରାମ ତିଆରି କରିଥିଲେ ଏବଂ ସେଥିରେ କେତେକ ଟଙ୍କା ଖର୍ଚ୍ଚ କରିଥିଲେ । କିନ୍ତୁ ଶେଷରେ ଏପରି ଆଦର୍ଶ ହେଲା ଯେ, ଓଡ଼ିଶା ସରକାର ସେ ଗ୍ରାମକୁ ନାପସନ୍ଦ କରି ହୀରାକୁଦ ଡ୍ୟାମରେ କାମ କରୁଥିବା ଚତୁର୍ଥ ଶ୍ରେଣୀୟ କର୍ମଚାରୀମାନଙ୍କୁ ସେସବୁ ଘର ଦେଇଦେଲେ । ତା'ପରେ ଯେତେବେଳେ

ଲମ୍ବଡୁଙ୍ଗ୍ରିରେ ଫେବୃୟାରୀ 3 ତାରିଖ 1949 ସାଲରେ ଅର୍ଥାତ୍ ଠିକ୍ ସମ୍ବଲପୁର ଉପନିର୍ବାଚନର 7 ଦିନ ପରେ ପୁନର୍ବସତି କେନ୍ଦ୍ର ସ୍ଥାପନ କରାଯାଇଥିଲା । ସେ ସମୟରେ ମାନ୍ୟବର ମହତାବ ବକ୍ତୃତା ପ୍ରସଙ୍ଗରେ ସଭା ସମିତିରେ କହିଥିଲେ, ଲୋକଙ୍କ ପାଇଁ ଅନ୍ୟ ସ୍ଥାନରେ ଜମି ଦେଇ ଘର ବନ୍ଦୋବସ୍ତ କରିବେ । ଏ ବିଷୟରେ ଆଜି ପର୍ଯ୍ୟନ୍ତ କଣ କାମ ହୋଇଛି, ସେ ବିଷୟର ମଧ୍ୟ ମୁଁ କେତେକ ପ୍ରଶ୍ନ ପଚାରିଥିଲି ଏବଂ ସେ ତାର ଉତ୍ତର ଯାହା ଦେଇଥିଲେ, ସେ ବିଷୟ ପ୍ରତି ମୁଁ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । Orissa Legislative Assembly, 12th Session, Wednesday, 1st March 1950 unstarred Question No. II, Page 8.

Q.—(f) The total amount of expenditure incurred in the Lambdungri reclamation centre and other reclamation centres, if any for the above purpose ?

Answer—Lambdungri—Rs. 19,000
Basiapra—Rs. 7,000

ଗତ ବର୍ଷ ମଧ୍ୟ ମାର୍ଚ୍ଚ ମାସରେ ମୁଁ ଏ ବିଷୟରେ ପ୍ରଶ୍ନ ପଚାରିଥିଲି ଯେ, କେତେ ଜମି ଆବାଦ ହୋଇ ସାରିଲାଣି । ସେ ସମୟରେ କହିଥିଲେ February ଶେଷ ସୁଦ୍ଧା 50 ଏକର ଜମି ଆବାଦ ହୋଇଛି । ଯନ୍ତ୍ରପାତି ଠିକ୍ ସମୟରେ ମିଳିଲେ 1949 ଶେଷ ହେବା ପୂର୍ବରୁ କେତେ ହଜାର ଏକର ଜମି ଆବାଦ ହୋଇଯିବ । କିନ୍ତୁ ଆମେ ଦେଖିବାକୁ ପାଉଛୁ ଯେ, ଆଜି ପର୍ଯ୍ୟନ୍ତ ମୋଟେ 26,000 ଟଙ୍କା ଖର୍ଚ୍ଚ ହୋଇଛି । ହୀରାକୁଦ ବନ୍ଧ ଯୋଜନାରେ ଆପଣମାନେ ଜାଣିଥିବେ ଯେ, ଗତବର୍ଷ କେବଳ 3 କୋଟି 50 ଲକ୍ଷ ଟଙ୍କା ମଞ୍ଜୁର ହୋଇଥିଲା । ଏବର୍ଷ 3 କୋଟି 50 ଲକ୍ଷ ଟଙ୍କା ମଞ୍ଜୁର ହୋଇଛି । କେନ୍ଦ୍ର Assemblyରେ ଗୋଟିଏ ପ୍ରଶ୍ନର ଉତ୍ତରରେ ଖବର କାଗଜରେ ଯାହା ବାହାରିଥିଲା, ସେଥିରୁ ଦେଖା ଯାଇଛି ଯେ, ଆଜିପର୍ଯ୍ୟନ୍ତ ହୀରାକୁଦ ବନ୍ଧ ତିଆରିରେ 2 କୋଟି 27 ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଛି । ତେବେ ସେ ସ୍ଥାନରେ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଥିଲେ ସୁଦ୍ଧା ଏବଂ ସେଥିପାଇଁ ଯନ୍ତ୍ରପାତି ଆଣିବାରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେଉଥିବା ସ୍ଥଳେ ପୁନର୍ବସତି ଯୋଜନା ଦିଗରେ ମୋଟେ ଆଜିପର୍ଯ୍ୟନ୍ତ 26 ହଜାର ଟଙ୍କା ଖର୍ଚ୍ଚ ହୋଇଛି ଏବଂ ଲୋକଙ୍କପାଇଁ 572 ଏକର ଜମି ତିଆରି ହେଉଛି । ଯଦି ସରକାରଙ୍କ ପ୍ରତିଶ୍ରୁତି ଅନୁସାରେ ବର୍ଷକୁ 572 ଏକର ଲେଖାଏଁ ତିଆରି ହୁଏ, ତାହାହେଲେ ଯେଉଁ 1 ଲକ୍ଷ 22 ହଜାର ଏକର ଜମି ଆବାଦ କରିବାକୁ ସରକାର କଳ୍ପନା କରୁଅଛନ୍ତି ତାହା କରିବାକୁ ସରକାରଙ୍କୁ 210 ବର୍ଷ ଲାଗିବ । ସେ ପର୍ଯ୍ୟନ୍ତ ହୀରାକୁଦ ବନ୍ଧ ଯୋଜନା ବାକି ଥିବ କି ? କେନ୍ଦ୍ର ବ୍ୟବସ୍ଥା ସଭାର ଏକ ପ୍ରଶ୍ନର ଉତ୍ତରରୁ ଆମେ ଜାଣି ପାରୁଛୁ ଯେ, 1955-56 ପୂର୍ବରୁ ହୀରାକୁଦ ବନ୍ଧ ତିଆରି ସରିଥିବ । ସରକାର କଣ ବିଶ୍ୱାସ କରୁଛନ୍ତି

ଯେ, ତାଙ୍କର ଯେପରି ଉଦାସୀନ ଭବରେ କାମ ଚାଲିଛି, ଯେପରି ଏତେ କମ୍ ଟଙ୍କା (26 ହଜାର ଟଙ୍କା) ଖର୍ଚ୍ଚ ଚାଲିଛି ସେଥିରେ 1955-56 ପୂର୍ବରୁ ସେମାନେ କାମ ଚଳାଇ ପାରିବେ ? ତା'ପରେ ଲମ୍ଡୁର୍ଗିରେ ଯେଉଁ ପୁନର୍ବସତି କାମ ହୋଇଥିଲା । ସେଥିରେ ପରୀକ୍ଷା ସ୍ୱରୂପ 6 ଏକର ଜମି departmentally ଅର୍ଥାତ୍ ସରକାରଙ୍କ ଦପ୍ତର ତରଫରୁ ଚାଷ କରାଯାଇଥିଲା । ସେଥିରେ ଫସଲ ଏପରି ଭବରେ ହେଲା ଯେ, କୌଣସି ରକମ ଫସଲର ଆଦାୟ ହେଲା ନାହିଁ । ସେଠି ସବୁ ନଷ୍ଟ ହେଲା ।

**ଶ୍ରୀ ରାଧାନାଥ ରଥ** : କେତେ ଏକର ଜମି ଚାଷ କରାଯାଇ ଥିଲା ?

**ଶ୍ରୀ ଶଙ୍କାକର ସୂପକାର** : 7 ଏକର । ଏ ବିଷୟରେ ମୁଁ ଗୋଟିଏ ପ୍ରଶ୍ନ ପଚାରି ଥିଲି ।

**ମାନ୍ୟବର ଶ୍ରୀ ହରେକୃଷ୍ଣ ମହତାବ** : ସରକାରଙ୍କ ଦପ୍ତର ତରଫରୁ କାର୍ଯ୍ୟ ହୋଇ-ଥିଲା ମାନେ କଣ ମୁଁ ବୁଝି ପାରିଲି ନାହିଁ ।

**ଶ୍ରୀ ଶଙ୍କାକର ସୂପକାର** : ସେ ସମ୍ବନ୍ଧରେ ମୁଁ ଗୋଟିଏ ପ୍ରଶ୍ନ ପଚାରିଥିଲି । ଗତ ମାର୍ଚ୍ଚ ମାସ ଅଣତାରକିତ ପ୍ରଶ୍ନ ନମ୍ବର 11. ସେଥିରେ ମୁଁ କେତୋଟି Supplementary ପ୍ରଶ୍ନ ପଚାରି ଥିଲି । ଉତ୍ତର ମଧ୍ୟ ଉପସ୍ଥାପିତ କରୁଛି ।

Q.—Was any crop paddy or maise sown in the Lamdur Cree area in the year 1949 ?

The answer was in the negative ତା'ପରେ ଆଉ ଗୋଟିଏ ପ୍ରଶ୍ନ ପଚାରିଥିଲି ।

Q.—It is a fact that more than 2 acres are sown with paddy and not a single crop was reaped ?

ସେଥିରେ ମଧ୍ୟ negative ଜବାବ ମିଳିଥିଲା । ଅର୍ଥାତ ବୋଧହୁଏ ସରକାର କହିବାକୁ ଚାହାନ୍ତି ଯେ ସରକାରଙ୍କ ଦପ୍ତର ତରଫରୁ କୌଣସି ରକମ ଚାଷ କରାଯାଇ ନାହିଁ । କିନ୍ତୁ ମୁଁ ନିଜେ ଦେଖିଛି ପ୍ରକୃତରେ ଚାଷ ହୋଇଥିଲା ଏବଂ ଆମର ଜଣେ ମାନ୍ୟବର ମନ୍ତ୍ରୀ ମୁଁ ଯେଉଁ ସମୟରେ ଦେଖିବାକୁ ଯାଇଥିଲି ସେହି ସମୟରେ ଯାଇ ଦେଖି ଆସିଅଛନ୍ତି ।

**ଶ୍ରୀ ରାଧାନାଥ ରଥ** : କେଉଁ ମନ୍ତ୍ରୀ ଦେଖି ଆସି ଅଛନ୍ତି ?

**ଶ୍ରୀ ଶଙ୍କାକର ସୂପକାର** ମାନ୍ୟବର କାନୁନ୍‌ଗୋ ତା' ପରେ ଏହି ବିଷୟରେ କେନ୍ଦ୍ର ବ୍ୟବସ୍ଥା ସଭରେ ଯେଉଁ ପ୍ରଶ୍ନ ପଚରା ଯାଇଥିଲା ଏବଂ ଯେଉଁ ଉତ୍ତର ମିଳିଥିଲା, ସେସବୁ ମୁଁ ଆପଣଙ୍କ ଅନୁମତି ନେଇ ଉପସ୍ଥାପିତ କରୁଛି ।

Starred question No. 690

Dated the 16th December 1949

ଏହି ପ୍ରଶ୍ନର e ଦଫାର ଉତ୍ତର ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ତା'ପରେ ଏ ପ୍ରଶ୍ନର (f) ଦଫାରୁ ଜଣାପଡୁଛି ଯେ, କେନ୍ଦ୍ର ବ୍ୟବସ୍ଥା ସଭ ପ୍ରାଦେଶିକ ସରକାର ଯୋଗାଉଥିବା ଖବରରୁ ପ୍ରଶ୍ନର ଉତ୍ତର ଦେଇଛନ୍ତି ଯେ 6 ଏକର ଜମି Departmentally ଅର୍ଥାତ୍ ସରକାରଙ୍କ ଦପ୍ତର ଦ୍ୱାରା ଚାଷ ହୋଇଥିଲା । କିନ୍ତୁ ପ୍ରାଦେଶିକ ସରକାର ଜଣାଇଛନ୍ତି, ଏପରି କୌଣସି ଜମି ଚାଷ ହୋଇ ନାହିଁ । ଏଥିରୁ ଆମେ ବୁଝି ପାରିଛୁ ଯେ ଅବସ୍ଥାର ଗତି କିପରି ଭବରେ ଚାଲିଛି । ଅନ୍ୟ ପକ୍ଷରେ ଆପଣ ଦେଖନ୍ତୁ ଜମି acquire କିପରି ଭବରେ ଚାଲିଛି । ଆମ ଏହି ବ୍ୟବସ୍ଥା ସଭରେ 1948 ସାଲରେ ଗୋଟିଏ ଆଇନ୍ ପାଶ୍ ହେଲା । ସେ ଆଇନଟି ହେଉଛି ଯେ, The Orissa Development and Industries. Irrigation, Agriculture, Capital construction and resettlement of the Displaced Persons, Land Aqcisation Bill 1948 ଏହି ବିଲ୍ ପାଶକଙ୍କ ପରେ ଆଇନ୍ ହେଲା ଯେ, ସରକାର Land acquisation notice ପ୍ରକାଶ କଲ ମାତ୍ରକେ ସରକାର ପାଖକୁ ସେ ଜମି ଚାଲିଯାଏ । ସରକାର ଯେକୌଣସି ଦିନ ସେ ଜମିକୁ ଦଖଲ ନେଇ ପାରିବେ ।

ଅର୍ଥାତ୍—ସେ ଜମିର ଯାହା ହକ୍ ବା ସ୍ୱତ୍ୱ Notice ବାହାର କରିଦେଲ ମାତ୍ରକେ ସରକାରଙ୍କଠାରେ ନ୍ୟସ୍ତ ହେଉଛି ଆପଣ ଏବଂ ମାନ୍ୟବର ସଭ୍ୟମାନେ ତ Orissa Gazette ରେ ସଂଖ୍ୟମାନ ପଢ଼ୁଥିବେ, ଯେଉଁଥିରେ କି ପ୍ରତି ସପ୍ତାହରେ ଥରେ ନ ହେଲେ ଦୁଇଥର ଶହ ଶହ ଏକର ଜମି ହୀରାକୁଦ ବନ୍ଧ ପାଇଁ acquire notice କରଯାଉଛି । ମୁଁ ଯେଉଁ ପ୍ରଶ୍ନ ପଚାରିଥିଲି ଗତ ଜାନୁୟାରୀ ମାସରେ ତାର ଉତ୍ତରରେ ସରକାର କହିଥିଲେ ଯେ, ଜାନୁୟାରୀ ପର୍ଯ୍ୟନ୍ତ 36 ହଜାର ଏକର ଜମି acquire ହୋଇସାରିଲଣି ଏବଂ ସେ ସମ୍ପର୍କରେ ଗୋଟିଏ ପ୍ରଶ୍ନର ଉତ୍ତରରେ ସରକାର କହିଥିଲେ ଯେ, ସେଥି ଭିତରୁ 6 ହଜାର ଏକର ଜମି ସରକାର ଦଖଲ ନେଇ ସାରିଲେଣି ।

**ମାନ୍ୟବର ଶ୍ରୀ ହରେକୃଷ୍ଣ ମହତାବ:** ସେ ପ୍ରଶ୍ନଟା କଣ ଟିକେ କହିପାରିବେ କି ?

Shri **SRADHAKAR SUPAKAR**: I am quoting the number of the question. It will appear from the question papers.

The Hon'ble **SPEAKER**: Is it from the Proceedings of the Assembly ?

**ଶ୍ରୀ ଇଛାକର ସୂପକାର**: Yes, ଭୁବନେଶ୍ୱରରେ ଯେଉଁ ବୈଠକ ହୋଇଥିଲା ସେହି ବୈଠକରେ ଏ ପ୍ରଶ୍ନ ପଚ୍ଚରିଥିଲି ଏବଂ ସରକାର ଉତ୍ତର ଦେଇଥିଲେ ଯେ 36 ହଜାର ଏକର ଜମି acquire ପାଇଁ notice ଦିଆଯାଇଅଛି ଏବଂ ସେଥିରୁ 6 ହଜାର ଏକର ଦଖଲ ନିଆ ଯାଇଛି ।

The Hon'ble SPEAKER: The house stands adjourned to 5, 30. p. m, ( After Lunch ).

**ଶ୍ରୀ ଇଛାକର ସୂପକାର**: ମାନ୍ୟବର ସଭପତି ମହୋଦୟ ଯଦିଓ ଅଧ ଘଣ୍ଟାରେ ମୋର ବକ୍ତୃତା ସମାପ୍ତ କରିବାକୁ ପ୍ରସ୍ତୁତ ହୋଇଥିଲି, ତଥାପି କେତେ ଗୁଡ଼ିଏ କାଗଜପତ୍ର refer କରିବାକୁ ଦରକାର ପଡ଼ିଥିବାରୁ ଆଉ 5/7 ମିନିଟ ନେବି, ଏବଂ ଯଥା ସମ୍ଭବ ଶୀଘ୍ର ମୁଁ ମୋର ବକ୍ତବ୍ୟ ଶେଷ କରିବାକୁ ଚେଷ୍ଟା କରୁଛି । ମୁଁ ଏହା ପୂର୍ବରୁ କହିଥିଲି ଯେ ଜାନୁୟାରି ମାସରେ ଗୋଟିଏ ପ୍ରଶ୍ନର ଉତ୍ତର ଦେବାବେଳେ କୁହାଯାଇଥିଲା ସରକାର 6 ହଜାର ଏକର ଜମି ଦଖଲ କରି ନେଇସାରିଲେଣି କିନ୍ତୁ ମାର୍ଚ୍ଚ ମାସରେ ଗୋଟିଏ ପ୍ରଶ୍ନର ଉତ୍ତରରେ କୁହା ଯାଇଛି 10,553 ଏକର ଜମି ଦଖଲ ନିଆଯାଇଛି । ଏଥିରୁ ଆପଣମାନେ ବୁଝିପାରୁଥିବେ ଯେ, କେତେକ କ୍ଷେତ୍ରରେ ଜମି ଦଖଲ କିପରି କ୍ଷିପ୍ର ଗତିରେ ଚାଲିଛି ଏବଂ ତା' ସଙ୍ଗେ ଜମି ବଦଳରେ ଲୋକଙ୍କୁ ଜମି ଯୋଗାଇବାରେ କିପରି ଉଦାସୀନତା ଦେଖାଯାଉଛି । ତା' ଯଦି ତୁଳନା କରାଯାଏ ତା' ହେଲେ ଆପଣମାନେ ସରକାରଙ୍କ ଉଦାସୀନତା ଆହୁରି ଟିକିଏ ସ୍ପଷ୍ଟ ଭବରେ ବୁଝିପାରିବେ । ଆମେ ଦେଖୁଛୁ ଯେ, ଓଡ଼ିଶା Gazette ରେ ପ୍ରତି ସପ୍ତାହରେ ଯେପରି ଚାଲିଛି ଜମି acquisition notice ତାକୁ ବନ୍ଦ କରାଯାଉ ବୋଲି ଗୋଟିଏ ପ୍ରସ୍ତାବ ଗତ October ମାସରେ ସମ୍ବଲପୁରର Resettement Advisoy Committee ରେ ହୋଇଥିଲା, ଅର୍ଥାତ୍ ପୁନର୍ବସତି ପରାମର୍ଶଦାତା କମିଟି, ସେମାନେ ପ୍ରସ୍ତାବ କରିଥିଲେ ଯେ, ସରକାର ଦଖଲ କରାଯାଇଥିବା ଜମି ପାଇଁ ଅନ୍ୟ ଯାଗାରେ ଜମି ବନ୍ଦୋବସ୍ତ ନ ହେବା ପର୍ଯ୍ୟନ୍ତ ଆଉ ଅଧିକା ଜମି acquire କରିବା ବା ଦଖଲ ନେବା ବନ୍ଦ କରାଯାଉ । ସରକାର ଅତିଶୀଘ୍ର ଜମି ଦଖଲ ନେଉଛନ୍ତି । ତା ବଦଳରେ ଅନ୍ୟ ଜମି ଲୋକଙ୍କୁ ଦେବାର ବ୍ୟବସ୍ଥା କରା ଯାଉନାହିଁ । ଫଳରେ ଅନେକ ଜମି ପତିତ ହୋଇ ପଡ଼ି ରହୁଛି । ସେଥିରେ ଅନେକ ଖାଦ୍ୟ ଉତ୍ପାଦନ ହେଉଥିଲା । ସେଗୁଡ଼ିକ ଅକର୍ମଣ୍ୟ ହୋଇ ପଡ଼ି ରହିଛି । ହୀରାକୁଦ ବନ୍ଧ ଯୋଜନା ଯେଉଁମାନେ ତିଆରି କରୁଛନ୍ତି, ସେମାନେ 10,553 ଏକର ଜମି ବ୍ୟବହାର କରୁଛନ୍ତି କି ? ସେମାନଙ୍କ କାମ ହେଲା ସେମାନେ କହିବେ, ଯେତିକି ଜମି ଆମର ଦରକାର, ସେତିକି acquisition ହେଉ । ଏଥିରେ ସେମାନଙ୍କ ଦାୟିତ୍ୱ ଶେଷ ହେଲା ସରକାରଙ୍କ ଦାୟିତ୍ୱ ହେଉଛି ଓଡ଼ିଶା Gazette ରେ notice ବାହାର କରିଦେବା, ସେତିକିରେ ତାଙ୍କର ଦାୟିତ୍ୱ ଶେଷ ହୋଇଗଲା, ତା ପରେ ଦଖଲ ନେବା ମଧ୍ୟ ଅଛି । ଏପରି ଭବରେ ଯଦି ଗଲେ, କିପରିଭବରେ କେତେ ସର୍ବନାଶ ହେଉଛି ଏବଂ କେତେ ଲୋକଙ୍କର ସର୍ବନାଶ ଆରମ୍ଭ ହୋଇ ଗଲାଣି, ତା

ସରକାର ନିଜେ ବୁଝିବାକୁ ଚେଷ୍ଟା କରିବେ । ମୁଁ ଅବଶ୍ୟ ସ୍ୱୀକାର କରୁଛି, ଯଦି ଆମ ଲୋକଙ୍କୁ ପଥର ଭିକାରୀ ଶରଣାର୍ଥୀ କରିବାକୁ ସରକାର ଚାହାନ୍ତି, ତାହା ହେଲେ ତାଙ୍କର ପୂରା ଅଧିକାର ଅଛି । କିନ୍ତୁ ସଙ୍ଗେ ସଙ୍ଗେ ଏ ଦିଗରେ ମୋର ଆଶଙ୍କା ହେଉଛି, ସରକାରଙ୍କର ଯେଉଁ ଦାୟିତ୍ୱ ଅଛି, ସେ ଦାୟିତ୍ୱ ବିଷୟରେ ଆମେ କିଛି ମାତ୍ର ଉପଲବ୍ଧି କରିପାରୁ ନାହୁଁ, ସେଥି ପାଇଁ ଆମେ ଯଦି ବୁଢ଼ି ଅଞ୍ଚଳକୁ କେହି ଯାଇ ଶୁଣିବୁ ସେଠା ଲୋକେ କହୁଛନ୍ତି--

"ରଜା ହରିତ ସର୍ବସ୍ୱ ଶରଣଂ କସ୍ୟ ଗମ୍ୟତେ"

ରଜା ଯଦି ସବୁ ହରଣ କରନ୍ତି ତାହା ହେଲେ କାହାଠାରେ ଶରଣ ପଶିବୁ । ଯେଉଁ ହୀରାକୁଦ ଯୋଜନା ଅଛି ତାକୁ ଆମେ ସମୁଦ୍ର ମନ୍ଥନ ସଙ୍ଗେ ତୁଳନା କରିବା, ତାହା ହେଲେ ଏଥିରୁ ଯେଉଁ ଲକ୍ଷ୍ମୀ ବାହାରୁଛନ୍ତି ବା ବାହାରିବେ ଏବଂ ଯେଉଁ କୌସ୍ତୁଭ ମଣୀ ବା ଅନ୍ୟାନ୍ୟ ରତ୍ନ ବାହାରିବ ତାକୁ ଅନ୍ୟାନ୍ୟ ଲୋକେ ଭୋଗ କରୁଛନ୍ତି, ବା କରିବେ ଏବଂ ତହିଁରୁ ଯେଉଁ ବିଷ ଓ ଅର୍ଦ୍ଧଚନ୍ଦ୍ର ବାହାରୁଛି, ତାକୁ ଆମେ ଭୋଗ କରୁଛୁଁ ଅର୍ଥାତ୍ ଏହି ବୁଢ଼ି ଅଞ୍ଚଳ ଲୋକେ । ଏହି କଥା ଆମେ ୧୯୪୭ ସାଲ ସେଠି ଚାର୍ଜ (Charge) ସମୟରୁ ବୁଝି ପାରୁଛୁ । ଜମଡ଼ା ଗାଁର ଗୋଟିଏ ପାଲିଗାଁ ଲୋକଙ୍କୁ ଏବେ ଏ ସମୁଦ୍ର ମନ୍ଥନରୁ ବାହାରି ଥିବା ଅର୍ଦ୍ଧଚନ୍ଦ୍ର ଦିଆଯାଉଛି । ସେଇଟା ସରକାର ନିଜେ ବୁଝି ପାରିବେ । ଔଷଧ ସେବନ ପୂର୍ବେ ଓ ପରେ ଯେଉଁ ଯେଉଁ ଅବସ୍ଥା ପରିଲକ୍ଷିତ ହେବ ବୋଲି ଅନେକ ଔଷଧରେ ଦିଆଯାଇଥାଏ । ଅର୍ଦ୍ଧଚନ୍ଦ୍ର ସେବନ ପୂର୍ବେ ସେ ଗାଁ ଲୋକଙ୍କର ଯେପରି ଅବସ୍ଥା ଥିଲା, ତାହା ମାନ୍ୟବର ପ୍ରଧାନ ମନ୍ତ୍ରୀ ଦେଖି ଅଛନ୍ତି ଏବଂ ଅର୍ଦ୍ଧଚନ୍ଦ୍ର ସେବନ ପରେ ସେଠାରେ ଲୋକଙ୍କର ଅବସ୍ଥା ଯାହା ଦେଖିବାକୁ ମିଳୁଛି ଏ ଦୁଇଟିର ତୁଳନା କରିବାକୁ ମୁଁ ପ୍ରଧାନ ମନ୍ତ୍ରୀଙ୍କୁ ବିନୀତ ଅନୁରୋଧ କରୁଛି । ପରିଶେଷରେ କେବଳ ମୁଁ ଏତିକି କହିବାକୁ ଚାହେଁ ଯେ ଲୋକେ କହୁଛନ୍ତି ଆମକୁ ସମସ୍ତେ ବହୁତ ଉପଦେଶ ଓ ଧର୍ମ ଉପଦେଶ ଦିଅନ୍ତି । ଏତେ ବଡ଼ ଯୋଜନା କରୁଛ, ଏତେ ଲୋକଙ୍କର ଉପକାର ହେବ. ତା ପାଇଁ ଏପରି ଟିକିଏ ସ୍ୱାର୍ଥ ତ୍ୟାଗ କର । କାହାର ହୁଏତ ଘରଦ୍ୱାର ବୁଡ଼ିଯିବ ଓ ବହୁ ଲୋକଙ୍କ ସ୍ୱାର୍ଥ ପାଇଁ ଅଳ୍ପ ଲୋକଙ୍କ ସ୍ୱାର୍ଥରେ ଜଳାଞ୍ଜଳି ଦେଇ ଦଧିଚି ପରି ହେବାକୁ ଓ ଧର୍ମପଦ ପରି ହେବାକୁ ଅନେକ ସମୟରେ ଉପଦେଶ ଦିଆଯାଏ । ଏ କଥା ଶୁଣି ମୋତେ ହସ ଲାଗେ ଓ କାନ୍ଦବି ଲାଗେ । କାହିଁକି ନା ଧର୍ମପଦକୁ ଯେତେବେଳେ ବଳି ଦିଆଯାଇ ଥିଲା ସେଥିରେ ବାରଶହ ବଢେଇଙ୍କର ଗର୍ବ କରିବାର କିଛି ନ ଥିଲା ବୋଲି ମୋର ବିଶ୍ୱାସ । ଆମକୁ ଯେତେବେଳେ ଏହି ସ୍ୱାର୍ଥ ତ୍ୟାଗ କରିବାକୁ କୁହାଯାଉଛି । ସେତେବେଳେ ଆମେ ପଚାରୁ ଆମକୁ ଯେ ଏତେ ସ୍ୱାର୍ଥ ତ୍ୟାଗ କରିବାକୁ କୁହା ଯାଉଛି, ତାର ବିନିମୟରେ ସରକାର ବା ଲୋକେ ଆମପାଇଁ କଣ କରୁଛନ୍ତି । ହଁ ଯଦି ଆମର ଉନ୍ନତିପାଇଁ, ଆମର ପୁନର୍ବସତି ପାଇଁ ସରକାର ଯଥା ସାଧ୍ୟ ଚେଷ୍ଟା କରି ଅକୃତ କାର୍ଯ୍ୟ ହୁଅନ୍ତେ ବା ଅସଫଳତା ଲାଭ କରନ୍ତେ, ତା ହେଲେ ଆମ୍ଭେ ବୁଝନ୍ତୁ ଆମ ସ୍ୱାର୍ଥ ତ୍ୟାଗ କରିବାର କିଛି ମୂଲ୍ୟ ଅଛି, ଲୋକଙ୍କର ସ୍ୱାର୍ଥ ପ୍ରତି ଉଦାସୀନତା

ଦେଖାଇ ସେମାନଙ୍କ ଗଳାରେ ଫୁଲମାଳ ବାନ୍ଧି ସେମାନଙ୍କୁ ପ୍ରଶଂସା କରିବାକୁ ସରକାର ଚାହାନ୍ତି, କିନ୍ତୁ ଲୋକେ ଧର୍ମପଦ ପରି ହେବାକୁ ଚାହାନ୍ତି ନାହିଁ ।

**ଶ୍ରୀ ଶ୍ରଦ୍ଧାକର ସୁପକାର** : ମାନ୍ୟବର ସଭାପତି ମହାଶୟ, ଏହି ପ୍ରସ୍ତାବ ସମାଲୋଚନା କରିବାକୁ ଯାଇ ମାନ୍ୟବର ପ୍ରଧାନ ମନ୍ତ୍ରୀ ଯେଉଁ କେତେକ ବିଷୟ ଅବତାରଣା କରିଛନ୍ତି, ସେହି ବିଷୟରେ ମୁଁ ପ୍ରତ୍ୟୁତ୍ତର ନ ଦେଇ ରହିପାରୁ ନାହିଁ । ସେ ପ୍ରଥମରେ କହିଛନ୍ତି ଯେ, ମୁଁ District Court Lawyer ବା ମଫସଲ ଓକିଲଙ୍କ ଭଳି ଯୁକ୍ତିତର୍କ କରୁଛି ଏବଂ Discrepancy ବା ପରସ୍ପର ମଧ୍ୟରେ ପାର୍ଥକ୍ୟ ଦେଖାଇ ମୋର କର୍ତ୍ତବ୍ୟ ସାଙ୍ଗ କରୁଛି । ମୁଁ ତାର ପ୍ରତ୍ୟୁତ୍ତରରେ କହି ପାରେ ଯେ, ମୋପରି ଜଣେ ସାମାନ୍ୟ District Court Lawyerଙ୍କର ତାଙ୍କଠାରୁ ଅନେକ ବିଷୟ ଶିଖିବାକୁ ଅଛି । ସେ କହିଛନ୍ତି ଏହି ବିଷୟ ପ୍ରସ୍ତାବିତ ପ୍ରସ୍ତାବ ସଙ୍ଗରେ ବିଶେଷ ପ୍ରାସଙ୍ଗିକ ନ ହେଲେ ସୁଦ୍ଧା ମୁଁ କ୍ଷତିପୂରଣ କଥା ଅବତାରଣା କରିଛି । ଏହି ବିଷୟରେ ସେ କହିଛନ୍ତି ଯେ, ଆଜି ପର୍ଯ୍ୟନ୍ତ 34,600 ନା କେତେ ଟଙ୍କା ଦିଆ ଯାଇଛି । ପୁଣି March ପ୍ରଥମ ତାରିଖରେ ମୁଁ ଯେଉଁ ପ୍ରଶ୍ନ କରିଥିଲି ତା'ର ଉତ୍ତରରେ ସେ କହିଛନ୍ତି ଯେ, 10,500 ଏକର ଜମି ଦଖଲ ନିଆଯାଇଛି ଏବଂ ତହିଁ ଭିତରୁ 2000 ଏକର ପାଇଁ କ୍ଷତିପୂରଣ ଦିଆଯାଇଛି । ଆଉ ଆଜି ଗୋଟିଏ ପ୍ରଶ୍ନର ଉତ୍ତରରେ ସେ କହିଲେ ଯେ, କେତେକ ଜାଗାରେ 77 ଡେସିମିଲ ପାଇଁ 13 ଟଙ୍କା ଦିଆଯାଇଛି । ଆଜି ସେ ମୋର ପ୍ରଶ୍ନର ଉତ୍ତରରେ ଯାହା କହିଛନ୍ତି, ତାକୁ ଆପଣମାନେ ଯଦି ହିସାବ କରି ଦେଖିବେ, ତାହାହେଲେ ଆପଣମାନେ ବୁଝି ପାରିବେ ଯେ, ଡେସିମିଲକୁ ତିନିଅଣା ହିସାବରେ ଯଦି ହିସାବ କରାଯାଏ, ତାହାହେଲେ ଏକରକୁ ୧୪ ଟଙ୍କା ବାରଅଣା ପଡୁଛି । ମୁଁ ପଚାରେ ଯେ, ଆଜି କୌଣସି ଲୋକ ଓଡ଼ିଶାର ଯେ କୌଣସି ସ୍ଥାନରେ ଯଦି ବାକ୍ସ ତିଆରି ପାଇଁ ବାକ୍ସେ ମାଟି ଚାହେଁ, ସେ ତିନିଅଣା ପାଇ ପାରିବତ ? ଏପରି ସ୍ଥଳେ ଡେସିମିଲକୁ ତିନିଅଣା ହିସାବରେ ବା ଏକରକୁ ୧୪ ଟଙ୍କା ବାରଅଣା କ୍ଷତିପୂରଣ ଦିଆଯାଉଛି ।

**ମାନ୍ୟବର ଶ୍ରୀ ହରେକୃଷ୍ଣ ମହତାବ** : ଯଦି ସେ ଜମି ପଥର ହୋଇଥାଏ ତା' ହେଲେ କଣ ହେବ ?

**ଶ୍ରୀ ଶ୍ରଦ୍ଧାକର ସୁପକାର** : ଯଦି ପଥର ହୋଇଥାଏ, ତାହାହେଲେ କ୍ଷତିପୂରଣ କାହିଁକି ଦିଆଯାଉଛି । ସେ ଯାହା ହେଉ ଯଦି ଏକର ପ୍ରତି ୧୪ ଟଙ୍କା ବାରଅଣା ହିସାବରେ କ୍ଷତିପୂରଣ ଦେଇ ସେ ସନ୍ତୋଷ ଲାଭ କରନ୍ତି, ତାହାହେଲେ ଅବଶ୍ୟ ମୋର ସେ ବିଷୟରେ କିଛି କହିବାର ନାହିଁ । Reduced rent ହିସାବରେ ଏହି କ୍ଷତିପୂରଣ ଦିଆଯାଉଛି ବୋଲି ସେ ପ୍ରମାଣ କରିବାକୁ ଯାଇ କହିଛନ୍ତି ଯେ, ଏହି କ୍ଷତିପୂରଣ Reduced rentର 3ଗୁଣ ହେଉଛି । ଅବଶ୍ୟ Reduced rent ବିଷୟରେ ମୁଁ କହିବାକୁ ଗଲେ ଅନେକ ସମୟ ଲାଗିବ ।

ମୋଟାମୋଟି କହିବାକୁ ଗଲେ ଏହା ଠିକ୍ Pencilline injection ଭଳି ହୋଇଛି, ଯେପରି Pencilline injection 5 ଲକ୍ଷ unit ଦେଲେ ତା'ର ଫଳାଫଳ 2ଘଣ୍ଟା ଭିତରେ ଶେଷ ହୋଇଯାଏ ଏବଂ ଆଉ ଥରେ Pencilline injection ନ ଦେଇ ରୋଗୀ ଆରୋଗ୍ୟ ହୋଇ ପାରିବ ନାହିଁ । ସେହିପରି ଲୋକଙ୍କୁ ତିନିଅଣା ହିସାବରେ କ୍ଷତିପୂରଣ ଦେବା ଉଚିତ ବୋଲି ଯଦି ସରକାର ମନେ କରନ୍ତି, ତାହାହେଲେ ସେ ବିଷୟରେ ମୋର କିଛି କହିବାର ନାହିଁ । କିନ୍ତୁ ମୁଁ ଭାବେ ଯେ, ଏହି ଯେଉଁ ଏକର ପ୍ରତି ଟ 18 ଙ୍କା ବାରଅଣା ହିସାବରେ କ୍ଷତିପୂରଣ ଦିଆଯାଉଛି, ଏହା ଲୋକପ୍ରତି ଅବିଚାର କରା ହେଉଛି ।

**ମାନ୍ୟବର ଶ୍ରୀ ରାଜକୃଷ୍ଣ ବୋଷ**: କେବଳ ଗୋଟିଏ ଧରଣ ଜମି ପାଇଁ ଏହି rate ଦିଆଯାଇଛି କିନ୍ତୁ ଆଉ ଅନେକ ରକମର ଜମି ଅଛି ।

**ଶ୍ରୀ ରାଧାନାଥ ରଥ**: ଏଇଟା କି ପ୍ରକାର ଜମି କହି ପାରିବେ କି ?

**ଶ୍ରୀ ଶ୍ରଦ୍ଧାକର ସୁପକାର**: ଏଇଟା ସବୁଠାରୁ ନିକୃଷ୍ଟ ଜମି ।

**ଶ୍ରୀ ରାଧାନାଥ ରଥ**: ଏହାର Rent କଅଣ ?

**ଶ୍ରୀ ଶ୍ରଦ୍ଧାକର ସୁପକାର**..ହାରାହାରି ଏହାର rent ବୋଧହୁଏ ଦୁଇଅଣା କି ଦୁଇଅଣା ଛଅପଇସା । ସେ ଯାହାହେଉ, ସରକାର 1948 ସାଲରେ ଗୋଟିଏ ଆଇନ Pass କରିଛନ୍ତି ଯେ, 1939 ସାଲରେ ଜମିର ଯାହା ଦର ଥିଲା, ତା'ଠାରୁ ଶତକଡା 50 ଅଧିକ ଦିଆଯାଉଛି । ଏଥିପାଇଁ ସରକାରଙ୍କୁ ଧନ୍ୟବାଦ ଦେବାକଥା, କିନ୍ତୁ ଦେଖାଯିବ ଯେ, 1939ରେ ଜମିର ଯାହା ମୂଲ୍ୟ ଥିଲା—1939ର Cost of living index ଯଦି 100 ଧରାଯାଏ- ତାହାହେଲେ ତାହା 500 ହେଲଣି । ଅନ୍ତତଃ 450ରୁ କମ୍ ନୁହେଁ । ସେହି ହିସାବରୁ ଯଦି ସରକାର ଆଜି କହନ୍ତି ଯେ ଯଦି 1939ରେ ତାହା 100 ଧରାଯାଏ, ତା ହେଲେ ବର୍ତ୍ତମାନ 150 ଦେଇ କରି ଆମେ ଲୋକଙ୍କର ବହୁତ ଉପକାର କରୁଛୁ, ତାହା ହେଲେ ମୁଁ କହିବି ଯେ ସେଇଟା ଉଚିତ ହେଉ ନାହିଁ । ଏହି କ୍ଷତିପୂରଣ ବାବଦରେ ଯେଉଁ ଆଇନଟା ହୋଇଛି ସେଥିରେ ଧରାଯାଇଛି ଯେ 1୨୨ରେ ଯାହା ଦର ଥିଲା, ତା'ଠାରୁ ଶତକଡା 50 ବେଶୀ ଦିଆଯିବ । ତାହାପରେ ଏହି Assembly ସଭାରେ ସରକାରଙ୍କ ତରଫରୁ ଆଲୋଚନା କରିବା ସମୟରେ ମାନ୍ୟବର ସଦାଶିବ ତ୍ରିପାଠୀ କହିଥିଲେ ଯେ, ସମ୍ବଲପୁର ଲୋକଙ୍କୁ Reduced rentର 500 ଗୁଣ ହିସାବରେ କ୍ଷତିପୂରଣ ଦିଆଯାଉଛି । କିନ୍ତୁ ଯଦି ପ୍ରଧାନ ମନ୍ତ୍ରୀଙ୍କ ଉତ୍ତର ବା ବିବରଣୀରୁ ଜଣା ପଡୁଛି ଯେ, ଏ ବିଷୟରେ ଆପୋଷ ରାଜିନାମା ହୋଇ 374 ଗୁଣ ବେଶୀ ଦିଆଯାଇଛି ଏବଂ କୌଣସି କୌଣସିଠାରେ ତା'ଠାରୁ ବେଶୀ ଦିଆଯଉଛି ବୋଲି ତାଙ୍କର ଭାଷଣରୁ ଜଣା ପଡୁଛି ।

**ଶ୍ରୀ ଲୋକନାଥ ମିଶ୍ର** : On a point of information Sir, ଯେଉଁ ଜମି ସକାଶେ ତିନ୍ନଅଣା କରି ଦିଆଯାଉଛି ବୋଲି ମାନ୍ୟବର ସଭ୍ୟ କହିଲେ, ସେ ଜମି କଣ ଆଗରୁ ଖରିଦ ବିକ୍ରୀ ହୋଇଛି ?

**ଶ୍ରୀ ଶ୍ରଦ୍ଧାକର ସୁପକାର** : ସେଇଟା ମୁଁ କହି ପାରିବି ନାହିଁ । ମୁଁ କହିଥିଲି ଯେ, Reduced rentର 374 ଗୁଣ ପର୍ଯ୍ୟନ୍ତ ଦିଆଯାଇଛି । କିନ୍ତୁ ଏ Assembly ସଭାର 11 ଡ଼ିସେମ୍ବର 1948ର Proceedings ବହି ଦେଖିଲେ ଆପଣମାନେ ବୁଝି ପାରିବେ ଯେ, ସେଠାରେ କହିଥିଲେ Reduced rentର 500 ଗୁଣ ସମ୍ବଲପୁର ଲୋକଙ୍କୁ ଦିଆଯିବ । ତା ପରେ କହିଛନ୍ତି, ଆପୋଷ ରାଜିନାମା ଅନୁସାରେ କ୍ଷତିପୂରଣ ଦିଆଯାଇଛି ଏବଂ ସେଠାର ଲୋକେ ଅସନ୍ତୋଷ ହେବାର କିଛି ନାହିଁ । ଆପୋସ ରାଜିନାମା ବା mutual agreement ଯାହା କୁହା ଯାଇଛି, ମୁଁ କହିବି ସେଇଟା ବଡ ଭୟାନକ କଥା । ସେଠି ଲୋକଙ୍କୁ ଯେତେବେଳେ କୁହାଯାଇଛି, ତୁମକୁ ଏହି ରେଟରେ ଦିଆଯାଉଛି, ତୁମେ ଆସି ଟଙ୍କା ନେଇ ଯାଅ । ସେମାନେ କହିଛନ୍ତି, ଆମକୁ କେଉଁ ହିସାବରେ ଦିଆଯାଉଛି କୁହା ଯାଉନାହିଁ ଏପରିକି କେତେ ଲୋକ ସ୍ପଷ୍ଟ ଭାବରେ କହିଥିଲେ ଯେ, ଆମେ ଆରବିଟ୍ରେଟର ପାଖକୁ ଯିବାକୁ ଚାହୁଁ, ତୁମେ କେତେ ରେଟରେ ଏବଂ କେତେ ହିସାବରେ କ୍ଷତିପୂରଣ ଦେବାକୁ ଯାଉଛ, ଲିଖିତ ଆକାରରେ ଦିଅ । Certified copy ପାଇଁ ଲୋକେ ଦରଖାସ୍ତ କଲେ, ସେଇଟା ମଧ୍ୟ ମିଳିଲା ନାହିଁ । ଏଥିରୁ ଜଣା ପଡ଼ିବ ସରକାର କ୍ଷତିପୂରଣ ବାବଦରେ କେଉଁ ନୀତି ଅବଲମ୍ବନ କରୁଛନ୍ତି । ତା ପରେ ଲୋକଙ୍କୁ କୁହାଯାଇଛି, ଯଦି ତୁମେ ଏଇ ରେଟ୍‌ରେ ନେବାକୁ ପ୍ରସ୍ତୁତ ନ ହୁଅ, ଯଦି arbitritor ପାଖକୁ ଯାଅ, ତା ହେଲେ 39 ସାଲର ଦାମ ସଙ୍ଗେ 650 ମିଶାଇ ଦେଲେ ଯାହା ହେବ, ତା ଠାରୁ ଅଧିକା ପାଇ ପାରିବ ନାହିଁ ଏବଂ ଯଦି arbitrator ପାଖକୁ ଯାଅ, ତୁମେ ସମସ୍ତ ଖର୍ଚ୍ଚର ଦାୟିତ୍ୱ ନେବ । ଏପରି ଭାବରେ ଭୟ ପ୍ରଦର୍ଶନ କରାଯାଉଛି । ମୁଁ କହିବାକୁ ଚାହେଁ, ଏହାକୁ ଆପୋସ ମିଳାମିଶା କୁହାଯାଇ ପାରେ କି ? ମୁଁ ପୂର୍ବରୁ ଯେପରି କହିଥିଲି, ଯଦି ଜଣେ ଲୋକ ଆସି ମୋ ମୁଣ୍ଡ ପାଖରେ ପିସ୍ତଲ ରଖି କୁହେ ଯେ ତୁମ ପାଖରେ ଯାହା ଅଛି, ଦେଇ ଯା ଏବଂ ସେ ତାହା ଦେବା ପରେ ସେଇଟାକୁ ଆପୋସ ରାଜିନାମା କୁହାଯାଇ ପାରେ କି ? ଯାହାହେଉ ଏହି କ୍ଷତିପୂରଣ ବାବଦରେ ଆଉ ମୁଁ ବେଶୀ କିଛି ଆଲୋଚନା କରିବି ନାହିଁ । କେବଳ ଏହି ପୁନର୍ବସତି ବିଷୟରେ କିଛି କହିବି ।

ପୁନର୍ବସତି ବିଷୟରେ ଘର ବଦଳରେ ଘର ଦେବା ପାଇଁ ସରକାର କଣ ପ୍ରତିଶ୍ରୁତି ଦେଇଛନ୍ତି, ସେ ବିଷୟରେ ମୋର ବକ୍ତବ୍ୟରେ ଯାହା କହିଛି; ସେଥିପ୍ରତି ମାନ୍ୟବର ପ୍ରଧାନମନ୍ତ୍ରୀଙ୍କର ଦୃଷ୍ଟି ଆଉ ଥରେ ଆକର୍ଷଣ କରୁଛି । ସେ ଅବଶ୍ୟ 5-3-1949ରେ କହିଛନ୍ତି, କାହାକୁ ଘର ବଦଳରେ ଘର ଦେବା ପ୍ରତିଶ୍ରୁତି ଦିଆଯାଇ ନାହିଁ । କିନ୍ତୁ 5-3-1949 ପୂର୍ବରୁ

କଅଣ ଘଟଣା ହୋଇଥିଲା ଏବଂ ସରକାରୀ କର୍ତ୍ତୃପକ୍ଷ କଅଣ କଅଣ ପ୍ରତିଶ୍ରୁତି ଦେଇଥିଲେ, ସେ ବିଷୟରେ ମୁଁ ଯାହା କହିଛି, ସେ ବିଷୟ ପ୍ରତି ଆଉ ଥରେ ଦୃଷ୍ଟି ଆକର୍ଷଣ କରୁଛି । ଅବଶ୍ୟ ସେ କହିଥିଲେ ଯେ, 5-3-1949 ତାରିଖ ପରେ ଆଉ ଲୋକଙ୍କ ଘର ବଦଳରେ ଘର ଦେବା ପ୍ରଶ୍ନ ଉଠୁନାହିଁ । ଲୋକେ ପଦ ଗ୍ରହିବେ, Controlled Commodity କିମ୍ବା ଅନ୍ୟ କୌଣସି ବିଷୟ ହେଉ, ସେଥିପାଇଁ ସୁବିଧା କରି ଦିଆଯିବ । କିପରି ଭାବରେ ସୁବିଧା କରି ଦିଆଯାଇଛି, ସେ ବିଷୟରେ ମାନ୍ୟବର ପ୍ରଧାନ ମନ୍ତ୍ରୀଙ୍କୁ ମୁଁ ବିନୀତ ଅନୁରୋଧ କରୁଛି ଯେ, ଯେଉଁ ଲୋକମାନେ ବର୍ତ୍ତମାନ displaced ହୋଇ ଯାଇଛନ୍ତି, ସାନପଥର ଗାଁରେ ସେମାନଙ୍କ ଅବସ୍ଥା ଏବଂ ଯେଉଁ ନୂଆ land reclamation ହୋଇଛି ଲମଡୁଙ୍ଗରିରେ, ଯାଇ ପୁଣି ଥରେ ଦେଖି ଆସନ୍ତୁ ଏବଂ ସେଠାର ଅବସ୍ଥା ଦେଖି ଯଦି ସେ ସନ୍ତୁଷ୍ଟ ହୁଅନ୍ତି ଯେ, ଲୋକମାନେ ସୁବିଧାରେ ଅଛନ୍ତି, ତା ହେଲେ ସେ ବିଷୟରେ ମୋର କିଛି କହିବାର ନାହିଁ ।

**ଶ୍ରୀ ରାଧାନାଥ ରଥ :** ଘର ସଂଖ୍ୟା କେତେ ଏବଂ Population କେତେ ?

**ଶ୍ରୀ ଶ୍ରଦ୍ଧାକର ସୁପକାର :** ଘର ପ୍ରାୟ 10/15 ହେବ । ସେମାନଙ୍କର ଅବସ୍ଥା ପୁଣି ପ୍ରଧାନ ମନ୍ତ୍ରୀ ଥରେ ଯାଇ ଦେଖନ୍ତୁ ଏବଂ ସେମାନଙ୍କ ପାଇଁ ଯେଉଁ ଜମିବାଡ଼ି ବନ୍ଦୋବସ୍ତ କରି ଦିଆଯାଇଛି, ପାନୀୟ ଜଳର ବନ୍ଦୋବସ୍ତ କରାଯାଇଛି, ସେଇଟା ସେ ନିଜେ ଦେଖି ସନ୍ତୁଷ୍ଟ ହୁଅନ୍ତୁ । ଆଉ ଏହି ବିଷୟରେ ମୁଁ ମୋର ମତ ଯଦି କହିବି, ସେମାନଙ୍କର ଅବସ୍ଥା ଅତି ଶୋଚନୀୟ ଏବଂ ମାନ୍ୟବର ଧାନ ମନ୍ତ୍ରୀ ଯେପରି ଗୋଟିଏ ଭଲ ଚିତ୍ର ଅଙ୍କନ କରି ଗଲେ, ସେ ଚିତ୍ର ସେ ନିଜେ ଯାଇ ଦେଖି ଆସନ୍ତୁ ।

The Hon'ble the SPEAKER : The Hon'ble member has already taken 20 minutes.

Shri SRADHAKAR SUPAKAR : I am sorry. I have to reply to the points raisted by the Hon'ble Chief Minister, who has taken about more than that.

ତା ପରେ କିଛିଦିନ ତଳେ ପ୍ରଜାତନ୍ତ୍ରରେ ଲମଡୁଙ୍ଗିରେ reclamation ସମ୍ପର୍କରେ ଜଳ କଷ୍ଟ ବିଷୟରେ ଗୋଟିଏ statement ବାହାରିଥିଲା । ଏଇଟା ହେଉଛି ଚୈତ୍ରମାସ । ଆଜିଠାରୁ ଜଳ କଷ୍ଟ ଅନୁଭବ କରି ସାରିଲେଣି । ତା ପରେ ବୈଶାଖ, ଜ୍ୟେଷ୍ଠ ମାସ ଅଛି । ସମ୍ବଲପୁରରେ ଖରା ଯେଉଁମାନେ ଅନୁଭବ କରିଛନ୍ତି, ସେଠାରେ ଜଳକଷ୍ଟ ଯେଉଁମାନେ ଅନୁଭବ କରିଛନ୍ତି, ସେମାନେ ବୁଝି ପାରିବେ । ମୁଁ ଏ ବିଷୟରେ ଆଉ କିଛି କହିବି ନାହିଁ ।

Land reclamation ବାବଦରେ ଯାହା କହିଛନ୍ତି, 572 ଏକର ଜମି, ସେ ସବୁ ବିଷୟ Cover କରିବା ମୋ ପକ୍ଷରେ ସମ୍ଭବ ହେଉନାହିଁ । ସାମାନ୍ୟ କେତେଟା ବିଷୟ ଯେଉଁଟା କି essential ବା ବିଶେଷ ଦରକାର, ସେ ବିଷୟରେ ମୁଁ 5/10 ମିନିଟ

ମଧ୍ୟରେ ମୋର ବକ୍ତବ୍ୟ ଶେଷ କରିବି ଏବଂ ଅନ୍ୟ Point ଗୁଡ଼ିକ ଅନ୍ୟ ସମୟରେ କହିବାକୁ ସ୍ଥିର କରିଛି । ତାପରେ କହିଛନ୍ତି 572 ଏକର ଜମି ଯାହା reclaimed କରା ହୋଇଛି; ସେଠାକୁ ଲୋକେ ଆସୁ ନାହାନ୍ତି, କାହିଁକି ନା ନେତାମାନେ ତାଙ୍କୁ ପ୍ରବର୍ତ୍ତାଉଛନ୍ତି ଏବଂ ଆହୁରି ପୁଣି କହିଛନ୍ତି ଯେ ତୁମେ ଯେତେ ନେତାମାନେ ଅଛ, ସେମାନଙ୍କୁ ସେଠାକୁ ଯିବାକୁ ପ୍ରବର୍ତ୍ତାଇଲେ ଅସୁବିଧା ହୁଅନ୍ତା ନାହିଁ । ଠିକ୍ ସେହି ଘରରେ ମାନ୍ୟବର ପ୍ରଧାନମନ୍ତ୍ରୀ କହିଲେ ଯେ, ଲୋକେ ଆଉ ନେତାମାନଙ୍କର କଥା ମାନୁ ନାହାନ୍ତି । ସରକାର ଯାହା କହିଛନ୍ତି, ସେହି କଥା ଗ୍ରହଣ କରି ଠିକ୍ ରାସ୍ତାକୁ ଯେଉଁ ରାସ୍ତାରେ ତାଙ୍କର ଚାଲିବାର କଥା, ସେହି ରାସ୍ତାକୁ ଆସିଲେଣି । ଏହି ଦୁଇ କଥା ମଧ୍ୟରେ ସାମଞ୍ଜସ୍ୟ ଅବଶ୍ୟ ମୁଁ ବିଝିପାରୁ ନାହିଁ । ସେ ଯାହାହେଉ ନେତାମାନଙ୍କ ଉପରେ ଆକ୍ଷେପର ପ୍ରୟୋଜନୀୟତା ବୋଧହୁଏ ନ ଥାନ୍ତା, ଯଦି ସେହି ସବୁ ଜମି ଏପରି ଚିତ୍ତାକର୍ଷକ ଏବଂ ଭଲ ହୋଇଥାନ୍ତା । ଯେଉଁଥିରେ କି ଲୋକେ ସ୍ୱତଃ ଆକୃଷ୍ଟ ହୋଇ ସେହି ଯାଗାକୁ ଯାଆନ୍ତେ । କିନ୍ତୁ ଆମେ ଦେଖୁ ଗତବର୍ଷ ଛଅ ଏକର ଜମିରେ ପରୀକ୍ଷା ମୂଳକ ଚାଷ କରାଯାଇ ଥିଲା, ସେଥିରେ କିଛି ହେଲା ନାହିଁ । ଏଥିରୁ ଜମିର ପ୍ରକୃତ ଅବସ୍ଥା ବୁଝାଯିବ । ଏପରି ଜମି ଲୋକଙ୍କୁ ଯଦି ଦିଆଯାଏ ଏବଂ ଯଥେଷ୍ଟ ଉନ୍ନତ ଧରଣର ଚାଷ ନ କରାଇ ସରକାର ଏପରି ଜମି ଯଦି ଦିଅନ୍ତି, ତା ହେଲେ ଲୋକେ ମହରଗରୁ ଯାଇ କାନ୍ତାରରେ ପଡ଼ିବେ ଏବଂ ଏହି ନୂଆ ଜମି ଏପରି ଭାବରେ ସରକାର ସେମାନଙ୍କୁ ଦେଉଛନ୍ତି ଯେପରିକି ତାହା ଧଳା ହାତୀ ପୋଷିଲା ପରି ହୋଇଯିବ ଏବଂ ଆଦାୟରୁ ଖର୍ଚ୍ଚ ଖୁବ ଅଧିକ ହେବ । ଯେପରିକି Model village ପ୍ରସ୍ତୁତ କରିଛନ୍ତି । Model village ବିଷୟରେ କହିବା ଟିକିଏ ଅପ୍ରାସଙ୍ଗିକ ହେଲେ ମଧ୍ୟ ଖାଲି ପଦେ କହିବି । ସେହି Model villageକୁ ଦେଖି ଓଡ଼ିଶାର ଲାଟ ସାହେବ ଯେଉଁ ମନ୍ତବ୍ୟ ପ୍ରକାଶ କରିଛନ୍ତି, ସେଥିପ୍ରତି ମୁଁ ଆମର ପ୍ରଧାନମନ୍ତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରୁଛି । ତାପରେ ଯଦି ସେ ସେହି Model villageକୁ ପ୍ରକୃତରେ Model ବା ଆଦର୍ଶ ବୋଲି ବିଚାର କରୁଛନ୍ତି, ତାହା ହେଲେ ମୋର ସେଥିରେ କିଛି କହିବାର ନାହିଁ । ଏହି Model villageର ଅବସ୍ଥା ଯେ ଦେଖିଛି, ସେ କେବଳ ବୁଝି ପାରିବ । ସେ କଥା ଏଇଠି କହିବା ଅନାବଶ୍ୟକ ।

ତା ପରେ ସେ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି ଯେ, କୌଣସି ଲୋକଙ୍କୁ destitute ବା ନିରାଶ୍ରୟ କରାଯିବ ନାହିଁ । ଅନ୍ୟ ଯାଗାରେ ଜମି ଓ ଘରର ବନ୍ଦୋବସ୍ତ ନ କଲେ ଲୋକଙ୍କୁ ନିଜ ଜମି ଓ ଘର ଛାଡ଼ି ଯିବାକୁ କୁହାଯିବ ନାହିଁ । ତାଙ୍କର ପ୍ରତିଶ୍ରୁତି ବଡ଼ ଶ୍ରୁତିମଧୁର, ନିଶ୍ଚୟ ମୁଁ ସ୍ୱୀକାର କରୁଛି । ଏହି ପ୍ରତିଶ୍ରୁତିକୁ ପାଳନ କରିବାକୁ ଯେ ପରିମାଣରେ ସାଧନା ଦରକାର, ତା ଆମ ସରକାରଙ୍କର ନାହିଁ । କୁହାଯାଉଛି 10,553 ଏକର ଜମି ଦଖଲ ନିଆ ସରିଲାଣି ଏବଂ ଏଥିପାଇଁ କେବଳ ମୋଟେ 572 ଏକର ଜମି ଆବାଦ କରାହୋଇଛି ଏବଂ ଆପଣମାନେ ଆଉ ଗୋଟିଏ କଥା ବୁଝି ପାରୁଥିବେ, 572 ଏକର ଜମିକୁ ଆବାଦ କରିବା ପାଇଁ ଏବଂ 572 ଏକର ଜମି ଚାଷ ଉପଯୋଗୀ କରିବା ପାଇଁ

ମୋଟେ ଟ 26,000 ଙ୍କା ଖର୍ଚ୍ଚ ହୋଇଛି । ଏଇଥିରୁ ସେ ଜମିର ନମୁନା ଆପଣମାନେ ହୁଏତ କିଛି କିଛି ବୁଝି ପାରୁଥିବେ ।

ତା ପରେ ସେ କହିଲେ ଯେ, 572 ଏକର ଜମି ବର୍ତ୍ତମାନ ସୁଦ୍ଧା ଠିକ୍ କରାହୋଇଛି, ତାପରେ ଚିବ୍ର ଗତିରେ କାମ ଚ୍ଲିବ ଏବଂ ସରକାର ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି, ସେ ସବୁ ପୂରଣ କରିବେ । ଏହି ବିଷୟରେ ମୁଁ ଆଉ ଗୋଟିଏ କଥା କହି ରଖେ, ଗତ ମାର୍ଚ୍ଚ ମାସରେ ଗୋଟିଏ ପ୍ରଶ୍ନ ପଗ୍ଚରିଥିଲି ସେ କହିଥିଲେ ଯେ ସେ ସମୟ ସୁଦ୍ଧା 50 ଏକର ଠିକ୍ ହୋଇଛି । ଆଜି ପ୍ରଶ୍ନୋତ୍ତର ବେଳେ ଶୁଣିବାକୁ ପାଉଛି 572 ଏକର ତିଆର ହୋଇଛି, ଏବେ ଏତେ ଜମି acquire କରି ଦଖଲ ନେଇ ସାରିଲା ପରେ ଯଦି ସରକାର ଅନ୍ତତଃ ବର୍ଷେ ଧରାଯାଉ, କାହିଁକିନା ଗତ 4 ବର୍ଷ ହେଲା ସରକାରଙ୍କୁ ଯେଉଁ ସୁଯୋଗ ମିଳିଥିଲା, ଯେଉଁ ସୁବିଧା ମିଳିଥିଲା, ସେହି ସୁବିଧା କୌଣସି ରକମ ଗ୍ରହଣ କଲେ ନାହିଁ । ସରକାର ଯେତେବେଳେ ପ୍ରଥମେ ଏହି ବନ୍ଦର ଖୋଲିଦେଲେ, ସେହି ସମୟରୁ ପ୍ରସ୍ତୁତ ହେବାର ସୁବିଧା ନଥିଲା କି ?

ସେଥିପାଇଁ ଏହି 46 ସାଲ ପ୍ରଥମରୁ 1949 ଫେବୃଆରୀ 3 ତାରିଖ ପର୍ଯ୍ୟନ୍ତ କାହିଁକି କିଛି ନ କରଯାଇ ଏହି ପୁନର୍ବସତି ଯୋଜନା ଫେବୃଆରୀ ତା 3 ରିଖ 1949 ସାଲରେ କରଗଲା । ଏହାର ଉତ୍ତର କଣ ମୁଁ ବୁଝି ପାରିଲି ନାହିଁ । ତା ପର ଏହି 3 ବର୍ଷ ମଧ୍ୟରେ ଯାହା ହୋଇଛି ତାହା ମଧ୍ୟ ଆଦୌ ସନ୍ତୋଷଜନକ ନୁହେଁ । ମାନ୍ୟବର ପ୍ରଧାନମନ୍ତ୍ରୀ ଏହାର ଉତ୍ତର ଦେବାକୁ ଯାଇ କହିଛନ୍ତି ଯେ 1946 ସାଲରୁ machine ପାଇଁ order ଦିଆଗଲାଣି; କିନ୍ତୁ ତାହା ଏ ପର୍ଯ୍ୟନ୍ତ ପହଞ୍ଚି ନାହିଁ । ମୋର ଅବଶ୍ୟ Engineering ବିଷୟରେ ଜ୍ଞାନ ନାହିଁ । ଏତେ ଏତେ machine ଇତ୍ୟାଦି ହୀରାକୁଦ ବନ୍ଧ ପାଇଁ ଆସୁଛି, ଅଥଚ ଏହି ପୁନର୍ବସତି ଯୋଜନା ପାଇଁ ଆସିପାରୁ ନାହିଁ । ତା ପରେ ସେ କହିଛନ୍ତି ଆମର ଏହି ସବୁ ପୁନର୍ବସତି ଯୋଜନା କାମ ଦେଖିବା ପାଇଁ ବଡ଼ ବଡ଼ officer ନିଯୁକ୍ତ କରିଛନ୍ତି । Shri G. C. Das ଏବଂ Northern Division Commisioner ସେଠାର ଅଛନ୍ତି । କିନ୍ତୁ ସେଠାରେ ଥାଇ ମଧ୍ୟ ତ ଏ ଅବସ୍ଥା । ତା ହେଲେ ଏପରି ଭାବରେ ଯଦି କାମ ଚ୍ଲେ ଖାଲି ବଡ଼ ବଡ଼ Officer appoint କରି ଦେଲେ କଣ ଚଳିବ, ଯେପରି କି ଆମର Grow more food ଆଉ ଅଧିକ ଶସ୍ୟ ଉତ୍ପାଦନକାରୀ ଯୋଜନାରେ ବଡ଼ ବଡ଼ ଅଫିସର ନିଯୁକ୍ତ କରି ଦାୟିତ୍ୱ ଇଦି ଦେଲେ । କିନ୍ତୁ ପ୍ରକୃତରେ କାର୍ଯ୍ୟ କଣ ହେଲା । ତାହା ହେଲେ ଏଥିର ଫଳ ଆମେ କ'ଣ ପାଇବା । ମୋର ଆଉ ଅନେକ କଥା କହିବାର ଥିଲା, କିନ୍ତୁ ମୁଁ ତା ଭିତରୁ ପ୍ରଧାନ ପ୍ରଧାନ କଥା ଗୁଡ଼ିକ କହି ଦେଇଛି ।

## 1949-50 ଅତରିକ୍ତ ବଜେଟ ଉପରେ ନୀତିଗତ ପ୍ରଶ୍ନ, କାଟ ପ୍ରସ୍ତାବ ଅଗତ ଓ ଆଲୋଚନା ।

ଯୁବବ୍ୟବସ୍ଥାପକ ଭବରେ ଡକ୍ଟର ସୂପକାର ଖୁବ୍ ନିଷ୍ଠା ଓ ଉତ୍ସାହର ସହିତ ନିଜର କର୍ତ୍ତବ୍ୟ ସଂପାଦନ କରୁଥିଲେ । ଜାଗ୍ରତ ପ୍ରହରୀ ରୂପେ ସେ ଅନୀତି, ଅପବ୍ୟୟ ଓ ଅପଚୟ ବିରୁଦ୍ଧରେ ନିରନ୍ତର ନିଜର ଦୃଢ଼ ସ୍ୱର ଉତ୍ତୋଳନ କରୁଛନ୍ତି । ମାର୍ଚ୍ଚ ମାସରେ ଯେତେବେଳେ ଆସନ୍ତା ଆର୍ଥିକ ବର୍ଷ ପାଇଁ ବଜେଟ ପାଶ୍ ହେବା କଥା । ସେହି ସମୟରେ ଗତବର୍ଷର ଅତିରିକ୍ତ ବଜେଟ ଆଗତ କରିବାର ଅସମ୍ଭବିକତା ଓ ଅପ୍ରାସଂଗିକତାକୁ ସେ ତୀବ୍ର ସମାଲୋଚନା କରିଛନ୍ତି । ସେ ଏଥିପାଇଁ ଏକ ନୀତିଗତ ପ୍ରଶ୍ନ ଉତ୍ଥାପନ କରିଛନ୍ତି । ଏହା ଉପରେ ବିଶେଷ ଆଲୋଚନା ନିମିତ୍ତ କାଟ ପ୍ରସ୍ତାବ ମଧ୍ୟ ଆଣିଛନ୍ତି । ମାତ୍ର ଏଥିରେ ନାନା ଆଳ ଦେଖାଇ ସରକାରଙ୍କ ପକ୍ଷରୁ ଯେତେ କହିଲେ ସୁଦ୍ଧା ସେ ନିଜ ଚେଷ୍ଟାରେ ଦୃଢ଼ ରହିଛନ୍ତି ।

ଏହି ପ୍ରସଙ୍ଗରେ ସେ ତତ୍କାଳୀନ ବିଧାନ ସଭା ସଭ୍ୟ ସ୍ୱର୍ଗୀୟ ବିଜୟାନନ୍ଦ ପଟ୍ଟନାୟକଙ୍କ ଚେଷ୍ଟାରେ ତାଳଚେରଠାରେ କୋଇଲାରୁ ସିନ୍ଥେଟିକ ବା ଘନ ପେଟ୍ରୋଲ ପ୍ରସ୍ତୁତ କାରଖାନା ପ୍ରତିଷ୍ଠା ବିଷୟ ଉଠାଇଛନ୍ତି । ଏଥିପାଇଁ ସ୍ୱର୍ଗୀୟ ପଟ୍ଟନାୟକ ସାତ ଲକ୍ଷ ଟଙ୍କା ଋଣ ନେଇଥିଲେ । ଓଡ଼ିଆ ଯୁବକମାନଙ୍କୁ ଏଥିପାଇଁ ଋଣ ଯୋଗାଇବା ସଙ୍ଗେ ସଙ୍ଗେ ବିଦେଶକୁ ପଠାଇ ସେମାନଙ୍କୁ ସିନ୍ଥେଟିକ ପେଟ୍ରୋଲ ଉତ୍ପାଦନରେ ହେବାର ବ୍ୟବସ୍ଥା କରାଯାଉଛି କି ବୋଲି ଡଃ ସୂପକାର ପ୍ରଶ୍ନକରିଥିଲେ । ଏହି ଋଣ ଦେବା ପୂର୍ବରୁ କୌଣସି ଚୁକ୍ତିପତ୍ର ହୋଇଛିକି ନାହିଁ ଏବଂ ଯୁବକମାନଙ୍କୁ ଟ୍ରେନିଂ ଦେବାରେ ସରକାରଙ୍କ ଦାୟିତ୍ୱ କଣ ଜାଣିବାକୁ ଚାହିଁଥିଲେ । ମାତ୍ର ଏହାର ଉତ୍ତରସବୁ ସରକାର ନକରାତ୍ମକ ( negative ) ରୂପେ ପ୍ରଦାନ କରିଥିଲେ ।

ଏହିପରି ଅପଚୟ ଓ ନୀତିଗତ ତ୍ରୁଟି ଦେଖାଇ ଖଦାକର ଅତିରିକ୍ତ ଅନୁଦାନ ଉପରେ କାଟପ୍ରସ୍ତାବ ଆଣିଥିଲେ । ଏହା ଏକ ଅଯୌକ୍ତିକ ଖର୍ଚ୍ଚ ଦାବୀ ବୋଲି ସମାଲୋଚନା କରି ସେ ଆର୍ଥିକ ବିଶୃଙ୍ଖଳା ଓ ଦୁର୍ନୀତକୁ କଠୋର ଭବରେ ନିନ୍ଦା କରିଛନ୍ତି । ଡଃ ମହତାବ ତାଙ୍କୁ ପୂର୍ବରୁ "ଜିଲ୍ଲା କୋର୍ଟର ଓକିଲ" କହିଥିବାରୁ ତାର ପ୍ରତ୍ୟୁତ୍ତରରେ ପଗ୍ରଚିଛନ୍ତି, ଅବଶ୍ୟ ଜଣେ District Court Lawyer how to reconcile the discrepancy ଏଇଟା ହି ମୋର ବିଶେଷ କର୍ତ୍ତବ୍ୟ । ମୋର 10 ବର୍ଷର ଅଭିଜ୍ଞତା ସତ୍ତ୍ୱେ ମୁଁ ଏସବୁ discrepancy ର ସାମଂଜସ୍ୟ ଦେଖିପାରୁନାହିଁ । ସରକାର ଏ ବିଷୟରେ ଯଥାଯଥ ଉତ୍ତର ଦେବେ । "ଶିଳ୍ପ କ୍ଷେତ୍ରରେ ଓଡ଼ିଶାର ଉନ୍ନତି ଚାହିଁଲେ ସୁଦ୍ଧା ସନ୍ଦେହଜନକ ଭବରେ ସରକରଙ୍କ କୌଣସି କାର୍ଯ୍ୟକୁ ସହିବାକୁ ପ୍ରସ୍ତୁତ ନ ଥିଲେ । ସେ ତେଣୁ ଯଥାର୍ଥରେ କହିଥିଲେ ( 16- 31950 ), ମୁଁ ମଧ୍ୟ ଚାହୁଁଛି ଓଡ଼ିଶା ଅତି ଶୀଘ୍ର ଶିଳ୍ପ ଦିଗରେ ଭରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଶୀର୍ଷସ୍ଥାନ ଅଧିକାର କରୁ କିନ୍ତୁ ସନ୍ଦେହଜନକ କାର୍ଯ୍ୟ କରାଗଲେ ଏଇଟା ଶିଳ୍ପକୁ ସାହାଯ୍ୟ କରିବା ପରିବର୍ତ୍ତେ ଶିଳ୍ପର ଉନ୍ନତ ପଥରେ ବହୁତ ବାଧା ଆଣିବ । ମୋର ଶିଳ୍ପ ବିଷୟରେ କୌଣସି ଅଭିଜ୍ଞତା ନାହିଁ । ମୁ ଏସବୁ ବିଷୟ ଦେଖୁଥିବେଳେ ଗୋଟିଏ ମଫସଲି ଲୋକଙ୍କୁ କଲିକତାର

ଚୌରଙ୍ଗୀରେ ଛାଡ଼ି ଦେଲେ ସେ ଯେପରି ହୁଏ, ମୁଁ ସେପରି ଅନୁଭବ କରୁଛି" । ଶ୍ରଦ୍ଧାକରଙ୍କ ଆତ୍ମସଚେତନତା ସହିତ କି ତୀବ୍ର ବ୍ୟଙ୍ଗ ବାଣ ।

## 1949-50 ମସିହା ଅତିରିକ୍ତ ଖର୍ଚ୍ଚ ଦାବି ଉପରେ କାଟ ପ୍ରସ୍ତାବ

ଶ୍ରୀ ଶ୍ରଦ୍ଧାକର ସୂପକାର : ମାନ୍ୟବର ସଭାପତି ମହାଶୟ, ମୋ ନାମରେ ଯେଉଁ ଦୁଇଟି କାଟ୍ ପ୍ରସ୍ତାବ ଅଛି ସେ ଦୁଇଟି କାଟ୍ ପ୍ରସ୍ତାବକୁ ମୁଁ ଏକ ସଙ୍ଗରେ ଆଲୋଚନା କରିବାକୁ ପ୍ରସ୍ତାବ କରୁଅଛି ।

ମୁଁ ପ୍ରସ୍ତାବ କରୁଛି ଯେ That the Supplementary grant be reduced by Rs. 10 and I like to discuss the general policy and the delay in disposal of cases.

ପ୍ରଥମ କଥା ହେଉଛି ଆମେ ଦେଖୁଛୁଁ ଯେ ଆମ ଦେଶରେ ଯେପରି ଭାବରେ ଆଇନ ଅଦାଲତର କାର୍ଯ୍ୟ ଚାଲିଛି ସେଥିରେ ଅନେକ ଗୁଡ଼ିଏ ତ୍ରୁଟି ରହି ଯାଉଛି । ସେଥିର ପ୍ରଧାନ କାରଣ ହେଉଛି ଯେ—ମୁଁ ଗତ ବଜେଟ୍ ସମୟରେ ଏ ବିଷୟରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲି ଯେ, ଯେତେଦିନ ପର୍ଯ୍ୟନ୍ତ ଆମର ବିଚାର ବିଭାଗ ଏବଂ ଶାସନ ବିଭାଗ ସମ୍ପୂର୍ଣ୍ଣ ଭାବରେ ଅଲଗା ନ ହୋଇଛି ସେପର୍ଯ୍ୟନ୍ତ ଆମର ଏଇ ଶାସନ ବିଚାର ବିଷୟରେ ନାନାପ୍ରକାର ତ୍ରୁଟି ରହିଥିବ ଏବଂ ଆମ୍ଭେମାନେ ବରାବର ଏହା ଦେଖିବାକୁ ପାଉଥିବା । ଆମ୍ଭେମାନେ ଦେଖିବାକୁ ପାଉଛୁ ଯେ ପୂର୍ବରୁ ସାମାନ୍ୟ ଭାବରେ ଏଇ ବିଚାର ବିଭାଗ ଏବଂ ଶାସନ ବିଭାଗ ଏକା ସ୍ଥାନରେ ଥିଲେ ସୁଦ୍ଧା ବିଚାର ଶୀଘ୍ର ହୋଇପାରୁ ନ ଥିଲା ।

ତାର କାରଣ ସେ ସମୟରେ ଉପର ଅଫିସରମାନଙ୍କର ଏ ବିଷୟ ପ୍ରତି କଡ଼ା ନଜର ଥିଲା । ବର୍ତ୍ତମାନ ଦେଖାଯାଉଛି ଯେ, ଧୀରେ ଧୀରେ ଏହି ବିଚାର ବିଷୟରେ ଏତେ ଡେରି ଏବଂ ଏତେ ବିଶୃଙ୍ଖଳା ହେଉଛି ଯେ, ଲୋକମାନେ ଆଉ ପ୍ରକୃତ ବିଚାର ପାଇପାରୁ ନାହାନ୍ତି । କାହିଁକି ନା, ଗୋଟିଏ ଗୋଟିଏ ମୋକଦମା ନିଷ୍ପତ୍ତି ହେବା ପାଇଁ ବର୍ଷ ବର୍ଷ ଧରି ଲାଗି ଯାଉଛି ଏବଂ ଲୋକମାନେ ହଇରାଣ ଏବଂ ବିରକ୍ତ ହୋଇ ଯାଉଛନ୍ତି । ମୋର ବ୍ୟକ୍ତିଗତ ଅଭିଜ୍ଞତାରୁ କହିପାରେ ଯେ revenue case, ମାଲି-ମକଦମା ଏବଂ ଫୌଜଦାରୀ ମୋକଦମାମାନଙ୍କରେ ଏତେ ବିଳମ୍ବ ଘଟୁଛି ଯେ, ବର୍ଷ ବର୍ଷ ଧରି ତହିଁର କୌଣସି ନିଷ୍ପତ୍ତି ହୋଇପାରୁ ନାହିଁ । ଗୋଟିଏ ମୋକଦ୍ଦମା ବିଷୟରେ ମୁଁ ଜାଣେ ଯେ, ସେଟା 1944 ସାଲରେ ଆଗତ ହୋଇଥିଲା ଏବଂ ଆଜି ପର୍ଯ୍ୟନ୍ତ ତାହା କୌଣସି ରକମର ନିଷ୍ପତ୍ତି ହୋଇପାରୁ ନାହିଁ । ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବେ ଯେ ମୋକଦମାର ଜବାବ ସୁଆଲ ହୋଇ ଯାଉଛି ଏବଂ ତାର ରାୟ ଲେଖା ହୋଇଛି ଦୁଇବର୍ଷ ପରେ, ଏହିପରି ଘଟଣା ମୁଁ ମଧ୍ୟ ପ୍ରତ୍ୟକ୍ଷ

କରି ଆସିଛି । ଏ ପ୍ରକାର କାହିଁକି ହେଉଛି । ଏହାର ପ୍ରଧାନ କାରଣ ହେଉଛି ଯେ, ମାଜିଷ୍ଟ୍ରେଟ ବା କର୍ମଚାରୀମାନେ ଯେଉଁମାନେ ଏହି ବିଷୟ ଦେଖିବା କଥା ସେମାନଙ୍କୁ ଯେ କୌଣସି ଅନ୍ୟାନ୍ୟ ଅଦରକାରୀ କାମ ବେଶି ପରିମାଣରେ ଦିଆଯାଉଛି । ଉଦାହରଣ ସ୍ୱରୂପ ଯଦି କୌଣସି ପ୍ରାଦେଶିକ କର୍ମଚାରୀ କୌଣସି କାମକୁ ଦୌରା ପାଇଁ ଗଲେ ତାହାହେଲେ ସେମାନଙ୍କର ଯିବା ଆସିବା ସୁବିଧା ଏବଂ ଅନ୍ୟାନ୍ୟ ବନ୍ଦୋବସ୍ତ କରିବାପାଇଁ ସ୍ଥାନୀୟ କର୍ମଚାରୀମାନଙ୍କର ଶକ୍ତି ଓ ଶ୍ରମ ବ୍ୟୟ ହେଉଥିବାରୁ ଅଭିଯୋଗ ଆସିଛି । ଏହି ରକମର କାମରେ ମାଜିଷ୍ଟ୍ରେଟ ଏବଂ କର୍ମଚାରୀମାନଙ୍କର ଅନେକ ଶକ୍ତି ଅଯଥା ବ୍ୟୟ ହେଉଛି ଏହା ଫଳରେ ଲୋକେ ଯଥା ସମୟରେ ବିଚାର ପାଇପାରୁ ନାହାନ୍ତି ।

ତା ପରେ ବିଶେଷ କରି ଏହି ପୂର୍ବତନ ଗଡ଼ଜାତମାନଙ୍କରେ ଯାହା ହୋଇଛି ସେ ବିଷୟରେ ମୁଁ ବିଶେଷ ଭାବରେ କେତେକ କଥା କହିବାକୁ ଚାହେଁ । ମୋ ବକ୍ତବ୍ୟରେ ପ୍ରଧାନ ବିଷୟ ହେଉଛି ଯେ, ଯେତେବେଳେ ଗଡ଼ଜାତଗୁଡ଼ିକ ପ୍ରଦେଶର ଅନ୍ତର୍ଭୁକ୍ତ ହେଲା ସେହି ସମୟରେ ଅନେକଗୁଡ଼ିଏ ଜାଗା ଖାଲି ହେଲା ବିଚାର ବିଭାଗରେ । ଜଜ୍, ସବ୍‌ଜଜ୍ ଏବଂ ମୁନସିଫ ସ୍ଥାନ ଅନେକ ଖାଲି ପଡ଼ିଲା ଏବଂ ସେଇ ବିଷୟରେ ଅନେକ ଦରଖାସ୍ତ ପଡ଼ିଥିଲା । ଗଡ଼ଜାତର କର୍ମଚାରୀମାନେ ଆଶା କରିଥିଲେ ଯେ ଅନ୍ତତଃ ସେମାନଙ୍କ ମଧ୍ୟରେ ଯେଉଁମାନେ ଯୋଗ୍ୟ ଥିଲେ ସେମାନଙ୍କୁ ସେହି କାର୍ଯ୍ୟମାନଙ୍କରେ ସ୍ଥାନ ଦିଆଯିବ । କିନ୍ତୁ ଦେଖାଗଲା ଯେ ସେଥି ମଧ୍ୟରୁ ଅନେକ ସ୍ଥାନ ଓଡ଼ିଶା ପୁରୁଣା ପ୍ରଦେଶର ଲୋକମାନଙ୍କୁ ଦିଆଗଲା ଏବଂ ଯେଉଁମାନେ ଅନେକ ବର୍ଷ ଧରି Stateରେ କାମ କରି ଆସୁଥିଲେ ସେମାନଙ୍କର କଥା ଗ୍ରହଣ କରାଗଲା ନାହିଁ । ଏଥିରୁ ମୁଁ ଭାବୁଛି ଯେ ଗଡ଼ଜାତ ଲୋକଙ୍କ ମନରେ ଏବଂ ବିଶେଷ କରି ପୁରାତନ କର୍ମଚାରୀମାନଙ୍କର ମନରେ ଯଥେଷ୍ଟ ଅସନ୍ତୋଷ ଦେଖା ଦେଇଛି । ମୁଁ ଆଶା କରୁଛି ଯେ, ଓଡ଼ିଶାରେ ଭବିଷ୍ୟତରେ ଯେପରି ଏହିପରି କୌଣସି ରକମର ଅଭିଯୋଗର ଉତ୍ପତ୍ତି ନ ହୁଏ । ଯାହା ହେବାର ହେଲା । ଭବିଷ୍ୟତରେ ଯେପରି ଅଭିଯୋଗ କରିବାର କୌଣସି କାରଣ ଉପୁଯିବ ନାହିଁ । ସେଥିପ୍ରତି ଯଥେଷ୍ଟ ଦୃଷ୍ଟି ଦିଆଯିବ । ତା ପରେ ଗଡ଼ଜାତ ଅଞ୍ଚଳରେ କର୍ମଚାରୀ ଏବଂ ପ୍ରାର୍ଥୀମାନେ ମୋ କ୍ଷୁଦ୍ର ମତରେ କୌଣସି ଗୁଣରେ ଆମ ପ୍ରଦେଶର ଅନ୍ୟ କର୍ମଚାରୀ ବା ପ୍ରାର୍ଥୀମାନଙ୍କଠାରୁ ଯୋଗ୍ୟତା ବା ପାରଙ୍ଗମତାରେ କମ୍ ନୁହନ୍ତି । ତାଙ୍କର ଅସୁବିଧା ହେଉଛି ଯେ, ସେମାନେ କେନ୍ଦ୍ରଠାରୁ ଦୂରରେ ଥିବା ହେତୁ ସେମାନେ ତାଙ୍କର ମତାମତକୁ ସ୍ପଷ୍ଟ ଏବଂ ଜୋର ଦେଇ କରି ଦାବୀ କରିପାରୁ ନାହାନ୍ତି ଏବଂ ସେଥିପାଇଁ ତାଙ୍କର ଦାବୀ ଅନେକ ସମୟରେ ଉପେକ୍ଷିତ ହୋଇଛି । ଯେପରିକି ସମ୍ବଲପୁର ଅଞ୍ଚଳର ଦାବୀ ଉପେକ୍ଷିତ ହୋଇ ଆସୁଛି । ଏଥିପାଇଁ ମୁଁ ସରକାରଙ୍କ ଠାରେ ବିଶେଷ ଭାବରେ ଦାବୀ କରି କହୁଛି ଯେ, ଭବିଷ୍ୟତରେ କର୍ମଚାରୀ ନିଯୁକ୍ତି

ବିଷୟରେ ହେଉ କିମ୍ବା ଅନ୍ୟାନ୍ୟ ବିଷୟରେ ହେଉ, ଗଡ଼ଜାତ ଅଞ୍ଚଳର ପ୍ରାର୍ଥୀ ଏବଂ କର୍ମଗ୍ଧରୀମାନେ ଯେପରି ତାଙ୍କର ପ୍ରକୃତ ଦାବୀ, ଯଥାର୍ଥ ଦାବୀ ପାଇ ପାରିବେ, ସେଥିପଚି ସରକାର ବିଶେଷ ଦୃଷ୍ଟି ଦେବେ ।

**ଶ୍ରୀ ଶ୍ରଦ୍ଧାକର ସୁପକାର:** ମାନନୀୟ ସଭପତି ମହାଶୟ, ମୋ ନାମରେ ଦୁଇଟି କାଟ ପ୍ରସ୍ତାବ ଅଛି । ପ୍ରଥମ ହେଉଛି ଯେ ସାଧାରଣ policy ବା ସାଧାରଣ ନିୟମ । ଶିକ୍ଷା ବିଭଗର ସାଧାରଣ ନୀତି ବିଷୟରେ ସମାଲେଚନା କରିବା ପାଇଁ 10 ଟଙ୍କା କାଟ ପ୍ରସ୍ତାବ ଅଛି ଏବଂ 2ୟ ପ୍ରସ୍ତାବ ହେଉଛି ଯେ, ସାହାଯ୍ୟପ୍ରାପ୍ତ ବିଦ୍ୟାଳୟମାନଙ୍କୁ ସରକାର ଯେଉଁ grant କମାଇ ଦେଉଛନ୍ତି, ତାକୁ ସାହାଯ୍ୟ କରିବାପାଇଁ ସେ ସମ୍ବନ୍ଧରେ 10 ଟଙ୍କା କାଟ ପ୍ରସ୍ତାବ—ଏ ଦୁଇଟି ବିଷୟ ଏକ ସ୍ଥାନରେ ଆଲୋଚନା କରିବାପାଇଁ ପ୍ରସ୍ତାବ କରୁଛି । ଆଗରୁ ସରକାରୀ ବିଦ୍ୟାଳୟ ଏବଂ ବେସରକାରୀ ସାହାଯ୍ୟପ୍ରାପ୍ତ ବିଦ୍ୟାଳୟ ମଧ୍ୟରେ ଅନେକ ପାର୍ଥକ୍ୟ ଥିଲ । ପାର୍ଥକ୍ୟ ହେଉଛି, ବେସରକାରୀ ସାହାଯ୍ୟପ୍ରାପ୍ତ ବିଦ୍ୟାଳୟ ଛାତ୍ରମାନଙ୍କ ବେତନ ହାର କମ୍ ଥିଲ ଏବଂ ସେଠାର ଶିକ୍ଷକମାନଙ୍କର ଦରମା ହାର ମଧ୍ୟ ସରକାରୀ ସ୍କୁଲ ଶିକ୍ଷକମାନଙ୍କ ଦରମା ହାର ତୁଳନାରେ କମଥିଲ । ଏ ସବୁ ଖର୍ଚ୍ଚ ଏବଂ ଅନ୍ୟାନ୍ୟ ଖର୍ଚ୍ଚ ସବୁ ସ୍କୁଲ ଛାତ୍ରମାନଙ୍କଠାରୁ ଆଦାୟ ହେଉଥିଲ । ଯାହା ଆୟ ହେଉଥିଲ ସେଥିରୁ ଶିକ୍ଷକମାନଙ୍କୁ ବେତନ ଦିଆଯାଏ ଏବଂ ଅନ୍ୟାନ୍ୟ ଖର୍ଚ୍ଚ ହୁଏ । ଯାହା କିଛି ଅଧିକା ଏଥିପାଇଁ ଦରକାର ହୁଏ, ସରକାର ସମୁଦାୟ ବହନ କରୁଥିଲେ । ବର୍ତ୍ତମାନ ଏ ନୂତନ ନୀତି ପ୍ରୟୋଗ କରିବା ଫଳରେ କଣ ହେଉଛି ନା, ସରକାରୀ, ବେସରକାରୀ ବିଦ୍ୟାଳୟ ଭିତରେ ଛାତ୍ରମାନଙ୍କ ଦରମା ହାର ସମାନ କରାଯାଇଛି । କିନ୍ତୁ ଦେଖାଯାଉଛି ଯେ ସରକାରୀ ବିଦ୍ୟାଳୟମାନଙ୍କରେ ଶିକ୍ଷକମାନେ ଯେତିକି ଦରମା ପାଉଛନ୍ତି, ବେସରକାରୀ ବିଦ୍ୟାଳୟରେ ଶିକ୍ଷକମାନଙ୍କ ଦରମା ହାର ତାଠାରୁ କମ୍ କରାହୋଇଛି । ତାପରେ ସରକାରୀ ବିଦ୍ୟାଳୟମାନଙ୍କରେ ଯେତେ ଅଧିକ ଖର୍ଚ୍ଚ ହେଉଛି, ସେ ସମୁଦାୟ ଖର୍ଚ୍ଚ ସରକାର ବହନ କରୁଛନ୍ତି । କିନ୍ତୁ ବେସରକାରୀ ସହାଯ୍ୟପ୍ରାପ୍ତ ସ୍କୁଲମାନଙ୍କୁ ଦୁଇ ତୃତୀୟାଂଶ ଦେଉଛନ୍ତି । ଏଥିରୁ ଦେଖାଯାଉଛି ଯେ ଛାତ୍ରମାନଙ୍କର କିମ୍ବା ଅଭିଭବକମାନଙ୍କର ଏ ବିଷୟରେ କୌଣସି ପାର୍ଥକ୍ୟ ନାହିଁ । ଯେଉଁ ଛାତ୍ରମାନେ ସରକାରୀ ସ୍କୁଲରେ ପଢୁଛନ୍ତି, ସେମାନେ ଯେତିକି ସ୍କୁଲରେ ପଢିବା ପାଇଁ ଖରଚ କରୁଛନ୍ତି, ବେସରକାରୀ ସ୍କୁଲରେ ମଧ୍ୟ ଛାତ୍ରମାନେ ସେତିକି ଖର୍ଚ୍ଚ କରୁଛନ୍ତି । କିନ୍ତୁ ଶିକ୍ଷକମାନଙ୍କର ଅବସ୍ଥା ଏବଂ ପରିଗ୍ଧଳନାର ଅବସ୍ଥା ଦେଖିଲେ ମନେହୁଏ, ଘୋର ପାର୍ଥକ୍ୟ ଏଥିରେ ବଢି ଯାଇଛି । ଏଥିରୁ ଜଣାଯିବ ଯେ, ଏହା ଫଳରେ ଅନେକ ବେସରକାରୀ ସ୍କୁଲ ଉଠିଯିବ ବୋଲି ଆଶଙ୍କା କରାଯାଉଛି । କାହିଁକି ନା ଯେ Managing Committee ବା ପରିଗ୍ଧଳନା

Committeeରେ ଯେଉଁମାନେ ସଭ୍ୟ ଅଛନ୍ତି ଏକ ତୃତୀୟାଂଶ ବା ଅଧେ ସେମାନେ କୌଣସିଠାରୁ ପାଇବେ ସେ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ସୂଚନା ନାହିଁ । ଏ ଯେ ପରିଚାଳନା Committeeର ସଭ୍ୟମାନେ ଅଛନ୍ତି, ସେମାନେ ନିଜ ହାତରୁ ଖର୍ଚ୍ଚ ଦେଇ କେତେ ଦିନ ଚଳାଇବେ ? ସେମାନଙ୍କ ପକ୍ଷରେ ଏ ପରିସ୍ଥିତି ଘୋର ଅସୁବିଧାଜନକ ହେବ । ବର୍ତ୍ତମାନ ସେମାନେ ଚାନ୍ଦା ଆଦାୟ କରି ସେ ବାକୀ ଅଂଶଟି ପୂରଣ କରୁଛନ୍ତି । ତାହାହେଲେ ମଧ୍ୟ ପ୍ରତିମାସ ଏପରି ଚାନ୍ଦା ଆଦାୟ କରି ସ୍କୁଲ ଚଳାଇବା ବହୁତ ମୁସ୍କିଲି ହୋଇ ପଡ଼ିବ ଏବଂ ଅନେକ ପରିଚାଳନା କମିଟି ବର୍ତ୍ତମାନ ଉପଲବ୍ଧି କରିପାରିଛନ୍ତି । ଏହା ହେଲେ ବଳକା ଟଙ୍କା ସେମାନେ ନିଜ ନିଜ ମ୍ୟାନେଜିଂ କମିଟି ବା ପରିଚାଳନା କମିଟି ତରଫରୁ ଦେବା କଥା କିନ୍ତୁ ସେଟା ସେମାନେ ପୂରଣ କରିବା କଷ୍ଟକର ହେଉଛି । ତାହା ଫଳରେ ହେଉଛି କଣ ନା, ପ୍ରକୃତରେ ଛାତ୍ରମାନଙ୍କ ଅଭିଭାବକମାନେ ବହୁତ ଅସୁବିଧାରେ ପଡୁଛନ୍ତି ଏବଂ ପଡ଼ିବେ । ପ୍ରାୟ ଦେଖାଯାଉଛି ଛାତ୍ରମାନେ ଅନେକ ସମୟରେ ସରକାରୀ ସ୍କୁଲମାନଙ୍କରେ ନାମ ଲେଖାଇବା ପାଇଁ ଯାଉଛନ୍ତି । କିନ୍ତୁ ସେଠାରେ ଯାଗା ପାଉନାହାନ୍ତି କାହିଁକି ନା, ସରକାରୀ ସ୍କୁଲରେ ସ୍ଥାନ ସଂଖ୍ୟା ନିର୍ଦ୍ଦିଷ୍ଟ । ଯେଉଁଠି A ଓ B ଦୁଇଟି Section ଅଛି, ସେଠାରେ ଉପର ଚାରି Classରେ କେବଳ ୪0 ଜଣ ଲେଖାଏଁ ଛାତ୍ର ପଢ଼ିପାରିବେ ଏବଂ ତଳ Classରେ 60 ବା ୪0 ଜଣ ଲେଖାଏଁ । ତହିଁରୁ ଅଧିକ ହେଲେ ସେମନେ କେଉଁଠିକି ଯିବେ ? ସେମାନେ ବାଧ୍ୟ ହୋଇ ବେସରକାରୀ ସ୍କୁଲକୁ ଯିବେ । ବେସରକାରୀ ସ୍କୁଲ ଯେତେବେଳେ ଉଠିବାକୁ ଯାଉଛି, ସେମାନଙ୍କର ଭବିଷ୍ୟତ ସେତେବେଳେ ଅନ୍ଧକାରମୟ । ଏ ବେସରକାରୀ ସାହାଯ୍ୟପ୍ରାପ୍ତ ସ୍କୁଲଗୁଡ଼ିକର ପରିଚାଳନା ଧୀରେ ଧୀରେ ଖରାପରୁ ଅଧିକ ଖରାପ ଦିଗକୁ ଗତି କରୁଛି । ତେଣୁ ମୁଁ ଭାବୁଛି ଯଦି ଛାତ୍ର ବା ଅଭିଭାବକମାନଙ୍କର କୌଣସି ଦୋଷ ନାହିଁ ସେମାନେ ପୂର୍ବଭାବରେ ଫିସ୍ ଦେଉଛନ୍ତି ଏବଂ ସେମାନେ ତାଙ୍କଦ୍ୱାରା ଯାହା ହୋଇପାରିବ ତାହା କରୁଛନ୍ତି । ସେଥିରେ ସରାକାରୀ ଓ ବେସରକାରୀ ସ୍କୁଲ ଶିକ୍ଷକମାନଙ୍କର ଦରମା ମଧ୍ୟରେ କୌଣସି ପାର୍ଥକ୍ୟ ରହିବା ଉଚିତ ନୁହେ । କାହିଁକି ନା ଯେଉଁ ଯୋଗ୍ୟତା ଏମାନଙ୍କଠାରୁ ଆଶା କରଯାଏ ସେ ଯୋଗ୍ୟତା ଉଭୟ ପକ୍ଷରେ ସମାନ ରହିଛି । ତାପରେ Managing Committeeର taxation କରିବା ବା କର ଆଦାୟ କରିବାର କୌଣସି କ୍ଷମତା ନାହିଁ । ସେହି ଦୃଷ୍ଟିରୁ ଏହି ରକମର ପାର୍ଥକ୍ୟ କିପରି ଭାବରେ ଦୂର ହୋଇପାରିବ ବା ମୋଟେ ନ ରହିବ ସେ ବିଷୟରେ ସରକାର ପୁନର୍ବାର ବିଚାର କରିବା ଉଚିତ କାହିଁକି ନା ବର୍ତ୍ତମାନ ଏ ବିଷୟରେ ଯେପରି ହେଉଛି ସେଥିରେ ଶିକ୍ଷା ବିଭାଗର ବହୁତ କ୍ଷତି ହେବ ବୋଲି ଯଦି ଏହି ପ୍ରକାର ପାର୍ଥକ୍ୟ ରଖାଯାଏ ତାହାହେଲେ ଶିକ୍ଷକମାନଙ୍କର ଅଭାବ ହେବ, ଛାତ୍ରମାନଙ୍କର ଘୋର ଅସୁବିଧା ହେବ ଏବଂ ଦେଶର ଶିକ୍ଷା ଧୀରେ ଧୀରେ ନିମ୍ନସ୍ତରକୁ ଚାଲିଯିବ ବୋଲି ମୋର ଆଶଙ୍କା ।

**ଶ୍ରୀ ଶ୍ରଦ୍ଧାକର ସୁପକାର :** ସଭାପତି ମହାଶୟ, ମୋ ନାମରେ 3ଟି କାଟ ପ୍ରସ୍ତାବ ଅଛି । ପ୍ରତ୍ୟେକ 100 ଟଙ୍କା କରି ଏ 3ଟି ଯାକ କାଟ ପ୍ରସ୍ତାବ ମୁଁ ଏକାଠି ଆଗତ କରୁଛି । ଏ 3ଟି ମଧ୍ୟରୁ ମୁଁ ଶେଷଟିକୁ ପ୍ରଥମେ କହି ଶେଷ ଆଡୁ ଆରମ୍ଭ କରୁଛି । ଆମର ଯେଉଁ ପ୍ରଚାର ବିଭାଗ ଅଛି ସେଥିରେ ସରକାରୀ ଭାବରେ ଅପବ୍ୟୟ କାହିଁକି ହେଉଛି । ଏ ବର୍ଷ Supplementary demandରେ 2 ଲକ୍ଷ ଟଙ୍କା ପ୍ରଚାର ବିଭାଗରେ ଖର୍ଚ୍ଚ ହେବ ଏବଂ ପୂର୍ବରୁ Annual budgetରେ ଏ ବର୍ଷ ଯାହାଥିଲା ସେଟା ହେଉଛି 3 ଲକ୍ଷରୁ ବେଶୀ । ଅର୍ଥାତ୍ ମୋଟ୍ 5 ଲକ୍ଷରୁ ବେଶୀ ଟଙ୍କା ରଖା ଯାଇଛି । କିନ୍ତୁ ମୁଁ ଭାବୁଛି ଏଥି ମଧ୍ୟରୁ ପ୍ରକୃତରେ ଲୋକମାନଙ୍କର ପାହୁଲାଏ ସୁଦ୍ଧା ଉପକାରରେ ଲାଗୁନାହିଁ । ଏହି ଟଙ୍କା କିପରି ଅପବ୍ୟୟ ହେଉଛି ତାର ଗୋଟିଏ ଦୃଷ୍ଟାନ୍ତ ମୁଁ ଦେଉଛି । ଯଦି କୌଣସି ଦଳର ନେତା ଯିବେ ତାହାହେଲେ ସରକାରୀ କର୍ମଚାରୀମାନେ ସେମାନଙ୍କ ପାଇଁ ମୋଟର ଏବଂ ଅନ୍ୟାନ୍ୟ ସବୁ ବନ୍ଦୋବସ୍ତ କରିବେ । ତାଙ୍କପାଇଁ Programme ଛପାଇବେ । ମୁଁ ଭାବୁଛି ସରକାରୀ ଦୃଷ୍ଟିରୁ ଏଇଟା ବିଧିସଂଗତ ହେଉନାହିଁ । ଭବିଷ୍ୟତରେ ଯଦି ଏ ସରକାର ପରିବର୍ତ୍ତନ ହୁଏ ଏବଂ ଅନ୍ୟ ଦଳ ଯଦି ସରକାର ଗଠନ କରନ୍ତି, ତାହାହେଲେ ଏହି ପ୍ରକାର ପ୍ରଥା ପ୍ରବର୍ତ୍ତନ କରାଯାଇ ପାରିବନାହିଁ ବୋଲି ମୁଁ ଭାବୁଛି । ସେ ଦୃଷ୍ଟିରୁ ମୁଁ ଭାବୁଛି ଯେ ପ୍ରଚାର ବିଭାଗରେ ନିଯୁକ୍ତ ହୋଇଥିବା କର୍ମଚାରୀମାନଙ୍କୁ ଯଦି ଅନ୍ୟ ଦେଶ ହିତକର ବିଭାଗରେ ସ୍ଥାନ ଦିଆଯାଏ, ତାହାହେଲେ ଆମ ସରକାରଙ୍କର କୌଣସି କ୍ଷତି ହେବ ନାହିଁ ।

ତାପରେ ଦ୍ୱିତୀୟ କଥା, ଅଫିସରମାନଙ୍କର ଘନ ଘନ ପରିବର୍ତ୍ତନ କାହିଁକି ହେଉଛି ? ଏ ବିଷୟରେ ଭାବିଲାବେଳେ ମୋର ଗୋଟିଏ ଶ୍ଳୋକ ମନେ ପଡ଼େ, ଯାହାକି ମୁଁ ଏଠାରେ ଆବୃତ୍ତି କରୁଛି । ଜଣେ ସୁନ୍ଦରୀ କନ୍ଦୁକ କ୍ରୀଡ଼ା କରୁଛନ୍ତି ତାଙ୍କ ବିଷୟରେ ବର୍ଣ୍ଣନା କରିବାକୁ ଯାଇଁ କବି କାଳିଦାସ ଲେଖିଛନ୍ତି—

(ଶ୍ଳୋକ)—"ଏ କୋଽପି ତ୍ରୟ ଇବ ଭାତି କନ୍ଦୁକୋଽୟଂ
କାନ୍ତାୟାଃ କରତଳ ରାଗ ରକ୍ତ ରକ୍ତଃ
ଭୂମୌ ତଚ୍ଚରଣ ନଖାଂଶୁ ଗୌର ଗୌରଃ
ସଃ ସ୍ଥ ସ୍ତନ୍ନୟନ ମରୀଚି ନୀଳ ନୀଳଃ ।"

ଏହାର ଅର୍ଥ ହେଉଛି କନ୍ଦୁକ କ୍ରୀଡ଼ା ସମୟରେ ଯେତେବେଳେ ସେହି କନ୍ଦୁକ ବା ପେଣ୍ଡୁଟା ତାଙ୍କ ହାତରେ ଅଛି, ସେତେବେଳେ ତାହା ଲାଲ ଦେଖାଯାଉଛି । ଯେତେବେଳେ ତାହା ତଳକୁ ଯାଉଛି, ସେତେବେଳେ ତାହା ନଖଭଳି ଧଳା ଦେଖାଯାଉଛି ଏବଂ ଯେତେବେଳେ ଆକାଶରେ ଉଠୁଛି, ସେତେବେଳେ ତାହା ତାଙ୍କ ଆଖିପରି ନୀଳ

ଦେଖାଯାଉଛି । ଏହିପରି ଆମେ ଦେଖୁଛୁ ଏହି କନ୍ଦୁକ ପରି ସରକାରୀ କର୍ମଚାରୀମାନଙ୍କର ଘନ ଘନ ପରିବର୍ତ୍ତନ ଦେଖାଯାଉଛି । ସେମାନେ କେତେବେଳେ କେଉଁଠି ଅଛନ୍ତି ତାହା ଠିକ୍ କରିବା ଅସମ୍ଭବ । ଯଦି ଆମେ ଗୋଟାଏ ଚିଠି ବଲାଙ୍ଗିର ସିଭିଲ ସର୍ଜନ ପାଖକୁ ଲେଖିବା, ତାହାହେଲେ ଚିଠି ଲେଖିବା ଦିନ ଯେ Bolangir ରେ Civil Surgeon ଥିଲେ ସେ ହୁଏତ ଚିଠି ସେଠାରେ ପହଞ୍ଚିଲା ବେଳକୁ Sambalpur Civil Surgeon ହୋଇଯାଇଛନ୍ତି । ତା' ପରଦିନ ହୁଏତ ଢେଙ୍କାନାଳ ବା କେନ୍ଦୁଝରକୁ ବଦଳି ହୋଇଯାଇଛନ୍ତି । ଏହା ଘନ ଘନ ପରିବର୍ତ୍ତନର ପ୍ରକୃତ କାରଣ କ'ଣ ଏବଂ ଏହା ଫଳରେ ସରକାରଙ୍କର କେତେ ଅଧିକା ଖର୍ଚ୍ଚ ହୋଇଛି ସରକାର ବିବେଚନା କରି ଦେଖିଛନ୍ତି କି ? ପୂର୍ବରୁ First Class Officerମାନଙ୍କୁ ଯେଉଁ rateରେ ଗସ୍ତ ଖର୍ଚ୍ଚା ଦିଆଯାଉଥିଲା, ତାହା ବହୁତ ଗୁଣ ବଢ଼ି ଯାଇଛି । ମୁଁ ଜଣେ First Class Officerଙ୍କ ଠାରୁ ଶୁଣିଥିଲି ଯେ ବର୍ତ୍ତମାନ ଜଣେ First Class Officer 150 ମହଣ ଜିନିଷ ସରକାରୀ ଖର୍ଚ୍ଚରେ ନେଇପାରିବେ ଏବଂ ମହଣକୁ ମାଇଲ ପ୍ରତି ଏକ ଅଣା କରି ଭଡ଼ା ଦିଆଯାଉଛି । ଏହିପରି ଜଣେ ଅଫିସରଙ୍କ ଗସ୍ତ ଖର୍ଚ୍ଚ ହିସାବ କରି ଦେଖିଲେ ଆମେ ବୁଝିପାରିବା ଯେ, ଏ ଯେଉଁ retrenchment ବା ଖର୍ଚ୍ଚ କାଟ ବ୍ୟବସ୍ଥା ହେଉଛି ସେତା ଆମକୁ କୌଣସି ପ୍ରକାରେ ସାହାଯ୍ୟ କରିପାରିବ ନାହିଁ । ଏ ବିଷୟ ଯେପରି ଅତି ଶୀଘ୍ର ବନ୍ଦ ହୁଏ ସରକାର ସେଥିପ୍ରତି ଦୃଷ୍ଟି ଦେବେ । ବଡ଼ ବଡ଼ ଅଫିସରଙ୍କ କଥା ତ ଗଲା । ଛୋଟ ଅଫିସରଙ୍କ କଥା କହିବି । ମୁଁ ଯେତେବେଳେ ସମ୍ବଲପୁରରୁ ଆସୁଥିଲି ସେତେବେଳେ ମୋ ସାଙ୍ଗରେ Supply ବିଭଗରେ କାମ କରୁଥିବା ଜଣେ Officer ଆସୁଥିଲେ । ସେ ମତେ କହିଲେ ଗତ 2 ବର୍ଷ ମଧ୍ୟରେ ତାଙ୍କର 10ଟି ଯାଗାକୁ ପରିବର୍ତ୍ତନ ହୋଇଛି । ଯଦି ଏପରି ପରିବର୍ତ୍ତନ ହୁଏ ଏବଂ ସେ ପରିବର୍ତ୍ତନର ଯଦି କୌଣସି ନିୟମ ବା ନୀତି ନଥାଏ, ତାହାହେଲେ ଏ ବାବଦରେ ଆମର ବ୍ୟୟ କେତେ ବଢ଼ିଯାଉଛି, ତାହା ବିଚାର କରିବାର କଥା । ମୁଁ ଏଇ ସରକାରୀ ଶାସନ କଳରେ ଲାଞ୍ଚ ମିଛ କିପରି ବଢ଼ି ଚାଲିଛି, ସେ ବିଷୟରେ ଗୋଟିଏ ଦୃଷ୍ଟାନ୍ତ ଦେଇ ମୋର ବକ୍ତବ୍ୟ ଶେଷ କରିବି ।

କାଲି ମାନ୍ୟବର ପ୍ରଧାନମନ୍ତ୍ରୀ ମହୋଦୟ କହିଲେ, ଯେକୌଣସି ଲାଞ୍ଚ ମିଛ ପ୍ରତି ମୋର ଦୃଷ୍ଟି ଆକର୍ଷଣ କରଯାଏ, ମୁଁ ତା'ର ବିହିତ ପ୍ରତିକାର କରିବାକୁ ଚେଷ୍ଟା କରିବି । ମୁଁ ମୋର ଜଣେ ବନ୍ଧୁଙ୍କ ବ୍ୟକ୍ତିଗତ ଅଭିଜ୍ଞତାରୁ କିଛି କହିବାକୁ ଚାହେଁ । ମୋର ସେହି ବନ୍ଧୁ ଯେ କି ସମ୍ବଲପୁର କଲେଜରେ ଅଧ୍ୟାପକ କାର୍ଯ୍ୟ କରନ୍ତି । ସେ ଗ୍ରୀଷ୍ମ ଛୁଟିରେ ତାଙ୍କ ଗାଁରେ ଥିଲେ ସେତେବେଳେ ସେ ଗାଁରେ mutation proceedings ଚାଲିଥିଲା ଏବଂ ସେଥିପାଇଁ ଦାଖଲ ଖାରଜ ଚାଲିଥାଏ । ଏହି ଦାଖଲ ଖାରଜ proceeding ସମୟରେ ଅମୀନମାନେ କିଛି କିଛି ଆଦାୟ କରନ୍ତି । ସେଇଟା

ବୋଧହୁଏ ସମସ୍ତେ ନିଶ୍ଚୟ ଜାଣିଥିବେ । ଯଦିଓ ସେଟା ପ୍ରକାଶ୍ୟ ଭାବରେ ସ୍ୱୀକାର କରି ହେବ ନାହିଁ, ସେ professor ସେ ଗାଁର ଶିକ୍ଷିତ ଲୋକ ତାଙ୍କୁ ଯେତେବେଳେ ଲୋକମାନେ ଆସି କରି କହିଲେ, ଏପରି ଭାବରେ ଗୁରିଅଣା ଲେଖାଏଁ ସରକାରୀ ଫିସ୍ ଆଦାୟ ହେବା ସ୍ଥଳେ 25/30 ଟଙ୍କା ଆଦାୟ କରାଯାଉଛି । ଏହାର କ'ଣ ପ୍ରତିକାର କରାଯାଇ ପାରିବ ନାହିଁ । ସେ କହିଲେ ଯେ ଆପଣମାନେ ଲେଖି କରି ଦିଅନ୍ତୁ, ମୁଁ ତାର ପ୍ରତିକାର ଦିଗରେ ଚେଷ୍ଟା କରିବି । ସେମାନେ ଲେଖି କରି ଦେଲେ । ସେ ବରଗଡ଼ Subdivisional Magistrateଙ୍କ ଠାରେ ଆପତ୍ତି କରିଥିଲେ । କିନ୍ତୁ ସେ କହିଲେ ଏ ବିଷୟରେ ମକଦ୍ଦମା ଦାଏର କରନ୍ତୁ । ସେ ତାଙ୍କର ଦାୟିତ୍ୱ ନ ନେଇ କହିଲେ, ସରକାରଙ୍କ ତରଫରୁ enquiry କରାଯାଉ ଓ ଦୋଷୀ ପ୍ରତି ବିହିତ ଦଣ୍ଡ ଦେବା ହେଉ । ସବ୍‌ଡ଼ିଭିଜନାଲ ମାଜିଷ୍ଟ୍ରେଟ କୌଣସି ରକମର ତଦନ୍ତ କଲେ ନାହିଁ କିନ୍ତୁ ପରେ ଯେତେବେଳେ ପଟୁଆରୀମାନେ ଜାଣିଲେ ଯେ, ତାଙ୍କ ବିରୁଦ୍ଧରେ ଅଭିଯୋଗ ହୋଇଛି, ସେମାନେ ଲୋକଙ୍କ ପ୍ରତି ବେଶି କଡ଼ା ହେଲେ । ଫଳରେ ହେଲା କ'ଣ ? ମୋର ବନ୍ଧୁ professor ମହାଶୟ କୌଣସି ରକମର ପ୍ରତିକାର ପାଇଲେ ନାହିଁ ଏବଂ ଅପର ପକ୍ଷରେ କହିଲେ ଯେ ଗାଁକୁ ଫେରି ଯାଇ ସେମାନଙ୍କ ଆଗରେ ମୁହଁ ଦେଖାଇବା ସମ୍ଭବ ହେବ ନାହିଁ । ଏପରି ଯଦି ଗ୍ଲେ, ଦୋଷୀକୁ ଯଦି ଦଣ୍ଡ ନ ହୁଏ, ତାହେଲେ ଆମର ସାଧାରଣ ଉନ୍ନତି ହେବାର ଆଶା ଦେଖାଯାଉ ନାହିଁ ।

## 1950-51 ବର୍ଷ ବଜେଟ୍ ଉପରେ ଭାଷଣ

ଡ଼ଃ ସୂପକାର ସଦ୍ୟଲବ୍ଧ ସ୍ୱାଧୀନତାକୁ ଏକ ଉଜ୍ଜ୍ୱଳ ନବପ୍ରଭାତର ଆଗମନୀ ବୋଲି ନଭାବି "ଏକ ତମସାଚ୍ଛନ୍ନ ମେଘୁଆ ପ୍ରଭାତ"ର ସୂଚନା ଭାବରେ ଗ୍ରହଣ କରିଛନ୍ତି । କାରଣ ସେତେବେଳେ ଦେଶରେ ଭରି ରହିଥିଲା ଅଭାବ ଅନାଟନ, ବିଶେଷତଃ ଖାଦ୍ୟାଭାବର ଘନ ଅନ୍ଧକାର । ତେଣୁ ସେ ସ୍ୱାଧୀନତାର ଗୌରବ ଅନୁଭବ କରି ନପାରି ବୈଷମ୍ୟ ବିଭ୍ରାଟର ଆଶଂକା କରିଛନ୍ତି । ପ୍ରଶାସନ କ୍ଷେତ୍ରରେ ଯେପରି ଅମିତବ୍ୟୟିତା, ଅପଚୟ ଓ ଦୁର୍ନୀତି କ୍ରମେ ବଢିବାରେ ଲାଗିଛି, ସେ ସେଥିରେ ବିଶେଷ ଆଶାବାଦୀ ହୋଇପାରିନାହାନ୍ତି । ଉଦାହରଣ ସ୍ୱରୂପ, ସେ ଗ୍ରାମମଙ୍ଗଳ ବିଭାଗର ଅହେତୁକ ଖର୍ଚ୍ଚ ବୃଦ୍ଧି ଓ ରେଭେନ୍ୟୁବୋର୍ଡର ଉଚ୍ଚବେତନ ଭୋଗୀ ଅଧିକାରୀଙ୍କ ସଂଖ୍ୟାବୃଦ୍ଧି ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ଡ଼ାକ୍ତରଖାନାଗୁଡ଼ିକରେ ଔଷଧପତ୍ରର ଅଭାବ, ବିଦ୍ୟାଳୟ ମହାବିଦ୍ୟାଳୟରେ ଅଧ୍ୟାପକ ଗୃହ, ଛାତ୍ରାବାସର ଅଭାବ ଅସୁବିଧା, କୃଷି ଓ ଶିଳ୍ପ ମଧ୍ୟରେ ଅବାଞ୍ଛିତ ପ୍ରତିଯୋଗିତା, ସମ୍ବଲପୁର ବୁଡ଼ି ଅଞ୍ଚଳର ଲୋକମାନଙ୍କ ପ୍ରତି ସରକାରଙ୍କ ଉଦାସୀନତା ଓ ଅବହେଳାକୁ ସେ କଠୋର ସମାଲୋଚନା କରିଛନ୍ତି । ବୁଡ଼ି ଅଞ୍ଚଳ ଲୋକମାନଙ୍କର ପୂନର୍ବାସର ବ୍ୟବସ୍ଥା ଓ କ୍ଷତିପୂରଣ ଦେବା ଉପରେ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ହୀରାକୁଦ ବନ୍ଧ ତଥା ଜଳ ଭଣ୍ଡାର ଯୋଗୁଁ ଉର୍ବର ଚାଷ ଜମିକୁ ହରାଇ ସମ୍ବଲପୁର ବାସୀମାନେ ଖାଦ୍ୟାଭାବର ସମ୍ମୁଖୀନ ହେବେ ବୋଲି ଭାରି ଆଶଂକା କରିଛନ୍ତି । ସରକାରଙ୍କୁ ଏଥିପାଇଁ ପୂର୍ବରୁ ଯତ୍ନବାନ ହେବାକୁ ସେ ପରାମର୍ଶ ଦେଇଛନ୍ତି ।

ଓଡ଼ିଶାର ଏକମାତ୍ର ବିଶ୍ୱବିଦ୍ୟାଳୟ ଉତ୍କଳକୁ ଅର୍ଥ ଅନୁଦାନ କିପରି ନିତ୍ୟାନ୍ତ ଅପର୍ଯ୍ୟାପ୍ତ ହେଉଛି ଏବଂ "ଦରକାର ତୁଳନାରେ ସମୁଦ୍ରକୁ ଶଙ୍ଖେ ପଣା" ଭଳି ହେଉଛିବୋଲି କଟୁ ମନ୍ତବ୍ୟମାନ ଦେଇ ସରକାର ଏହାର ଆଶୁ ପ୍ରତିକାର କରିବାକୁ ଦାବି କରିଛନ୍ତି । ସେ ତେଣୁ ଯଥାର୍ଥରେ କହିଛନ୍ତି, "ଏପରି ଯଦି ହୁଏ, ତାହେଲେ ଆଜି କୁଳପତି ମହୋଦୟ ( ଡ଼ଃ ପ୍ରାଣକୃଷ୍ଣ ପରିଜା) ଯେପରି ଭାବରେ କହୁଥିଲେ ଏହି ସାମାନ୍ୟ ଦାନ ( ଟ21,295·00 ) ଗ୍ରହଣ କରି ବିଶ୍ୱବିଦ୍ୟାଳୟ ବେଶୀ ଦୁଃଖିତ ହେବ ଏବଂ ଏପରି ଅବସ୍ଥା ମଧ୍ୟ ଉପୁଜିପାରେ ଯେ, ବିଶ୍ୱବିଦ୍ୟାଳୟ ଏହାକୁ ଗ୍ରହଣ ମଧ୍ୟ କରି ନ ପାରେ", ସରକାର ଏ ଦିଗରେ ପୁର୍ନବିଚାର କରି ବିଶ୍ୱବିଦ୍ୟାଳୟ ପ୍ରତି ତାଙ୍କର କର୍ତ୍ତବ୍ୟ କରିବେ ଏବଂ ଆମର ଯାହା ନିଅଣ୍ଟ ପଡୁଛି, ସେଥିର ଉପଯୁକ୍ତ ଅଂଶ ସରକାର ବହନ କରିବାକୁ ନିଜର ଗୁରୁ ଦାୟିତ୍ୱ ମନେ କରିବେ ବୋଲି ଆଶା କରିଛନ୍ତି ।

## Budget for the year 1950-51

**ଶ୍ରୀ ଶ୍ରଦ୍ଧାକର ସୁପକାର**: ମାନନୀୟ ସଭାପତି ମହୋଦୟ, ଗତ ବର୍ଷକ ମଧ୍ୟରେ ଆମ ପ୍ରଦେଶ ଏବଂ ଆମ ଦେଶ ଯେପରି ଭାବରେ ଗତି କରୁଛି ଏବଂ ନିଜ ନିଜ ନିର୍ବାଚନ ମଣ୍ଡଳୀରେ ସୁଖ ଦୁଃଖ ଏବଂ ଅଭାବ ଅଭିଯୋଗ ଯାହା ଅଛି, ସେ ବିଷୟରେ କହିବାକୁ ବର୍ଷକ ଭିତରେ ଗୋଟିଏ ମାତ୍ର ସୁଯୋଗ ମିଳିଥାଏ ଏବଂ ସେଇଟି ହେଉଛି ଏ ବଜେଟ ଆଲୋଚନା । ତେଣୁ ମୁଁ ଏହି ବଜେଟର ଆଲୋଚନା ଅର୍ଥନୈତିକ ଦୃଷ୍ଟି କୋଣରୁ ନ କରି ସାଧାରଣ ନାଗରିକ ହିସାବରେ କରିବାକୁ ଯାଉଛି । ଏହି ବର୍ଷକ ମଧ୍ୟରେ ଆମେ ପୂର୍ଣ୍ଣ ସାଧୀନତା ଲାଭ କରିଛୁ । ଆଉ ମହାମାନ୍ୟ ଲାଟ ସାହେବଙ୍କ କଥାରେ କହିବାକୁ ଗଲେ ପରାଧୀନତା, ଦୀର୍ଘ ନିଦ୍ରା ଓ ଦୁଃସ୍ୱପ୍ନପୂର୍ଣ୍ଣ ରାତ୍ରି ଦୂର ହୋଇ ସ୍ୱାଧୀନତାର ପ୍ରଭାତ ଦେଖା ଦେଇଛି । କିନ୍ତୁ ମୁଁ ଭାବେ ଏହି ପ୍ରଭାତ ଉଷାର ସଙ୍କେତ ତରୁଣ ଆଲୋକ ପରିବର୍ତ୍ତେ ଦେଖାଦେଇଛି ଏକ ତମସାଛନ୍ନ ମେଘୁଆ ପ୍ରଭାତ । ଭାରତର ସ୍ୱାଧୀନତାର ପ୍ରଭାତରେ ସ୍ୱଚ୍ଛ ଆଲୋକର ପରିବର୍ତ୍ତେ ଆମେ ଦେଖିବାକୁ ପାଉ, ଏକ ଆଶଙ୍କା ଓ ଅବସାଦପୂର୍ଣ୍ଣ ଭାବନା । ଆମେ ଦେଖୁ ଯେ ଚୀନ, ବ୍ରହ୍ମଦେଶ ଏବଂ ଇଣ୍ଡୋଚୀନରେ ଯେଉଁ ଝଡ଼ ବହି ଯାଉଛି, ଭାରତ ଏବଂ ପାକିସ୍ଥାନର କେତେ ଅଞ୍ଚଳରେ ବିଶେଷତଃ ପାକିସ୍ଥାନରେ, ଯେପରି ସାଂପ୍ରଦାୟିକ ବିଦ୍ୱେଷର ବିଦ୍ୟୁତ ଦେଖା ଦେଉଛି ଏବଂ ସର୍ବଶେଷରେ ଆମର ନିଜ ଦେଶର ଅଭାବ, ଅନାଟନ ବିଶେଷ କରି ଖାଦ୍ୟାଭାବର ଅନ୍ଧକାର ଦେଖାଯାଉଛି, ସେଥିରୁ ମୁଁ ଭାବୁଛି, ଏହି ସ୍ୱାଧୀନତା ପ୍ରଭାତର ଯେ ଗୌରବ—ସେ ଗୌରବ ଭାଙ୍ଗି ଯାଇଛି । ଆମର ନବ ଶାସନ ବିଧାନ ଅନୁସାରେ ଆମର ଆଦର୍ଶ ହେଲା ସର୍ବାଙ୍ଗୀନ ସାମ୍ୟ ପ୍ରତିଷ୍ଠା କରିବା । ତା' ପରିବର୍ତ୍ତେ ଆମେ ଦେଖିବାକୁ ପାଉଛୁ ଯେ, ଆମର ଯେପରି ଶାସନ କାର୍ଯ୍ୟ ଚାଲିଛି, ସେଥିରେ ସାମ୍ୟ ପ୍ରତିଷ୍ଠା ପରିବର୍ତ୍ତେ ବୈଷମ୍ୟ ଧୀରେ ଧୀରେ ବଢି ଯାଉଛି । ଆମର ଯେତିକି

ଅଭାବ ପଡୁଛି, ସେଥି ସଙ୍ଗେ ସଙ୍ଗେ ଆମର ଅମିତବ୍ୟୟିତା ମଧ୍ୟ ବୋଧହୁଏ ସେହି ପରିମାଣରେ ବଢି ଯାଉଛି । ନୂତନ ନୂତନ ବିଭାଗର ସୃଷ୍ଟି କରାଯାଇ ଓ ସେଥିରେ ଉଚ୍ଚ କର୍ମଚାରୀ ନିଯୁକ୍ତ କରାଯାଇ ଶାସନକୁ ବ୍ୟୟବହୁଳ କରାଯାଉଛି । ଅନ୍ୟ ପକ୍ଷରେ ଅଳ୍ପ ବେତନଭୋଗି କର୍ମଚାରୀମାନଙ୍କୁ କାର୍ଯ୍ୟରୁ ଅନ୍ତର କରାଯାଉଛି । ଏହି ନୂତନ ବିଭାଗମାନଙ୍କ ମଧ୍ୟରେ ଆମେ ଦେଖିବାକୁ ପାଉ, ଗ୍ରାମ ମଙ୍ଗଳ ବିଭାଗର ସୃଷ୍ଟି ଓ ବିକାଶ—ଏହି ଅଳ୍ପ କେତେକ ବର୍ଷ ମଧ୍ୟରେ ହୋଇଛି । ତା'ପରେ Revenue Board ଇତ୍ୟାଦି ସୃଷ୍ଟି ହେବ ବୋଲି ସୂଚନା ମିଳୁଛି । ଏହିପରି ବଡ଼ ବଡ଼ ବିଭାଗ ସୃଷ୍ଟି କରାଯାଇ ସେଥି ନିମିତ୍ତ ଉଚ୍ଚ ବେତନରେ ଅଫିସରମାନଙ୍କୁ ନିଯୁକ୍ତ କରାଯାଇ ଅତି ବିବେକଶୂନ୍ୟ କାର୍ଯ୍ୟମାନ କରାଯାଉ ଥିବାରୁ ଆମ ଶାସନର ଶ୍ରୀହୀନତା ଜଣା ପଡୁଛି । ସାଧାରଣ ଦୃଷ୍ଟି କୋଣରୁ ଦେଖିବାକୁ ଗଲେ ଆମେ ଦେଖୁ ଯେ ଯେଉଁ ଜିଲ୍ଲାମାନଙ୍କରେ ଜଣେ Magistrateଙ୍କ ଦ୍ୱାରା କାମ ଚାଲୁଥିଲା, ବର୍ତ୍ତମାନ ସେଠାରେ ଦେଖାଯାଉଛି ଯେ Magistrate ଓ ଅତିରିକ୍ତ ମାଜିଷ୍ଟ୍ରେଟ ମିଶି 3-4 ଜଣ ଲେଖାଏଁ ରହୁଛନ୍ତି । Deputy Magistrate ଏବଂ Sub-Deputy Magistrate ସେହି ପରିମାଣରେ ବଢି ଯାଇଛି । ଏହି ପ୍ରକାର ବ୍ୟୟ ବୃଦ୍ଧି ସଙ୍ଗେ ସଙ୍ଗେ ଆମେ ଦେଖିବାକୁ ପାଉଛୁ ଯେ, ସରକାରୀ ଦପ୍ତରମାନଙ୍କରେ ଚିଠି ପଠାଇବାକୁ ସାମାନ୍ୟ ଡ଼ାକ ଟିକଟ ଅଭାବରୁ ଚିଠି ପତ୍ର ଯାଇପାରୁ ନାହିଁ । ଏହାବାଦ ଅଦାଲତକୁ ଯେଉଁ ସାକ୍ଷୀ-ମାନେ (ସରକାରୀ) ଆସୁଛନ୍ତି, ତାଙ୍କର ଖାଦ୍ୟ ଓ ଗସ୍ତ ଖର୍ଚ୍ଚ ଦେବାକୁ ଟଙ୍କାର ଅଭାବ ପଡୁଛି । ତା'ପରେ Hospital ମାନଙ୍କରେ ଦେଖାଯାଉଛି ଯେ, ଡ଼ାକ୍ତରମାନେ ଯଥେଷ୍ଟ ଅଛନ୍ତି । ରୋଗୀମାନଙ୍କ ସଖ୍ୟା ବଢି ଚାଲିଛି କିନ୍ତୁ ସେହି ରୋଗୀମାନଙ୍କର ଖାଦ୍ୟ ଏବଂ ଔଷଧ ଆଦି ଖର୍ଚ୍ଚ ପାଇଁ ଯେତିକି ଟଙ୍କା ମଞ୍ଜୁର ହେଉଛି, ତାହା ବର୍ଷ ଶେଷର ଅନେକ ପୂର୍ବରୁ ସରି ଯାଉଛି । ଶିକ୍ଷା ବିଭାଗରେ ଦେଖାଯାଉଛି, ସ୍କୁଲ ଘରମାନ ଅଛି, ଛାତ୍ରମାନେ ଅଛନ୍ତି କିନ୍ତୁ କୌଣସି ସ୍କୁଲରେ ଶିକ୍ଷକ ଶ୍ରେଣୀ ପୁରାଭାବରେ ନାହାନ୍ତି । ଏହାର କାରଣ ହେଉଛି, ସେମାନଙ୍କର ବେତନର ସ୍ୱଳ୍ପତା । କୃଷି ବିଭାଗର କଥା ଯଦି ଧରାଯାଏ—ତାହାହେଲେ ଆମେ ଦେଖିବା ଖର୍ଚ୍ଚ ଯେତିକି ବଢୁଛି, ଉତ୍ପାଦନ ସେହି ପରିମାଣରେ କମିଯାଉଛି । ତା'ପରେ ବିଚାର ବିଭାଗ ବିଶେଷତଃ ଫୌଜଦାରୀ ବିଚାର ବିଭାଗରେ ଦେଖା-ଯାଉଛି ଯେ, କର୍ମଚାରୀ ସଂଖ୍ୟା ବଢି ଚାଲିଛି, କିନ୍ତୁ ପୂର୍ବରୁ ଯେପରି ଭାବରେ ମକଦମାମାନ ଅମୀମାଂସିତ ଭାବରେ ଅନେକ ଦିନ ଧରି ରହୁଥିଲି, ଆଜିକାଲି ମଧ୍ୟ ସେହିପରି ରହୁଛି । ତତ୍‌ପରେ ପୂର୍ତ୍ତ ବିଭାଗ ବିଷୟ ଦେଖିଲେ ଜଣାଯିବ ଯେ, ଏହି ବିଭାଗରେ ଯାହା ଖର୍ଚ୍ଚ ହେଉଛି, ସେହି ଅନୁପାତରେ ଆଖିକୁ ଦିଶିଲା ଭଳିଆ କିଛି କାର୍ଯ୍ୟ ହେଉନାହିଁ । ସମ୍ବଲପୁର କଲେଜ ଘରକାମ ଦେଖିଲେ ଜଣାଯିବ ଯେ, ଗତବର୍ଷ ଏକଲକ୍ଷ ଟଙ୍କା ବ୍ୟୟରେ ଅଧ୍ୟା-ପକମାନଙ୍କୁ ରହିବା ପାଇଁ ଗୃହ ନିର୍ମାଣ ହେଲା ଏବଂ ଛାତ୍ରାବାସ ମଧ୍ୟ ହେଲା; କିନ୍ତୁ ସେହି 1 ଲକ୍ଷ ଟଙ୍କା ସହିତ ଯଦି ସମ୍ବଲପୁର କଲେଜର ପୂର୍ବ ଘର ଯେଉଁଥିରେ କି ବର୍ତ୍ତମାନ ସମ୍ବଲପୁର କଲେଜ ହେଉଛି ଏବ ଅଧ୍ୟକ୍ଷ ଆବାସ ଓ ପୁରାତନ ଛାତ୍ରବାସ ମିଶାଇ ଦିଆଯାଏ,

ତାହା ମଧ୍ୟ ଲକ୍ଷେ ଟଙ୍କାରେ ହୋଇପାରିବ । ଏହି ଘରମାନଙ୍କର ତୁଳନା କଲେ ଆମେ ଦେଖିବାକୁ ପାଉ ଯେ ଏତେ ବେଶୀ ଟଙ୍କାରେ ତିଆରି ହୋଇଥିବା ନୂଆ ଘର କୌଣସି ରକମରେ ପୁରୁଣା ଘରଠାରୁ ଭଲ ନୁହେଁ । ଏଥିରୁ ଆମେ ସ୍ପଷ୍ଟ ବୁଝି ପାରୁଛି ଯେ କେତେ ଅପବ୍ୟୟ ହେଉଛି ଏବଂ କେତେ ଅସନ୍ତୋଷଜନକ ଖର୍ଚ୍ଚ ହେଉଛି । ତା'ପରେ ଆମେ ଦେଖିବାକୁ ପାଉଛି ଯେ ଅନେକ ନୂଆ ନୂଆ ଯୋଜନା ହେଉଛି । ଏହିପରି ଭବରେ କାର୍ଯ୍ୟ ହେଲେ ସେହି ଯୋଜନାମାନ କେତେଦୂର ସଫଳ ହୋଇ ପାରିବ, ସେ ବିଷୟରେ ଆଶଙ୍କା କରୁଛି । ଆମ ହାତରେ ଟଙ୍କା ନାହିଁ କିମ୍ବା ଆମର କାର୍ଯ୍ୟ କରିବାର ଶକ୍ତିନାହିଁ । ଆମର ସମଗ୍ର ପ୍ରଦେଶରେ ଯାତାୟତର ସୁବିଧା ପାଇଁ ଗୋଟିଏ ରାସ୍ତା କରିବା ପାଇଁ ଏକ ଯୋଜନା ହୋଇଥିଲ ବୋଲି ମୁଁ ଶୁଣିଥିଲି ସେଥିରେ ଅନେକ ଟଙ୍କା ଖର୍ଚ୍ଚ ହେବ । ସେହି ରାସ୍ତାଟି ହେଲେ ଯାତାୟତର ଅସୁବିଧା ଅନେକ ପରିମାଣରେ ଦୂର ହୋଇଯିବ ବୋଲି ଆମର ବିଶ୍ୱାସ । ତା'ପରେ ଖାଦ୍ୟ ସମସ୍ୟା ବିଷୟରେ ଆମର ଏକ ଯୋଜନା ଅଛି । ତାହାଛଡ଼ା ପଣ୍ଡିତ ଜବାହାରଲଲ ନେହୁର ମଧ୍ୟ ୧୨୫୧ ପୂର୍ବରୁ ଆମେ ଖାଦ୍ୟ ବିଷୟରେ ଆତ୍ମନିର୍ଭରଶୀଳ ହୋଇ ପାରିବ ବୋଲି କହିଛନ୍ତି । କିନ୍ତୁ ସେଥିପାଇଁ ଯେଉଁ ପରିମାଣରେ ସାଧନାର ପ୍ରୟୋଜନ ତାହା ଆମର ନାହିଁ । ଏଥିର ଗୋଟିଏ ପ୍ରଧାନ କାରଣ ହେଉଛି ଯେ, ଆମ ପ୍ରଦେଶରେ କୃଷି ଓ ଶିଳ୍ପ ମଧ୍ୟରେ ଯେପରି ପ୍ରତିଯୋଗିତା ହେଉଛି, ବଡ଼ ଶିଳ୍ପ ଏବଂ କୁଟୀର ଶିଳ୍ପ ମଧ୍ୟରେ ଯେପରି ପ୍ରତିଯୋଗିତା ହେଉଛି, ଶ୍ରମିକ ଅଭବ ଯେପରି ବଢୁଛି, ସେଥିରେ ଆମର ଖାଦ୍ୟ ସମସ୍ୟା ସମାଧାନ ହୋଇପାରିବ ବୋଲି ମୋର ବିଶ୍ୱାସ ହେଉନାହିଁ । ତା'ପରେ ସମ୍ବଲପୁରର ବିଶେଷ ସମସ୍ୟା ବିଷୟରେ ମୁଁ କେତେକ କଥା କହିବି । ସମ୍ବଲପୁରରେ ବୁଡ଼ି ଅଞ୍ଚଳ ବୋଲି ଗୋଟିଏ ଯାଗା ଅଛି । ସେହି ଅଞ୍ଚଳ ଯୋଗୁଁ ଓଡ଼ିଶା ପ୍ରଦେଶରେ ଦିନେ ମହୁ ଓ ଦୁଧର ଧାରା ପ୍ରବାହିତ ହେବ ବୋଲି କୁହାଯାଉଛି । କିନ୍ତୁ ସେହି ଅଞ୍ଚଳ କିପରି ଅବହେଳିତ ହେଉଛି, ତାହାର ସଂକ୍ଷିପ୍ତ ସୂଚନା ମୁଁ ଏଠାରେ କିଛି ଦେଉଛି । ହୀରାକୁଦ ଜଳଭଣ୍ଡାର ଦ୍ୱାରା ଏହି ଅଞ୍ଚଳ ଜଳମଗ୍ନ ହେବ ବୋଲି ଏଠାରେ ଯାହା କିଛି ରାସ୍ତାଘାଟ ଅଛି, ତାହାର କୌଣସି ରକମ ମରାମତି ହେଉନାହିଁ । ଗତ ଦୁଇ/ଚାରି ବର୍ଷ ହେଲା ଏହି ଅଞ୍ଚଳର ରାସ୍ତାଘାଟର ମରାମତିରେ ଆଶାନୁରୂପ ଅର୍ଥ ବ୍ୟୟ କରାଯାଇ ନାହିଁ । ଏହି ଅଞ୍ଚଳରେ ଯେଉଁ ବିଦ୍ୟାଳୟ ଓ ଛାତ୍ରାବାସମାନ ଅଛି ତାହା ଗୋଟିକ ପରେ ଗୋଟିଏ ଧୂଳିସାତ ହୋଇ ଯାଉଛି ଏବଂ ପିଲମାନେ ପଢିବା ପାଇଁ ଯାଗା ନାହିଁ । ଗୋରୁ ଗୁହାଳ ପରି ଘର ଶିକ୍ଷକମାନଙ୍କର ରହିବା ପାଇଁ ଦିଆଯାଉଛି । ଫଳରେ ଗୋରୁ ଓ ଗୋରୁଙ୍କର ରହିବା ଘର ଭିତରେ କିଛି ପାର୍ଥକ୍ୟ ରହୁନାହିଁ । ଗତ ବର୍ଷ ମାନ୍ୟବର ବରୁହା ରମେଲ ଅଞ୍ଚଳକୁ ଗସ୍ତରେ ଗଲବେଳେ ଏହି ବୁଡ଼ି ଅଞ୍ଚଳର ଦୁର୍ଦ୍ଦଶା ନିଜ ଆଖିରେ ଦେଖିଛନ୍ତି ।

ଆଉ ଗୋଟିଏ ଉଦାହରଣ ମୁଁ ଦେଉଛି । ଏହି ବୁଡ଼ି ଅଞ୍ଚଳରେ ଗୁନ୍ଦବାଲି ବୋଲି ଗୋଟିଏ ଗ୍ରାମ ଅଛି । ସେଠାରେ ପ୍ରତି ସପ୍ତାହରେ ଗୋଟିଏ ବଡ଼ ବଜାର ବସେ । ଏହି ବଜାରକୁ ଖରାଦିନେ ଯେଉଁମାନେ ସଉଦା କରି ଆସନ୍ତି, ସେମାନଙ୍କୁ ବେଶୀ ଜଳ

କଷ୍ଟ ହୁଏ ଏବଂ ଏହି ଜଳ କଷ୍ଟ ଦୂର କରିବା ପାଇଁ ଏହି ଯାଗାରେ ଗୋଟିଏ କୂଅ ଖୋଳା ଯାଉ ବୋଲି ମୁଁ ଜିଲ୍ଲା ଉନ୍ନୟନ କମିଟିରେ ପ୍ରସ୍ତାବ କରିଥିଲି । ତହିଁର ଉତ୍ତର ମିଳିଲା "ଏଇଟା ହେଲା ବୁଡ଼ି ଅଞ୍ଚଳ, ଏଠାରେ କୂଅ ଖୋଳା ନ ଯାଇ କେବଳ ଗୋଟିଏ ପାଣି ଛତ୍ରର ବ୍ୟବସ୍ଥା କରି ଦିଆଯିବ ।" ଏହି ହତଭାଗ୍ୟ ଅଞ୍ଚଳରେ ଯେଉଁ ପରିମାଣରେ ଆମର ସରକାରୀ କର ଏବଂ ରାଜସ୍ୱ ଆଦାୟ ହୁଏ, ସେହି ଅନୁପାତରେ ଯେତିକି ଖର୍ଚ୍ଚ କରିବାର କଥା ତା'ର ତିନି ଭାଗରୁ ଏକ ଭାଗ ସୁଦ୍ଧା ଖର୍ଚ୍ଚ କରାଯାଉ ନାହିଁ । ଆମର ବେଶୀ କିଛି ବୋଧହୁଏ ଆପତ୍ତି କରିବାର ନ ଥାନ୍ତା ଯଦି ସରକାର ଲୋକଙ୍କୁ ଏ ପ୍ରକାର ଭିକାରୀଙ୍କ ଅବସ୍ଥାରେ ଛାଡ଼ି ନ ଦେଇ ସେହି ଲୋକମାନଙ୍କର ପୁନର୍ବସତି ପାଇଁ ଅନ୍ୟ ଯାଗାରେ ଉପଯୁକ୍ତ ବ୍ୟବସ୍ଥା ଶୀଘ୍ର କରନ୍ତେ । କିନ୍ତୁ ପୁନର୍ବସତି ଦିଗରେ ଆମ ସରକାରଙ୍କର ଉଦାସୀନତା ଅତି ଭୀଷଣ ବୋଲି ଜଣା ପଡୁଛି । ହୀରାକୁଦ ବନ୍ଧ ତିଆରି କରିବାରେ 2 କୋଟି ଟଙ୍କା ଖର୍ଚ୍ଚ ମଞ୍ଜୁର ହୋଇଥିଲା ଏବଂ ଏ ବର୍ଷ Budgetରେ ଦେଖୁଛି 3·50 କୋଟି ଆଗତ ବର୍ଷ ପାଇଁ ବ୍ୟବସ୍ଥା କରାଯାଉଛି । କିନ୍ତୁ ପୁନର୍ବସତି କାମ ପାଇଁ ଆଜି ପର୍ଯ୍ୟନ୍ତ ଖର୍ଚ୍ଚ ହୋଇଛି ମୋଟେ 26,000 ଟଙ୍କା ମାତ୍ର କାହିଁ 7 କୋଟି, କାହିଁ 26,000 ଟଙ୍କା ? ଲୋକମାନଙ୍କ ପାଇଁ ଅନେକ ଯାଗାରେ ପୁନର୍ବସତି କରିବାପାଇଁ ଆଜି ପର୍ଯ୍ୟନ୍ତ ପ୍ରସ୍ତୁତ ହୋ ଇଛି ଯମା 572 ଏକର ଜମି । ଏହି ହିସାବରେ ଯଦି ସରକାର କାମ ଚଳାନ୍ତି ଏବଂ ସରକାରଙ୍କର ଯୋଜନା ହେଉଛି ଯେ, ଏହି ବୁଡ଼ି ଅଞ୍ଚଳର ଲୋକମାନଙ୍କ ପାଇଁ ଏବଂ ହୀରାକୁଦ ବନ୍ଧରେ ଯେଉଁମାନଙ୍କର ଘର ଦ୍ୱାର ଯିବ, ସେମାନଙ୍କର ପୁନର୍ବସତି ପାଇଁ 1,20,000 ଏକର ଜମି ସେମାନେ ଆବାଦ କରି ଲୋକଙ୍କୁ ଦେବେ । ଯଦି ଏହି ବର୍ଷକ ମଧ୍ୟରେ କେବଳ 572 ଏକର ଜମି ଆବାଦ କରାଯାଇଛି । ଏହି ହିସାବରେ ଯଦି ଆବାଦ କରାଯାଏ, ତାହାହେଲେ ଆମେ ଦେଖିପାରିବା ଯେ, 1,20,000 ଏକର ଜମି ଆବାଦ ପାଇଁ ଆମକୁ 2,050 ସାଲ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ, ଅର୍ଥାତ୍ ଆହୁରି 210 ବର୍ଷ ଲାଗିଯିବ । ଆମର ଲୋକେ ଏପରି ଭିକାରୀଙ୍କ ଅବସ୍ଥାରେ ରହିଥିବେ କି ? ସରକାର ଏ ବିଷୟରେ ତାଙ୍କର ସଫେଇ ଦେବାକୁ ଯାଇ କହିଛନ୍ତି, ଜମି ଆବାଦ କରିବା ପାଇଁ ଯେଉଁ କଳକବ୍ଜା ଦରକାର ତାହା ଆସୁନାହିଁ । କିନ୍ତୁ ଆମେ ଦେଖୁଛୁ ଆମ ଆଖି ଆଗରେ ହୀରାକୁଦ ବନ୍ଧ ପାଇଁ ଯେଉଁ କଳକବ୍ଜା ଦରକାର, ଲକ୍ଷ ଲକ୍ଷ ଟଙ୍କା ଜିନିଷପତ୍ର ପ୍ରତିଦିନ ସମ୍ବଲପୁର Stationରେ ଆସି ଜମା ହେଉଛି । କିନ୍ତୁ ସାମାନ୍ୟ କେତେ ଲକ୍ଷ ଟଙ୍କା ଏହି ପୁନର୍ବସତି ପାଇଁ, ଯେଉଁ ଜିନିଷପାତି ଦରକାର ତାହା ସରକାର ଆଣିପାରୁ ନାହାନ୍ତି । ଏଟା ଅବଶ୍ୟ ଆମକୁ ବାଧ୍ୟ ହୋଇ ଅବିଶ୍ୱାସ କରିବାକୁ ପଡୁଛି । ସେ ଯାହା ହେଉ, ସରକାର ଆମକୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ଏବଂ ଏପରିକି ନିଜେ ପଣ୍ଡିତ ଜବାହାରଲାଲ ନେହେରୁ 1948 ଅପ୍ରେଲ 13 ତାରିଖରେ ସମ୍ବଲପୁର ସାଧାରଣ ସଭାରେ ଆମ୍ଭମାନଙ୍କୁ ଯେଉଁ ଆଶ୍ୱାସନା ଦେଇଥିଲେ—ସେହି ଆଶ୍ୱାସନା ଉପରେ ଆମେ ନିର୍ଭର କରିଅଛୁ । କିନ୍ତୁ ସରକାରଙ୍କର କାର୍ଯ୍ୟକଳାପ ଯାହା ଦେଖାଯାଉଛି ଏବଂ ଯେପରି ଉଦାସୀନତା ଦେଖାଯାଉଛି, ସେଥିରେ ସରକାରଙ୍କର ଏହି ପ୍ରତିଶ୍ରୁତି କେବେହେଲେ

ପୂରା ହୋଇପାରିବ ବୋଲି ମୋର ବିଶ୍ୱାସ ହେଉନାହିଁ ଏବଂ ମୁଁ ଭବୁଛି ଯେ ସମ୍ବଲପୁରର ଲକ୍ଷ ଲକ୍ଷ ଲୋକ ଅନ୍ତତଃ ଲକ୍ଷେ ଲୋକ ନିରାଶ୍ରୟ, ଆଶ୍ରୟ ପ୍ରାର୍ଥୀ ବା refugee ହୋଇଯିବେ, ଯଦି ସରକାର ବର୍ତ୍ତମାନ ଯେପରି ଭବରେ ଚ୍ଲିଛନ୍ତି ସେହିପରି ଚ୍ଲିବେ । ଯଦି ସରକାର ଆମର ଏହି ବିଷୟରେ କିଛି ନ କରନ୍ତି, ତାହାହେଲେ ଆମର କିଛି ବେଶୀ ଦୁଃଖ କରିବାର ହୁଏ ତ କଥା ନାହିଁ । କିନ୍ତୁ ଦେଶର ବେଶୀ ଦରକାର ଦୃଷ୍ଟିରୁ ବିଶେଷ ଭବରେ ଖାଦ୍ୟ ସମସ୍ୟା ଦୃଷ୍ଟିରୁ, ସମ୍ବଲପୁରର ଯେଉଁ ଅଞ୍ଚଳ ବୁଡ଼ିଯିବ ଏବଂ ଯେଉଁ ଅଞ୍ଚଳ Canal ଦ୍ୱାରା କ୍ଷତିଗ୍ରସ୍ତ ହେବ, ସେଥିରେ ଖାଦ୍ୟର ଯେଉଁ କ୍ଷତି ହେବ, ସେହି କ୍ଷତିପୂରଣ କରିବା ପାଇଁ ସରକାର ଆଜିଠାରୁ ଯତ୍ନବାନ ଯଦି ନ ହୁଅନ୍ତି, ଯେଉଁ ସମ୍ବଲପୁର 1943 ସାଲର ଦୁର୍ଭିକ୍ଷ ସମୟରେ ବିଦେଶକୁ ଅନେକ ଧାନ, ଚାଉଳ ରପ୍ତାନି କରିଥିଲା ସେହି ସମ୍ବଲପୁର ହୁଏତ ଓଡ଼ିଶାକୁ ଖାଦ୍ୟ ବିଷୟରେ ଆତ୍ମନିର୍ଭରଶୀଳ ହେବାରେ ସହାୟ ନ ହୋଇ ଅନ୍ତରାୟ ହେବ ବୋଲି ମୁଁ କହେ ।

ତା'ପରେ ମୁଁ ଆମର ବିଶ୍ୱବିଦ୍ୟାଳୟ ବିଷୟରେ ସାମାନ୍ୟ କେତେକ କଥା କହିବି । ଏହି Budgetର ୧୦୪ ପୃଷ୍ଠାରୁ ଦେଖାଯାଉଛି ଯେ, ଗତ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ପାଇଁ ସରକାର non-recurring grant ପାଇଁ 58,000 ଟଙ୍କା ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ବାର୍ଷିକ ବ୍ୟୟ ନିର୍ବାହ ପାଇଁ 21,500 ଟଙ୍କା ଦେଇଥିଲେ । ଏପରି ସର୍ବମୋଟ ପ୍ରାୟ ୪୦ ହଜାରରୁ ପ୍ରାୟ କିଛି କମ୍ ଟଙ୍କା ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦେଇଥିଲେ । କିନ୍ତୁ ଏ ବର୍ଷ ଦେଖାଯାଉଛି ଯେ ତାଠୁ ଠିକ୍ ଅଧା କରି ଦିଆହୋଇଛି । ବର୍ତ୍ତମାନ ଯେପରି ଭାବରେ ଏହି ନୂତନ ଶିଶୁ ବିଶ୍ୱବିଦ୍ୟାଳୟ ଉନ୍ନତି ଦିଗରେ ଅଗ୍ରସର ହେଉଛି, ସେଥିରେ ଯଦି ସରକାର ତାଙ୍କର ଯାହା କର୍ତ୍ତବ୍ୟ ବିଶ୍ୱବିଦ୍ୟାଳୟ ପ୍ରତି, ତାହା ସେ ନ କରନ୍ତି, ତାହାହେଲେ ଏହି ଶିଶୁ ବିଶ୍ୱବିଦ୍ୟାଳୟର ପ୍ରଗତି ହୋଇପାରିବ ନାହିଁ । ଅବଶ୍ୟ ଏଥିର ସପେଇ ସ୍ୱରୂପ ସରକାର କହନ୍ତି ଯେ, ପ୍ରାଥମିକ ଶିକ୍ଷାର ଦାୟିତ୍ୱ ସରକାର ନେବେ ଏବଂ ସେହି ତୁଳନାରେ ଅନ୍ୟାନ୍ୟ ଶିକ୍ଷା Secondary Education ବା ବିଶ୍ୱବିଦ୍ୟାଳୟ ଶିକ୍ଷାର ଦାୟିତ୍ୱ, ସରକାରଙ୍କର ଦାୟିତ୍ୱ ନୁହେଁ, ଏହା ଲୋକ ସାଧାରଣଙ୍କର ବା ଅନ୍ୟମାନଙ୍କର ଦାୟିତ୍ୱ । ଏହି ଦୃଷ୍ଟି କୋଣରୁ ଏ ବିଷୟ ଦେଖିବା ସମୀଚୀନ ନୁହେଁ । ପ୍ରତ୍ୟେକ ଦେଶରେ ଏବଂ ପ୍ରତ୍ୟେକ ପ୍ରଦେଶରେ ପ୍ରାଥମିକ ଶିକ୍ଷା ପ୍ରତି ସରକାରଙ୍କର ଯେପରି ଦାୟିତ୍ୱ ରହିଛି, ସେହିପରି ବିଶ୍ୱବିଦ୍ୟାଳୟ ଶିକ୍ଷା ପ୍ରତି ମଧ୍ୟ ସରକାରଙ୍କର ଦାୟିତ୍ୱ ରହିଛି ଏବଂ ଅନ୍ୟାନ୍ୟ ପ୍ରଦେଶରେ ଯେପରି ଭାବରେ ସରକାର ବିଶ୍ୱବିଦ୍ୟାଳୟକୁ ସାହାଯ୍ୟ କରନ୍ତି ଆମ ପ୍ରଦେଶ ତହିଁ ତୁଳନାରେ କିଛି କରୁ ନାହିଁ ବୋଲି କହିଲେ ଚଳେ । ଏହି ବର୍ଷ ଆମର ବିଶ୍ୱବିଦ୍ୟାଳୟ ବଜେଟରେ ୩ ଲକ୍ଷ 33 ହଜାର ଟଙ୍କା deficit ବା କମ ପଡ଼ିଛି । ଏଥିରେ ସରକାର କେବଳ ମାତ୍ର ବିଶ୍ୱବିଦ୍ୟାଳୟର ବ୍ୟୟ ନିର୍ବାହ ପାଇଁ 21,295 ଟଙ୍କା ଦେଇଛନ୍ତି । କାରଣ ଅନ୍ୟ ଯେଉଁ 20,000 ଟଙ୍କା ରହିଛି ସେଇଟା କେବଳ ପାଠାଗାର ପାଇଁ । ଏହା ଆମର

ଶଶୁ ବିଶ୍ୱବିଦ୍ୟାଳୟର ଦରକାର ତୁଳନାରେ ସମୁଦ୍ରକୁ ଶଙ୍ଖେ ପଣା ଭଳି । ଏପରି ଯଦି ହୁଏ, ତା' ହେଲେ ଆଜି କୁଳପତି ମହୋଦୟ ଯେପରି ଭାବରେ କହୁଥିଲେ ଏହି ସାମାନ୍ୟ ଦାନ ଗ୍ରହଣ କରି ବିଶ୍ୱବିଦ୍ୟାଳୟ ବେଶୀ ଦୁଃଖିତ ହେବ ଏବଂ ଏପରି ଅବସ୍ଥା ମଧ୍ୟ ଉପୁଜି ପାରେ ଯେ, ବିଶ୍ୱବିଦ୍ୟାଳୟ ଏହାକୁ ଗ୍ରହଣ ମଧ୍ୟ କରି ନ ପାରେ । ଅବଶ୍ୟ ଏହା ତାଙ୍କର ବ୍ୟକ୍ତିଗତ ମତ । କିନ୍ତୁ ଏ ବିଷୟରେ ସରକାର ପୁନର୍ବାର ବିଚାରକରି ଅନ୍ୟାନ୍ୟ ଦେଶ ଏବଂ ଅନ୍ୟାନ୍ୟ ପ୍ରଦେଶରେ ଯେପରି ଭବରେ ସରକାର ତାଙ୍କର କର୍ତ୍ତବ୍ୟ ବିଶ୍ୱବିଦ୍ୟାଳୟ ପ୍ରତି କରନ୍ତି, ସେହିପରି ଆମର ସରକାର ଆମର ବିଶ୍ୱବିଦ୍ୟାଳୟ ପ୍ରତି ତାଙ୍କର ଯଥେଷ୍ଟ କର୍ତ୍ତବ୍ୟ କରିବେ ଏବଂ ଆମର ଯାହା ନିଅଣ୍ଟ ପଡୁଛି, ସେଥିର ଉପଯୁକ୍ତ ଅଂଶ ସରକାର ବହନ କରିବା ନିଜର ଗୁରୁଦାୟିତ୍ୱ ମନେ କରିବେ ବୋଲି ମୁଁ ବିଶ୍ୱାସ କରୁଛି ।

### ଅତିରିକ୍ତ ଖର୍ଚ୍ଚ ଦାବ (ଶିଳ୍ପ) ସଂପର୍କରେ ଡଃ ସୂପକାରଙ୍କ ଭାଷଣ

ପୂର୍ବରୁ ଡଃ ଶ୍ରଦ୍ଧାକର ସୂପକାର ବିଜୁ ପଟ୍ଟନାୟକଙ୍କ ସିନ୍ଥେଟିକ ପ୍ରେଟ୍ରୋଲ ଉତ୍ପାଦନ ପାଇଁ ନେଇଥିବା ଅନୁଦାନ (ଋଣ) ପ୍ରାୟ 7 ଲକ୍ଷ ଟଙ୍କା ଉପରେ ଖୁବ୍ ବିଶ୍ଳେଷଣାତ୍ମକ ପ୍ରଶ୍ନ କରିଥିଲେ ଏବଂ ସରକାର ତା'ର ଯଥାଯଥ ଉତ୍ତର ଦେବାରେ ଅସମର୍ଥ ହୋଇଥିଲେ । ଏବେ ପୁଣି 1950 ମାର୍ଚ୍ଚ 17 ତାରିଖରେ ଶିଳ୍ପ ସଂପର୍କୀୟ ଖର୍ଚ୍ଚ ଦାବି ଉପରେ କହିଲାବେଳେ ଡଃ ସୂପକାର ଉକ୍ତ ବିଷୟରେ ଉଲ୍ଲେଖ କରିଛନ୍ତି ଏବଂ ସରକାରଙ୍କ ପଦକ୍ଷେପରେ ଥିବା ମୌଳିକ ତ୍ରୁଟି ଓ ଅପ୍ରାସଂଗିକତା ଦେଖାଇଛନ୍ତି । ମୁଖ୍ୟମନ୍ତ୍ରୀ ଓ ଅର୍ଥମନ୍ତ୍ରୀଙ୍କ ଉତ୍ତର କିପରି ଅସ୍ପଷ୍ଟ ଓ "କୁହେଳିକା ଛନ୍ନ" ହୋଇପଡ଼ିଛି ତାହା ଦର୍ଶାଇ ସେ କଂଗ୍ରେସ ସଭ୍ୟ ଓ ବିରୋଧୀ ଦଳର ସଭ୍ୟଙ୍କ ମତ ଓ ପ୍ରଶ୍ନ ଉଦ୍ଧାର କରି ସରକାରଙ୍କୁ ଖୁବ୍ ଅପ୍ରସ୍ତୁତ କରିଛନ୍ତି । ଜଣେ ଟାଣୁଆ କଂଗ୍ରେସ ନେତା ଶ୍ରୀ ନୀଳମଣି ରାଉତରାୟ ସ୍ୱର୍ଗୀୟ ସଭ୍ୟ ଶ୍ରୀ ବୈଦ୍ୟନାଥ ରଥଙ୍କ ପ୍ରଶ୍ନ ଉଦ୍ଧାର କରି "ଏଇଟା ମିଥ୍ୟା କଥା, ଉଦ୍ଭାବନ କରାଯାଇଛି, Budget discussion difficulty tide over କରିବା ପାଇଁ । ତା'ର ଜବାବ ଏଇଟା sanction ହୋଇଛି କି ନା ଏବଂ Government of India ତାକୁ approve କରିଛନ୍ତି କି ନା ସେଇଟା କହନ୍ତୁ" । ଏହାକୁ ମଧ୍ୟ ସ୍ୱର୍ଗୀୟ ସଭ୍ୟ ଶ୍ରୀ ପବିତ୍ର ମୋହନ ପ୍ରଧାନ ସମର୍ଥନ କରିଛନ୍ତି । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଏହାର ଉତ୍ତର ଦେଇ ଅତିରିକ୍ତ ବଜେଟ୍‌ରେ ତାହା (ଉକ୍ତ ଋଣ) ଅନ୍ତର୍ଭୁକ୍ତ ହେବ ବୋଲି କହିଛନ୍ତି ।

ଏହିପରି ଜନସାଧାରଣଙ୍କ ସ୍ୱାର୍ଥ ଦୃଷ୍ଟିରୁ ଡଃ ସୂପକାର କୌଣସି ଅପ୍ରାସଂଗିକତା ବିଶେଷତଃ ଅର୍ଥନୈତିକ କ୍ଷେତ୍ରରେ କୌଣସି ତ୍ରୁଟିକୁ ନ୍ୟୂନ ଭବରେ ଗ୍ରହଣ ନ କରି ସେ ପୁଙ୍ଖାନୁପୁଙ୍ଖ ଓ ଯୁକ୍ତିଯୁକ୍ତ ଭବରେ ପ୍ରଶ୍ନ କରିଛନ୍ତି ଏବଂ ମନ୍ତବ୍ୟ ଦେଇଛନ୍ତି । ଏହି କ୍ଷେତ୍ରରେ କିପରି ସେ ଦଳମତ ନିର୍ବିଶେଷରେ ବହୁ ବରିଷ୍ଠ ସଦସ୍ୟଙ୍କ ସମର୍ଥନ ଲାଭ କରିଛନ୍ତି ଲକ୍ଷ୍ୟ କରିବାର କଥା ।

# THE BUDGET

## Voting on demands for supplementary grants

## Industries

**ଶ୍ରୀ ଶ୍ରଦ୍ଧାକର ସୁପକାର** : ମାନ୍ୟବର ସଭାପତି ମହାଶୟ, ମାନ୍ୟବର ଶ୍ରୀଯୁକ୍ତ କାନୁନଗୋଙ୍କ ଉତ୍ତର ୯ କାଟ ପ୍ରସ୍ତାବ ଉପରେ ବିଷୟଟିକୁ ପରିଷ୍କାର ନ କରି ଆହୁରି ଅଧିକ କୁହେଳିକାଛନ୍ନ କରି ପକାଇଛି ବୋଲି ମୋର ମନେ ହୁଏ । ତା'ର କାରଣ ହେଉଛି ଯେ ତାଙ୍କର ଏହି ଭାଷଣ ସଙ୍ଗେ 16-1-1950 ତାରିଖ ଦିନ ମାନ୍ୟବର ପ୍ରଧାନ ମନ୍ତ୍ରୀ ଆମର ପ୍ରଶ୍ନମାନଙ୍କର ଯେଉଁ ଜବାବ ଦେଇଥିଲେ, ସେଥିର କେତେକ ଉଦ୍ଧୃତ ଅଂଶ ତୁଳନା କଲେ ଜଣାପଡ଼ିବ ଯେ, ଏ କଥାମାନ ପରସ୍ପର ଖାପ ଖାଉ ନାହିଁ । ସେଥିରେ କୁହାଯାଇଛି ଯେ ଏହି ଯେଉଁ 6 ଲକ୍ଷ 70 ହଜାର ଟଙ୍କା (50 ହଜାର ପାଉଣ୍ଡ) ଦିଆଯାଇଥିଲା, ତାହା Budgetରେ ନାହିଁ ଏବଂ ଆଜିପର୍ଯ୍ୟନ୍ତ ସେଟା ବଜେଟକୁ ଆସିନାହିଁ । I will read out the questions and answers. One Supplementary question was put by the Hon'ble Shri Rurendramohan Patanaik. "Was the advance paid to Shri B. Patnaik provided in the Budget or it was made in anticipation on sanction on Assambly ?" The Hon'ble Minister replied that "It was not provided in the Budget" ତାପରେ ମୁଁ ଆଉ ଗୋଟିଏ ବିଷୟ ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି । ଏହି ଟ 6,70,000 1948 ସାଲ ଜୁଲାଇ ମାସ ପ୍ରଥମ ସପ୍ତାହରୁ ଦିଆ ହେଲାଣି, କିନ୍ତୁ ତାହା ବଜେଟ କରାଯାଇ ନାହିଁ ଓ ବଜେଟକୁ ଆସିନାହିଁ । ଅଥଚ ଏହି ଟ 16,000 ଯାହାକି Scheme ଛାଡ଼ି ଦିଆଗଲା ପରେ ଦିଆଯାଇଛି । ତେଣୁ ତାହା କାହିଁକି ବଜେଟକୁ ଆସୁଛି ଏବଂ ଯେଉ ଟ 15,000 ଯାହାକି item 208 ଅନୁସାରେ Loan ସ୍ୱରୂପ ଦିଆଯାଇଛି, ସେଟା ମଧ୍ୟ କାହିଁକି ବଜେଟକୁ ଆସିଛି, ମୁଁ ବୁଝିପାରୁନାହିଁ । ଆଉ ଗୋଟିଏ ପ୍ରଶ୍ନ ହେଉଛି ସରକାର ଜାନୁଆରୀ ମାସରେ ଗୋଟିଏ ପ୍ରଶ୍ନର ଉତ୍ତରରେ କହିଥିଲେ । ସେ ପ୍ରଶ୍ନ ଓ ଉତ୍ତର ମୁଁ ଆପଣଙ୍କୁ ପଢି ଶୁଣାଇ ଦେଉଛି । ପ୍ରଶ୍ନ ହୋଇଥିଲା ଯେ, "ଏ ବିଷୟରେ କ'ଣ ଶ୍ରୀ ବିଜୟାନନ୍ଦ ପଟ୍ଟନାୟକଙ୍କଠାରୁ Security ରଖାଯାଇଛି ?" ତା'ର ଉତ୍ତରରେ କୁହାଯାଇଛି ଯେ "ସେ ଯେତେବେଳେ Projectର design ଦେଇ ସାରିଲେଣି, ତାଙ୍କଠାରୁ Security ରଖିବା ପ୍ରଶ୍ନ ଉଠୁନାହିଁ ।" "The question of security does not arise as was already submitted the design of the Project." ଆଉ ଗୋଟିଏ ଶ୍ରୀ ଲୋକନାଥ ମିଶ୍ରଙ୍କ ପ୍ରଶ୍ନ—"If the National Petrol Institute responsible for the money, if it is not properly utilised ? ତା'ର ଉତ୍ତରରେ କୁହାଯାଇଥିଲା—"I have said that we have already got the design for which the money was spent." ଅର୍ଥାତ୍ ଏହି ଟ 6,70,000 ନେଇ

ଯେତେବେଳେ ଆମେ Project report ପାଇସାରିଲୁଣି—ତା'ର ଅର୍ଥ ହେଉଛି ଆମେ 50 ହଜାର ପାଉଣ୍ଡର ମୂଲ୍ୟ ଓ୍ୱାପସ ପାଇ ସାରିଲୁଣି । ଅତଏବ ଏ ଟଙ୍କା ପାଇବାର ଦାବୀ କରି Naiional Petrol Institute କିମ୍ବା ଶ୍ରୀ ବିଜୟାନନ୍ଦ ପଟ୍ଟନାୟକଙ୍କଠାରୁ ଦାବୀ କରିବା କିମ୍ବା ପାଇବା ପ୍ରଶ୍ନ ଏଠାରେ ଉଠାଇବାର କଥା ନୁହେଁ ତେଣୁ ମନ୍ତ୍ରୀ ମହୋଦୟ କହିଲେ ଯେ, ସେ ଟଙ୍କା ଦେବାପାଇଁ ପ୍ରସ୍ତୁତ ଥିଲେ, କିନ୍ତୁ ଆମେ ନେଇନାହିଁ । ଆଉ ଗୋଟିଏ କଥା ହେଉଛି ଯେ, ମାନ୍ୟବର ପ୍ରଧାନ ମନ୍ତ୍ରୀ ମହାଶୟ ଜାନୁଆରୀ ମାସରେ କହିଥିଲେ ଯେ "If the Government of India approve the scheme the entire amount will be realised from the Government of India." ଯଦି କେନ୍ଦ୍ର ସରକାର ଏ Projectକୁ ମଞ୍ଜୁର କରନ୍ତି ତାହାହେଲେ ସେ ସବୁ ଟଙ୍କା ଆମେ କେନ୍ଦ୍ର ସରକାରଙ୍କଠାରୁ ପାଇବା । ଅତଏବ ଆମର ଏଥିରେ ଚିନ୍ତିତ ହେବାର ଦରକାର ନାହିଁ । ମୁଁ କହେ ଯଦି ସେ approve ନ କରନ୍ତି, ତାହାହେଲେ ଏ ଟଙ୍କାକୁ ନିଶ୍ଚୟ ଆମ ସରକାରକୁ କ୍ଷତି ସହିବାକୁ ହେବ । ଏ ଟଙ୍କା ଅନୁମୋଦନ ପୂର୍ବରୁ ଖର୍ଚ୍ଚ ହୋଇଛି । 1948 ସାଲ ଜୁଲାଇ ମାସ ପ୍ରଥମ ସପ୍ତାହରେ ଯେତେବେଳେ ଏ ଟଙ୍କା ଦେଇଦିଆ ସରିଛି, ଏଇଟା କାହିଁକି ବଜେଟ୍‌କୁ ଆସିନାହିଁ । ଯେତେବେଳେ ଏ ବିଷୟରେ ଏତେଟଙ୍କା ଖର୍ଚ୍ଚ ହୋଇଗଲା, ଏହି ଟ 16,000 ଆମ ଆଗରେ ଦାବୀ ଉପସ୍ଥାପିତ କରଯାଇଛି କାହିଁକି ? ଏହାଦ୍ୱାରା ଆମ ବ୍ୟବସ୍ଥାପକମାନଙ୍କ ପ୍ରତି ଘୋର ଅନ୍ୟାୟ କର-ହୋଇଛି । ଯେପରି ଟ 6,70,000 ବ୍ୟୟ କରଯାଇଛି, ସେହିପରି ଏହି ଟ 16,000 ଓ Loan ସ୍ୱରୂପ ଯେଉଁ ଟ 15,000 ତାକୁ ମଧ୍ୟ ବ୍ୟୟ କରନ୍ତୁ ବୋଲି ମୁଁ ସରକାରଙ୍କୁ ଅନୁରୋଧ କରୁଛି ଏବଂ ମୋର କାଟ ପ୍ରସ୍ତାବ ଉପରେ ଯୋର ଦେଇ କହୁଛି ।

ଶ୍ରୀ ନୀଳମଣି ରାଉତରାୟ : ସଭାପତି ମହାଶୟ on a point of information, କାଲି ମୋର ବନ୍ଧୁ ଶ୍ରୀଯୁକ୍ତ ବୈଦ୍ୟନାଥ ରଥ ଗୋଟିଏ ପ୍ରଶ୍ନ ଉଠାଇଥିଲେ, ଯାହାକି ଖୁବ୍ ଗୁରୁତର ପ୍ରଶ୍ନ । ତା'ର ଜବାବ ମନ୍ତ୍ରୀ ମହୋଦୟ ଦେଇ ନାହାଁନ୍ତି । ତାହା ହେଉଛି କିଛିଦିନ ତଳେ ଖବର କାଗଜରେ ବାହାରିଥିଲା ଯେ, ଏହି Synthetic petrol schemeକୁ Government of India sanction କରିଛନ୍ତି ଏବଂ ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ agreement କରିବାକୁ ପ୍ରସ୍ତୁତ ଅଛନ୍ତି । ସେ challenge କରୁଛନ୍ତି ଏଇଟା ମିଥ୍ୟା କଥା ଉଦ୍‌ଭବନ କରଯାଇଛି, Budget discussionର difficulty tide over କରିବା ପାଇଁ । ତା'ର ଜବାବ ଏଇଟା Sanction ହୋଇଛି କି ନା ଏବଂ Government of India ତାକୁ approve କରୁଛନ୍ତି କି ନା ସେଇଟା କୁହନ୍ତୁ ।

Shri PABITRA MOHAN PRADHAN: I support Mr. Routray in this respect.

The Hon'ble Shri HAREKRUSHNA MAHATAB: The demand, as it appears to me,......... (Interruption)

Shri SHRADHAKAR SUPAKAR : On a point of order. Sir, Mr. Kanungo the Hon'ble Minister who was yesterday in charge of the reply, should reply in this connection because that is his portfolio. I think he is the proper person to reply.

The Hon'ble The SPEAKER : Not necessarily.

The Hon'ble Shri HAREKRUSHNA MAHTAB : Sir, I am in-charge of the loans and advances. I am in a better position to explain this. So far as loans and advances are concerned, first of all I would like to (ililiusion a member who complained that this matter has not been brought into the budget. It has been brought into the last year's supplementary budget, i. e., supplementary budget for the Year 1948-49. I have sent for the budget and I will place copy of it on the table. When placed on the table it will be found out whether this £ 50 thousand have been included in the budget......

## ଅତିରିକ୍ତ ଖର୍ଚ୍ଚ ଦାବୀ (ଜେଲ) ସମ୍ପର୍କରେ ଡଃ ସୂପକାରଙ୍କ ମନ୍ତବ୍ୟ

ଡଃ ସୂପକାର ଜେଲ୍‌ରେ କଏଦୀମାନଙ୍କ ପ୍ରତି "ମନୁଷ୍ୟୋଚିତ ବ୍ୟବହାର" ଉପରେ ସରକାରଙ୍କ ଦାୟିତ୍ୱ ସମ୍ପର୍କରେ ମାର୍ଚ୍ଚ 20, 1950ରେ ଗୁରୁତ୍ୱପୂର୍ଣ୍ଣ ମନ୍ତବ୍ୟ ଦେଇଥିଲେ । ଆମେ କୌଣସି ଲୋକଙ୍କୁ ବିନା ଦୋଷରେ ବା ଦୋଷର ବିଚାର ହେବା ପୂର୍ବରୁ ଜେଲଖାନାରେ ଭର୍ତ୍ତି କରୁଛୁ । ଏହା କିପରି ଅନ୍ୟାୟ ତାହା ସେ ଦେଖାଇଥିଲେ । କୌଣସି ଲୋକଙ୍କୁ ଦୁର୍ବ୍ୟବହାର କରାଯାଉନାହିଁ ବୋଲି ସରକାର ଉତ୍ତର ଦେଲେ ମଧ୍ୟ ସେଠାରେ କଏଦୀମାନେ ଯେମିତି ଅନଶନ କରୁଛନ୍ତି, ସେଥିରୁ ସେମାନଙ୍କ ପ୍ରତି ଅନ୍ୟାୟ କରାଯାଉଛି ପ୍ରମାଣିତ । କଏଦୀଙ୍କ ସଂଖ୍ୟା ଦିନକୁ ଦିନ ବଢ଼ିଚାଲିଛି ଏବଂ ଦେଶରେ କିପରି ଅପରାଧୀଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି ଏହା ତା'ର ସୂଚକ । ସରକାରଙ୍କ ମାନବିକତା ଦୃଷ୍ଟିରୁ ଏସବୁ ବିଷୟର ବିଚାର କରିବାକୁ ଶ୍ରଦ୍ଧାକର ଅନୁରୋଧ କରିଥିଲେ । ଆଜିକାଲି ମାନବ ଅଧିକାର ଆୟୋଗ (Human Rights Commission) ଯାହା କରୁଛନ୍ତି ପ୍ରାୟ 50 ବର୍ଷ ତଳେ ଶ୍ରଦ୍ଧାକର ତାହା କିପରି କହିଥିଲେ, ତାହା ନିମ୍ନଲିଖିତ ମତାମତରୁ ସ୍ପଷ୍ଟ ହେବ ।

**ଶ୍ରୀ ଶ୍ରଦ୍ଧାକର ସୂପକାର** : ମାନ୍ୟବର ସଭାପତି ମହାଶୟ, ମୁଁ ଜାନୁଆରୀ ମାସରେ ଯେତେବେଳେ ଏ ଜେଲ ବାବଦରେ କାଟ ପ୍ରସ୍ତାବ ଆଗତ କରିଥିଲି, ସେତେବେଳେ ମୁଁ ଯାହା କହିଥିଲି ସେ ବିଷୟରେ ପୁନରାବୃତ୍ତି କରିବାକୁ ଯାଉଛି ଯେ, ଜଣେ ଲୋକ

ଯେତେବେଳେ ବାହାରେ ଅଛି, ସେ ଯଦି କୌଣସି ଦେଶଦ୍ରୋହାତ୍ମକ କାମ କରେ, ପବିତ୍ର ବାବୁ ଯେପରି କହିଲେ, ଯେ ବୋମା ପକାଇବ, ଅନ୍ୟ କୌଣସି କାର୍ଯ୍ୟ କରେ, ତାହାହେଲେ ଆମେ ତାକୁ ଘୃଣା କରିବା, ଏବଂ ତାର ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାର ଯଥେଷ୍ଟ କାରଣ ଅଛି । କିନ୍ତୁ ଆମେ କୌଣସି ଲୋକଙ୍କୁ ବିନା ଦୋଷରେ ବା ଦୋଷକଲପରେ ହେଉ, ବିନା ବିଗ୍ରରରେ ଯେତେବେଳେ ଆମେ ତାକୁ ଜେଲ ଭିତରେ ପୁରାଇ ଦେଉଛୁ, ସେତେବେଳେ ପୁରାପୁରି ଭବରେ ସରକାରଙ୍କ ଦୟା ଉପରେ ତାର ଜୀବିକା ନିର୍ଭର କରୁଛି । ଜେଲଖାନା ଭିତରେ ସେ ଯେକୌଣସି ମତବାଦୀ ହୋଇଥାଉ ନା କାହିଁକି ପ୍ରଥମେ ବା ସବୁବେଳେ ତାକୁ ମନୁଷ୍ୟୋଚିତ ବ୍ୟବହାର କରିବା ପ୍ରତ୍ୟେକ ସରକାରଙ୍କ ଦାୟିତ୍ୱ । ସେଦୃଷ୍ଟିରୁ ଯଦି ଆମେ ଦେଖୁ ତାହାହେଲେ ଜେଲ-ଖାନାରେ ଯେ ଅନଶନ ହେଉଛି, ଏହାର ପ୍ରକୃତ କାରଣ ଅନୁସନ୍ଧାନ କରିବାକୁ ଗଲେ ଜଣାପଡ଼ିବ । ସରକାର ଯାହା କହିଛନ୍ତି, ଏବଂ ଜାନୁଆରୀ ମାସରେ ପ୍ରଶ୍ନ ଉତ୍ତରରେ ଯାହା କହିଥିଲେ ଯେ, ଜେଲଖାନାରେ କୌଣସି ଲୋକଙ୍କୁ ଦୁର୍ବ୍ୟବହାର କରାଯାଉ ନାହିଁ ଏବଂ ସେମାନଙ୍କ ଅବସ୍ଥା ପ୍ରକୃତରେ ଭଲ, ଏବଂ କେତେ ଦିନ ତଳେ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କ ପ୍ରଶ୍ନର ଉତ୍ତରରେ ସରକାର ଯାହା କରିଥିଲେ, ସେ ଉତ୍ତର ଆମେ ଯଦି ଦେଖୁ, ତାହାହେଲେ ବରାବର ଜେଲଖାନା ଭିତରେ ଯେଉଁ ଅନଶନ ଲାଗି ରହିଛି, ତାହା ପ୍ରକୃତରେ ସରକାରଙ୍କ କୃତିତ୍ୱ ପ୍ରକାଶ କରୁନାହିଁ । ତା ପରେ ଶ୍ରୀଯୁକ୍ତ ପବିତ୍ର ବାବୁ ଯେପରି କହିଲେ ଯେ, ସେମାନଙ୍କର Criminal Mentality ବା ଦୋଷୀ ମନୋବୃତ୍ତି ରହିଛି । ତାର କାରଣ ଜେଲଖାନା ଭିତରେ ସେମାନଙ୍କୁ ହୁଏତ ଭଲ ଖାଇବାକୁ ଯୋଗାଇ ଦିଆଯାଉଛି । ବାହାରେ ଥିଲାବେଳେ ତାଙ୍କ ଜୀବନର ମାନ ବା Standard of Living ଯାହା ଥିଲା, ଜେଲ ଭିତରେ ସେମାନଙ୍କ Standard of Living ତା'ଠାରୁ ବେଶୀ ହେଉଛି । ସେଥିପାଇଁ ସେମାନେ ଦୋଷକରି ଜେଲଖାନା ଯାଉଛନ୍ତି ।

Shri PABITRAMOHAN PRADHAN: That is not the only reason I have shown.

ଶ୍ରୀ ଶରାକର ସୂପକାର : ସେଟା ଗୋଟିଏ କାରଣ ବୋଲି ମୁଁ କହୁଛି । ମୁଁ କହେ, ଆମ ସରକାରଙ୍କ ପ୍ରକୃତରେ ଶାସନ କିପରି ଭବରେ ଗତି କରୁଛି ଏବଂ ଶାସନ ଦକ୍ଷତା କେତେଦୂର ବଢ଼ିଛି, ଏହା ଜେଲ କଇଦ ସଂଖ୍ୟା ବଢ଼ିବାରୁ ଜଣା ପଡ଼ିବ । ସରକାର ନିଜେ ବକ୍ତୃତାରେ ପ୍ରକାଶ କରିଛନ୍ତି ଯେ, ଜେଲ ଭିତରେ Conjestion ଅର୍ଥାତ୍ କଇଦ ସଂଖ୍ୟା ବଢ଼ିଛି । ଏଥିରୁ ସ୍ପଷ୍ଟ ଜଣା ପଡୁଛି ଯେ, ଆମ ଶାସନ କାଳରେ ଏପରି କିଛି ଗୋଟିଏ ଖରାପ ରହିଛି, ଯାହାପାଇଁକି ଦେଶରେ ଅପରାଧୀ ସଂଖ୍ୟା ବଢୁଛି ଏବଂ ଜେଲରେ କଇଦି ସଂଖ୍ୟା ବଢୁଛି । ସରକାର ବନ୍ଦୀମାନଙ୍କୁ ଯେପରି ଖାଇବା ପିଇବାକୁ ଦେଉଛନ୍ତି, ଏଇଟା କମିଯାଉ କହିବା ଗୋଟିଏ ଭ୍ରାନ୍ତ ଯୁକ୍ତି ବୋଲି ମନେ ହୁଏ । ଏଇଟା ରୋଗର ଭୁଲ ପ୍ରତିକାର । ଅପରାଧ ସଂଖ୍ୟା ବଢ଼ିବା ଏବଂ ଜେଲଖାନାରେ ବନ୍ଦୀମାନଙ୍କ ସଂଖ୍ୟା ଧୀରେ ଧୀରେ ବଢ଼ି ଚାଲିବାରେ ପ୍ରକୃତ କାରଣ ହେଉଛି ଶାସନ କଳରେ ନିଶ୍ଚୟ କିଛି ଖରାପ ଅଛି ଏବଂ ସେ

ବିଷୟରେ ଅନୁସନ୍ଧାନ ହେବା ଦରକାର, ତାହା ସଂଶୋଧନ ହେବା ଦରକାର ଏବଂ ଭବିଷ୍ୟତରେ ସେପରି ଏହି ଜେଲଖାନାମାନଙ୍କରେ ଅନଶନ ବା ନାନାପ୍ରକାର ଅସନ୍ତୋଷ ରହିଛି, ଯେପରି ତାହା ଶୀଘ୍ର ଦୂର ହୁଏ, ସେସବୁ ବିଷୟରେ ସରକାର ମାନବିକତା ଦୃଷ୍ଟିରୁ ବିଚାର କରିବେ। Communist ବା Socialist ବା ଅନ୍ୟ କୌଣସି ଦଳଗତ ଦୃଷ୍ଟିରୁ ବିଚାର ନ କରନ୍ତୁ ବୋଲି ମୁଁ ଅନୁରୋଧ କରୁଛି ।

**ମାନ୍ୟବର ଶ୍ରୀ ହରେକୃଷ୍ଣ ମହତାବ :** ମାନନୀୟ ସଭାପତି ମହାଶୟ, ଏ ଯେଉଁ ବିଷୟରେ ଅବତାରଣ କରାଯାଇଛି, ବାସ୍ତବିକ୍ ମୋର ମନେ ହୁଏ ଏଥିରେ କୌଣସି ରାଜନୈତିକ 'ବାଦ' ପ୍ରବେଶ କରିବା ଉଚିତ୍ ନୁହେଁ । ଏଇଟା କେବଳ ଜେଲ ଭିତରେ ବନ୍ଦୀମାନଙ୍କପ୍ରତି ଯେଉଁ ବ୍ୟବହାର,..... ।

## 1951 ଓଡ଼ିଶା ବିନିଯୋଗ ବିଲ୍ (2) ଉପରେ ଭାଷଣ

ଡକ୍ଟର ଶ୍ରଦ୍ଧାକର ସୁପକାର ଓଡ଼ିଶା ବିଧାନସଭାରେ ଆଗତ 1951 ଓଡ଼ିଶା ବିନିଯୋଗ ବିଲ୍ (Orissa Appropriation Bill) ଉପରେ ଭାଷଣ ଦେଇ (ତା 30-11-1951) ରିଖ ସରକାର କଟକ ହୋଟେଲରେ ମଦ୍ୟପାନର ବ୍ୟବସ୍ଥା ଓ ସିନେମା ଘରର ନିର୍ମାଣ ତଥା ପରିସ୍ଥିତିକୁ ସମାଲୋଚନା କରିଛନ୍ତି । ଏ ସବୁର କୁପ୍ରଭାବ ନିକଟବର୍ତ୍ତୀ ମହାବିଦ୍ୟାଳୟ ଓ ଛାତ୍ରାବାସର ଅନ୍ତେବାସୀ ତଥା ଛାତ୍ର ଛାତ୍ରୀମାନଙ୍କ ଉପରେ ପଡ଼ିବ ବୋଲି ଆଶଙ୍କା ପ୍ରକାଶ କରିଛନ୍ତି । ଛାତ୍ରୀମାନେ ଏସବୁ କୁପ୍ରଭାବର ଶିକାର ହେବା ସମ୍ବାଦ ମଧ୍ୟ ସେ ପାଇଛନ୍ତି ଏବଂ ସେମାନେ 'କାଲି ଆମ ପ୍ରଦେଶର ଭବିଷ୍ୟତ ସନ୍ତାନମାନଙ୍କର ମା' ହୋଇ ବାହାରିବେ, ସେମାନଙ୍କ ମଧ୍ୟରୁ କେହି କଟକ ହୋଟେଲରେ ମଦ ଖାଇବାର ସୂଚନା "ମିଳିବା କଥା କହିଛନ୍ତି । ସିନେମା ସଂପର୍କରେ ସେ ପୁଣି କହିଛନ୍ତି,' 'ତା'ପରେ ଏଠାରେ ସିନେମା ହେବା ଫଳରେ ଲୋକଙ୍କୁ ବହୁତ ଅସୁବିଧା ହେଉଛି । ବିଶେଷତଃ ମେଡିକାଲ କଲେଜ ଛାତ୍ରମାନଙ୍କର ପଢ଼ାରେ କିପରି ବାଧା ନ ହେବ, ସେକଥା ସରକାର ବିଚାର କରିବା କଥା" ।

କଟକର ପ୍ରାଚୀନ ଶିକ୍ଷାନୁଷ୍ଠାନ ଖ୍ରୀଷ୍ଟ କଲେଜକୁ ସରକାର ସାହାଯ୍ୟ କରିବା ଉଚିତ୍ ବୋଲି ଡଃ ସୁପକାର ମତ ଦେଇଛନ୍ତି । (ମାର୍ଚ୍ଚ 30, 1951),' ମୋ ମତରେ ଏ ବିଷୟରେ ଆପତ୍ତି କରିବାର କଥା ନୁହେଁ । କାରଣ ଆମ ସଂବିଧାନରେ ଏପରି ବ୍ୟବସ୍ଥା ରହିଛି । ଧର୍ମ ସଂପର୍କୀୟ ଅନୁଷ୍ଠାନ ଯଦି ଶିକ୍ଷା ଦିଗରେ ଚେଷ୍ଟା କରନ୍ତି ତାହେଲେ ଖ୍ରୀଷ୍ଟିଆନ Principle ରଖନ୍ତି ବା Cross ରଖନ୍ତୁ ସେଥିରେ ସରକାର ବାଧା ଦେବେନାହିଁ । ସେ ଅନୁଷ୍ଠାନକୁ ସାହାଯ୍ୟ ଦେବା ଉଚିତ । ସମ୍ବିଧାନର ନିର୍ଦ୍ଦିଷ୍ଟ ଧାରା ମଧ୍ୟ ସେ ଏହି ପ୍ରସଙ୍ଗରେ ପଢି ଶୁଣାଇଥିଲେ ।

ତାପରେ ଡଃ ସୂପକାର ଉତ୍ତରାଞ୍ଚଳ କମିଶନରଙ୍କ କର୍ମଚାରୀମାନଙ୍କ କ୍ୱାଟର ଓ ଗ୍ରାମ୍ୟସ୍ଥାନ ପଡାରେ ଅଧିକ ପାନୀୟ ଜଳ ଯୋଗାଣର ସୁବିଧା ପାଇଁ ଦାବୀ କରିଛନ୍ତି । ସରକାରୀ ଓ ବେସରକାରୀ ଲୋକ ସମାନ ଭାବରେ ସରକାରୀ ସୁବିଧା ସୁଯୋଗ ଲାଭ କରନ୍ତୁ ବୋଲି ପରାମର୍ଶ ଦେଇଛନ୍ତି । ସରକାରଙ୍କ କାର୍ଯ୍ୟରେ ଯେପରି ପକ୍ଷପାତିତା ଆଦୌ ସୂଚନା ରହିବ ନାହିଁ ତାକୁ ସେ ଚେତାଇ ଦେଇଛନ୍ତି ।

**Shri SHRADHAKAR SUPAKAR**: ମାନ୍ୟବର ସଭାପତି ମହୋଦୟ, ଆଜି ଏ ଯେଉଁ Appropriation Bill ଆସିଛି ଏହାର ଆଲୋଚନାରେ ବିଶେଷ ଭାଗ ନେବାରେ ମୋର ଇଚ୍ଛା ନ ଥିଲା, କିନ୍ତୁ ଯାହା ଆଲୋଚନା ହୋଇଛି ଏବଂ ଏଠାରେ କେତେକ ପ୍ରଶ୍ନ ଉତ୍‌ଥାପିତ ହୋଇଥିବାରୁ ମୁଁ ଏହି ଆଲୋଚନାରେ କିଛି କହିବାକୁ ଇଚ୍ଛାକରି ଭାଗ ନେଉଛି । ପ୍ରଥମ କଥା ହେଉଛି ଯେ କଟକ ହୋଟେଲରୁ ମଦ ଉଠିଯିବା ବିଷୟରେ କେତେକ ଆଲୋଚନା ହୋଇଛି ଏବଂ ମୁଁ ଆହୁରି ଶୁଣିବାକୁ ପାଉଛି ଯେ ପ୍ରଧାନ ମନ୍ତ୍ରୀ ମହାଶୟ ଯାହା କହିବେ ସେ ବିଷୟରେ ଅନେକ ଚାଞ୍ଚଲ୍ୟ ଉପସ୍ଥିତ ହୋଇଛି ଏବଂ ଏ ବିଷୟରେ ସରକାରଙ୍କୁ ଅନୁରୋଧ ଏବଂ ଅନୁନୟ କରିବାର ଚେଷ୍ଟା ହେଉଛି । ଏ ବିଷୟରେ ମୋ ଉପରେ ମଧ୍ୟ ଅଭିଯୋଗ ହେଉଛି ଯେ କେତେକ ସଭ୍ୟ କହୁଛନ୍ତି ଆପଣ ପ୍ରଶ୍ନ ପଚାରିବାରୁ କଟକ ହୋଟେଲରେ ମଦ ବନ୍ଦ ହୋଇଯାଇଛି, ଆପଣ ଏ ବିଷୟରେ ବିଶେଷ କିଛି ବୁଝିନାହାନ୍ତି ଅର୍ଥାତ୍ ଆପଣଙ୍କର ପ୍ରଶ୍ନ ପଚାରିବାରେ ଭୁଲ ହୋଇଛି । ଗତବର୍ଷ ଯେତେବେଳେ ଏହି ବିଷୟରେ ପ୍ରଶ୍ନ ଦିଆଯାଇଥିଲା ସେଥିରେ ଦୁଇଟି ବିଷୟ ପ୍ରତି ମୋ ଦୃଷ୍ଟି ଆକୃଷ୍ଟ ହୋଇଥିଲା । ଗୋଟିଏ ହେଉଛି କଟକ ହୋଟେଲରେ ମଦ ବିକ୍ରି, ଅନ୍ୟଟି ହେଉଛି ତାରି ପାଖରେ ଗୋଟିଏ Cinema house ତିଆରି ହେବାର କଥା । ଏହିଟି ଅନେକଙ୍କ ମତରେ ଗୋଟିଏ ଜାତୀୟ ଅନୁଷ୍ଠାନ ହୋଇପାରେ, କିନ୍ତୁ ଏହା ଆମର ବିଶ୍ୱବିଦ୍ୟାଳୟ ଏରିଆ ନିକଟରେ ଥିବାରୁ ତା ଆମର ଛାତ୍ର ସମାଜ ଉପରେ ପ୍ରଭାବ ବିସ୍ତାର କରୁଥିବା ଆଲୋଚନା ବରାବର ହୋଇ ଆସୁଥିଲା । ଏହାପରେ ମଧ୍ୟ ଶୁଣାଯାଇଥିଲା ଆମର ଯେଉଁମାନେ ଛାତ୍ରୀ ଅଛନ୍ତି ଯେଉଁମାନେ କି ଆମର ଭଉଣୀ ଏବଂ କାଲି ଆମ ଦେଶର ଭବିଷ୍ୟତ ସନ୍ତାନ-ମାନଙ୍କର ମା' ହୋଇ ବାହାରିବେ, ସେମାନଙ୍କ ମଧ୍ୟରୁ କେହି କଟକ ହୋଟେଲରେ ମଦ ଖାଇବାର ସୂଚନା ମିଳୁଥିଲା । ଏଇଟା ଦେଶ ପକ୍ଷରେ କେତେ ଅନିଷ୍ଟକର ଆପଣ ବୁଝିପାରୁଥିବେ ଏବଂ ସେଥିସକାଶେ ମୁଁ ସ୍ପଷ୍ଟଭାବେ କହିଦେବାକୁ ଚାହେଁ ଯେ କଟକ ସହରର ଅନ୍ୟ ଏରିଆରେ ମଦ ଯଦି ବନ୍ଦ ନ ହୁଏ ମୋର କିଛି ଆପତ୍ତି ନାହିଁ, ଏପରିକି କଟକ କ୍ଲବ ଅଞ୍ଚଳରେ ଯେଉଁ ମଦ ବିକ୍ରୀ ହେଉଛି ତାହା ଯଦି ବଢିଯାଏ ତାହେଲେ ବ୍ୟକ୍ତିଗତ ଭାବରେ ମୋର ବିଶେଷ ଆପତ୍ତି ନାହିଁ ; କାହିଁକିନା ଯେଉଁମାନେ ସେଠାକୁ ଯାଆନ୍ତି ସେମାନେ ଆଦର୍ଶ ସ୍ଥାନୀୟ ଲୋକ । ସେମାନଙ୍କ ପାଖରେ

ଯଥେଷ୍ଟ ପଇସା ଅଛି । ସେମାନେ ଏ ମଦରେ ଖର୍ଚ୍ଚକଲେ ମୋର ବ୍ୟକ୍ତିଗତ ଭବରେ କିଛି ଆପତ୍ତି ନାହିଁ କିନ୍ତୁ ଆମ ବିଶ୍ୱବିଦ୍ୟାଳୟ ନିକଟରେ Cinema ଏବଂ ମଦ ବିକ୍ରି ହେବାଦ୍ୱାରା କଟକ ହୋଟେଲ ପରି ଗୋଟିଏ ଜାତୀୟ ଅନୁଷ୍ଠାନ ଯଦି ବନ୍ଦ ହୋଇଯାଏ ସେଥିରେ ମୁଁ ଆଦୌ ଦୁଃଖିତ ହେବି ନାହିଁ । ସରକାର ଯଦି ଚାହାନ୍ତି ସେ ଅନ୍ୟାନ୍ୟ ଜାଗାରେ ମଦ ବିକ୍ରି ଚାଲୁ ରଖିବାପାଇଁ ତାହା ବଢାଇଦେଲେ ମୋର ଆପତ୍ତି ନାହିଁ ; କିନ୍ତୁ କଟକ ହୋଟେଲ ଏବଂ କଟକ Emporium ରେ ଯେଉଁ ମଦ ବିକ୍ରୀ ଚାଲୁଛି ବୋଲି ଅଭିଯୋଗ ହେଲା ତାକୁ ମଦ ବିକ୍ରୀ ବନ୍ଦ ହେବା ଉଚିତ ।

ତାପରେ ଏଠାରେ ସିନେମା ହେବା ଫଳରେ ଲୋକଙ୍କୁ ବହୁତ ଅସୁବିଧା ହେଉଛି । ବିଶେଷତଃ ମେଡିକାଲ କଲେଜ ଛାତ୍ରମାନଙ୍କର ପଡାରେ କିପରି ବାଧା ନ ହେବ ସେକଥା ସରକାର ବିଚାର କରିବାର କଥା ।

ଆଉ ଗୋଟିଏ କଥା ହେଉଛି ଖ୍ରୀଷ୍ଟୀଆନ କଲେଜକୁ ଯେଉଁ ଗ୍ରାଣ୍ଟ ଦିଆ ହୋଉଛି ସେ ବିଷୟରେ କେତେକ ଆଲୋଚନା ହୋଇଛି । ମୋ ମନରେ ଏ ବିଷୟରେ ଆପତ୍ତି କରିବାର କଥା ନୁହେଁ । କାରଣ ଆମର ସଂବିଧାନରେ ଏପରି ବ୍ୟବସ୍ଥା ରହିଛି । ଧର୍ମ ସମ୍ପର୍କୀୟ ଅନୁଷ୍ଠାନ ଯଦି ଶିକ୍ଷାଦିଗରେ ଚେଷ୍ଟା କରନ୍ତି ତାହେଲେ ଖ୍ରୀଷ୍ଟିଆନ Principle ରଖନ୍ତୁ ବା Cross ରଖନ୍ତୁ—ସେଥିରେ ସରକାର ବାଧା ଦେବେନାହିଁ । ସେ ଅନୁଷ୍ଠାନକୁ ସାହାଯ୍ୟ ଦେବା ଉଚିତ । ସଂବିଧାନ 30 ଧାରାରେ ଅଛି (The hon'ble member Read out English) ତେଣୁ ଖ୍ରୀଷ୍ଟାନମାନେ ମଧ୍ୟ ଧର୍ମ ହିସାବରେ କୌଣସି ଶିକ୍ଷା ଅନୁଷ୍ଠାନ ଗଢି ଥାଆନ୍ତି ଏବଂ ସେଥିରେ କୌଣସି ଖ୍ରୀଷ୍ଟାନ Symbol ବ୍ୟବହାର କରିଥାନ୍ତି । ସେ ବିଷୟ ଆମର ଆଲୋଚନା କରିବା ଉଚିତ ନୁହେଁ ଏବଂ ସେମାନଙ୍କୁ ଯଦି କୌଣସି ଗ୍ରାଣ୍ଟ ଦିଆଯାଉଥାଏ ସେ ବିଷୟରେ ଆମର କୌଣସି ଆପତ୍ତି କରିବା ଉଚିତ୍ ନୁହେଁ ; କିନ୍ତୁ ତା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଯେଉଁ ଶିକ୍ଷାନୁଷ୍ଠାନ ଯାହା ସବୁକି ହିନ୍ଦୁ ମୁସଲମାନ ଏବଂ ଅନ୍ୟାନ୍ୟ ଧର୍ମାବଲମ୍ବୀମାନଙ୍କ ଦ୍ୱାରା କରାଯାଇଛି ସେମାନେ ମଧ୍ୟ ସରକାରଙ୍କଠାରୁ ସାହାଯ୍ୟ ପାଇବା ଉଚିତ, କାହିଁକିନା ଶିକ୍ଷା ଦିଗରେ ଯେ କୌଣସି ସଂପ୍ରଦାୟ ହେଉନା କାହିଁକି ତାକୁ ଉତ୍ସାହିତ କରିବା ଉଚିତ ।

ଏହାପରେ ଆଉ ଗୋଟିଏ ବିଷୟ ପ୍ରତି ମୁଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଛି । ସମ୍ବଲପୁରରେ ଖରା ଦିନରେ ଜଳ ଅଭାବ ହେତୁ Northern Division Commissionerଙ୍କୁ staff quartersରେ ପାଣି ଯୋଗାଇବା ପାଇଁ ବ୍ୟବସ୍ଥା ହୋଇଛି । ସମ୍ବଲପୁରରେ କେତେ ପାଇପ ବସିଛି ଆମେ ଯଦି ଦେଖୁ, ଆମେ ଦେଖିବା ଯେ Northern Division କମିଶନରଙ୍କ ଷ୍ଟାଫ୍ କ୍ୱାଟରରେ ଯେଉଁ ସାମାନ୍ୟ କେତେ ଲୋକ ଅଛନ୍ତି କେବଳ ସେହିମାନଙ୍କ ପାଇଁ ୪ଟି Point ଦିଆ ହୋଉଛି ଅର୍ଥାତ୍ ସମୁଦାୟ ସମ୍ବଲପୁର ସହର ପାଇଁ 26ଟି Point ଦିଆ ହୋଇଛି । ମୁଁ କହୁ ନାହିଁ ଯେ Staff କ୍ୱାଟରରେ ଯେଉଁ

Point ଦିଆଯାଇଛି ତାହା କମାଇ ଦିଆଯାଉ । ମୁଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ, ଅନ୍ୟାନ୍ୟ ଅଞ୍ଚଳରେ ଯଥା Deheripali ଏବଂ ଖ୍ରୀଷ୍ଟାନପଡା ଯେଉଁ ସବୁ ଜାଗା ନଦୀଠାରୁ ଦୂରରେ ଅଛି ଏବଂ ଯେଉଁ ଅଞ୍ଚଳରେ ଖରଦିନେ ଆଦୌ ପିଇବା ପାଣି ମିଳେ ନାହିଁ, ସେହି ସ୍ଥାନରେ ସରକାର ପାଇପ ବସାଇବାର ବ୍ୟବସ୍ଥା କରନ୍ତୁ, ଯେପରି କି ଲୋକେ ଅନୁଭବ କରି ପାରିବେ ନାହିଁ ଯେ ଷ୍ଟାଫ୍ କ୍ୱାଟରର ଲୋକମାନେ ସରକାରୀ କର୍ମଚାରୀ ହୋଇଥିବାରୁ ସେମାନେ ସହଜରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ପାରିଲେ ଏବଂ ସହଜରେ ପାଣିର ସୁବିଧା ପାଇ ପାରିଲେ ; କିନ୍ତୁ ଅନ୍ୟାନ୍ୟ ଲୋକମାନେ ସରକାରଙ୍କ ଦୃଷ୍ଟି ସହଜରେ ଆକର୍ଷଣ କରି ନପାରିବାରୁ ତାଙ୍କ ସକାଶେ କିଛି କରାଗଲା ନାହିଁ । ଏପରି ଭାବ ଲୋକଙ୍କ ମନରେ ଯେପରି ନ ଆସେ ସେଥିପ୍ରତି ସରକାର ଦୃଷ୍ଟି ଦେବେ ବୋଲି ମୁଁ ଅନୁରୋଧ କରୁଛି ।

## ଅତିରିକ୍ତ ଖର୍ଚ୍ଚ ଦାବି 1950-51 ଉପରେ ଭାଷଣ

ମାନ୍ୟବର ମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଟ 17,960·00 ଟଙ୍କା ଏକ ଅତିରିକ୍ତ ଖର୍ଚ୍ଚ ଦାବି ଆଗତ କରିଛନ୍ତି ସାଧାରଣ ପ୍ରଶାସନ ଇତ୍ୟାଦି ପାଇଁ ଏବଂ ଡଃ ଶ୍ରଦ୍ଧାକର ସୁପକାର ଏହ ଉପରେ ଏକ କାଟ ପ୍ରସ୍ତାବ ଆଣି କହିଛନ୍ତି (ବିଧାନସଭା ତା 7-8-1950) ଯେ ହୀରାକୁଦ ବନ୍ଧ ପାଇଁ ଯେଉଁ ପୁନର୍ବସତି ଯୋଜନା କରାଯାଇଛି ଏବଂ ଜମି ଆବାଦ କରାଯାଇଛି, ସେଥିରେ ବହୁ ଦୋଷତ୍ରୁଟି ରହିଛି । ଏହି ପ୍ରସଙ୍ଗରେ ସେଗୁଡ଼ିକ ଆଲୋଚନା କରିବାକୁ ସେ ଏହି କାଟ ପ୍ରସ୍ତାବ ଆଗତ କରିଛନ୍ତି ବୋଲି ସ୍ପଷ୍ଟ ଭାବରେ ପ୍ରକାଶ କରିଛନ୍ତି । ଯେଉଁ ଜମି ଦଖଲ କରି ସରକାର ହୀରାକୁଦ ବନ୍ଧ ନିର୍ମାଣ କଲେ, ସେହିସବୁ ଜମି ହରାଇ ବାସ୍ତୁହରା ହୋଇଥିବା ଲୋକମାନଙ୍କୁ ସରକାର ଯେଉଁ ଜମି ଦେବାକୁ ଚାହୁଁଛନ୍ତି ସେ ଜମି ଏତେ ନିକୃଷ୍ଟ ଯେ "ସରକାର କର୍ମଚାରୀମାନେ ଉନ୍ନତ ଧରଣର ଖତସାର ଏବଂ ଉନ୍ନତ ଧରଣର କୃଷିକାର୍ଯ୍ୟ କରିସୁଦ୍ଧା କୌଣସି ଫଳ ପାଇନାହାନ୍ତି । ଏପରି ଅବସ୍ଥାରେ ଲୋକଙ୍କୁ ଯଦି ସେହି ଜମି ଦିଆଯାଏ, ତାହାହେଲେ ଲୋକମାନେ ତାଙ୍କ ଚେଷ୍ଟାରେ କଅଣବା ଉତ୍ପାଦନ କରିପାରିବେ' ?

ଶ୍ରଦ୍ଧାକର ତେଣୁ ସରକାରଙ୍କୁ ପରାମର୍ଶ ଦେଇ କହିଛନ୍ତି, "ତେଣୁ ସରକାର ଏ ବିଷୟରେ ଅତି ସାବଧାନ ହୋଇ ଅଗ୍ରସର ହେବା ଉଚିତ ଏବଂ ଏପରି ଭାବରେ କାର୍ଯ୍ୟ କରନ୍ତୁ ଯାହା ଫଳରେ ପୁନର୍ବସତି କେନ୍ଦ୍ର ଦ୍ୱାରା ଲୋକଙ୍କ ମନ ଆକୃଷ୍ଟ ହେବ ଏବଂ ସେମାନେ ସ୍ୱତଃପ୍ରବୃତ୍ତ ହୋଇ ଏହି ନୂତନ ସ୍ଥାନକୁ ଆସିବେ" ।

× × × ×

ମାନ୍ୟବର ମନ୍ତ୍ରୀ ଶ୍ରୀ ପବିତ୍ର ମୋହନ ପ୍ରଧାନ ସେହିପରି ଲୋକ ସମ୍ପର୍କ ବିଭାଗ ପାଇଁ ଅତିରିକ୍ତ ଖର୍ଚ୍ଚ ଦାବି ଆଗତ କରିଛନ୍ତି ଏବଂ ଡଃ ସୂପକାର ଏହା ଉପରେ ମଧ୍ୟ କାଟ ପ୍ରସ୍ତାବ ଆଣି ଉକ୍ତ ବିଭାଗର କାର୍ଯ୍ୟକଳାପରେ ହେଉଥିବା ଦୋଷତ୍ରୁଟି ଆଲୋଚନା କରିବାକୁ ଚାହୁଁଛନ୍ତି । ତଥାକଥିତ ଆଦିବାସୀ ମେଳାରେ ଅଧିକ ସଂଖ୍ୟକ ଲୋକ ଯୋଗ ଦେବେ ବୋଲି "ଆଦିବାସୀମାନଙ୍କୁ ଆକୃଷ୍ଟ କରିବା ପାଇଁ ଯଥେଷ୍ଟ ପରିମାଣରେ ମଦ ଓ ହାଣ୍ଡିଆ ବିତରଣ କରାଯାଇ ଥିଲା" । ଶ୍ରଦ୍ଧାକର ଏ ବିଷୟରେ ନିଜର ମତ ଦେବା ସଙ୍ଗେ ସଙ୍ଗେ ପରିଜଣ ମନ୍ତ୍ରୀ ଉକ୍ତ ମେଳାରେ ଯୋଗ ଦେବାକୁ ଯିବାକୁ ସମାଲୋଚନା କରିଛନ୍ତି । ଏହିପରି ଡଃ ସୂପକାର ଯାହା ଦୁର୍ନୀତି ଓ ଅନୀତି ବୋଲି ଭାବିଛନ୍ତି ସ୍ପଷ୍ଟ ଭାବରେ ସରକାରଙ୍କୁ ସେ ବିଷୟରେ କଠୋର ସମାଲୋଚନା କରିବାକୁ ପଛାଇ ନାହାନ୍ତି ।

The Hon'ble Shri NITYANANDA KANUNGO : Sir, I beg to move that the Assembly do assent to a supplementary grant of Rs. 17,960 to defray the charges which will come in course of payment during the year ending the 31st day of March 1951 in respect of the head "General Administration—Miscellaneous," etc.

(This appropriation has the recommendation of the Governor)

The Hon'ble the SPEAKER : Motion moved.

ଶ୍ରୀ ଶ୍ରଦ୍ଧାକର ସୂପକାର—ମାନ୍ୟବର ସଭାପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ, ଏହି ଯେଉଁ ଦାବି ଅଛି, ଏହାକୁ ଶହେ ଟଙ୍କାକୁ କମାଇ ଦିଆଯାଉ ଏବଂ ଏହି କାଟ ପ୍ରସ୍ତାବର ଉଦ୍ଦେଶ୍ୟ ହେଉଛି ଏହି ହୀରାକୁଦ ବନ୍ଧପାଇଁ ଯେଉଁ ପୁନର୍ବସତି ଯୋଜନା କରା-ହେଉଛି ଏବଂ ଜମି ଆବାଦ କରାହେଉଛି ସେଥିରେ ଅନେକଗୁଡ଼ିଏ ତ୍ରୁଟି ରହିଯାଇଛି ଏବଂ ସେହି ତ୍ରୁଟି ଆଲୋଚନା କରିବା ପାଇଁ ଏହି କାଟ ପ୍ରସ୍ତାବ ମୁଁ ଆଗତ କରୁଛି ।

ଏହି ବିଷୟରେ କେତେକ ପ୍ରଶ୍ନର ଉତ୍ତରରେ କେବଳ ଏଠି ନୁହେଁ କେନ୍ଦ୍ର ବ୍ୟବସ୍ଥା ସଭାରେ ମଧ୍ୟ କେତେକ ପ୍ରଶ୍ନ ପଚରାଯାଇଥିଲା. ସେଥିର ଉତ୍ତରରୁ ଯାହା ଜଣା ପଡୁଛି ଯେ ଗତବର୍ଷ ନୂଆ ଶିଳ୍ପିପଥର ଗ୍ରାମରେ କେତେକ ଜମିର ପ୍ରାୟ ୦ ଏକର ପରିମିତ ଜମିରେ ପରୀକ୍ଷାମୂଳକ ଚାଷ କାର୍ଯ୍ୟ ବିଭାଗୀୟ କର୍ତ୍ତୃପକ୍ଷଙ୍କ ଦ୍ୱାରା କରା ହୋଇଥିଲା । କିନ୍ତୁ ଦୁଃଖର ବିଷୟ ଯେ ସେହି ସ୍ଥାନରେ ଯାହା ଚାଷ ହୋଇଥିଲା, ଯେତିକି ଫସଲ ବୁଣା ହୋଇଥିଲା, ତାହା ମୋଟେ ଆଉ କଟାଯାଇ ନାହିଁ । ତା'ର ପ୍ରଧାନ କାରଣ ହେଉଛି ଯେ, ଏହି ପରୀକ୍ଷାମୂଳକ ଚାଷ ଯେଉଁ ସ୍ଥାନରେ କରାଯାଉଛି ଏବଂ ଗତବର୍ଷ ଯେଉଁ ସ୍ଥାନରେ ଜମି ଆବାଦ କରାଯାଇ ଥିଲା ସେଇଟା ଏତେ ନିକୃଷ୍ଟ ଧରଣର ଜମି ଯେ, ସେଠାରେ କୌଣସି ରକମର ଧାନ ହୋଇ ପାରିବ ନାହିଁ । ଅଥଚ ସେହି ସ୍ଥାନରେ ଲୋକଙ୍କୁ ସେହିପରି ଜମି

ଦିଆଯାଉଛି, ଯେଉଁ ପ୍ରକାର ଜମିରେ କି ସରକାରୀ କର୍ମଚାରୀମାନେ ଉନ୍ନତ ଧରଣର ଖତ ଦେଇ, ଉନ୍ନତ ଧରଣର କୃଷି କାର୍ଯ୍ୟ କରି ସୁଦ୍ଧା କୌଣସି ଫଳ ପାଇ ନାହାନ୍ତି । ଏପରି ଅବସ୍ଥାରେ ଲୋକଙ୍କୁ ଯଦି ସେହି ଜମି ଦିଆଯାଏ ତାହାହେଲେ ଲୋକମାନେ ତାଙ୍କ ଚେଷ୍ଟାରେ କ'ଣ ବା ଉତ୍ପାଦନ କରି ପାରିବେ ?

ବର୍ତ୍ତମାନ ସରକାର କହୁଛନ୍ତି ଯେ, ଅନ୍ୟ ସ୍ଥାନରେ ମୁଁ ଅବଶ୍ୟ ଖାଲି ସମାଲୋଚନା ଦୃଷ୍ଟିରୁ କହୁନାହିଁ ଯାହା ପ୍ରକୃତ ଘଟଣା ଘଟିଯାଇଛି, ସେହି ଦୃଷ୍ଟିରୁ ମୁଁ ସରକାରଙ୍କୁ ଭବିଷ୍ୟତ କାର୍ଯ୍ୟ ପାଇଁ ସାବଧାନ କରି ଦେବାକୁ ଆଲୋଚନା କରୁଛି । ଭବିଷ୍ୟତରେ ଯଦି ଏହି ଟ 17,960 ଙ୍କା ଖର୍ଚ୍ଚ କରି ସେମାନେ ପ୍ରକୃତରେ ଟ 16,350 ଙ୍କା ଏହି ଜମିରୁ ଅମଦାନୀ କରି ପାରନ୍ତି ତା ହେଲେ ମୁଁ ସ୍ପଷ୍ଟ ଭବରେ କହିବି ଯେ, ଲୋକମାନେ ଆଗ୍ରହ ସହକାରେ ସେହି ଜମି ନେବେ କିନ୍ତୁ ନୂଆ ଶିଳିପଥରରେ ଏ ପ୍ରକାର ଯେପରି ଭବରେ ଜମି ଆବାଦ କରଯାଉଛି, ଯେଉଁଥିରେ କିଛି ଫସଲ ମୋଟେ ହୋଇ ପାରିବ ନାହିଁ ଏବଂ ଯେଉଁଥିରେ କି ଜଳର ଆଦୌ ବନ୍ଦୋବସ୍ତ କରଯାଇ ନାହିଁ ଏବଂ ଯେଉଁ ବନ୍ଧ କଟା ଯାଏ କରଯାଉଛି ସେଥିରେ ଖରଦିନେ ମୋଟେ ପାଣି ରହୁନାହିଁ ଏବଂ ସେପରି ଭବରେ ସଂପୂର୍ଣ୍ଣ ମନଯୋଗ ନ ଦେଇ ଆଉ ବାହାରକୁ ଦେଖାଇଲା ଭଳିଆ କାମ କରଯାଏ, ତାହା-ହେଲେ କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ ବରଂ ସରକାର ସମ୍ପୂର୍ଣ୍ଣ ଭବରେ ବଦନାମ ହେବେ ଏବଂ ଭବିଷ୍ୟତରେ ପୁନର୍ବସତି ପ୍ରତି ଲୋକଙ୍କୁ ଆକୃଷ୍ଟ କରି ପାରିବେ ନାହିଁ । ତେଣୁ ଏ ବିଷୟରେ ସରକାର ଅତି ସାବଧାନ ହୋଇ ଅଗ୍ରସର ହେବା ଉଚିତ ଏବଂ ଏପରି ଭବରେ କାର୍ଯ୍ୟ କରନ୍ତୁ ଯାହା ଫଳରେ ପୁନର୍ବସତି କେନ୍ଦ୍ର ଦ୍ୱାରା ଲୋକଙ୍କ ମନ ଆକୃଷ୍ଟ ହେବ ଏବଂ ସେମାନେ ସ୍ୱତଃ ପ୍ରବୃତ୍ତ ହୋଇ ଏହି ନୂତନ ସ୍ଥାନକୁ ଆସିବେ ।

ତା'ପରେ ଗୋଟିଏ ପ୍ରଶ୍ନ ମୁଁ ପଚାରିବାକୁ ଚାହେଁ ଯେ ଟ17,960 ଙ୍କା ପରୀକ୍ଷା ମୂଳକ ଶସ୍ୟ ଉତ୍ପାଦନ ପାଇଁ ରଖା ଯାଇଛି, ଏହା କେତେକ ଜମିରେ କରଯିବ ଏବଂ କେଉଁ ସ୍ଥାନରେ କରଯିବ, ତାହା ସରକାର ଅନୁଗ୍ରହ କରି ତାଙ୍କର ଉତ୍ତରରେ ଜଣାଇବେ ବୋଲି ଅନୁରୋଧ କରୁଛି ।

The Hon'ble the SPEAKER : Cut motion moved.

Shri SURENDRA MOHAN PATNAIK ; Mr. Speaker, Sir I beg to move that the demand be reduced by Rs. 100.

I find that in this demand Government propose to take up cultivation on an experimental basis of land reclaimed for purpose of resettlement of displaced persons. I am not aware as yet of any cultivation done by Government which has resulted in profit. We

have had in the past out bitter experience of experimental farming and other experiments, where invariably money is spent and less recoverd, Government

*          *          *          *

The Hon'ble Shri PABITRA MOHAN PRADHAN ; Sir, I beg to move that this Assembly do assent to a supplemantary grant of Rs. 17,176 to defray the charges which will come in course of payment during the year ending the 31st day of March 1951 in respect of the head "General Administration—Public Relation Department, etc".

The Hon'ble the SPEAKER : Motion moved.

**ଶ୍ରୀ ଶ୍ରଦ୍ଧାକର ସୁପକାର**—ମାନ୍ୟବର ସଭାପତି ମହାଶୟ, ମୋର ନାମରେ ଥିବା ଦୁଇଟିଯାକ କାଟ ପ୍ରସ୍ତାବ ମୁଁ ଏକ ସଙ୍ଗରେ ଆଗତ କରୁଛି । ପ୍ରଥମ ପ୍ରସ୍ତାବ ହେଉଛି ଯେ, ଏଇ ଯେଉଁ ଦାବି ହୋଇଛି, ସେହି ଦାବିକୁ ଷହେଟଙ୍କା ଦ୍ୱାରା କମାଇ ଦିଆଯାଉ । Tourist Information Bureau ର ପ୍ରୟୋଜନୀୟତା ବିଷୟରେ ଆଲୋଚନା କରିବା ପାଇଁ ଏବଂ 2ୟ କାଟ ପ୍ରସ୍ତାବ ହେଉଛି ଯେ, ଏହାକୁ ଆହୁରି ଷହେଟଙ୍କା ଦ୍ୱାରା କମାଇ ଦିଆଯାଉ । ଗଇରଙ୍ଗପୁରରେ ହୋଇଥିବା ଆଦିବାସୀ ମେଳା ବିଷୟରେ ଆଲୋଚନା କରିବା ପାଇଁ ପ୍ରଥମ ପ୍ରସ୍ତାବ ସମ୍ପର୍କରେ ସରକାର ଯେଉଁ explanation Memo. ଦେଇଛନ୍ତି ସେଥିରେ କହିଛନ୍ତି—

It has been decided in the meeting. Of this Police Traffic Advisory Council that a Tourist Information Bureau should be opened in the Public Relations Department with two or three officers spacially trained for the purpose.

The Hon'ble the SPEAKER : I wish to draw the attention of the honourable member to the fact that long quatations are not permissible. The honourable member can give the list of the quotation.

**ଶ୍ରୀ ଶ୍ରଦ୍ଧାକର ସୁପକାର**—Only to make the report intelligible, ଏ ବିଷୟରେ ମୁଁ ଏତିକି ମାତ୍ର କହିବାକୁ ଚାହେଁ ଯେ, ଏଇ ଯେଉଁ Tourist Information Bureau ଗଢା ଯାଇଛି, ଏଥିପାଇଁ ଏଇ ବର୍ଷ ପ୍ରାୟ 3,976 ଟଙ୍କା ରଖାଯାଇଛି । ଏଟା ଅବଶ୍ୟ ସାତ ମାସ ପାଇଁ ରଖାଯାଇଛି । କିନ୍ତୁ ଏହା ଫଳରେ ଆମକୁ ପ୍ରତିବର୍ଷ 7,016 ଟଙ୍କା

ଖର୍ଚ୍ଚ କରିବାକୁ ପଡ଼ିବ, ଯଦି ଏଇଟାକୁ ଗୋଟାଏ ଚିରସ୍ଥାୟୀ ବିଭାଗ କରି ରଖିବାକୁ ହୁଏ, ଏ ବିଷୟରେ ଏତିକି ଅଛି ଯେ, Tourist Information Bureau କୁ ଯଦି ପରିଗ୍ରହିତ କରୁ, ତାହାହେଲେ ଆମର ଯାହା ଖର୍ଚ୍ଚ ହେବ, ସେ ଖର୍ଚ୍ଚ କ'ଣ ଆମେ tourist ମାନଙ୍କଠାରୁ ଆଦାୟ କରି ପାରିବା କି ? ଅନ୍ୟାନ୍ୟ ଦେଶମାନଙ୍କରେ tourist ମାନଙ୍କ ପାଇଁ ଏଭଳି ବନ୍ଦୋବସ୍ତ ଅଛି । ସେଠାରେ ପ୍ରାୟ tourist ମାନେ କର ବା cess ଦିଅନ୍ତି । ଏପରିକି ଯାହା ଖର୍ଚ୍ଚ ହୁଏ ତାହାଠାରୁ ବେଶୀ କର ଆଦାୟ ମଧ୍ୟ ହୁଏ । କିନ୍ତୁ ଆମ ଦେଶରେ ଆମେ କେବଳ ଯଦି ନାମ ବଢ଼ାଇବା ପାଇଁ ଅନ୍ୟାନ୍ୟ ପ୍ରଦେଶମାନଙ୍କରେ ଓ ଅନ୍ୟାନ୍ୟ ଦେଶମାନଙ୍କରେ ନାମ ବିସ୍ତାର କରିବା ପାଇଁ ଯଦି ଏପରି କରିଥାଉ, ତାହାହେଲେ ମୁଁ କହିବି ଯେ, ଏହାଦ୍ୱାରା ଆମର ଲକ୍ଷ୍ୟ ସୁଦୂର ପରାହତ ହେଉଛି । କାରଣ ଆମ ଦେଶ ବର୍ତ୍ତମାନ ଯେପରି ଦରିଦ୍ର ଅବସ୍ଥାରେ ଉପସ୍ଥିତ ହୋଇଛି ଏବଂ ଆମର ଯେପରି ଅର୍ଥର ଅନାଟନ ହୋଇଛି, ଏପରି ଅବସ୍ଥାରେ ଯେବେ ଆମେ ପ୍ରତିବର୍ଷ 7,016 ଟଙ୍କା ଲେଖାଏଁ ଖର୍ଚ୍ଚ କରୁ (କେବଳ ଏହି Tourist Information Bureau ପାଇଁ ) ତାହାହେଲେ, ଏଇଟା ଅମିତବ୍ୟୟିତାର ଗୋଟାଏ ଚୂଡ଼ାନ୍ତ ନିଦର୍ଶନ ବୋଲି ଧରାଯିବ ।

ଦ୍ୱିତୀୟ ବିଷୟଟି ହେଉଛି, ରାଇରଙ୍ଗପୁରରେ ଏହି ଯେଉଁ ଆଦିବାସୀ ମେଳା ହେଲା, ଏ ବିଷୟରେ ଯେତେ ପ୍ରକାର ଖବର ସଂଗ୍ରହ କରିଛି, ସେଥିରୁ ମୁଁ ଜାଣି ପାରୁଛି ଯେ, ଏହି ଆଦିବାସୀ ମେଳା ରାଇରଙ୍ଗପୁରରେ କରିବା ପାଇଁ 8,316 ଟଙ୍କା ଖର୍ଚ୍ଚ ହୋଇଛି ଏବଂ ସେଥିପାଇଁ 8,000 ଟଙ୍କା ଏହି Supplementary Budget ରେ ସରକାର ଦାବି କରିଛନ୍ତି । ଏହି ଆଦିବାସୀ ମେଳା କାହିଁକି ହେଲା ? ମୁଁ ଯେତେଦୂର ବୁଝି ପାରିଛି ଆଦିବାସୀ ଓ ଅଣଆଦିବାସୀ ବା ଅନ୍ୟାନ୍ୟ ଲୋକମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ସ୍ଥାପନ କରିବା ପାଇଁ ବୋଧହୁଏ ଏହି ମେଳା ପ୍ରଧାନତଃ ଉଦ୍ଦିଷ୍ଟ ହୋଇଥିଲା । କିନ୍ତୁ ଏହା ଯେପରି ଭାବରେ ହୋଇଥିଲା, ଏ ବିଷୟରେ ମୁଁ ଯେତେଦୂର ଖବର ସଂଗ୍ରହ କରିଛି, ସେଥିରୁ ଜାଣି ପାରିଛି ଯେ, ଏହି ଉଦ୍ଦେଶ୍ୟ କୌଣସି ରକମ ସାଧିତ ହୋଇ ପାରିନାହିଁ । ମୁଁ ଯେତେଦୂର ଖବର ସଂଗ୍ରହ କରିଛି ମୁଁ ଜାଣି ପାରିଛି ଯେ. ଏହି ମେଳା ପାଇଁ ଚାନ୍ଦା ସଂଗ୍ରହ କରାଯାଇଥିଲା । ସରକାରୀ ତହସିଲଦାର ପ୍ରଭୃତିଙ୍କ ଠାରୁ ଚାନ୍ଦା ଆଦାୟ କରାଯାଇଥିଲା, ଧମକ ମଧ୍ୟ ଦିଆହୋଇଥିଲା । ବ୍ୟବସାୟୀମାନଙ୍କ ଠାରୁ S. D. O. ପ୍ରଭୃତିଙ୍କ ଦ୍ୱାରା ଚାନ୍ଦା ଆଦାୟ କରା ହୋଇଥିବାର ଶୁଣା ଯାଉଛି ଏବଂ ସେଥିଯୋଗୁଁ ସେହି ବ୍ୟବସାୟୀମାନେ ପ୍ରଶ୍ରୟ ନେବାର ଉଦ୍‌ଯୋଗ କରୁଛନ୍ତି । ଆହୁରି ମଧ୍ୟ ଶୁଣାଯାଉଛି ଯେ, ଏହି ମେଳା ପ୍ରତି ଆଦିବାସୀମାନଙ୍କୁ ଆକୃଷ୍ଟ କରିବା ପାଇଁ ପ୍ରଚାର କରାଯାଇ ଥିଲା ଯେ, ବିହାରରୁ ଜୟପାଳ ସିଂହ ଏହି ଆଦିବାସୀ ମେଳାକୁ ଆସୁଛନ୍ତି ଏବଂ ଆହୁରି ଅଭିଯୋଗ କରାଯାଇଛି ଯେ, ଆମ ସରକାର ଯଦିଓ ନିଶା ବର୍ଜ୍ଜନ କରିବା ମୂଳ ନୀତି ରୂପେ ଗ୍ରହଣ କରିଛନ୍ତି, ତଥାପି ଏହି ଆଦିବାସୀମାନଙ୍କୁ ଆକୃଷ୍ଟ କରିବା ପାଇଁ ଯଥେଷ୍ଟ ପରିମାଣରେ ମଦ ଓ ହାଣ୍ଡିଆ ବିତରଣ କରାଯାଇ ଥିଲା ।

Shri BHAIRAB CHANDRA MOHANTY : What is the source of information on which these changes are leased.

ଶ୍ରୀ ଶୁଧାକର ସୁପକାର—ଯଦି ସରକାର ଏଇଟା ସତ୍ୟ ନୁହେଁ ବୋଲି କହିବାକୁ ଚାହାନ୍ତି କହି ପାରନ୍ତି ।

ତା'ପରେ ଆଉ ଗୋଟିଏ ବିଷୟରେ ମୁଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହୁଁଛି ଯେ, ଏ ବିଷୟ ଯେତେବେଳେ ଆମ Assembly Quarters ରେ ଆଲୋଚନା ହୋଇଥିଲା, ସେତେବେଳେ କଂଗ୍ରେସର ଜଣେ ପ୍ରଧାନ ସଦସ୍ୟ ଆକ୍ଷେପ କରି କହିଥିଲେ ଯେ, ଏହିପରି ମେଳାମାନଙ୍କରେ ଅନେକ ମନ୍ତ୍ରୀ ଯାଉଛନ୍ତି । ଏହି ମେଳାରେ 4 ଜଣ ମନ୍ତ୍ରୀ ଯୋଗ ଦେଇଛନ୍ତି । ମୁଁ ମଧ୍ୟ ଦେଖୁଛି ଯେ, ଏହି ପ୍ରକାର ମେଳାମାନଙ୍କରେ ବା କୌଣସି ଅଦିବାସୀମାନଙ୍କରେ ଅନ୍ତତଃ 4 ଜଣ ନ ହେଲେ ମେଳା ହୋଇ ପାରିବ ନାହିଁ ।

ମାନ୍ୟବର ଶ୍ରୀ ନବକୃଷ୍ଣ ଚୌଧୁରୀ—ଚାରିଜଣ ମନ୍ତ୍ରୀ ଗଲେ ଆପଣଙ୍କ ଦେହ ସହୁ ନାହିଁ କାହିଁକି ?

ଶ୍ରୀ ସୁଧାକର ସୁପକାର : ମୁଁ ଆଶା କରୁଛି ଯେ, ଦୀନବନ୍ଧୁ ବାବୁଙ୍କ କହିବା ଅନୁସାରେ ଏତେଜଣ ମନ୍ତ୍ରୀ ଏକତ୍ର ହେଲେ ସାଧାରଣ ଲୋକ nervous ହେବାର କଥା ।

## ବନ୍ଦୀମାନଙ୍କର ଅବସ୍ଥା ଅନୁଧ୍ୟାନ ସମିତି ଗଠନ ପାଇଁ ପ୍ରସ୍ତାବ

ଆଜିକାଲି ଆମେ ମାନବାଧିକାର ସଂପର୍କରେ ଖୁବ୍ ଆଲୋଚନା କରୁଛୁ, ବକ୍ତୃତା ଦେଉଛୁ ଓ ସଭାସମିତି କରୁଛୁ । ବିଶେଷତଃ ଏହି ପ୍ରସଂଗରେ ବନ୍ଦୀମାନଙ୍କର ଜେଲରେ ଥିଲା ବେଳେ ଅତ୍ୟାଚାରିତ ଓ ଅବହେଳିତ ହେଉଥିବା ଏବଂ ସମୟ ସମୟରେ ମୃତ୍ୟୁବରଣ କରୁଥିବା ବିଷୟକ ସମ୍ବାଦ ପ୍ରକାଶ ପାଇବାର ଦେଖୁଁ । ଜାତୀୟ ମାନବାଧିକାର ଆୟୋଗ ସଂପ୍ରତି ଏସବୁ ପ୍ରତି ଅଧିକ ସକ୍ରିୟ ହୋଇ ସରକାର ଓ ସମାଜକୁ ବିଭିନ୍ନ ନିର୍ଦ୍ଦେଶ ଓ ପରାମର୍ଶ ଦେଉଛନ୍ତି । ମାତ୍ର ପ୍ରାୟ 50 ବର୍ଷତଳେ ଡଃ ସୁଧାକର ସୁପକାର ବନ୍ଦୀମାନଙ୍କ ସମସ୍ୟା ସଂପର୍କରେ କିପରି ସଚେତନ ଓ ସଂବେଦନଶୀଳ ହୋଇଛନ୍ତି, ତାହା ନିମ୍ନଲିଖିତ ଭାଷଣ (ବିଧାନସଭା ତା 19-1-1950)ରୁ ସ୍ପଷ୍ଟ ହୋଇଥାଏ । ସେ ଯଥାର୍ଥରେ କହିଛନ୍ତି, "ଜେଲ ଭିତରେ ବନ୍ଦୀମାନଙ୍କୁ ଶତ୍ରୁ ରୂପେ ନଦେଖି ମନୁଷ୍ୟ ରୂପେ ଦେଖିବାକୁ ହେବ" ।

ସେତେବେଳେ ଏସଂପର୍କରେ ଯାହା କହିଲେ କମ୍ୟୁନିଷ୍ଟମାନଙ୍କ ସପକ୍ଷରେ ଯୁକ୍ତି କରଯାଉଛି ବୋଲି ସରକାର ଭାବୁଥିଲେ । ସେ ପୁଣି କହିଛନ୍ତି, "ମୋର ପ୍ରଧାନ କଥା ହେଉଛି ଯେଉଁ କଏଦୀମାନେ ଅଛନ୍ତି ସେମାନଙ୍କର ରାଜନୈତିକ ମତବାଦ ବା

ତାଙ୍କର ଆଦର୍ଶବାଦ ଯାହା ହେଉନା କାହିଁକି ସେମାନେ ଯେତେବେଳେ ଜେଲଭିତରେ ବନ୍ଦୀ, ସେହି ସମୟରେ ତାଙ୍କର ଏହି ସବୁ ମତବାଦ ଆଲୋଚନା କରିବା ମୁଁ ଭାବୁଛି ଅପ୍ରାସଂଗିକ" । ସେମାନଙ୍କ ଦୟନୀୟ ଅବସ୍ଥା ଓ ଅତ୍ୟାଚାର, ଅନଶନ ଇତ୍ୟାଦି ସଂପର୍କରେ ସମ୍ବାଦପତ୍ରରେ ଯେଉଁସବୁ ବିବରଣୀ ପ୍ରକାଶ ପାଉଛି, ଡଃ ସୂପକାର ସେସବୁ ଉଲ୍ଲେଖ କରି ଗୋଟିଏ ଅନୁଧ୍ୟାନ ସମିତି ବସାଇବାକୁ ଅନୁରୋଧ କରିଛନ୍ତି ଏବଂ ଆନନ୍ଦର କଥା ଯେ ବାଚସ୍ପତି ମଧ୍ୟ ଏଥିପାଇଁ ଏକ ସମିତି ଗଠନ କରିଛନ୍ତି । ଏ ଦିଗରେ ଡଃ ସୂପକାରଙ୍କ ଚିନ୍ତାଧାରା କିପରି ଯୁକ୍ତିଯୁକ୍ତ ଓ ଦୂରଦୃଷ୍ଟି ସଂପନ୍ନ ଏହା ଏତଦ୍ୱାରା ପ୍ରମାଣିତ ହୋଇଛି ।

ଶ୍ରୀ ଶ୍ରଦ୍ଧାକର ସୂପକାର: ମାନନୀୟ ସଭାପତି ମହୋଦୟ, ମାନ୍ୟବର ପ୍ରଧାନମନ୍ତ୍ରୀ ମୋର ଏ ପ୍ରସ୍ତାବ ଉପରେ ପ୍ରଥମ ଥର ଭାଷଣ ଦେବାକୁ ଯାଇ ଯେଉଁ କେତୋଟି କଥା କହିଛନ୍ତି ସେଥିପାଇଁ ମୁଁ ତାଙ୍କୁ ବିଶେଷ ଧନ୍ୟବାଦ ଦେଉଛି । କିନ୍ତୁ ଏ ବିଷୟରେ ଯାହା କହୁଛନ୍ତି ସେ ବିଷୟରେ ଏ ତଥ୍ୟମୂଳକ ବିବରଣୀ ବିଷୟରେ ମୁଁ କେତେକ କଥା ଆଲୋଚନା କରିବାକୁ ଚାହେଁ । ସେ କହିଛନ୍ତି ଯେ ପୂର୍ବେ ଖାଇବା ଖର୍ଚ୍ଚ ଏବଂ ଅନ୍ୟାନ୍ୟ ଖର୍ଚ୍ଚ ଯେତେ ଦିଆହେଉଥିଲା ବର୍ତ୍ତମାନ ତାଠାରୁ ବେଶୀ ଦିଆଯାଉଛି । କିନ୍ତୁ ଏ ବିଷୟରେ ମନେ ରଖିବାକୁ ହେବ ଯେ, ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମାନ୍ୟବର ପ୍ରଧାନମନ୍ତ୍ରୀ କହିଛନ୍ତି 1949 ସାଲରେ କଟକ ଓ ବରହମ୍ପୁର ସହରରେ cost of living index ବା ଜୀବନ ଧାରଣ ଖର୍ଚ୍ଚ ଯେତିକି ଥିଲା ସେଟାକୁ 100 ଧରି ନିଅ । ବର୍ତ୍ତମାନ ସେ ଖର୍ଚ୍ଚ ବଢ଼ିକରି 134 ହୋଇ ଯାଇଛି । ସେ ତୁଳନାରେ ଦେଖିବାକୁ ଗଲେ ମୁଁ ଭାବୁଛି ଏହିସବୁ ଯାହା ବୃଦ୍ଧି ହୋଇଛି ତା ବିଶେଷ କିଛି ବୃଦ୍ଧି ହୋଇଛି ବୋଲି ମନେ ହେଉନାହିଁ । ତାପରେ ଦ୍ୱିତୀୟ କଥା ହେଉଛି ଏ ସବୁ ବିଷୟ ପଡ଼ିଲେ ଅନେକ ସମୟରେ Communism ଓ Communist ମାନଙ୍କର କାର୍ଯ୍ୟକଳାପ ବିଷୟରେ ପ୍ରଶ୍ନ ଉତ୍‌ଥାପନ ହେଉଛି । ଗତ ଆସେମ୍ବ୍ଲି ବୈଠକରେ ଯେଉଁ Maintenance of Public Safety Ordinance Bill ଆଗତ ହୋଇଥିଲା ତାକୁ ଏଇପରି ସମାଲୋଚନା କରିଥିଲେ । ମୋର ଅନେକ ବନ୍ଧୁ କହିଲେ Communistଙ୍କୁ ସହାନୁଭୂତି ଦେଖାଇବାକୁ ଏହି resolution ଅଣାଯାଇଛି । ଜୀବନ ଧାରଣ ବିଷୟରେ ଭାଷଣ ଦେଲବେଳେ ମାନ୍ୟବର ପ୍ରଧାନମନ୍ତ୍ରୀ Communist ମାନଙ୍କ ମତିଗତି ଓ କାର୍ଯ୍ୟକଳାପ ବିଷୟରେ କେତେକ ସମାଲୋଚନା କରିଛନ୍ତି । କିନ୍ତୁ ମୁଁ ଭାବୁଛି ଏଇସବୁ Communist ନୀତି ଓ କାର୍ଯ୍ୟକଳାପ ନେଇ ଏଇ ପ୍ରସ୍ତାବରେ ଆଲୋଚନା କରିବାସଂପୂର୍ଣ୍ଣ ଅପ୍ରାସଙ୍ଗିକ । ମୋର ପ୍ରଧାନ କଥା ହେଉଛି ଯେଉଁ କଇଦୀମାନେ ଅଛନ୍ତି ସେମାନଙ୍କର ରାଜନୈତିକ ମତବାଦ ବା ତାଙ୍କର ଆଦର୍ଶ ବାଦ ଯାହା ହେଉନା କାହିଁକି ସେମାନେ ଯେତେବେଳେ ଜେଲ୍ ଭିତରେ ବନ୍ଦୀ ସେହି

ସମୟରେ ତାଙ୍କର ଏହିସବୁ ମତବାଦ ଆଲୋଚନା କରିବା ମୁଁ ଭାବୁଛି ଅପ୍ରାସଙ୍ଗୀକ । ସେମାନେ ଯଦି ଜେଲ ବାହାରେ ଥାନ୍ତେ ସେତେବେଳେ ତାଙ୍କର ନିନ୍ଦା କରିବା ବୋଧ ହୁଏ ଠିକ୍ ହୁଅନ୍ତା । କାରଣ ସେମାନେ ଦେଶକୁ ଉଚ୍ଛନ୍ନ କରିବାକୁ ଚାହାନ୍ତି, ଦେଶରେ ବିପ୍ଳବ କରିବାକୁ ଚାହାନ୍ତି । ଏହି ହେତୁ ତାଙ୍କୁ ସମାଲୋଚନା କରିବାର ଅଧିକାର ଆମର ଅଛି । କିନ୍ତୁ ଜେଲ ଭିତରେ ବନ୍ଦୀମାନଙ୍କୁ ଶତ୍ରୁ ରୂପେ ନ ଦେଖି ମନୁଷ୍ୟ ରୂପେ ଦେଖିବାକୁ ହେବ । ତାହା ପରେ ମୋର ବ୍ୟକ୍ତିଗତ ବନ୍ଧୁ ଶ୍ରୀଯୁକ୍ତ ପବିତ୍ର ମୋହନ ପ୍ରଧାନ ଯେଉଁ କେତୋଟି ବିଷୟରେ ଆଲୋଚନା କରିଥିଲେ ସେ ବିଷୟରେ ସେ କହିଛନ୍ତି ଯେ ସୁରେନ୍ଦ୍ର ବାବୁ ଶ୍ରଦ୍ଧାକର ବାବୁଙ୍କର ଯଦି ଜେଲର କିଛି ବ୍ୟକ୍ତିଗତ ଅଭିଜ୍ଞତା ଥାନ୍ତା ତାହାହେଲେ ସେମାନେ ଠିକ୍ ଭାବରେ ଜେଲ କଥା ବୁଝିପାରନ୍ତେ । ମୁଁ କହିବାକୁ ଚାହେଁ ଯେ, ତାଙ୍କପରି ମୋର ଅଭିଜ୍ଞତା ନ ହେଲେ ମଧ୍ୟ ସାମାନ୍ୟ କିଛି ଅଭିଜ୍ଞତା ଅଛି । ସେଥିପାଇଁ ମୁଁ ପରିଦର୍ଶକ ହିସାବରେ ନୁହେଁ, ଜଣେ ଭୁକ୍ତଭୋଗୀ ହିସାବରେ ଜେଲ ଜୀବନର ଅନୁଭୂତି ଲାଭ କରିଛି । ସୁରେନ୍ଦ୍ର ବାବୁଙ୍କୁ ଯଦି ଜେଲ ପଠାଇବାକୁ ଚାହାନ୍ତି ପଠାନ୍ତୁ । କିନ୍ତୁ ମୋତେ ପଠାଇଲେ ବିଶେଷ କିଛି ଲାଭ ହେବ ନାହିଁ । ସେ କହିଛନ୍ତି ଯେ, ସାଧାରଣତଃ ଦେଖା ଯାଇଛି ଲୋକମାନେ ତାଙ୍କ ସାଧାରଣ ଜୀବନରେ ଯେପରି ଭାବରେ ଚଳି ଆସିଛନ୍ତି ତାଙ୍କ standard of living ଯାହା, ଜେଲ ଭିତରେ ତାଙ୍କର standard of living ତାଠାରୁ ବେଶୀ ଏବଂ ସେଥିପାଇଁ ଲୋକେ କଏଦୀ ହେବାକୁ ବିଶେଷ ଆଗ୍ରହାନ୍ୱିତ ଏବଂ ବିଶେଷ କରି ରାଜନୈତିକ କଏଦୀ ହେବାକୁ ବେଶୀ ଲାଳାୟୀତ । କିନ୍ତୁ ମୁଁ କହେ, ଏହିପରି ଲୋକ ଆମର ଓଡ଼ିଶା ମଧ୍ୟରେ କେହି ନାହାନ୍ତି, ଯେଉଁମାନେ detenus ହିସାବରେ ଅର୍ଥାତ୍ ବନ୍ଦୀ ହିସାବରେ ଅଛନ୍ତି ଏପରି କେହି ଲୋକ ବାହାରିବେ ବୋଲି ମୁଁ ଭାବିପାରୁ ନାହିଁ । ତା'ପରେ ଏ ବିଷୟରେ ଯାହା ଆଲୋଚନା କରାଯାଇଛି ସବୁଥିରେ କୁହାଯାଇଛି ଯେ, ବର୍ତ୍ତମାନ ଜେଲରେ ଯେଉଁ କଏଦୀମାନେ ଅଛନ୍ତି, ସେମାନଙ୍କର ଅବସ୍ଥା ତ ଭଲ । ତାହାହେଲେ ଗୋଟିଏ Enquiry Committee କରି ତଦନ୍ତ କରିବା କ'ଣ ଦରକାର ? ମୁଁ କହେ ଯଦି କଏଦୀମାନଙ୍କର ଅବସ୍ଥା ଭଲ ଥାଏ, ବର୍ତ୍ତମାନ ଜେଲ ଯେପରି ଭାବରେ ଚାଲିଛି ଯଦି ତାହା ଦୋଷ ଶୂନ୍ୟ ଭାବରେ ଚାଲିଥାଏ, ତାହାହେଲେ ଏ Committee ସେମାନଙ୍କ ଅବସ୍ଥା ଦେଖିକରି ସନ୍ତୁଷ୍ଟ ହୁଅନ୍ତୁ । ତାହାହେଲେ ଏ ପ୍ରସ୍ତାବକୁ ବିରୋଧ କରିବାର କୌଣସି କାରଣ ନାହିଁ । ଏହି ଦୃଷ୍ଟିରୁ ମୁଁ ପ୍ରଧାନମନ୍ତ୍ରୀ ମହାଶୟଙ୍କୁ ଅନୁରୋଧ କରୁଛି, ଏହି ପ୍ରସ୍ତାବ ଗ୍ରହଣ କରନ୍ତୁ ।

The Hon'ble SPEAKER : Does hon'ble mover of the resolution press his resolution ?

Shri SHRADHAKAR SUPAKAR : Yes, Sir.

The Hon'ble SPEAKER: The question is that the resolution, that this Assembly recommends to Government to constitute a Committee of Enquiry consisting of—

1. Shri Kapur Chand Nayak,
2. Shri Surendra Mohan Pattanaik,
3. Shri Radha Nath Rath,
4. Raja Shri Sailendra Narayan Bhanja Deo,
5. Shri Uma Charan Pattanaik,
6. Shri Loknath Misra, and
7. Shri Shradhakar Supakar, (the Mover)

To visit the jails and examine the conditions of living of the prisoners, specially the political prisoners and to suggest necessary reforms be adopted.

(The resolution was put to the House and was lost)

## ଅତିରିକ୍ତ ଖର୍ଚ୍ଚ ଦାବି, 1950-51 ଉପରେ ଶ୍ରଦ୍ଧାକରଙ୍କ ଭାଷଣ

ମାନ୍ୟବର ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ଶିକ୍ଷା ସଂପର୍କରେ ଟ. 9,120 ଙ୍କାର ଅତିରିକ୍ତ ଖର୍ଚ୍ଚ ଦାବି ଉପରେ ଡଃ ଶ୍ରଦ୍ଧାକର ସୂପକାର ଏକ କାଟ ପ୍ରସ୍ତାବ ଆଗତ କରି ବିଭାଗର ବିଭିନ୍ନ ଦୋଷ ତ୍ରୁଟି ଦେଖାଇଥିଲେ ଏବଂ ଏହାକୁ ପ୍ରତ୍ୟାହାର କରିବା ପୂର୍ବରୁ ପୁଣି କହିଛନ୍ତି ଯେ ଅନ୍ୟ ବିଭାଗ ପରି ସରକାର ଶିକ୍ଷା ବିଭାଗ ପ୍ରତି ବିଶେଷ ତତ୍ପର ହୋଇନାହାନ୍ତି । ଏହି ବିଭାଗ ସର୍ବଦା ଉପେକ୍ଷିତ ହୋଇ ଆସିଛି । କଲେଜମାନଙ୍କର ଅଧ୍ୟାପକ ନିଯୁକ୍ତିରେ ସର୍ବାଧିକ ବିଳମ୍ବ ଘଟିବା ସରକାରଙ୍କର ଏକ ଅଭ୍ୟାସଗତ ଅବହେଳା ।

ଉକ୍ତଦିନ ଶିକ୍ଷାମନ୍ତ୍ରୀ ପୁଣି ଟ. 52,415 ଙ୍କାର ଏକ ଅତିରିକ୍ତ ଖର୍ଚ୍ଚ ଦାବି କରିଛନ୍ତି ସରକାରଙ୍କ କଳା ମହାବିଦ୍ୟାଳୟ ନିମନ୍ତେ ଏବଂ ଶ୍ରଦ୍ଧାକର ଏହା ଉପରେ ମଧ୍ୟ ଏକ ଖର୍ଚ୍ଚ କାଟ ପ୍ରସ୍ତାବ ଆଣି କହିଛନ୍ତି, (ବିଧାନସଭା ତା 7-8-1950), "ସମ୍ବଲପୁର ଗଂଗାଧର ମହେର କଲେଜର ଦୁରବସ୍ଥା ବିଷୟରେ ଏହି ବ୍ୟବସ୍ଥା ସଭାରେ ଅନେକ ଥର ଆଲୋଚନା କରଯାଇଛି କିନ୍ତୁ ତାର ସ୍ଥାୟୀ ପ୍ରତିକାର ଆଜି ପର୍ଯ୍ୟନ୍ତ ହେଲା ନାହିଁ । ଏବିଷୟରେ ଯେତେଥର କୁହାଯାଇଛି, ସରକାର କହିଛନ୍ତି ଯେ, ଆମର ଅର୍ଥାଭାବ ହେଉଛି, କିନ୍ତୁ ଆମେ ଏହି ପ୍ରକାର ଭାବରେ କେତେଦିନ ଚଳିବା ?" ତେଣୁ ଏହି ସମସ୍ୟାର ଗୁରୁତ୍ୱ ଉପଲବ୍ଧ କରି ଅନୁଧ୍ୟାନ କରଯିବା ଉଚିତ । ଉକ୍ତ କଲେଜ

ଯୋଗୁଁ ହାଇସ୍କୁଲର କାର୍ଯ୍ୟ ବାଧାପ୍ରାପ୍ତ ହେଉଛି ଏବଂ ସ୍କୁଲର ଛାତ୍ରଛାତ୍ରୀଗଣ ଅଭାବ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଅଧ୍ୟାପକ ପର୍ଯ୍ୟାପ୍ତ ସଂଖ୍ୟାରେ ଉକ୍ତ ମହାବିଦ୍ୟାଳୟରେ ନାହାନ୍ତି । ତେଣୁ ପିଲମାନଙ୍କ ପାଠୋନ୍ନତି ବିଭିନ୍ନ ବିଷୟରେ ବାଧାପ୍ରାପ୍ତ ହେଉଛି ବୋଲି ଅଭିଯୋଗ କରିଛନ୍ତି । ଶେଷରେ ଅର୍ଥ ମନ୍ତ୍ରୀ ଉକ୍ତ ଅଭାବସବୁ ଶୀଘ୍ର ଦୂର କରୁଛନ୍ତି କହିବାରୁ ଡଃ ସୁପକାର ତାଙ୍କ କାଟପ୍ରସ୍ତାବକୁ ପ୍ରତ୍ୟାହାର କରିନେଇଥିଲେ ।

**ଶ୍ରୀ ଶ୍ରଦ୍ଧାକର ସୁପକାର**: ମାନ୍ୟବର ସଭପତି ମହାଶୟ, ମୁଁ ମୋର କାଟ ପ୍ରସ୍ତାବ ପ୍ରତ୍ୟାହାର କରିବାପୂର୍ବରୁ ଏ ବିଷୟରେ ସାମାନ୍ୟ କେତେକ କଥା କହିବାକୁ ଗ୍ଡହେଁ ଯେ, ମାନ୍ୟବର ମନ୍ତ୍ରୀ ମହାଶୟ ଅଧ୍ୟାପକ ନିଯୁକ୍ତି ଇତ୍ୟାଦି ବିଷୟରେ ଯେଉଁ ତତ୍ପରତା ଦେଖାଇଛନ୍ତି, ସେଥିପାଇଁ ମୁଁ ଅବଶ୍ୟ ତାଙ୍କୁ ଧନ୍ୟବାଦ ଦେଉଛି, କିନ୍ତୁ ଆମେ ବରାବର ଦେଖିବାକୁ ପାଉଛୁ ଯେ, ଆମ ପ୍ରଦେଶରେ ଅନ୍ୟାନ୍ୟ ବିଭାଗ ତୁଳନାରେ ଶିକ୍ଷା ବିଭାଗ ବରାବର ଉପେକ୍ଷିତ ହୋଇ ଆସିଛି । ଏ ବିଷୟରେ ବୋଧେ ସନ୍ଦେହ କରିବାର କୌଣସି କାରଣ ନାହିଁ ଏବଂ ଏଥିପାଇଁ ବୋଧେ ଏହିସବୁ କାର୍ଯ୍ୟାନୁଷ୍ଠାନ କରିବାରେ ଏତେ ବିଳମ୍ବ ହୋଇଛି । ଆମେ ଦେଖୁ ଯେ, ଅନ୍ୟ ଯେକୌଣସି ବିଭଗ ଯଥା ପୁଲିସ ବିଭଗରେ ହୁଏ କଣ ନା anticipation of sanction ଏହି Assembly ମଞ୍ଜୁରି ଦେବା ପୂର୍ବରୁ ଆନୁସଙ୍ଗିକ କାର୍ଯ୍ୟାନୁଷ୍ଠାନ କରାଯାଇଥାଏ ଓ ଟଙ୍କା ଖର୍ଚ୍ଚ ହୋଇଥାଏ । ଯେତେବେଳେ ସରକାରଙ୍କର ଏ ବିଷୟରେ ସନ୍ଦେହ କରିବାର ନ ଥିଲ ଯେ, ଏ ବିଷୟରେ Assembly sanction ନ ଦେବେ, ସେତେବେଳେ ଏ Assembly sanction ଦେବା ପର୍ଯ୍ୟନ୍ତ ଏତେଦିନ ଅପେକ୍ଷା କରିବା ଯୋଗୁଁ ହେଉ ବା ଏସବୁ sanction ହୋଇ ଟଙ୍କା ବନ୍ଦୋବସ୍ତ ହେବାରେ ଅର୍ଥ ବିଭଗ ଓ ଶିକ୍ଷା ବିଭଗ ଭିତରେ ଭିଡ଼ା ଓଟରା ହେବା ଯୋଗୁଁ ହେଉ, ଏହି ଯେଉଁ ଡେରି ହେଲ, ଏକଥା ହୁଏତ ଶିକ୍ଷା ବିଭଗ ପକ୍ଷରେ ପ୍ରଶଂସାର କଥା ହୋଇପାରେ କିନ୍ତୁ ପ୍ରକୃତରେ ଆମ ଓଡ଼ିଶା ସରକାରଙ୍କ ପକ୍ଷରେ ପ୍ରଶଂସାର କଥା ନୁହେଁ ଏବଂ ଏପରି ଭାବରେ ଶିକ୍ଷା ବିଭାଗକୁ ଅନ୍ୟାନ୍ୟ ବିଭାଗ ତୁଳନାରେ ଯେ ଉପେକ୍ଷା କରାଯାଉଛି, ଏହି ଉପେକ୍ଷାର କାରଣ ସ୍ୱରୂପ ନାନାପ୍ରକାର ଯୁକ୍ତି ଅନ୍ୟାନ୍ୟ ବିଭାଗମାନଙ୍କରେ ବାହାର କରୁଛନ୍ତି ଏଇଟା ବିସ୍ମୟର କଥା । ମୁଁ ମୋର କାଟ ପ୍ରସ୍ତାବ ପ୍ରତ୍ୟାହାର କରୁଛି ।

The Hon'ble SPEAKER : Has the Hon'ble member the leave of the House to withdraw his cut motion ?

(The cut motion with the leave of the House was withdrawn)

The Hon'ble SPEAKER : Now the question is that this Assembly do assent to a supplementary grant of Rs. 9,820 to defray the charges which will come in course of payment during the year

ending the 31st day of March, 1951 in respect of the head "Education —A—University—Government Arts Colleges."

(The motion was adopted and grants made)

*　　　*　　　*　　　*

The Hon'ble Pandit LINGARAJ MISRA : Sir, I beg to move that, this Assembly do assent to a supplementary grant of Rs. 52,415 to defray the charges which will come in course of payment during the year ending the 31st day of March, 1951 in respect of the head "Education—A—University—Government Arts Colleges."

The appropriation has the recommendation of the Governor

(This Hon'ble the SPEAKER : Motion moved)

ଶ୍ରୀ ଶ୍ରଦ୍ଧାକର ସୂପକାର . ମାନ୍ୟବର ସଭାପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ, ଏହି ଦାବିଟାକୁ ଟ 100 ଙ୍କା ଦ୍ୱାରା କମାଇ ଦିଆଯାଉ । ସମ୍ବଲପୁରର ଗଙ୍ଗାଧର ମେହେର କଲେଜର ଦୁରବସ୍ଥା ବିଷୟରେ ଏହି ବ୍ୟବସ୍ଥା ସଭାରେ ଅନେକ ଥର ଆଲୋଚନା କରାଯାଇଛି କିନ୍ତୁ ତାର କୌଣସି ସ୍ଥାୟୀ ପ୍ରତିକାର ଆଜିପର୍ଯ୍ୟନ୍ତ ହେଲନାହିଁ । ଏ ବିଷୟରେ ଯେତେଥର କୁହାଯାଇଛି, ସରକାର ପ୍ରାରମ୍ଭରୁ କହିଛନ୍ତି ଯେ, ଆମର ଅର୍ଥାଭାବ ହେଉଛି କିନ୍ତୁ ଆମେ ଏହିପ୍ରକାର ଭାବରେ କେତେଦିନ ଚଳିବା । ସେ ବିଷୟରେ ସରକାର ଟିକିଏ ଅନୁଧ୍ୟାନ କରିବାର କଥା । ଆମେ ଦେଖିବାକୁ ପାଉଛୁ ଯେ, ଗଙ୍ଗାଧର ମେହେର କଲେଜ 1944 ସାଲରୁ ଆରମ୍ଭ ହୋଇଗଲାଣି ଏବଂ site selection ପାଇଁ ମଧ୍ୟ ଅନେକ ସ୍ଥାନରେ ଚେଷ୍ଟା କରାଯାଇଛି କିନ୍ତୁ ଏ ପର୍ଯ୍ୟନ୍ତ କେଉଁ ସ୍ଥାନ ନିର୍ବାଚିତ ହୋଇଛି, ତାହା ଅବଶ୍ୟ ଆମ୍ଭେମାନେ ଏ ପର୍ଯ୍ୟନ୍ତ ଜାଣି ପାରୁନାହୁଁ । ଏ ବିଷୟରେ ଯେପରି ଅତିଶୀଘ୍ର ସ୍ଥାନ ନିର୍ବାଚିତ ହୁଏ ଏବଂ ଅତି ଶୀଘ୍ର College building କରାଯାଏ, ସେଥିପ୍ରତି ସରକାର ଯତ୍ନବାନ୍ ହେବା ଉଚିତ । କାରଣ College ବର୍ତ୍ତମାନ School ଯେଉଁ ଯାଗାରେ ହେବାର କଥା, ସେ ଯାଗାରେ ହେଉଛି ଏବଂ School ଯେଉଁ ଯାଗାରେ ହେଉଛି, ତାହା ପିଲମାନଙ୍କର ସ୍ୱାସ୍ଥ୍ୟ ଓ ଶିକ୍ଷା ପକ୍ଷରେ ଉପଯୁକ୍ତ ନୁହେଁ । School ଛାତ୍ରମାନେ, ଶିକ୍ଷକ ଓ ହେଡ୍‌ମାଷ୍ଟର ଏବଂ ଛାତ୍ରାବାସର ଛାତ୍ରମାନେ ଏକପ୍ରକାର ଅସ୍ୱାସ୍ଥ୍ୟକର ଏବଂ ଶିକ୍ଷା ଅନୁପଯୋଗୀ ଗୃହମାନଙ୍କରେ ବର୍ତ୍ତମାନ ଅଧ୍ୟୟନ କରୁଛନ୍ତି । ସେଥିପାଇଁ ସରକାର ଏ College ତିଆରି କାର୍ଯ୍ୟ ଯେପରି ଏହି ବର୍ଷ ଆରମ୍ଭ ହୋଇଯାଏ, ସେ ବିଷୟରେ ଯତ୍ନ ନେବା ଉଚିତ । ତା ପରେ ଦ୍ୱିତୀୟ କଥା College ରେ ଯେଉଁ ଅଧ୍ୟାପକମାନେ ନିଯୁକ୍ତ ଅଛନ୍ତି, ସେମାନଙ୍କ ସଂଖ୍ୟା ଯଥେଷ୍ଟ ନୁହେଁ । ଯେତେ ନିଯୁକ୍ତ ହେବାର କଥା, ସେତେ ହୋଇ ନାହାନ୍ତି । ସେଥିପାଇଁ ଛାତ୍ରମାନଙ୍କ ପାଠ ପଢ଼ାରେ ବିଶେଷ ଅସୁବିଧା ହେଉଛି ।

କେବଳ ଗୋଟିଏ କଥା ଉଦାହରଣ ସ୍ୱରୂପ ମୁଁ କହିବି ଯେ, physics ରେ 194? ରୁ ଜଣେ ମାତ୍ର ଅଧ୍ୟାପକ ଅଛନ୍ତି । ସେ ସବୁ ବିଷୟରେ ସମ୍ଭାଳିବା ସଂପୂର୍ଣ୍ଣରୂପେ ଅକ୍ଷମ । ଏହି Department ରେ ଅନ୍ୟୁନ 2 ଜଣ ଅଧ୍ୟାପକ ଯଦି ନ ହୁଅନ୍ତି, ତାହାହେଲେ କାର୍ଯ୍ୟ ଚଳିବା ମୁସ୍କିଲ । କେବଳ ପଦାର୍ଥ ବିଜ୍ଞାନରେ ନୁହେଁ, ଅନ୍ୟାନ୍ୟ ବିଭାଗରେ ମଧ୍ୟ ଏହିପରି ଅଳ୍ପ ଅଧ୍ୟାପକ ନେଇ କାର୍ଯ୍ୟ ଚାଲୁଛି । ଏହିସବୁ ତ୍ରୁଟି ଯେପରି ଅତି ଶୀଘ୍ର ପରିପୂରଣ ହୁଏ, ସେଥିପ୍ରତି ସରକାର ଦୃଷ୍ଟି ଦେବା ଉଚିତ ।

**ଶ୍ରୀ କରୁଣାକର ପାଣିଗ୍ରାହୀ** . ସଭାପତି ମହାଶୟ, ମାନ୍ୟବର ବିରୋଧୀ ଦଳର ସଭ୍ୟ ମହୋଦୟ ସମ୍ବଲପୁର କଲେଜ ଦୁର୍ଗତି ଓ ଦୁରବସ୍ଥା ବିଷୟରେ ଯାହା କହିଲେ, ତାହାଠାରୁ ବାଲେଶ୍ୱର କଲେଜ ଦୁରବସ୍ଥା ଯେ ଅଧିକ, ଏକଥା ତାଙ୍କୁ ବା ଅନ୍ୟ କାହାକୁ ଜଣାନାହିଁ । ସେ College ରେ ଦୁଇଟି staff ରେ ପାଠ ପଢ଼ା ହେଉଛି । ତାଙ୍କର College ଅଛି ଏବଂ High School ବି ଅଛି । କିନ୍ତୁ ଆମର ଗୋଟିଏ ସ୍ଥାନ ଅଛି । ଦୁଇ, ତିନୋଟି ଶିକ୍ଷକ ପାଠ ପଢ଼ାଉ ଅଛନ୍ତି । ପ୍ରଫେସର କି ଶିକ୍ଷକମାନଙ୍କର ରହିବାର ସ୍ଥାନ ନାହିଁ । ଯେଉଁ Hostel ଅଛି, ଯାହାକୁ ମାନ୍ୟବର ମନ୍ତ୍ରୀ ଦେଇଥିଲେ, ସେ Hostel ରେ ବର୍ତ୍ତମାନ ଆଦେଶ ଦେଇଛନ୍ତି ଯେ, କେବଳ Professor ମାନେ ରହିବେ । ପିଲା ସଂଖ୍ୟା ବଢୁଛି । ସେମାନଙ୍କର ରହିବା ପାଇଁ ସ୍ଥାନ ନାହିଁ । Professor ମାନଙ୍କୁ quarters ଯୋଗାଇ ଦିଆହେଉଛି । ଗତ ବର୍ଷ ଶୁଣାଗଲା ଯେ, ୬ଟି quarters ସରକାର କରିଦେବେ ବୋଲି କିନ୍ତୁ ପଇସା ନ ହେବାରୁ ତା ହେଲନାହିଁ । ପିଲାମାନଙ୍କର ରହିବାର ସ୍ଥାନ ନାହିଁ, ପାଠ ପଢ଼ାଇବା ପାଇଁ ସ୍ଥାନ ନାହିଁ, ତେଣୁ ଦୁଇଟି shift କରି ପାଠ ପଢାହେଉଛି । ଏଇଆ ହେଲା ବାଲେଶ୍ୱର କଲେଜର ଦୁର୍ଗତି । ମାନ୍ୟବର ସଭ୍ୟ ସମ୍ବଲପୁର କଲେଜ ବିଷୟରେ ଯାହା ଉପସ୍ଥାପିତ କରିଛନ୍ତି, ମୁଁ ଭାବୁଛି ବାଲେଶ୍ୱର କଲେଜ ତୁଳନାରେ ସମ୍ବଲପୁର କଲେଜ ବହୁତ ଆଗରେ । ବାଲେଶ୍ୱର କଲେଜ ବହୁତ ପଛରେ ପଡ଼ିଛି । ତାଙ୍କ ଦାବି ଯଦି-ଗ୍ରହଣ କରଯାଏ, ତାହାହେଲେ ମୁଁ କହିବି ଯେ କହିପାରିଲା, ସେ ପାଇଲା କିନ୍ତୁ ଯଦି ଏପରି ହୁଏ ଯେ, ଯାହାର ପ୍ରକୃତ ଦରକାର ସେ ପାଏ, ତାହାହେଲେ ବାଲେଶ୍ୱର କଲେଜର ଦାବି ଅଗ୍ରଗଣ୍ୟ ହେବା ଉଚିତ ।

**ମାନ୍ୟବର ଶ୍ରୀ ଲିଙ୍ଗରାଜ ମିଶ୍ର** ସଭାପତି ମହାଶୟ, ଏ ପ୍ରସ୍ତାବ ଆଗତ କରିଥିବା ମାନ୍ୟବର ବନ୍ଧୁ ଯେଉଁ କଥା ଉତ୍ଥାପନ କରୁଛନ୍ତି, ମୁଁ ସେ ବିଷୟରେ କୌଣସି ଦ୍ୱିଧା ନ କରି ସରକାରଙ୍କ ପକ୍ଷରୁ ଯେଉଁ ତ୍ରୁଟି ହୋଇଛି, ତାହା ମୁଁ ସ୍ୱୀକାର କରୁଛି । କେବଳ ଯେ ସମ୍ବଲପୁରର ଗଙ୍ଗାଧର ମେହେର କଲେଜ ପକ୍ଷରେ ଏହା ହୋଇଛି, ତା ନୁହେଁ । ବାଲେଶ୍ୱର କଲେଜ ବିଷୟରେ କରୁଣାକର ବାବୁ କହି ଯାଇଛନ୍ତି । ଦୁଃଖର କଥା ଆମର ବନ୍ଧୁ ଇତିପୂର ସାହେବ ଟିକିଏ ପୁରୀ ଜିଲ୍ଲା କଥା କହିଲେ ନାହିଁ । ମୋ ନିଜ

ଛିଲା କଥା ମୁଁ କହିବା ଠିକ୍ ନୁହେଁ । କପିଳେଶ୍ୱର ପ୍ରସାଦ ବାବୁ ଯେଉଁ ବଙ୍ଗିର କଲେଜ କଥା ମୋତେ ବାରମ୍ବାର Privately କହିଛନ୍ତି, ସେ କଥା ସେ ମଧ୍ୟ ଟିକିଏ ଉତ୍‌ଥାପନ କଲେନାହିଁ ।

ଯେପରି ଭବରେ ଆମ୍ଭେମାନେ କେନ୍ଦ୍ର ସରକାରଠାରୁ Grant ପାଇଥିଲୁ ଯଦି ସେପରି ଭବରେ ଗଲ ଦୁଇବର୍ଷ ହେଲ ପାଇଥାନ୍ତୁ ମୋର ଆଶା ଆମେ କେତେଦୂର ଅଗ୍ରସର ହୋଇଥାନ୍ତୁ । ଯା ଭିତରେ ଯାଗା ଠିକ୍ କରି ଘର ତୋଳାଇବା ବେଳକୁ ଆର୍ଥିକ ଦୁର୍ଗତି ଆସି ପଡୁଛି । ସେଥି ସକାଶେ କୌଣସି କାର୍ଯ୍ୟ କରି ହେଉନାହିଁ । ଅବଶ୍ୟ ସମ୍ବଲପୁର College ପାଇଁ ଗୋଟିଏ ସ୍ଥାନ ବହୁଦିନ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇପାରି ନ ଥିଲ । ଯେଉଁ ସ୍ଥାନ ଆଗରୁ ଆମେ ମନ୍ତ୍ରୀତ୍ୱ ଗ୍ରହଣ କରିବା ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇଥିଲ ସେଥିପ୍ରତି ନାନା କାରଣ ଦର୍ଶାଇ ଲୋକମାନେ ଆପତ୍ତି କରୁଥିଲେ । ଆମର ଦୁଇବର୍ଷର ଚେଷ୍ଟା ଫଳରେ brooks hill site ରେ କଲେଜପାଇଁ ସ୍ଥାନ ଶେଷ ନିଷ୍ପତ୍ତି ହୋଇଛି । ଶ୍ରୀ ଶ୍ରଦ୍ଧାକର ସୂପକାର କହିଲେ ଯେ, କେଉଁଠାରେ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଛି ମୁଁ ଜାଣିପାରୁ ନାହିଁ । ଦୁଇଦିନ ପୂର୍ବରୁ ମୁଖ୍ୟମନ୍ତ୍ରୀ ଏକ ପ୍ରଶ୍ନର ଉତ୍ତରରେ ପରିଷ୍କାର କହି ଦେଇଛନ୍ତି ଯେ, ବ୍ରୁକ୍‌ସ ହିଲ୍ site ରେ ଯାଗା ଠିକ୍ ହୋଇଛି । ବାଲେଶ୍ୱର କଲେଜପାଇଁ ମଧ୍ୟ ଯାଗା ଠିକ୍ ହୋଇଛି । ଗତବର୍ଷ ବଜେଟରେ ମୋର ମନେ ଅଛି, ପୁରୀ କଲେଜ ପାଇଁ ୪7 ହଜାର ଟଙ୍କା ବ୍ୟବସ୍ଥା କରଯାଇଥିଲ । ବର୍ତ୍ତମାନ ଆମର ଆର୍ଥିକ ଅବସ୍ଥା ଦେଖି ଆମେ ବିଗ୍ରର କରି ସ୍ଥିର କଲୁ ଯେ, ଏଣିକି କଲେଜ ପାଇଁ ଯାଗା ଦେବା କଥା ସ୍ଥାନୀୟ ଲୋକଙ୍କ ଉପରେ ପକାଇ ଦିଆଯିବ । ସେମାନେ ଅନ୍ତତଃ ଜମି acquire କରନ୍ତୁ, ପୁରୀରେ ବିଶିଷ୍ଟ ଭଦ୍ରଲୋକ ୪7 ହଜାର ଟଙ୍କାରେ କଲେଜ ହେବ ନାହିଁ ବୋଲି ଆପତ୍ତି କରିବାରୁ ମୁଁ ସେମାନଙ୍କୁ କହିଲି "ଆପଣମାନେ କୌଣସିମତେ ଏତିକି ଟଙ୍କାରେ କରନ୍ତୁ । Governmentର ଅର୍ଥାଭବ ଯୋଗୁଁ Government କୁ ଯେପରି ଜମି କିଣିବାପାଇଁ ଟଙ୍କା ଦେବାକୁ ନ ପଡ଼େ ତାର ବ୍ୟବସ୍ଥା କରନ୍ତୁ ।" ବାଲେଶ୍ୱର କଲେଜ ବିଷୟରେ ସେହିଭଳି ପ୍ରସ୍ତାବ ଆସିଥିଲ । ୧ ଲକ୍ଷ କେତେ ହଜାର ଟଙ୍କା Land acquisition ପାଇଁ ଦାବି ହୋଇଥିଲ । କିନ୍ତୁ ଅର୍ଥାଭବ ଯୋଗୁଁ ହୋଇ ପାରୁଲ ନାହିଁ । ସେଥିପାଇଁ shift system କରି ଯେଉଁଠି ଯେଉଁଠି ହାଇସ୍କୁଲ ହେଉଛି ସେଠି ଟାଣଟୁଣ କରି କଲେଜ କରଯାଉଛି । ବରଂ ମୁଁ କହିବି Puri College ର ଅବସ୍ଥା ଆହୁରି ଶୋଚନୀୟ । ପୁରୀ କଲେଜରେ ଗରିବ ପିଲ ଅଧିକ ଅଛନ୍ତି । ସେମାନେ ଟାଣଟୁଣ କରି କୌଣସିମତେ ଚଳାଇ ନ ପାରିବାରୁ ଯୁଦ୍ଧ ସମୟରେ Military ମାନଙ୍କର ଯେଉଁ ସିନେମା ହଲ ଥିଲ, ତାକୁ ଟ 75,000 ଙ୍କା ଦେଇ ଆମେ କିଣିଲୁ । ସେଠାରେ 7/୪ ମାଇଲ ଦୂରରୁ ପିଲମାନେ ଗ୍ଲଲି ଆସି class କରୁଛନ୍ତି । ସେଠାରେ ଏହି ଦୂରବସ୍ଥା । ବଲଙ୍ଗିରକଲେଜରେ I. Sc. class ଖୋଲିବାପାଇଁ ବ୍ୟବସ୍ଥା କରି ସାରିଲୁଣି । କିନ୍ତୁ ସେଠାରେ ଘର ନାହିଁ ଏବଂ 10 ହଜାର

ଟଙ୍କା ଦିଆଯାଇଛି । ଏହିପରି ଅବସ୍ଥା ସବୁଠି ରହିଛି । ଆମର ଆର୍ଥିକ ଅବସ୍ଥା ଓ କେନ୍ଦ୍ରର ଆର୍ଥିକ ଅବସ୍ଥା ଆମେ ଦେଖୁଛୁ । ମୋର ଆଶା ହେଉନାହିଁ 3/4 ବର୍ଷ ଭିତରେ ଏ ଅବସ୍ଥା ସୁଧୁରି ଯିବ ବୋଲି । ଆମ୍ଭେମାନେ ପ୍ରାଣପଣେ ଚେଷ୍ଟା କରୁଛୁ, କିନ୍ତୁ ଧୈର୍ଯ୍ୟର ସହିତ ସମସ୍ତଙ୍କୁ ଅପେକ୍ଷା କରିବାକୁ ପଡ଼ିବ । ଏହି shifting system ରେ ଆମ୍ଭେମାନେ କଷ୍ଟରେ ଏବଂ ଅସୁବିଧାରେ class କରିବା ନଚେତ୍ class ବନ୍ଦ କରିଦେବା ଯେତେ ଅସୁବିଧା ହେଉଛି, ଶିକ୍ଷକମାନଙ୍କୁ ଅସୁବିଧା ହେଉଛି, ଛାତ୍ରମାନଙ୍କୁ ଅସୁବିଧା ହେଉଛି, ଆଉ 3/4 ବର୍ଷ ଆପଣମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ । Staff ବିଷୟରେ ମାନ୍ୟବର ସଭ୍ୟ ଯାହା କହିଲେ ବାସ୍ତବିକ ବିଜ୍ଞାନ ବିଷୟରେ ବିଶେଷତଃ Physiology, Physics, Chemistry, ପ୍ରଭୃତି ଏ ସବୁଥିରେ staff କମ୍ ଅଛନ୍ତି । ଯେତେଜଣ ଦରକାର ପ୍ରତ୍ୟେକ ବିଷୟରେ 3/4 ଜଣ ଲୋଖାଏଁ ଅଭାବ ଅଛନ୍ତି । Physicsରେ 5 ଜଣ ଅଭାବ ଥିଲେ ଏବଂ 2 ଜଣ ନିଯୁକ୍ତ କରାଯାଇଛନ୍ତି । ଆଉ ଉପଯୁକ୍ତ ଅଧ୍ୟାପକ କମିଯିବାରୁ ସେ ସ୍ଥାନଗୁଡ଼ିକ ଖାଲି ଅଛି । କଲିକତା University result ବାହାରିବା ପରେ ବିଜ୍ଞାନ ବିଷୟରେ ଯଥେଷ୍ଟ ସଂଖ୍ୟକ Professor ମିଳିବେ ବୋଲି ଆଶା । ମୁଁ ନିଜେ ଅନୁଭବ କରୁଛି ଯେ, ଯେତେସବୁ ଅଧ୍ୟାପକ ନିଯୁକ୍ତ ହେଉଛନ୍ତି, ସେମାନଙ୍କ ଭିତରୁ ଅନେକ ତାଙ୍କର ବୟସ ଓ standard low ବୋଲି Public Service Commission ମତ ଦେଉଛନ୍ତି । ଖୁବ୍ ଉପଯୁକ୍ତ ଯୋଗ୍ୟତା ବିଶିଷ୍ଟ ଲୋକ ମିଳୁନାହାନ୍ତି । ସେଥିପାଇଁ ଆମକୁ ବାଧ୍ୟ ହୋଇ ଅପେକ୍ଷା କରିବାକୁ ହେଉଛି । Arts ବିଷୟରେ କୌଣସିଠାରେ ଶିକ୍ଷକ ଅଭାବ ନାହାନ୍ତି । କେବଳ ବିଜ୍ଞାନ ବିଷୟରେ ଅଭାବ ଅଛନ୍ତି । ସେ ଅଭାବପୂରଣ କରିବା ପାଇଁ ବହୁତ ଚେଷ୍ଟା କରି ଅନେକ ବୟସ୍ତ ଲୋକଙ୍କୁ re-employ କରିବାକୁ ହେଉଛି । ତାଙ୍କଦ୍ୱାରା କୌଣସି ପ୍ରକାରେ କାମ ଚଳାଇବାକୁ ହେଉଛି । ଏ ଅଭାବ ପୂରଣ ହେବା ପାଇଁ 2 ବର୍ଷ ସମୟ ଲାଗିବ । ସବୁ କଲେଜରେ ବିଜ୍ଞାନ ବିଷୟରେ ଉପଯୁକ୍ତ ଅଧ୍ୟାପକ ନିଯୁକ୍ତ କରାଯାଇ ପାରିବ । ଏବର୍ଷ କିଛି ହୋଇଯିବ । ପରବର୍ଷକୁ ମୁଁ ଆଶା କରୁଛି ଅନେକ ପୂରଣ ହେବ । Geology ବିଷୟରେ ଆମ ପ୍ରଦେଶରେ ଲୋକ ନାହାନ୍ତି । ତାହା ପଢ଼ିବାପାଇଁ ଆମ ପ୍ରଦେଶରେ ସୁବିଧା ନାହିଁ । ଏଥିପାଇଁ ଆମକୁ ଆଉ 2 ବର୍ଷ ଅପେକ୍ଷା କରିବାକୁ ପଡ଼ିବ ।

ଶ୍ରୀ ଲୁଣ୍ଠାକର ସୂପକାର: ମୁଁ ମୋର କାଟ ପ୍ରସ୍ତାବ ପ୍ରତ୍ୟାହାର କଲି ।

The Hon'ble SPEAKER: Has the Hon'ble member leave of the House to withdraw this cut motion.

(The cut motion was by leave of the House withdrawn)

The Hon'ble SPEAKER: The question is that the Assemly do assent to a supplementary grant of Rs. 2,415 to defray the charges which will come in course of payment during the year ending the

31st day of March 1951 in respect of the head "Education—A—University—Government Arts Colleges".

(The motion was adopted and the grant made)

The Hon'ble Pandit LINGARAJ MISRA: Sir, I beg to move that the Assembly do assent to a supplementary grant of Rs. 6,000 to defray the charges which will come in course of payment during the year ending the 31st day of March 1951 in respect of the head "Education—D—Special—A—II Training Schools for Masters."

(This appropriation has the recommendation of the Governor)

The Hon'ble SPEAKER: Motion moved.

## 1951-52 ବର୍ଷ ଅନୁଦାନପାଇଁ ଭୋଟ ଦାବି ଉପରେ ଆଲୋଚନା

ଡକ୍ଟର ଶ୍ରଦ୍ଧାକର ସୂପକାର 1951-52 ଆର୍ଥିକ ବର୍ଷର ଅନୁଦାନ ପାଇଁ ଭୋଟ ଦାବିର ହେଲାବେଳେ ବିଭିନ୍ନ ବିଷୟରେ ସରକାରଙ୍କୁ ସମାଲୋଚନା କରିଛନ୍ତି । ଓଡ଼ିଶା ବିଧାନସଭାରେ ସେ କହିଛନ୍ତି, (ମାର୍ଚ୍ଚ 8,1951) River Valley Development ବା ନଦୀ ଉପତ୍ୟକା ଉନ୍ନୟନ ବିଭାଗର ଖର୍ଚ୍ଚ ଉପରେ ଯେ କୌଣସି ପ୍ରଶ୍ନ ପଚାରିଲେ ଉତ୍ତର ମିଳେନାହିଁ । "ତଥ୍ୟ ସଂଗୃହୀତ ହେଉଛି" ବାରମ୍ବାର କୁହାଯାଏ । ହୀରାକୁଦ ବନ୍ଧ ଯୋଗୁଁ ବାସଚ୍ୟୁତ ଲୋକମାନଙ୍କ ପୁନର୍ବସତିପାଇଁ ସନ୍ତୋଷଜନକ ଅଗ୍ରଗତି ହେଉନାହିଁ । ଶିଳ୍ପସ୍ଥାପନ କିମ୍ବା ଗୃହ ନିର୍ମାଣ କୌଣସି କାର୍ଯ୍ୟ ଆଶାନୁରୂପ ହେଉନାହିଁ । ଅଥଚ ଲୋକମାନଙ୍କଠାରୁ ଜମି ଦଖଲ ଓ ଅନ୍ୟାନ୍ୟ କାର୍ଯ୍ୟ ଠିକ୍ ଭାବରେ ଚାଲିଛି । ତେଣୁ ଜନସାଧାରଣଙ୍କ ସ୍ୱାର୍ଥ ପ୍ରତି ସରକାର ଉଦାସୀନ ରହୁଛନ୍ତି ବୋଲି ଡ଼ଃ ସୂପକାର ସମାଲୋଚନା କରିଛନ୍ତି ।

ସେହିପରି ସାଧାରଣ ସ୍ୱାସ୍ଥ୍ୟ ବିଭାଗ ପାଇଁ ଉପରୋକ୍ତ ବର୍ଷ ପାଇଁ 18 ଲକ୍ଷ ଟଙ୍କାର ବ୍ୟୟ ବରାଦ ହୋଇଛି । ମାତ୍ର ଲୋକଙ୍କ ପାଖରେ ଏହାର ଉପକାର ପହଞ୍ଚି ପାରୁନାହିଁ । ଲୋକଙ୍କ ଦୁଃଖକଷ୍ଟ ସରକାରୀ କର୍ମଚାରୀଙ୍କ ଶ୍ରୁତି ଗୋଚର ହେଉ ନାହିଁ । ବସନ୍ତ, ମ୍ୟାଲେରିଆ, ହଇଜା ଆଦି ମହାମାରୀ ରୋଗ ଲାଗିଲେ ମଧ୍ୟ ଲୋକଙ୍କ ପାଖରେ ଚିକିତ୍ସକମାନେ ପହଞ୍ଚିବା ସମ୍ଭବ ହେଉନାହିଁ । ପ୍ରତିଷେଧକ ବ୍ୟବସ୍ଥା କିଛି ହୋଇପାରେ ନାହିଁ ।

* * * *

ସ୍ୱାଧୀନତା ପରବର୍ତ୍ତୀ କାଳରେ ଉଭୟ ଖାଦ୍ୟ ଓ ବାସର ବିକଟ ଅଭାବ । ମାର୍ଚ୍ଚ 19,1951ରେ ବିଧାନସଭା ଗୃହରେ ଡ଼ଃ ସୂପକାର ପ୍ରଥମେ ଅନୁପଯୁକ୍ତ ସୂତା ଆମଦାନୀକୁ ସମାଲୋଚନା କରିଛନ୍ତି । ତେଣୁ "ଯେଉଁ ସୂତା ପ୍ରକୃତରେ ବ୍ୟବହାର୍ଯ୍ୟ ହେଉଛି ଦେ

ସୂତାକୁ ଆଣିବା ପାଇଁ ସରକାର କ'ଣ ବ୍ୟବସ୍ଥା କରୁଛନ୍ତି, ବୋଲି ପ୍ରଶ୍ନ କରିଛନ୍ତି । ଯେଉଁ Purchasing Agent ଏହିପରି ସୂତା ମଗାଇ ଅନୁପଯୋଗୀ ଅବସ୍ଥାରେ ପକାଉଛନ୍ତି" "ସେମାନଙ୍କୁ ଶାସ୍ତି ଦେବାକୁ ସରକାର କ'ଣ ବ୍ୟବସ୍ଥା କରୁଛନ୍ତି" ବୋଲି ସେ ପଚାରିଛନ୍ତି । ପୋଲିସ ବିଭାଗର ଖର୍ଚ୍ଚ ଦାବି ଉପରେ ମଧ୍ୟ ସେ କାଟ୍ ପ୍ରସ୍ତାବ ଆଣି ଏହି ବିଭାଗର ଅପବ୍ୟୟ ଓ ଦୁର୍ନୀତି ସଂପର୍କରେ କାଟ୍ ପ୍ରସ୍ତାବ ଆଣି ଏହି ବିଭାଗର ଅପବ୍ୟୟ ଓ ଦୁର୍ନୀତି ସଂପର୍କରେ ତୀବ୍ର ନିନ୍ଦା କରିଛନ୍ତି । ରାଜ୍ୟରେ କିପରି ଅଧିକ ଅଶାନ୍ତି ଓ ବିଶୃଙ୍ଖଳା ସୃଷ୍ଟି ହେଉଛି ତାହା ଦେଖାଇ ଶ୍ରଦ୍ଧାକର ଜାତିଗଠନ ବିଭାଗର (Nation Building Department) ଖର୍ଚ୍ଚ ପାଇଁ ସରକାର ଅଧିକ ଦୃଷ୍ଟି ଦେବାକୁ ପରାମର୍ଶ ଦେଇଛନ୍ତି ।

Shri SRADHAKAR SUPAKAR : ମାନନୀୟ ସଭାପତି ମହାଶୟ, ଏହି ଯେଉଁ 32 ନମ୍ବର ଡ଼ିମାଣ୍ଡ ଅଛି ଏଥି ମଧ୍ୟରେ River Valley Development Department ବା ନଦୀ ଉପତ୍ୟକା ଉନ୍ନୟନ ବିଭାଗ ଅନ୍ତର୍ଭୁକ୍ତ ହୋଇଥିବାରୁ ଏବଂ ଏହି ବିଭାଗ ବିଷୟରେ କେତେକ ସମାଲୋଚନା ବିଶେଷ ଭାବରେ କରିବାର ଥିବାରୁ ମୁଁ ବର୍ତ୍ତମାନ ଏ ବିଷୟରେ କିଛି କହିବାକୁ ଯାଉଛି । ଏହି ଯେ River Valley Development Department ନଦୀ ଉପତ୍ୟକା ଉନ୍ନୟନ ବିଭାଗ ହୋଇଛି, ଏହି ବିଭାଗକୁ ଗାନ୍ଧାରୀ ସହିତ ତୁଳନା କରାଯାଇପାରେ । କାରଣ ଯାହା ଦେଖାଯାଉଛି ପ୍ରକୃତରେ ଏହି ବିଭାଗରେ କଣ ହେଉଛି ଏବଂ ଏହି ବିଭାଗରୁ ପ୍ରକୃତରେ ଯାହା ଆଶା କରାଯାଏ ତାହା ହୋଇଛି କି ନା ମୋର ସନ୍ଦେହ ପ୍ରକୃତରେ ଏହି ବିଭାଗରେ ଯେଉଁମାନେ ଅଛନ୍ତି ସେମାନେ ସବୁ ବିଷୟରେ ଅନ୍ଧାରରେ ରଖିବା ଚେଷ୍ଟା କରନ୍ତି । ତାର ଗୋଟିଏ ଉଦାହରଣ ଦେଇ ମୁଁ ଆପଣଙ୍କୁ ମୋର ବକ୍ତବ୍ୟ ସ୍ପଷ୍ଟତର କରିଦେବି । ଏହି ଯେଉଁ ହିରାକୁଦରେ କଣ ହେଉଛି ନ ହେଉଛି ଏ ବିଷୟରେ ଯେତେବେଳେ ପ୍ରଶ୍ନ ପଚରାଯାଏ, ସେ ବିଷୟଟି River Valley Development Department ମଧ୍ୟ ଦେଇଯାଏ ଏବଂ ସେ ଡ଼ିପାର୍ଟମେଣ୍ଟର କର୍ତ୍ତବ୍ୟ ହେଉଛି ସେ ପ୍ରକୃତରେ ଏହି ହୀରାକୁଦ ବନ୍ଧ ଯୋଜନା ସଂପର୍କୀୟ ଯେଉଁ କାର୍ଯ୍ୟାନୁଷ୍ଠାନ ହେଉଛି, ସେ ବିଷୟରେ ପ୍ରକୃତ ତଥ୍ୟାତଥ୍ୟ ଠିକ୍ କରିବା ଓ ଏହା ଜାଣିବା ସୁବିଧା ଏହି ଡ଼ିପାର୍ଟମେଣ୍ଟ ଜରିଆରେ ଆମକୁ ମିଳେ । କିନ୍ତୁ ପ୍ରକୃତରେ ଦେଖାଯାଉଛି ଯେ ହୀରାକୁଦ ବନ୍ଧ ଯୋଜନା ସଂପର୍କୀୟ ଅତି ଗୁରୁତର ପ୍ରଶ୍ନମାନ ପଚରାହେଲେ ଉତ୍ତର ମଧ୍ୟ ମିଳିଥାଏ "materials to answer this question is not ready" ଏବଂ କେବଳ ଏହିବର୍ଷ ନୁହେଁ, ଏହା ପୂର୍ବ ବର୍ଷ 1950 ସାଲରେ ମାନ୍ୟବର ମହତାବ ଯେତେବେଳେ ଆମର ପ୍ରଧାନମନ୍ତ୍ରୀ ଥିଲେ, ସେ ସମୟରେ ମଧ୍ୟ ଯେତେବେଳେ ପ୍ରଶ୍ନ ପଚରାଯାଏ, ଅନେକ ସମୟରେ ଉତ୍ତର ମିଳେ "to answer this question, materials are not ready" ଆମ୍ଭେମାନେ ଯାହା ଜାଣିବାକୁ ଚାହୁଁ ସେ ବିଷୟରେ ଆମକୁ କିପରି ଅନ୍ଧ ରଖାଯାଉଛି ।

ତା'ପରେ ଏହି ବିଭାଗର କର୍ତ୍ତବ୍ୟ କଣ ସେ ବିଷୟରେ କହିବାକୁ ଯାଇ 1949 ସାଲରେ ପ୍ରଧାନ ମନ୍ତ୍ରୀ ମହତାବ କହିଥିଲେ ଯେ ଏ ଡ଼ିପାର୍ଟମେଣ୍ଟର ପ୍ରଧାନ କାର୍ଯ୍ୟ ହେଉଛି "to resettle peoples and to see that new industries are developed" ଲୋକମାନଙ୍କର ପୁନର୍ବସତି କିପରି ହେବ ଏବଂ କିପରି ନୂଆ ନୂଆ ଶିଳ୍ପ ଯୋଜନା ବଢ଼ି ଉଠିବ ଏହି ବିଭାଗର ତାହା ପ୍ରଧାନ କାର୍ଯ୍ୟ କିନ୍ତୁ ଆମ୍ଭେମାନେ କାର୍ଯ୍ୟ କ୍ଷେତ୍ରରେ ଦେଖୁଅଛୁ, ପୁନର୍ବସତି ବିଷୟରେ ବିଶେଷ ସନ୍ତୋଷଜନକ କାର୍ଯ୍ୟ ହୋଇନାହିଁ । ଏବଂ ଆଜି ମଧ୍ୟ କହିବାକୁ ଚାହେଁ ଯେ ଯେଉଁ ହିସାବରେ ଏ କାର୍ଯ୍ୟ ହେଉଛି ଲୋକମାନଙ୍କଠାରୁ ଜମି ଦଖଲ ଏବଂ ଅନ୍ୟାନ୍ୟ କାର୍ଯ୍ୟ ଯେପରି ହିସାବରେ ଚାଲିଛି ସେ ହିସାବରେ ପୁନର୍ବସତି କାର୍ଯ୍ୟ ହୋଇ ପାରିବ ନାହିଁ ।

ଲୋକମାନଙ୍କଠାରୁ ଜମି ଦଖଲ ଏବଂ ଅନ୍ୟାନ୍ୟ କାର୍ଯ୍ୟ ଯେପରି ହିସାବରେ ଚାଲିଛି, ସେ ହିସାବରେ ପୁନର୍ବସତି କାର୍ଯ୍ୟ ହୋଇ ପାରିବନାହିଁ ଏବଂ ତାର ଶତାଂଶ କିମ୍ବା ସହସ୍ରାଂଶ ମଧ୍ୟ ହୋଇପାରିବ ନାହିଁ । ତା'ପରେ ହିରାକୁଦ ଯୋଜନା କିପରି ଗଢ଼ିଉଠିବ ସେ ବିଷୟରେ ମଧ୍ୟ ଏହି ସଭାର ପ୍ରତ୍ୟେକ ସଭ୍ୟ ଅନୁଭବ କରିପାରୁଥିବେ, ଯେ ଆମର ଭବିଷ୍ୟତ କଅଣ ଏବଂ ଭବିଷ୍ୟତରେ ହିରାକୁଦ ବନ୍ଧ ହେଲେ କିପରି ଭାବରେ ଆମର ଶିଳ୍ପର ଉନ୍ନତି ହେବ । ସେ ବିଷୟରେ ଆମ୍ଭେମାନେ ଅଜ୍ଞତା ଭିତରେ ଥାଇ, ଏବିଷୟରେ ଆମ୍ଭେମାନେ ଆଜି ପର୍ଯ୍ୟନ୍ତ କୌଣସି ନିର୍ଦ୍ଦିଷ୍ଟ ଯୋଜନା ବା କର୍ମ ପନ୍ଥା ବା ଆମର କାମ ଏହି ବିଭାଗ ଦ୍ୱାରା କେତେଦୂର ହୋଇଛି ସେ ବିଷୟରେ ଆମେ ମୋଟେ କିଛି ଜାଣିନାହୁଁ କହିଲେ ଚଳେ । ତେଣୁ ମୁଁ ଭାବୁଛି ଯେ ଏହି ବିଷୟରେ ଏହି Department ଯେପରି ପ୍ରକୃତରେ ସରକାରଙ୍କୁ ସାହାଯ୍ୟ କରେ ଏବଂ ଆମର ଜନସାଧାରଣ ତଥା ଏହି ଆସେମ୍ବ୍ଲିକୁ ସାହାଯ୍ୟ କରେ ଏବଂ ଆମ ଆଖିରେ ଅନ୍ଧ ପୋଟଳି ଦେଇ କରି ନ ବସେ ସେଥି ପ୍ରତି ସରକାର ତତ୍ପର ହେବେ ବୋଲି ମୁଁ ଅନୁରୋଧ କରୁଛି ।

Shri RADHANATH RATH : ମାନନୀୟ ବାଚସ୍ପତି ମହୋଦୟ, ଏହି ଯେଉଁ demand ବର୍ତ୍ତମାନ ଉପସ୍ଥାପିତ କରଯାଇଛି ଏବଂ ମୋ ପୂର୍ବରୁ ଯେଉଁ ମାନ୍ୟବର ସଭ୍ୟ କହିଲେ ସେ ଅତି ନିକଟ ଅତୀତରେ ହୀରାକୁଦ ଅଞ୍ଚଳ ବୁଲି ଆସିଥିଲେ ଏବଂ ମୁଁ ମଧ୍ୟ ଅନ୍ୟାନ୍ୟ କେତେକ ଆସେମ୍ବ୍ଲିର ମାନ୍ୟବର ସଭ୍ୟଙ୍କ ସହିତ ସେ ଅଞ୍ଚଳ ବୁଲି ଆସିଛି । ଫେରି ଆସିଲାପରେ ଦିନକ ପୂର୍ବରୁ ଏବଂ ଗତକାଲି ଯେଉଁ ସବୁ ପ୍ରଶ୍ନ ହିରାକୁଦ ଯୋଜନା ସଂପର୍କରେ କୋଠା ବାଡ଼ି ବାବଦରେ କେତେ ଖର୍ଚ୍ଚ ହୋଇଛି, ରାସ୍ତା ବାବଦରେ ଚଳାଇ-ପାରିବାର ବେଶୀ ଶକ୍ତି ଅଛି ସେମାନଙ୍କ ହାତରେ ସେ କାର୍ଯ୍ୟ ରହିବ । ପି. ଡବ୍ଲୁ. ଡ଼ି. ଙ୍କ ହାତରେ ବନ୍ଧ, ବାଡ଼ ଇତ୍ୟାଦି ଇଞ୍ଜିନିୟରିଙ୍ଗ କାମସବୁ ରହୁଛି ବୋଲି ଯେ ଏଇଟା ରହିବ ଏହା ନୁହେଁ । ଆମର ସବୁଠାରୁ ବେଶୀ ଟେଲେଣ୍ଟ ଯେଉଁମାନେ ଅଛନ୍ତି ତାଙ୍କରି ହାତରେ ଏହି କାମ ରହିବ । ତାଙ୍କ ହାତରେ ଛାଡ଼ିଦେଲୁ ବୋଲି ଆମେ ସେମାନଙ୍କ ଯେତେ ବିଶ୍ୱାସ

କଲ୍ପନା କାହିଁକି ସେ ବିଷୟରେ ସମସ୍ତ କଟକଣା ପ୍ରୟୋଗ କରିବାର ଦାବିତ୍ ଆମର ଅଛି ଓ କୌଣସି ଦାୟିତ୍ୱଶୀଳ ସରକାର ଏପରି ଭବରେ ଛାଡ଼ିଦେଇ ପାରିବନାହିଁ । କିନ୍ତୁ ତାକୁ କାର୍ଯ୍ୟକାରୀ କରିବାକୁ ହେଲେ ଭିନ୍ନ ଭିନ୍ନ ମତବାଦୀଙ୍କଠାରୁ ଦୂରରେ ରହିବାକୁ ପଡ଼ିବ, କେହି କେହି କହୁଛନ୍ତି ଯେ ଇନ୍‌ଜିନିଅର କୁଲି ପଞ୍ଜାବରୁ ରଖିଲେ ଆମର ଏଠାରେ ଭଲ ଇନ୍‌ଜିଅର ଅଛନ୍ତି, ତାଙ୍କୁ ନିଆଗଲା ନାହିଁ ଇତ୍ୟାଦି । କିନ୍ତୁ ସମଗ୍ର ବିଷୟଟିକୁ ନୈତିକ ଦୃଷ୍ଟିରୁ ଦେଖିଲେ ଯେ କେହି ଠିକ୍ ଭବରେ ବୁଝି ପାରିବ ଯେ ଏପର୍ଯ୍ୟନ୍ତ ଯାହା କରାଯାଇଛି ଠିକ୍ କରାଯାଇଛି । ମୁଁ ଆଉ ବେଶୀ କିଛି କହିବାକୁ ଚାହୁଁ ନାହିଁ ଓ ମୁଁ ଆଶା କରୁଛି ଆସେମ୍ବ୍ଲି ଏ ଗ୍ରାଣ୍ଟକୁ ଗ୍ରହଣ କରିବେ ଓ ସମସ୍ତ କାଟ୍ ପ୍ରସ୍ତାବ ପ୍ରତ୍ୟାହୃତ ହେବ ।

Shri SRADHAKAR SUPAKAR : ସଭପତି ମହାଶୟ, ମୁଁ ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହେଁ, ମାନ୍ୟବର ପ୍ରଧାନମନ୍ତ୍ରୀ ତାଙ୍କ ବକ୍ତୃତାରେ କହିଛନ୍ତି ଯେ ଶତକଡ଼ା 60 ଜଣ ଲୋକ ସେଠାକୁ ଯିବାକୁ ଆଗ୍ରହାନ୍ୱିତ ହେଉଛନ୍ତି ତାହାହେଲେ ସରକାର କାହିଁକି ସେମାନଙ୍କ ସାହାଯ୍ୟରେ ପୁନର୍ବସତି କରାଇ ଦେଉନାହାନ୍ତି ।

The Hon'ble Shri NABAKRUSHNA CHAUDHURI : ସେମାନେ ବର୍ତ୍ତମାନ 2 ଟଙ୍କା, 2 ଟଙ୍କା 50 ପଇସା ମଜୁରି ପାଇ ମହା ମଉଜରେ ଅଛନ୍ତି । ପୁନର୍ବସତି ସମସ୍ୟା ସେମାନଙ୍କର ନୁହେଁ । ଯେଉଁମାନେ ସେହି ଗରିବ ଲୋକମାନଙ୍କର ଜମିବାଡ଼ି ଦୟାକରି ନେଇ ନିଜେ ବଡ଼ ଲୋକ ହୋଇଛନ୍ତି ଏ ସମସ୍ୟା ଏକ ରକମର ସେମାନଙ୍କର କହିଲେ ଚଳେ । ସେହିମାନେ ନାନା ରକମ ଚେଷ୍ଟାକରି ଯେଉଁ ଲୋକମାନେ ଜମି ଦେଖି ଘଉ୍ଷ ଜମି ବୋଲି ଆମକୁ କହୁଛନ୍ତି ସେମାନଙ୍କୁ ଏକ ପ୍ରକାର ଜବରଦସ୍ତ ଆସିବାକୁ ଦିଆଯାଉ ନାହିଁ ।

Shri LAKSHMINARAYAN SAHU : ବାଚସ୍ପତି ମହୋଦୟ, ମୋର ଗୋଟିଏ କଥା ପଚାରିବାର ଅଛି । ତାହା ହେଉଛି ଆମର ହିରାକୁଦ ସମ୍ପର୍କରେ ଯେତେ ଟଙ୍କା ଖର୍ଚ୍ଚ ହେବ ବୋଲି ଆମେ ଶୁଣୁଛୁ ତାର ପ୍ରଥମ ଇତିହାସ ହେଉଛି ଯେ ଆମେ 10 କୋଟି ଟଙ୍କା ମାଗଣା ପାଇବା । ଏହା ଠିକ୍ କି ନୁହେଁ ? ଦ୍ୱିତୀୟ ଇତିହାସ ହେଉଛି 50 କୋଟି ଟଙ୍କା ମାଗଣା ପାଇବା ।

Interruption

The Hon'ble SPEAKER : Is that a question ?

The Hon'ble Shri NABAKRUSHNA CHAUDHURI : ମୁଁ ବଡ଼ ଦୁଃଖିତ ହୋଇ କହିବାକୁ ବାଧ୍ୟ ହେଉଛି ଯେ, ଯଦି କେହି ଏପରି ଭବୁଥାନ୍ତି ତାହାହେଲେ ସେ ଗାନ୍ଧାରୀ ନୁହନ୍ତି, ସେ ଧୃତରାଷ୍ଟ୍ର ।

The Hon'ble SPEAKER: The question is that the Assembly do assent to a demand of Rs. 2,14,440 to defray the charges which will come in course of payment during the year ending the 31st of March 1952 in respect of the head "Expenditure connected with Post-war Planning and Development".

(The motion was adopted and the grant made)

* * * *

Shri SHRADHAKAR SUPAKAR: ମାନ୍ୟବର ସଭପତି ମହାଶୟ, ଏହି ସାଧାରଣ ସ୍ୱାସ୍ଥ୍ୟ ବିଭଗରେ ଆମର ଏହି ବର୍ଷ ୧୮ ଲକ୍ଷ ଟଙ୍କା ଖର୍ଚ୍ଚପାଇଁ ବରାଦ କରାଯାଇଛି । ଏହି ବିଭଗରେ ଯେଉଁ ଖର୍ଚ୍ଚ ହେଉଛି, ସେ ବିଷୟରେ ଟିକିଏ ଆଲୋଚନା କଲେ ଦେଖାଯାଉଛି ଯେ ଏହାର ଉପକାର ଆମର ଜନସାଧାରଣ ଯେତିକି ପରିମାଣରେ ପାଇବାର କଥା, ସେତିକି ପରିମାଣରେ ପାଇପାରୁ ନାହାନ୍ତି । ଆମ ସରକାରଙ୍କର ଏହା ପ୍ରଧାନ ଲକ୍ଷ୍ୟ ହେବା ଉଚିତ ।

ଏହାର ଉପକାର ଆମର ଜନସାଧାରଣ ଯେତିକି ବ୍ୟାପକଭବରେ ପାଇବାର କଥା ସେତିକି ବ୍ୟାପକଭବରେ ପାଇପାରୁନାହାନ୍ତି । ଆମ ସରକାରଙ୍କର ପ୍ରଧାନ ଲକ୍ଷ୍ୟ ହେବା ଉଚିତ ଯେ ସରକାର ପ୍ରଦେଶବ୍ୟାପି ସମସ୍ତେ ଯେପରି ଏହି ବିଭଗରୁ ଉଣା ଅଧିକେ ବେଶୀ ଉପକାର ପାଇ ପାରିବେ । ସେଥିପ୍ରତି ବିଶେଷ ଦୃଷ୍ଟି ଦେବା ଉଚିତ । ଏହା କେବଳ ବଡ଼ ବଡ଼ ସହରରେ ବା ଯେଉଁଠାରେ ବେଶୀକରି କହିପାରିବା ଲୋକ ବା Vocal Section of the Public ଯେଉଁଠି ଅଛନ୍ତି ସେଠାରେ ତାଙ୍କର କର୍ଣ୍ଣ ବିଶେଷ-ଭବରେ କନ୍ଦ୍ରୀଭୂତ ନକରି ଏହି ବିଭଗର କାର୍ଯ୍ୟକଳାପ ଯେପରି ମଫସଲ ଅଞ୍ଚଳରେ ଆହୁରି ବେଶୀ ବ୍ୟାପକଭବରେ ପ୍ରଚଳିତ ହୁଏ ସେଥିପ୍ରତି ଦୃଷ୍ଟିଦେବା ଦରକାର । କିନ୍ତୁ ଦେଖାଯାଉଛି ଯେ ସରକାର କେବଳ ବଡ଼ କଥା ବା ଯେଉଁ ବିଷୟ ୨ ଲକ୍ଷ ଟଙ୍କା ଖର୍ଚ୍ଚ ହେବ ସେ ବିଷୟ ପ୍ରତି ଦୃଷ୍ଟି ଦେଉଛନ୍ତି ଏବଂ ଅଳ୍ପ ଖର୍ଚ୍ଚରେ ଯେଉଁ ବିଷୟ ହୋଇପାରିବ ସେ ବିଷୟ ପ୍ରତି ଦୃଷ୍ଟି ଦେଉ ନାହାନ୍ତି । ଫଳତଃ, ଯେତେ ଟଙ୍କା ଏ ବଜେଟରେ ରଖା ଯାଇଛି, ତାର ଉପକାର କେବଳ ଅତି ଅଳ୍ପସଂଖ୍ୟକ ଲୋକ ଏବଂ ଅଳ୍ପ ଶ୍ରେଣୀର ଲୋକଙ୍କ ମଧ୍ୟରେ ସିମାବଦ୍ଧ ରହିଛି । ଏହି ବିଷୟରେ ବିଶେଷ ଭବରେ ମୁଁ କୁଷ୍ଠ ରୋଗୀ ବିଷୟରେ ଗୋଟିଏ ଦୃଷ୍ଟାନ୍ତ ଦେଇ ମୋର ବକ୍ତବ୍ୟକୁ ସ୍ପଷ୍ଟ କରିବି । କୁଷ୍ଠରୋଗୀ ବିଷୟରେ ସମ୍ବଲପୁରର ଡାକ୍ତର ଆଇଜାକ ସାହେବ ଯେ କି ତାଙ୍କର ସମସ୍ତ କର୍ମୀ ଜୀବନ କୁଷ୍ଠ ରୋଗୀମାନଙ୍କର ସେବାରେ ନିୟୋଜିତ କରିଥିଲେ ଏବଂ ସେ ବର୍ତ୍ତମାନ ତାଙ୍କର କାର୍ଯ୍ୟରୁ ଅବସର ନେଇ Non-official ଭବରେ କାର୍ଯ୍ୟ କରିବା ପାଇଁ ବାହାରିଛନ୍ତି । ସେ ସେଠାରେ ତାଙ୍କର ଗୋଟିଏ କୁଷ୍ଠ ନିବାସ ଖୋଲିଛନ୍ତି ଏବଂ ସେଥିପାଇଁ ସରକାରଙ୍କଠାରୁ ସାମାନ୍ୟ କେତେକ

ଟଙ୍କା ଖୁଣ୍ଟି ଥିଲେ । ଏହି ବିଷୟରେ ତାଙ୍କୁ କହାଗଲା ଯେ ୨ ଲକ୍ଷ ଟଙ୍କାରେ ଯୋଜନା ଆମର ବିଭାଗୀୟ କର୍ତ୍ତପକ୍ଷ କରୁଛନ୍ତି । ଯଦିଓ ୨ ଲକ୍ଷ ଟଙ୍କାର ଯୋଜନା କରାଯାଉଛି, ସେଥିରେ ଉପକାର ବେଶୀ ଲୋକ ପାଇ ପାରିବେ ନାହିଁ ଏବଂ ଯଦି ଅଳ୍ପ ଅଳ୍ପ ଖର୍ଚ୍ଚ ହୋଇ ଛୋଟ ଛୋଟ କେନ୍ଦ୍ର ଖୋଲାଯାଏ, ସେଥିରୁ ଲୋକେ ବେଶୀ ବ୍ୟାପକଭାବରେ ଉପକାର ପାଇବେ ବୋଲି ଯୁକ୍ତି କରାଗଲା ଏବଂ ତାଙ୍କୁ କୌଣସି ସାହାଯ୍ୟ ମିଳିଲା ନାହିଁ । ମୋର କହିବାର ପ୍ରଧାନ ଉଦ୍ଦେଶ୍ୟ ହେଉଛି ଯେ ଯାହା ଖର୍ଚ୍ଚ ହେଉଛି ତାର ଉପକାର ସମଗ୍ର ପ୍ରଦେଶର ଲୋକେ ଊଣା ଅଧିକେ ଯେପରି ଭୋଗ କରିପାରନ୍ତି । ଯେଉଁ ସମୟରେ କଲେରା କିମ୍ବା ବସନ୍ତ ମଫସଲ ଅଞ୍ଚଳରେ ବ୍ୟାପେ ସେହି ସମୟରେ Public Health Department ଖୁବ୍ ତତ୍ପର ହୋଇ ଉଠନ୍ତି କିନ୍ତୁ ଏତଦ୍ୱାରା ଯେ ମୃତ୍ୟୁ ହୁଏ ତାହା ଯେପରି ଭବରେ ପ୍ରତିଶୋଧ କରାଯାଇ ପାରେ ସେଥିପ୍ରତି ବିଶେଷ ଦୃଷ୍ଟି ଦେବା ଉଚିତ । ତାପରେ ଆଉ ଗୋଟିଏ କଥା ଯେ ଏହି Public Helath Medical ବିଷୟ ରେ Bhora Committee ଯେଉଁ Report ଦେଇ ଥିଲେ ସେ ବିଷୟରେ ସରକାର କେବେ କାର୍ଯ୍ୟ କରିଛନ୍ତି । ସେ ବିଷୟରେ ମାନ୍ୟବର ବିଭାଗୀୟ ମନ୍ତ୍ରୀ ମହୋଦୟ ଆମ୍ଭମାନଙ୍କୁ ତାଙ୍କର ଉତ୍ତର ଦେବା ସମୟରେ କହିବେ ବୋଲି ମୁଁ ଆଶା କରୁଛି ।

* *

The Hon'ble Shri SADASIVA TRIPATHY: General କୋଟା ବୋଲି କିଛି ନାହିଁ । Oridinary କୋଟା ପ୍ରତି State ସକାଶେ allotted ହୋଇଥାଏ । ଇନ୍ଦୋର ପର୍ଯ୍ୟନ୍ତ ଯାଇ ମଧ୍ୟ ଆମର Importer ମାନେ ଲୁଗା ନ ପାଇ ଫେରି ଆସୁଛନ୍ତି, ଆମେ ଏ ବିଷୟରେ Government of India ପାଖରେ ଆପତ୍ତି କରିଛୁ । ଅନେକ ସମୟରେ ମିଲ ମାଲିକମାନେ ପ୍ରାଦେଶିକ ଲୁଗା କୋଟା allot କରିବାରେ ହଇରାଣ କରୁଛନ୍ତି । କିନ୍ତୁ ଅନେକ କ୍ଷେତ୍ରରେ ଆମ Importer ମାନେ ଲାଭ ପାଇବା ଆଶାରେ ଜାଣିଶୁଣି କୋଟା ଆଣୁ ନାହାନ୍ତି ।

Shri SHRADHAKAR SUPAKAR: ମାନ୍ୟବର ସଭାପତି ମହାଶୟ, ମୁଁ ଯୋଡ଼ିଏ ପ୍ରଶ୍ନ ଏ ବିଷୟରେ ପଚାରିବି । ଆମର ଏଠାକୁ ଯେଉଁ Unmarketable ସୂତା ଆସୁଛି ।.............

The Hon'ble Shri Sadasiva Tripathy: ମାନ୍ୟବର ସଭାପତି ମହାଶୟ, We are not importing any unmarketable yarn. We are only importing those which are required by our weavers.

Shri SRADHAKAR SUPAKAR: ମୁଁ ଅଭିଯୋଗ ଶୁଣୁଛି ଯେ ଆମର ଯେଉଁ ସୂତା ଆସୁଛି ସେଥିରୁ ଅନେକ କାଟତି ହୋଇ ପାରୁନାହିଁ ।

**The Hon'ble the SPEAKER :** The hon'ble member should put questions on the points which they have raised in moving their cut motions and those will be explained by the Hon'ble Minister-in-charge.

Shri SHRADDHAKAR SUPAKAR : ଯେଉଁ ବିଷୟରେ ମାନ୍ୟବର ମନ୍ତ୍ରୀ ଜବାବ ଦେଲେ ଏବଂ ଯାହାକୁ ଆମେ ବୁଝି ପାରୁନାହୁଁ ସେ ବିଷୟରେ ଆମ କାଟ ପ୍ରସ୍ତାବ ନ ଥିଲେ ମଧ୍ୟ ସନ୍ଦେହ ମୋଚନ କରିବା ପାଇଁ ମୁଁ ଯୋଡ଼ିଏ ପ୍ରଶ୍ନ ପଚାରୁଛି ।

ଯେଉଁ ବିଷୟରେ ମାନ୍ୟବର ମନ୍ତ୍ରୀ ଜବାବ ଦେଲେ ଓ ଯାହାକୁ ମୁଁ ବୁଝିପାରିଲି ନାହିଁ, ମୋ ନାମରେ କାଟ ପ୍ରସ୍ତାବ ନଥିଲେ ସୁଦ୍ଧା ମୁଁ କେତୋଟି ପ୍ରଶ୍ନ ପଚାରିବାକୁ ଚାହୁଁଛି । ପ୍ରଥମ ପ୍ରଶ୍ନ ହେଉଛି ଆମର ଯେଉଁ ସବୁ ସୂତା ଆସିକରି unmarketable ହୋଇକରି ପଡ଼ି ରହୁଛି, ବିକ୍ରୀ ହୋଇ ପାରୁନାହିଁ, ଯଥା—ସରୁ ସୂତା । କିନ୍ତୁ ସେ ସୂତା-ଗୁଡ଼ିକୁ ନ ଆଣି ଯେଉଁ ସୂତା ପ୍ରକୃତରେ ବ୍ୟବହାର୍ଯ୍ୟ ହେଉଛି ସେ ସୂତାକୁ ଆଣିବାପାଇଁ ସରକାର କ'ଣ ବ୍ୟବସ୍ଥା କରିଛନ୍ତି ?

ଦ୍ୱିତୀୟ ପ୍ରଶ୍ନ ହେଉଛି Producer ଯେଉଁ ଧାନ ବା ଚାଉଳ ବିକ୍ରୀ କରୁଛନ୍ତି ସେମାନେ ସରକାରଙ୍କ ନିର୍ଦ୍ଦିଷ୍ଟ ରେଟରେ ଠିକଭାବରେ ଦିଆ ହେଉଛି କି ନାହିଁ, ତାହା ସରକାର ଦେଖିବା ଦରକାର । ଯେଉଁ Purchasing Agent ଏହାସବୁ କରୁଛନ୍ତି ସେମାନଙ୍କୁ ଶାସ୍ତି ଦେବାକୁ ସରକାର କ'ଣ ବ୍ୟବସ୍ଥା କରୁଛନ୍ତି ।

The Hon'ble Shri SADASIVA TRIPATHY : ପ୍ରଥମ ପ୍ରଶ୍ନ ହେଉଛି କି ଆମର ଯେତେସବୁ ସୂତା ଦରକାର ହେଉଛି ତାହା ହେଉଛି ୨୦ ନମ୍ବର ସୂତା ଓ କମ ନମ୍ବର । ତା ଉପର ନମ୍ବର ସୂତା ୧୦% ରୁ ୧୫% ପର୍ଯ୍ୟନ୍ତ ବ୍ୟବହାର ହେଉଛି । ଭାରତବର୍ଷରେ କେବଳ ସୂତା ଅଭାବ ପଡ଼ିଛି । Unmarketable variety of yarn ଏପରି ସୂତା ଆଗ ଏ ପ୍ରଦେଶକୁ ଆସୁଥିଲା । ସେହି ସୂତା ୨/୩ ବର୍ଷ ପଡ଼ି ରହିଥିବାରୁ ଆମେ ବାହାରକୁ ପଠାଇ ଦେଇଥିଲୁ । ବର୍ତ୍ତମାନ ଯେଉଁ ସୂତା ବିକ୍ରୀ ହେଉଛି ତାହା ମଗା ଯାଉଛି ।

ଦ୍ୱିତୀୟ ପ୍ରଶ୍ନ ହେଉଛି Producer ମାନେ ସମାନ ପଇସା ପାଉଛନ୍ତି କି ନାହିଁ ? ମୁଁ ଯାହା ଦେଖୁଛି Producer ମାନଙ୍କୁ Governmentର ଯେଉଁ ସବୁ ରେଟ ଅଛି ତା'ଠାରୁ ଆଉ ଗୋଟିଏ ପଇସା କମ କରି ଦେବାର ଅଭିଯୋଗ ଆସିନାହିଁ । ସେହିସବୁ ଦେଖିବା ପାଇଁ ଆମର କୌଣସି machinery I have repeatedly said in this House that this is mainly due to the lack of training which the Police Officers are now getting. Formerly, they used to be trained in Hazaribagh and Angul Police Training School is no substitute for

the Hazaribagh Training Institute. I would, therefore, submit to Government that they must raise the standard of their Training School so that we can get better men.

The Hon'ble Shri NABAKRUSHNA CHAUDHURI : It is now a College.

Shri LOKANATH MISRA (Opposition) : I do not know how it is said to be a College. In Hazaribagh perhaps the senior most Superintendent of Police, the officer who was going to be the Deputy Inspector-General used to be the Principal. But, here we are getting a Principal, whoever he might be, who is promoted from the rank of Sub-Inspector. This institution is a very important institution because on that depends the efficiency of the whole force. There should be attempt on the part of the Government to raise the standard of this institution whether it is a School or a College.

Again, I find that at present the Police Officers are engaged in several other miscellaneous work and that is the reason why they neglect in the investigation of cases which is the proper police work. Sometimes they are engaged to find out bullock carts for officers, they are engaged to collect information for various purposes. So, I would suggest that in each police-station there should be a clerk, as it used to be before, a Writer Head Constable, to do all this kind of work and maintain these registers so that the police man will be free to investigate the cases.

Another thing which I want to point out is that when this police service is going to be specialised and various branches have been opened such as Traffic Department, Prosecution Department and so many other Departments, there must be a separate staff for each kind of work so that they would specialise in one thing. If you post one man today to investigate cases and the next day if you post him to control traffic and a few weeks after you post him to conduct cases in the courts and then you take him back to do some other kind of work, it means that this officer cannot have any knowledge in any particular work to which he is posted.

So, it is necessary that each branch of the Police Department should have a separate staff and the cadre should be so arranged that the people will not find any inconvenience to enter any particular branch, I would therefore suggest that the Prosecution Branch of the police should be entirely independent of the District Police Officer. They should be entirely independent of the Superintendent of Police so that no pressure from the Police Officer should reach him. There must be a separate prosecution staff and that separate prosecution staff should be entirely independent of the Executive. These are the suggestions, which I wish to make.

Shri SRADDHAKAR SUPAKAR : ମାନ୍ୟବର ସଭପତି ମହୋଦୟ, ମୁଁ ମୋର କାଟ ପ୍ରସ୍ତାବ ଆଗତ କରି କହୁଛି ଯେ, ଏହି ଦାବିକୁ ଏକ ଟଙ୍କାକୁ କମାଇ ଦିଆଯାଉ । ଏ ବିଷୟ ନେଇ ମୁଁ କହିବାକୁ ଗ୍ୱହେଁ ଯେ, ପ୍ରକୃତରେ ଆମେ ଦେଖିବାକୁ ଗଲେ ଏହି ପୋଲିସ ବିଭଗରେ ଅଧିକ ଖର୍ଚ୍ଚ କରୁଥାଉଁ ଏବଂ ସେଦିନ ମୁଁ କହିଥିଲି ଆମେ ଶିକ୍ଷା ବିଭଗରେ ଯେତେ ଖର୍ଚ୍ଚ କରୁଥାଉଁ ତାଠାରୁ ଢେର ବେଶୀ ଏହି ପୁଲିସ ବିଭଗରେ ଖର୍ଚ୍ଚ କରୁଛେ; ଯଦିଓ କୁହାଯାଉଛି ଯେ ଆମର ଏହି ଓଡ଼ିଶା ଷ୍ଟେଟରେ ଭରତର ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ବିଶେଷ ଅଶାନ୍ତି, ବିଶୃଙ୍ଖଳା ନାହିଁ, ତଥାପି ଆମେ ଏ ବିଭଗରେ କାହିଁକି ଏତେ ଖର୍ଚ୍ଚ କରୁଥାଉଁ । ଏ ଖର୍ଚ୍ଚ କାହିଁକି ଯଥେଷ୍ଟ କମ୍ କରାଇ ନ ଦିଆଯିବ, ସେ ବିଷୟ ପ୍ରତି ଏଠାରେ ଦୃଷ୍ଟି ଦିଆଯାଉନାହିଁ ।

ଦ୍ୱିତୀୟ କଥା ଆମେ ଦେଖୁଥାଉଁ ଯେ ପ୍ରକୃତରେ ଏହିସବୁ ଅପରାଧ ନିବାରଣ ବିଷୟରେ ପୁଲିସର ଯାହା କର୍ତ୍ତବ୍ୟ ସେଥିପ୍ରତି ବିଶେଷ ଦୃଷ୍ଟି ଦିଆଯାଉନାହିଁ । ବିଶେଷତଃ ଆମର ଯେଉଁସବୁ ଅଭିଯୋଗ ହେଉଛି ଯେ କଳାବଜାର ଗ୍ୱଲିଛି ଓ ଅନ୍ୟାନ୍ୟ ଅନେକ ଅପରାଧ ସଂଖ୍ୟା ବଢୁଛି ସେ ବିଷୟରେ ପୁଲିସ ତାଙ୍କର କର୍ତ୍ତବ୍ୟ ଠିକ୍ ଭବରେ କରୁ ନାହାନ୍ତି । ଏପରିକି ଅନେକ ଧାରାରେ ଅନେକ ମାଜିଷ୍ଟ୍ରେଟ ଏବଂ ଅଫିସରମାନେ ଯେଉଁ ଲାଞ୍ଚ ନେଉଛନ୍ତି ସେ ବିଷୟ ଦେଖିବା ପୁଲିସ ବିଭଗ କର୍ମଗ୍ୱରୀମାନଙ୍କର, ବିଶେଷତଃ C. I. D. ବିଭଗ କର୍ମଗ୍ୱରୀମାନଙ୍କର କର୍ତ୍ତବ୍ୟ । କିନ୍ତୁ ଆମେ ଦେଖୁଥାଉଁ ବିଶେଷ କିଛି କାର୍ଯ୍ୟ ହେଉନାହିଁ । ଧୀରେ ଧୀରେ ଯେପରିଭବେ ଏ ଲାଞ୍ଚ ନେବା ବଢ଼ି ଗ୍ୱଲିଛି, ସେଥିରେ ପୁଲିସ ବିଭଗର କର୍ମଗ୍ୱରୀମାନଙ୍କର ଅପାରଗତା ଏବଂ ଦକ୍ଷତାର ଅଭବ ସ୍ପଷ୍ଟଭବରେ ପ୍ରମାଣିତ ହେଉଛି ।

ତାପରେ ଆଉ ଗୋଟିଏ ଛୋଟ କଥା ପ୍ରତି ମୁଁ ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି । ପୁରୀ ରଥଯାତ୍ରା ସମୟରେ ଯେଉଁ ସାଧୁ-ପୁଲିସ ସଙ୍ଘର୍ଷ ହୋଇଥିଲା ସେ

ବିଷୟରେ କ'ଣ ରିପୋର୍ଟ ବାହାରିଲା କିଛି ଜଣା ପଡ଼ିଲା ନାହିଁ । ଏ ବିଷୟରେ ଅନେକ ଥର ପ୍ରଶ୍ନ ହୋଇଥିଲା । ଏ ପର୍ଯ୍ୟନ୍ତ କୌଣସି ବିବରଣୀ ବାହାରିଲା ନାହିଁ । ସରକାର ସେ ବିଷୟରେ କ'ଣ କାର୍ଯ୍ୟାନୁଷ୍ଠାନ କଲେ ? ସେ ସମ୍ପର୍କରେ ସରକାର ଯେଉଁ ପ୍ରତିଶ୍ରୁତି ଦେଇଥିଲେ ଯେ ଗୋଟିଏ ପ୍ରେସ କମ୍ୟୁନିକ୍ ଆକାରରେ ବାହାର କରିବେ, ତାହା ଆଜି ପର୍ଯ୍ୟନ୍ତ ଆମ୍ଭେମାନେ ଜାଣି ପାରିଲୁ ନାହିଁ କିମ୍ବା ଭବିଷ୍ୟତରେ ମଧ୍ୟ ଜାଣି ପାରିବୁ କି ନାହିଁ । ସେଥିରେ ଖୁବ୍ ସନ୍ଦେହ ରହିଛି । ଏହି ସବୁ ବିଷୟ ପ୍ରତି ମୁଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଶେଷରେ ମୁଁ ଆଶା କରୁଛି ଏହି ବିଭାଗରେ ଖର୍ଚ୍ଚ ହୋଇ ଯାହା ଅପବ୍ୟୟ କରଯାଉଛି ତାହା ଯେପରି ଅନ୍ୟ ଗୋଟିଏ Nation Building Departmentରେ ଖର୍ଚ୍ଚ ହୁଏ ସେଥିପ୍ରତି ସରକାର ଦୃଷ୍ଟି ଦେବେ ।

## 1950-51 ବର୍ଷ ପାଇଁ ଅନୁଦାନ ଉପରେ କଟିଙ୍ଗ (ଟ୍ୟାକ୍ସ ଓ ଡ୍ୟୁଟିର ମାଧ୍ୟମରେ ଆୟ) ସମ୍ପର୍କରେ ଭାଷଣ

ଓଡ଼ିଶା ପରି ଦରିଦ୍ର ରାଜ୍ୟରେ ଶିଳ୍ପପତି ଓ ବ୍ୟବସାୟୀମାନଙ୍କୁ ଟ୍ୟାକ୍ସ ରିହାତି ଦେବା କେବଳ ଅନ୍ୟାୟ ନୁହେଁ ନିତାନ୍ତ ଆତ୍ମଘାତୀ । ଆୟବୃଦ୍ଧି ପାଇଁ ଟ୍ୟାକ୍ସ ବଢାଇବା ଦ୍ୱାରା ଦରିଦ୍ର ଜନସାଧାରଣ ଅଧିକ ନିର୍ଯ୍ୟାତିତ ହେଉଛନ୍ତି ଏବଂ ଧନୀମାନେ ଏଥିରୁ ନିଷ୍କୃତି ପାଇଥାନ୍ତି । ଏପରି ଅବସ୍ଥାରେ ଟାଟା, ଓରିଏଣ୍ଟ କାଟନ୍ଦକଙ୍କୁ ଇନକମ୍ ଟ୍ୟାକ୍ସ ଓ ସେଲସ ଟ୍ୟାକ୍ସ ଛାଡ଼ କରିଦେବା ଦ୍ୱାରା ଓଡ଼ିଶା ଆର୍ଥିକ କ୍ଷତି ସହିବା ସହିତ ଦରିଦ୍ର ନାଗରିକଙ୍କ ପ୍ରତି ବିଶ୍ୱାସଘାତକତା କରଯାଇଛି । ଡଃ ସୂପକାର ତେଣୁ 1950-51 ବର୍ଷ ଅନୁଦାନ ଭେଟ ଦାବି ଉପରେ ମନ୍ତବ୍ୟ ଦେଇ କହିଛନ୍ତି (Assembly Proceedings, 21-3-1950) ଯେ ଏହି ଖର୍ଚ୍ଚ ଦାବିକୁ ହ୍ରାସ କରଯାଉ । ଏଥିପାଇଁ ସେ ଉକ୍ତ ଖର୍ଚ୍ଚ ଦାବୀକୁ ମାତ୍ର ଏକ ଟଙ୍କାକୁ କମାଇ ଦେବାକୁ କାଟ ପ୍ରସ୍ତାବ ଆଣିଛନ୍ତି । ସେ ଯଥାର୍ଥରେ କହିଛନ୍ତି "ବର୍ତ୍ତମାନ କଥା ହେଉଛି ଯେ ଓଡ଼ିଶା ଗୋଟିଏ ଦରିଦ୍ର ପ୍ରଦେଶ ଏଠାରେ ଆମର ଆୟ ଯେମିତି ହେଉଛି ଏବଂ ଆୟ କିପରି ଭବରେ ବଢିବ; ସେଟା ଦେଖିବାର କଥା ଏବଂ ଆହୁରି ମଧ୍ୟ ଦେଖିବାର କଥା ଯେ ଏହି taxation ଯେପରି ଗରିବ ଲୋକଙ୍କ ଉପରେ ନପଡେ ଏବଂ ବେଶୀ ଧନୀ ବ୍ୟବସାୟୀ ମହାଜନ ଲୋକମାନଙ୍କ ଉପରେ ପଡ଼େ" । ମାତ୍ର ସରକାର ଶିଳ୍ପପତିମାନଙ୍କୁ ଟ୍ୟାକ୍ସ ଛାଡ଼ି କରି ତେଲିଆ ମୁଣ୍ଡରେ ତେଲ ଢାଳୁଛନ୍ତି । ଏହି ପ୍ରସଙ୍ଗରେ ଶ୍ରଦ୍ଧାକର ତେଣୁ ଯଥାର୍ଥରେ କହିଛନ୍ତି (Proceedings, dated 21-3-1950), "ମୁଁ ଶୁଣିଛି ଯେ Orient Paper Mills ପ୍ରତିବର୍ଷ Sales Tax ବିକ୍ରିକର ହିସାବରେ 5 ଲକ୍ଷ ଟଙ୍କା ସେମାନଙ୍କଠାରୁ ଆଦାୟ କରଯାଉଥିଲା । କିନ୍ତୁ ଏହି ବର୍ଷଠାରୁ ସେମାନେ ଏହି 5 ଲକ୍ଷ ଟଙ୍କା କରଭରରୁ exempted ହୋଇଛନ୍ତି ବା ସେମାନଙ୍କୁ ମାଫ କରଯାଉଛି ।

ସେମିତି ଖଣିଜ ସମ୍ପର୍କରେ ଓଡ଼ିଶା ଧନୀ ହେଲେ ମଧ୍ୟ ଓଡ଼ିଶା ବାହାର ଶିଳ୍ପପତିମାନେ ଏଠାର ଖଣିଜ ସଂପଦକୁ ଅନ୍ୟତ୍ର ବିକ୍ରୀ କରୁଛନ୍ତି ଏବଂ ମାଲ ଉତ୍ପାଦନ କରୁଛନ୍ତି, ମାତ୍ର ଅନ୍ୟ ରାଜ୍ୟ ଏହା ଦ୍ୱାରା ବିଭିନ୍ନ ଟ୍ୟାକ୍‌ସ ମାଧ୍ୟମରେ ଉପକୃତ ହେଉଛନ୍ତି । ତେଣୁ ଡଃ ସୂପକାର ପରାମର୍ଶ ଦେଇ କହିଛନ୍ତି ଯେ "ଯାହା ଯେଉଁଠାରେ Manufacture ହେଉଛି, ଯେଉଁଠାରେ ଜିନିଷପତ୍ର ତିଆରି ହେଉଛି, ସେଠାରେ, ଯେପରି କର ଆଦାୟ କରାଯାଇ ପାରିବ ସରକାର ଦୃଷ୍ଟି ଦିଅନ୍ତୁ । ଏହି ସବୁର ପ୍ରତିକାର କରାନଗଲେ ଓଡ଼ିଶା ଆର୍ଥିକ ବ୍ୟବସ୍ଥାରେ ଉନ୍ନତି ହୋଇପାରିବ ନାହିଁ ।" ଏହି ପରାମର୍ଶ କେତେଦୂର ଗ୍ରହଣୀୟ ତାହା ଏବେ ମଧ୍ୟ ବିଚାର୍ଯ୍ୟ ।

## Road side Rest Houses and Bungalows in Mayurbhanj

*260. Shri LALMOHAN PATI : Will the Government be pleased to state—

(a) if they are aware that many road side rest houses and inspection bungalow in Mayurbhanj district are either broken up or much too dilapidsated and some of them are not fit for human habitation;

(b) do the Government intend totake up in hand the rebuilding or repaaring of those houses in question;

(c) what would be the probable costs of the rebuilding or repairing of those houses;

(d) have the Government received any report of the Executive Engineer of Mayurbhanj, regarding the condition of those houses ; and

(e) if so, will the Government be pleased to place it on the table ?

The Hon'ble Shri HAREKRUSHNA MAHTAB : (a) The road side Rest Houses and inspection Bungalows in Mayurbhanj district in charge of the P. W. D, are not in good order as they have been neglected for the last 5 or 6 years. They are, however, not in such a bad condition as to make them unfit for human occupation.

(b) Repairs to these buildings are being carried out under repair grants placed at the disposal of the Executive Engineer. There is no such building in charge of the P. W. D. which requires entire reconstruction.

(c) The probable cost of bringing these buildings to a proper state of repair including provision of adequate furniture will be about Rs. 1 lakh. This expenditure will naturally be spread over a number.

(d) The answer is in the negative

(e) Does not arise

# The Budget

## Voting on demands for grants for the year, 1950-51

## Taxes on Income other than Corporation Tax and other Taxes and duties

The DEPUTY SPEAKER : Demand No. 1 may be moved now.

The Hon'ble Shri HAREKRUSHNA MAHTAB : Madam, I beg to move that the Assembly do assent to a demand of Rs. 4,54,670 to defray the charges which will come in course of payment during the year ending the 31st, day of March, 1951 in respect of the head "Taxes on Income other than Corporation Tax and other Taxes and Duties."

This appropriation has the recommendation of the Governor

The DEPUTY SPEAKER: Motion moved.

ଶ୍ରୀ ଶ୍ରଦ୍ଧାକର ସୁପକାର: Madam, I beg to move that the demand to be reduced Re. 1. ମୁଁ ପ୍ରସ୍ତାବ କରୁଛି ଯେ, ଏହି ଦାବି ୧ଟଙ୍କାକୁ କମାଇ ଦିଆଯାଉ । ଏହି ବିଷୟରେ କହିବାକୁ ଯାଇ ମୁଁ କେତେକ ନିର୍ଦ୍ଦିଷ୍ଟ ବିଷୟ ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ । ବର୍ତ୍ତମାନ କଥା ହେଉଛି ଯେ ଓଡ଼ିଶା ଗୋଟିଏ ଦରିଦ୍ର ପ୍ରଦେଶ । ଏଠାରେ ଆମର ଆୟ ଯେମିତି ହୋଇଛି ଏବଂ ଏହି ଆୟ କିପରି ଭାବରେ ବଢ଼ିବ, ସେଟା ଦେଖିବାର କଥା ଏବଂ ଆମର ଆହୁରି ମଧ୍ୟ ଦେଖିବାର କଥା ଯେ ଏହି taxation ଯେପରି ଗରିବ ଲୋକଙ୍କ ଉପରେ ନ ପଡ଼େ ଏବଂ ବେଶୀ ଧନୀ ଏବଂ ବ୍ୟବସାୟୀ

ମହାଜନ ଲୋକମାନଙ୍କ ଉପରେ ପଡ଼େ । କିନ୍ତୁ ଆମେ ଦେଖିବାକୁ ପାଉଛୁ, ଯେ, ଏସବୁ ଯେଉଁ କର ନିର୍ଦ୍ଧାରଣ କରହୋଇଛି ଯଥା ବିକ୍ରି କର ବା Sales Tax ଗରିବ ଲୋକଙ୍କ ଉପରେ ବେଶୀ ପଡ଼ିଛି ଏବଂ ବେଶୀ ଧନୀ ଲୋକମାନେ କରଭରରୁ ବର୍ତ୍ତି ଯାଉଛନ୍ତି ।

ଉଦାହରଣ ସ୍ୱରୂପ କହିପାରେ ଯେ ମୁଁ ଶୁଣିଛି ଯେ, Orient Paper Mills ପ୍ରତିବର୍ଷ Sales Tax ବା ବିକ୍ରୀକର ହିସାବରେ ୫ ଲକ୍ଷ ଟଙ୍କା ସେମାନଙ୍କଠାରୁ ଆଦାୟ କରଯାଉଥିଲା, କିନ୍ତୁ ଏହି ବର୍ଷଠାରୁ ସେମାନେ ଏହି ୫ ଲକ୍ଷ ଟଙ୍କା କରଭରରୁ exempted ହୋଇଛନ୍ତି ବା ସେମାନଙ୍କୁ ମାଫ କରି ଦିଆହୋଇଛି । ଅଥଚ ଆମେ ଏଇ ମଧ୍ୟରେ ଆଇନ କରିବାକୁ ଯାଉଛୁ ଏବଂ ସେହି Sales Tax Bill ଆମ ସମ୍ମୁଖରେ ଉପସ୍ଥାପିତ ହେବ ଯେ, ଯେଉଁଠି ପଇସାଏ Sales Tax ଅଛି ସେଠାରେ ୬ ପଇସା ହେବ ଏବଂ ଯେଉଁଠି ୬ ପଇସା ଥିଲା ତାକୁ ୧ ଅଣା କରଯିବ । ଅର୍ଥାତ ପୁରାପୁରି ଉବରେ ୨ ଗୁଣ କରଯିବ । ତେବେ ଆମର ଦେଖିବାର କଥା ଏହିପରି ବଗବର ବଡ଼ଲୋକେ ନାନା ପ୍ରକାର ଛଳନା କରି, ନାନା ରକମ excuse ଦେଖାଇ ଏହି ଆୟ କରରୁ ନିବର୍ତ୍ତି ଯାଉଛନ୍ତି । ଆମେ ଆହୁରି ମଧ୍ୟ ଦେଖୁଛୁଁ ଯେ ଏପରି ଅନେକ ବ୍ୟବସାୟୀ ଅଛନ୍ତି ଯେଉଁମାନେ ତାଙ୍କ ସମଗ୍ର କାରବାର ଓଡ଼ିଶା ପ୍ରଦେଶ ମଧ୍ୟରେ କରୁଛନ୍ତି ଅଥଚ ସେମାନଙ୍କ Head Office ଛୋଟ ଛୋଟ ଭଡ଼ାଘର ନେଇ Head Office କଲିକତାରେ ଅଛି ବୋଲି ସେମାନେ ଦେଖାଇ ଦେଉଛନ୍ତି । କାରଣ ଏହିପରି ବିକ୍ରୀ କରରୁ ନିଷ୍କୃତି ଲଭ କରିବାର ଉପାୟ କରୁଛନ୍ତି । ଆପଣ ଜାଣିଥିବେ ଯେ, ଯଦି ଓଡ଼ିଶାରେ ସମଗ୍ର କାରବାର ହେଉଥାଏ, ଏବଂ ଯଦି ସେହି କାରବାର ପାଇଁ ସେମାନଙ୍କ ଦାୟିତ୍ୱ କଲିକତାରେ ରଖାଯାଏ ତାହାହେଲେ କଲିକତାର officerମାନେ ଓଡ଼ିଶାକୁ ଆସି ତାଙ୍କ କାରବାର ଯାଞ୍ଚ କରିବାର ସୁବିଧା ପାଇ ପାରିବେ ନାହିଁ । ଏଥିପାଇଁ ଆମର ବିଶେଷ ଦୃଷ୍ଟି ଦେବା ଦରକାର ଯେ ଆମ ପ୍ରଦେଶରେ ଯେଉଁସବୁ କାରବାର ହେଉଛି ବିଶେଷତଃ Orient Paper Millରେ ଆମେ ଦେଖୁଛୁ ଯେ ବାଉଁଶ ପ୍ରଭୃତି ଅନେକ ଜିନିଷମାନ ଆମ ପ୍ରଦେଶରେ ଜାତ ହେଉଛି ଏବଂ ସମଗ୍ର କାରବାର ଆମ ପ୍ରଦେଶରେ ହେଉଛି । କେବଳ ସେହି କାଗଜଗୁଡ଼ିକ ତିଆରି ହେଲ ପରେ କଲିକତାକୁ ପଠାଇ ଦିଆଯାଉଛି । ସେଥିପାଇଁ ସେ ଏହି ୫ ଲକ୍ଷ ଟଙ୍କାରୁ ନିଷ୍କୃତି ଲଭ କରିବା ପାଇଁ ଚେଷ୍ଟା କରୁଛନ୍ତି । ଏବଂ ମୁଁ ଶୁଣୁଛି ଯେ, ସେଥିରେ ସେ ସଫଳତା ଲଭ କରିଛନ୍ତି । ଏହିପରି ଯଦି ହୁଏ ତାହାହେଲେ ଓଡ଼ିଶା ପ୍ରଦେଶର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ ପଡ଼ିବ । ଆମେ ଦେଖୁଛୁ ଯେ, Income Tax ଯାହାକି କେନ୍ଦ୍ର ସରକାର ଆଦାୟ କରନ୍ତି ସେଥିରୁ ଆମେ ଆମର ନ୍ୟାଯ୍ୟ ପ୍ରାପ୍ୟ ପାଇପାରୁ ନାହୁଁ । ଆମ ପ୍ରଦେଶରେ ଅନେକ ବଡ଼ ବଡ଼ କାରଖାନା ଅଛି । ଆମ ଦେଶରେ ଯେଉଁ ଲୁହା ଖଣି ଇତ୍ୟାଦି ଅଛି ସେଥିରେ ଟାଟା କମ୍ପାନୀ ସ୍ଥାପିତ ହୋଇଅଛି । ଆମ ପ୍ରଦେଶରେ ଅନେକ ବ୍ୟବସାୟ ହେଉଛି, ଯହିଁରୁ କି Income tax ଆଦାୟ କରଯାଇ ପାରନ୍ତା । କିନ୍ତୁ

ଯେହେତୁ ଏହି ବ୍ୟବସାୟୀମାନଙ୍କ Head Office ବମ୍ବେ କିମ୍ବା କଲିକତାରେ ଅଛି ସେଥିପାଇଁ Income tax ସେହିସବୁ ପ୍ରଦେଶରେ ଆଦାୟ ହେଉଛି ଏବଂ ଆମର ନ୍ୟାଯ୍ୟ ଅଂଶରୁ ବଞ୍ଚିତ ହେଉଛୁ । Income tax ଯେପରି ହେଉଛି Sales tax ଓ ଅନ୍ୟାନ୍ୟ Taxରେ ମଧ୍ୟ ସେହିପରି ଅବସ୍ଥା ହେଲାଣି । ଏହାଦ୍ୱାରା ତେଲିଆ ମୁଣ୍ଡରେ ତେଲ ଦେଇ ଗରିବ ପ୍ରଦେଶକୁ ଆହୁରି ଗରିବ କରଯାଉଛି । ଯଦି ଏହିପରି କାମ ଚାଲେ ତାହାହେଲେ ଆମ ଅବସ୍ଥା ଆହୁରି ଶୋଚନୀୟ ହେବ, ଏଣୁ ମୁଁ ସରକାରଙ୍କୁ ଅନୁରୋଧ କରୁଛି ଯେ, ଯାହା ଯେଉଁଠାରେ Manufacture ହେଉଛି, ଯେଉଁଠାରେ ଜିନିଷପତ୍ର ତିଆରି ହେଉଛି ସେଠାରେ ଯେପରି କର ଆଦାୟ କରଯାଇ ପାରିବ ସେଥିପ୍ରତି ସରକାର ଦୃଷ୍ଟି ଦିଅନ୍ତୁ । ଏହି ସବୁର ପ୍ରତିକାର କର ନ ଗଲେ ଓଡ଼ିଶାର ଆର୍ଥିକ ଅବସ୍ଥାରେ ଉନ୍ନତି ହୋଇ ପାରିବ ନାହିଁ । ଗରିବ ଲୋକମାନଙ୍କଠାରୁ ଅନେକ କର ଆଦାୟ କର ହେଉଛି । କିନ୍ତୁ ଧନୀ ଲୋକମାନେ ଅନ୍ୟାୟ ଉପାୟରେ କରରୁ ନିଷ୍କୃତି ଲାଭ କରୁଛନ୍ତି ।

## 1950-51 ବର୍ଷ ବଜେଟ ପାଇଁ ଅନୁଦାନ (ସାଧାରଣ ସ୍ୱାସ୍ଥ୍ୟ) ପାଇଁ ଦାବ ମଞ୍ଜୁରୀ

1950-51 ବର୍ଷର ବଜେଟର ସାଧାରଣ ସ୍ୱାସ୍ଥ୍ୟ ସମ୍ପର୍କରେ ଜନ ସ୍ୱାସ୍ଥ୍ୟ ଉପରେ ମୋଟ 16,94,928 ଟଙ୍କା ଖର୍ଚ୍ଚ ହେବ । 1950 ମାର୍ଚ୍ଚ ବିଧାନସଭାରେ ଶ୍ରଦ୍ଧାକର ଏହାକୁ ଏକ ଟଙ୍କାକୁ କମାଇ ଦେବାକୁ ଦାବି କରୁଛନ୍ତି । ସମ୍ବଲପୁରଠାରେ ଓରିଏଣ୍ଟ କାଗଜ କଳ 12 ବର୍ଷ ହେଲା ଏ ଦିଗରେ ବହୁ ବାଦ ପ୍ରତିବାଦ ସତ୍ତ୍ୱେ ଇବ୍ ନଦୀର ଜଳକୁ ଦୂଷିତ କରୁଥିଲା ଯାହା ଫଳରେ ଜନସାଧାରଣଙ୍କ ସ୍ୱାସ୍ଥ୍ୟ ହାନି ଘଟୁଛି । ଏହି ପ୍ରସଙ୍ଗରେ ସେ Vegetable oilର ମାରାତ୍ମକତା ଜଣାଇ ଏପରି ଶିଳ୍ପ ଏ ଦେଶରେ ପ୍ରତିଷ୍ଠା କର ନ ଯାଉ ବୋଲି ଦାବି କରିଛନ୍ତି । ଏକ Medical Board ଦ୍ୱାରା ଏହି ଘିଅର ପରୀକ୍ଷା କରଯିବା ଉଚିତ ବୋଲି କୁହାଯାଇଛି । ଅନ୍ୟ ତେଲ ସହିତ ଏହାର ମିଶ୍ରଣକୁ ବାରଣ କରିବାକୁ ପରାମର୍ଶ ଦିଆଯାଇଛି । ଜନସ୍ୱାସ୍ଥ୍ୟ ଦୃଷ୍ଟିରୁ ଡଃ ସୂପକାରଙ୍କ ଚିନ୍ତାଧାର ଖୁବ୍ ମୂଲ୍ୟବାନ୍ ।

*    *    *    *

ଡଃ ଶ୍ରଦ୍ଧାକର ସୂପକାର ଶିଳ୍ପ ଦାବିକୁ ମଧ୍ୟ ଏକ ଟଙ୍କାକୁ କମାଇ ଦେବା ପାଇଁ କାଟ ପ୍ରସ୍ତାବ ଆଣି କହିଛନ୍ତି ଯେ ଶିଳ୍ପ ବିଭାଗରେ ଅଧିକ ବିଦ୍ୟାଳୟ ପ୍ରତିଷ୍ଠିତ ହେଉ ଓ ଗବେଷଣା କାର୍ଯ୍ୟରେ ଉନ୍ନତି ହେଉ । କିନ୍ତୁ ବିଭାଗର Commercial aspect ରହିଛି ତା'ର ଉତ୍ପାଦନଶୀଳତାରେ ବିକାଶ ଘଟୁ । ଗୋଟିଏ ଇଞ୍ଜିନିୟରିଂ କଲେଜର ପ୍ରତିଷ୍ଠା ଉପରେ ସେ ଜୋର ଦେଇଛନ୍ତି । Mining ବା ଖଣି ଖନନ ଉପରେ ଗୁରୁତ୍ୱ ଦେଇ ମାନ୍ୟବର ଲାଟ ସାହେବଙ୍କ ଭାଷଣରେ ଗୋଟିଏ ଖଣିଜ ବିଭାଗ ଅତିଶୀଘ୍ର ଖୋଲାଯିବା ପ୍ରସ୍ତାବ ଥିବାରୁ ଆଶାନ୍ୱିତ ହୋଇଛନ୍ତି । ଶକ୍ତି ବିଭାଗରେ ଯଥେଷ୍ଟ ସଂଖ୍ୟକ experts ନିଯୁକ୍ତ ହୁଅନ୍ତୁ ବୋଲି ସେ ମତ ପ୍ରକାଶ କରିଛନ୍ତି ।

*　　*　　*　　*

ସେହିପରି ଶିକ୍ଷା ବିଭାଗର ଦୋଷତ୍ରୁଟି ଦେଖାଇ ଡଃ ସୁପକାର ଏକ ଖର୍ଚ୍ଚ କାଟ ପ୍ରସ୍ତାବ ଆଣିଛନ୍ତି ଏବଂ ବିଶ୍ୱବିଦ୍ୟାଳୟ ଉପଯୁକ୍ତ ଅନୁଦାନ ପାଉନାହିଁ ବୋଲି ଆପତ୍ତି କରିଛନ୍ତି । ସାହାଯ୍ୟପ୍ରାପ୍ତ ମାଧ୍ୟମିକ ବିଦ୍ୟାଳୟ ମଧ୍ୟ ଅଧିକ ସରକାରୀ ଅନୁଦାନ ପାଉ ବୋଲି ସେ ପରାମର୍ଶ ଦେଇଛନ୍ତି । ଶିକ୍ଷା ମନ୍ତ୍ରୀ "ଯେତେଦୂର ସମ୍ଭବ ବେଶୀ ପରିମାଣରେ ଟଙ୍କା ସରକାରଙ୍କଠାରୁ ଜବରଦସ୍ତି ଆଦାୟ କରି ଲୋକଙ୍କର ହିତକର କାର୍ଯ୍ୟରେ ବିନିଯୋଗ କରନ୍ତୁ" ବୋଲି ଶ୍ରଦ୍ଧାକର ବିଶେଷ ଅନୁରୋଧ କରିଛନ୍ତି ।

## The budget for the year, 1950-51—Voting of demands for grants

## Public Health

The Hon'ble Pandit LINGARAJ MISRA: Sir, I beg to move that the Assembly do assent to a demand of Rs. 16,94,928 to defray the charges which will come in course of payment during the year ending the 31st day of March, 1951 in respect of the head "Public Health."

This appropriation has the recommendation of the Governor.

The Hon'ble SPEAKER: Motion moved. No member would be allowed more than three minutes for discussion of these cut motions.

ଶ୍ରୀ ଶ୍ରଦ୍ଧାକର ସୁପକାର: ମାନନୀୟ ସଭାପତି ମହାଶୟ, ମୋ ନାମରେ ଯେଉଁ ତିନୋଟି କାଟ ପ୍ରସ୍ତାବ ଅଛି, ମୁଁ ସେଥିମଧ୍ୟରୁ କେବଳ ପ୍ରଥମଟି ଆଗତ କରୁଛି । That the demand be reduced to Re. 1. ଏହି ବିଷୟରେ ଯେତେବେଳେ ସାଧାରଣ ସ୍ୱାସ୍ଥ୍ୟ କଥା ଆଲୋଚିତ ହୁଏ, ସେତେବେଳେ ସମ୍ବଲପୁର ସାଧାରଣ ସ୍ୱାସ୍ଥ୍ୟର ସବୁଠାରୁ ବଡ଼ ଶତ୍ରୁ, Orient କାଗଜ କଳ, ସେ କଥା ପ୍ରଥମେ ମନେ ପଡ଼େ । ଏହି କାଗଜକଳ ଯୋଗୁଁ ଇବ୍ ନଦୀ ଏବଂ ମହାନଦୀର ପାଣି କିପରି ଭାବରେ ଦୂଷିତ ହେଉଛି ଏବଂ ସେଥିଦ୍ୱାରା ଲୋକମାନେ ପାନୀୟ ଜଳର ଏବଂ ଅନ୍ୟାନ୍ୟ ବ୍ୟବହାର ପାଇଁ ପାଣିର ଅଭାବରୁ କେତେ କଷ୍ଟ ପାଉଛନ୍ତି, ସେଇଟା ଯେଉଁମାନେ ନିଜେ ଆଖିରେ ଦେଖି ନାହାନ୍ତି, ସେମାନେ କଳ୍ପନା କରି ପାରିବେ ନାହିଁ । ଏହି ବିଷୟରେ ଗତ 12 ବର୍ଷ ହେଲା ନାନା ପ୍ରକାର ପ୍ରତିବାଦ ଆଲୋଚନା Assemblyରେ ପ୍ରଶ୍ନ ଏବଂ ନାନା ରକମ ପ୍ରତିବାଦ କରାହେଉଛି । କିନ୍ତୁ ଏପର୍ଯ୍ୟନ୍ତ ତାହାର କିଛି ସ୍ଥାୟୀ ପ୍ରତିକାର ହୋଇ ପାରିନାହିଁ । ଏହା ଅତି ଦୁଃଖର ବିଷୟ । ମୋର ମନେ ଅଛି ଯେ, ଗତ 1946 ସାଲରେ ଏହି ବିଷୟରେ ଏହି ସଭାରେ କେତେକ ଆଲୋଚନା ହୋଇଥିଲା ଏବଂ ସେ ସମୟରେ

ମାନ୍ୟବର ପ୍ରଧାନମନ୍ତ୍ରୀ ଏ ବିଷୟରେ ପ୍ରତିକାର କରିବା ପାଇଁ ଆମକୁ ଆଶ୍ୱାସନା ଦେଇଥିଲେ । କିନ୍ତୁ ଏପର୍ଯ୍ୟନ୍ତ ସେ ବିଷୟରେ କୌଣସି ସ୍ଥାୟୀ ପ୍ରତିକାର ହୋଇନାହିଁ । ଅବଶ୍ୟ ମୁଁ ଏ ବିଷୟରେ କେତେକ report ଯାହା ସବୁ ପାଇଛି, ସେଥିରୁ ଜଣାଯାଉଛି ଯେ, ଏହି ଗତ ବର୍ଷ 1949 ସାଲରେ କଲିକତାରୁ ଜଣେ Sanitary Engineer ଆସି ସେ ପାଣି ପରୀକ୍ଷା କରିଥିଲେ । ସେ ମତ ଦେଇଥିଲେ ଯେ, ଏହି ଜଳ ପାନୀୟ ହିସାବରେ ବିଶେଷ ବିପଜ୍ଜନକ ନୁହେଁ । କିନ୍ତୁ ଏହି ପ୍ରକାର expert opinion ଦେଖିଲା ମାତ୍ରକେ ଆମ୍ଭେମାନେ ଆଶ୍ଚର୍ଯ୍ୟ ହେଉ । କାହିଁକି ଯେ ବିଶେଷଜ୍ଞ ଏହି ପ୍ରକାର ମତ ଦେଉଛନ୍ତି । ସେ ନିଜେ ସେଠାରେ ଗଲେ ସେ ପାଣି ପିଇବାକୁ ସାହସ କଲେ ନାହିଁ । ସେ ଯାଗାରେ ଯେଉଁ ପାଣି ଅଛି, ତାହା ସମ୍ପୂର୍ଣ୍ଣ ଅପେୟ ଏବଂ ସ୍ୱାସ୍ଥ୍ୟ ପକ୍ଷରେ ସମ୍ପୂର୍ଣ୍ଣ ଅନୁପଯୋଗୀ ବୋଲି ଯେ କେହି ଜାଣି ପାରିବେ । କେବଳ ତାଙ୍କର ବୈଜ୍ଞାନିକ ମତ ଦେବାର କାରଣ କ'ଣ, ଏହାଦ୍ୱାରା ସମସ୍ତେ ଅନୁମାନ କରି ପାରୁଥିବେ ।

ତା'ପରେ ସାଧାରଣ ସ୍ୱାସ୍ଥ୍ୟ ବିଷୟ ଯେତେବେଳେ ଆଲୋଚନା ହୁଏ, ସେଥିରୁ ଆଉ ଗୋଟିଏ ବିଷୟ ଆମ ସମସ୍ତଙ୍କ ପକ୍ଷରେ ବିଶେଷ ବିପଜ୍ଜନକ । ସେ ବିଷୟ ମୋର ମନେ ପଡ଼େ । ତାହା ହେଉଛି ଏହି ଯେଉଁ ଆମର ଖାଦ୍ୟକୁ ବିଷାକ୍ତ କରି ଦିଆ ହେଉଛି, ଏହି ବିଷୟରେ ସମସ୍ତେ ଜାଣିଥିବେ ଯେ, Vegetable Ghee ବା Vegetable oil ବନସ୍ପତି ବୋଲି ଗୋଟିଏ କଥା ଅଛି । ଏହି ବନସ୍ପତି ଗୋଟିଏ ବିଷାକ୍ତ ଜିନିଷ ଦ୍ୱାରା ତିଆରି ହୁଏ । ଏହାଦ୍ୱାରା ଖାଦ୍ୟ ଜିନିଷ ତିଆରି ହୋଇ ଦେଶର ସାଧାରଣ ସ୍ୱାସ୍ଥ୍ୟର କିପରି ଅବନତି ଘଟୁଛି—

**ଶ୍ରୀ ଦୀନବନ୍ଧୁ ସାହୁ** : ଆପଣ ବୋଧହୁଏ ଖାଇ ନାହାନ୍ତି ?

**ଶ୍ରୀ ଶ୍ରଦ୍ଧାକର ସୂପକାର** ; ମୁଁ ମଧ୍ୟ ଖାଉଛି ।

**ମୌଲବୀ ମହମ୍ମଦ ଲତଫୁର ରହମନ** : Sir, in these interruption some minutes are taken away.

**ଶ୍ରୀ ଶ୍ରଦ୍ଧାକାର ସୂପକର**—କିନ୍ତୁ ଏହି ଭେଜିଟେବୁଲ ତେଲ ବା ଘିଅ ଦ୍ୱାରା ଆମର କେତେ କ୍ଷତି ହେଉଛି ଏବଂ ଏହାଦ୍ୱାରା ଆମର ମଧ୍ୟ କିପରି ଭାବରେ ଖାଦ୍ୟସବୁ ବିଷାକ୍ତ ହେଉଛି, ଏଇଟା ସରକାର ଜାଣି ତହିଁର ସ୍ଥାୟୀ ପ୍ରତିକାର କରିବା ଉଚିତ । ଆମେ ଦେଖୁଛୁ ଏହି Vegeteble ghee ଗୋଟିଏ National Industry ବା ଜାତୀୟ କାରଖାନା ବୋଲି ତାକୁ ଉତ୍ସାହିତ କରାଯାଉଛି । ଭାରତ ସରକାର ମଧ୍ୟ ଏ industryକୁ ସମୁଦାୟ ପ୍ରଦେଶରେ ଉତ୍ସାହିତ କରୁଛନ୍ତି । ଏହି ଜିନିଷକୁ ବ୍ୟବହାର କରି ଯଦି ଆମେ ସ୍ୱାସ୍ଥ୍ୟକୁ ବିପଜ୍ଜନକ କରିବାକୁ ଯାଉ, ତାହେଲେ ଆମ ଲୋକଙ୍କର ଅବସ୍ଥା ଯେ କିପରି ହେବ ତାହା ଆମେ କଳ୍ପନା କରି ପାରୁନାହୁଁ ।

ଆମେ ଦେଖୁଛୁ ଏଠାରେ କେହି ଲୋକ ଚୋରୀ ବା pick pocket କଲେ ତାକୁ ବର୍ଷେ ବା ଦୁଇ ବର୍ଷ କାରଦଣ୍ଡ ଦେଉଛନ୍ତି । କିନ୍ତୁ ଯେଉଁମାନେ ଏହି ବିଷାକ୍ତ ଦ୍ରବ୍ୟ ଦ୍ୱାର ଆମ ଖାଦ୍ୟକୁ ବିଷାକ୍ତ କରି ଜୀବନକୁ ବିପଜ୍ଜନକ କରୁଛନ୍ତି ଏବଂ ଆମ ସାଧାରଣ ସ୍ୱାସ୍ଥ୍ୟକୁ ଅପହରଣ କରୁଛନ୍ତି, ସେଟା ବୁଝିବା ଉଚିତ । ସରକାରଙ୍କ ଦ୍ୱାର ଏ ଯେଉଁ Medical and Public Health Report ପ୍ରକାଶିତ ହୋଇଛି, ସେଥିରେ କୁହାଯାଇଛି ଯେ, ଅତିଶୀଘ୍ର ଗୋଟିଏ Medical Board କରଯାଉଛି । ଯଦି ଏହା କରଯାଉଥାଏ, ତାହାହେଲେ ମୁଁ ସରକାରଙ୍କୁ ଅନୁରୋଧ କରୁଛି ଏଥିରେ ଯେଉଁ ଖାଦ୍ୟ ବିଷାକ୍ତ ଯଥା Vegetable ghee ସୋରିଷ ତେଲ ଇତ୍ୟାଦି ସେ ଯେପରି ଅନ୍ୟ କିଛି ବିଷାକ୍ତ ଜିନିଷ ମିଶି, ସାଧାରଣ ସ୍ୱାସ୍ଥ୍ୟ ନଷ୍ଟ ନ କରେ ସେଥିପ୍ରତି ଯଥୋପଯୋଗୀ ବିଧାନ ହେବା ଉଚିତ ।

The Hon'ble SPEAKER: Shri L. N. Sahu to speak.

**ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ**: ବାଚସ୍ପତି ମହୋଦୟ, ଏହି ସ୍ୱାସ୍ଥ୍ୟ Budgetରେ ସାଧାରଣ ସ୍ୱାସ୍ଥ୍ୟ ପାଇଁ ମାନ୍ୟବର ସ୍ୱାସ୍ଥ୍ୟ ମନ୍ତ୍ରୀ ଆମ ପାଖରେ ଟ 16,94,980 ଆମକୁ ମଞ୍ଜୁର ମାଗୁଛନ୍ତି । ଏତିକିବେଳେ ମୁଁ Public Health ବିଷୟରେ ଗୋଟିଏ ନିବେଦନ କରିବାକୁ ଚାହେଁ । ମହାତ୍ମାଗାନ୍ଧି କହିଛନ୍ତି, ଔଷଧ ସେବନ କରି ବଞ୍ଚିବା ଅପେକ୍ଷା ମରିବା ଶ୍ରେୟସ୍କର । ଅତଏବ Public healthରୁ ଆମ୍ଭେମାନେ୍ ଯଦି ଔଷଧ କମାଇ ଦେଇ ପାରୁ, ତାହାହେଲେ ଆମ୍ଭମାନଙ୍କର ଖୁବ୍ ଭଲ ହେବ ।

2ୟ କଥା ମୁଁ କହିବାକୁ ଚାହେଁ, ଯେତେବେଳେ ଆମକୁ ଟଙ୍କାର ବିଶେଷ ଅଭାବ ପଡୁଛି, ସେ ସମୟରେ ଟୀକା ଦେବାପାଇଁ ଯେତେ ଟଙ୍କା ଆମେ ଖର୍ଚ୍ଚ କରୁଛୁ, ସେଟା ବନ୍ଦ କରିଦେଲେ ଦେଶ ପକ୍ଷରେ ଭଲ ହେବ । ମୁଁ ତା'ର ଗୋଟିଏ ଉଦାହରଣ ଦେଉଛି । The National Anti Vaxination League ଯେଉଁଥିରେ କି Bertrand P. Aliluson M. R. Cs. L. R. C. P., M. Beddow Bayly, M. R. Cs. L. R. C. P., Reginald Bowden, R. D. ଇତ୍ୟାଦି ବଡ଼ ବଡ଼ ଡାକ୍ତର ଅଛନ୍ତି, ସେମାନେ ସମସ୍ତେ ଲେଖିଛନ୍ତି ଯେ, "Vaxination does not protect from Small Pox nor prevent deaths from that disease".

* * *

**ଶ୍ରୀ ଶ୍ରଦ୍ଧାକର ସୁପକାର**: ମାନ୍ୟବର ସଭାପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ, ଏହି ଦାବି ସବୁ ଏକ ଟଙ୍କାକୁ କମାଇ ଦିଆଯାଉ । ଏହି industry ବା ଶିଳ୍ପ ବିଷୟରେ ଆଲୋଚନା କଲବେଳେ ଆମେ ଦେଖିବା ଯେ, ଏହି ଶିଳ୍ପ ବିଷୟରେ ଯାହା ଖର୍ଚ୍ଚ ହେଉଛି, ତାହା ଦୁଇଟି ଦୃଷ୍ଟିକୋଣରୁ ଆଲୋଚନା କରଯାଇ ପାରେ । ପ୍ରଥମଟି ହେଉଛି, ଏଇ ଯେ ବୃତ୍ତି ଦିଆହେଉଛି ବା ଏଇ ଯେଉଁ ଶିଳ୍ପ ବିଦ୍ୟାଳୟମାନ

ଖୋଲା ହେଉଛି, ସେସବୁ କାମରେ ବା Research କାମରେ ଯାହା ଖର୍ଚ୍ଚ ହେଉଛି, ସେଥିରେ ଆମର କିଛି କହିବାର ନାହିଁ । କାହିଁକି ନା, ଆମର ଯଦି ବେଶୀ School ନ ହୁଏ, ଛାତ୍ରମାନଙ୍କୁ ବେଶୀ ବୃତ୍ତି ନ ଦିଆହୁଏ, ତା'ହେଲେ ଆମର ଶିଳ୍ପର ଉନ୍ନତି ହୋଇ ପାରିବ ନାହିଁ । କିନ୍ତୁ ସେଥିରେ ଯେତେ ବ୍ୟୟ ହେଉଛି, ସେହି ତୁଳନାରେ ଆୟ କିଛି ହେଉନାହିଁ । ଏହି ଶିଳ୍ପ ବିଭାଗର ଆଉ ଗୋଟିଏ ଦିଗ ଅଛି । ଯାହାକୁ କି commercial aspect ବୋଲି କୁହାଯାଇ ପାରେ । ସେହି ଦୃଷ୍ଟିରୁ ଦେଖିଲେ ଜଣାଯିବ ଏଇ ଶିଳ୍ପ ବିଭାଗରେ କେତେଗୁଡ଼ିଏ ଉପବିଭାଗ ଅଛି, ଯେଉଁଥିରେ କି ଯେପରି ଭାବରେ ବ୍ୟୟ ହେଉଛି ସେହି ଅନୁପାତରେ ଆୟ ମଧ୍ୟ ହେବା ଉଚିତ ଏବଂ ଆମର ସରକାର ଏପରି ଚେଷ୍ଟା କରିବା ଉଚିତ ଯେ, ଏହା ବର୍ତ୍ତମାନ Self sufficient ବା paying ନ ହେଲେ ସୁଦ୍ଧା ନିକଟ ଭବିଷ୍ୟତରେ ଯେପରି ବ୍ୟୟ ତୁଳନାରେ ଆୟ ଯଥେଷ୍ଟ ହୋଇ ପାରିବ, ସେଥିପ୍ରତି ସରକାର ଦୃଷ୍ଟି ଦେବା ଉଚିତ । ମୁଁ ଯେତେବେଳେ ଏହି ବିଭାଗ କଥା ଭାଇକରି ଚିନ୍ତାକରେ ସେତେବେଳେ ମୋର ମନରେ ଘୋର ନୈରାଶ୍ୟ ଜାତହୁଏ । ଉଦାହରଣ ସ୍ୱରୂପ ମୁଁ ଆପଣଙ୍କର ଦୃଷ୍ଟି ଏହି fishery ବା ମତ୍ସ୍ୟ ଉତ୍ପାଦନ ବିଭାଗ ପ୍ରତି ଆକର୍ଷଣ କରୁଛି । Budgetର 458ରୁ 460 ପୃଷ୍ଠାରେ ଦେଖିବାକୁ ପାଉଛୁ ଯେ, Reorganisation of fisheries, Co-operative marketing of Chilka Fish Marine Fisheries. ଏହିସବୁ Headରେ ମୋଟରେ ଖର୍ଚ୍ଚ ହେଉଛି ଟ 3,58,303 ।

35 ପୃଷ୍ଠାରୁ ଦେଖିବେ ଆୟ ଯେଉଁଠି ହେଉଛି, ମୋଟ 1 ଲକ୍ଷ 91 ହଜାର ମାତ୍ର, ଅର୍ଥାତ ଏଇ ବିଭାଗରେ ଆମର ଯେତିକି ବ୍ୟୟ ତା'ର ପ୍ରାୟ ଅଧା ଆମର ଆୟ ହେଉଛି । ଅନ୍ୟ ଏକ ବିଭାଗ ପ୍ରତି ଦେଖାଯାଉ । ଚମଡ଼ା ବିଭାଗ—ସେଥିରୁ ଦେଖାଯାଉଛି, Tanning Administration ଇତ୍ୟାଦି କାର୍ଯ୍ୟରେ ବାର୍ଷିକ ଟ 3,14,093 ଖର୍ଚ୍ଚ ହେଉଛି, ଆୟ ହେଉଛି ଟ 15,834 ମାତ୍ର । ମୋଟ ଉପରେ ଦେଖିବାକୁ ଗଲେ ଆମେ ଏହି Industry ବା ଶିଳ୍ପ ବିଭାଗକୁ ଏପରି ଭାବରେ ପରିଚାଳିତ କରିବା ଉଚିତ ଯେ, ତା'ର ବ୍ୟୟ ଅନୁପାତରେ ଆୟ ଯେପରି ବଢ଼େ ଏବଂ ଶେଷକୁ ଆମେ ଏପରି ଅବସ୍ଥାକୁ ଆସୁ ଯେ, ଏ ଗୋଟିଏ Expense Department ବା ଖର୍ଚ୍ଚ ବିଭାଗ ନ ହେଉ । ଖର୍ଚ୍ଚଠାରୁ ଆୟ ଯେପରି ବେଶୀ ହେବ, ସେଥିପ୍ରତି ଆମେ ଯଥେଷ୍ଟ ଦୃଷ୍ଟି ଦେବା ଉଚିତ ।

ତାପରେ Engineering College ବିଷୟରେ ଆଠଗଡ଼ର ମାନ୍ୟବର ସଭ୍ୟ ଯାହା କହିଲେ, ସେଥିରେ ପ୍ରୟୋଜନୀୟତା ବର୍ତ୍ତମାନ ସମୟରେ ବେଶୀ ବଢିଯାଇଛି । କାରଣ ଆମେ ଶିଳ୍ପ ଉନ୍ନତି ପାଇଁ ଚେଷ୍ଟା କରୁଛୁ । ଓଡ଼ିଶାର ବହୁତ ଛାତ୍ର ବିଦେଶରେ training ନେଇ ଆସିଲେଣି । ଆମ ପ୍ରଦେଶରେ Civil Engineering Branchରେ ଗତ 8 ବର୍ଷ ମଧ୍ୟରେ 37 ଜଣ, Mechanical and Electrical Engineering ବିଭାଗରେ 83 ଜଣ, ଏହିପରି ସର୍ବମୋଟ ପ୍ରାୟ 120 ଜଣ ଛାତ୍ର ଅନ୍ୟ ପ୍ରଦେଶରେ

ପଢ଼ିଛନ୍ତି ଓ ବିଦେଶକୁ ମଧ୍ୟ ଅନେକ ଛାତ୍ର ଯାଇଛନ୍ତି । ଯଦି ଓଡ଼ିଶାରେ ଅତିଶୀଘ୍ର ଗୋଟିଏ କଲେଜ ସ୍ଥାପନ କରଯାଏ, ତାହାହେଲେ ଆମେ ଅନ୍ତତଃ ଏହି ଛାତ୍ରମାନଙ୍କୁ, ଯେଉଁମାନଙ୍କୁ ଆମେ ଅନ୍ୟାନ୍ୟ ପ୍ରଦେଶରେ ପଢ଼ାଇବାକୁ ବାଧ୍ୟ ହେଉଛୁ, ସେମାନେ ଆମ ପ୍ରଦେଶରେ ରହି ପଢି ପାରନ୍ତେ ଏବଂ ବର୍ତ୍ତମାନ ବିଦେଶକୁ ଯେତେ ଯାଉଛନ୍ତି ତା' ଠାରୁ ବହୁ ସଂଖ୍ୟକ ଛାତ୍ର ବାହାରି ପାରନ୍ତେ । ଆଉ ଯାହା ଆମର ପ୍ରଧାନମନ୍ତ୍ରୀ ଅଭିଯୋଗ କରିଛନ୍ତି ଯେ, ଆମର ଯଥେଷ୍ଟ ସଂଖ୍ୟକ ଓଡ଼ିଆ Engineer ବା ଶିଳ୍ପ ବିଭାଗର ଅନ୍ୟାନ୍ୟ କର୍ମଚାରୀ ଯଥେଷ୍ଟ ସଂଖ୍ୟାରେ ନାହାନ୍ତି, ସେ ସମସ୍ୟାଟା ଅତିଶୀଘ୍ର ସମାଧାନ ହୋଇପାରନ୍ତା ।

ତାପରେ ଏହି mining ବା ଖନନ ବିଭାଗ ପ୍ରତି ମଧ୍ୟ ସରକାରଙ୍କ ଦୃଷ୍ଟି ବିଶେଷ ଭାବରେ ଆକୃଷ୍ଟ ହେବା ଉଚିତ । ଅବଶ୍ୟ ମାନ୍ୟବର ଲାଟ ସାହେବ ତାଙ୍କର ବକ୍ତୃତାରେ କହିଛନ୍ତି ଯେ, ଗୋଟିଏ ଖଣିଜ ବିଭାଗ ଅତି ଶୀଘ୍ର ଖୋଲାଯିବ, କିନ୍ତୁ ଏହି ବିଷୟରେ ଯାହା ଆମର ଆୟବ୍ୟୟ ହେଉଛି, ସେଥିରୁ ଆମେ ଦେଖୁଛୁ ଯେ, ଆମର ଯେତେ ଲାଭ ପାଇବା କଥା ଆମେ ପାଇପାରୁ ନାହୁଁ । ସେଥିପାଇଁ ଅତିଶୀଘ୍ର ଏହି ଯେ, mining ବିଭାଗ ଖୋଲାଯାଇଛି, ସେଥିରେ ଯଥେଷ୍ଟ ସଂଖ୍ୟକ Experts ନିଯୁକ୍ତ ହେବା ଦରକାର । ଯେପରିକି ଆମେ ଆମର ଖଣିଜ ବିଭାଗରୁ ଯାହା ପାଇବାର କଥା, ଆମର ଯାହା ଲାଭ କରିବାର କଥା, ସେଥିରୁ ଆମେ କୌଣସି ପ୍ରକାର ବଞ୍ଚିତ ନ ହେଉ ।

**ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ**: ବାଚସ୍ପତି ମହୋଦୟ, ମୋର କାଟ ପ୍ରସ୍ତାବ ହେଉଛି, That the demand be reduced to Rupee one hundred ଦ୍ୱିତୀୟ ପ୍ରସ୍ତାବ ହେଉଛି—That the demand be reduced by Rs. 100. (To discuss the question of starting Small Scale Industries in Agricultural areas.)

*                    *                    *                    *

**ଶ୍ରୀ ଶ୍ରଦ୍ଧାକର ସୂପକାର**: ମାନ୍ୟବର ସଭାପତି ମହୋଦୟ, ମୁଁ ପ୍ରସ୍ତାବ କରୁଛି demandକୁ ଏକ ଟଙ୍କା କମାଇ ଦିଆଯାଉ । ଆମେ ଯଦି ଏ ଶିକ୍ଷା ବିଭାଗ ବଜେଟ ଦେଖିବା ତାହାହେଲେ ଆମେ ଦେଖିବାକୁ ପାଇବା ଯେ, University ବିଭାଗ Secondary ଏବଂ ପ୍ରାଇମେରୀ ବିଭାଗ ଏହି 3 ବିଭାଗର ଶିକ୍ଷା ଯଦି ଆମେ ପର୍ଯ୍ୟାଲୋଚନା କରୁ, ତା ହେଲେ ଦେଖିବା ଯେ ବିଶ୍ୱବିଦ୍ୟାଳୟ ବା College ବିଭାଗକୁ ସରକାରଙ୍କ ବ୍ୟୟ ହେଉଛି 12,30,266 ଏବଂ ତାହାର ଆୟ ହେଉଛି 3 ଲକ୍ଷ 50 ହଜାର । ଏପରି ଭାବରେ ଦେଖିବାକୁ ଗଲେ ମୋଟ ଆୟ ହେଉଛି ୪,୪0,2୪୪ ଟଙ୍କା ଏବଂ ସମଗ୍ର ନିଟ୍ ଆୟ ଶିକ୍ଷା ବିଭାଗର ଶତକଡା 6 ମାତ୍ର ।

ଏ ବିଷୟରେ ମୁଁ Budget ଆଲୋଚନାବେଳେ ଆଲୋଚନା କରିଥିଲି, ଯେ, Universityକୁ ସରକାର ଯଥେଷ୍ଟ ପରିମାଣରେ ସାହାଯ୍ୟ କରିପାରୁ ନାହାନ୍ତି ତାର ଉତ୍ତରରେ ପ୍ରଧାନ

ମନ୍ତ୍ରୀ କହିଥିଲେ ଯେ, ବିଶ୍ୱବିଦ୍ୟାଳୟ ଆମର ଗୋଟିଏ affiliated ବା Examining University କେବଳ ପରୀକ୍ଷା କରନ୍ତି ଏବଂ ଅନ୍ୟାନ୍ୟ କଲେଜମାନଙ୍କୁ affiliate କରନ୍ତି । ସେଥିପାଇଁ ମୁଁ କହିବି ସେହି ଦୃଷ୍ଟିରେ ବିଷୟଟାକୁ ଦେଖନ୍ତି, ତାହାହେଲେ ବର୍ତ୍ତମାନ ଉଚିତ ହେଉଛି ଯେପରି ଭବରେ ସରକାର law ବିଭାଗ ବା ଆଇନ ବିଭାଗ University ହାତକୁ ଦେଇ ଦେଉଛନ୍ତି ସେହିଭଳି post graduate ଓ Degree ବିଭଗ ବିଶ୍ୱବିଦ୍ୟାଳୟକୁ ଦେବା ବନ୍ଦୋବସ୍ତ କରନ୍ତୁ ।

ତାହାହେଲେ ସରକାରଙ୍କର ଦୃଷ୍ଟି ବିଶେଷ ଭବରେ ପ୍ରାଥମିକ ଓ Secondary Education ଉପରେ ପଡ଼ିବ ଏବଂ University ଯେଉଁଥିରେ କି ଅଧିକାଂଶ ଶିକ୍ଷାବିତ୍‌ମାନେ member ଅଛନ୍ତି ସେମାନେ ଏହି ବିଷୟକୁ ବିଶେଷ ଭବରେ University standard ବଢ଼ାଇବାକୁ ଗ୍ରହିଁବେ । Secondary Education ସମ୍ବନ୍ଧରେ ମୁଁ କହିବାକୁ ଗ୍ରହେଁ ଯେ, ଏଥିରୁ ଦେଖାଯାଉଛି 34,08,305 ଟଙ୍କା ଖର୍ଚ୍ଚ ହେଉଛି, ଏବଂ ଆମଦାନୀ ହେଉଛି 2,75,000 ଅର୍ଥାତ ପ୍ରାୟ ଶତ୍‌କଡ଼ା 21 ଭଗ ପ୍ରାୟ ବ୍ୟୟ ହେଉଛି ।

ମୁଁ ଏ ବିଷୟରେ ସରକାରଙ୍କ aided school ନୀତିପ୍ରତି ଦୃଷ୍ଟି ଆକର୍ଷଣ କରିବାକୁ ଗ୍ରହେଁ ଏ ବିଷୟରେ ଦେଖାଯାଉଛି ଯେ, ସବୁ ସ୍କୁଲମାନଙ୍କରେ ସରକାରୀ ହେଉ ବା ବେସରକାରୀ ହେଉ ଦରମା ହାର ସମାନ କରି ଦିଆଯାଇଅଛି ।

ଅଥଚ ସରକାରୀ ସ୍କୁଲରେ ସବୁ ସରକାର ବହନ କରୁଥିବା ସ୍ଥଳେ ବେସରକାରୀ ସ୍କୁଲରେ net deficister ପ୍ରାୟ 3 ଭାଗରୁ 2 ଭାଗ ବହନ କରୁଛନ୍ତି ।

ଶିକ୍ଷକମାନଙ୍କ ଦରମା ବଢ଼ାଇ ଦିଆଗଲା ବୋଲି ଘୋଷଣା କରାଗଲା ଏବଂ ନୂଆ scheme ମଧ୍ୟ ସ୍ଥିର ହେଲା, କିନ୍ତୁ ଏଥିର ଆର୍ଥିକ ଦାୟିତ୍ୱ ମୁଁ ଯାହା ହିସାବ କରି ଦେଖୁଛି ଯେ, ସାଧାରଣ ଶିକ୍ଷାରେ ମୋଟେ ପଡୁ ନାହିଁ । ଯାହା ଅଧିକା ଖର୍ଚ୍ଚ ସରକାର ଠିକ୍ କରିଛନ୍ତି ତାହା managing Committee ଉପରେ ପଡୁଛି । ଅବଶ୍ୟ ଏଇ grant-in-aid to secondary schools ବିଷୟରେ ଆଗେ ମଧ୍ୟ Budgetରେ ଦେଖିବାକୁ ପାଉଁ ଯେ, ଗତବର୍ଷ revised budgetରେ ପ୍ରାୟ 4,56,000 ଟଙ୍କା ଦିଆଯାଇଥିଲା । ଏବର୍ଷ Budgetରେ 6,11,529 ଟଙ୍କା ରଖାଯାଇଛି । କିନ୍ତୁ ଏଇ ଯେ, ବ୍ୟୟ ବୃଦ୍ଧି ଘଟିଛି ଏଇଟା ଶିକ୍ଷକମାନଙ୍କ ସଂଖ୍ୟା ବୃଦ୍ଧି ଯୋଗୁଁ କି ସରକାରଙ୍କ ଆର୍ଥିକ ଦାୟିତ୍ୱ ବୃଦ୍ଧି ଯୋଗୁଁ ତାହା ଠିକ୍ କହି ହେଉ ନାହିଁ ।

ମୁଁ ଗୋଟିଏ ସ୍କୁଲର average ହିସାବ କରି ଦେଖିଥିଲି ଯେ ପୂର୍ବେ ସରକାରଙ୍କୁ deficit ଦେଖାଇବାରୁ ଯେତିକି ଖର୍ଚ୍ଚ ହେଉଥିଲା, ବର୍ତ୍ତମାନ deficitର 3 ଅଂଶରୁ 2 ଅଂଶ ବହନ କରି ମଧ୍ୟ ବିଶେଷ କିଛି ପ୍ରାର୍ଥକ୍ୟ ଦେଖାଯାଉ ନାହିଁ । ଆଉ ଗୋଟିଏ କଥା

ଏହି ଯେ, revised rateରେ ଦରମା ବୃଦ୍ଧି aided school ଶିକ୍ଷକମାନଙ୍କ ପ୍ରତି ପ୍ରଯୁଜ୍ୟ ହେବାର କଥା ଏଥିରେ ସେଥିରେ ପ୍ରୟୋଗ ନ କରି ଅନିର୍ଦ୍ଦିଷ୍ଟ ଭାବରେ ବନ୍ଦକରି ଦିଆଯାଉଛି ଏଥିରେ ଗରୀବ ଶିକ୍ଷକମାନେ କଷ୍ଟ ପାଉଛନ୍ତି—ତା' ପରେ ଏହି ଯେ Adult Education ଏଥିରେ ମଧ୍ୟ ଆମ୍ଭେ ଦେଖିବାକୁ ପାଉଛୁ ଯେ, ଏଥିରେ ପୂର୍ବେ ଯେପରି ଭାବରେ ଖର୍ଚ୍ଚ ହେଉଥିଲା, ଏହି ଖର୍ଚ୍ଚ କାଟ ଯୋଗୁ ତହିଁରେ କେତେକ ପରିବର୍ତ୍ତନ ହୋଇଛି । ଏହି ବାବଦରେ ଶିକ୍ଷା ବିଭାଗରେ ଯେଉଁ ଖର୍ଚ୍ଚ ହେଉଛି, ସେଟା ଏପରି ଭାବରେ କରାଯାଇଛି ଯେ, ସେଥିରେ ଆମର ପ୍ରକୃତରେ ଅନେକ ବାଧା ଆସୁଛି, ମୁଁ ଶିକ୍ଷାମନ୍ତ୍ରୀଙ୍କୁ ବିଶେଷ ଭାବରେ ଅନୁରୋଧ କରିବି ଯେ, ଯେତେଦୂର ସମ୍ଭବ ବେଶୀ ପରିମାଣରେ ଟଙ୍କା ସରକାରଙ୍କଠାରୁ ଜବରଦସ୍ତି ଆଦାୟ କରି ଲୋକଙ୍କ ହିତକର କାର୍ଯ୍ୟରେ ବିନିଯୋଗ କରନ୍ତୁ ।

ତା'ପରେ ଏ ଯେଉଁ Bill Adult Education ଏ ବିଷୟରେ ମଧ୍ୟ ଆମ୍ଭେ ଦେଖିବାକୁ ପାଉଛୁ ଯେ, ପୂର୍ବରୁ ଯେପରି ଭାବରେ ଖର୍ଚ୍ଚ ହେଉଥିଲା, ଏ ଖର୍ଚ୍ଚ କାଟ ପରେ ତହିଁର କେତେକ ପରିବର୍ତ୍ତନ କରାଯାଇଛି । ଦୁଃଖର ବିଷୟ ଶିକ୍ଷା ବିଭାଗରେ ଏ ଖର୍ଚ୍ଚ କାଟ ଏପରି ଭାବରେ କରାଯାଉଛି ଯେ, ସେଥିରେ ଆମର ପ୍ରଗତିରେ ବହୁତ ବାଧା ଆସୁଛି । ମୁଁ ବିଶେଷ ନମ୍ରତା ସହିତ କହିବି ଯେ, ଆମର ଶିକ୍ଷା ମନ୍ତ୍ରୀ ଏ ବିଷୟରେ ସରକାରଙ୍କଠାରୁ ଜବରଦସ୍ତି ଆଦାୟ କରି ଲୋକଙ୍କ ହିତରେ ଖର୍ଚ୍ଚ କରନ୍ତୁ ।

**ଶ୍ରୀ ଶ୍ରଦ୍ଧାକର ସୁପକାର :** ମାନ୍ୟବର ସଭାପତି ମହାଶୟ, ମୁଁ ମୋର କାଟ ପ୍ରସ୍ତାବ ପ୍ରତ୍ୟାହାର କରିବା ପୂର୍ବରୁ ଏ ବିଷୟରେ ସାମାନ୍ୟ କେତେକ କଥା କହିବାକୁ ଚାହେଁ ଯେ ମାନ୍ୟବର ମନ୍ତ୍ରୀ ମହାଶୟ ଅଧ୍ୟାପକ ନିଯୁକ୍ତି ଇତ୍ୟାଦି ବିଷୟରେ ଯେଉଁ ତତ୍ପରତା ଦେଖାଇଛନ୍ତି, ସେଥିପାଇଁ ମୁଁ ଅବଶ୍ୟ ତାଙ୍କୁ ଧନ୍ୟବାଦ ଦେଉଛି, କିନ୍ତୁ ଆମ୍ଭେ ବରାବର ଦେଖିବାକୁ ପାଉଛୁ ଯେ, ଆମ ପ୍ରଦେଶରେ ଅନ୍ୟାନ୍ୟ ବିଭାଗ ତୁଳନାରେ ଶିକ୍ଷା ବିଭାଗ ବରାବର ଉପେକ୍ଷିତ ହୋଇ ଆସୁଛି । ଏ ବିଷୟରେ ବୋଧେ ସନ୍ଦେହ କରିବାର କୌଣସି କାରଣ ନାହିଁ ଏବଂ ଏଥିପାଇଁ ବୋଧେ ଏହିସବୁ କାର୍ଯ୍ୟାନୁଷ୍ଠାନ କରିବାରେ ଏତେ ବିଳମ୍ବ ହୋଇଛି । ଆମେ ଦେଖୁ ଯେ, ଅନ୍ୟ ଯେକୌଣସି ବିଭାଗ ଯଥା ପୁଲିସ ବିଭାଗରେ ହୁଏ କ'ଣ ନା anticipation of sanction ଏହି Assembly ମଞ୍ଜୁରି ଦେବା ପୂର୍ବରୁ ଆନୁସଙ୍ଗିକ କାର୍ଯ୍ୟାନୁଷ୍ଠାନ କରାଯାଇଥାଏ ଓ ଟଙ୍କା ଖର୍ଚ୍ଚ ହୋଇଥାଏ । ଯେତେବେଳେ ସରକାରଙ୍କର ଏ ବିଷୟରେ ସନ୍ଦେହ କରିବାର ନ ଥିଲା ଯେ, ଏ ବିଷୟରେ Assembly sanction ନ ଦେବେ, ସେତେବେଳେ ଏ Assembly sanction ଦେବା ପର୍ଯ୍ୟନ୍ତ ଏତେଦିନ ଅପେକ୍ଷା କରିବା ଯୋଗୁଁ ହେଉ ବା ଏସବୁ sanction ହୋଇ ଟଙ୍କା ବନ୍ଦୋବସ୍ତ ହେବାରେ ଅର୍ଥ ବିଭାଗ ଓ ଶିକ୍ଷା ବିଭାଗ ଭିତରେ ଭିଡ଼ା ଓଟରା ହେବା ଯୋଗୁଁ ହେଉ, ଏହି ଯେଉଁ ଡେରି ହେଲା, ଏଇଟା ହୁଏତ ଶିକ୍ଷା ବିଭାଗ ପକ୍ଷରେ

ପ୍ରଶଂସାର କଥା ହୋଇପାରେ କିନ୍ତୁ ପ୍ରକୃତରେ ଆମ ଓଡ଼ିଶା ସରକାରଙ୍କ ପକ୍ଷରେ ପ୍ରଶଂସାର କଥା ନୁହେଁ ଏବଂ ଏପରି ଭବରେ ଶିକ୍ଷା ବିଭଗକୁ ଅନ୍ୟାନ୍ୟ ବିଭଗ ତୁଳନାରେ ଯେ ଉପେକ୍ଷା କରଯାଉଛି, ଏହି ଉପେକ୍ଷାର କାରଣ ସ୍ୱରୂପ ନାନା ପ୍ରକାର ଯୁକ୍ତି ଅନ୍ୟାନ୍ୟ ବିଭଗମାନଙ୍କରେ ବାହାର କରୁଛନ୍ତି ଏଇଟା ବିସ୍ମୟର କଥା । ମୁଁ ମୋର କାଟ ପ୍ରସ୍ତାବ ପ୍ରତ୍ୟାହାର କରୁଛି ।

The Hon'ble the SPEAKER : Has the Hon'ble member the leave of the House to withdraw his cut motion?

(The cut motion with the leave of the House was withdrawn)

The Hon'ble the SPEAKER: Now the question is that this Assembly do assent to a supplementary grant of Rs. 9,820 to defray the charges which will come in course of payment during the year ending the 31st day of March 1951 in respect of the head "Education—A—University—Government Arts College".

(The motion was adopted and grants made).

* * * * *

The Hon'ble Pandit LINGARAJ MISRA : Sir, I beg to move that this Assembly do assent to a supplementary grant of Rs. 52,415 to defray the charges which will come in course of payment during the year ending the 31st day of March 1951 in respect of the head "Education—A—University—Government Arts College".

The appropriation has the recommendation of the Governor.

(This Hon'ble the SPEAKER : Motion moved)

ଶ୍ରୀ ଶ୍ରଦ୍ଧାକର ସୁପକାର : ମାନ୍ୟବର ସଭପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ ଏହି ଦାବିଟାକୁ ଟ100 ଙ୍କା ଦ୍ୱାର କମାଇ ଦିଆଯାଉ । ସମ୍ବଲପୁରର ଗଙ୍ଗାଧର ମେହେର କଲେଜର ଦୁରବସ୍ଥା ବିଷୟରେ ଏହି ବ୍ୟବସ୍ଥା ସଭରେ ଅନେକ ଥର ଆଲୋଚନା କରଯାଇଛି କିନ୍ତୁ ତା'ର କୌଣସି ସ୍ଥାୟୀ ପ୍ରତିକାର ଆଜି ପର୍ଯ୍ୟନ୍ତ ହେଲନାହିଁ । ଏ ବିଷୟରେ ଯେତେଥର କୁହାଯାଇଛି, ସରକାର ପ୍ରାରମ୍ଭରୁ କହିଛନ୍ତି, ଯେ, ଆମର ଅର୍ଥାଭବ ହେଉଛି କିନ୍ତୁ ଆମେ ଏହି ପ୍ରକାର ଭବରେ କେତେଦିନ ଚଳିବା । ସେ ବିଷୟରେ ସରକାର ଟିକିଏ ଅନୁଧ୍ୟାନ କରିବାର କଥା । ଆମେ ଦେଖିବାକୁ ପାଉଛୁ ଯେ, ଗଙ୍ଗାଧର ମେହେର କଲେଜ 1944 ସାଲରୁ ଆରମ୍ଭ ହୋଇଗଲଣି ଏବଂ site selection ପାଇଁ ମଧ୍ୟ ଅନେକ ସ୍ଥାନରେ ଚେଷ୍ଟା କରଯାଇଛି କିନ୍ତୁ ଏ ପର୍ଯ୍ୟନ୍ତ କେଉଁ ସ୍ଥାନ ନିର୍ବାଚିତ ହୋଇଛି, ତାହା ଅବଶ୍ୟ

ଆମ୍ଭେମାନେ ଏ ପର୍ଯ୍ୟନ୍ତ ଜାଣିପାରୁ ନାହୁଁ । ଏ ବିଷୟରେ ଯେପରି ଅତିଶୀଘ୍ର ସ୍ଥାନ ନିର୍ଦ୍ଧାର୍ଯ୍ୟ ହୁଏ ଏବଂ ଅତି ଶୀଘ୍ର College building କରଯାଏ, ସେଥିପ୍ରତି ସରକାର ଯତ୍ନବାନ ହେବା ଉଚିତ । କାରଣ College ବର୍ତ୍ତମାନ School ଯେଉଁ ଯାଗାରେ ହେବାର କଥା, ସେ ଜାଗାରେ ହେଉଛି ଏବଂ School ଯେଉଁ ଜାଗାରେ ହେଉଛି, ତାହା ପିଲମାନଙ୍କର ସ୍ୱାସ୍ଥ୍ୟ ଓ ଶିକ୍ଷା ପକ୍ଷରେ ଉପଯୁକ୍ତ ନୁହେଁ । School ଛାତ୍ରମାନେ ଶିକ୍ଷକ ଓ ହେଡ଼ମାଷ୍ଟର ଏବଂ ଛାତ୍ରାବାସର ଛାତ୍ରମାନେ ଏକ ପ୍ରକାର ଅସ୍ୱାସ୍ଥ୍ୟକର ଏବଂ ଶିକ୍ଷା ଅନୁପଯୋଗୀ ଗୃହମାନଙ୍କରେ ବର୍ତ୍ତମାନ ଅଧ୍ୟୟନ କରୁଛନ୍ତି । ସେଥିପାଇଁ ସରକାର ଏ College ତିଆରି କାର୍ଯ୍ୟ ଯେପରି ଏହି ବର୍ଷ ଆରମ୍ଭ ହୋଇଯାଏ, ସେ ବିଷୟରେ ଯତ୍ନ ନେବା ଉଚିତ୍ । ତା'ପରେ ଦ୍ୱିତୀୟ କଥା Collegeରେ ଯେଉଁ ଅଧ୍ୟାପକମାନେ ନିଯୁକ୍ତ ଅଛନ୍ତି, ସେମାନଙ୍କ ସଂଖ୍ୟା ଯଥେଷ୍ଟ ନୁହେଁ । ଯେତେ ନିଯୁକ୍ତ ହେବାର କଥା, ସେତେ ହୋଇ ନାହାନ୍ତି । ସେଥିପାଇଁ ଛାତ୍ରମାନଙ୍କ ପାଠ ପଢ଼ାରେ ବିଶେଷ ଅସୁବିଧା ହେଉଛି । କେବଳ ଗୋଟିଏ କଥା ଉଦାହରଣ ସ୍ୱରୂପ ମୁଁ କହିବି ଯେ, physicsରେ 1948ରୁ ଜଣେ ମାତ୍ର ଅଧ୍ୟାପକ ଅଛନ୍ତି । ସେ ସବୁ ବିଷୟରେ ସମ୍ଭାଳିବା ସମ୍ପୂର୍ଣ୍ଣରୂପେ ଅକ୍ଷମ । ଏହି Departmentରେ ଅନ୍ୟୁନ 2 ଜଣ ଅଧ୍ୟାପକ ଯଦି ନ ହୁଅନ୍ତି, ତାହାହେଲେ କାର୍ଯ୍ୟ ଚାଲିବା ମୁସ୍କିଲ । କେବଳ ପଦାର୍ଥ ବିଜ୍ଞାନରେ ନୁହେଁ, ଅନ୍ୟାନ୍ୟ ବିଭାଗରେ ମଧ୍ୟ ଏହିପରି ଅଳ୍ପ ଅଧ୍ୟାପକ ନେଇ କାର୍ଯ୍ୟ ଚାଲୁଛି । ଏହିସବୁ ତ୍ରୁଟି ଯେପରି ଅତି ଶୀଘ୍ର ପରିପୂରଣ ହୁଏ, ସେଥିପ୍ରତି ସରକାର ଦୃଷ୍ଟି ଦେବା ଉଚିତ ।

ଶ୍ରୀ କରୁଣାକର ପାଣିଗ୍ରାହୀ : ସଭାପତି ମହାଶୟ, ମାନ୍ୟବର ବିରୋଧୀ ଦଳର ସଭ୍ୟ ମହୋଦୟ ସମ୍ବଲପୁର କଲେଜ ଦୁର୍ଗତି ଓ ଦୂରାବସ୍ଥା ବିଷୟରେ ଯାହା କହିଲେ, ତାହାଠାରୁ ବାଲେଶ୍ୱର କଲେଜ ଦୁରାବସ୍ଥା ଯେ ଅଧିକ, ଏକଥା ତାଙ୍କୁ ବା ଅନ୍ୟ କାହାକୁ ଜଣା ନାହିଁ । ସେ Collegeରେ ଦୁଇଟି staffରେ ପାଠ ପଢ଼ା ହେଉଛି । ତାଙ୍କର College ଅଛି ଏବଂ High school ବି ଅଛି । କିନ୍ତୁ ଆମର ଗୋଟିଏ ସ୍ଥାନ ଅଛି । ଦୁଇ, ତିନୋଟି ଶିକ୍ଷକ ପାଠ ପଢ଼ାଉ ଅଛନ୍ତି । ପ୍ରଫେସର କି ଶିକ୍ଷକମାନଙ୍କର ରହିବାର ସ୍ଥାନ ନାହିଁ । ଯେଉଁ Hostel ଅଛି, ଯାହାକୁ ମାନ୍ୟବର ମନ୍ତ୍ରୀ ଦେଇଥିଲେ, ସେ Hostelରେ ବର୍ତ୍ତମାନ ଆଦେଶ ଦେଇଛନ୍ତି ଯେ, କେବଳ Professorମାନେ ରହିବେ । ପିଲା ସଂଖ୍ୟା ବଢ଼ୁଛି । ସେମାନଙ୍କର ରହିବା ପାଇଁ ସ୍ଥାନ ନାହିଁ । Professorମାନଙ୍କୁ quarters ଯୋଗାଇ ଦିଆହେଉଛି । ଗତ ବର୍ଷ ଶୁଣାଗଲା ଯେ, 6ଟି quarters ସରକାର କରିଦେବେ ବୋଲି କିନ୍ତୁ ପଇସା ନ ହେବାରୁ ତା ହେଲାନାହିଁ । ପିଲାମାନଙ୍କର ରହିବାର ସ୍ଥାନ ନାହିଁ, ପାଠ ପଢ଼ାଇବା ପାଇଁ ସ୍ଥାନ ନାହିଁ; ତେଣୁ ଦୁଇଟି shift କରି ପାଠ ପଢ଼ାହେଉଛି । ଏଇଟା ହେଲା ବାଲେଶ୍ୱର କଲେଜର ଦୁର୍ଗତି । ମାନ୍ୟବର ସଭ୍ୟ ସମ୍ବଲପୁର କଲେଜ ବିଷୟରେ ଯାହା ଉପସ୍ଥାପିତ କରିଛନ୍ତି, ମୁଁ ଭାବୁଛି ବାଲେଶ୍ୱର କଲେଜ ତୁଳନାରେ ସମ୍ବଲପୁର କଲେଜ ବହୁତ ଆଗରେ । ବାଲେଶ୍ୱର କଲେଜ ବହୁତ ପଛରେ ପଡ଼ିଛି ।

ତାଙ୍କ ଦାବି ଯଦି ଗ୍ରହଣ କରଯାଏ, ତାହାହେଲେ ମୁଁ କହିବି. ଯେ କେହି କହି ପାରିବ, ସେ ପାଇଲା କିନ୍ତୁ ଯଦି ଏପରି ହୁଏ ଯେ, ଯାହାର ପ୍ରକୃତ ଦରକାର ସେ ପାଏ, ତାହାହେଲେ ବାଲେଶ୍ୱର କଲେଜର ଦାବି ଅଗ୍ରଗଣ୍ୟ ହେବା ଉଚିତ ।

**ମାନ୍ୟବର ଶ୍ରୀ ଲିଙ୍ଗରାଜ ମିଶ୍ର** : ସଭାପତି ମହାଶୟ, ଏ ପ୍ରସ୍ତାବ ଆଗତ କରିଥିବା ମାନ୍ୟବର ବନ୍ଧୁ ଯେଉଁ କଥା ଉତ୍‌ଥାପନ କରିଛନ୍ତି, ମୁଁ ସେ ବିଷୟରେ କୌଣସି ଦ୍ୱିଧା ନ କରି ସରକାରଙ୍କ ପକ୍ଷରୁ ଯେଉଁ ତ୍ରୁଟି ହୋଇଛି, ତାହା ମୁଁ ସ୍ୱୀକାର କରୁଛି । କେବଳ ଯେ ସମ୍ବଲପୁରର ଗଙ୍ଗାଧର ମେହେର କଲେଜ ପକ୍ଷରେ ଏହା ହୋଇଛି, ତା ନୁହେଁ । ବାଲେଶ୍ୱର କଲେଜ ବିଷୟରେ କରୁଣାକରବାବୁ କହି ଯାଇଛନ୍ତି । ଦୁଃଖର କଥା ଆମର ବନ୍ଧୁ ଲତିଫ୍‌ର ସାହେବ ଟିକିଏ ପୁରୀ ଜିଲ୍ଲା କଥା କହିଲେ ନାହିଁ । ମୋ ନିଜ ଜିଲ୍ଲା କଥା ମୁଁ କହିବା ଠିକ୍ ନୁହେଁ । କପିଳେଶ୍ୱର ପ୍ରସାଦ ବାବୁ ଯେଉଁ ବଲାଙ୍ଗିର କଲେଜ କଥା ମୋତେ ବାରମ୍ବାର Privatoly କହିଛନ୍ତି, ସେ କଥା ସେ ମଧ୍ୟ ଟିକିଏ ଉତ୍‌ଥାପନ କଲେ ନାହିଁ ।

ଯେପରି ଭବରେ ଆମ୍ଭେମାନେ କେନ୍ଦ୍ର ସରକାରଠାରୁ Grent ପାଇଥିଲୁ ଯଦି ସେପରି ଭବରେ ଗଲ ଦୁଇବର୍ଷ ହେଲା ପାଇଥାନ୍ତୁ ମୋର ଆଶା ଆମେ କେତେ ଦୂର ଅଗ୍ରସର ହୋଇଥାନ୍ତୁ । ଯା ଭିତରେ ଜାଗା ଠିକ୍ କରି ଘର ତୋଳାଇବା ବେଳକୁ ଆର୍ଥିକ ଦୁର୍ଗତି ଆସି ପଡ଼ୁଛି । ସେଥି ସକାଶେ କୌଣସି କାର୍ଯ୍ୟ କରି ହେଉନାହିଁ । ଅବଶ୍ୟ ସମ୍ବଲପୁର College ପାଇଁ ଗୋଟିଏ ସ୍ଥାନ ବହୁଦିନ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇପାରି ନଥିଲା । ଯେଉଁ ସ୍ଥାନ ଆଗରୁ ଆମେ ମନ୍ତ୍ରୀତ୍ୱ ଗ୍ରହଣ କରିବା ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇଥିଲା ସେଥିପ୍ରତି ନାନା କାରଣ ଦର୍ଶାଇ ଲୋକମାନେ ଆପତ୍ତି କରିଥିଲେ । ଆମର ଦୁଇବର୍ଷର ଚେଷ୍ଟା ଫଳରେ Brooks hill site ରେ କଲେଜ ପାଇଁ ସ୍ଥାନ ଶେଷ ନିଷ୍ପତ୍ତି ହୋଇଛି । ଶ୍ରୀ ଶ୍ରଦ୍ଧାକର ସୂପକାର କହିଲେ ଯେ, କେଉଁଠାରେ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଛି ମୁଁ ଜାଣିପାରୁ ନାହିଁ । ଦୁଇଦିନ ପୂର୍ବରୁ ମୁଖ୍ୟମନ୍ତ୍ରୀ ଏକ ପ୍ରଶ୍ନର ଉତ୍ତରରେ ପରିଷ୍କାର କହି ଦେଇଛନ୍ତି ଯେ, ବ୍ରୁକ୍‌ସ ହିଲ୍ Site ରେ ଯାଗା ଠିକ୍ ହୋଇଛି । ବାଲେଶ୍ୱର କଲେଜପାଇଁ ମଧ୍ୟ ଜାଗା ଠିକ୍ ହୋଇଛି । ଗଲବର୍ଷ ବଜେଟରେ ମୋର ମନେ ଅଛି, ପୁରୀ କଲେଜପାଇଁ ୪୨ ହଜାର ବ୍ୟବସ୍ଥା କର ଯାଇଥିଲା । ବର୍ତ୍ତମାନ ଆମର ଆର୍ଥିକ ଅବସ୍ଥା ଦେଖି ଆମେ ବିଚାର କରି ସ୍ଥିର କଲୁ ଯେ, ଏଣିକି କଲେଜପାଇଁ ଜାଗା ଦେବା କଥା ସ୍ଥାନୀୟ ଲୋକଙ୍କ ଉପରେ ପକାଇ ଦିଆଯିବ । ସେମାନେ ଅନ୍ତତଃ ଜମି Acquire କରନ୍ତୁ, ପୁରୀରେ ବିଶିଷ୍ଟ ଭଦ୍ରଲୋକ ୪୨ ହଜାର ଟଙ୍କାରେ କଲେଜ ହେବ ନାହିଁ ବୋଲି ଆପତ୍ତି କରିବାରୁ ମୁଁ ସେମାନଙ୍କୁ କହିଲି 'ଆପଣମାନେ କୌଣସିମତେ ଏତିକି ଟଙ୍କାରେ କରନ୍ତୁ । Government ର ଅର୍ଥାଭବ ଯୋଗୁ Government କୁ ଯେପରି ଜମି କିଣିବାପାଇଁ ଟଙ୍କା ଦେବାକୁ ନ ପଡ଼େ ତା'ର ବ୍ୟବସ୍ଥା କରନ୍ତୁ । ବାଲେଶ୍ୱର କଲେଜ ବିଷୟରେ ସେହିଭଳି ପ୍ରସ୍ତାବ ଆସିଥିଲା । । ଲକ୍ଷ କେତେ ହଜାର ଟଙ୍କା Land Acquisition ପାଇଁ ଦାବି ହୋଇଥିଲା । କିନ୍ତୁ ଅର୍ଥାଭବ ଯୋଗୁଁ ହୋଇ ପାରିଲା ନାହିଁ । ସେଥିପାଇଁ Shift system କରି ଯେଉଁଠି ଯେଉଁଠି ହାଇସ୍କୁଲ

ହେଉଛି ସେଠି ଟାଣଟୁଣ କରି କଲେଜ କରଯାଉଛି । ବରଂ ମୁ କହିବି Puri College ର ଅବସ୍ଥା ଆହୁରି ଶୋଚନୀୟ । ପୁରୀ କଲେଜରେ ଗରୀବ ପିଲା ଅଧିକ ଅଛନ୍ତି । ସେମାନେ ଟାଣଟୁଣ କରି କୌଣସିମତେ ଚଳାଇ ନ ପାରିବାରୁ ଯୁଦ୍ଧ ସମୟରେ Military ମାନଙ୍କର ଯେଉଁ ସିନେମା ହଲ ଥିଲା, ତାକୁ ଟ 75,000 ଙ୍କା ଦେଇ ଆମେ କିଣିଲୁ । ସେଠାରେ 7/8 ମାଇଲ ଦୂରରୁ ପିଲମାନେ ଗ୍ଭଲି ଆସି Class କରୁଛନ୍ତି । ସେଠାରେ ଏହି ଦୁରବସ୍ଥା । ବଲାଙ୍ଗୀର କଲେଜରେ I. Sc. Class ଖୋଲିବାପାଇଁ ବ୍ୟବସ୍ଥା କରି ପାରିଲୁଣି । କିନ୍ତୁ ସେଠାରେ ଘର ନାହିଁ ଏବଂ 10 ହଜାର ଟଙ୍କା ଦିଆଯାଇଛି, ଏହିପରି ଅବସ୍ଥା ହେଉଛି ରହିଛି । ଆମର ଆର୍ଥିକ ଅବସ୍ଥା ଓ କେନ୍ଦ୍ରର ଆର୍ଥିକ ଅବସ୍ଥା ଆମେ ଦେଖୁଛୁ । ମୋର ଆଶା ହେଉ ନାହିଁ 3/4 ବର୍ଷ ଭିତରେ ଏ ଅବସ୍ଥା ସୁଧୁରି ଯିବ ବୋଲି ଆମ୍ଭେମାନେ ପ୍ରାଣପଣେ ଚେଷ୍ଟା କରୁଛୁ କିନ୍ତୁ ଧୈର୍ଯ୍ୟ ସହିତ ସମସ୍ତଙ୍କୁ ଅପେକ୍ଷା କରିବାକୁ ପଡ଼ିବ । ଏହି Shifting System ରେ ଆମ୍ଭେମାନେ କଷ୍ଟରେ ଏବଂ ଅସୁବିଧାରେ Class କରିବା ନଚେତ୍ Class ବନ୍ଦ କରିଦେବା ଯେତେ ଅସୁବିଧା ହେଉଛି, ଶିକ୍ଷକମାନଙ୍କୁ ଅସୁବିଧା ହେଉଛି, ଛାତ୍ରମାନଙ୍କ ଅସୁବିଧା ହେଉଛି, ଆଉ 3/4 ବର୍ଷ ଆପଣମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ । Staff ବିଷୟରେ ମାନ୍ୟବର ସଭ୍ୟ ଯାହା କହିଲେ ବାସ୍ତବିକ୍ ବିଜ୍ଞାନ ବିଷୟରେ ବିଶେଷତଃ Physiology, Physics, Chemistry ପ୍ରଭୃତି ଏ ସବୁଥିରେ Staff କମ୍ ଅଛନ୍ତି । ଯେତେଜଣ ଦରକାର ପ୍ରତ୍ୟେକ ବିଷୟରେ 3/4 ଜଣ ଲେଖାଏଁ ଅଭାବ ଅଛନ୍ତି । Physics ରେ 5 ଜଣ ଅଭାବ ଥିଲେ ଏବଂ 2 ଜଣ ନିଯୁକ୍ତ କରଯାଇଛନ୍ତି । ଆଉ ଉପଯୁକ୍ତ ଅଧ୍ୟାପକ କମିଯିବାରୁ ସେ ସ୍ଥାନ ଗୁଡ଼ିକ ଖାଲି ଅଛି । କଲିକତା University Result ବାହାରିବା ପରେ ବିଜ୍ଞାନ ବିଷୟରେ ଯଥେଷ୍ଟ ସଂଖ୍ୟକ Professor ମିଳିବେ ବୋଲି ଆଶା । ମୁଁ ନିଜେ ଅନୁଭବ କରୁଛି ଯେ, ଯେତେସବୁ ଅଧ୍ୟାପକ ନିଯୁକ୍ତ ହେଉଛନ୍ତି, ସେମାନଙ୍କ ଭିତରୁ ଅନେକେ ତାଙ୍କର ବୟସ ଓ Standard Low ବୋଲି Public Service Commission ମତ ଦେଉଛନ୍ତି । ଖୁବ୍ ଉପଯୁକ୍ତ ଯୋଗ୍ୟତା ବିଶିଷ୍ଟ ଲୋକ ମିଳୁନାହାନ୍ତି । ସେଥିପାଇଁ ଆମକୁ ବାଧ୍ୟହୋଇ ଅପେକ୍ଷା କରିବାକୁ ହେଉଛି । Arts ବିଷୟରେ କୌଣସିଠାରେ ଶିକ୍ଷକ ଅଭାବ ନାହାନ୍ତି । କେବଳ ବିଜ୍ଞାନ ବିଷୟରେ ଅଭାବ ଅଛନ୍ତି । ସେ ଅଭାବ ପୂରଣ କରିବାପାଇଁ ବହୁତ ଚେଷ୍ଟା କରି ଅନେକ ବୟସ୍ଥ ଲୋକଙ୍କୁ Re-employ କରିବାକୁ ହେଉଛି । ତାଙ୍କଦ୍ୱାରା କୌଣସି ପ୍ରକାରେ କାମ ଚଳାଇବାକୁ ହେଉଛି । ଏ ଅଭାବ ପୂରଣ ହେବା ପାଇଁ 2 ବର୍ଷ ସମୟ ଲାଗିବ । ସବୁ କଲେଜରେ ବିଜ୍ଞାନ ବିଷୟରେ ଉପଯୁକ୍ତ ଅଧ୍ୟାପକ ନିଯୁକ୍ତ କରଯାଇ ପାରିବ । ଏ ବର୍ଷ କିଛି ହୋଇଯିବ । ପରବର୍ଷକୁ ମୁଁ ଆଶା କରୁଛି ଅନେକ ପୂରଣ ହେବ । Geology ବିଷୟରେ ଆମ ପ୍ରଦେଶରେ ଲୋକ ନାହାନ୍ତି । ତାହା ପଢ଼ିବାପାଇଁ ଆମ ପ୍ରଦେଶରେ ସୁବିଧା ନାହିଁ । ଏଥିପାଇଁ ଆମକୁ ଆଉ 2 ବର୍ଷ ଅପେକ୍ଷା କରିବାକୁ ପଡ଼ିବ ।

**ଶ୍ରୀ ଶ୍ରଦ୍ଧାକର ସୂପକାର:** ମୁଁ ମୋର କାଟ୍ ପ୍ରସ୍ତାବ ପ୍ରତ୍ୟାହାର କଲି ।

The Hon'ble the SPEAKER: Has the Hon'ble member the leave of the House to withdraw this cut motion.

(The cut motion was by leave of the House withdrawn)

The Hon'ble the SPEAKER: The question is that the Assembly do assent to a supplementary grant of Rs. 2,415 to defray the charges which will come in course of payment during the year ending the 31st day of March 1951 in respect of the head "Education—A. University—Government Arts Colleges."

(The motion was adopted and the grant made)

The Hon'ble Pandit LINGARAJ MISRA: Sir, I beg to move that the Assembly do assent to a supplementary grant of Rs. 6,000 to defray the charges which will come in course of payment during the year ending the 31st day of March 1951 in respect of the head "Election—D—Special—A—II Training Schools for Masters".

(This appropriation has the recommendation of the Governor)

The Hon'ble the SPEAKER: Motion moved

## 1950-51 ବର୍ଷ ପାଇଁ ଅତିରିକ୍ତ ଖର୍ଚ୍ଚ ଦାବି ଉପରେ ଶ୍ରଦ୍ଧାକରଙ୍କ ଭାଷଣ

ଡଃ ଶ୍ରଦ୍ଧାକର ସୂପକାର ଅତିରିକ୍ତ ଖର୍ଚ୍ଚ ଦାବି ଉପରେ କହିବାକୁ ଯାଇ (ବିଧାନ ସଭା ତା 7-୫-1950) ଲୋକ ସଂପର୍କ ବିଭାଗର ଅପବ୍ୟୟ ଉପରେ ବିଶେଷ ଆଲୋକପାତ କରିଛନ୍ତି। ପ୍ରଧାନ ବ୍ୟକ୍ତି ବା Tourist ଆସିଲେ ଆମର ଅଫିସର ଏମିତିକି ମନ୍ତ୍ରୀମାନେ ତାଙ୍କ ସଙ୍ଗରେ ଯାନ୍ତି। ଏହା ଫଳରେ ଅଧିକ ଖର୍ଚ୍ଚ ହେଉଛି ଏବଂ ଏହି ବ୍ୟୟଭାର ଦରିଦ୍ର ଜନସାଧାରଣ ବହନ କରୁଛନ୍ତି। ସେ ଯଥାର୍ଥରେ କହିଛନ୍ତି "ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟମାନ ପ୍ରତି ଅବହେଳା କରୁଛୁ। ଯଦି ଆମେ ଏହି ଛୋଟ ଛୋଟ କଥା ନେଇ ଏପରି ଭାବରେ ଅର୍ଥବ୍ୟୟ କରି ଚାଲିଥାଉ, ତାହାହେଲେ ମୁଁ ଭାବୁଛି ଯେ ଆମର ଦୁର୍ଦ୍ଦଶା ବଢ଼ିଯିବ"।

ନବକୃଷ୍ଣ ଚୌଧୁରୀ ଲୋକ ସଂପର୍କ ବିଭାଗର କେବଳ ଖାଦ୍ୟ ଉତ୍ପାଦନ ପ୍ରଚାର ପାଇଁ ଯେଉଁ ଅତିରିକ୍ତ ଖର୍ଚ୍ଚ ଦାବି ଆଣିଥିଲେ ଡଃ ସୂପକାର ଏହାକୁ ଏକ ଟଙ୍କାକୁ କମାଇ ଦେବାକୁ କାଟ ପ୍ରସ୍ତାବ ଆଣିଥିଲେ। ଏହା କୃଷି ବିଭାଗର କାର୍ଯ୍ୟ ଓ ଦାୟିତ୍ୱ। ଲୋକ ସଂପର୍କ ବିଭାଗ ଏଦିଗରେ କିଛି କରିପାରିବ ନାହିଁ ବୋଲି ଶ୍ରଦ୍ଧାକର ଯୁକ୍ତି କରିଛନ୍ତି। ତାଙ୍କର ବକ୍ତବ୍ୟ ହେଲା

Public Relation Department ଦ୍ୱାର ଏସବୁ କାର୍ଯ୍ୟ ନକରଇ ଯଦି କୃଷି ବିଭାଗଦ୍ୱାରା ଯେଉଁମାନେ ପ୍ରକୃତରେ ଏଇ ସବୁ ଲୋକଙ୍କୁ ସାହାଯ୍ୟ କରିବା ପାଇଁ କ୍ଷମ, ଯଦି ସେମାନଙ୍କ ଦ୍ୱାରା ଏକାର୍ଯ୍ୟ କରନ୍ତି ତା'ହେଲେ ବିଶେଷ ଫଳପ୍ରଦ ହୁଅନ୍ତା ।"

ପଣ୍ଡିତ ଲିଙ୍ଗରାଜ ମିଶ୍ର : ଶିକ୍ଷା ବିଭାଗ ପାଇଁ ଅତିରିକ୍ତ ବ୍ୟୟ ଦାବି କରିବା ଉପରେ ଡଃ ସୂପକାର ମଧ୍ୟ ଖର୍ଚ୍ଚକାଟ ପ୍ରସ୍ତାବ ଆଣିଛନ୍ତି । ଅଗଷ୍ଟ 7, 1950ରେ ବିଧାନସଭାରେ ଉଚ୍ଚଶିକ୍ଷାରେ ଥିବା ବିଭିନ୍ନ ଦୋଷତ୍ରୁଟି ଦେଖାଇ ଡଃ ସୂପକାର ଅଧ୍ୟାପକ ନିଯୁକ୍ତିରେ ବିଳମ୍ବ, ପୁସ୍ତକ ପ୍ରକାଶନରେ ବିଳମ୍ବ ଆଦି ଦୃଷ୍ଟାନ୍ତ ଦେଇ ସେ କେବଳ ଇତିହାସରେ କାହିଁକି ଅନ୍ୟ ବିଭାଗରେ ମଧ୍ୟ ଅଧ୍ୟାପକ ନିଯୁକ୍ତି ଶୀଘ୍ର କରାଯିବା ଉଚିତ ବୋଲି ଦାବି କରିଛନ୍ତି ।

ଏହିପରି ଡଃ ସୂପକାର ଜନସାଧାରଣଙ୍କ ସମସ୍ୟା ଓ ଅସୁବିଧାକୁ ଆଖିରେ ରଖି ସରକାରଙ୍କୁ ଅନେକ ବିଷୟରେ ସାବଧାନ କରାଇଛନ୍ତି । ଅପଚୟ, ନିଷ୍କ୍ରିୟତା ଓ ଅବହେଳା ଆଦି ସରକାରୀ ଦୋଷ ତ୍ରୁଟିଗୁଡ଼ିକ ପ୍ରତି ସେ ଯଥାର୍ଥରେ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ।

**ଶ୍ରୀ ଶ୍ରଦ୍ଧାକର ସୂପକାର**—ମାନନୀୟ ସଭାପତି ମହାଶୟ, ମାନ୍ୟବର ମନ୍ତ୍ରୀ ମହାଶୟ କବିବର ରାଧାନାଥ ରାୟଙ୍କର ଯେଉଁ କବିତା ଆବୃତ୍ତି କଲେ ଏବଂ ସେଥିରେ ଯାହା କହିଲେ, ତାହା ପ୍ରକୃତ ସତ୍ୟ କଥା । ଏଥିରେ ଗୋଟିଏ ବିଶେଷ ଲକ୍ଷ୍ୟ କରିବାର କଥା ଅଛି । କବିବର ରାଧାନାଥ କେବଳ ବୀଣାପାଣିଙ୍କୁ ଲକ୍ଷ୍ୟକରି ତାଙ୍କର କବିତା ଲେଖିଥିଲେ । କାରଣ ସେ ଜାଣିଥିଲେ ଯେ, କମଳା ବା ଲକ୍ଷ୍ମୀ ଆମ୍ଭମାନଙ୍କ ପ୍ରତି ସନ୍ତୁଷ୍ଟ ନୁହଁନ୍ତି । ତାଙ୍କ ପ୍ରତି ଉଦ୍ଦେଶ୍ୟ କରି ସେ କବିତା ଲେଖି ନ ଥିଲେ, ଏଥିରେ ଫଳ କିଛି ହୋଇ ନଥାନ୍ତା । ସେଥିପାଇଁ ସେ ବୀଣାପାଣିଙ୍କୁ ଲକ୍ଷ୍ୟକରି ଲେଖିଥିଲେ । ସେ କବିତା ଲେଖିବାର ଏତେ କେତେ ବର୍ଷ ପରେ ଯଦି କମଳା ଆମ ପ୍ରତି ସନ୍ତୁଷ୍ଟ ହୋଇଥାନ୍ତେ ତାହାହେଲେ ଆମର ଏହି ପ୍ରସ୍ତାବ ଆଗତ କରିବାର କୌଣସି ଅବକାଶ ନଥିଲା । କିନ୍ତୁ ଦୁଃଖର ଓ ଦୁର୍ଭାଗ୍ୟର କଥା ଯେ, ସେ କବିବର ରାଧାନାଥ ଯେପରି ବୀଣାପାଣିଙ୍କ ଲକ୍ଷ୍ୟକରି ତାଙ୍କର କବିତା ଲେଖିଥିଲେ ସେହିପରି ଯଦି ଆମେ ଏବଂ ଆମ ସରକାର ମଧ୍ୟ ଅଦ୍ଭୁତ ଆଗତ ଉପରେ ସନ୍ତୁଷ୍ଟ ରହୁଥାନ୍ତୁ ତାହାହେଲେ ଆମର ସେଥିରେ ବିଶେଷ କିଛି କହିବାର ନାହିଁ । ଅନ୍ୟ କଥାରେ କହିଲେ, ସରକାରଙ୍କ Publicity Department ତରଫରୁ ଯେଉଁ ଉତ୍କଳ ପରିଚୟ, ନବକଳେବର ଗୀତିକା ଇତ୍ୟାଦି ପୁସ୍ତକ ବାହାରିଛି, ବାହାରୁ ଯେଉଁ ଦର୍ଶକମାନେ ଆସିବେ, ସେମାନଙ୍କୁ Guide କରିବା ପାଇଁ ବା ପଥପ୍ରଦର୍ଶନ କରିବାପାଇଁ ଅର୍ଥାତ୍ ଅମୁକ ସ୍ଥାନରେ ଏହା ଅଛି, ଅମୁକ ସ୍ଥାନରେ ଦର୍ଶନୀୟ ଜିନିଷ ଅଛି, ଏହି ବିଷୟରେ ଖାଲି ପୁସ୍ତକ ବାହାରକରି, ପ୍ରଚାରକରି, ବିକ୍ରିକରି ଯଦି ଆମ ସରକାର ସନ୍ତୁଷ୍ଟ ରହୁଥାନ୍ତି, ତାହାହେଲେ ସେଥିରେ ଆମର ଆପତ୍ତି କରିବାର କିଛି ନଥିଲା ।

**ମାନ୍ୟବର ଶ୍ରୀ ପବିତ୍ରମୋହନ ପ୍ରଧାନ** : Tourist Traffic ସଂପର୍କରେ ତଥ୍ୟ ସଂଗୃହୀତ ହେଉଛି ।

ଶ୍ରୀ **ଶ୍ରଦ୍ଧାକର** ସୁ**ପ**କାର—କିନ୍ତୁ ଆମେ ଦେଖିବାକୁ ପାଉଛୁ ଯେ, ମୁଁ ଯେପରି କହିଗଲି, ପ୍ରତିବର୍ଷ ଆମ୍ଭେମାନେ ଏ ବିଷୟରେ 7 ହଜାର ଟଙ୍କା ଅଧିକ ଖର୍ଚ୍ଚ କରିବାକୁ ପଡ଼ିବ ଯଦିଓ ଆମର ପ୍ରତ୍ୟେକ ଜିଲାରେ ଏବଂ ସମଗ୍ର ପ୍ରଦେଶରେ ଯେତେଗୋଟି Tourist Organisation ଅଛି, ଏବଂ ଆମ୍ଭେମାନେ ଦେଖୁ ଯେ, ବାହାରୁ ଯେତେ ପ୍ରଧାନ ବ୍ୟକ୍ତି ବା Tourist ଆସନ୍ତି, ସେମାନଙ୍କ ସାଙ୍ଗରେ ଆମର ଅଫିସରମାନଙ୍କ ଠାରୁ ଆରମ୍ଭକରି, ଆହୁରି ବଡ଼ ବଡ଼ ଲୋକେ ତାଙ୍କ ସାଙ୍ଗରେ ଯାଆନ୍ତି । ଏପରିକି ମନ୍ତ୍ରୀମାନେ ମଧ୍ୟ କେତେକ **ସ୍ଥାନରେ** ତାଙ୍କ ସଙ୍ଗରେ ଯାଉଛନ୍ତି ।

**ମାନ୍ୟବ**ର ଶ୍ରୀ **ପବିତ୍ର** ମୋ**ହ**ନ ପ୍ରଧା**ନ**—ଜଣେ ବାହାରୁ ଯଦି କେହି **ଭଦ୍ରଲୋକ** ଆସନ୍ତି- ତାହାହେଲେ ଯା'ନ୍ତି କିନ୍ତୁ କୌଣସି Tourist ଆସିଲେ ଯାଆନ୍ତି ନାହିଁ ।

ଶ୍ରୀ ଶ୍ରଦ୍ଧା**କ**ର ସୁ**ପକା**ର—ତା'ପରେ ମୁଁ ଯେଉଁ ପ୍ରଶ୍ନ ଉତ୍ଥାପନ କରିଥିଲି ଯେ, ଏଇ ପ୍ରସଙ୍ଗରେ ଆମେ ଯେଉଁ ବାର୍ଷିକ 7 ହଜାର ଟଙ୍କା ଖର୍ଚ୍ଚ କରିବାକୁ ଯାଉଛୁ ।

**ମାନ୍ୟବର ଶ୍ରୀ ପବିତ୍ରମୋହନ** ପ୍ରଧାନ—ତାହା **ଯଥା ସମୟରେ** କ୍ରମେ ଆତ୍ମନିର୍ଭରଶୀଳ ହେବ ଏବଂ ତାହା commercial scaleରେ ଚଳିବ । ଏହି **କଥା** ପ୍ରଥମ ଅବସ୍ଥାରେ ହୋଇପାରିବ ନାହିଁ ।

ଶ୍ରୀ **ଶ୍ରଦ୍ଧାକର ସୁପ**କାର-—ଏହି ବିଷୟରେ ସେ କୌଣସି ଉତ୍ତର ଦେଇ ନ ଥିଲେ ଏବଂ ବର୍ତ୍ତମାନ ଯାହା କହୁଚନ୍ତି ସମୟକ୍ରମେ ଆତ୍ମନିର୍ଭରଶୀଳ ହୋଇ ପାରିବ, ତା'ର ମଧ୍ୟ କୌଣସି suggestion ବା ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ସମ୍ମୁଖରେ ରଖାଯାଇ ନାହିଁ । ଅର୍ଥାତ ମୁଁ ଯେଉଁ ପ୍ରଶ୍ନମାନ ଉତ୍ଥାପନ କରିଥିଲି, ତାକୁ ମାନ୍ୟବର ସାମ୍ବାଦିକ ମନ୍ତ୍ରୀ ମହୋଦୟ ତାଙ୍କ ସ୍ୱାଭାବିକ କଳ୍ପନା ପ୍ରବଣତା ହେତୁ ପ୍ରଧାନ କବି ରାଧାନାଥ ରାୟଙ୍କ କାବ୍ୟ ଉଦ୍ଧାର କରି ସେ ବିଷୟଟାକୁ **ସମ୍ପୂର୍ଣ୍ଣ ଭାବରେ** ଭେଳିକି କଲେ । ମୋର ପ୍ରଧାନ କଥା ଥିଲା ଯେ, ବର୍ତ୍ତମାନ ଆମ ଦେଶରେ କିପରି ଭାବରେ ଆର୍ଥିକ ଅନାଟନ ଚାଲିଛି । ଏପରି **ଅବସ୍ଥାରେ ଆମେ** ଏହି **ବିଷୟରେ** ଗୋଟିଏ ସ୍ୱତନ୍ତ୍ର ଖର୍ଚ୍ଚ 7 ହଜାର ଟଙ୍କା ଖର୍ଚ୍ଚ ନ କରି ଆମେ କଣ ଚଳିପାରିବୁ ନାହିଁ ? ଏହି tourist ମାନଙ୍କୁ ସାହାଯ୍ୟ କରି ପାରିବୁ **ନାହିଁ ? ଆହୁରି ମଧ୍ୟ** ମୋର କହିବାର ଉଦ୍ଦେଶ୍ୟ ହେଉଛି ଯେ, ଏହି ବିଷୟରେ ସେ କହିଲେ **ଯେ,** ଆମର ଅନେକ ଖର୍ଚ୍ଚ ହୋଇ ଯାଉଛି । ଆଉ ସାମାନ୍ୟ କଥାରେ ଯଦି **ଆମେ** ଧରି ବସିବୁ, ତାହାହେଲେ କାମ ଚଳିବ ନାହିଁ । ଏହିପରି ସବୁ ସାମାନ୍ୟ କଥା ନେଇ ଏତେ ଖର୍ଚ୍ଚ ବଢି ଯାଉଛି ଯେ, ତାହା କହିଲେ ସରିବ **ନାହିଁ** । ଅତଏବ ଆମେ ବରାବର ପ୍ରତି Assembly session ବା ପ୍ରତି ବର୍ଷରେ **ଆମେ ଆମର** ସାଧାରଣ ଲୋକମାନଙ୍କ ଉପରେ କରଭାର ବଢ଼ାଇବା ପାଇଁ ବାଧ୍ୟ ହେଉଛୁ । **ତେଣୁ**

ମୁଁ ମାନ୍ୟବର ମନ୍ତ୍ରୀଙ୍କୁ ଅନୁରୋଧ କରୁଛି ଯେ, କେବଳ କାବ୍ୟ କବିତା ବା ଭାବ-ପ୍ରବଣତାଦ୍ୱାରା ସନ୍ତୁଷ୍ଟ ନ ହୋଇ ଆମର ନିର୍ଦ୍ଦିଷ୍ଟ ଯେ ଅସ୍ୱଚ୍ଛଳତା ଅଛି, ସେଇଟାକୁ ଲକ୍ଷ୍ୟକରି ଯେପରି ଭାବରେ ହେଲେ ଆମେ ଏହାଠାରୁ ଅଁହୁରି ଗୁରୁତର ବିଷୟ ଉପେକ୍ଷା କରି ଆସୁଥାଉଁ ଅର୍ଥାତ୍ ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟମାନ ପ୍ରତି ଅବହେଳା କରୁଛୁ । ଯଦି ଆମେ ଏହି ଛୋଟ ଛୋଟ କଥା ନେଇ ଏପରି ଭାବରେ ଅର୍ଥ ବ୍ୟୟ କରି ଚାଲି ଥାଉ ତାହାହେଲେ ମୁଁ ଭାବୁଛି ଯେ, ଆମର ଦୁର୍ଦ୍ଦଶା ବଢ଼ିଯିବ । ଅବଶ୍ୟ ଏଇଟା 7 ହଜାର ଟଙ୍କାରେ ହୋଇପାରେ କିନ୍ତୁ ଏହିପରି କେତେ ବିଷୟରେ 7/8 ହଜାର ଖର୍ଚ୍ଚ କରିବା ଦ୍ୱାରା ଆମର କେତେଦୂର ଆର୍ଥିକ ଅସ୍ୱଚ୍ଛଳତା ବଢ଼ୁଛି ସେ କଥା ମାନ୍ୟବର ମନ୍ତ୍ରୀ ମହୋଦୟ ଲକ୍ଷ୍ୟ କରିବା ଉଚିତ ।

Sir, I do not propose to withdraw. So I propose to press my cut motion.

* * *

The Hon'ble Sri. NABAKRUSHNA CHOUDHURY: Sir, I beg to move that this Assembly to assent do a supplementary grant of Rs.93,201 to defray the charges which will come in course of payment during the year ending the 31st day of March 1951 in respect of the head "General Administration-Public Relations Department-Provincial Organisation-Scheme for Food Production Publicity. 2"

(This appropriation has the reccommendation of the Governor.)

The Hon'ble the SPEAKER: Motion moved.

**ଶ୍ରୀ ରତ୍ନାକର ସୁପକାର**—ମାନ୍ୟବର ସଭାପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ, ଏହି ଦାବୀକୁ ଏକ ଟଙ୍କାକୁ କମାଇ ଦିଆଯାଉ । ମୋର ଏହି ବିଷୟରେ କହିବାର ଉଦ୍ଦେଶ୍ୟ ହେଉଛି ଯେ, ଏ ଯେଉଁ food production publicity ହେଉଛି, ତାହା ପ୍ରକୃତରେ କେବେ କାର୍ଯ୍ୟକାରୀ ହୋଇ ପାରିବ ନାହିଁ ଏବଂ ଯେଉଁ ଉଦ୍ଦେଶ୍ୟ ସାଧନ କରିବାଲାଗି ଏ ଅର୍ଥ ବ୍ୟୟ କରଯାଉଛି, ପ୍ରକୃତରେ ସେ ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ନାହିଁ । ଚାଷୀମାନଙ୍କ ପାଖକୁ ଏସବୁ publicity ବା ପ୍ରଚାର କଦାପି ପହଞ୍ଚି ପାରିବ ନାହିଁ ବା ସେଇଟା ଚାଷୀମାନଙ୍କ କାନକୁ ଯାଇ ପାରିବ ନାହିଁ । କାରଣ ଏ public relations department ପ୍ରଚାର ଦ୍ୱାରା ଯେଉଁ କାର୍ଯ୍ୟ ହେଉଛି, ତାହା କେବଳ ସହରମାନଙ୍କରେ ହେଉଛି ଏବଂ ଏପରି ଭାବରେ କେତେକ ଜାଗାରେ ହେଉଛି, ଯେଉଁଥିରେ କି ଲୋକମାନେ ସେ ବିଷୟରେ କିଛି ଜାଣିପାରୁ ନାହାନ୍ତି ।

ପ୍ରକୃତରେ ଯେଉଁମାନେ ଜାଣନ୍ତି ନାହିଁ, ସେମାନଙ୍କ କାନକୁ ଏ ବିଷୟ ଯାଉ ନାହିଁ । ତା ପରେ ୨ୟ କଥା ହେଉଛି food production Publicityକୁ ସାହାଯ୍ୟ ପାଇବା । ଏଥିପାଇଁ ଯାହା ସାହାଯ୍ୟ ଦରକାର ସେଇଟା ସରକାର ଯୋଗାଇ ପାରୁ ନାହାଁନ୍ତି । ଉଦାହରଣ ସ୍ୱରୂପ ମୁଁ କହିପାରେ ଯେ, ହୁଏତ ଏହା-ଦ୍ୱାରା ପ୍ରଚାର କରାଯାଇ ପାରେ tractorଦ୍ୱାରା ଚାଷ ହେଉ । ଲଙ୍ଗଳଦ୍ୱାରା ଚାଷ ହେବାଠାରୁ ତହିଁରେ ଅଧିକ ଶସ୍ୟ ଉତ୍ପାଦନ କରାଯାଇ ପାରିବ । ଏଇ କଥା ପ୍ରଚାର କରାଯାଇ ପାରେ । କିନ୍ତୁ ପ୍ରକୃତ କାର୍ଯ୍ୟକ୍ଷେତ୍ରକୁ ଆସି ଆମେ ଦେଖିବାକୁ ପାଉ ଯେ ଯଦି ଜଣେ ଲୋକ tractorଦ୍ୱାରା ଚାଷ କରିବାକୁ ଚାହେଁ ସେ ତାହା ପାଏ ନାହିଁ,, ଏବଂ ଯଦି ପାଏ ତାହା ଠିକ୍ ସମୟରେ ପାଏନାହିଁ । ଯେଉଁମାନେ ଚାଷୀ ସେମାନେ ଚେଷ୍ଟା କରି ଦେଖିବା ଦରକାର ଯେ, ଏହି ନୂତନ ଧରଣର ଚାଷ ସେମାନେ କିପରି କରିବେ । ସେମାନେ ଯଦି କୃଷି ବିଭାଗଠାରୁ ଏହି ଯନ୍ତ୍ରପାତି ସାହାଯ୍ୟ ଚାହାଁନ୍ତି, ଯେଉଁ ସମୟରେ ତାଙ୍କୁ ସାହାଯ୍ୟ ଦେବା ଦରକାର ତାହା ଦିଆଯାଉ ନାହିଁ । ଠିକ୍ ସମୟରେ ସେମାନେ ପାଇପାରୁ ନାହାଁନ୍ତି । ଯଦି ଜଣେ ଲୋକ ଜ୍ୟେଷ୍ଠ, ଆଷାଢ଼ ମାସରେ ଚାଷ କରିବାକୁ ଚାହେଁ ଏବଂ ସେ ସମୟରେ tractor ଆଦି ପାଇବାପାଇଁ ଦରଖାସ୍ତ ଦିଏ, ତେବେ ସେ ଦଶହରା ଭାଦ୍ରବ ମାସ ଆଡ଼କୁ tractor ପାଇବ । ଯେତେବେଳେ କି ସବୁ କ୍ଷେତ ଯାକରେ ଫସଲ ଥିବ ଏବଂ ସେ ସମୟରେ ସେ tractor ନେଇ କଣ କରିବ ? ଆଉ ନୂତନ ଧରଣର ବିହନ ପ୍ରୟୋଗ କରିବା ପାଇ ମଧ୍ୟ ପ୍ରଚାର ହେଉଛି । କିନ୍ତୁ ଏହି ନୂତନ ଧରଣର ବିହନ ମଧ୍ୟ ଯାହା ବଣ୍ଟା ଯାଉଛି, ସେଥିରେ ଠିକ ଚାଷ ହେଉ ନାହିଁ । ଅତଏବ ମୋର କହିବାର ପ୍ରଧାନ ଉଦ୍ଦେଶ୍ୟ ହେଉଛି ପ୍ରଚାର କାର୍ଯ୍ୟରେ ଏତେଗୁଡ଼ାଏ ଟଙ୍କା ଖର୍ଚ୍ଚ ନ କରି ପ୍ରକୃତ ଚାଷୀମାନଙ୍କର କିପରି ସୁବିଧା ହୋଇ ପାରିବ, Agriculture Department ଯଦି ସେ ଦିଗରେ ଲକ୍ଷ୍ୟ ଦିଅନ୍ତି, ତାହାହେଲେ ଭଲ ହେବ । Public Relation Department ଦ୍ୱାରା ଏସବୁ କାର୍ଯ୍ୟ ନ କରାଇ ଯଦି କୃଷି ବିଭାଗଦ୍ୱାରା ଯେଉଁମାନେ ପ୍ରକୃତରେ ଏଇସବୁ ଲୋକଙ୍କୁ ସାହାଯ୍ୟ କରିବାପାଇଁ କ୍ଷମ, ଯଦି ସେମାନଙ୍କ ଦ୍ୱାରା ଏକାର୍ଯ୍ୟ କରନ୍ତି, ତାହାହେଲେ ବିଶେଷ ଫଳପ୍ରଦ ହୁଅନ୍ତା । କିନ୍ତୁ ଏହି public relations departmentର food production publicity scheme ଦ୍ୱାରା ମୋର ଯେତେ ଦୂର ଅଭିଜ୍ଞତା ଅଛି କୌଣସି ଚାଷୀ ଉପକାର ଲାଭ କରିପାରୁ ନାହାନ୍ତି ।

The Hon'ble SPEAKER : Cut motion moved

Education

The Hon'le Pandit LINGRAJ MISRA : Sir, I beg to move that this Assembly do assent to a supplementary grant of Rs.9,820 to defray the charges which will come in course of

payment during the year ending the 31st day of March 1951 in respect of the head "Education—A—University—Government Arts Colleges".

(This appropriation has the recommendation of the Governor)

The Hon'ble the SPEAKER: Motion moved.

**ଶ୍ରୀ ଶଙ୍କାକର ସୁପକାର:** ମାନ୍ୟବର ସଭାପତି ମହାଶୟ, ମୁଁ ମୋର କାଟ ପ୍ରସ୍ତାବ ଆଗତ କରୁଛି । ଏହି ଦାବୀରୁ ଏକଶତ ଟଙ୍କା କମାଇ ଦିଆଯାଉ । ସଭାପତି ମହାଶୟ, ଆପଣ ଜାଣିଥିବେ, ଗତ ଡିସେମ୍ବର ମାସରେ ଏହି କଟକ ସହରରେ ଭାରତୀୟ ଐତିହାସିକ କଂଗ୍ରେସର ଅଧିବେଶନ ହୋଇଥିଲା । ସେହି ସମୟରେ ସ୍ଥିର ହୋଇଥିଲା କି ଉତ୍କଳ ବିଶ୍ୱବିଦ୍ୟାଳୟ ଅଧିବେଶନ Ravenshaw Collegeରେ ଇତିହାସରେ M. A. class ଖୋଲାଯାଉ । ଏହି M. A. class ଖୋଲିବା ପାଇଁ ବିଶ୍ୱବିଦ୍ୟାଳୟଙ୍କ-ଠାରୁ ମଧ୍ୟ ମଞ୍ଜୁରି ମିଳି ସାରିଛି । ତଥାପି ଏ ପର୍ଯ୍ୟନ୍ତ କାହିଁକି ଅଧ୍ୟାପକ ନିଯୁକ୍ତି-ପାଇଁ ବିଜ୍ଞାପନ ଦିଆଯାଇନାହିଁ ଓ Public Service Commission ଦ୍ୱାରା କାହିଁକି ସେମାନେ ନିଯୁକ୍ତ ହୋଇନାହାନ୍ତି--ସେଟା ବିଶେଷ ଭାବରେ ବିଚାର କରିବାର କଥା । ପୂର୍ବେ ଯେପରି M. A. ଶ୍ରେଣୀରେ 2 ବର୍ଷ ପରେ ପରୀକ୍ଷା ଦିଆଯାଉଥିଲା ଅର୍ଥାତ୍ 24ଟା ମାସ ଛାତ୍ରମାନଙ୍କୁ ପଢ଼ିବାପାଇଁ ସମୟ ମିଳୁଥିଲା, ବର୍ତ୍ତମାନ ସେ ସୁବିଧା ଆଉ ନାହିଁ । ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟମାନଙ୍କରେ M. S. C. ପରୀକ୍ଷାକୁ 2 ଭାଗରେ ବିଭକ୍ତ କରାଯାଉଛି ଏବଂ ପ୍ରତ୍ୟେକ ବର୍ଷ ଶେଷକୁ University ପରୀକ୍ଷା ହେଉଛି ଏବଂ ପ୍ରତ୍ୟେକ ବର୍ଷ ଶେଷରେ 4ଟା ପ୍ରଶ୍ନର ଉତ୍ତର ଦେବାକୁ ପଡ଼ୁଛି । ବର୍ତ୍ତମାନ ଯେଉଁ ଛାତ୍ରମାନେ 5ମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଛନ୍ତି ସେମାନଙ୍କୁ ଆସନ୍ତା April ମାସ ପୂର୍ବରୁ ଏହି ପରୀକ୍ଷାପାଇଁ ପ୍ରସ୍ତୁତ ହେବାକୁ ପଡ଼ୁଛି । M. A. ଶ୍ରେଣୀର ପାଠ୍ୟପୁସ୍ତକମାନ ଯେ କଠିନ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଆମେ ଦେଖୁଛୁ July ମାସ ବିତି ଗଲାଣି, August ମାସରୁ କିଛି ବିତି ଗଲାଣି, ତଥାପି ଏ ବିଷୟରେ ବନ୍ଦୋବସ୍ତ କରାଯାଇ ନାହିଁ । ଆମେ ଆଶା କରିଥିଲୁ ଯେ, ଅନ୍ତତଃ May ବା June ମାସରେ ବିଜ୍ଞାପନ ଦିଆଯିବ ଏବଂ July ମାସ ପୂର୍ବରୁ ଯେତେ ଅଧ୍ୟାପକ ଦରକାର ତାହା ନିଯୁକ୍ତ ହେବେ କିନ୍ତୁ ଆଜି ସୁଦ୍ଧା ଅଧ୍ୟାପକ ନିଯୁକ୍ତ ହୋଇ ନ ଥିବାରୁ ସେମାନେ ବଡ଼ ଅସୁବିଧା ଭୋଗୁଛନ୍ତି । କେବଳ ଏହି ଇତିହାସ ଶ୍ରେଣୀ ନୁହେଁ, ଅନ୍ୟାନ୍ୟ କ୍ଲାସରେ ମଧ୍ୟ ଅଧ୍ୟାପକ ଅଭାବରୁ ଶିକ୍ଷାର ଅବହେଳା ଘଟୁଛି । ଏପରି ଅବହେଳା ଯେପରି ନ ଘଟେ ଏବଂ ଅଧ୍ୟାପକମାନେ ଯେପରି ଅତିଶୀଘ୍ର ନିଯୁକ୍ତ ହୁଅନ୍ତି, ଏଥିପାଇଁ ମୁଁ ମାନ୍ୟବର ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରୁଛି ।

## 1951-52 ବର୍ଷ ପାଇଁ ଖର୍ଚ୍ଚ ଦାବି ଉପରେ ଭୋଟଦାନ ଓ ତତ୍‌ସମ୍ପର୍କୀୟ ଭାଷଣ

ଓଡ଼ିଶା ବିଧାନ ସଭାର 1951 ମାର୍ଚ୍ଚ 9 ତାରିଖରେ ମାନ୍ୟବର ମନ୍ତ୍ରୀ ସଦାଶିବ ତ୍ରିପାଠୀ ଟ° 21,74,043 ଖର୍ଚ୍ଚ ଦାବି (ରାଜସ୍ୱ ବିଭାଗର 1952 ମାର୍ଚ୍ଚ ସୁଦ୍ଧା) ଉପରେ ଅନୁମୋଦନ ଚାହିଁଛନ୍ତି । ଏହି ଖର୍ଚ୍ଚ ଦାବିକୁ ଏକ ଟଙ୍କାକୁ କମାଇ ଦେବା ପାଇଁ କାଟ ପ୍ରସ୍ତାବ ଆଣି ଡଃ ଶ୍ରଦ୍ଧାକର ସୂପକାର କହିଛନ୍ତି ଯେ ସମ୍ବଲପୁର ଜିଲ୍ଲାରେ ନୂତନ ବନ୍ଦୋବସ୍ତ କରିବାକୁ ହେବ । ଏହାର ଅଭାବରେ ପ୍ରଜା ଓ ସରକାର ଉଭୟଙ୍କର କ୍ଷତି ହେଉଛି । Land Acquisition ଅଫିସରମାନଙ୍କର ମନମୁଖୀ କାରବାର ଓ ତା' ସହିତ ଅଯଥା ଲାଞ୍ଚ ଦିଆଯାଉଛି । ଯଥା ସମୟରେ କୋର୍ଟରେ ହାଜର ହେବା ପାଇଁ ନୋଟିସ ଦିଆଯାଉନାହିଁ । ଫଳତଃ ଜନସାଧାରଣ ବିଶେଷ ହଇରାଣ ହେଉଛନ୍ତି ।

*　　*　　*　　*

ଉକ୍ତଦିନ ଅପରାହ୍ଣରେ ଡଃ ସୂପକାର River Valley Developmentକୁ ଗାନ୍ଧାରୀଙ୍କ ସହିତ ଓ ହୀରାକୁଦ ପ୍ରୋଜେକ୍ଟକୁ ଧୃତରାଷ୍ଟ୍ର ସହିତ ତୁଳନା କରିଛନ୍ତି । ହୀରାକୁଦ ବନ୍ଧ ଯୋଜନାରେ କିପରି ବହୁ ଅପବ୍ୟୟ ହେଉଛି ଏବଂ ଜନସାଧାରଣ ନ୍ୟାୟତଃ ସେମାନଙ୍କ ପ୍ରାପ୍ୟ କ୍ଷତିପୂରଣ ପାଉନାହାନ୍ତି । ନ୍ୟସ୍ତସ୍ୱାର୍ଥ ଲୋକମାନେ ଏହି ପରିସ୍ଥିତିରୁ ଫାଇଦା ଉଠାଉଛନ୍ତି ଏବଂ ସରକାରଙ୍କ ନିଷ୍ପତ୍ତିର ଅଭାବ ପରିଲକ୍ଷିତ ହେଉଛି । ଇଂଜିନିୟର ହେବାକୁ ଓଡ଼ିଶାରୁ ଲୋକ ମିଳୁନାହାନ୍ତି ବୋଲି ସରକାର କହିବାରୁ ଡଃ ସୂପକାର କହିଛନ୍ତି ବର୍ତ୍ତମାନ "ହୀରାକୁଦରେ 111 ଜଣ କିରାଣୀ କାମ କରନ୍ତି, ସେଥିମଧ୍ୟରୁ ପଂଜାବୀ ସଂଖ୍ୟା ହେଉଛି 59, ଓଡ଼ିଆ 18 ଓ ଅନ୍ୟାନ୍ୟ ଜାତିର 34 ଅଛନ୍ତି । ତା ଅର୍ଥ ଓଡ଼ିଆ କିରାଣୀଙ୍କ ସଂଖ୍ୟା ଅତି ତୁଚ୍ଛ" । ତେଣୁ ଓଡ଼ିଶା ମାଟିରେ ଓଡ଼ିଆମାନଙ୍କ ପ୍ରତି କିପରି ପାତର ଅନ୍ତର କରାଯାଉଛି ତାହା କହି ଶ୍ରଦ୍ଧାକର ଗଭୀର ଦୁଃଖ ପ୍ରକାଶ କରି ଏ ଦିଗରେ ସରକାରଙ୍କ ସୁବିଚାର କାମନା କରିଛନ୍ତି ।

*　　*　　*　　*

ସେମିତି ଶିଳ୍ପଖର୍ଚ୍ଚ ଦାବି ଉପରେ 1951 ମାର୍ଚ୍ଚ 13ରେ ଡଃ ସୂପକାର ବିଧାନ ସଭାରେ କହିଛନ୍ତି ଯେ Orient Paper Mills ଉତ୍ପାଦନ ବୃଦ୍ଧି କରିପାରିଛି । ମାତ୍ର ନଦୀ ଜଳକୁ ଦୂଷିତ କରିବାରୁ ଜନସାଧାରଣଙ୍କ ବ୍ୟବହାର ପାଇଁ ତାହା ଅନୁପଯୁକ୍ତ ହୋଇପଡ଼ିଛି । ଶିଳ୍ପ ଉପରେ ସରକାରଙ୍କ ବିଶେଷ କିଛି ନିୟନ୍ତ୍ରଣ ନାହିଁ । ଏଥିରେ କର୍ତ୍ତୃପକ୍ଷଙ୍କର ପ୍ରିୟାପ୍ରୀତି ତୋଷଣ ଚାଲିଛି ଏବଂ ଅଯଥା ଅପବ୍ୟୟ ବଢ଼ିଯାଉଛି ବୋଲି ଶ୍ରଦ୍ଧାକର ଅଭିଯୋଗ କରିଛନ୍ତି ।

*　　*　　*　　*

ସେହିପରି ଶିକ୍ଷା ବିଭାଗର ଖର୍ଚ୍ଚ ଦାବି ଉପରେ କାଟ ପ୍ରସ୍ତାବ ଆଣି ଡଃ ସୂପକାର ପୋଲିସ ବିଭାଗର ଖର୍ଚ୍ଚ ସହିତ ତୁଳନା କରିଛନ୍ତି । (ଓଡ଼ିଶା ବିଧାନ ସଭା ତା 16-3-1951) । ତାପରେ ସେ ଉଚ୍ଚଶିକ୍ଷା ମାଧ୍ୟମିକ ଶିକ୍ଷା, ପ୍ରାଥମିକ ଶିକ୍ଷା ଓ ପୌଢ ଶିକ୍ଷା ସମ୍ପର୍କରେ ହେଉଥିବା ଖର୍ଚ୍ଚକୁ ଦେଖାଇ କିପରି ସାକ୍ଷରତା ନାଁରେ ଘୋର ଅପବ୍ୟୟ ହେଉଛି ପ୍ରକାଶ କରିଛନ୍ତି । ସେ ଯଥାର୍ଥରେ କହିଛନ୍ତି "ପ୍ରତ୍ୟେକ ଲୋକର ଖାଇବାରେ ପିନ୍ଧିବାରେ ଯେ ମୌଳିକ ଅଧିକାର ଅଛି, ତାଠାରୁ ବେଶୀ ଅଧିକାର ଅଛି ଯେ ପ୍ରତ୍ୟେକ ଲୋକ ଯେପରି ଖୁବ୍ କମ୍‌ରେ ପ୍ରାଥମିକ ଶିକ୍ଷା ପାଇ ପାରିବେ" ମାତ୍ର ମନ୍ତ୍ରୀ ଗୁଡ଼ିଏ Facts & Figures ଦେଇ ଲୋକଙ୍କୁ ଭୁଆଁ ବୁଲାଉଛନ୍ତି ବୋଲି ସମାଲୋଚନା କରିଛନ୍ତି । ତାପରେ ବିଶ୍ୱବିଦ୍ୟାଳୟ ଓ ସଂସ୍କୃତ ଶିକ୍ଷା ଉପରେ ସରକାର ଅଧିକ ଖର୍ଚ୍ଚ କରିବାକୁ ଅନୁରୋଧ କରିଛନ୍ତି ।

*　　　　*　　　　*　　　　*

ଓଡ଼ିଶା ବିଧାନସଭାରେ ମାର୍ଚ୍ଚ 14 ତାରିଖରେ ଡଃ ସୂପକାର ଜେନେରାଲ ଆଡ୍‌ମିନିଷ୍ଟ୍ରେସନ ବା ସାଧାରଣ ପ୍ରଶାସନ ବିଷୟରେ କହିବାକୁ ଯାଇ ଏହା କିପରି Top heavy ହୋଇଯାଉଛି ଦେଖାଇଛନ୍ତି । I. A. S. ଅଫିସରମାନଙ୍କୁ ପ୍ରଦେଶ ବାହାରୁ ଆଣି ଲୋକଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ରକ୍ଷା କରାଯାଉ ନାହିଁ । ମନ୍ତ୍ରୀମାନଙ୍କର ଗସ୍ତ ସମ୍ପର୍କରେ ସେମାନେ ଅଧିକ ସଚେତନ ହେଉଛନ୍ତି । ଜନସାଧାରଣଙ୍କ ଅଭାବ ଅସୁବିଧା ସେମାନେ ବୁଝୁନାହାନ୍ତି ଏବଂ supervision ଅଭାବରୁ ଶାସନରେ ବହୁ ବିଶୃଙ୍ଖଳା ଦେଖାଦେଇଛି । ପୂର୍ବେ ଯେଉଁ ଆଇନର ଶାସନ ଗୁଲି ଥିଲା, ତାହା ଖରାପ ହୋଇ ପଡ଼ିଛି । I. A. S. ତଥା ଉପରିସ୍ଥ ଅଧିକାରୀମାନେ ନିମ୍ନଙ୍କ ଉପରେ ଅଧିକ ନିର୍ଭରଶୀଳ ହେଉଛନ୍ତି କାରଣ ସେମାନଙ୍କର ଅଭିଜ୍ଞତାର ବିଶେଷ ଅଭାବ ରହିଛି ।

ଡଃ ସୂପକାରଙ୍କ ଏହି ସମାଲୋଚନା ସାଂପ୍ରତିକ ପରିସ୍ଥିତି ପ୍ରତି କିପରି ପ୍ରଯୁଜ୍ୟ, ତାହା ଏବେ ବିଗ୍ରର୍ଯ୍ୟ ।

## Land Revenue

The Hon'ble Shri SADASIVA TRIPATHY: Sir, I beg to move that the Assembly do assent to a demand of Rs. 21,74,043 to defray the charges which will come in course of payment during year ending the 31st March 1952 in respect of the head "Land Revenue".

This appropriation has the recommendation of the Governor

The Hon'ble the SPEAKER. Motion moved.

Shri SURENDRAMOHAN PATNAIK: Madam, there are four cut-motions in my name. They are Nos. 24, 44, 45, and 46. I shall be grateful if you will allow me to take my chance after Mr. Supakar.

Shri SHRADHAKAR SUPAKAR: ସଭାନେତ୍ରୀ ମହୋଦୟା, ମୋ ନାମରେ ଯେଉଁ ଦୁଇଟି କାଟ ପ୍ରସ୍ତାବ ଅଛି ମୁଁ ତାକୁ ଆଗତ କରୁଛି । ପ୍ରଥମ ହେଉଛି ଯେ ଏହି ଡିମାଣ୍ଡକୁ ଏକ ଟଙ୍କାକୁ କମାଇ ଦିଆଯାଉ ଏବଂ ଏହି ଖରଚ ଦାବିରୁ ଟ. 100 କମାଇ ଦିଆଯାଉ । ଏହା କରିବାକୁ ଯାଇଁ ମୁଁ ଜୋର ଦେଇ କହିବାକୁ ଚାହେଁ ଯେ ସମ୍ବଲପୁରରେ ନୂତନ ବନ୍ଦୋବସ୍ତର ବିଶେଷ ଭାବରେ ଆବଶ୍ୟକତା ଅଛି । ଏହା ପୂର୍ବରୁ ମୁଁ ଏହି ଆସେମ୍ବ୍ଲି ସଭା ଗୃହରେ ଦାବି କରିଥିଲି ଯେ ସମ୍ବଲପୁର ଜିଲାରେ ଯଦି ନୂତନ ବନ୍ଦୋବସ୍ତ ଶୀଘ୍ର ନ ହୁଏ, ତାହାହେଲେ ବିଶେଷ କରି ହୀରାକୁଦ ଅଞ୍ଚଳ ପାଇଁ ଯେଉଁ ସବୁ ଜମି, ଗଛ ଇତ୍ୟାଦି ଆକ୍ୱୟାର ହେଉଛି ଓ ସାରା ସମ୍ବଲପୁରରେ କେନାଲ ଇତ୍ୟାଦି ନେବା ପାଇଁ ଯେଉଁସବୁ ଜମି ଏବଂ ଗଛ ଇତ୍ୟାଦି ଆକ୍ୱୟାର ହେଉଛି, ସେଥିରେ ଯେ କେବଳ ପ୍ରଜାମାନଙ୍କର କ୍ଷତି ହେଉଛି ତା ନୁହେଁ, ସରକାର ମଧ୍ୟ ଅନେକ ଯାଗାରେ ଭୟାନକ ଭାବରେ କ୍ଷତିଗ୍ରସ୍ତ ହେଉଛନ୍ତି । ଏ ବିଷୟରେ ମୋତେ ଉତ୍ତରରେ ମାନ୍ୟବର ରାଜସ୍ୱ ମନ୍ତ୍ରୀ ସେ ସମୟରେ କହିଥିଲେ ଯେ ନୂତନ ବନ୍ଦୋବସ୍ତର ବିଶେଷ ପ୍ରୟୋଜନୀୟତା ନାହିଁ କିନ୍ତୁ ବର୍ତ୍ତମାନ ଦେଖାଯାଉଛି ଯେ ଯଦି ସରକାର ସେ ସମୟରେ ଏହି ବନ୍ଦୋବସ୍ତ କାର୍ଯ୍ୟ ଆରମ୍ଭ କରିଥାନ୍ତେ ତାହାହେଲେ ଲୋକଙ୍କୁ ଅନେକ ଅସୁବିଧା ଓ ସରକାରଙ୍କୁ ଅନେକ କ୍ଷତିରୁ ବଞ୍ଚିତ ହେବାକୁ ପଡ଼ିଥାନ୍ତା । ଉଦାହରଣ ସ୍ୱରୂପ ମୁଁ କହିପାରେ ଯେ ହୀରାକୁଦ ଲାଣ୍ଡ ଆକୁଇଜିସନ୍ ଅଫିସ୍‌ରୁ ଯେଉଁ ନୋଟିସ ଆସୁଛି ସେ ସମ୍ପର୍କରେ ଏଠାକାର ମାନ୍ୟବର ସଭ୍ୟ ଯେପରି ଭାବରେ କହିଲେ ଯେ ଯେଉଁଠାରେ ଲାଣ୍ଡ ଆକୁଇଜିସନ୍ ଅଫିସର କର୍ମଚାରୀ ମାନଙ୍କୁ ଖୁସି କରିବା ପାଇଁ ଲୋକମାନେ ଯତ୍ନବାନ ହେଉଛନ୍ତି ସେଠାରେ ଗଛମାନଙ୍କର ସଂଖ୍ୟା ଅଯଥା ପରିମାଣରେ ବୃଦ୍ଧି କରାଇ ଦିଆ ଯାଉଛି । ସେଥିରେ ଅଫିସରମାନେ ଲାଭ ଉଠାଉଛନ୍ତି, ଫଳତଃ ସରକାରଙ୍କୁ କ୍ଷତି ସହିବାକୁ ପଡୁଛି । ଉଦାହରଣ ସ୍ୱରୂପ ତୁମେଇପାଲି ବେଇପାଲ ବୋଲି ଗୋଟିଏ ଗାଁ ଅଛି । ସେହି ଗାଁରେ ଗୌତମ ପ୍ରଧାନ ଏବଂ ସହଦେବ ସାଇଁଙ୍କର ଗଛର ସଂଖ୍ୟା କେତେ ଲେଖା ଯାଇଛି ସେ ବିଷୟରେ ଯଦି ସରକାର ଅନୁସନ୍ଧାନ କରନ୍ତି ତାହାହେଲେ ଏହିସବୁ ବିଷୟରେ କିଭଳି ପୋଡେଇ ଚାଲିଛି ତାହା ସ୍ପଷ୍ଟ ଭାବରେ ବୁଝି ପାରନ୍ତେ ।

ଏ ଲାଣ୍ଡ ଆକୁଇଜିସନ୍ ଅଫିସରେ ଯେଉଁ କର୍ମଚାରୀମାନେ ଅଛନ୍ତି, ଯଥା—ଅମିନ ପଟଓ୍ୱାରୀ ରେଭିନିଉ ଇନ୍‌ସ୍ପେକ୍ଟର ଇତ୍ୟାଦି, ସେମାନଙ୍କର ସମ୍ବଲପୁରର ଜମିଜମା ବିଷୟରେ କୌଣସି ଅଭିଜ୍ଞତା ନ ଥିବାରୁ ସେମାନେ ଯେ କୌଣସି ଭାବରେ ଯଥା ତଥା କରି ଯେତେଦୂର ପାରନ୍ତି କପୋଳକଳ୍ପିତ ରିପୋର୍ଟ ଦେଉଛନ୍ତି, ତା ଫଳରେ ଅନେକ

ସମୟରେ ଅନେକ ରକମର ବିଭ୍ରାଟ ଘଟୁଛି । ଅବଶ୍ୟ ସରକାର ତରଫରୁ ଏହା କୁହାଯାଇ ପାରେ ଯେ ଏହାଦ୍ୱାରା ଲୋକମାନଙ୍କୁ ଗୋଟିଏ chance ଦିଆଯାଉଛି ଏବଂ ସେମାନେ ନିଜ ନିଜର ଜମି ସଂଶୋଧନ କରି ପାରିବେ, କିନ୍ତୁ ଏ ଯେଉଁ ନୋଟିସ ଯାଉଛି ଏଥିରେ ସର୍ତ୍ତ ରହୁଛି ଯେ ଜମି ଓ ଗଛ ଇତ୍ୟାଦିର ସଂଖ୍ୟା ପରିବର୍ତ୍ତନ ପାଇଁ କାହାରି କିଛି ସଂଶୋଧନ କରିବାକୁ ଥିଲେ ସେ କେବଳ 14 ଦିନ ମଧ୍ୟରେ ତାହା କରି ପାରିବେ । ଏ ବିଷୟରେ ମୋର ଗୋଟିଏ ବ୍ୟକ୍ତିଗତ ଅଭିଜ୍ଞତା ଅଛି । ମୋ ପାଖକୁ ଗୋଟିଏ ନୋଟିସ ଆସିଥିଲା ଯେ ଗଛ ଓ ଜମି ନେଇ କୌଣସି ଆପତ୍ତି ଥିଲେ ତାହା ତା 15-12-1951 ରିଖ ସୁଦ୍ଧା ଜଣାନ୍ତୁ । କିନ୍ତୁ ସେ ନୋଟିସ୍ ମୋ ପାଖରେ ତା 3-1-1951 ରିଖରେ ପହଞ୍ଚିଲା ଏହିପରି ଭବରେ ଯେଉଁ କାର୍ଯ୍ୟ ଚାଲିଛି ସେଥିରେ ପ୍ରକୃତରେ ଯଦି ଗୋଟିଏ ନୂତନ ସେଟଲମେଣ୍ଟ ହୁଅନ୍ତା ତାହାହେଲେ ସବୁ ଲୋକଙ୍କର ସୁବିଧା ହୋଇ ପାରନ୍ତା ଏବଂ ସରକାର ମଧ୍ୟ ବହୁ କ୍ଷତିରୁ ରକ୍ଷା ପା'ନ୍ତେ । ତେଣୁ ସରକାର ଏ ବିଷୟରେ ଯତ୍ନବାନ ହେବେ ବୋଲି ମୁଁ ତାଙ୍କୁ ଅନୁରୋଧ କରୁଛି ।

*　　　*　　　*　　　*

Shri SHRADHAKAR SUPAKAR: ମାନ୍ୟବର ସଭାପତି ମହୋଦୟ, କାଲି River Valley Development ସମ୍ପର୍କରେ ଆଲୋଚନା କରିବାକୁ ଯାଇ ମୁଁ କହିଥିଲି ଯେ ସେ ଡିପାର୍ଟମେଣ୍ଟକୁ ଗାନ୍ଧାରୀଙ୍କ ସହିତ ତୁଳନା କରାଯାଇ ପାରେ ଏବଂ ହୀରାକୁଦ ପ୍ରୋଜେକ୍ଟକୁ ଧୃତରାଷ୍ଟ୍ରଙ୍କ ସହିତ ତୁଳନା କଲେ କିଛି ଖରାପ ହେବ ନାହିଁ । କାରଣ ସେହି ସମ୍ପର୍କରେ ହେଡ୍ ୪0 "ଏ" ମୂଳରୁ ଶେଷ ପର୍ଯ୍ୟନ୍ତ କେବଳ blank ବା ଖାଲି ପଡ଼ିଛି ବିଶେଷତଃ ଏହି ଯେଉଁ ବଡ଼ ବଡ଼ ଖର୍ଚ୍ଚ item ଗଡ଼ିକ ରହିଛି ଯଥା 603 ପୃଷ୍ଠାରୁ ଆରମ୍ଭ କରି 614 ପୃଷ୍ଠା ପର୍ଯ୍ୟନ୍ତ ତା'ର detailsର ନାମ ମାତ୍ର ନାହିଁ । ସାଧାରଣତଃ ଆମ୍ଭେମାନେ land acquisition ବିଷୟରେ ବିଶେଷ ଆଗ୍ରହାନ୍ୱିତ ହୋଇ ଥାଉଁ କାରଣ ଲୋକେ ଠିକ୍ ଭାବରେ ଜମି ପାଉଛନ୍ତି କି ନାହିଁ, କ୍ଷତି ପୂରଣ ପାଉଛନ୍ତି କି ନାହିଁ, ଆମର ବିଶେଷ ଭାବରେ ଜାଣିବାର କଥା । କାରଣ ଅନେକ ସମୟରେ ନାନା ପ୍ରତିଶ୍ରୁତି ମାନ୍ୟବର ସଭ୍ୟମାନଙ୍କୁ ଦିଆଯାଇଥାଏ କିନ୍ତୁ ଆପଣ 612 ପୃଷ୍ଠ ଦେଖିଲେ ଜାଣିପାରିବେ ଯେ Land Acquisition,Establishment, Pay of Officers, Cost of Machinery and other works ଏ ସବୁ ବିଷୟରେ details ଜମା ନାହିଁ ଆହୁରି ବିଶେଷ ଦୁଃଖର ବିଷୟ ହେଉଛି ଯେ ଏ ବିଷୟରେ ଯେତେବେଳେ କୌଣସି ପ୍ରଶ୍ନ ପଚରାଯାଏ, ମାନ୍ୟବର ପ୍ରଧାନ ମନ୍ତ୍ରୀ କହନ୍ତି ଏ ବିଷୟରେ ଉତ୍ତର ଦେବା ପାଇଁ ବେଶୀ details ସଂଗ୍ରହ କରିବା ସମ୍ଭବ ନୁହେଁ । କିନ୍ତୁ ହୀରାକୁଦରେ ଯେତେ ଯାହା କାର୍ଯ୍ୟ ହେଉଛି, ଯେତେ ଯାହା ଖର୍ଚ୍ଚ ହେଉଛି, ସେ ସବୁ ତୁଷାରକାନ୍ତି ଘୋଷଙ୍କୁ ଦିଆଯାଇ ପାରେ କିନ୍ତୁ ଆସେମ୍ବ୍ଲିପରି ଗୋଟିଏ ଦାୟିତ୍ୱ ସଂପନ୍ନ ଅନୁଷ୍ଠାନ ସେ ସବୁ ଦିଆଯାଇ ପାରିବ ନାହି

ସେ ଦିନ ମୁଁ ଯେଉଁ ପ୍ରଶ୍ନ ପଗ୍ଧରିଥିଲି ତା'ର 2ୟ ଠାରୁ 5ମ ପ୍ରଶ୍ନ ଆପଣ ଦେଖିଲେ ବୁଝି ପାରିବେ ଯେ ମୋର ଗୋଟିଏ ପ୍ରଶ୍ନଥିଲା ହୀରାକୁଦରେ କେତେଜଣ ଇନ୍‌ଜିନିଅର ଅଛନ୍ତି । ସେମାନଙ୍କର ଶିକ୍ଷା ଓ ଯୋଗ୍ୟତା କ'ଣ ଇତ୍ୟାଦି । ଏହାର ଉତ୍ତର କ'ଣ, 15 ମିନିଟ ମଧ୍ୟରେ ଅଣାଯାଇ ନ ପାରେ ଯେ ଏଥିପାଇଁ 15 ଦିନ କଟିଗଲେ ମଧ୍ୟ ତା'ର କୌଣସି ଉତ୍ତର ପାଇଲି ନାହିଁ । ଏହାର ଉଦ୍ଦେଶ୍ୟ କ'ଣ ହୋଇପାରେ ?

ଅନ୍ୟାନ୍ୟ ଅନେକ ପ୍ରଶ୍ନ ପଚରା ଯାଇଥିଲା । ମାନ୍ୟବର ପ୍ରଧାନମନ୍ତ୍ରୀ କୌଣସି ଯୁକ୍ତି ଦେଖାଇ ପାରିବେ ନାହିଁ । ସେ ସେଗୁଡ଼ିକର ଉତ୍ତର 15 ଦିନ ଭିତରେ ଦେବା ସମ୍ଭବ ନୁହେଁ । ପ୍ରଧାନ କଥା ହେଉଛି ମୁଁ ଏହା ସ୍ପଷ୍ଟ ଭାବରେ କହିଦେବାକୁ ଚାହେଁ ଯେ ଏହି ଡ୍ୟାମ ପ୍ରୋଜେକ୍ଟ ବିଷୟରେ କେବଳ କୁଇକ୍ ନୁହନ୍ତି ଆମ ସରକାର ମଧ୍ୟ ଜନସାଧାରଣଙ୍କୁ ଅନେକ କଥା ଲୁଚାଇବାକୁ ଚାହାନ୍ତି । ସେପରି ଲୁଚାଇବାରେ କୌଣସି ମନା ନାହିଁ । ତା'ର କୈଫିୟତ ସ୍ୱରୂପ ସରକାର କହନ୍ତି ଯେ ଲୋକେ କାହିଁକି ଆମକୁ ଆଶଙ୍କା କରୁଛନ୍ତି ? କିନ୍ତୁ ମୁଁ କହେ ମୋର ଆଶଙ୍କା ହୋଇ ନ ପାରେ ମୋର ସନ୍ଦେହ ଥାଇ ନ ପାରେ, କିନ୍ତୁ ଘଟଣା କ'ଣ ହେଉଛି, ଆମେ କରଦାତା ହିସାବରେ ଆମର ଜଣା' ଜାଣିବାର ଅଧିକାର ନାହିଁ ।

The Hon'ble the SPEAKER : The Hon'ble Member may speak to the point and to all the points in a succinct fashion.

Shri SHRADHAKAR SUPAKAR : ତା'ପରେ ଏଇ ଯେଉଁ 10 କୋଟି ଟଙ୍କା ଖର୍ଚ୍ଚ ହୋଇଛି ଏହାର ସୁଧ 50 ଲକ୍ଷ ଟଙ୍କା ବଜେଟ ଡ୍ରିମାଣ୍ଡରେ ଉପସ୍ଥାପିତ କରଯାଇଛି । ରିଭାଇଜ୍‌ଡ ବଜେଟରେ ମଧ୍ୟ 19 ଲକ୍ଷ ନା କେତେ ଟଙ୍କା କରଯାଇଛି, ଯେତେବେଳେ 20/121 ତାରିଖ ଦିନ ସପ୍ଲିମେଣ୍ଟାରୀ ବଜେଟ ଆମ ସମ୍ମୁଖରେ ଉପସ୍ଥାପିତ କରଯିବ ସେତେ-ବେଳେ ମଧ୍ୟ କେତେ ଲକ୍ଷ ଟଙ୍କା ମଞ୍ଜୁର ପାଇଁ ଆସିବ । ଏ ସୁଧ ବିଷୟରେ ଆମର ଦାୟିତ୍ୱ କ'ଣ ? ସେ ବିଷୟରେ ମୁଁ ପରବର୍ତ୍ତୀ ଆସେମ୍ବ୍ଲି ପ୍ରୋସିଡ଼ିଙ୍ଗ ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଏ ହୀରାକୁଦ ଯୋଜନା ସମ୍ବନ୍ଧରେ 1947 ସାଲ ଅଗଷ୍ଟ 28 ତାରିଖରେ ଯେତେବେଳେ ଆଲୋଚନା ହେଉଥିଲା ସେତେବେଳେ ଆମର ତଦାନୀନ୍ତନ ମାନ୍ୟବର ପ୍ରଧାନମନ୍ତ୍ରୀ ଆମକୁ କହିଥିଲେ ଯେ ଏ ବିଷୟରେ ଯେତେବେଳେ ଆମେ ଭାରତ ସରକାରଙ୍କୁ କହିବା ସେତେବେଳେ କହିବା ଯେ ଏ ସୁଧର ଦାୟିତ୍ୱ ଆମେ ନେଇ ପାରିବୁ ନାହିଁ । ମୁଁ ଆଶା କରୁଛି ଯେ ଅନ୍ତତଃ ଅନ୍‌ପ୍ରଡକ୍‌ଟିଭ ପାର୍ଟର ସୁଧ ବିଷୟରେ ଆମେ ଛାଡ ପାଇବା । ଯେତେବେଳେ 1949 ସାଲର ବଜେଟ ଏହି ସଭାରେ ଆଲୋଚିତ ହେଉଥିଲା । ସେତେବେଳେ ଏହି ସୁଧ ଦାୟିତ୍ୱ ବିଷୟରେ କହିବାକୁ ଯାଇ ମାନ୍ୟବର ପ୍ରଧାନମନ୍ତ୍ରୀ ଯାହା କହିଥିଲେ । 1949 ମସିହା ମାର୍ଚ୍ଚ 4 ତାରିଖରେ ତାଙ୍କର ଏ

ସମ୍ପର୍କୀୟ ବକ୍ତୃତା ପ୍ରତି ମୁଁ ଦୃଷ୍ଟି ଆକର୍ଷଣ କରୁଛି । ଉକ୍ତ ପ୍ରୋସିଡ଼ିଙ୍ଗର ୨ମ ପୃଷ୍ଠାରେ ସେ କହିଛନ୍ତି, "ସଂକ୍ଷେପରେ ଏଇଆ ହେଉଛି—ଯାକୁ ଆପଣମାନେ ଯେପରି କୁହନ୍ତୁ—ଗ୍ରାଣ୍ଟ କୁହନ୍ତୁ, ଲୋନ କୁହନ୍ତୁ, ଗ୍ରାଣ୍ଟ-ଇନ୍-ଏଡ୍ କୁହନ୍ତୁ —ଏଗ୍ରିମେଣ୍ଟ ହେଉଛି ଏଇଆ ଯେ ହୀରାକୁଦ ଡ୍ୟାମ ପାଇଁ ଖରଚ ସରକାର ଟଙ୍କା ଖର୍ଚ୍ଚ କରି ଯିବେ ଏବଂ ଶେଷରେ ଯଦି ସେ ପ୍ରୋଜେକ୍ଟା ପ୍ରଡକ୍ଟିଭ ବୋଲି ପ୍ରୁଭ ହୁଏ—ପ୍ରଡ଼କଟିଭମାନେ ହେଉଛି—ନିଜର ଚଳିବା ଖର୍ଚ୍ଚ ଯାଇ, ସୁଧ ଯାଇ ଯଦି ଅଧିକା ବଳେ ତାହାହେଲେ ଯେ ତାକୁ ଚଳାଇବା ଯଥା ଓଡ଼ିଶା ସରକାର—ସେ ସେହି ଅନୁସାରେ ସୁଧ ଦେବେ । ଯଦି ପ୍ରଡକ୍ଟିଭ ନ ହୁଏ, ତାହାହେଲେ ସୁଧ ଫୁଧ କିଛି ନାହିଁ । ଯଦି ସୁଧ ଯାଇ କରି ଅଧିକାହେଲେ ତାହା ହେଲେ ସୁଧ ନ ଦେବା କାହିଁକି ?

କିନ୍ତୁ ବର୍ତ୍ତମାନ ଦେଖାଯାଉଛି ଯେ ଏହି ୫୦ ଲକ୍ଷ ଟଙ୍କା ଆମର ଖର୍ଚ୍ଚ ଆଇଟମ୍‌ରେ ସୁଧ ହିସାବରେ ହିସାବ କରଯାଇଛି ଏବଂ ଯାହା ଖର୍ଚ୍ଚ ହୋଇ ଆସୁଛି, ସୁଧ ଉପରେ ମଧ୍ୟ ଆମକୁ ଅନେକ ଲକ୍ଷ ଟଙ୍କା ଦେବାକୁ ପଡୁଛି । ଏ ବିଷୟରେ ମାନ୍ୟବର ପ୍ରଧାନ-ମନ୍ତ୍ରୀ ଆମକୁ ବିଶେଷ କିଛି ସୂଚନା ଦେବେ କି ? ଯଦି ଏଗ୍ରିମେଣ୍ଟ ପ୍ରକୃତରେ ଏହି ପ୍ରକାରର ହୋଇଥାଏ ଯାହାକି ତଦାନୀନ୍ତନ ପ୍ରଧାନମନ୍ତ୍ରୀ କହିଥିଲେ ତାହାହେଲେ ଆମକୁ ଏଇ ୫୦ ଲକ୍ଷ ଟଙ୍କା କେବଳ ନୁହେଁ, ତା ସାଙ୍ଗରେ ସୁଧ ମିଶାଇ ବର୍ଷକୁ ବର୍ଷ ଖର୍ଚ୍ଚ କରଯାଉଛି କାହିଁକି ?

ତା'ପରେ ପୁନର୍ବସତି ବିଷୟରେ ମୁଁ ସାମାନ୍ୟ କେତେକ କଥା କହି ମୋର ବକ୍ତବ୍ୟ ଶେଷ କରିବି । ଗତକାଲି ମାନ୍ୟବର ପ୍ରଧାନମନ୍ତ୍ରୀ କହିଥିଲେ ଯେ ଶତକଡା ୬୦ ଲୋକ ପୁନର୍ବସତି ଜାଗାକୁ ଯିବାକୁ ଚାହୁଁ ନାହାନ୍ତି କାହିଁକିନା, ସେମାନେ ମୂଲିଆ କାମକରି ବେଶୀ ରୋଜଗାର କରୁଛନ୍ତି, ଏହି ଶତକଡା ୬୦ ଲୋକ ସେଠାକୁ ଯାଇ ଚାଷ ନକଲେ ସେମାନଙ୍କର ସୁବିଧା ହେବ ନାହିଁ । କିନ୍ତୁ ସେମାନେ ଯାଉ ନାହାନ୍ତି । କେତେକ ଓକିଲ ଶ୍ରେଣୀୟ ଲୋକ ଏବଂ କେତେକ ନ୍ୟସ୍ତସ୍ୱାର୍ଥ ଶ୍ରେଣୀୟ ଲୋକ ଏ ବିଷୟରେ ଲାଭ ଉଠାଇ ନେବା ଉଦ୍ଦେଶ୍ୟରେ ଅଛନ୍ତି ସେମାନେ ଲୋକମାନଙ୍କୁ ମତାଇ ଦେଉଛନ୍ତି ଯେ ତମେ ଏପରି ଭାବରେ ଟଙ୍କା ନିଅ ନାହିଁ । କିଛି ସମୟ ଅପେକ୍ଷା କର । ତାହାହେଲେ ତୁମକୁ କ୍ଷତିପୂରଣ ବେଶୀ ମିଳିବ । ମୁଁ ପ୍ରଧାନମନ୍ତ୍ରୀଙ୍କୁ କେବଳ ଏତିକିମାତ୍ର କହିବାକୁ ଚାହେଁ ଯେ ତାଙ୍କର ଏହିସବୁ ବ୍ୟଙ୍ଗୋକ୍ତି ଓ ବିଦ୍ରୁପୋକ୍ତିର ଉତ୍ତର ଯଦି ସେ ପାଇବାକୁ ଚାହାନ୍ତି, ତାହାହେଲେ ଆସନ୍ତା ଏପ୍ରିଲ ମାସରେ ଇଲେକ୍‌ସନ ହୋଇଥିଲେ ସମ୍ବଲପୁର ଓ ବୁଡ଼ି ଅଞ୍ଚଳର ଲୋକେ ତାର ଉପଯୁକ୍ତ ଜବାବ ଦେଇ ପାରିଥାନ୍ତେ । ମୁଁ ଆଶା କରୁଛି, ଯଦି ପ୍ରକୃତରେ ଆସନ୍ତା ନଭେମ୍ବର-ଡ଼ିସେମ୍ବର ମାସରେ ଇଲେକ୍‌ସନ ହୁଏ, ଏହି ରିହାବିଲିଟେସନ ବିଷୟରେ ତାଙ୍କର ବ୍ୟଙ୍ଗୋକ୍ତି ଓ ବିଦ୍ରୁପୋକ୍ତିର ଯଥାର୍ଥ ଉତ୍ତର ପାଇ ପାରିବେ ।

ତା'ପରେ ଓଡ଼ିଆମାନଙ୍କର ନିଯୁକ୍ତି ନେଇ କୁହାଯାଇଛି ଯେ ହୀରାକୁଦ ଯୋଜନାରେ ଚିଫ୍ ଇନ୍‌ଜିନିଅରଙ୍କରୂପେ କାମ କରିବାକୁ କୌଣସି ଯୋଗ୍ୟ ଲୋକ ଆମ ଓଡ଼ିଶାରେ ନାହାନ୍ତି । ଆମ ଓଡ଼ିଶାରେ ସେପରି ଲୋକ ନାହାନ୍ତି ମୁଁ ସ୍ୱୀକାର କରୁଛି । ପୁଣି କୁହାଯାଉଛି ସେଠାରେ ସୁପରିଟେଣ୍ଡିଂ ଇନ୍‌ଜିନିଅର ରୂପେ କାମ କରିବା ଭଳି ଆମ ଓଡ଼ିଶାରେ ଯୋଗ୍ୟଲୋକ ନାହାନ୍ତି । ତା' ବି ମୁଁ ମାନୁଛି । ପୁଣି କୁହାଯାଉଛି ସେଠାରେ Assistant Engineer ଏପରି କି Supervisor ରୂପେ କାମ କରିବା ଭଳି ଆମ ଭିତରେ ଯୋଗ୍ୟ ଲୋକ ଯଥେଷ୍ଟ ସଂଖ୍ୟାରେ ନାହାନ୍ତି । ଏ ସବୁ ମୁଁ ସ୍ୱୀକାର କରୁଛି । କିନ୍ତୁ ଯଦି କୁହାଯାଏ ଆମ ଓଡ଼ିଆଙ୍କ ଭିତରେ କ୍ଲର୍କ ବା କିରାନୀ ହେବା ପାଇଁ ଲୋକ ନାହାନ୍ତି ତେଣୁ ସେଠି ବାହାରୁ ଲୋକଙ୍କୁ ଆଣି ନିଯୁକ୍ତି କରାଯାଉଛି ତା' ହେଲେ ମୁଁ ଏଟା ସତ୍ୟର ଅପଳାପ ବୋଲି କହିବି । ଗୋଟିଏ ପ୍ରଶ୍ନର ଉତ୍ତରରେ ମାନ୍ୟବର ପ୍ରଧାନମନ୍ତ୍ରୀ କହିଛନ୍ତି କି ହୀରାକୁଦରେ ଯେଉଁ ୧୧୧ ଜଣ କିରାନୀ କାମ କରନ୍ତି ସେଥି ମଧ୍ୟରୁ ପଞ୍ଜାବୀ ସଂଖ୍ୟା ହେଉଛି ୫୯, ଓଡ଼ିଆ ୧୮ ଓ ଅନ୍ୟାନ୍ୟ ଜାତିର ୩୪ ଅଛନ୍ତି । ତା' ଅର୍ଥ ଓଡ଼ିଆ କିରାନୀଙ୍କ ସଂଖ୍ୟା ଅତି ତୁଚ୍ଛ, ଅଥଚ ଏହି ଦୋଷ ତ୍ରୁଟି ଦେଖାଇଲା ବେଳେ Constitutionର ଦୁହାଇ ଦେଇ ଆମକୁ କୁହାଯାଉଛି ତୁମେ ଭେଦଭାବ ସୃଷ୍ଟିକରୁଛ, ତେଣୁ କଣ ହେଉଛି ନା, ଯୋଗ୍ୟତା ବିହୀନ ବାହାରୁ ବନ୍ଧୁବାନ୍ଧବ, ପ୍ରିୟାପାତ୍ରମାନଙ୍କୁ ଅଣାଇ କାର୍ଯ୍ୟରେ ଲଗାଯାଉଛି । କିରାନୀ ହେବାପାଇଁ କୌଣସି Technical Knowledge ଦରକାର ନାହିଁ । କିରାନୀମାନଙ୍କର କାମ ପ୍ରାୟ ସବୁ ଅଫିସରେ ଏକାପରି ତେଣୁ ଏଠି କାହିଁକି ପାତରଅନ୍ତର କରି ଓଡ଼ିଆମାନଙ୍କୁ କିରାନୀ କାମରୁ ବଞ୍ଚିତ କରାଯାଉଛି । ତେଣୁ ଏ ଏ ବିଷୟରେ ସରକାର ପୁନର୍ବିଚାର କରିବେ ବୋଲି ଆଶା କରୁଛି ।

Shri SHRADHAKAR SUPAKAR : ମାନ୍ୟବର ସଭାନେତ୍ରୀ ମହାଶୟା, ଏହି ଓଡ଼ିଶା ସରକାରଙ୍କର ଶିଳ୍ପ ନୀତି ବିଷୟରେ କହିବାକୁ ଯାଇ ମାନ୍ୟବର ପ୍ରଧାନମନ୍ତ୍ରୀଙ୍କର ବଜେଟ ଭାଷଣ ପ୍ରତି ଦୃଷ୍ଟି ଆକର୍ଷଣ କରୁଛି । ସେଥିରେ ସେ କହିଛନ୍ତି ଯେ ଆମର ବଡ ବଡ ଶିଳ୍ପର ସମୃଦ୍ଧି କରିବା ପାଇଁ ଆମେ ଚେଷ୍ଟା କରୁଛୁ ଏବଂ ଏ ବିଷୟରେ ସେ ମଧ୍ୟ କହିଥିଲେ ଯେ Orient Paper Mill ଏ ମଧ୍ୟରେ ତାଙ୍କର ଉତ୍ପାଦନ ବୃଦ୍ଧି କରିଛନ୍ତି । ସେ ଆହୁରି ମଧ୍ୟ କହିଲେ ଆଉ ଦୁଇଟି ନୂଆ କାଗଜ କଳ ବସାଇବାର ଚେଷ୍ଟା ବା ଉଦ୍‌ଯୋଗ କରାଯାଉଛି । ମୁଁ ଆଶାକରେ ଏହି ନୂଆ କାଗଜ କଳ ଦୁଇଟିରୁ ଗୋଟିଏ ମହାନଦୀ କୂଳରେ ବା ବ୍ରାହ୍ମଣୀ କୂଳରେ ଆଉ ଗୋଟିଏ ବୈତରଣୀ କୂଳରେ ବସାଇଲେ ସେମାନେ ଭଲ କାମ କରିବେ ଓ ସେପରିକି ସେହି ନଦୀ କୂଳମାନଙ୍କରେ ବାସ କରୁଥିବା ଲୋକମାନେ ସ୍ପଷ୍ଟ ଭାବରେ ବୁଝି ପାରିବେ ଯେ ପ୍ରକୃତରେ ଆମ ଦେଶରେ ଶିଳ୍ପର ସମୃଦ୍ଧି ହେଉଛି । ଅବଶ୍ୟ ମଝିରେ ମଝିରେ ପ୍ରେସ୍‌କମ୍ୟୁନିକ୍ ରିପୋର୍ଟ ବାହାରିଥିବ ସେ ପାଣିକଳରୁ ବାହାରୁଥିବା ମଇଳା ମିଶିଲେ ସୁଦ୍ଧା ଏ ନଦୀମାନଙ୍କର ପାଣି ମଇଳା ହେଉନାହିଁ । ଯାହାହେଉ ଯଦି ଏହି ପ୍ରକାର ବଡ଼ ବଡ ଶିଳ୍ପର ଉନ୍ନତି ହୁଏ ତାହାହେଲେ

ଆମ ଦେଶର ଅବସ୍ଥା କ'ଣ ହେବ, ତାହା କହିବା ମୁସ୍କିଲ୍ । ଏହି ବଡ଼ ବଡ଼ ଶିଳ୍ପର ଉନ୍ନତି ଦିଗରେ ଯାହା କରଯାଉଛି ଏବଂ ଯେପରି ଭବରେ କାର୍ଯ୍ୟ ଅଗ୍ରସର ହେଉଛି, ତାକୁ ଦେଖିଲେ ମନରେ ଘୋର ନୈରାଶ୍ୟ ଆସେ । କାରଣ କାର୍ଯ୍ୟର ଗତିରୁ ଯାହା ଦେଖା ଯାଉଛି ସେଥିରେ ଲୋକଙ୍କ ମନରେ ଘୋର ସନ୍ଦେହ ଜାତ ହେଉଛି । ପ୍ରକୃତରେ ଆମର ଡିରେକ୍ଟିଭ ବା କଣ୍ଟ୍ରୋଲ ନାହିଁ । ଶିଳ୍ପ ଉପରେ ସରକାରଙ୍କର ମୋଟେ କଣ୍ଟ୍ରୋଲ ନାହିଁ । ଏହି ଶିଳ୍ପ ନୀତି ଯେପରି ଭବରେ ସରକାର ପ୍ରୟୋଗ କରୁଛନ୍ତି, ସେଥିରେ ଯେ ଦିନେ ଆମର ଏକନମି ଧ୍ୱଂସ ପାଇବ, ଏହା ଅସମ୍ଭବ ନୁହେଁ । ଏହା କେବଳ ସରକାରଙ୍କ ଅଯୋଗ୍ୟତା ଯୋଗୁଁ ଘଟିବ । ଆମ ସରକାର ଯେପରି ଭବରେ ଶିଳ୍ପ ନୀତିର ନିୟନ୍ତ୍ରଣ କରୁଛନ୍ତି ହୁଏତ କେହି ମନେ କରୁଥିବେ ଯେ ଆମ ଦେଶ ଏ ଶିଳ୍ପ ଦିଗରେ ଦିନକୁ ଦିନ ଅଧିକ ବିଜୟ ଲଭ କରିବ । ଦିନ ଆସିବ ଯେତେବେଳେ ଆମର ଆଉ କିଛି ଅସୁବିଧା ରହିବ ନାହିଁ । ଚାରିଆଡେ ବଡ଼ ବଡ଼ ଶିଳ୍ପ ସ୍ଥାପିତ ହେବ । କଳ କାରଖାନାରେ ଆମ ଦେଶ ପୂର୍ଣ୍ଣ ହୋଇଯିବ । କିନ୍ତୁ ସରକାରଙ୍କର ଯେଉଁ ନିୟନ୍ତ୍ରଣ ପ୍ରଣୟନ ଦକ୍ଷତା ସେଥିରୁ ମନରେ ଆଶଙ୍କା ହେଉଛି ଯେ ହୁଏତ ଶୀଘ୍ର ଦିନ ଆସିବ, ଯେତେବେଳେ ଆମର ଏହି ଶିଳ୍ପ ଉନ୍ନତି କରିବାର ଆଶା ଆକାଙ୍କ୍ଷା ଭରସା ସଂପୂର୍ଣ୍ଣ ଭବରେ ଅସ୍ତମିତ ହୋଇଯିବ ।

ତା'ରପର ପ୍ରଥମ କାରଣ ହେଉଛି ସରକାର ଏହିସବୁ ଶିଳ୍ପ ସେପରୁ ଭବରେ ନିୟନ୍ତ୍ରଣ କରିବାର କଥା କରୁନାହାନ୍ତି । ସରକାରୀ କର୍ତ୍ତୃପକ୍ଷଙ୍କର ପ୍ରୀୟାପ୍ରୀତି ବନ୍ଧୁବାନ୍ଧବ ଭବ ଘେନି ଅନେକ ପରିମାଣରେ ଏହି ନୀତି ପ୍ରଚଳନ କରଯାଉଛି । ଏ ବିଷୟରେ ବାହାରେ ବହୁତ ଗନ୍ୟମାନ୍ୟ ବ୍ୟକ୍ତି ସରକାରଙ୍କ କାର୍ଯ୍ୟକଳାପକୁ ସମାଲୋଚନା କରୁଛନ୍ତି ଏବଂ ଏହି ଆସେମ୍ବ୍ଲିରେ ଅନେକ ଥର ଏହି ବିଷୟ ନେଇ ସମାଲୋଚନା, ପର୍ଯ୍ୟାଲୋଚନା ଇତ୍ୟାଦି ହୋଇଯାଇଛି । ଏ ବିଷୟରେ ସରକାର ପ୍ରକୃତରେ ସେହି ସମାଲୋଚନା ପ୍ରତି ଦୃଷ୍ଟି ଦେବାର ଆବଶ୍ୟକ ନାହିଁ, କେବଳ ଆସେମ୍ବ୍ଲି ପ୍ରୋସିଡ଼ିଙ୍ଗସର କେତେକ ଅଂଶ ଉଠାଇ ଦେଇ ଥିବାରୁ ଲୋକଙ୍କ ମନରୁ ସେହି ସନ୍ଦେହ ଆଶଙ୍କା କଦାପି ଦୂର ହୋଇ ପାରିବ ନାହିଁ, ଏତ ଗଲା ବଡ଼ ବଡ ଶିଳ୍ପ କଥା, ବର୍ତ୍ତମାନ ଛୋଟ ଛୋଟ ଶିଳ୍ପ ଉନ୍ନତି ସକାଶେ ଅଧିକ ଯୋଜନା ହେଉଛି ବୋଲି କୁହା ଯାଉଛି, ସେ ଦିଗରେ ମଧ୍ୟ କୌଣସି ଯଥାର୍ଥ ଯୋଜନା ନାହିଁ, ଉଦାହରଣ ସ୍ୱରୂପ ମୁଁ କହିପାରେ ଯେ ଆମ୍ଭ ଦେଶରେ ଅନେକ ଯାଗାରେ ଅନେକ Industrial Schools ଅଛି, ସେହି Industrial School ମାନଙ୍କରୁ ଯେଉଁମାନେ ପାସ୍ କରୁଛନ୍ତି ସେମାନଙ୍କ ଭବିଷ୍ୟତ କଥା କିଏ ଭବୁଛି । ସେମାନେ କିପରି ତାଙ୍କ ଶିକ୍ଷାର ପୂର୍ଣ୍ଣ ଉପଯୋଗୀ ହୋଇ ପାରିବେ, ସରକାର ଏ ବିଷୟ କଦାପି ଭବନ୍ତି ବୋଲି ମୁଁ ଭବୁନାହିଁ । କାରଣ Sambalpur Industrial Schoolରୁ ପାସ୍ କରୁଥିବା ସାମାନ୍ୟ କେତେଜଣ ଛାତ୍ର ଆସି ମୋତେ କହିଥିଲେ ଆମେତ ପାସ୍ କଲୁ, ବର୍ଷ ବର୍ଷ ଧରି ଶିକ୍ଷାଲଭ କଲୁ କିନ୍ତୁ କାର୍ଯ୍ୟରେ ଲଗିବାକୁ କୌଣସି ଅସୁବିଧା ଆମର ନାହିଁ । ଆମ୍ଭେ

ଯଦି Permit ପାଇଁ ଦରଖାସ୍ତ କରୁଅଛୁ ତାହାହେଲେ ଆମମାନଙ୍କୁ ଦିଆଯାଉ ନାହିଁ । ଏପରି ଅବସ୍ଥାରେ ଯଦି ଶିକ୍ଷାଲାଭ କରନ୍ତି ଏବଂ ଏମାନଙ୍କୁ କୌଣସି କାମରେ ଲଗାଇବାକୁ ସୁବିଧା ସୁଯୋଗ ନ ଦିଅନ୍ତି ତାହାହେଲେ ଆମର ଶିକ୍ଷା ଦିଗରେ ଏବଂ ଛୋଟ ଛୋଟ ଶିଳ୍ପ ଦିଗରେ ଦେଶକୁ ସମୃଦ୍ଧ କରିବା ପାଇଁ, ଦେଶକୁ ଉନ୍ନତି କରିବା ପାଇଁ ଯେଉଁ ଯୋଜନା ହେଉଛି ସେ ଯୋଜନା ସମ୍ପୂର୍ଣ୍ଣ ଅନିଶ୍ଚିତ ଏବଂ ନିରର୍ଥକ ହେବ । ସେଥିପାଇଁ କହୁଛି, ଛୋଟ ଛୋଟ ଶିଳ୍ପର ଉନ୍ନତି କରିବାକୁ ଇଚ୍ଛାଥିଲେ, ପ୍ରଥମ କଥା ଦେଖିବା ଉଚିତ୍ ଯେ ଆମ ଷ୍ଟେଟରେ ଯେତେ ଯେତେ ଟେକ୍‌ନିକାଲମେନ ଶିକ୍ଷା ପାଇ ବାହାରୁଛନ୍ତି କିପରି ଦେଶର ସମୃଦ୍ଧି ଦିଗରେ ସେମାନଙ୍କୁ ବିନିଯୋଗ କରଯାଇ ପାରିବ, ସେଇଟା ଦେଖିବା ବର୍ତ୍ତମାନ ସରକାରଙ୍କ ପ୍ରଧାନ କର୍ତ୍ତବ୍ୟ । ଖାଲି ଶିକ୍ଷାରେ ଖର୍ଚ୍ଚ କରୁଛୁ ବୋଲି ଆମେ ବଜେଟ କରିଦେଲେ ହେବନାହିଁ । ତା'ପରେ ଆଉ ଗୋଟିଏ ଛୋଟ କଥା ମୁଁ କହିବି । ଏହି ବଜେଟରେ ଆମର କୋଡ଼ିଏ ଲକ୍ଷ ଖର୍ଚ୍ଚର ବ୍ୟବସ୍ଥା ହୋଇଅଛି । କିନ୍ତୁ ଆୟ ହୋଇଅଛି ମୋଟେ ଗ୍ଭରି ଲକ୍ଷ କେତେ ହଜାର । ଏହି ଆୟ ଯେପରି ଧୀରେ ଧୀରେ ବଢ଼େ ଏବଂ ବ୍ୟୟ ସଙ୍ଗେ ସମାନ ହୁଏ ସେଥିପ୍ରତି ସରକାର କୌଣସି ଦୃଷ୍ଟି ଦେଇଥିବା ଜଣା ପଡୁନାହିଁ । କାରଣ ମୁଁ ଦେଖୁଅଛି, ଶିଳ୍ପ ବିଭାଗରେ ଯାହା ଆୟ ଦୁଇ-ତିନି ବର୍ଷ ପୂର୍ବରେ ଥିଲା, ସେଟା ଧୀରେ ଧୀରେ କମି କମି ଗ୍ଭଲିଛି ଏବଂ ବ୍ୟୟ ବଢ଼ି ବଢ଼ି ଗ୍ଭଲିଛି । ବ୍ୟୟ ପାଇଁ କିଛି ଆପତ୍ତି ନାହିଁ । ସେ ତୁଳନାରେ ଆୟ ଦିନୁ ଦିନୁ ବଢ଼ିବା ଉଚିତ୍ । ଏହା ଯେପରି Self Sufficient ହୁଏ ସରକାର ସେଥିପ୍ରତି ତତ୍ପର ହେବେ ବୋଲି ମୋର ଆଶା ।

Shri SHRADHAKAR SUPAKAR: ମାନ୍ୟବର ସଭାପତି ମହୋଦୟ, ମୋ ନାମରେ ଯେଉଁ ଦୁଇଟି କାଟ ପ୍ରସ୍ତାବ ଅଛି ସେ ଦୁଇଟାଯାକ ମୁଁ ଏକ ସାଙ୍ଗରେ ଆଗତ କରୁଛି । ଏହି ଶିକ୍ଷା ବିଭାଗ Budget ଯେତେବେଳେ ଉପସ୍ଥାପିତ ହୁଏ ମୋର Police ବିଭାଗ Budget ସଙ୍ଗେ ତାହାକୁ ତୁଳନା କରିବାକୁ ଇଚ୍ଛା ହୁଏ । ଆଜି ମଧ୍ୟ ଏ ବିଷୟରେ କେତେକ ସମାଲୋଚନା ମୁଁ କରିବାକୁ ଯାଉଛି ଆଜି ଆମ ଓଡ଼ିଶା ପ୍ରଦେଶରେ ଶାନ୍ତି ଶୃଙ୍ଖଳା ପ୍ରଶ୍ନ କିଛି ନାହିଁ । ଅର୍ଥାତ୍ କୌଣସି ରକମ ଅଶାନ୍ତି ନାହିଁ । ଏ ପ୍ରଶଂସା ଯେ ଖାଲି ଆମ ପ୍ରଦେଶ ଭିତରେ କହନ୍ତି ତାହା ନୁହେଁ । ବାହାରୁ ମଧ୍ୟ ଯେଉଁମାନେ ଆମ ଦେଶରେ ଭ୍ରମଣ କରିବାକୁ ଆସିଥିଲେ, ସେମାନେ ମଧ୍ୟ Certificate ଇତ୍ୟାଦି ଦେଇ ଯାଇଛନ୍ତି ଯେ ଓଡ଼ିଶା ପ୍ରଦେଶରେ ଶାନ୍ତି ଶୃଙ୍ଖଳା ଇତ୍ୟାଦି ସମସ୍ୟା ନାହିଁ । କିନ୍ତୁ ଯେତେବେଳେ ଆମେ ଦେଖିବାକୁ ପାଉଛୁ ଯେ Police ବିଭାଗରେ ଯେତେ ଖର୍ଚ୍ଚ ହେଉଛି, ଶିକ୍ଷା ବିଭାଗରେ ତାଠାରୁ ଅନେକ କମ୍ ଖର୍ଚ୍ଚ ହେଉଛି । ଅବଶ୍ୟ ଆମ ବଜେଟ ହିସାବରୁ ଦେଖାଯାଉଛି, Police Budget ରେ ଯେତେବେଳେ Demand ଆସିଛି ଟ 1,35,52,470 ଙ୍କା ଶିକ୍ଷା ବିଭାଗରେ ଆସିଛି, ଟ 1,36,35,088 ଙ୍କା । କିନ୍ତୁ ବାସ୍ତବରେ ଭିତିରେଇ କରି ଦେଖିଲେ ଦେଖାଯାଉଛି ଯେ ଶିକ୍ଷା ବିଭାଗଠାରୁ Police ଶାନ୍ତି ଶୃଙ୍ଖଳା

ରକ୍ଷାରେ ବହୁତ ବେଶୀ ଖର୍ଚ୍ଚ ହେଉଛି । ଉଦାହରଣ ସ୍ୱରୂପ ମୁଁ କହେ ଯେ ଶିକ୍ଷା ବିଭାଗରେ ଯେଉଁ କୋଠାବାଡ଼ି ଅଛି ସେ ବାବଦରେ ରଖାଯାଇଛି ଟ 1,87,267 ଙ୍କା ଏବଂ 1950-51 ହିସାବରେ ଦେଖାଯାଉଛି ଯେ 4 ଲକ୍ଷ 82 ହଜାର and odd, କିନ୍ତୁ Police ବିଭାଗରେ ଦେଖାଯାଉଛି କେବଳ Working Progress ପାଇଁ 15 ଲକ୍ଷ ଟଙ୍କା ରଖାଯାଇଛି । ଅର୍ଥାତ୍ ଶିକ୍ଷା ବିଭାଗରେ ଖର୍ଚ୍ଚ Police ବିଭାଗ ଖର୍ଚ୍ଚ ତାଠାରୁ 8/10 ଗୁଣ, ଏହିପରି ଅନ୍ୟାନ୍ୟ ଯେଉଁ କୋଠାବାଡ଼ି ଇତ୍ୟାଦିରେ ଖର୍ଚ୍ଚ କରଯାଉଛି ତାହା ଯଦି ହିସାବ କରଯାଏ ଦେଖାଯିବ ଶିକ୍ଷା ବିଭାଗରେ କମ୍ ଖର୍ଚ୍ଚ ହେଉଛି । ଯେତିକି ଖର୍ଚ୍ଚ ହେବାର କଥା ତାଠାରୁ ଅନେକ କମ୍ ଖର୍ଚ୍ଚ ହେଉଛି । ଶିକ୍ଷା ବିଭାଗର ଯାହା ଫିଜ୍ ଆଦିରେ ଆଦାୟ ହୁଏ ତାହାକୁ କାଟି ଯଦି net ଖର୍ଚ୍ଚ ଧରଯାଏ ଆମେ ଦେଖିବାକୁ ପାଉ ମୋଟ୍‌ରେ ଆମ ଶିକ୍ଷା ବିଭାଗରେ ଆସନ୍ତା ବର୍ଷ ଟ 1,29,33,823 ଙ୍କା ଖର୍ଚ୍ଚ ହେବ କିନ୍ତୁ Police ବିଭାଗରେ ଟ 1,47,51,448 ଙ୍କା ଖର୍ଚ୍ଚ ହେବ । ଏ ସବୁ ବାସ୍ତବିକ ମନରେ ଘୋର ନୈରାଶ୍ୟ ଆଣୁଛି । କିନ୍ତୁ ପ୍ରକୃତରେ ଅନ୍ୟାନ୍ୟ ବିଭାଗ ତୁଳନାରେ ଯେତେ ଟଙ୍କା ଖର୍ଚ୍ଚ ହେବାର କଥା ଏବଂ ଏ ବିଭାଗକୁ ଯେତେ ଗୁରୁତ୍ୱ ଦେବାର କଥା ସେତେ ଆମେ ଦେଇ ପାରୁ ନାହୁଁ । କିନ୍ତୁ କେବଳ ଖର୍ଚ୍ଚ ବିଷୟରେ ଏହି ବିଭାଗ ପ୍ରତି ବେଶୀ ଜୋର ।

ତା'ପରେ ଯେତିକି ଖର୍ଚ୍ଚ ହେଉଛି, ତାକୁ ଯଦି ଆମେ ଦେଖୁ ଆମେ ଦେଖିବା ଯେ ତା'ର କେତେକ ଅଂଶ ବିଶ୍ୱ ବିଦ୍ୟାଳୟ ଶିକ୍ଷ୍ୟାରେ, କେତେକ ଅଂଶ ମାଧ୍ୟମିକ ଶିକ୍ଷାରେ ଏବଂ କେତେକ ଅଂଶ ପ୍ରାଥମିକ ଶିକ୍ଷାରେ ଖର୍ଚ୍ଚ ହେଉଛି । ସେଥିରେ ଆମେ ଦେଖିବାକୁ ପାଇବା ଯେ net ଖର୍ଚ୍ଚ ହିସାବର ପ୍ରାଥମିକ ଶିକ୍ଷାରେ ଆମର ଟ 29,053,000 ଙ୍କା ମାଧ୍ୟମିକ ଶିକ୍ଷାରେ ଟ 28,64,055 ଙ୍କା Univeisity Education ରେ net ଖର୍ଚ୍ଚ ଟ 13,27,000 ଙ୍କା ଖର୍ଚ୍ଚ ହେଉଛି । ଗତ କେତେ ବର୍ଷ ଖର୍ଚ୍ଚ ସହିତ ତୁଳନା କରି ଦେଖିଲେ ଦେଖିବା ଯେ ପ୍ରାଥମିକ ଶିକ୍ଷା ହେଉ ବା ମାଧ୍ୟମିକ ଶିକ୍ଷା ହେଉ ବା University ଶିକ୍ଷା ହେଉ, କୌଣସି ବିଭାଗରେ ଖର୍ଚ୍ଚ ସନ୍ତୋଷଜନକ ଭାବରେ ବଢ଼ିନାହିଁ । ଅପର ପକ୍ଷରେ ଦେଖା ଯାଉଛି, ଗତବର୍ଷ ଆମର ବଜେଟରେ ଯେତେ Provision କରା ହୋଇଥିଲା ଟ $1\frac{1}{3}$ କୋଟି, ତହିଁରୁ 15 ଲକ୍ଷ କମାଇ ଦିଆଯାଇଛି । ଆମେ ଯଦି ଏପରି ଭାବରେ ଚାଲୁ, ଆମର ଯାହା ଲକ୍ଷ୍ୟ ଯେ ସମସ୍ତେ କିପରି ଭାବରେ ଶିକ୍ଷା ପାଇ ପାରିବ, ଅନ୍ତତଃ ପ୍ରାଥମିକ ଶିକ୍ଷା କିପରି ଭାବରେ ସମସ୍ତଙ୍କୁ ଦିଆଯାଇ ପାରିବ, ଏହି ଯେ ଲକ୍ଷ୍ୟ ସେ ଲକ୍ଷ୍ୟ, କିପରି ଭାବରେ ଏବଂ କେବେ ହାସଲ କରିବ, କେତେ ଶହ ବର୍ଷ ଯେ ଲାଗିବ ତା'ର ଧାରଣା ପ୍ରକୃତରେ ମୁଁ କରିପାରୁ ନାହିଁ । ତା'ପରେ adult education ବିଷୟରେ ଜଣେ ମାନ୍ୟବର ସଭ୍ୟ କହିଯାଇଛନ୍ତି, ମୁଁ ସେ ବିଷୟରେ ବିଶେଷ କିଛି ନ କହି ଏ ସରକାରଙ୍କୁ ଏତିକି ମାତ୍ର ଅନୁରୋଧ କରିବି ଆମ୍ଭମାନଙ୍କ ସମ୍ମୁଖରେ facts and figures, ଉପସ୍ଥାପିତ କରନ୍ତୁ ଏବଂ ଆମର literacy, primary education ରେ ହେଉ ବା adult educationରେ

ହେଉ, ପ୍ରକୃତରେ literacy ବଢ଼ିଛି କି ନାହିଁ ଏବଂ ସେ ବିଷୟରେ ପ୍ରକୃତରେ କି ପ୍ରକାର ବ୍ୟବସ୍ଥା କରିଛନ୍ତି । ଅନ୍ତତଃ ଆଦୂର ଭବିଷ୍ୟତରେ ଯେପରି ସମସ୍ତେ ସାକ୍ଷର ହୋଇପାରିବେ ଯାହା କି ଆମର ପ୍ରତ୍ୟେକ ଲୋକ ସରକାରଙ୍କଠାରୁ ଆଶା କରନ୍ତି । ପ୍ରତ୍ୟେକ ଲୋକର ଖାଇବାରେ, ପିନ୍ଧିବାରେ ଯେ ମୌଳିକ ଅଧିକାର ଅଛି, ତା'ଠାରୁ ବେଶି ଅଧିକାର ଅଛି ସେ ପ୍ରତ୍ୟେକ ଲୋକ ଯେପରି ଖୁବ କମରେ ପ୍ରାଥମିକ ଶିକ୍ଷା ପାଇପାରିବେ ଏବଂ ନିରକ୍ଷର ନ ହୋଇ ରହେ ସେ ବିଷୟ ପ୍ରତି ବିଶେଷ ଦୃଷ୍ଟି ଦେବା ଆବଶ୍ୟକ ଏବଂ ଏ ବିଷୟରେ ଯେଉଁ ମାନ୍ୟବର ମନ୍ତ୍ରୀ ଏ ଗୃହରେ fact and figures ଅଛି ତାହା ଉପସ୍ଥାପିତ କରିବେ ବୋଲି ମୁଁ ଆଶା କରେ ।

ସମ୍ବଲପୁର କଲେଜ ବିଷୟରେ ଦୁଇ ପଦ କହିବା । ଏହି ବିଷୟରେ ଏ ମଧ୍ୟରେ ଗୋଟିଏ Trust Committee ର meeting ହୋଇଯାଇଛି ଏବଂ ସେଥିରେ ସଭାପତି ସମ୍ବଲପୁର ଜିଲ୍ଲା ମାଜିଷ୍ଟ୍ରେଟ ଏବଂ Northern Divisional Commissioner, ସେମାନେ ସମସ୍ତେ ମିଳି ଗୋଟିଏ Site selection finally କରିଛନ୍ତି । ସେ ବିଷୟରେ କଲେଜ କମିଟି ପକ୍ଷରୁ ପ୍ରାଥମିକ କାର୍ଯ୍ୟାନୁଷ୍ଠାନ ପାଇଁ ଖର୍ଚ୍ଚ କରିବାର ବ୍ୟବସ୍ଥା ହେଉଛି । ଏ ବିଷୟରେ ସରକାର ଯେପରି ଭବରେ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କରିବେ ଏବଂ ଏବିଷୟରେ ଅତି ଚଞ୍ଚଳ, ଅତି ଶୀଘ୍ର ଯେପରି କରା ହୁଏ । (Interrupted)

Shri SHRADHAKAR SUPAKAR: ନା ବର୍ତ୍ତମାନ Site Selection Committee ଏବଂ Trust Committee ମିଳିମିଶି ଅନ୍ୟ ଗୋଟିଏ Final Site Selection କରୁଛନ୍ତି । ମୁଁ ଅନୁରୋଧ କରୁଛି ଯେପରି ସେ କାର୍ଯ୍ୟ ଶେଷ ହୁଏ ସେ ବିଷୟରେ ଶୀଘ୍ର ଦୃଷ୍ଟି ଦେବେ ।

ତା'ପରେ ମୁଁ କହିବାକୁ ଗୃହେଁ ଯେ ସଂସ୍କୃତ ଶିକ୍ଷା ବା ବିଶ୍ୱବିଦ୍ୟାଳୟ ଶିକ୍ଷାକୁ ଯାହା ସାହାଯ୍ୟ ଦିଆଯାଉଛି, ତାହା ଅତି କମ । ଏ ଦୁଇଟି କ୍ରମବର୍ଦ୍ଧିଷ୍ଣୁ ଅନୁଷ୍ଠାନକୁ ସରକାର ବିଶେଷ ସାହାଯ୍ୟ ଦେବେ ।

Shri SHRADHAKAR SUPAKAR: ମାନ୍ୟବର ସଭାପତି ମହାଶୟ ମୋ ନାମରେ ଯେଉଁ କାଟ ପ୍ରସ୍ତାବ ସବୁ ଅଛି, ମୁଁ ସେ ସବୁ ଆଗତ କରୁଛି । ଏ ଜେନେରଲ ଆଡ୍‌ମିନିଷ୍ଟ୍ରେସନ ବିଷୟରେ କହିବାକୁ ଗଲେ ଅନେକ ସମୟ ଦରକାର । କିନ୍ତୁ ମୁଁ ଭବୁଛି ଏ ବିଷୟରେ, ବିଶେଷ ସମୟ ନ ନେଇ ସାମାନ୍ୟ କେତେକ ବିଷୟ ପ୍ରତି ଆପଣଙ୍କର ଏବଂ ବିଭାଗୀୟ କର୍ତ୍ତୃପକ୍ଷଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରୁଛି । ପ୍ରଥମ କଥା ହେଉଛି ଏହି ଆସେମ୍ବ୍ଲି ଗୃହରେ ଯେଉଁ ସବୁ ପ୍ରଶ୍ନୋତ୍ତର ହୁଏ ସେ ବିଷୟରେ ମୁଁ ବିଶେଷଭବରେ ଆଲୋଚନା କରିବି । କାହିଁକି ନା ମୁଁ ଦେଖୁଛି ଯେ ପ୍ରଶ୍ନୋତ୍ତର

ଯେଉଁଥିପାଇଁ ହେଉଛି ତା'ର ଉଦ୍ଦେଶ୍ୟ ମୋଟେ ସାଧିତ ହୋଇ ପାରୁନାହିଁ । ଯେଉଁମାନଙ୍କର ପ୍ରଶ୍ନର ଉତ୍ତର ଦିଆଯାଉଛି ଏବଂ ଯେଉଁ ପ୍ରଶ୍ନର ଉତ୍ତର ପ୍ରଧାନମନ୍ତ୍ରୀ ନିଜେ ନିଜର ଦାୟିତ୍ୱ ନେଇ ଦେଉଛନ୍ତି ଏବଂ ସେ ପ୍ରଶ୍ନର ଉତ୍ତର ଯେଉଁମାନେ ଯୋଗାଉଛନ୍ତି, ସେମାନେ ସତ୍ୟ ପ୍ରତି ମୋଟେ ନଜର ଦିଅନ୍ତି ନାହିଁ ବୋଲି ମୋ ଦୃଢ ବିଶ୍ୱାସ । ସେମାନେ କେବଳ ବିଭାଗୀୟ ମନ୍ତ୍ରୀମାନଙ୍କୁ ଖୁସି କରିବାରେ ଏବଂ କୌଣସି ପ୍ରକାରେ ନିଜର କାମ ହାସଲ କରିବାରେ ବ୍ୟସ୍ତ ଥାନ୍ତି । ଏଥିରେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଇ ମୁଁ ମାନ୍ୟବର ବିଭାଗୀୟ ମନ୍ତ୍ରୀଙ୍କର ଏ ବିଷୟ ପ୍ରତି ଦୃଷ୍ଟି ଆକର୍ଷଣ କରିବି ।

ତା 23-2-1951 ଦିନ ମୋର ଗୋଟିଏ ପ୍ରଶ୍ନ ଥିଲା—ଯେ ଆର୍ବିଟ୍ରେଟର ନିଯୁକ୍ତି ପାଇଁ ଯେଉଁ ଦରଖାସ୍ତମାନ ପଡ଼ିଥିଲା, ସେଥିଭିତରୁ ସର୍ବପ୍ରଥମ ଦରଖାସ୍ତ କେଉଁଦିନ ପଡ଼ିଥିଲା ? ଏବଂ ଏହାର ଉତ୍ତର ଯେଉଁମାନେ ଯୋଗାଇଥିଲେ, ସେମାନେ ବୋଧହୁଏ ଭାବିଥିଲେ ଯେ ଯଦି ତା 1-12-1950 କୁହାଯାଏ ତାହାହେଲେ ବିଭାଗୀୟ ମନ୍ତ୍ରୀ ସନ୍ତୁଷ୍ଟ ହେବେ । ସେହି ଅନୁସାରେ ଉତ୍ତର ଦିଆଗଲା ଯେ ପ୍ରଥମ ଅର୍ଜି ତା 1-12-1950 ରେ ପଡ଼ିଥିଲା । ସେ ବୋଧହୁଏ ଭାବିଥିଲେ ଯେ ଆମେ ଦେଖିପାରିବା, ଏହାପୂର୍ବରୁ କୌଣସି ଅର୍ଜି ପଡ଼ିନାହିଁ । ତାହାହେଲେ ଆମ ସରକାରଙ୍କ ଉପଯୁକ୍ତ ଯୁକ୍ତି ହେବ, ଯେ ଆର୍ବିଟ୍ରେସନ କିପରିଭାବରେ ନ ପଡ଼ି ଦିନ ଗଡ଼ାଇ ଦେବେ ଏବଂ ସେଥିରେ ସରକାରଙ୍କ ସୁବିଧା ହେବ ବୋଲି ଭାବିଥିଲେ । କିନ୍ତୁ ତା 12-3-1951 ରେ ଆଉ ଗୋଟିଏ ପ୍ରଶ୍ନର ଉତ୍ତରରେ ସେହି ବ୍ୟକ୍ତିମାନେ ଉତ୍ତର ଯୋଗାଇଥିଲେ ଏବଂ ପ୍ରଧାନମନ୍ତ୍ରୀ ସେହି ଉତ୍ତର ଦେଇଥିଲେ ଯେ, 1950 ସାଲ ଅଗଷ୍ଟ, ସେପ୍ଟେମ୍ବର ମାସରେ ମଧ୍ୟ ablitration ଦରଖାସ୍ତ ପଡ଼ିଛି । ଯଦି ଏହିପରି ଭାବରେ ଆମ୍ଭମାନଙ୍କର ସମୟ ଅପବ୍ୟୟ କରାହୁଏ ଏବଂ ପ୍ରଶ୍ନର ଉପଯୁକ୍ତ ଉତ୍ତର ଆମ୍ଭେମାନେ ନ ପାଉଁ ତହାହେଲେ ଏହାର ପ୍ରତିକାର କ'ଣ ? ଆମେ ପ୍ରଶ୍ନୋତ୍ତର ପାଇଁ ଯେଉଁ ଅଧଘଣ୍ଟାଏ ସମୟ ଅପବ୍ୟୟ କରୁଛୁ, ସେହି ସମୟରେ ଯଦି ଆମ୍ଭମାନଙ୍କୁ କୌଣସି ପୁରାଣ ଶୁଣାଯାନ୍ତା ତାହାହେଲେ ଆମର ସମୟ ଭଲଭାବରେ କଟନ୍ତା ବୋଲି ମୁଁ ବିଶ୍ୱାସ କରୁଛି ।

ତା'ପରେ ଆଉ ଗୋଟିଏ ଅଭିଯୋଗ ବାରମ୍ବାର ହୋଇ ଆସିଛି ଯେ ଆମର administration top-heavy ହୋଇଯାଉଛି । ଆମ ପ୍ରଦେଶରେ ଯେତିକି I. A. S. Officer ରହିବାର କଥା ତାହାଠାରୁ ଢେର ବେଶୀ ରହୁଛନ୍ତି ଏବଂ ଅନ୍ୟାନ୍ୟ ସ୍ଥାନରୁ ସେମାନଙ୍କୁ ଆମଦାନୀ କରାଯାଉଛି । ସେମାନଙ୍କର ମୋଟେ ଅଭିଜ୍ଞତା ନାହିଁ । ସେମାନେ extremely raw hands ଏପରି ଅନଭିଜ୍ଞ ଅଫିସରଙ୍କୁ ଜିଲ୍ଲାମାନଙ୍କର charge ଦିଆଯାଉଛି । ସେମାନଙ୍କର order sheet ଲେଖିବାର ଯୋଗ୍ୟତା ନାହିଁ । ଏଥିପାଇଁ ସେମାନେ ପେସ୍କାର ବା କିରାନୀଙ୍କର ଉପରେ ନିର୍ଭର କରୁଛନ୍ତି ଅଥଚ ସେମାନଙ୍କୁ

District chargeହିଁ ଦିଆଯାଉଛି । ଏହାର ପ୍ରଧାନ କାରଣ ହେଉଛି ଯେ ସରକାରଙ୍କର Supervision ର ଅଭାବ । ଯେଉଁମାନଙ୍କୁ ଯେଉଁ କାର୍ଯ୍ୟର charge ଦିଆଯାଉଛି ସେମାନଙ୍କର ସେ ଯୋଗ୍ୟତା ଅଛି କି ନାହିଁ ସେ କଥା କେହି ବୁଝୁନାହିଁ । ଖାଲି I. A. S. ହେଲେ ବୋଲି ତାଙ୍କୁ ସେ ପୋଷ୍ଟ ଦେଇ ଦିଆହୋଇଛି । ଏହି I. A. S. Officer ମାନଙ୍କୁ ଅନ୍ୟାନ୍ୟ ସ୍ଥାନରୁ ଆଣିବା ଫଳରେ ଆମ ପ୍ରଦେଶରେ ଏ ଯେଉଁ ଅଭିଜ୍ଞ ଅଫିସର ଅଛନ୍ତି, ସେମାନେ ସେମାନଙ୍କର ଅଭିଜ୍ଞତା ଦେଖାଇବାରେ ଓ ଶାସନ କାର୍ଯ୍ୟ ପରିଚାଳନା କରିବାରେ ଯଥେଷ୍ଟ ସୁଯୋଗ ପାଉନାହାନ୍ତି ବୋଲି ମୋର ବିଶ୍ୱାସ ।

ତା'ପରେ ମାନ୍ୟବର ମନ୍ତ୍ରୀମାନଙ୍କର ଗସ୍ତ ବିଷୟରେ ମାନ୍ୟବର ପ୍ରଧାନମନ୍ତ୍ରୀ ତାଙ୍କ ବଜେଟ ଭାଷଣର ଆଲୋଚନାର ଉତ୍ତରରେ କହିଥିଲେ ଯେ ମାନ୍ୟବର ମନ୍ତ୍ରୀମାନେ ବିଶେଷ ଭାବରେ ଚାରିଆଡ଼େ ବୁଲି ଦେଖିବାର କଥା । ସେମାନେ ଅଭିଜ୍ଞତା ହାସଲ କରିବା ପାଇଁ ଓ ଲୋକଙ୍କ ଦୁଃଖ ଅଭାବ ବୁଝିବା ପାଇଁ ଲୋକଙ୍କ ସଙ୍ଗରେ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରିବା ଦରକାର । ଏଇଟା ହେଉ, ସେଥିରେ କିଛି ଆପତ୍ତି ନାହିଁ । କିନ୍ତୁ ଆମେ ବୁଝିବା ଦରକାର ଯେ ଏହାର ଫଳ କ'ଣ ହେଉଛି । ମୁଁ ସେଥିପ୍ରତି ମାନ୍ୟବର ପ୍ରଧାନ ମନ୍ତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରୁଛି । ମାନ୍ୟବର ମନ୍ତ୍ରୀମାନଙ୍କର ବାରମ୍ବାର ଗସ୍ତ ଫଳରେ ଜିଲାମାନଙ୍କରେ ଯେଉଁ ଜିଲା କର୍ତ୍ତୃପକ୍ଷ ଅଛନ୍ତି ସେମାନେ ମନ୍ତ୍ରୀମାନଙ୍କର ଏହି ଗସ୍ତ କିପରି ସୁବିଧାରେ ହେବ ସେ ବିଷୟରେ ନେଇ ଏତେ ବ୍ୟସ୍ତ ରହୁଛନ୍ତି ଯେ ସେମାନେ ତାଙ୍କର ଦୈନନ୍ଦିନ କାର୍ଯ୍ୟ ଭଲଭାବରେ କରି ପାରୁନାହାନ୍ତି । ଯଦି ମାନ୍ୟବର ମନ୍ତ୍ରୀମାନେ ଏବଂ ଅନ୍ୟାନ୍ୟ ଉଚ୍ଚପଦସ୍ଥ କର୍ମଚାରୀମାନେ ଏହି ଗସ୍ତ ସର୍ବସାଧାରଣଙ୍କ ସୁବିଧା ପାଇଁ କରୁଛନ୍ତି ତେବେ ସେମାନଙ୍କର ମଧ୍ୟ ଦେଖିବାର କଥା ଯେ ଅଫିସ କାମ କିପରିଭାବରେ ଚାଲୁଛି ଏବଂ ଶାସନ କଳ କିପରି ଭାବରେ ଦିନକୁଦିନ ଧିମେଇ ଯାଉଛି । ପୂର୍ବେ ଯେପରି ଆଇନ କଳ ଚାଲୁଥିଲା, ବର୍ତ୍ତମାନ ବିଶେଷ ପରିମାଣରେ ଖରାପ ହୋଇ ଯାଉଛି । କାରଣ ଲୋକମାନେ ପୂର୍ବେ ଯେପରି ତାଙ୍କର ଚିଠିପତ୍ରର ଜବାବ ପାଉଥିଲେ ବର୍ତ୍ତମାନ ତାହା ପାଉ ନାହାନ୍ତି । ବର୍ତ୍ତମାନ ତାଙ୍କର ଅଭାବ ଅସୁବିଧା ବିଷୟ ନେଇ କେହି ଦୃଷ୍ଟି ଦେଉ ନାହାନ୍ତି । ଏପରିକି କୌଣସି ବିଷୟ ନେଇ ଚିଠିର ଜବାବ ପର୍ଯ୍ୟନ୍ତ ମିଳୁ ନାହିଁ । ତାଙ୍କ ଅସୁବିଧା ଅଭିଯୋଗର ପ୍ରତିକାର ମଧ୍ୟ ହୋଇ ପାରୁନାହିଁ । ବର୍ତ୍ତମାନ ସେ ବିଷୟ ଉପରେ ବିଶେଷ ଦୃଷ୍ଟି ଦେବାର କଥା । ପୂର୍ବେ ଯେପରି ଆମ ଶାସନ କଳ ଚାଲିଥିଲା ତା'ଉପରେ ବର୍ତ୍ତମାନ Supervision ବେଶୀ ହେବା ଦରକାର କିନ୍ତୁ ବର୍ତ୍ତମାନ ଯେପରି ଭାବରେ ଏ ଶାସନ ଚାଲିଛି ସେଥିରେ ଚାରିଆଡ଼େ ବିଶୃଙ୍ଖଳା ଦେଖା ଯାଉଛି । ଏଥିପ୍ରତି ବିଶେଷ ଦୃଷ୍ଟି ରଖିବା ଦରକାର । ମୋର ଆହୁରି ଅନେକ ବିଷୟରେ କହିବାର ଥିଲା ମାତ୍ର ମୁଁ କହିବାକୁ ଉଚିତ ମନେ କରୁ ନାହିଁ । ଯେହେତୁ କହିଲେ ସୁଦ୍ଧା ସେଥିରେ କୌଣସି ପ୍ରତିକାର କରଯାଉ ନାହିଁ ।

## ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶା ବିଧାନସଭାରେ ଭାଷଣ

ପୂର୍ବରୁ ଆଲୋଚିତ ହୋଇଛି ଯେ ସ୍ୱାଧୀନ ଭାରତର ପ୍ରଥମ ସାଧାରଣ ନିର୍ବାଚନରେ ଗଣତନ୍ତ୍ର ପରିଷଦ ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇ ଡଃ ଶ୍ରଦ୍ଧାକର ସୂପକାର ଓଡ଼ିଶା ବିଧାନସଭାର ସଭ୍ୟ ଭାବରେ 1952 ମାର୍ଚ୍ଚ 4 ତାରିଖରେ ଶପଥ ଗ୍ରହଣ କରିଥିଲେ ଏବଂ ବ୍ରହ୍ମପୁର ଦଳ ଗଣତନ୍ତ୍ର ପରିଷଦର ନେତା ଭାବରେ ସେ ବିରୋଧୀ ଦଳର ନେତା ନିର୍ବାଚିତ ହୋଇଥିଲେ । ଉକ୍ତ ବିଧାନସଭା 1957 ମସିହା ମାର୍ଚ୍ଚ 4 ତାରିଖରେ ଭଙ୍ଗି- ଯାଇଥିଲା । ଏହି କାର୍ଯ୍ୟକାଳ ମଧ୍ୟରେ ଶ୍ରୀ ନବକୃଷ୍ଣ ଚୌଧୁରୀ 1952 ଫେବ୍ରୁୟାରୀ 20ରୁ 1956 ଅକ୍ଟୋବର 19 ପର୍ଯ୍ୟନ୍ତ ଓ ତାଙ୍କ ପରେ ଡକ୍ଟର ହରେକୃଷ୍ଣ ମହତାବ ବାକିତକ ସମୟ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ କାର୍ଯ୍ୟ କରୁଥିଲେ । ଶ୍ରୀ ନନ୍ଦକିଶୋର ଦାସ ଓ ମୌଲବୀ ମହମ୍ମଦ ହନିଫ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ଭାବରେ ଦାୟିତ୍ୱ ସଂପାଦାନ କରିଥିଲେ ।

ପୂର୍ବରୁ ବିରୋଧୀ ଦଳର ଜଣେ ସାଧାରଣ ଯୁବ ସଭ୍ୟ ଭାବରେ ଡକ୍ଟର ସୂପକାର ଖୁବ୍ କର୍ମ ତତ୍ପର ଥିଲେ ଏବଂ ପରେ ବିରୋଧୀଦଳର ନେତା ଭାବରେ ତାଙ୍କର ଦାୟିତ୍ୱ ଓ କର୍ମ ନିଷ୍ଠା ବହୁଗୁଣିତ ହୋଇଥିଲା । ପ୍ରଥମରୁ ସେ ଓଡ଼ିଶା ବିଧାନସଭା ତା 27-6-1952 ଖର୍ଚ୍ଚ ଦାବୀ ତଥା Appropriation ବିଲ୍ ଉପରେ ଅଧିକ ସମୟ ଆଲୋଚନା ପାଇଁ ଚାହିଁଥିଲେ ଏବଂ ପାର୍ଲାମେଣ୍ଟର ନଜିର ଦେଖାଇଥିଲେ । ଶ୍ରୀ ଗୋଦାବରୀଶ ମିଶ୍ର ପ୍ରମୁଖ ଏଥିପାଇଁ ତାଙ୍କୁ ସମର୍ଥନ କରିଥିଲେ ଏବଂ ବାଚସ୍ପତି ମହାଶୟ ଅଧିକ ଆଲୋଚନା ପାଇଁ ସୁଯୋଗ ଦେଇଥିଲେ ।

* * *

ମୁଖ୍ୟମନ୍ତ୍ରୀ "କାଣ୍ଡଜ୍ଞାନଶୂନ୍ୟ" ବୋଲି ଜଣେ ସଭ୍ୟଙ୍କ ବିରୁଦ୍ଧରେ ବ୍ୟବହାର କରିବାରୁ ଡଃ ସୂପକାର ଏହାର ପ୍ରତିବାଦ କରିଥିଲେ ଏବଂ ଏହି ଶବ୍ଦ ବିଧାନସମ୍ମତ (Parliamentary) କି ନୁହେଁ ବାଚସ୍ପତିଙ୍କଠାରୁ ସ୍ପଷ୍ଟୀକରଣ ଚାହିଁଥିଲେ । ଏଥିପାଇଁ ସେ Mayଙ୍କ Parliamentary Practice ପୁସ୍ତକରୁ ଉଦ୍ଧାର କରି କହିଥିଲେ (ଜୁନ୍ 27, 1952) ।

* * *

ମୁଖ୍ୟମନ୍ତ୍ରୀ ମହାଶୟ ଜମିଦାରୀ ଉଚ୍ଛେଦ ଆଇନ୍ ଆଗତ କରିବା ପରେ ଡଃ ସୂପକାର (ଜୁନ୍ 28, 1952) କହିଛନ୍ତି "ଏହି ବିଲ୍ ଯେପରି ଅତିଶୀଘ୍ର ପାସ୍ହୁଏ ଏବଂ ଅତିଶୀଘ୍ର କାର୍ଯ୍ୟକାରୀ ହୁଏ ସେଥିଲାଗି ତାଙ୍କର (ମୁଖ୍ୟମନ୍ତ୍ରୀଙ୍କର) ଯେଉଁ ପରିମାଣରେ ବ୍ୟସ୍ତତା, ବ୍ୟଗ୍ରତା ଓ ବ୍ୟାକୁଳତା ଅଛି ସେହି ପରିମାଣରେ ବ୍ୟସ୍ତତା, ବ୍ୟଗ୍ରତା ଓ ବ୍ୟାକୁଳତା ବିରୁଦ୍ଧ ଦଳର ଅଧିକାଂଶ ସଭ୍ୟଙ୍କର ଅଛି । ତେବେ ତା

ସଙ୍ଗେ ସଙ୍ଗେ ଏତିକି କହିଦେବାକୁ ବାଧ୍ୟ ହେଉଛି ଯେ ଏହି ପ୍ରକାର ଗୁରୁତ୍ୱପୂର୍ଣ୍ଣ ବିଲ୍‌ମାନ ବ୍ୟବସ୍ଥା ସଭାର ଶେଷ ସମୟକୁ ନ ଆଣି ସଭ୍ୟମାନଙ୍କର ଯଥେଷ୍ଟ ଧୈର୍ଯ୍ୟଥିବା ସମୟରେ ଯଦି ଅଣାଯାଇ ପାରିଥାନ୍ତା ତା'ହେଲେ ଭଲ ହୋଇଥାନ୍ତା" । ତେଣୁ ଅଧିକ ସମୟ ପାଇଲେ ଆଲୋଚନା କରିବାରେ ସୁବିଧା ହେବ ଡଃ ସୂପକାର ସ୍ପଷ୍ଟ କରିକହିଛନ୍ତି ।

* * *

ଉକ୍ତଦିନ (ଜୁନ୍ 24,1952) ବିଧାନସଭାରେ ଆଗତ ବିହାର-ଓଡ଼ିଶା ଶିଳ୍ପସହାୟତା ବିଲ୍ (ସଂଶୋଧନ), 1952 ଉପରେ ଡକ୍‌ଟର ସୂପକାର କହିଛନ୍ତି ଯେ ଶିଳ୍ପର ବିକାଶ ପାଇଁ ବିଲ୍‌ର ଉଦ୍ଦେଶ୍ୟ ମାତ୍ର ଅସାବଧାନ ଭାବରେ ଋଣ ପ୍ରଦାନ କରି ଏଦିଗରେ କେବଳ ଅର୍ଥର ଅପଚୟ ଘଟିଛି । ସେ କହିଛନ୍ତି, "କୌଣସି ବ୍ୟକ୍ତିବିଶେଷଙ୍କର ସୁବିଧା-ପାଇଁ ନିୟମର ବ୍ୟତିକ୍ରମ ମଧ୍ୟ କରାଯାଇଛି । ତା'ଫଳରେ ଆମ ରାଜ୍ୟକୁ ଲକ୍ଷ ଲକ୍ଷ ଟଙ୍କା କ୍ଷତି ସହିବାକୁ ପଡ଼ିଛି" । ସେ ଏହି ପ୍ରସଂଗରେ Synthetic petrol ପାଇଁ ଲକ୍ଷ ଲକ୍ଷ ଟଙ୍କା ଋଣ ଦେବାର ଦୃଷ୍ଟାନ୍ତ ଦେଇଛନ୍ତି । ସେମିତି Orissa Cement Ltd. ଓ Orissa Textile Millsକୁ କେତେ ଲକ୍ଷ ଟଙ୍କା ଋଣ ଦିଆଗଲା ସେମାନେ Industrial Finance Corporationରୁ ମଧ୍ୟ ଋଣ ନେଲେ । ଏହାଫଳରେ ଋଣଦାନର ମୌଳିକ ସର୍ତ୍ତକୁ ସରକାର ମାନୁନାହାନ୍ତି । ପୁଂଜିପତିମାନେ ନିଜ ପୁଂଜି ଖଟାଇ ଶିଳ୍ପ ସ୍ଥାପନ ଓ ପରିଚାଳନା କରିବା ଉଚିତ । ଋଣ ଦେଇ ସେମାନଙ୍କୁ ଅର୍ଥ ଅପଚୟ କରିବାକୁ ସୁଯୋଗ ଦେଉଛନ୍ତି । ଶିଳ୍ପ ବିଭାଗରେ ଏହିପରି ପ୍ରିୟାପ୍ରୀତି ତୋଷଣ ଚାଲିଛି ବୋଲି ସେ ସରକାରଙ୍କ ବିରୁଦ୍ଧରେ ଅଭିଯୋଗ କରୁଛନ୍ତି । ତା'ପରେ ଏହି "ପ୍ରିୟାପ୍ରୀତି" ଶବ୍ଦ ଉପରେ କେତେକ ପ୍ରଶ୍ନୋତ୍ତର ହୋଇ ବିଷୟଟିର ଗୁରୁତ୍ୱକୁ ଲାଘବ କରାଯାଇଛି, ମାତ୍ର ଏହି ଅଭିଯୋଗର ସତ୍ୟତା ଏବେ ବି ପ୍ରମାଣିତ ହୋଇଥାଏ ।

**ଶ୍ରୀ ଶ୍ରଦ୍ଧାକର ସୂପକାର:** ମାନ୍ୟବର ବାଚସ୍ପତି ମହାଶୟ, 12 ଦିନ ଧରି ଆମର ପ୍ରାଦେଶିକ ବଜେଟ୍‌ର ଶ୍ରାଦ୍ଧ ହେଲା, କିନ୍ତୁ ଦେଖାଯାଉଛି ଯେ 12 ଦିନ ଶ୍ରାଦ୍ଧ ପରେ ଆମ ମନରେ ତୃପ୍ତି ଆସିନାହିଁ । ପ୍ରାୟ ତିନି ଶତାଧିକ କାଟ ପ୍ରସ୍ତାବ ମଧ୍ୟରୁ କେବଳ 12/13ଟି କାଟ ପ୍ରସ୍ତାବ ଆଲୋଚିତ ହେଉଛି । ତେଣୁ ଏ 12 ଦିନ ଧରି ଯେତେକ କଥା କୁହାଯାଉଛି ସେଥିରେ କୁହା ନ ଯାଇଥିବା କଥା ଅନେକ ଅଧିକ ରହିଛି । କିନ୍ତୁ ଦେଖାଯାଉଛି ଏଥିପାଇଁ ଯେଉଁ ସମୟ ନିର୍ଦ୍ଦେଶ ଅଛି ତାହା ଅତି କମ୍ । ତେଣୁ ଏ ବିଷୟରେ କେତେକ ବିଶେଷ ବିଭାଗମାନଙ୍କର detailed ଆଲୋଚନା କରି ମୋର ବକ୍ତବ୍ୟ ଯେତେଦୂର ସମ୍ଭବ ସଂକ୍ଷେପରେ ଶେଷ କରିବି । ପ୍ରଥମରୁ ଏଇ ନିଶାନିବାରଣ ବିଷୟରେ ଅନେକ ସମୟରେ ନୀତିଗତ ବାଦାନୁବାଦ ହୋଇଛି କିନ୍ତୁ ଆମ ସରକାର ବରାବର କହି ଆସିଛନ୍ତି ଯେ ଆମେ ହୁଏତ ଦିନେ ନିଶାନିବାରଣ କରିବା

ପାଇଁ ଦୃଢ଼ ସଙ୍କଳ୍ପ କରିଥିଲୁ । କିନ୍ତୁ ବର୍ତ୍ତମାନ ଆମ ଅର୍ଥନୈତିକ ପରିସ୍ଥିତି ଦୃଷ୍ଟିରୁ ତାକୁ ବ୍ୟାପକ ଭାବରେ ପ୍ରୟୋଗ କରିବା ପାଇଁ ଆମର ଶକ୍ତି ନାହିଁ । ଆମେ ଏପରି ଜନମତ ସୃଷ୍ଟି କରିବା ଉଚିତ ଯାହା ଫଳରେ କି ଲୋକେ ନିଶାକୁ ନିଜେ ନିଜେ ବର୍ଜନ କରିବେ । କିନ୍ତୁ ଦେଖାଯାଉଛି ଯେ ସରକାର ଜନମତ ସୃଷ୍ଟି କରିବା ପାଇଁ ଯେଉଁ ସାହାଯ୍ୟ କରିବା ଦରକାର ଏବଂ ଯେଉଁ ବାୟୁମଣ୍ଡଳ ସରକାର ସୃଷ୍ଟି କରିବା ଦରକାର ତାହା କରୁନାହାନ୍ତି କାରଣ ସରକାରଙ୍କ ସ୍ୱାର୍ଥ ରହିଛି ଯେ କିପରି ବେଶୀ ଆଦାୟ ହେବ । ଏ ବିଷୟରେ ମୁଁ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଇ ମୋର ବକ୍ତବ୍ୟ ସ୍ପଷ୍ଟ କରିବି । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଅଳ୍ପ କେତେଦିନ ତଳେ ଏଇ ବିଷୟରେ ମୋ ପାଖକୁ ଲେଖିଥିଲେ । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କୁ ଆପଣ ଜାଣନ୍ତି ସେ ହେଉଛନ୍ତି ରଚନାତ୍ମକ କର୍ମୀ ଯୋଜନାର ଜଣେ ପ୍ରଧାନ ସ୍ତମ୍ଭ ସ୍ୱରୂପ । ବଲାଙ୍ଗୀରରେ ଲୁଇସିଙ୍ଗା ଅଞ୍ଚଳର କଂସର ଗ୍ରାମରେ ସେମାନେ ଚେଷ୍ଟା କରୁଥିଲେ ଯେ କିପରି ଭାବରେ ଲୋକମତ ସୃଷ୍ଟି କରାଯାଇ ନିଶା କିପରି ନିବାରଣ ହୋଇ ପାରିବ । ସେ ବିଷୟରେ ଲୋକଙ୍କୁ ପ୍ରବର୍ତ୍ତା ଯାଉଥିଲା । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ଭଳିଆ ବିଶିଷ୍ଟ ବ୍ୟକ୍ତି ଅଭିଯୋଗ ଆଣୁଛନ୍ତି ଯେ ଏପରି ଯେତେବେଳେ ନିଶା ନିବାରଣ ବିରୁଦ୍ଧରେ ଲୋକମତ ସୃଷ୍ଟି କରାଯାଉଛି, ସେହି ସମୟରେ ଠିକାଦାରମାନେ କର୍ମୀମାନଙ୍କୁ ଛୁରୀ ଦ୍ୱାରା ମାରିବା ଭୟ ଓ ଅନ୍ୟ ପ୍ରକାର ଭୟ ପ୍ରଦର୍ଶନ କରାଉଛନ୍ତି । ଏତ ଗୋଟାଏ ଯାଗାର ଅଭିଯୋଗ, ଏହିପରି ଅନ୍ୟାନ୍ୟ ଯାଗାରେ ମଧ୍ୟ ହେଉଥିବ ବୋଲି ମୋର ପୂରା ବିଶ୍ୱାସ । ଏହି ଠିକାଦାରମାନେ ଯେପରି ଚଢ଼ାଦରରେ ଠିକା ନେଉଛନ୍ତି ସେମାନଙ୍କ ସ୍ୱାର୍ଥରେ ବାଧାହେଲା ମାତ୍ରେ ସେମାନେ ବିଶେଷ ଭାବରେ ଯେତେ ପ୍ରକାର ରାଜନୈତିକ କୌଶଳ ଓ କୌଶଳ ପ୍ରୟୋଗ କରିବାର କଥା କରୁଛନ୍ତି ଏ ସବୁ କିପରି ଭାବରେ ବନ୍ଦ କରାଯାଇ ପାରିବ ଏବଂ ସରକାର ନିଶାନିବାରଣ ନ କଲେ ମଧ୍ୟ ଅନ୍ତତଃ ଲୋକମତ ସୃଷ୍ଟି କରିବା ପାଇଁ ଯେପରି ଲୋକଙ୍କୁ ସାହାଯ୍ୟ କରିବେ ସେଇ ବିଷୟରେ ସରକାର ଅଧିକ ସାବଧାନ ହେବା ଉଚିତ୍ ।

ତା'ପରେ ସାଧାରଣ ଶାସନ ବିଭାଗ ବିଷୟରେ ମଧ୍ୟ ଅନେକ ଆଲୋଚନା ହୋଇଛି ଏବଂ ଏ ବିଷୟରେ ମାନନୀୟ ପ୍ରଧାନ ମନ୍ତ୍ରୀ ଯେ କି ଗୃହ ବିଭାଗର ମନ୍ତ୍ରୀ, ସେ ମଧ୍ୟ ସମାଲୋଚନା କରିଛନ୍ତି ଯେ, ଯେହେତୁ ଆମେ ଯେଉଁମାନେ ଲୋକପ୍ରତିନିଧି ସେମାନେ amateur ବା ଅନାଡ଼ି, ତେଣୁ ବର୍ତ୍ତମାନ ଯେ ପ୍ରକାର ଶାସନ ଚାଲିଛି ସେଥିରେ ଆମେ ହସ୍ତକ୍ଷେପ କରିବାକୁ ହେଲେ ଅତି ସାବଧାନତା ସହିତ କରିବାକୁ ହେବ । ଏଣୁ ମୁଁ ଆମ ଗୃହ ବିଭାଗ ମନ୍ତ୍ରୀଙ୍କୁ ପ୍ରଶ୍ନ କରେ ଯେ ଅନ୍ୟ ଦେଶମାନଙ୍କରେ ଯେଉଁମାନେ ଶାସନ ଦାୟିତ୍ୱ ନେଇଛନ୍ତି, ସେମାନେ ସମସ୍ତେ ତ ବିଶେଷଜ୍ଞ ନୁହନ୍ତି । ଆମେ କଣ ତାହେଲେ ଗଣତନ୍ତ୍ର ବଦଳରେ ଅନାଡ଼ିତନ୍ତ୍ର ଦ୍ୱାରା ଶାସିତ ହୋଇଥାଉଁ ? କିନ୍ତୁ ବାସ୍ତବିକ ଦେଖିବାକୁ ଗଲେ ଅନ୍ୟାନ୍ୟ ଦେଶମାନେ ମଧ୍ୟ ଏହିପରି ଅନାଡ଼ିମାନଙ୍କ

ଦ୍ୱାରା ଶାସିତ ହେଉଛନ୍ତି । ସେହି ଅନାତ୍ମିମାନେ ମଧ୍ୟ ତାଙ୍କ ସାଧାରଣ ଜ୍ଞାନ ଦ୍ୱାରା, ବିବେକ ଦ୍ୱାରା ଏବଂ ଲୋକମତ ପ୍ରଭବ ଦ୍ୱାରା ସେମାନେ ଶାସନ ଏହିପରି ଭାବରେ ପ୍ରଚଳନ କରିଥାନ୍ତି ଯେ, ଯେପରି ଦୋଷତ୍ରୁଟି ଆମ ରାଜ୍ୟରେ ବିଶେଷ ପରିମାଣରେ ଦେଖାଦେଇଛି । ଯେପରି ଭାବରେ ଦୁର୍ନୀତି, ଅନ୍ୟାୟ, ପ୍ରିୟାପ୍ରୀତି ତୋଷଣ ଦେଖାଯାଇଛି, ଅନ୍ୟ ଦେଶ ସେହି ଅନାତ୍ମିଙ୍କଦ୍ୱାରା ଶାସିତ ହେଉଥିଲେ ମଧ୍ୟ ଏହିପରି ଅବସ୍ଥା ଦେଖାଯାଉ ନାହିଁ । ଆମ ଦେଶରେ କାହିଁକି ଏତେ ବେଶୀ ହୋଇଛି ? ଏହାର ଗୋଟିଏ ପ୍ରଧାନ କାରଣ ସ୍ୱରୂପ ମୁଁ କହିବି—ପ୍ରଧାନ ମନ୍ତ୍ରୀ ମତେ କ୍ଷମା କରିବେ—ଯେଉଁ ପରିମାଣରେ ଏବଂ ଯେପରି ଭାବରେ ଏସବୁ ଦୁର୍ନୀତି ଏବଂ ଅନ୍ୟାୟର ବିରୋଧ କରିବାର କଥା ଏବଂ ଯେ ପରିମାଣରେ କଠୋର ନୀତି ଅବଲମ୍ବନ କରିବାର କଥା ସେ ସବୁ କରାଯାଉ ନାହିଁ । କେତୋଟି ମାତ୍ର ଉଦାହରଣ ମୁଁ ଦେବି । ଆମେ ମଝିରେ ମଝିରେ ବିଶେଷତଃ ଯେଉଁ ସବୁ ପ୍ରଶ୍ନ ଉପସ୍ଥାପିତ କରୁଛୁ ଏବଂ ଯେଉଁ ପ୍ରଶ୍ନ ଜରିଆରେ କର୍ମଚାରୀଙ୍କ ମଧ୍ୟରେ ଥିବା ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ ଏବଂ ଅନ୍ୟାୟ ଅବିଚାର ପ୍ରତି ଦୃଷ୍ଟି ଆକର୍ଷଣ କରାଯାଉଛି, ହୁଏତ ଯେଉଁମାନଙ୍କ ବିଷୟରେ ଅଭିଯୋଗ କରଯାଉଛି ସେହିମାନଙ୍କଠାରୁ ପ୍ରଶ୍ନର ଉତ୍ତର ଆଣି ସରକାରଙ୍କ କଥା ହିସାବରେ ଆମକୁ ଦିଆଯାଉଛି । ତା'ପରେ ଯେଉଁ ସବୁ ନିର୍ଦ୍ଦିଷ୍ଟ ଅଭିଯୋଗ ହୋଇଥାଏ ସେହି ନିର୍ଦ୍ଦିଷ୍ଟ ଅଭିଯୋଗ ସମ୍ପର୍କରେ କି ପ୍ରକାର କାର୍ଯ୍ୟାନୁଷ୍ଠାନ କରାଗଲା ତାହା ଜାଣିବା ମହା ମୁସ୍କିଲ ଏବଂ ମୁଁ ଯାହା ଅନୁଭବ କରୁଛି ଯେ ଏହି ଯେଉଁ ନିର୍ଦ୍ଦିଷ୍ଟ ଅଭିଯୋଗମାନ ଉପସ୍ଥାପିତ କରାଯାଏ ସରକାର ଯଦି ଅଭିଯୁକ୍ତ ବିଷୟଗୁଡ଼ିକ ଯଥାଯଥ ଭାବରେ pursue କରନ୍ତେ ଏବଂ ସେ ସମ୍ପର୍କରେ ଉଚିତ କାର୍ଯ୍ୟାନୁଷ୍ଠାନ କରନ୍ତେ ତାହେଲେ ସାମାନ୍ୟ କେତେକ ଦୃଷ୍ଟାନ୍ତ ଫଳରେ ସରକାରୀ କଳକୁ ଯେଉଁମାନେ ପରିଚାଳନା କରୁଛନ୍ତି ସେମାନେ ନିଶ୍ଚୟ ସମୁଚିତ ଶିକ୍ଷା ପାଆନ୍ତେ ଏବଂ ଦେଶର ଶାସନ ନିଶ୍ଚିତ ଭାବରେ ଉନ୍ନତି ପଥରେ ଅଗ୍ରସର ହୁଅନ୍ତା । ଯେତେଗୁଡ଼ିଏ ଅଭିଯୋଗ କରାଯାଉଛି ସବୁଗୁଡ଼ିକ ସମ୍ପର୍କରେ କାର୍ଯ୍ୟାନୁଷ୍ଠାନ କରିବାକୁ ମୁଁ କହୁନାହିଁ, କାହିଁକି ନା 'କମ୍ବଳଯାକ ତ ବାଳ' କମ୍ବଳରୁ ବାଳ ବାଛିବାକୁ ଯଦି ଆମେ ବସୁ ତାହେଲେ ହୁଏତ କମ୍ବଳର ଅସ୍ତିତ୍ୱ ରହିବ ନାହିଁ । ତେଣୁ ଆମ ସରକାରଙ୍କର ପ୍ରଧାନ କର୍ତ୍ତବ୍ୟ ହେଉଛି ଯେ ଯେଉଁ ସବୁ କ୍ଷେତ୍ରରେ ଅନ୍ୟାୟ କରାଯାଉଛି ବୋଲି ଅଭିଯୋଗ ଛଳରେ ସେଥିପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଉଛି ସେଥି ମଧ୍ୟରୁ କେତେକ ନିର୍ଦ୍ଦିଷ୍ଟ ଅଭିଯୋଗ ସମ୍ପର୍କରେ ସେମାନେ ଏପରି ଭାବରେ କାର୍ଯ୍ୟାନୁଷ୍ଠାନ କରିବା ଉଚିତ ଯାହାକି ଅନ୍ୟମାନଙ୍କୁ ମଧ୍ୟ ଉପଯୁକ୍ତ ଶିକ୍ଷା ଦେଇ ପାରିବ ।

ତା'ପରେ Transport ବା ରାସ୍ତା ଚଳାଚଳ ବ୍ୟବସ୍ଥା ବିଷୟରେ ମୁଁ ଦୁଇ ଚାରିପଦ କହିବି । ଏ ବିଷୟରେ ମୁଁ ପୂର୍ବରୁ ଅଭିଯୋଗ କରିଥିଲି ଯେ ଏଇଟା ଆମର ଗୋଟିଏ ଲାଭର ପନ୍ଥା ହେବା ଉଚିତ ଏବଂ ଏହା ଫଳରେ ଆମେ ଯେପରି ଅନ୍ୟାନ୍ୟ

ବିଷୟରେ ଲୋକଙ୍କ ଉପରୁ କରଭାର କମାଇ ଦେବାର ଚେଷ୍ଟା କରିବା ସେ ଦିଗରେ ଗୋଟିଏ ବ୍ୟବସ୍ଥା ହେବା ଉଚିତ । କିନ୍ତୁ ମୁଁ ଅତି ଦୁଃଖର ସହିତ କହିବି ଯେ ସେ ବିଷୟରେ ଆଖିକୁ ଦିଶିଲାଭଳିଆ କୌଣସି କାର୍ଯ୍ୟାନୁଷ୍ଠାନ କରାଯାଇ ନାହିଁ । ଏକ ପକ୍ଷରେ ଦେଖାଯାଉଛି ଯେ ଯାତ୍ରୀମାନେ ପୂର୍ବରୁ ଯେପରି କଷ୍ଟ ଅନୁଭବ କରୁଥିଲେ ଏବଂ ଯେତେ ପ୍ରକାର ଅସୁବିଧା ସେମାନେ ଭୋଗୁଥିଲେ ବର୍ତ୍ତମାନ ଭଡ଼ା ବିଶେଷ ଭାବରେ ବଢିଗଲେ ମଧ୍ୟ ସେମାନେ ସେହିସବୁ ଅଭାବ ଅସୁବିଧା ଏବେ ମଧ୍ୟ ଭୋଗ କରୁଛନ୍ତି । ଆମେ ଆଶା କରିଥିଲୁ ସରକାର ଏହି ମୋଟର ଚଳାଚଳ ବ୍ୟବସ୍ଥା ହାତକୁ ନେବା ଫଳରେ ଯାତ୍ରୀମାନଙ୍କର ବିଶେଷ ସୁବିଧା ହେବ ଏବଂ ସେଥିରୁ ଏ ରାଜ୍ୟ ବେଶୀ ଲାଭ ପାଇବ । କିନ୍ତୁ ଏ ଉଭୟ ଦିଗରେ ଆମକୁ ହତାଶ ହେବାକୁ ପଡୁଛି । ଅପର ପକ୍ଷରେ ଏପରି ଅନେକଗୁଡ଼ିଏ କଥା ଶୁଣାଯାଉଛି ଯେ ଆମକୁ ଭବିଷ୍ୟତ ବିଷୟରେ ନିରାଶ ହେବାକୁ ପଡୁଛି ।

ତା'ପରେ ଶିଳ୍ପ ବିଷୟରେ ମଧ୍ୟ ସେହି ପ୍ରକାର ଅଭିଯୋଗ ଶୁଣାଯାଉଛି । ଶିଳ୍ପର ଉନ୍ନତି ଦିଗରେ ଯେ ପ୍ରକାର କାର୍ଯ୍ୟାନୁଷ୍ଠାନ କରିବାର କଥା ତାହା ନ ହୋଇ ପ୍ରିୟାପ୍ରୀତି ତୋଷଣ ବିଶେଷ ଭାବରେ ଚାଲିଥିବାରୁ ଆମ ଦେଶ ଶିଳ୍ପ ଦିଗରେ ଯେପରି ଅଗ୍ରଗତି କରିବାର କଥା ତାହା ତ ଅସମ୍ଭବ ହୋଇପଡ଼ିଛି, ବରଂ ଶିଳ୍ପ ଦିଗରେ ଆମେ ପଶ୍ଚାତ୍‌ପଦ ହୋଇ ପଡ଼ିରହିଛୁ ।

ତା'ପରେ ହୀରାକୁଦ ବିଷୟରେ ମୁଁ ଆପଣଙ୍କ ଦୃଷ୍ଟି ଅନେକ ଥର ଆକର୍ଷଣ କରିଛି ସତ୍ୟ କିନ୍ତୁ ଏହା ଏପରି ଏକ ଗୁରୁତର ସମସ୍ୟା ଯେ ମୁଁ ଏ ବିଷୟରେ ଆଉ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଅଭିଯୋଗ ଯଦି ଆପଣଙ୍କ ସମ୍ମୁଖରେ ଏଠାରେ ଆଗତ କରେ ତା'ହେଲେ ଆପଣ ସେଥିରେ ବିଶେଷ ଆଗ୍ରହାନ୍ୱିତ ହେବେ । ଏହି ଆଶା ଏବଂ ବିଶ୍ୱାସ ଫଳରେ ମୁଁ ସାମାନ୍ୟ କେତୋଟି ଅଭିଯୋଗ କରୁଛି । ହୀରାକୁଦ ବିଷୟରେ ଗୋଟିଏ ଅଭିଯୋଗ ଶୁଣି ମୁଁ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହେଲି ଏବଂ ସେଠାରେ ଯେପରି ଭାବରେ କାର୍ଯ୍ୟ କରାଯାଉଛି ସେଥିରୁ ଆପଣ ସ୍ପଷ୍ଟ ବୁଝି ପାରିବେ ଯେ ଆମ ଆଗରେ ଗୋଟିଏ ବିରାଟ ବିପଦ ରହିଛି ଏବଂ ଯାହାକୁ ସମ୍ମୁଖୀନ ହେବାକୁ ହୁଏତ ପଡ଼ିପାରେ । ଏହି ହୀରାକୁଦ ଯୋଜନାରେ ଆମେ ୨୨ କୋଟି ଟଙ୍କା ଖର୍ଚ୍ଚ କରିବାକୁ ଯାଉଛୁ । କିନ୍ତୁ ବର୍ତ୍ତମାନ ଯେପରି ଦାୟିତ୍ୱହୀନ ଓ ଶୃଙ୍ଖଳାହୀନ ଭାବେ କାର୍ଯ୍ୟ ହେଉଛି ଏଥିରେ ଆମକୁ ନିଶ୍ଚୟ ଗୋଟିଏ ବିରାଟ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ । ସେହି detailsରୁ କେବଳ ସାମାନ୍ୟ ଗୋଟିଏ ଉଦାହରଣ ଦେଇ ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବି ଯେ ବର୍ତ୍ତମାନ ଅଭିଯୋଗ ହେଉଛି ଯେଉଁ Specification ଅନୁସାରେ ସେଠାରେ କାମ ହେବାର କଥା ସେହି Specification ଅନୁସାରେ କାମ ହେଉନାହିଁ । ଆମେ ସମସ୍ତେ 'ଅନାଡ଼ି' । ଯେଉଁ ବିଶେଷଜ୍ଞମାନଙ୍କୁ ଆମେ ଏ କାର୍ଯ୍ୟର ଭାର ଦେଇଛୁ

ସେମାନଙ୍କ ହାତରେ ଆମେ ଆମ ଦେଶର କୋଟି କୋଟି ଲୋକଙ୍କର ଧନ ଏବଂ ଜୀବନ ସମର୍ପଣ କରି ଦେଇଛୁ । କେବଳ ସେତିକି ନୁହେଁ ଆମର ଭବିଷ୍ୟତ ବଂଶଧରମାନଙ୍କର ଭାଗ୍ୟ ମଧ୍ୟ ଏମାନେ ନିୟନ୍ତ୍ରଣ କରୁଛନ୍ତି । ତେଣୁ ଆମେ ଆଶା କରିବାର କଥା ଏବଂ ଅତି ଆଗ୍ରହର ସହିତ ଆଶା କରିବାର କଥା ଯେ ସେହି କାର୍ଯ୍ୟ ଏବଂ ତତ୍‌ସମ୍ପର୍କୀୟ ଖର୍ଚ୍ଚ କଲାବେଳେ ଯେଉଁ ପରିମାଣର ସାବଧାନତା ସେଥିପାଇଁ ଦରକାର ସେହି ପରିମାଣର ସାବଧାନତା ସେମାନେ ପୁରାପୁରି ଭାବରେ ଅବଲମ୍ବନ କରିବେ । କିନ୍ତୁ ଆପଣ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ ଯେଉଁ Specification ଅନୁସାରେ ସେଠାରେ ସେମାନଙ୍କୁ କାମ କରିବାକୁ କୁହାଯାଉଛି ସେହି Specification ଅନୁସାରେ ସେଠାରେ କାମ ହେଉନାହିଁ । ଉଦାହରଣ ସ୍ୱରୂପ ଶୁଣାଯାଉଛି ଏବଂ ଗୋଟିଏ ଅଭିଯୋଗ ହେଉଛି—ଯାହା ଅଭିଯୋଗ ହେଉଛି ତାକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ—ଯେ ଯେଉଁଠି ମାଟିବନ୍ଧ ତିଆରି ହେଉଛି ସେଠାରେ ପ୍ରତି ୯ ଇଞ୍ଚ ମାଟି ପକାଇ ସାରିଲା ପରେ ତା ଉପରେ ପାଣି ଢଳା ଯାଇଁ ତାକୁ solid କରିବାର କଥା । କିନ୍ତୁ ଶୁଣାଯାଉଛି ଯେ ଗଲା ୨/୩ ମାସ ଧରି ସେମାନେ ୯ ଇଞ୍ଚ ମାଟି ପକାଇ ପାଣି ଢାଳିବା ପରିବର୍ତ୍ତେ ୮/୧୦ ଫୁଟ ମାଟି ପକାଇ ତା ଉପରେ ପାଣି ଢାଳୁଛନ୍ତି ଯାହା ଫଳରେ କି ହୀରାକୁଦ ବନ୍ଧ ଶେଷ ହୋଇଗଲା ପରେ ମଝିରେ ଏହି ଯେଉଁ ଭୁଲ ରହିଯାଉଛି ସେ ଭୁଲ ସଂଶୋଧନ କରିବାକୁ ସେତେବେଳେ ଆଉ ସମୟ ନ ଥିବ ଏବଂ କେବଳ ଆମର ଯେ ଶହ ଶହ କୋଟି ଟଙ୍କା ପାଣିରେ ଭାସିଯିବ ତାହା ନୁହେଁ । ଲକ୍ଷ ଲକ୍ଷ ଲୋକଙ୍କ ଜୀବନ ମଧ୍ୟ ଯେ କୌଣସି ସମୟରେ ପାଣିରେ ମିଶି ଯିବାର ଆଶଙ୍କା ରହିଛି । ମୁଁ ଆଶା କରୁଛି ଯେ ଏହି ଅଭିଯୋଗ ଭିତ୍ତିହୀନ ବୋଲି ପ୍ରମାଣିତ ହେବ । କିନ୍ତୁ ଯଦି ଏହା ସତ୍ୟ ହୋଇଥାଏ ଏବଂ ସରକାର ଯଦି ଅନୁସନ୍ଧାନ କରି ଜାଣନ୍ତି ଯେ ଅଭିଯୋଗ ସତ୍ୟ, ତା ହେଲେ ମୁଁ କହିବି ଭଗବାନ ଆମ ଦେଶକୁ ରକ୍ଷା କରନ୍ତୁ, ଭଗବାନ ଓଡ଼ିଶାକୁ ରକ୍ଷା କରନ୍ତୁ ।

**ଶ୍ରୀ ନବକୃଷ୍ଣ ଚୌଧୁରୀ** (ମୁଖ୍ୟ ମନ୍ତ୍ରୀ) : ଭଗବାନଙ୍କ ଛଡ଼ା ଆଉ କିଏ ରକ୍ଷା କରିବ ?

**ଶ୍ରୀ ରତ୍ନାକର ସୂପକାର** : ଆମେ କାହିଁକି ଚେଷ୍ଟା ନ କରିବା ? God helps those who help themselves, ଭଗବାନଙ୍କ ସାହାଯ୍ୟ ଭିକ୍ଷା କରିବା ପୂର୍ବରୁ ଆମେ କାହିଁକି ଚେଷ୍ଟା ନ କରିବା ? ଆମେ କାହିଁକି ନିଜେ ନିଜର ଚେଷ୍ଟା ଦ୍ୱାରା ଯେତେଦୂର ସମ୍ଭବ ସାବଧାନତା ଅବଲମ୍ବନ ନ କରିବା ? ଏହାଛଡ଼ା ଆହୁରି ମଧ୍ୟ ଅନେକ ଅଭିଯୋଗ ଶୁଣାଯାଉଛି । ମୁଁ କେବଳ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଇ ମୋର ବକ୍ତବ୍ୟ ଶେଷ କରିବି । ହୀରାକୁଦରେ Stores Division ବୋଲି ଗୋଟିଏ Division ଅଛି । ଏହି Stores Divisionରେ ଯେଉଁ ଅଫିସର ଅଛନ୍ତି ଯେ କି ଜଣେ Executive Engineer ତାଙ୍କରି

ଯୋଗୁଁ ଏବଂ ତାଙ୍କରି ସାହାଯ୍ୟ ଯୋଗୁଁ ଏହି Sleeper's Scandal ଓ Bullock Scandal ହୋଇଥିଲା ବୋଲି ପୂର୍ବରୁ ଅଭିଯୋଗ କରଯାଇ ଥିଲା । ବର୍ତ୍ତମାନ ତାଙ୍କୁ ସେହି Departmental ଆଇନକାନୁନ ପ୍ରତି ଆଦୌ ଭ୍ରୂକ୍ଷେପ ନ କରି ଏବଂ ତାଙ୍କରି ଜିମା ୬/୭ ଲକ୍ଷ ଟଙ୍କାର ଯନ୍ତ୍ରପାତି କିଣିବାର ଭାର ଦିଆଯାଇଛି ଯାହା କି ସେମାନେ ଦେଶର ବିଭିନ୍ନ ସ୍ଥାନରେ ବୁଲି ସଂଗ୍ରହ କରିବେ ଏବଂ ଏଥିପାଇଁ ତାଙ୍କ ହାତରେ ଅନେକ ଗୁଡ଼ିଏ ଟଙ୍କା ଦିଆଯାଇଛି । ସରକାରୀ ନିୟମାନୁସାରେ Director-General of Disposals, New Delhiଙ୍କ ଜରୀଆରେ ଏ ସବୁ କାମ ହେବାର କଥା, କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ ଯେଉଁ officerଙ୍କ କାର୍ଯ୍ୟକଳାପ ବିରୁଦ୍ଧରେ ଅତୀତରେ ଏହି ପ୍ରକାର ଗୁରୁତର ଅଭିଯୋଗମାନ ହୋଇଥିଲା ତାଙ୍କୁ ଏହି ପ୍ରକାର risky କାମର ଜିମା ଦିଆଯାଇଛି ଯାହା ଫଳରେ କି ଯେଉଁ ପ୍ରକାରର ଦୁର୍ନୀତି ସେଠାରେ ଚାଲିଛି ବୋଲି ଅଭିଯୋଗ ହେଉଛି ସେହି ଦୁର୍ନୀତିର ପ୍ରସାର ଆହୁରି ବହୁ ଗୁଣରେ ବଢ଼ି ଯିବାପାଇଁ କ୍ଷେତ୍ର ପ୍ରସ୍ତୁତ କରଯାଉଛି ଏବଂ ସୁଯୋଗ ମଧ୍ୟ ଦିଆଯାଉଛି । ଏହି ସମ୍ପର୍କରେ ଆହୁରି ଅନେକ କଥା କହିବାର ଥିଲା । କିନ୍ତୁ ଅନେକ ବକ୍ତା କହିବାକୁ ଇଚ୍ଛା କରୁଥିବାରୁ ମୁଁ କେବଳ ଏହି କେତୋଟି ବିଷୟ ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରି ମୋର ବକ୍ତବ୍ୟ ଶେଷ କରୁଛି ।

Shri SHRADHAKAR SUPAKAR : ଏହି ଯେଉଁ ବିଲ ବାବଦରେ ତିନେ ସମୟ ଦିଆଯାଇ ଥିଲା, ଅତୀତରେ ମଧ୍ୟ ଏହିପରି ଅନେକ ବିଲ୍ ପାଇଁ କମ୍ ସମୟ ନିର୍ଦ୍ଦିଷ୍ଟ ହୋଇଛି ଏବଂ ଦେଖା ଯାଇଛି ଯେ ଯେଉଁ ବିଲ୍ ଉପରେ ମାନ୍ୟବର ସଭ୍ୟମାନେ ବିଶେଷ ଭାବରେ ଭାଗ ନେବାକୁ ଇଚ୍ଛୁକ ସେଥିରେ ସମୟ ବଢ଼ାଇ ଦିଆ ଯାଇଛି......

ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ : On a point of order Sir, ବର୍ତ୍ତମାନ ମାନ୍ୟବର ସତ୍ୟବାଦୀର ସଭ୍ୟ ଯାହା remark କଲେ ସେ ସମ୍ପର୍କରେ ଏ ଗୃହର ଆଇନ ମନ୍ତ୍ରୀ ଆପଣଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେ ବିଷୟରେ ଆପଣ କୌଣସି ନିଷ୍ପତ୍ତି ଦେବା ପୂର୍ବରୁ ଆଲୋଚନା ହେବା ଉଚିତ ହେବ କି ?

THE SPEAKER : ସେ ବିଷୟରେ ମୁଁ ନିଷ୍ପତ୍ତି ଦେବି କିନ୍ତୁ I have indirectly allowed some members to take a little liberty in that matter. But if I see that liberty is being misused I will take necessary steps.

ଶ୍ରୀ ଶ୍ରଦ୍ଧାକର ସୁପକାର : ଅତୀତରେ ଦେଖା ଯାଇଛି ଯେଉଁ ବିଲ୍ ପାଇଁ କମ୍ ସମୟ ଦିଆଯାଇଛି ସେଥିରେ ସଭ୍ୟମାନଙ୍କର ଆପତ୍ତିରେ ସମୟ ବଢ଼ାଇ ଦିଆଯାଇଛି । ଏପରି କି ଗୋଟିଏ ଗୋଟିଏ ବିଲ ପାଇଁ 5/6 ଦିନ ସମୟ ଦିଆଯାଇଛି । ଆପଣ ଜାଣନ୍ତି voting on demand ପାଇଁ 12 ଦିନ ସମୟ ଦିଆ ଯାଇଥିଲା । ସେଥିରେ ଆପଣ ଦେଖିଥିବେ ଯେ, ମୋଟ ଯେତିକି କାଟ ପ୍ରସ୍ତାବ ଦିଆଯାଇଥିଲା ତହିଁର ପ୍ରାୟ ଦଶମାଂଶରୁ କମ୍ ଆଲୋଚନା

ହେବାକୁ ଆସିଛି । ଯେତେବେଳେ ଆଲୋଚନା ଚାଲିଥିଲା, ଅନେକ ସମୟରେ ଏହି ସଭା ଗୃହରେ ଏହି ବିଷୟରେ କହିବା ପାଇଁ ଆପଣ ନିର୍ଦ୍ଦେଶ ଦେଇଥିଲେ ଯେ ଯେଉଁମାନ୍ୟବର ସଭ୍ୟମାନେ ଏହି ସବୁ କାଟ ପ୍ରସ୍ତାବର ଆଲୋଚନା କରିବାକୁ ସୁଯୋଗ ପାଇ ପାରି ନାହାନ୍ତି । ଯେତେବେଳେ Appropriation Bill ଆସିବ, ସେତେବେଳେ ସେମାନେ ସୁଯୋଗ ପାଇବେ । ବର୍ତ୍ତମାନ ଏ ଯେଉଁ Appropriation Bill ଆଗତ ହେଲା ଏହା ଦୁଇଦିନ ଆଲୋଚନା ହୋଇଗଲାଣି । କିନ୍ତୁ ଦେଖାଯାଉଛି ଯେ ଅନେକ ସଭ୍ୟ ଯେଉଁମାନେ କି ଅତୀତରେ କାଟ ପ୍ରସ୍ତାବ ଉପରେ ବିଶେଷ ଭାବରେ କହିବା ପାଇଁ ଆପଣଙ୍କର ଅନୁମତି ପ୍ରାର୍ଥନା କରିଥିଲେ, ସେମାନେ ଏହି ଦୁଇଦିନ ମଧ୍ୟରେ ସମୟ ପାଇ ପାରିଲେ ନାହିଁ । ଅବଶ୍ୟ ଯେତେଦୂର ସମ୍ଭବ ଆମେ ଶୀଘ୍ର ଏ ବିଲ୍‌କୁ ପାସ୍ କରାଇ ଦେବା ପାଇଁ ଚେଷ୍ଟା କରିବା ଉଚିତ୍ । କିନ୍ତୁ ତାହା ସଙ୍ଗେ ସଙ୍ଗେ ଏକଥା ମଧ୍ୟ ଆମେ ମନେ ରଖିବା ଉଚିତ ଯେ ଏପରି ଗୋଟିଏ ବଜେଟ ବର୍ଷକ ପାଇଁ ଯେତେବେଳେ ଆମେ Pass କରିଦେବାକୁ ଯାଇଥାଉଁ, ଯେଉଁଥିରେ କି ପ୍ରାୟ 40 ଟି ପର୍ଯ୍ୟନ୍ତ demand ଅଛି ଏବଂ ଏ ଗୃହରେ ସଭ୍ୟ ସଂଖ୍ୟା ବେଶୀ ଅଛନ୍ତି, ସେପରି ଅବସ୍ଥାରେ ଏହା ଯେ ଦୁଇ ଦିନ ହୋଇଛି, ବେଶୀ ହୋଇ ଗଲାଣି ବୋଲି କହିବାଟା ବୋଧେ ଠିକ୍ ହେବନାହିଁ । ଅତୀତରେ ଯେତେବେଳେ ସଭ୍ୟ ସଂଖ୍ୟା ମୋଟ 60 କିମ୍ବା 90 ଥିଲେ ସେ ସମୟରେ ମଧ୍ୟ Voting on demands ପାଇଁ 10/12 ଦିନ ସମୟ ଦିଆ ଯାଉଥିଲା । ବର୍ତ୍ତମାନ ଠିକ୍ ସେହି ସମୟ (ଅର୍ଥାତ୍ 12 ଦିନ) ଅଛି । କିନ୍ତୁ କହିବା ପାଇଁ ଇଚ୍ଛୁକ ସଭ୍ୟ ସଂଖ୍ୟା ବଢି ଯାଇଛି ଏପରି ଅବସ୍ଥାରେ ଏହା ଭାବିବା ଠିକ୍ ହେବ ନାହିଁ ଯେ ଦୁଇ ଦିନ ମଧ୍ୟରେ ଯେଉଁ ଆଲୋଚନା ହୋଇ ଯାଉଛି, ଏ Bill reading ରେ ତାହା ଯଥେଷ୍ଟ ହୋଇଛି ଏବଂ ଏହି ପ୍ରକାର ଭାବିବାର କାରଣ ମଧ୍ୟ ନାହିଁ ।

ଶ୍ରୀ ରାଧାନାଥ ରଥ (ମନ୍ତ୍ରୀ) : ବାଚସ୍ପତି ମହାଶୟ, ଏ ସଂକ୍ରାନ୍ତରେ ବିରୋଧୀ ଦଳର ମାନ୍ୟବର ନେତା ଯାହା କହିଲେ ମୁଁ ଭାରତ ପାର୍ଲିଆମେଣ୍ଟର "Rules of Procedure and Conduct of Business in Parliament" ର 139 ଦଫା ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି, ସେଥିରେ ଅଛି—

139. *Appropriation Bill*—(1) Subject to the provisions of the Constitution, the Procedure in regard to an Appropriation Bill shall be the same as for Bills generally with such modifications as the Speaker may considered necessary.

(2) At any time after the introduction in Parliament of an Appropriation Bill, the Speaker may allot a day or days jointly or severally for the completion of all or any of the stages involved in the passage of the Bill by Parliament, and when such allotment has been made

the Speaker shall at 5 o'clock on the allotted day or, as the case may be, the last of the allotted days forthwith put every question necessary to dispose of all the outstanding matters in connection with the stage or stages for which the day or days have been allotted.

(3) The Speaker may, if the thinks fit prescribe a time-limit for speeches at all or any of the stages for which a day or days have been allotted under the preceding sub-rule.

ଏଥିରୁ ଦେଖିବେ ଯେ ପାର୍ଲିଆମେଣ୍ଟରେ Speaker ଗୋଟିଏ ଦିନ ଭିତରେ Appropriation Bill କୁ ଧାର୍ଯ୍ୟ କରି ପାରିବେ । ଏଠାରେ ଆମେ 29/30 କୋଟି ଟଙ୍କାର ବଜେଟ ପାସ୍ କରୁଥିବା ସ୍ଥଳେ ପାର୍ଲିଆମେଣ୍ଟରେ 400 କୋଟିରୁ ଅଧିକ ଟଙ୍କାର ବଜେଟ ପାସ୍ ହେଉଛି ଏବଂ ସେଠାରେ 500 ପର୍ଯ୍ୟନ୍ତ ସଭ୍ୟ ଅଛନ୍ତି । ସେମାନେ Appropriation Bill ଦିନକ ଭିତରେ pass କରି ଦେଉଛନ୍ତି ; କୌଣସି ଆପତ୍ତି ହେଉନାହିଁ । ଅନ୍ୟାନ୍ୟ State Assembly ମାନଙ୍କରେ ମଧ୍ୟ ଅଳ୍ପ ସମୟ ଭିତରେ ପାସ୍ ହେଉଛି । ସୁତରାଂ ଯେଉଁ ବଜେଟ ବିଷୟ 3 ଦିନ ଥିବା ସ୍ଥଳେ Appropriation Bill ଉପରେ ଯେତେବେଳେ ଦୁଇଦିନ ଆଲୋଚନା ହେଲଣି, ଏହାଛଡ଼ା ଯଦି ମାନ୍ୟବର ସଭ୍ୟମାନେ ଆହୁରି ସମୟ ଚାହୁଁଥାନ୍ତି ତାହାହେଲେ ଏହା କେବଳ ଇତିହାସ ସୃଷ୍ଟି କରିବା ଛଡ଼ା ଆଉ କିଛି ନୁହେଁ । ମୁଁ କହିବି ଏ ବିଷୟରେ କାଳକ୍ଷେପ କରିବା ଉଚିତ ହେବ ନାହିଁ । ଏଥିରେ ଆଉ କିଛି ନାହିଁ । ଏହା ଗୋଟିଏ formal ଜିନିଷ । କେବଳ ମାନ୍ୟବର ସଭ୍ୟମାନଙ୍କୁ ଆଲୋଚନା କରିବାକୁ ସୁଯୋଗ ଦିଆ ଯାଉଛି । ମୋର ବିଶ୍ୱାସ ମାନ୍ୟବର ସଭ୍ୟମାନେ ଯଥେଷ୍ଟ ଆଲୋଚନା କରି ସାରିଲେଣି । ସେତିକିରେ ସନ୍ତୁଷ୍ଟ ହେବା ଉଚିତ ।

ଶ୍ରୀ ଶ୍ରଦ୍ଧାକର ସୂପକାର : ପାର୍ଲିଆମେଣ୍ଟରେ ଯେଉଁ ନିୟମ ଅଛି... ..

THE SPEAKER : ଏ ବିଷୟରେ ଏହିପରି ବାଦାନୁବାଦ ଚାଲିଲେ କିଛି ନିଷ୍ପତ୍ତି ହୋଇ ପାରିବ ନାହିଁ । ଆଜି ଏ ବିଲ୍ ଧାର୍ଯ୍ୟ କରିବାକୁ ପଡ଼ିବ । ଯଦି ଦରକାର ପଡ଼େ, ତେବେ ଅଧିକ ସମୟ ଏ ଗୃହ ବସିବାକୁ ପଡ଼ିବ । ମାନ୍ୟବର ସଭ୍ୟମାନେ ଏ ବିଷୟରେ ଆଉ ଆଲୋଚନା କରି ଗୃହର ସମୟ ନେବା ଉଚିତ ବୋଲି ମୁଁ ମନେ କରୁ ନାହିଁ ।

ଏ ସଂକ୍ରାନ୍ତରେ ମୁଁ ଦୁଇଜଣ ମାନ୍ୟବର ସଭ୍ୟଙ୍କଠାରୁ ସଂଶୋଧନ ପ୍ରସ୍ତାବ ଚାହିଁଥିଲି । ସେହି ସଂଶୋଧନ ପ୍ରସ୍ତାବ ବିଷୟରେ ମୁଁ ଗତ 2/3 ଦିନ ଧରି ମନ ଭିତରେ ବହୁତ ଆଲୋଚନା କରିଛି । ଏହା ଭିତରେ ଆଇନମାନ ପଢ଼ିଛି, ମୋର ଯାହା ମତ ସେ ସମ୍ପର୍କରେ ଆଜି ଏ ଗୃହରେ କହିବାକୁ ଇଚ୍ଛା କରୁଛି ।

ଶ୍ରୀ ଗୋଦାବରୀଶ ମିଶ୍ର : ଆପଣ ଯଦି ସେ ବିଷୟରେ ରୁଲିଂ ଦେବାକୁ ଚାହାନ୍ତି ତାହା ହେଲେ ଆପଣଙ୍କ ରୁଲିଂ ପୂର୍ବରୁ ମୁଁ ମୋର ମତାମତ ବ୍ୟକ୍ତ କରିବାକୁ ଇଚ୍ଛା କରୁଛି ।

THE SPEAKER : ମାନ୍ୟବର ସଭ୍ୟ କେଉଁ ବିଷୟରେ କହିବାକୁ ଇଚ୍ଛା କରୁଛନ୍ତି ।

ଶ୍ରୀ ଗୋଦାବରୀଶ ମିଶ୍ର : ମୁଁ କହିବାକୁ ଚାହୁଁଛି ଯେ ମୁଁ ଯେଉଁ ସଂଶୋଧନ ପ୍ରସ୍ତାବ ଦେଇଛି, ସେ ପ୍ରସ୍ତାବ ଆସିବା ପୂର୍ବରୁ କାଳେ ଆପଣ ଗୋଟିଏ ରୁଲିଂ ଦେଇ ଦେବେ, ସେଥି-ପାଇଁ ରୁଲିଂ ଦେବା ପୂର୍ବରୁ ମୋର ଯାହା ବକ୍ତବ୍ୟ ତାକୁ ଆଲୋଚନା କରି ରୁଲିଂ ଦେଲେ ଭଲ ହେବ ।

THE SPEAKER : ମାନ୍ୟବର ସଭ୍ୟ ସଂକ୍ଷେପରେ ଯାହା କହିବାକୁ ଇଚ୍ଛା କରନ୍ତି, ତା'ହେଲେ କହି ପାରନ୍ତି । କିନ୍ତୁ ମାନ୍ୟବର ସଭ୍ୟଙ୍କ ଛଡ଼ା ଏ ବିଷୟରେ ଆଉ କାହାକୁ ଆଲୋଚନା କରିବାକୁ ଦେବି ନାହିଁ ।

× × × ×

*(Interval for lunch)*

## OBJECTION RAISED REGARDING THE USE OF AN UN-PARLIAMENTARY EXPRESSION (RULING RESERVED)

ଶ୍ରୀ ଶ୍ରଦ୍ଧାକର ସୂପକାର : ମାନ୍ୟବର ବାଚସ୍ପତି ମହୋଦୟ, ମୁଁ ଗୋଟିଏ ବୈଧାନିକ ପ୍ରଶ୍ନ ଉତ୍‌ଥାପନ କରିବାକୁ ଚାହୁଁଛି । ପ୍ରଶ୍ନ ଉତ୍ତର ଚାଲିଥିବା ସମୟରେ ମାନ୍ୟବର ପ୍ରଧାନ ମନ୍ତ୍ରୀ "କାଣ୍ଡଜ୍ଞାନଶୂନ୍ୟ" ବୋଲି ଗୋଟିଏ ଶବ୍ଦ ଜଣେ ସଭ୍ୟଙ୍କ ବିରୁଦ୍ଧରେ ବ୍ୟବହାର କରିଥିଲେ ଏହି ଶବ୍ଦଟି କେତେଦୂର Parliamentary ଅର୍ଥାତ୍ ବିଧାନସମ୍ମତ ସେ ବିଷୟରେ ମୁଁ ଆପଣଙ୍କ ନିଷ୍ପତ୍ତି ଭିକ୍ଷା କରୁଛି । ଏ ବିଷୟରେ May's Parliamentary Practice ରେ କୁହାଯାଇଛି ଯେ ଏହି ସଭାରେ ଭାଷଣ ଦେଲାବେଳେ ସବୁବେଳେ ସଂଯତ ଭାଷା ବ୍ୟବହାର କରିବା ଦରକାର । "Good temper and moderation are the characteristics of Parliamentary language. Parliamentary language is never more desirable than when a member is canvassing the opinions and conduct of his opponents in debate". କଥା ହେଉଛି ଯେ ଏହି ପ୍ରକାର ଶବ୍ଦ ଜଣେ ସଭ୍ୟଙ୍କ ବିଷୟରେ ବ୍ୟବହାର କରିବା କେତେ ଦୂର ଯୁକ୍ତିସଙ୍ଗତ ସେ ବିଷୟରେ ଆପଣଙ୍କ ନିଷ୍ପତ୍ତି ଆମେ ଜାଣିପାରିଲେ ଉପକୃତ ହୁଅନ୍ତୁ । କାହିଁକି ନା—ଏପରି କେତେକ ସଭ୍ୟ ଅଛନ୍ତି, ଯେଉଁମାନେ ଯଦି ଏହା Parliamentary ହୋଇଥାଏ ଏହି ସଭାରେ ତାହା ପ୍ରୟୋଗ କରିବା ପାଇଁ ଆଗ୍ରହାନ୍ୱିତ ଅଛନ୍ତି ।

ମୁଁ ଠିକ୍ ସେହି କଥା କହିବାକୁ ଚାହୁଁଥିଲି ସେ ଯଦି ଏହା ବିଧାନସମ୍ମତ ବୋଲି ଠିକ କରନ୍ତି ତେବେ ସମସ୍ତେ ଏହା ବ୍ୟବହାର କରିବେ । କେବଳ ସେ ଦୁଇଜଣ ବ୍ୟବହାର କରିବେ ଏବଂ ଅନ୍ୟମାନେ କାହିଁକି ସେ ଶବ୍ଦ ବ୍ୟବହାର କରିବାକୁ ବାଞ୍ଛିତ ହେବେ ।

THE SPEAKER: ଯେଉଁ ମାନ୍ୟବର ସଭ୍ୟ ଏ ଶବ୍ଦଟି ବ୍ୟବହାର କରିଥିଲେ. ସେ ଏଠାରେ ନାହାନ୍ତି ଅତଏବ ସେ ପ୍ରଶ୍ନ ଉଠିବ ନାହିଁ ବୋଲି ଯେଉଁ ଯୁକ୍ତି କରାଯାଉଛି ସେଥିରେ କୌଣସି ଯୌକ୍ତିକତା ମୁଁ ଦେଖୁନାହିଁ । ତେବେ ଏହା Parliamentary କି ନୁହେଁ ସେ ବିଷୟରେ ଚିନ୍ତା କରି ମୋର ମତ କାଲି ଦେବି ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : ବିଗ୍ଭର କରିବା ପୂର୍ବରୁ ଟିକିଏ ଆଲୋଚନା କଲେ ଭଲ ହୁଅନ୍ତା ବୋଲି ମୋର ମତ ।

ଶ୍ରୀ ନୀଳକଣ୍ଠ ଦାସ : ମାନ୍ୟବର ଆଇନ ମନ୍ତ୍ରୀ ବିଗ୍ଭର କରୁଛନ୍ତି ଯେ 'କାଣ୍ଡଜ୍ଞାନ ଶୂନ୍ୟ' ଶବ୍ଦଟିର ଅର୍ଥ ଭଲ । କିନ୍ତୁ ଭଲ ବୋଲିଲେ ଉତ୍ତମ ନୁହେଁ । 'କାଣ୍ଡଜ୍ଞାନ ଶୂନ୍ୟ' ବୋଲିଲେ ମୂଳରୁ ଜ୍ଞାନ ଯାହାର ନାହିଁ । ଏହା ହୋଇ ପାରେ । କିନ୍ତୁ କେଉଁ ଅର୍ଥରେ ଏବଂ କିପରି ଭାବରେ ସେଟା ବ୍ୟବହାର ହୁଏ, ତାହା ବିଗ୍ଭର କରିବାକୁ ପଡ଼ିବ ।

ଶ୍ରୀ ହରିହର ଦାସ : ସଭାପତି ମହାଶୟ, ବର୍ତ୍ତମାନ ଖୁବ ବର୍ଷା ହେଉଛି । ମୁଁ ଆଗରୁ ଯାହା କହିଥିଲି, ବର୍ତ୍ତମାନ ମୋର ଜିନିଷପତ୍ର, କାଗଜପତ୍ର ସବୁ ତିନ୍ତି ଯାଉଥିବ । ମୁଁ ଅସୁବିଧାରେ ପଡ଼ିବି । ତେଣୁ ମୋତେ ଛୁଟି ଦିଆଯାଉ । ମୁଁ ଘରକୁ ଯିବି ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : ଘରକୁ ଯିବାକୁ ହେଲେ କ'ଣ ସଭାପତିଙ୍କର ଅନୁମତି ଦରକାର ପଡୁଛି ।

THE SPEAKER : ମାନ୍ୟବର ସଭ୍ୟ ତ ସେ ବିଷୟ adjournment motion ପ୍ରସଙ୍ଗରେ ଆଲୋଚନା କରି କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । That matter is closed.

× × × ×

Shri NABAKRUSHNA CHAUDHURI (Chief Minister) : ତା'ଛଡ଼ା ଆଉ ଗୋଟିଏ କଥା ହେଉଛି ଯେ ଏ ଦେଶରେ ଜମିଦାରୀ ଉଠିବା ସମ୍ପର୍କରେ ବିଭିନ୍ନ ମତବାଦ ରହିଛି ଏବଂ ଦଳ ନିର୍ବିଶେଷରେ ବିଭିନ୍ନ ବ୍ୟକ୍ତି ବିଶେଷଙ୍କର ବିଭିନ୍ନ ମତ ମଧ୍ୟ ଥାଇପାରେ । ଯେଉଁମାନେ ଚାହାଁନ୍ତି ଯେ ଏହା ଶୀଘ୍ର କାର୍ଯ୍ୟରେ ପରିଣତ ହେଉ ସେମାନେ ଅନୁଗ୍ରହ କରି ସହାୟତା କରିବେ । Dilatory tactics କରି ସମସ୍ତେ ଯଦି ଏକଯୁଟ ହୋଇ ଇଚ୍ଛା କରନ୍ତି ଏ Billର ଆଲୋଚନା 3 ମାସ ଲଗାଇ ଦେଇ ପାରନ୍ତି । ତାଙ୍କର ସେ ଅଧିକାର ଅଛି ସେ କରିପାରନ୍ତି । ଆମେ ଏହାକୁ ଶୀଘ୍ର କାର୍ଯ୍ୟରେ ପରିଣତ କରିବା ପାଇଁ ମାନ୍ୟବର ସଭ୍ୟମାନଙ୍କର ସାହାଯ୍ୟ ସହଯୋଗ ଚାହୁଁଛି । ଯେଉଁମାନେ ଆମକୁ ଏହା ଶୀଘ୍ର କାର୍ଯ୍ୟରେ ପରିଣତ କରିବା ପାଇଁ ସାହାଯ୍ୟ ଦେବାକୁ ଇଚ୍ଛା କରିବେ ସେମାନେ ସେହି ମନୋଭାବ ନେଇ ଆଲୋଚନାରେ ଯୋଗ ଦେଲେ ଏହା ଶୀଘ୍ର

କାର୍ଯ୍ୟକାରୀ ହୋଇପାରିବ । ତା'ନ କରି ଯଦି ସଂଶୋଧନ ପ୍ରସ୍ତାବ ଦେଇ ଗୁଡାଏ ଆଲୋଚନା କରି କାଳକ୍ଷେପଣ ନୀତି ଧରନ୍ତି ସେ ଏକ ସ୍ୱତନ୍ତ୍ର କଥା । ସେମାନଙ୍କର ଯେତେବେଳେ legitimate Parliamentary rights ଅଛି ଏବଂ ସେମାନେ ଏକଜୁଟ ହୋଇ ତାକୁ ଯଦି exercise କରିବା ପାଇଁ ବାହାରନ୍ତି ତା'ହେଲେ ସରକାର ନିରୁପାୟ କିନ୍ତୁ ସେତେବେଳେ ଜଣାପଡ଼ିବ ଏବଂ ଅନ୍ତତଃ ଦେଶବାସୀ ଜାଣିପାରିବେ ଯେ କାହା ମନରେ କ'ଣ ଅଛି ।

Shri SHRADDHAKAR SUPAKAR : ସଭାପତି ମହାଶୟ ମୁଁ ଏ ବିଷୟରେ କିଛି କହିବି । ମାନ୍ୟବର ମୁଖ୍ୟମନ୍ତ୍ରୀ ଯାହା କହିଲେ ଯେ ବିରୋଧିଦଳର ସଭ୍ୟମାନେ ଯଦି ଚାହାନ୍ତି ଏହାକୁ ଅନିର୍ଦ୍ଦିଷ୍ଟ କାଳପାଇଁ ଗଡାଇଦେଇ ପାରନ୍ତି ଏବଂ ଯେପରି ଏହା ଶୀଘ୍ର pass ନ ହୋଇ ପାରିବ ସେ ଦିଗରେ କାର୍ଯ୍ୟ କରିବା ପାଇଁ ସେମାନଙ୍କର ପୂର୍ଣ୍ଣ ଅଧିକାର ରହିଛି, ତେବେ ମୁଁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ଏତିକି ମାତ୍ର ଜଣାଇ ଦେବାକୁ ଚାହେଁ ଯେ ଏହି Bill ଯେପରି ଅତିଶୀଘ୍ର pass ହୁଏ ଏବଂ ଅତିଶୀଘ୍ର କାର୍ଯ୍ୟକାରୀ ହୁଏ, ସେଥିଲାଗି ତାଙ୍କର ଯେଉଁ ପରିମାଣରେ ବ୍ୟସ୍ତତା, ବ୍ୟଗ୍ରତା ଏବଂ ବ୍ୟାକୁଳତା ଅଛି ସେହି ପରିମାଣରେ ବ୍ୟସ୍ତତା, ବ୍ୟଗ୍ରତା ଏବଂ ବ୍ୟାକୁଳତା ବିରୋଧିଦଳର ଅଧିକାଂଶ ସଭ୍ୟଙ୍କର ଅଛି । ତେବେ ତା ସଙ୍ଗେ ସଙ୍ଗେ ଏତିକି କହିବାକୁ ମୁଁ ବାଧ୍ୟ ହେଉଛି ଯେ ଏହି ପ୍ରକାର ଗୁରୁତ୍ୱପୂର୍ଣ୍ଣ Billମାନ ବ୍ୟବସ୍ଥା ସଭାର ଶେଷ ସମୟକୁ ନ ଆଣି ସଭ୍ୟମାନଙ୍କର ଯଥେଷ୍ଟ ଧୈର୍ଯ୍ୟଥିବା ସମୟରେ ଯଦି ଅଣାଯାଇ ପାରିଥାନ୍ତା ତାହେଲେ ଭଲ ହୋଇଥାନ୍ତା । ଦ୍ୱିତୀୟ କଥା ହେଉଛି ଯେ ମାନ୍ୟବର ମୁଖ୍ୟମନ୍ତ୍ରୀ ଏଠାରେ କହିଲେ ଏଇଟା ଅତିଶୀଘ୍ର ଆମେ pass କରିଦେବା ଉଚିତ । ଦେଶ ବର୍ତ୍ତମାନ ଚାହେଁ ଜମିଦାରୀ ଉଚ୍ଛେଦ ଶୀଘ୍ର ହେଉ ।

ଆମ ପ୍ରଦେଶରେ ଜମିଦାରୀ ଉଚ୍ଛେଦ ଶୀଘ୍ର ହେଉ । ଏ ବିଷୟରେ ବିଶେଷ ମତଭେଦ ହେବାର ଅବକାଶ ନାହିଁ । କିନ୍ତୁ ତା ସଙ୍ଗେ ସଙ୍ଗେ ମୁଁ ଏତିକି କହିବାକୁ ଚାହେଁ ଯେ ଯଦି ହଠାତ୍ ତରତରରେ ଏ ବିଲ୍‌ଟି ପାସ୍ କରିଦିଆଯାଏ ତାହାହେଲେ ତାର ପରିଣତି ହୁଏତ ଏଇଆ ହେବ ଯେ ଏ ଯେଉଁ ଭଗଗ୍ରଷ୍ଟ ଆଇନ ହୋଇଛି ଯାହା ଫଳରେ କି ଆମେ ଆଶା କରିଥିଲୁ ଯେ ଲୋକଙ୍କର ଯେତିକି ଉପକାର ହେବାର କଥା, ସେତିକି ଉପକାର ହେଲନାହିଁ । ସେହିପରି ଏ ଯେଉଁ ଆଇନ ଆମେ ପାସ୍ କରିବାକୁ ଯାଉଛୁ ତାହା ଆମେ ଭଲ ବୋଲି ଆଶା କରି ଯାହା pass କରିବାକୁ ଯାଉଛୁ ତାହା ସେ ଭଗଗ୍ରଷ୍ଟ ଆଇନ ପରି ହୋଇପାରେ । ସେହି ଦୃଷ୍ଟିରୁ ଆମେ ଯଦି 30 କିମ୍ବା 31 ତାରିଖ ପୂର୍ବରୁ ଏହାକୁ ପାସ୍ କରିଦେଉ ତାହାହେଲେ ବିରୋଧୀ ଦଳର ସଭ୍ୟମାନେ ଏ ବିଷୟରେ କିଛି କହିବାକୁ ସମୟ ପାଇବେ ନାହିଁ ଏବଂ ସରକାର ଯଦି ଭାବନ୍ତି ଯେ ବିରୋଧିଦଳର ସଭ୍ୟମାନେ ଏଥିରେ କହିବା ଉଚିତ ନୁହେଁ, ତାହାହେଲେ ଆମେ ନୀରବ ରହିଛୁ ।

## The Bihar and Orissa State Aid to Industries (Orissa Amendment) Bill, 1952

Shri SHRADDHAKAR SUPAKAR: ମାନ୍ୟବର ବାଚସ୍ପତି ମହୋଦୟ, ଏ ଯେଉଁ Bihar and Orissa State Aid to Industries Bill ଆଗତ କରାହୋଇଛି, ଏହାର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ ହେଉଛି ଯେ, ବିଭିନ୍ନ ଶିଳ୍ପମାନଙ୍କୁ ଋଣ ଦେବାର ଯେଉଁ ପ୍ରସ୍ତାବ ଥିଲା, ତହିଁର ପରିସରକୁ ବଢ଼ାଇ ଦେବା ଏବଂ ଏହାର 2 ନମ୍ବର ଧାରାରେ କୁହାଯାଇଛି ଯେ, The following sub-clause shall be substituted namely "The giving of guarantee in respect of a loan, cash, credit, over draft or fixed in advance with a Registered Bank Insurance Company or Co-operative Society." ଏହାର Statement of objects and decisionsରେ ମଧ୍ୟ କୁହାଯାଇଛି owing to financial stringency it is not possible for Government to invest sufficient funds in industrial concerns with Government guarntee it is possible to arrange investment in Industries not only by Banks but also by Insurance Companies and Registered Co-operative Societies. Section 4 (b) of the Act is according by proposed to be amended so as to bring Insurance company and Registered Co-operative Society within it's scope ଅର୍ଥାତ୍ ଏ ଯେଉଁ ଋଣ ଦାନର ପରିସରକୁ ବର୍ଦ୍ଧିତ କରିଦିଆଯାଉଛି, କେବଳ ବ୍ୟାଙ୍କମାନଙ୍କ ପାଇଁ ସରକାର guarantee ଦେଉଥିଲେ, ବର୍ତ୍ତମାନ Insurance Company ଏବଂ Registered Co-operative Society ମାନଙ୍କପାଇଁ ମଧ୍ୟ guarantee ଦେଇ ପାରିବେ ।

(At this stage the Deputy Speaker took the Chair)

ଏ ବିଷୟରେ ମୁଁ କେବଳ ଏତିକି ମାତ୍ର କହିବାକୁ ଚାହେଁ ଯେ ଅତୀତରେ ଆମ ସରକାର ଏ ଯେଉ ଋଣଦାନ ପ୍ରଣାଳୀରେ ଯେପରି ଭାବରେ କାର୍ଯ୍ୟ କରୁଛନ୍ତି, ତା ପ୍ରଶଂସାର ବିଷୟ ନୁହେଁ । ଏ ଯେଉଁ ଆଇନ ଏଇଟା ସାହାଯ୍ୟରେ ଦେଶରେ ଶିଳ୍ପର ଉନ୍ନତି କିପରି ହୋଇ-ପାରିବ ଏବଂ ସେ ଦିଗରେ ସରକାର କିପରି ଭାବରେ ସାହାଯ୍ୟ କଲେ ଦେଶର ଶିଳ୍ପ ପ୍ରଗତିପଥରେ ଅଗ୍ରସର ହୋଇପାରିବ, ସେହି ଉଦ୍ଦେଶ୍ୟରେ ଏହା କରାଯାଇଛି । କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ ଆମ ସରକାର ଏବଂ ଯେଉଁ କର୍ମଚାରୀମାନେ ଯେଉଁମାନଙ୍କ ଉପରେ ଏ ଋଣଦାନର ଦାୟିତ୍ୱ ଦିଆଯାଇଛି ସେମାନେ ଏ ବିଷୟରେ ଯେତେଦୂର ତତ୍ପରତା ଏବଂ ସାବଧାନତା ଅବଲମ୍ବନ କରିବାର କଥା ତାହା କରିନାହାନ୍ତି । ସାଧାରଣ ଲୋକେ ଆମ୍ଭମାନଙ୍କ ମଧ୍ୟରୁ ଯେଉଁମାନେ ହୁଏତ ଋଣଦାତା ଥିବେ କିମ୍ବା ଯେଉଁମାନେ ଋଣଗ୍ରହୀତା ଥିବେ ସେମାନେ ବୁଝିପାରୁଥିବେ, ଯେ ଋଣଦେବା ସମୟରେ କେତେଦୂର ସାବଧାନତା ପ୍ରୟୋଗ କରିବା

ଦରକାରୁ. ବ୍ୟକ୍ତିଗତ ଭାବରେ । ଷ୍ଟେଟ ବା ସରକାର ବା ରାଜ୍ୟ ତରଫର ଯେଉଁ ସବୁ ଋଣ ଦିଆଯାଏ ସେ ବିଷୟରେ ତହିଁରୁ ଅଧିକ ପରିମାଣରେ ସାବଧାନତା ଅବଲମ୍ବନ କରିବାର ପ୍ରୟୋଜନ । ଅତୀତରେ ଯେଉଁ ଋଣଦାନ କରାଯାଇଛି, ଆମେ ଦେଖିବାକୁ ପାଉ ଯେ ସେଥି ମଧ୍ୟରେ ଅନେକ ଋଣ ଏପରି ଭାବରେ ଦିଆଯାଇଛି ଯେ ଆମେ ଆଜିଯାଏ ସେ ଋଣ ପରିଶୋଧ ପାଇନାହୁଁ ଏବଂ ଏହି ଋଣଦାନ ବିଷୟରେ ଯେଉଁ ସବୁ କଟକଣା ଏବଂ ଯେଉଁ ସବୁ ସାବଧାନତା ପ୍ରୟୋଗ କରିବାର କଥା ଏବଂ ଯେଉଁଥି ପାଇଁ ବିଧିବଦ୍ଧ ବ୍ୟବସ୍ଥା ରହିଛି, ସେ ବ୍ୟବସ୍ଥାକୁ, ସେ ସାବଧାନତାକୁ ମଧ୍ୟ ଉପେକ୍ଷା କରାଯାଇଛି । କୌଣସି ବ୍ୟକ୍ତି-ବିଶେଷଙ୍କର ସୁବିଧା ପାଇଁ ନିୟମର ବ୍ୟତିକ୍ରମ ମଧ୍ୟ କରାଯାଇଛି । ତା' ଫଳରେ ଆମ ରାଜ୍ୟକୁ ଲକ୍ଷ ଲକ୍ଷ ଟଙ୍କା କ୍ଷତି ସହିବାକୁ ପଡ଼ିଛି । ଉଦାହରଣ ସ୍ୱରୂପ ମୁଁ କହିବାକୁ ଚାହେଁ ଯେ Synthetic Petrol ବିଷୟରେ ଯେଉଁ ଋଣ ଦିଆଗଲା, ସେଟା ବିଶେଷ ଭାବରେ ଚିନ୍ତା ନକରି ଦିଆଯାଇଥିଲା । ତା' ଉପରେ Darwin and Company ତରଫରୁ Dr. Chopraଙ୍କୁ ଯେଉଁ ଟଙ୍କା advance କରାଯାଇଥିଲା, ସେଥିରେ ମଧ୍ୟ ଆମ ସରକାରଙ୍କର ଅନେକ ଗୁଡ଼ିଏ ଟଙ୍କା ଲୋକସାନ ହୋଇଛି । ମୁଁ କେବଳ ଏଠି କେତେଗୁଡ଼ିଏ ଦୃଷ୍ଟାନ୍ତ ଦେଉଛି । ଏପରି ଆହୁରି ଅନେକ ଦୃଷ୍ଟାନ୍ତ ରହିଛି । ତା'ପରେ ଯେଉଁ ଋଣଦାନ ଦିଆଯାଇଛି, ସେଥିରେ ଦେଖାଯାଇଛି ଯେ, ତେଲିଆ ମୁଣ୍ଡରେ ତେଲଦେବା ନୀତି ଆମ ସରକାର ବରାବର ଗ୍ରହଣ କରି ଆସିଛନ୍ତି । ଯେଉଁମାନେ ଛୋଟ ଛୋଟ ଶିଳ୍ପ, କୁଟୀର ଶିଳ୍ପ ଏବଂ ଯେଉଁମାନଙ୍କର ଋଣ ପାଇବାପାଇଁ ପ୍ରକୃତ ନ୍ୟାଯ୍ୟ ଦାବି ବେଶୀ, ସେମାନଙ୍କୁ ଉପେକ୍ଷା କରାଯାଇଛି । ଉଦାହରଣ ସ୍ୱରୂପ ମୁଁ କହିଛି ଏ ଯେଉଁ Orissa Cements Limited ଏବଂ Orissa Textile Mills ଏ ଦୁଇଟି ଅନୁଷ୍ଠାନକୁ କେତେ ଲକ୍ଷ ଟଙ୍କା ଋଣ ସ୍ୱରୂପ ଦିଆଗଲା । ତା'ପରେ ଦେଖାଗଲା ସେମାନେ ଆମ ସରକାରଙ୍କଠାରୁ ଋଣ ନେଇସାରିଲା ପରେ ଅନ୍ୟ ସ୍ଥାନରେ ମଧ୍ୟ ବୋଧହୁଏ Industrial finance corporationଙ୍କ ଠାରୁ ଋଣ ଆଣିଛନ୍ତି । ମୋର ଯେତେଦୂର ମନେ ହେଉଛି, ଗୋଟିଏ ପ୍ରଶ୍ନର ଉତ୍ତରରେ ସରକାର ସ୍ୱୀକାର କରିଥିଲେ ଯେ ଆମ ସରକାରଙ୍କଠାରୁ ଋଣ ନେଇସାରିଲା ପରେ ଅନ୍ୟସ୍ଥାନରୁ ଋଣ ଦିଆ ହୋଇଛି ଏବଂ ସେମାନଙ୍କୁ ପ୍ରଥମ priority charge ଦିଆଯାଇଛି । ତା'ପରେ ସେହି ଦୁଇଟି ଅନୁଷ୍ଠାନକୁ ଗତବର୍ଷ ବୋଧହୁଏ 1950-51ରେ Industrial housing scheme ପାଇଁ କେତେ ଲକ୍ଷ ଟଙ୍କା ସାହାଯ୍ୟ ଦେଇଥିଲେ, ସରକାର ଅବଶ୍ୟ ଏ ବିଷୟରେ ଉତ୍ତର ଦେଇପାରିଲେ ନାହିଁ, କିନ୍ତୁ ମୁଁ ଯେତେଦୂର ଖବର ରଖିଛି ଗୋଟିଏ ମିଲ୍ ପାଇଁ 5 ଲକ୍ଷ ଟଙ୍କା ଏବଂ ଅନ୍ୟଟି ପାଇଁ 3 ଲକ୍ଷ ଟଙ୍କା ଋଣ ଦିଆଯାଇଛି, କିନ୍ତୁ ଏସବୁ ଯେତେବେଳେ ଚୁକ୍ତି କରାଯାଉଛି, ସେତେବେଳେ ସେହି ଚୁକ୍ତି ସର୍ତ୍ତରେ ଏପରି ଭାବରେ ଲେଖାଯାଉଛି ଯେ ଅନ୍ୟ କୌଣସି ପୂର୍ବ ଋଣ ବା liability ନାହିଁ ଅର୍ଥାତ୍ ସେମାନେ ଅନ୍ୟ କୌଣସିଠାରୁ ଋଣ ନେଇ ନାହାନ୍ତି । ମୁଁ ବିଭାଗୀୟ କର୍ତ୍ତୃପକ୍ଷ ଏବଂ ମାନ୍ୟବର ପ୍ରଧାନ ମନ୍ତ୍ରୀଙ୍କୁ ନିର୍ଦ୍ଦିଷ୍ଟ ଭାବରେ ପ୍ରଶ୍ନ କରିବାକୁ ଚାହେଁ ଯେ ଯଦି ଏକଥା ସତ୍ୟ ହୋଇଥାଏ, ତା'ହେଲେ ସରକାର କ'ଣ ଜାଣି ନଥିଲେ ଯେ ଏମାନେ ଅନ୍ୟ

ଋଣ ମଧ୍ୟ ଆଣିଛନ୍ତି ଏବଂ ଅନ୍ୟ ଋଣ ଆଣିବା ସତ୍ତ୍ୱେ ଏପରି ଭାବରେ Agreementରେ ବିନା ବିଗ୍ଭରରେ ଦେଖାଇଛନ୍ତି ଏବଂ ଆମ ସରକାର ମଧ୍ୟ ତାହା ଜାଣିଶୁଣି ନ ଜାଣିଲା ପରି ରହିଛନ୍ତି ? ଏସବୁ ବିଷୟକୁ ଆପଣ ସ୍ପଷ୍ଟ ଭାବରେ ବୁଝିପାରୁଥିବେ ଯେ କିପରି ଭାବରେ ଆମ ସରକାର ତେଲିଆ ମୁଣ୍ଡରେ ତେଲ ବୋଳିବା ନୀତି ଧରିଛନ୍ତି ଏବଂ ସମଗ୍ର ରାଜ୍ୟର ଶିଳ୍ପର ସର୍ବାଙ୍ଗୀନ ଉନ୍ନତି ଯେପରି ହେବ, ସେ ଦିଗରେ ଚେଷ୍ଟା ନ କରି କେବଳ କେତେଗୁଡ଼ିଏ ଶିଳ୍ପ ଏବଂ କେତେଗୁଡ଼ିଏ ପୁଞ୍ଜିପତିଙ୍କୁ ଯେଉଁମାନେ କି ନିଜ ଚେଷ୍ଟାରେ ଏବଂ ନିଜ ଉଦ୍ୟମରେ ଶିଳ୍ପର ପ୍ରସାର କରିପାରିଥାନ୍ତେ, ସେହିମାନଙ୍କୁହିଁ ସାହାଯ୍ୟ ଦେବାରେ ଆମ ରାଜ୍ୟର ଅର୍ଥ ଋଣ ସ୍ୱରୂପ ଦେଉଛନ୍ତି । ଏ ବିଷୟରେ ଯଦି କୁହାଯାଏ ଯେ, ସରକାର ପାତରଅନ୍ତର ନୀତି ପ୍ରୟୋଗ କରୁଛନ୍ତି, ତାହାହେଲେ ମାନ୍ୟବର ମନ୍ତ୍ରୀମାନେ ହୁଏତ ବିରକ୍ତ ହେବେ । ମୁଁ ଯେତେବେଳେ Appropirition Bill ବିଷୟରେ ଆଲୋଚନା କରୁଥିଲି, ସେ ସମୟରେ ସମାଲୋଚନା କରିଥିଲି ଯେ, ଆମର ଶିଳ୍ପ ବିଭାଗରେ କିପରି ଭାବରେ ପ୍ରିୟାପ୍ରୀତି ତୋଷଣ ଚାଲିଛି ।

Shri DINABANDHU SAHU (Minister): ପ୍ରିୟା ଶବ୍ଦ ସ୍ତ୍ରୀ ଲିଙ୍ଗ ନା ପୁଂଲିଙ୍ଗ ?

Shri RADHANATH RATH (Minister): ପ୍ରିୟା-ପ୍ରୀତି ଉଭୟ ସ୍ତ୍ରୀ ଲିଙ୍ଗ ।

Shri SHRADDHAKAR SUPAKAR: ସେଇଟା ଆଇନ ବିଭାଗର ମାନ୍ୟବର ମନ୍ତ୍ରୀ ଯାହାଙ୍କର କି ଆଇନ ବିଷୟରେ ଅନେକ ଅଭିଜ୍ଞତା ଅଛି, ସେ ଜାଣିଥିବେ । ସେ ଅଭିଜ୍ଞତା ମୋର ନାହିଁ ।

## ବେସରକାରୀ କାର୍ଯ୍ୟ

### ମଧ୍ୟପ୍ରଦେଶ ପ୍ରଜାସ୍ୱତ୍ୱ (Tenancy) ଓଡ଼ିଶା ସଂଶୋଧନ ବିଲ୍, 1952

ଓଡ଼ିଶା ବିଧାନସଭାର ଡକ୍ଟର ସୂପକାର ଉପରୋକ୍ତ ବିଲ୍ ଉପରେ ମତାମତ ଦେଇଛନ୍ତି (ତା 1-7-1952) ଏବଂ ଏହାର ଲକ୍ଷ୍ୟ ସଂପର୍କରେ ସୂଚନା ଦେଇ କହିଛନ୍ତି ଯେ ହୀରାକୁଦ ବନ୍ଧ ଯୋଗୁଁ ବହୁ ଏକର ଜମି ଦଖଲ କରାଯାଇଛି । ମାତ୍ର ଆକ୍ରାନ୍ତ ଜନସାଧାରଣଙ୍କ ସୁବିଧାପାଇଁ ସରକାରଙ୍କ ଦ୍ୱାରା ଆଶାନୁରୂପ ପଦକ୍ଷେପ ନିଆଯାଇନାହିଁ । ସେସବୁ ଜମିକୁ ଚାଷ ଉପଯୋଗୀ କରିବା ନିମନ୍ତେ ବହୁ ଅର୍ଥ ବ୍ୟୟ କରିବାକୁ ପଡୁଛି । ସେ ଯଥାର୍ଥରେ କହିଛନ୍ତି, "ତା' ନହେଲେ ସେମାନେ ଯେପରି ସେସବୁ ଜମି ଓ ଘର ଠିକ୍ ଭାବରେ ପାଇ-ପାରିବେ, ସେଥିପାଇଁ ବନ୍ଦୋବସ୍ତ ହେବା ଦରକାର । ଏ ବିଷୟରେ ସରକାର ଗତ 5 ବର୍ଷ ମଧ୍ୟରେ ଅର୍ଥାତ୍ ଯେଉଁ ଦିନରୁ ହୀରାକୁଦ୍ ବନ୍ଧ ଯୋଜନାର ମୂଳଭିତ୍ତି ସ୍ଥାପନ କରାଗଲା

ସେହି ଦିନଠାରୁ ଏହା ମଧ୍ୟରେ କ'ଣ କ'ଣ କରିଛନ୍ତି ଏବଂ କେତେ କମ୍ କାର୍ଯ୍ୟ କରିଛନ୍ତି, ସେ ବିଷୟରେ ସାମାନ୍ୟ ସୂଚନା ଓ ବିଲ୍ ସଂପର୍କରେ ଦେଲେ ପ୍ରାସଙ୍ଗିକ ହେବ" । ଏହା ପରେ ସେ ହୀରାକୁଦ ବୁଡ଼ିଅଞ୍ଚଳ ସଂପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ସେ ସରକାରଙ୍କୁ ଭବିଷ୍ୟତ କର୍ମପନ୍ଥାପାଇଁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ସାବଧାନ କରାଇଛନ୍ତି । ବିଲ୍ ଉପରେ ବିସ୍ତୃତ ଆଲୋଚନାପାଇଁ ସେ ଏକ ପାଞ୍ଚ ଜଣିଆ Selection Comittee ନିଯୁକ୍ତ କରିବାକୁ ପ୍ରସ୍ତାବ କରିଛନ୍ତି । ତାପରେ ବାଚସ୍ପତି ବିଲ୍ ଉପରେ ବିସ୍ତୃତ ଆଲୋଚନାପାଇଁ ଅନୁମତି ଦେଇଥିଲେ ।

## NON-OFFICIAL BUSINESS

### The Cental Provinces Tenancy (Orissa Amendment) Bill, 1952

The SPEAKER : Let us now proceed to non-official business, namely. The Central Provinces Tenancy (Orissa Amendment) Bill, 1952.

Shri SHRADDHAKAR SUPAKAR : ବାଚସ୍ପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ, The Central Provinces Tenancy (Orissa Amendment) Bill, 1952 କୁ ବିଚାରକୁ ନିଆଯାଉ । ଏ Bill ର Statement of Objects and Reasons ରେ ଯାହା ଅଛି, ତାହା ଛଡ଼ା କେତେକ କଥା କହିବା ଦରକାର । ଏ Bill ର ଉଦ୍ଦେଶ୍ୟ କ'ଣ ମୁଁ ତାହା ବୁଝାଇ ଦେବାକୁ ଚାହେଁ । Statement of Objects and Reasons ରୁ ଆପଣ ଦେଖିବେ ଯେ ଏହାର ଉଦ୍ଦେଶ୍ୟ ସୀମାବଦ୍ଧ ଏବଂ ପ୍ରଥମରୁ କୁହାଯାଇଛି ଯେ in the district of Sambalpur, thousands of acres of land have been acquired for the Hirakud Dam and allied projects but no adequate provision is made for resettling the persons affected by these projects ଆପଣ ଜାଣିଥିବେ ଯେ ଅଳ୍ପ କେତେ ଦିନ ତଳେ ମୋର starred question No. 560ର ଉତ୍ତରରେ ମାନ୍ୟବର ମୁଖ୍ୟମନ୍ତ୍ରୀ କହିଥିଲେ ଯେ ସମ୍ବଲପୁରରେ ହୀରାକୁଦ ବନ୍ଧ ହେବା ଫଳରେ ମୋଟରେ 1,42,290 ଏକର ଚାଷ ଜମି ଏବଂ 65,624 ଏକର ଅନ୍ୟ ଜମି ଏପରି ମୋଟ 2 ଲକ୍ଷ ଏକର ଜମି ଜଳମଗ୍ନ ହେବ । ଆଉ ମଧ୍ୟ ହୀରାକୁଦ Projectର Budget Estimate ବିଷୟରେ ଯେଉଁ ଗୋଟିଏ ସ୍ୱତନ୍ତ୍ର ପୁସ୍ତିକା ଆମକୁ ଦିଆଯାଇଛି, ସେଥିର 37 ପୃଷ୍ଠା ଦେଖିଲେ ଆପଣ ଦେଖିବେ ଯେ ସର୍ବମୋଟ 198 ଖଣ୍ଡ ଗାଁ ବୁଡ଼ିଯିବ । ଏହାଛଡ଼ା ଆଉ 9 ଖଣ୍ଡ ଗାଁ ଏପରି ସର୍ବମୋଟ 207 ଖଣ୍ଡ ଗାଁ ହୀରାକୁଦ ଯୋଜନା ପାଇଁ acquire କରାଯିବ । ସେହି ପୁସ୍ତିକାର 10 ନମ୍ବର paragraph ଯଦି ଆପଣ ଦେଖିବେ ତାହା ହେଲେ ଦେଖିବେ ଯେ

1952 ସାଲ ମାର୍ଚ୍ଚ ପର୍ଯ୍ୟନ୍ତ ସର୍ବମୋଟ 39,567·86 ଏକର ଜମି acquire ହୋଇ ସାରିଲାଣି । ପ୍ରଥମେ ଯେଉଁ 2 ଲକ୍ଷ ଏକର ଜମି acquire ହେବ, ତାକୁ ହରାଇବା ଫଳରେ ଯେଉଁ ଲକ୍ଷାଧିକ ଲୋକେ ଭୂମି ଶୂନ୍ୟ ଏବଂ ବାସ ଶୂନ୍ୟ ହେବେ ସେମାନଙ୍କ ପାଇଁ ଉପଯୁକ୍ତ ଜମି ଏବଂ ବାସଗୃହ ବ୍ୟବସ୍ଥା କରିବା ଦରକାର । ତା ନ ହେଲେ ସେମାନେ ଯେପରି ସେ ସବୁ ଜମି ଏବଂ ଘର ଠିକ୍ ଭାବରେ ପାଇ ପାରିବେ, ସେଥିପାଇଁ ବନ୍ଦୋବସ୍ତ ହେବା ଦରକାର । ଏ ବିଷୟରେ ସରକାର ଗତ 6 ବର୍ଷ ମଧ୍ୟରେ ଅର୍ଥାତ୍ ଯେଉଁ ଦିନରୁ ହୀରାକୁଦ ବନ୍ଧ ଯୋଜନାର ମୂଳଭିତ୍ତି ସ୍ଥାପନ କରାଗଲା ସେହିଦିନଠାରୁ ଏହା ମଧ୍ୟରେ କ'ଣ କ'ଣ କରିଛନ୍ତି ଏବଂ କେତେ କମ୍ କାର୍ଯ୍ୟ କରିଛନ୍ତି, ସେ ବିଷୟରେ ସାମାନ୍ୟ ସୂଚନା ଏ Bill ସମ୍ପର୍କରେ ଦେଲେ ପ୍ରାସଙ୍ଗିକ ହେବ । ତେଣୁ ମୁଁ ଏ ବିଷୟରେ ଯେତେଦୂର ସମ୍ଭବ ସଂକ୍ଷିପ୍ତ ଭାବରେ କେତେକ ବିଷୟ ଆଲୋଚନା କରିବାକୁ ଯାଉଛି । ଆପଣ ଜାଣିଥିବେ ଯେ, ଯଦିଓ 1946 ସାଲରେ ହୀରାକୁଦ ବନ୍ଧ ଯୋଜନା ଆରମ୍ଭ କରାହେଲା ତଥାପି ଏହି ପୁନର୍ବସତି କାର୍ଯ୍ୟ ଦିଗରେ 1949 ସାଲ ଫେବୃଆରୀ 6 ତାରିଖ ପର୍ଯ୍ୟନ୍ତ କୌଣସି କାର୍ଯ୍ୟାନୁଷ୍ଠାନ ହୋଇ ନ ଥିଲା । ସେ ସମୟରେ ଗୋଟିଏ ଉପନିର୍ବାଚନ ହୋଇଥିଲା । କେବଳ କେତେକ ସ୍ଥାନରେ survey ମାତ୍ର କରିଥିଲେ । ସେହିଦିନ ଫେବୃଆରୀ 6 ତାରିଖ ଦିନ Reclamation Centre ଗୋଟିଏ ସ୍ଥାନରେ କାର୍ଯ୍ୟ ଆରମ୍ଭ ହୋଇଥିଲା । ଏହି ପ୍ରାୟ ସାଢ଼େ ତିନି ବର୍ଷ ସମୟ ମଧ୍ୟରେ ଯେଉଁ ପରିମାଣରେ କାର୍ଯ୍ୟ ହୋଇଛି ତାହା ଦେଖିଲେ ସମ୍ବଲପୁର-ହୀରାକୁଦ ବୁଡ଼ୀ ଅଞ୍ଚଳର ଲୋକମାନଙ୍କର ଭବିଷ୍ୟତ ସମ୍ବନ୍ଧରେ ଘୋର ସନ୍ଦେହ ପ୍ରକାଶ ପାଇବା ସ୍ୱାଭାବିକ । ମୁଁ ଆପଣଙ୍କୁ ସୂଚାଇ ଦେଲି ଏ ପର୍ଯ୍ୟନ୍ତ 36,567·86 ଏକର ଜମି acquire ହୋଇଥିବା ସ୍ଥଳେ ଯେଉଁ ଜମି reclaimed ହୋଇଛି ଅର୍ଥାତ୍ ଜଙ୍ଗଲ ସଫା ହୋଇଛି, ତାହାର area ହେଉଛି 1,662·23 ଏକର ଏବଂ ସେଥିମଧ୍ୟରୁ ସରକାରଙ୍କ କହିବା ଅନୁସାରେ କୃଷି ପାଇଁ ଉପଯୋଗ କରାଯାଇଛି 3,148·20 ଏକର । ଏଇଟା ସରକାର କେତେ ଦିନ ତଳେ ମୋର Starred question No. 362ର ଉତ୍ତରରେ କହିଥିଲେ ।

ଆପଣ ଯଦି ଦେଖିବେ ଏହି 3 ବର୍ଷ ଭିତରେ ଜମି ଆବାଦ କରିବାରେ ଯେଉଁ କାର୍ଯ୍ୟ କରିଛନ୍ତି, ସେହି ଗତିରେ ଯଦି ସରକାର ଅଗ୍ରସର ହୁଅନ୍ତି, ତାହାହେଲେ ଆମ୍ଭମାନଙ୍କୁ ଦେଢ଼ଲକ୍ଷ ଏକର ଜମି acquire କରିବା ପାଇଁ ହୁଏତ 150 ବର୍ଷ ପର୍ଯ୍ୟନ୍ତ ଲାଗିବାର କଥା । ଆଉ ଯେଉଁ ପରିମାଣରେ ଗତ ଦୁଇ ବର୍ଷ ଭିତରେ କାର୍ଯ୍ୟ ହୋଇଛି, ସେତା ଯଦି ଆପଣ ଦେଖିବେ ତାହାହେଲେ ଦେଖିପାରିବେ ଯେ; ଜୁନ୍ 1950 ପର୍ଯ୍ୟନ୍ତ କେତେ କମ୍ କାର୍ଯ୍ୟ ହୋଇଛି । ସେ ବିଷୟରେ ଗୋଟିଏ ପ୍ରଶ୍ନ କରାଯାଇଥିଲା, ଅଗଷ୍ଟ 1950ରେ । ସେ ସମୟରେ କୁହାଯାଇଥିଲା ଯେ, ମାତ୍ର 436 ଏକର ଜମି କୃଷି ଉପଯୋଗୀ କରାଯାଇଥିଲା । ଏ ଯେଉଁ ଜମି କୃଷି ଉପଯୋଗୀ କରାଯାଇଛି, ଏଇଟା ଯଦି

ପ୍ରକୃତରେ ଲୋକଙ୍କର ବାସ ଓ ଗୃଷ ଉପଯୋଗୀ ହୋଇଥାନ୍ତା ବା ହୋଇପାରିବ ତା'ହେଲେ ଆମର ଆଶା ରହନ୍ତା ଯେ ଅନ୍ତତଃ ସୁଦୂର ଭବିଷ୍ୟତରେ–ଆମେ ହୁଏତ ଜମି ପାଇପାରିବୁ ନାହିଁ, କିନ୍ତୁ ଯେଉଁମାନଙ୍କର ଜମି ବାଡ଼ି, ଘରଦ୍ୱାର ଯାଉଛି, ସେମାନଙ୍କର ପୁଅନାତି ଜମି ପାଇପାରିବେ । କିନ୍ତୁ ଯାହା ଦେଖା ଯାଉଛି ଯେଉଁ ଜମି ସବୁ ଗୃଷ ଉପଯୋଗୀ କରଯାଉଛି ସେଇଟା ପ୍ରକୃତରେ କେତେଦୂର ଗୃଷୀମାନଙ୍କର ବ୍ୟବହାରୋପଯୋଗୀ ହେଉଛି, ସେ ବିଷୟ ବିଶେଷ ଚିନ୍ତା କରିବାର କଥା । ମୁଁ ଏ ବିଷୟରେ ପୂର୍ବରୁ ଯାହା କହିଛି; ତା'ର ପୁନରକ୍ତି କରିବି ନାହିଁ । କେବଳ କେତେଗୁଡ଼ିଏ figures ଆପଣଙ୍କ ସମ୍ମୁଖରେ ଉପସ୍ଥାପିତ କରିବି ଯେଉଁଥିରୁ କି ଆପଣ ଏହାର ପ୍ରତ୍ୟକ୍ଷ ଉପଯୋଗିତା ବା ଅନୁପଯୋଗିତା ବିଷୟରେ ସ୍ପଷ୍ଟ ପ୍ରମାଣ ପାଇପାରିବେ ଏବଂ ଏଇଟା ଜାଣିବାପରେ ଭଲ କି ମନ୍ଦ ଏ ବିଷୟରେ ମତ ପ୍ରକାଶର କିଛି ଆଉ ରାସ୍ତା ନ ଥିବ । ମୁଁ ଏ ବିଷୟରେ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବି । 1950 ସାଲର Supplementary Budget ପ୍ରତି General Administration Headରେ ଯେଉଁ ଟ 17,960 ରଖାଯାଇଥିଲା, ସେଟା ଏହି ଉଦ୍ଦେଶ୍ୟରେ ରଖାଯାଇଥିଲା ଯେ ଯେଉଁମାନଙ୍କ ପାଇଁ ଏହି ସବୁ ଜମି ଆବାଦ୍ କରଯାଉଛି ସେହି ଲୋକମାନଙ୍କ ପାଇଁ Experimental basisରେ ଗୃଷ କରଯିବ । "On an experimental basis of land reclaimed for the purpose of resettlement of displaced persons." ଯେଉଁ ଜମି ଲୋକମାନଙ୍କ ପାଇଁ ଆବାଦ୍ କରଯାଇଛି, ସେଥିରେ ପରୀକ୍ଷାମୂଳକ ଗୃଷ ପାଇଁ ଟ 17,960 ରଖାଯାଇଥିଲା ଏବଂ ସେ ସମ୍ବନ୍ଧରେ ଆଶା ପ୍ରକାଶ କରଯାଇଥିଲା ଯେ that the sale-proceeds of the produce of the farm are estimated at Rs. 16,315 । ଟ 17,960 ଖର୍ଚ୍ଚ ହେବ ଏବଂ ଟ 16,315 ଆଦାୟ ହେବ, ଏଇଟା ଯେତେବେଳେ କୁହାଗଲା ସେତେବେଳେ ମୁଁ ଖୁବ୍ ଆନନ୍ଦିତ ହୋଇ ଏହାକୁ ସମର୍ଥନ କରିଥିଲି; ଯଦିଓ ବ୍ୟବସ୍ଥା ସଭାର ଅନ୍ୟାନ୍ୟ ସଭ୍ୟମାନେ ଏ ବିଷୟରେ ସନ୍ଦେହ ପ୍ରକାଶ କରିଥିଲେ ଏବଂ କହିଥିଲେ ଯେ ଏହି ଟଙ୍କାଟାକୁ ଯେଉଁମାନେ displaced person ଅର୍ଥାତ୍ ଯେଉଁମାନେ ଜମିବାଡ଼ି ହରାଇଛନ୍ତି ସେମାନଙ୍କୁ ଯଦି ଟଙ୍କା ଆକାରରେ ଦିଆଯା'ନ୍ତା ତାହାହେଲେ ଏହାର ଭଲ ଉପଯୋଗ ହୋଇ ପାରନ୍ତା । କିନ୍ତୁ ମୁଁ ସେ ସମ୍ବନ୍ଧରେ କହିଥିଲି ଏଇଟା ଗୋଟାଏ ଭଲ ବ୍ୟବସ୍ଥା ହେଉଛି । ମୋର ବକ୍ତୃତାରେ ଅଗଷ୍ଟ, ତା 7-1950ରେ କହିଥିଲି ଯାହା ଆପଣ ଆସେମ୍ବ୍ଲି ବିବରଣୀର 1591 ପୃଷ୍ଠାରୁ ଦେଖିପାରିବେ ଯେ "ବର୍ତ୍ତମାନ ସରକାର କହୁଛନ୍ତି ଯେ ଅନ୍ୟ ସ୍ଥାନରେ ମୁଁ ଅବଶ୍ୟ ଖାଲି ସମାଲୋଚନା ଦୃଷ୍ଟିରୁ କହୁନାହିଁ ଯାହା ପ୍ରକୃତ ଘଟଣା ଘଟିଯାଇଛି, ସେହି ଦୃଷ୍ଟିରୁ ମୁଁ ସରକାରଙ୍କୁ ଭବିଷ୍ୟତ କାର୍ଯ୍ୟପାଇଁ ସାବଧାନ କରି ଦେବାକୁ ଆଲୋଚନା କରୁଛି । ଭବିଷ୍ୟତରେ ଯଦି ଏହି ଟ 17,960 ଖର୍ଚ୍ଚ କରି ସେମାନେ ପ୍ରକୃତରେ ଟ 16,350 ଏହି ଜମିରୁ ଆମଦାନୀ କରିପାରନ୍ତି, ତାହାହେଲେ ମୁଁ ସ୍ପଷ୍ଟ ଭାବରେ କହିବି ଯେ ଲୋକମାନେ ଆଗ୍ରହ ସହକାରେ ସେହି ଜମି ନେବେ, କିନ୍ତୁ ନୂଆ ଶିଳି ପଥରରେ ଏ ପ୍ରକାର ଯେପରି

ଭାବରେ ଜମି ଆବାଦ୍ କରାଯାଉଛି, ଯେଉଁଥିରେ କିଛି ଫସଲ ମୋଟେ ହୋଇ ପାରିବ ନାହିଁ ଏବଂ ଯେଉଁଥିରେ କି ଜଳର ଆଦୌ ବନ୍ଦୋବସ୍ତ କରାଯାଇ ନାହିଁ ଏବଂ ଯେଉଁ ବନ୍ଧ କଟା ଆଦି କରାଯାଉଛି ସେଥିରେ ଖରାଦିନେ ମୋଟେ ପାଣି ରହୁ ନାହିଁ ଏବଂ ସେପରି ଭାବରେ ସମ୍ପୂର୍ଣ୍ଣ ମନୋଯୋଗ ନ ଦେଇ ଯଦି ବାହାରକୁ ଦେଖାଇଲା ଭଳିଆ କାମ କରାଯାଏ ତେବେ କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ । ବରଂ ସରକାର ସମ୍ପୂର୍ଣ୍ଣ ଭାବରେ ବଦନାମ୍ ହେବେ ଏବଂ ଭବିଷ୍ୟତରେ ପୁନର୍ବସତି ଲାଗି ଲୋକଙ୍କୁ ଆକୃଷ୍ଟ କରିପାରିବେ ନାହିଁ । ତେଣୁ ଏ ବିଷୟରେ ସରକାର ଅତି ସାବଧାନ ହୋଇ ଅଗ୍ରସର ହେବା ଉଚିତ ଏବଂ ଏପରି ଭାବରେ କାର୍ଯ୍ୟ କରନ୍ତୁ, ଯାହା ଫଳରେ ପୁନର୍ବସତି କେନ୍ଦ୍ର ଦ୍ୱାରା ଲୋକଙ୍କ ମନ ଆକୃଷ୍ଟ ହେବ ଏବଂ ସେମାନେ ସ୍ୱତଃପ୍ରବୃତ୍ତ ହୋଇ ଏହି ନୂତନ ସ୍ଥାନକୁ ଆସିବେ" । ମୁଁ ସେ ସମୟରେ ଯେଉ ପ୍ରକାଶ କରିଥିଲି, ସେ ବିଷୟରେ ପ୍ରକୃତ ତଥ୍ୟ ଜାଣିବା ପାଇଁ ଗୋଟିଏ ପ୍ରଶ୍ନ ଦେଇଥିଲି ।

Shri SADASIVA TRIPATHY (Minister): On a point of order, it was not my intention to disturb the leader of the opposition but as I find that he is discussing more about the arrangements so far made by the Government for the resettlement of the persons who will be displaced than the Bill itself. I draw the attention of the Chair to rule 85 where it is said "On the day on which any such motion is made or on any subsequent day..... the principle of the Bill and its general provisions may be discussed but the details of the Bill must not be discussed further than is necessary to explain its principle." I find the mover of the Bill is not discussing anything about the principle but making a passing remark about another question that is abour the resettlement. Therefore, I think Sir, the hon'ble member is not in order and he may not be allowed to speak more about resettlemhnt arrangement but be allowed to speaK on the principle of the Bill.

Shri SHRADDHAKAR SUPAKAR: ମାନ୍ୟବର ସଭାପତି ମହାଶୟ, ଏ ଯେଉଁ ବିଲ୍ ଆଗତ କରାଯାଇଛି, ତା'ର ଆଲୋଚନାର ପ୍ରଥମ ଭାଗରେ ଏହାର ଉଦ୍ଦେଶ୍ୟ ବୁଝାଇ କହିଥିଲି ଯେ ଲୋକମାନଙ୍କର ପୁନର୍ବସତି ସମସ୍ୟା ଆଂଶିକ ସମାଧାନ କରିବାପାଇଁ ଏ ବିଲ୍ ଆଗତ କରାଯାଇଛି ଏବଂ ଏ ପର୍ଯ୍ୟନ୍ତ ଆମ ସରକାର ସେ ଦିଗରେ କ'ଣ କରିଛନ୍ତି ଏବଂ ଏ ବିଲ୍‌ଦ୍ୱାରା କି ପରିମାଣରେ ସେ ସମସ୍ୟାର ସମାଧାନ ହୋଇ ପାରିବ ମୁଁ ସ୍ପଷ୍ଟ ଭାବରେ କହିଥିଲି ଯେ ଏ ବିଷୟର ଗୁରୁତ୍ୱ ଦୃଷ୍ଟିରୁ ଏହାର ପ୍ରାସଙ୍ଗିକ ବିଷୟମାନ ଯଦି ଆଲୋଚନା ନ କରାଯାଏ, ତାହାହେଲେ ଠିକ୍ ହେବନାହିଁ ।

The SPEAKER : ପ୍ରାସଙ୍ଗିକ ବିଷୟ principle ଭବରେ ଆଲୋଚନା କରିବେ principleକୁ ବୁଝାଇ ଦେବାପାଇଁ ଯେତିକି details ଦରକାର ସେତିକି ଦୂର ଯାଇପାରିବେ ।

Shri SHRADDHAKAR SUPAKAR : ମୁଁ detailsକୁ ଯାଉ ନାହିଁ । ମୁଁ କେବଳ ଏତିକି ସଂକ୍ଷେପରେ କହିଦେବାକୁ ଚାହେଁ ଯେ ଗତ କାଲି ମୁଁ unstarred question No. 102ରେ ପଚାରିଥିଲି ଯେ 1950-51 ସାଲର Supplementary demandରେ ଯେଉଁ ଟ 172,960 ରଖାଯାଇଥିଲା ତାହା କିପରି ଭବରେ ବ୍ୟବହାର କରାଯାଇଛି । ତାର ଉତ୍ତରରେ ସରକାର କହିଥିଲେ ଯେ "Out of the allotment of Rs. 17,960 a sum of Rs. 9,800·50 was actually spent and a sum of Rs. 2,896 was received as income" ଏଥିରୁ ଆପଣ ଦେଖିବେ ଯେଉଁସବୁ ଜମି ଚାଷୋପଯୋଗୀ ବୋଲି ସ୍ଥିର କରାଯାଇଛି; ତହିଁର ଉତ୍ପାଦନ କେତେ ହେଉଛି ଏବଂ ସରକାର ଯଦି ଏହି ପ୍ରକାର ଜମି ଚାଷୀମାନଙ୍କୁ ଦେବେ, ତାହେଲେ ତହିଁରୁ ଲୋକମାନେ କିପରି ଭବରେ ଜୀବିକା ନିର୍ବାହ କରିପାରିବେ । ବର୍ତ୍ତମାନ ଦେଖିବାର କଥା ଯେ ଏହାଛଡ଼ା ଅନ୍ୟ ଉପାୟ କଣ ? ସେହି ଉପାୟ ଖୋଜିବା ପାଇଁ ଅର୍ଥାତ ସରକାର ପୁନର୍ବସତି ପାଇଁ land reclamation ବା ଜମି ଆବାଦ୍ କରିବା ବିଷୟରେ ଏ ପର୍ଯ୍ୟନ୍ତ ବିଶେଷ କୃତକାର୍ଯ୍ୟ ହୋଇ ନ ଥିବା ଯୋଗୁଁ ଏବଂ ହୀରାକୁଦ ବନ୍ଧ ଯୋଜନା 1955-56 ମଧ୍ୟରେ ଶେଷ କରିବାର programme ଥିବା ଯୋଗୁଁ ଏହି ସମସ୍ୟା ଅତି ଗୁରୁତର ହୋଇ ଉଠିଛି ଯେ ଯେଉଁ ଲୋକମାନେ ଜମି ଓ ଘର ହରାଇବେ ସେମାନଙ୍କ ପାଇଁ କଣ ବ୍ୟବସ୍ଥା କରାଯାଇ ପାରିବ । ସେହି ଉଦ୍ଦେଶ୍ୟ ନେଇ ଏ ବିଲ୍ ଆଗତ କରାଯାଇଛି । ମୁଁ କହୁଛି ଯେହେତୁ ଅନ୍ୟ ଯାଗାରେ ଜମି ଆବାଦ୍ କରିବା କାର୍ଯ୍ୟ ସନ୍ତୋଷଜନକ ଭବରେ ଅଗ୍ରସର ହୋଇ ପାରୁନାହିଁ ଏବଂ ଏହାର ଭବିଷ୍ୟତ ଅନ୍ଧକାରମୟ ହୋଇ ଏ ପର୍ଯ୍ୟନ୍ତ ରହିଛି । ତେଣୁ ଯେଉଁ ଲୋକମାନେ ଜମିବାଡ଼ି ହରାଇବେ ସେମାନଙ୍କୁ ସାମାନ୍ୟ ଭବରେ କିଛି relief ଦେବାପାଇଁ ଏ ବିଲ୍ ଆଗତ କରାଯାଇଛି । ସେମାନଙ୍କୁ ବର୍ତ୍ତମାନ ଯେଉଁ ହିସାବରେ କ୍ଷତିପୂରଣ ମିଳୁଛି, ତାହା ପାଇଲେ ସେମାନେ କିପରି ଭବରେ ସେ ଟଙ୍କା ସଦୁପଯୋଗୀ କରିପାରିବେ ସେ ବିଷୟରେ ବିଶେଷ ଭବରେ ଚିନ୍ତା କରିବାର କଥା । ଆପଣ ଜାଣିଥିବେ ଯେ ଯେଉଁ ଲୋକଙ୍କର ଜମିବାଡ଼ି acquire କରାଯାଉଛି ସେମାନଙ୍କ ମଧ୍ୟରୁ ଅଧିକାଂଶ ଚାଷୀ ଏବଂ ସେମାନେ ଅନ୍ୟଠାରେ ଚାଷ ଜମି ଚାହାନ୍ତି । କିନ୍ତୁ ଦେଖାଯାଉଛି ଯଦି ସମ୍ବଲପୁର ଅଞ୍ଚଳରେ ଯେଉଁ ରୟତିଜମି ଅଛି ସେସବୁ non-transferable ଅର୍ଥାତ ତାହା ହସ୍ତାନ୍ତରିତ କରିବାର ମନା ଅଛି । ଆପଣ ଯଦି Central Provinces Tenancy Act, 1898ର 47 ଏବଂ 72 ଧାରା ଦେଖିବେ ତାହାହେଲେ ଦେଖିପାରିବେ ଯେ ସେଠାରେ ରୟତି ଜମି ଅର୍ଥାତ occupancy tenancy or

ordinary tenncy landର ହସ୍ତାନ୍ତରର କ୍ଷମତା ଅତି ସୀମାବଦ୍ଧ । ପ୍ରଥମ କଥା ହେଉଛି ଯେ, ଅନ୍ୟସ୍ଥାନରେ ଜମିବାଡ଼ି ହସ୍ତାନ୍ତର କରିବାର ଯେଉଁ କ୍ଷମତା ରହିଛି ସେ କ୍ଷମତାକୁ ସୀମାବଦ୍ଧ କରି ଦିଆଯାଇଛି, ଏବଂ ତା'ର ଗୋଟିଏ ବିଶେଷ କାରଣ ଅଛି ଯେ ସେହି ଅଞ୍ଚଳର ଅଧିକାଂଶ ଲୋକ ସରଳ, ଅଶିକ୍ଷିତ । ଯଦି ଏହି କ୍ଷମତାକୁ ସିମାବଦ୍ଧ କରି ଦିଆଯାଇ ନ ଥାନ୍ତା, ତାହାହେଲେ ହୁଏତ ଅଧିକାଂଶ ଲୋକଙ୍କର ଜମି ପ୍ରକୃତ ଚାଷୀଙ୍କଠାରୁ ମହାଜନ ବା exploitersଙ୍କ ହାତକୁ ଚାଲିଯାଇ ଥାନ୍ତା ଏବଂ ବର୍ତ୍ତମାନ ଯେଉଁମାନେ ଚାଷକରି ଜୀବିକା ନିର୍ବାହ କରୁଛନ୍ତି ସେମାନେ ହୁଏତ କଲିକତା, ରେଙ୍ଗୁନ ଏବଂ ଅନ୍ୟାନ୍ୟ ସ୍ଥାନରେ ଚାଷ ଛଡ଼ା ଅନ୍ୟ ଜୀବିକା ନିର୍ବାହ କରିବାକୁ ବାଧ୍ୟ ହେଉଥାନ୍ତେ । ଏହି ଆଇନ ଫଳରେ ଏ ପ୍ରକାର ଗୋଟିଏ ବାଧା ରଖି ଦିଆଯାଇଛି ଏବଂ ତାହା ଫଳରେ ସମ୍ବଲପୁର ଜିଲାରେ ଅନେକ ସ୍ଥାନୀୟ ଲୋକେ ଚାଷୀ ହିସାବରେ ଅଛନ୍ତି । କିନ୍ତୁ ଦେଖାଯାଇଛି ଯେ ଏହି ଯେଉଁ ଆଇନ ହୋଇଛି ଏହାର ଅପବ୍ୟବହାର ମଧ୍ୟ ଅନେକ ସମୟରେ କରା-ଯାଇଛି । ଧରନ୍ତୁ ଜଣେ ଲୋକ ଯାହାର ଜମି ଏହି ହୀରାକୁଦ ବନ୍ଧ ଯୋଜନା ଫଳରେ acquire ହୋଇଯାଉଛି ଏବଂ ଯାହାକୁ କ୍ଷତିପୂରଣ ଦିଆଯାଇଛି ସେ ଯଦି ଅନ୍ୟ କୌଣସି ଜାଗାରେ ଜମି କିଣିବାକୁ ଚାହେଁ ଏବଂ ରୟତି ଜମି ଛଡ଼ା ଭୋଗର ଜମି କିଣିବାକୁ ଚାହେଁ, by registered document ଦ୍ୱାରା ସେ କିଣିପାରେ । କିନ୍ତୁ ସେ କିଣି-ସେଇ ଭୋଗରା ଜମି ସେ areaରେ ଅତି ସୀମାବଦ୍ଧ । ତେଣୁ ସେଠି ପ୍ରତିଯୋଗୀତା ଯୋଗରୁ ତାର ମୂଲ୍ୟ ଧିରେ ଧିରେ ଅତି ମାତ୍ରରେ ବଢ଼ାଇ ଦିଆଯାଉଛି । ବର୍ତ୍ତମାନ ସେଥିପାଇଁ ଯେଉଁମାନେ ଜମିବାଡ଼ି ହରଉଛନ୍ତି ସେମାନଙ୍କ ପକ୍ଷରେ ଗୋଟିଏ ବିଷମ ସମସ୍ୟା ହେଉଛି ସେମାନଙ୍କଠାରୁ ଯେତେବେଳେ ଜମି କାଢ଼ି ନିଆଯାଉଛି, ସରକାର ଆଇନ ବଳରେ ସେ ଜମି ଦର ଏତେ କମ କରି ଦିଆଯାଉଛି କେବଳ ସରକାରୀ ଆଇନ ବଳରେ ନୁହେଁ ଏହି ଅଫିସରମାନଙ୍କ କାରସାଦୀ ଫଳରେ ମଧ୍ୟ ଯେ ବର୍ତ୍ତମାନ ଯେଉଁ ପରିମାଣରେ କ୍ଷତିପୂରଣ ପାଇବା କଥା ତହିଁର ଅତି ସାମାନ୍ୟ ଭଗ୍ନାଂଶ ମାତ୍ର ସେମାନେ ପାଉଛନ୍ତି । କିନ୍ତୁ ଯାହା ମଧ୍ୟ ପାଉଛନ୍ତି ସେଟା କିପରି ଭବେ ସେମାନେ ନିୟୋଜିତ କରିବେ, ତାର ପନ୍ଥା ନାହିଁ । କାରଣ ସମ୍ବଲପୁରରେ ଯେଉଁ Rule ଅଛି, ତହିରେ ହସ୍ତାନ୍ତର କାର୍ଯ୍ୟରେ ଏପ୍ରକାର ଗୁରୁତର ବାଧା ରହିଛି । ଧରନ୍ତୁ ଜଣେ ରୟତ କ୍ଷତିପୂରଣ 2 ହଜାର ଟଙ୍କା ପାଇଲା, ସେ ଯଦି ଅନ୍ୟ କୌଣସି ଜାଗାକୁ ଯାଇ କୌଣସି ରୟତଙ୍କଠାରୁ ସେ ଦୁଇ ହଜାର ଟଙ୍କା ଦେଇ 4 ଏକର ଜମି କିଣିଲା ସେଥିପାଇଁ ସେ registered କବଲା କରିବାକୁ ହେବ । ପ୍ରଥମରେ ସେଟା registered ହୋଇ ପାରିବ ନାହିଁ । ସେପାଇଁ ବହୁତ ବାଧାବିଘ୍ନ ରହିଛି ।

ଏବେ ଦ୍ୱିତୀୟ କଥା ହେଉଛି, ଏଇ ହସ୍ତାନ୍ତର ପରେ ବିକ୍ରି ବା ବନ୍ଧକ ପରେ ଏଇପରି ନିୟମ ଅଛି ଯେ, ଯେଉଁ ଲୋକ ସେହି ଜମିକୁ ହସ୍ତାନ୍ତର କରିଥିବ ତା'ର ଉତ୍ତରାଧିକାରୀମାନେ ଯଦି ସେଥିରେ ସମ୍ମତି ଦେଇ ନ ଥିବେ ତାହାହେଲେ ସେମାନ-ଙ୍କର ପୁରା ଅଧିକାର ରହିଛି ଯେ, ହସ୍ତାନ୍ତର କରିବା ବା ବିକ୍ରି, ବନ୍ଧକ କରିବାର 2

ବର୍ଷ ମଧ୍ୟରେ ସେମାନେ Revenue Officerଙ୍କ ସାମନାରେ ଉପସ୍ଥିତ ହୋଇ, ସେହି ହସ୍ତାନ୍ତରକୁ ରଦ୍ଦ କରିଦେଇ ପାରନ୍ତି । ସେଥିପାଇଁ ତାଙ୍କର କୌଣସି ଅର୍ଥବ୍ୟୟ କରିବାକୁ ପଡ଼ୁନାହିଁ ଏବଂ ଯେଉଁ 2 ହଜାର ଟଙ୍କା ଦେଇ ସେଇ ଜମି ଯେଉଁ ଲୋକ କିଣିଥିଲା ସେ ସେହି 2 ହଜାର ଟଙ୍କା ହରାଇବ ଓ ଜମି ମଧ୍ୟ ହରାଇବ । ଅର୍ଥାତ୍ ସେଇ କ୍ଷତିପୂରଣ ଟଙ୍କାରେ ଯେଉଁ ସାମାନ୍ୟ କିଛି ଜମି କିଣିଥିଲା ତାକୁ ସେ ହରାଇବ । ସେ ସଂପୂର୍ଣ୍ଣ ନିରାଶ୍ରୟ ଓ ପଥର ଭିକାରୀ ହୋଇ ବସିଲା । ଏହିପରି ଗୁରୁତର ସମସ୍ୟା ସମାଧାନ କରିବା ପାଇଁ ଏହି ବିଲ୍ ଆଗତ କରାଯାଇଛି । ଆପଣ ଯଦି ଦୁଇଟି ଉପଧାରା 42 ଓ 72 (a) ଦେଖିବେ, ସେଥିରେ ଦେଖି ପାରିବେ ଯେ ଏଇଟା ଅତି ସତର୍କତାର ସହିତ draft କରାଯାଇଛି । ଏଥିରେ ଏଇ ବ୍ୟବସ୍ଥା କରାଯାଇଛି ଯେ ଯଦି ଜଣେ ଏହାକୁ ଏହି ହୀରାକୁଦ ପାଇଁ 1948 ସାଲରେ 18 ନମ୍ବର ଆଇନ ଯାହା Orissa Development, of Industry, Irrigation Agriculture, Capital Construction, Resettlement ହୋଇଥିଲା ସେ ଅନୁଯାୟୀ displaced personsକୁ notice ମିଳିଥିବ, ସେ ଯଦି ଏଇ ପ୍ରକାର ଜମି କିଣିବାକୁ ଚାହେଁ ବା ଅନ୍ୟ କାହା ସଙ୍ଗରେ ଜମି କିଣିବା ପାଇଁ ଚୁକ୍ତି କରେ ବନ୍ଧକ କିମ୍ବା Revenue ପଟ୍ଟା ଦେବାପାଇଁ ବ୍ୟବସ୍ଥା କରାଯାଏ, ତାହାହେଲେ ସେଇଟା Registry ହୋଇ ପାରିବ ନାହିଁ । ମୂଳ Central Provincial Tenancy Actରେ registry ହୋଇ ପାରିବ ନାହି ବୋଲି ବାଧା ରହିଛି ଓ କବଲା କରି ପାରିବେ ନାହିଁ ବୋଲି ଯେଉଁ ବାଧା ରହିଛି ଏବଂ ଏଇ ପ୍ରକାର ହସ୍ତାନ୍ତର ପରେ ମଧ୍ୟ ରଦ୍ଦ୍ କରିବାର ଯେଉଁ କ୍ଷମତା ରହିଛି, ଏହି ଆଇନ ଫଳରେ ମୁଁ ଆଶା କରୁଛି, ଯେଉଁମାନେ ଜମି ବିକ୍ରି କରିବାକୁ ଚାହୁଁଛନ୍ତି, ସେମାନେ ଓ ଯେଉଁମାନେ ନିଜ ଇଚ୍ଛାରେ ବା ନିଜ ଚେଷ୍ଟାରେ ଜମି କିଣିବାକୁ ଚାହୁଁଛନ୍ତି ସେମାନେ ସୁଯୋଗ ପାଇ ପାରିବେ । ତା' ଫଳରେ ବର୍ତ୍ତମାନ ସେମାନେ ଯେପରି ତାଙ୍କର ଭବିଷ୍ୟତକୁ ଘୋର ଅନ୍ଧକାରମୟ ଦେଖୁଛନ୍ତି ସେଇ ଅନ୍ଧକାର ପରିବର୍ତ୍ତେ ଏଇଟା କେବଳ ଅତି କ୍ଷୀଣ ଆଲୋକ ରେଖା ସେମାନକୁ ଦେବ ବୋଲି ଚେଷ୍ଟା କରାଯାଉଛି ଏବଂ ମୁଁ ଆଶା କରୁଛି ଏହା ଫଳରେ ସେମାନେ କିଛି ଉପକାର ପାଇ ପାରିବେ । ଯେତେବେଳେ ହୀରାକୁଦ ବନ୍ଧ ଯୋଜନା କାର୍ଯ୍ୟ ଆରମ୍ଭ ହୁଏ ସେହି ସମୟରେ ମୁଁ ଶୁଣିଥିଲି ଯେ ସରକାର ଏଇ ପ୍ରକାର ଗୋଟିଏ ବିଲ୍ ବ୍ୟବସ୍ଥା ସଭା ଗୃହରେ ଆଗତ କରିବାପାଇଁ କଳ୍ପନା କରୁଛନ୍ତି ଏବଂ ମୁ ଆଶା କରିଥିଲି ଯେ ଗଲ 6 ବର୍ଷ ମଧ୍ୟରେ ସରକାର ଯଦି ଏହିପରି ଗୋଟିଏ ବିଲ୍ ଆଗତ କରିଥାନ୍ତେ, ତାହାହେଲେ ବର୍ତ୍ତମାନ ଯେଉଁ ଅଜସ୍ର ଅର୍ଥଶ୍ରାଦ୍ଧ ଚାଲିଛି ଏବଂ ଲୋକେ ଯେପରି ହଇରାଣ ହେଉଛନ୍ତି, ଯେଉଁ-ପରି ହତାଶ ହେଉଛନ୍ତି, ତାହା ବଦଳରେ ସେମାନଙ୍କ ମନରେ ଆଶାର ସଂଚାର ହୋଇ ପାରିଥାନ୍ତା । କିନ୍ତୁ ଦୁଃଖର କଥା ଏହିପରି ବିଲ୍ ଆସି ପାରି ନାହିଁ । ମାନ୍ୟବର ରାଜସ୍ୱ ମନ୍ତ୍ରୀ କହିଲେ ଯେ କେତେକ କାରଣ ଯୋଗୁଁ ଏହିପରି ବିଲ୍ ଆଗତ କରାଯାଇ

ପାରିଲ ନାହିଁ । ସେଥିପାଇଁ ମୋର ଯଦିଓ ଏହା ପୂର୍ବରୁ ଏ ପ୍ରକାର ବିଲ୍ ଆଗତ କରିବାର ଇଛା ଥିଲ କିନ୍ତୁ ବ୍ୟବସ୍ଥା ସଭର ପରିସ୍ଥିତି ପୂର୍ବରେ ଅତିଶୟ ପ୍ରତିକୂଳ ଥିବାରୁ ମୁଁ ଏ ପ୍ରକାର ବିଲ୍ ଆଗତ କରିବାରେ ସାହାସ କରି ନ ଥିଲି । ବର୍ତ୍ତମାନ ମୁଁ ଆଶା କରୁଛି ମାନ୍ୟବର ରାଜସ୍ୱ ମନ୍ତ୍ରୀ ଅତି ସହାନୁଭୂତିର ସହିତ ବିଗ୍ଭର କରିବେ । ଏ ଯେଉଁ ବିଲ୍ ମୁଁ ଆଣିଛି ଏହା ସେହି ନୀରଶ୍ରୟ ଲୋକଙ୍କର କିଛି ଉପକାର କରିବାକୁ ଚେଷ୍ଟା କରିଛି । ସେଥିପାଇଁ ଏହା କେତେଦୂର ସାହଯ୍ୟ କରିବ ସେ ବିଷୟ ପ୍ରତି ଟିକିଏ ଦୃଷ୍ଟି ଦେବେ । ସାମାନ୍ୟ କେତେଦିନ ତଳେ ମାନ୍ୟବର ରାଜସ୍ୱ ମନ୍ତ୍ରୀ ମୋତେ କହିଥିଲେ ସେ ସରକାର ଏ ବିଲ୍‌କୁ ବିଗ୍ଭର କରି ଅନ୍ୟ ଏକ ବିଲ୍ ଆଗତ କରିବାର ଇଛା କରିଛନ୍ତି । ତାହା ଶୁଣି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଥିଲ । କିନ୍ତୁ ସରକାରୀ କଳରେ ଯେପରି red tappism ବା ଲାଲଫିତା କାରମତି ଅଛି ସେଥିରେ ଏକପ୍ରକାର ବିଲ୍ ଆସିବାରେ ଡେରି ହେବ ଭାବି ମୁଁ ଏ ବିଲ୍ ଆଗତ କରିଛି । ଏହାପରେ ମାନ୍ୟବର ରାଜସ୍ୱ ମନ୍ତ୍ରୀଙ୍କର ଗୋଟିଏ ପ୍ରସ୍ତାବ ରହିଛି ଯେ this Bill may be referred to a Select Committee consisting of 5 members ମୁଁ ସେଥିରେ ସମ୍ମତି ପ୍ରଦାନ କରିଛି । ମୁଁ ଆଶା କରୁଛୁ ଯେ ଏହି Select Committee Report ଆସନ୍ତା ବୈଠକ ପୂର୍ବରୁ ହୋଇଯିବ । ନଚେତ୍ ଏହାଠାରୁ ଯଦି ଅନ୍ୟ ଏକ ସନ୍ତୋଷଜନକ ବିଲ୍ ସରକାର ନିଜେ ଆଗତ କରିପାରନ୍ତି ତାହାହେଲେ ମୁଁ ତାକୁ ଆଦରର ସହିତ ସ୍ୱାଗତ କରିବି । ଏ ଯେଉଁ ପ୍ରକାର ଗୁରୁତର ସମସ୍ୟା, ଏ ବିଷୟରେ ଯେପରି ଭବରେ ଆମେ ସମସ୍ତେ ଅତିଶୟ ବ୍ୟାକୁଳ, ସେଥିରୁ ମୁଁ ଭବୁଛି ଯେ ବର୍ତ୍ତମାନ ଏ ବିଷୟରେ ଆଉ ଅଧିକ ଡେରି ନ କରି ନିଷ୍ପତ୍ତି କରିବା ଉଚିତ । ଏଥିପାଇଁ ଏହା ଯେପରି ଶୀଘ୍ର କାର୍ଯ୍ୟାନୁଷ୍ଠାନ ହୁଏ ତାର ଚେଷ୍ଟା କରିବା ଦରକାର ।

The SPEAEKR : Motion moved that the Central Provinces Tenancy (Orissa Amendment) Bill, 1952 be taKen into consideration.

## ଓଡ଼ିଶା ବିନିଯୋଗ Appropriation ବିଲ, 1952 ଉପରେ ଭାଷଣ

ଓଡ଼ିଶା ବିଧାନସଭରେ ବିନିଯୋଗ ବିଲ୍ ଆଗତ ହୋଇ ତା ଉପରେ ମତାମତ ନିଆଯାଇଛି 1952 ମସିହାରୁ ଶେଷ ଭଗରେ । 12 ଦିନ ଧରି ବଜେଟ ଉପରେ ଶାନ୍ଧ ହେଲ ପରେ ମଧ୍ୟ ସଭ୍ୟମାନଙ୍କର ଆତ୍ମତୃପ୍ତି ହୋଇନାହିଁ । ପ୍ରାୟ ତିନି ଶତାଧିକ କାଟ ପ୍ରସ୍ତାବ ମଧ୍ୟରୁ କେବଳ 12/13 ଟି କାଟ ପ୍ରସ୍ତାବ ଆଲୋଚିତ ହୋଇଛି । ଅନେକ ଗୁରୁତ୍ୱପୂର୍ଣ୍ଣ ବିଭଗ ଉପରେ detailed ଆଲୋଚନା କରାଯିବା ଉଚିତ । ଡଃ ସୂପକାର ଏହି ପ୍ରସଙ୍ଗରେ କେତୋଟି ଦୃଷ୍ଟାନ୍ତ ଦେଇ ନିଶାନିବାରଣର ନିଷ୍ଫଳତା ଦର୍ଶାଇଛନ୍ତି । ଶାସନରେ କିପରି ଦୁର୍ନୀତି, ଅନ୍ୟାୟ, ପ୍ରିୟାପ୍ରୀତିର ବହୁଳ ଅନୁପ୍ରବେଶ ଘଟିଛି, ବସ୍ ଚଳାଚଳ ବ୍ୟବସ୍ଥା

କିପରି ଅପାରଗ ହୋଇଛି, ଶିକ୍ଷାୟନ କିପରି ଆଶାନୁରୂପ ହେଉନାହିଁ, ମାଟି ବନ୍ଧ କାର୍ଯ୍ୟ କିପରି Specification ଅନୁସାରେ ସଂପାଦିତ ହେଉନାହିଁ ଇତ୍ୟାଦି ଶ୍ରଦ୍ଧାକର ଦେଖାଇ-ଦେଇଛନ୍ତି । ଇଞ୍ଜିନିୟରିଙ୍ଗ ବିଭାଗରେ ଦୁର୍ନୀତି କିପରି ମାତ୍ରାଧିକ ପରିମାଣରେ ଘଟୁଛି, ତାହାକୁ ସେ ତୀବ୍ର ସମାଲୋଚନା କରିଛନ୍ତି । ଦୁର୍ନୀତିଗ୍ରସ୍ତ ଅଧିକାରୀ ତଥା କର୍ମଚାରୀଙ୍କ ବିରୁଦ୍ଧରେ କଠୋର ପଦକ୍ଷେପ ନେବା ଉଚିତ ବୋଲି ସେ ଚେତାଇ ଦେଇଛନ୍ତି । କେତେକଙ୍କ ବିରୁଦ୍ଧରେ ସେ ନିର୍ଦ୍ଦିଷ୍ଟ ଅଭିଯୋଗ ଉତ୍‌ଥାପନ କରିଛନ୍ତି । ଆଇନରେ ଥିବା ଦୋଷତ୍ରୁଟିକୁ ସଂଶୋଧନ କରିବା ଉଚିତ ବୋଲି ପରାମର୍ଶ ଦେଇଛନ୍ତି ।

**ଶ୍ରୀ ଶଙ୍କରାକର ସୁପକାର:** ମାନ୍ୟବର ଅଧକ୍ଷ ମହାଶୟ, ଏହି Bill ର ତୃତୀୟ ଦଫା ପଠନ ସମୟରେ ମୋର ବିଶେଷ କିଛି କହିବାର ନଥିଲା । କିନ୍ତୁ ମାନ୍ୟବର ଅର୍ଥମନ୍ତ୍ରୀ ଏହି ବିଲ୍‌ର ଆଲୋଚନା ବେଳେ ଯେଉଁ କେତେଗୁଡ଼ିଏ ପ୍ରସଙ୍ଗ ଉତ୍‌ଥାପନ କଲେ ସେ ମଧ୍ୟରୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟରେ ମୁଁ କେତେକ କଥା ଅତି ସଂକ୍ଷେପରେ କହିବାକୁ ଯାଉଛି । ଆମ ରାଜ୍ୟର ଉଚ୍ଚତମ କର୍ମଚାରୀମାନଙ୍କର କାର୍ଯ୍ୟକଳାପ ଏବଂ ସେହି କାର୍ଯ୍ୟକଳାପ ଏ ବିଷୟରେ ଏ ବ୍ୟବସ୍ଥାପକ ସଭାରେ ଆଲୋଚନା ବିଷୟରେ ସେ କେତେ ଗୁରୁତ୍ୱପୂର୍ଣ୍ଣ କଥା କହିଛନ୍ତି । ଏହି କର୍ମଚାରୀମାନଙ୍କର କାର୍ଯ୍ୟ ଏବଂ କାର୍ଯ୍ୟରେ ଅବହେଳା ବିଷୟରେ ଅନେକ ସମୟରେ ଏ ବ୍ୟବସ୍ଥାପକ ସଭାରେ ଆଲୋଚନା ହେଉଛି । ମୁଁ ମନେ କରୁଛି ଏବଂ ଅର୍ଥମନ୍ତ୍ରୀଙ୍କ ସଙ୍ଗରେ ଏକମତ ହେଉଛି ଯେ ଯଦି କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ କୌଣସି କର୍ମଚାରୀଙ୍କ ବିରୁଦ୍ଧରେ ନାହିଁ, ସେପରି ଅବସ୍ଥାରେ ଯଦି କୌଣସି ଆକ୍ଷେପ କରାଯାଏ ବା କର୍ମଚାରୀଙ୍କ ବିରୁଦ୍ଧରେ ଭିତ୍ତିହୀନ ଅଭିଯୋଗ କରାଯାଏ, ତାହାହେଲେ ସେଟା ନିନ୍ଦନୀୟ ଏବଂ ତା ର ପରିଣତି କର୍ମଚାରୀ ଗୋଷ୍ଠୀ ଉପରେ ପଡ଼ିପାରେ । କିନ୍ତୁ ଯେପରି ଯଥେଷ୍ଟ କାରଣ ଏବଂ ଯଥେଷ୍ଟ ପ୍ରମାଣ ଥାଇ ଅଭିଯୋଗମାନ କରାଯାଇଛି, ଯେପରି ବ୍ୟବସ୍ଥାପକ ସଭାରେ ପ୍ରଶ୍ନମାନ କରାଯାଇଛି ଯେଉଁଥିର ଉତ୍ତରରେ ବି ସରକାର ଯାହା କହିଛନ୍ତି ସେଥିରୁ ଏକବାରେ ସ୍ପଷ୍ଟ-ଭାବରେ ପ୍ରମାଣ ହୁଏ ଯେ କର୍ମଚାରୀମାନଙ୍କର ତ୍ରୁଟି ରହିଛି ଯହିଁର କାର୍ଯ୍ୟାନୁଷ୍ଠାନ ହେବା ଉଚିତ । ଆମେ ଦେଖିବାକୁ ପାଉଛୁ ଏବଂ ଅତି ଠିକ୍‌ଭାବରେ ଦେଖିବାକୁ ପାଉଛୁ ଯେ ସରକାରଙ୍କ ତରଫରୁ ଯେପରି କଠୋର ବ୍ୟବସ୍ଥା ହେବା ଦରକାର ସେ ପ୍ରକାର ବ୍ୟବସ୍ଥା ହେଉ ନାହିଁ । ମାନ୍ୟବର ସଦସ୍ୟମାନେ ଯେଉଁ ବିଷୟରେ କେତେକ ଗୁରୁତର ଅଭିଯୋଗ ପ୍ରଶ୍ନ-ଛଳରେ କରିଥିଲେ ତା'ର ଉତ୍ତର ହଁ—ସରକାରଙ୍କ ଉତ୍ତର ହଁ—ସେ ଅଭିଯୋଗର ପ୍ରମାଣ ବୋଲି ଧରାଯାଇ ପାରେ । ସେ ବିଷୟରେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇ ନଥିବାରୁ ଆମ୍ଭେମାନେ ଉପଲବ୍ଧି କରୁଛୁ । ଏହାର ପରିଣତି ହେଉଛି ଯେ କର୍ମଚାରୀମାନେ ଦୋଷୀ । ସେମାନଙ୍କ ବିରୁଦ୍ଧରେ ଉପଯୁକ୍ତ ଏବଂ ଉଚିତ କାର୍ଯ୍ୟାନୁଷ୍ଠାନ ନ ହେଲେ ଶାସନ କଳରେ ଯେ ପ୍ରକାର ବିଶୃଙ୍ଖଳା, ଯେ ପ୍ରକାର ଗଲତି ଏବଂ ଯେ ପ୍ରକାର ଦୋଷ ତ୍ରୁଟି ରହିବାର ଏବଂ ଦୋଷ ତ୍ରୁଟି ବଢ଼ିବାର ସମ୍ଭାବନା ରହିଛି ସେ ବିଷୟରେ ଆମ୍ଭମାନଙ୍କ ମନରେ ଅନେକ

ସମୟରେ ସନ୍ଦେହ ଜାତ ହେଉଛି । ସରକାରଙ୍କର ପ୍ରଥମ ଦାୟିତ୍ୱ ଏବଂ ପ୍ରଧାନ କର୍ତ୍ତବ୍ୟ ହେଉଛି ଯେ ଯେପରି ସେମାନେ ଦେଖି ପାରିଛନ୍ତି ଯେ କର୍ମଚାରୀ ଗୋଷ୍ଠିର ବା କୌଣସି ନିର୍ଦ୍ଦିଷ୍ଟ କର୍ମଚାରୀଙ୍କର ଦୋଷ ରହିଛି ସେ ବିଷୟରେ ଉପଯୁକ୍ତ ପ୍ରତିକାର କରିବା ତାଙ୍କର ଦରକାର । ଏ ବିଷୟରେ ମୁଁ ଅନେକ ସମୟରେ ପ୍ରଶ୍ନ ଯାହା କରିଛି—ତା'ର ଉତ୍ତର ପାଇ ନାହିଁ । ମୁଁ ବାଧ୍ୟହୋଇ ଗତଥର Budget Session ରେ General Administration ଆଲୋଚନା ହେଲବେଳେ କେତେକ କର୍ମଚାରୀଙ୍କ ବିରୁଦ୍ଧରେ ନିର୍ଦ୍ଦିଷ୍ଟ ଅଭିଯୋଗ କରିବାକୁ ବାଧ୍ୟ ହୋଇ ଥିଲି ଏବଂ ସେହି ଅଭିଯୋଗଗୁଡ଼ିକ ସରକାର ମୋର ପ୍ରଶ୍ନର ଯେ ଉତ୍ତରମାନ ଦେଇଥିଲେ ସେହି ଉତ୍ତର ଉପରେ ହିଁ ପ୍ରତିଷ୍ଠିତ । କିନ୍ତୁ ସେ ଅଭିଯୋଗର ଉତ୍ତର ସରକାର ଯାହା ଦେବାର ଥିଲା କର୍ମଚାରୀଙ୍କ ପକ୍ଷ ସମର୍ଥନ କରି ହେଉ କିମ୍ବା ସେମାନଙ୍କର ଯେଉଁ ଦୋଷ ତ୍ରୁଟି ରହିଛି ସେହି ଦୋଷ ତ୍ରୁଟି ସଂଶୋଧନ କରିବାପାଇଁ ହେଉ, ସେ ବିଷୟରେ ବ୍ୟବସ୍ଥା ସଭାରେ କୌଣସି ଉତ୍ତର ମିଳିନାହିଁ । ତାହାରେ ମଧ୍ୟ ମିଳିଲା ନାହିଁ । ମୋର କହିବାର ଉଦ୍ଦେଶ୍ୟ ହେଉଛି ଯେ ଶାସନ ବିଭାଗରେ ଏବଂ କର୍ମଚାରୀ ଗୋଷ୍ଠୀ ମଧ୍ୟରେ କି ପ୍ରକାର ଭାବରେ ଶୃଙ୍ଖଳା ରଖିବା ଦରକାର ସେଟା ସରକାର ଯେପରି ଭାବରେ ଉପଲବ୍ଧି କରୁଛନ୍ତି, ବିରୁଦ୍ଧଦଳ ସଭ୍ୟ ମଧ୍ୟରେ ଅନେକ ମଧ୍ୟ ତାହା ଉପଲବ୍ଧି କରିପାରିଛନ୍ତି । କିନ୍ତୁ ବଡ଼ କଥା ହେଉଛି ଯେ ଯେପରି ସେମାନେ ଦୋଷୀ, ସରକାର ସେଥିରେ ଉପଯୁକ୍ତ ପ୍ରତିକାର ଓ କଠୋର ପ୍ରତିକାର କରିବା ଦରକାର । ଯଦି ତାହା କରଯାଏ ତାହାହେଲେ ହୁଏତ ଶାସନ କଳରେ ଯେଉଁ ଦୋଷତ୍ରୁଟି, ଯେଉଁ ବିଶୃଙ୍ଖଳା, ଯେଉଁ Nepotism, ଯେଉଁ Corruption ଏବଂ ଯେଉଁ Slackness ରହିଛି ଏବଂ ବଢୁଛି ବୋଲି ଅଭିଯୋଗ ହେଉଛି ତାହା ଦୂର ହେବ । ଏପରି କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଯଦି କଠୋର ବ୍ୟବସ୍ଥା କରଯାଏ ତାହାହେଲେ ମୁଁ ବିଶ୍ୱାସ କରୁଛି ସରକାରୀ କଳ ବିଶେଷଭାବରେ ସଂଶୋଧନ ହୋଇ ପାରିବ । ଏ ବିଷୟରେ ବିରୁଦ୍ଧଦଳ ପକ୍ଷରୁ ଆମର ଯେଉଁ କର୍ତ୍ତବ୍ୟ ସରକାରୀ ଶାସନ ଉନ୍ନତି କରୁ ଏବଂ କର୍ମଚାରୀ ଗୋଷ୍ଠୀ ସଂଯତ ଏବଂ ସଙ୍ଗତ ଭାବରେ ତାଙ୍କର କର୍ତ୍ତବ୍ୟ ପାଳନ କରନ୍ତୁ, ସେହି କର୍ତ୍ତବ୍ୟ ସେତେବେଳେ ସମାପ୍ତି ହୋଇ ପାରିବ, ସେତେବେଳେ ସରକାର ଏଥିପ୍ରତି ବିଶେଷ ସତର୍କତାର ସହିତ କଠୋର ଭାବରେ କାର୍ଯ୍ୟାନୁଷ୍ଠାନ କରିବେ ।

ଶ୍ରୀ ହରିହର ଦାଶ (ଆସ୍କା) : ସଭାପତି ମହାଶୟ, ମୁଁ ଯେଉଁ Amendment ଦେଇଥିଲି ତାକୁ ଅନୁମତି ମିଳିଲା ନାହିଁ କିନ୍ତୁ ସେ Amendment ଦେବାର ତାତ୍ପର୍ଯ୍ୟ ହେଉଛି ଏ ଯେଉଁ Demand ସବୁ ଏ ସଭା ଗୃହରେ ଉପସ୍ଥାପିତ ହୋଇଛି ଓ ଯେ ସବୁ ଉପରେ ଆମେ ଯେତେବେଳେ ଆଲୋଚନା କରୁଛୁ ସେତେବେଳେ ଅବଶ୍ୟ ଏହି Assembly ର ଆଇନ କାନୁନମାନ ଗୋଟିଏ ନିର୍ଦ୍ଦିଷ୍ଟ କଥା ଉପରେ କହିବାକୁ ବାଧ୍ୟ ହେଉଛୁ । କିନ୍ତୁ ଯେତେବେଳେ ଗୋଟାଏ ନିର୍ଦ୍ଦିଷ୍ଟ Demand, ଗୋଟିଏ Specific purposeରେ ଖର୍ଚ୍ଚ ହେବାପାଇଁ ଆସିଛି ସେତେବେଳେ ସେ ସମ୍ପର୍କରେ ଆଲୋଚନା ହେଉଛି ଓ Grant ଦିଆଯାଇଛି ।

କିନ୍ତୁ ଅନେକ ଘଟଣା ଦେଖିବାକୁ ପାଉଛୁ ଯେ ଯେଉଁ ଟଙ୍କାଟା ଯେଉଁ Specific purposeରେ ଖର୍ଚ୍ଚ କରାଯିବାପାଇଁ Assembly ମଞ୍ଜୁରୀ ଦେଇଥାଏ, ତାହା ସେହି Specific purposeରେ ଖର୍ଚ୍ଚ ନ ହୋଇ ଅନ୍ୟ Purposeରେ ଖର୍ଚ୍ଚ ହୋଇ ଯାଉଛି । Veterinary Departmentରେ ଏପରି ହେଉଛି—I am speaking subject to correction ଏ ସମ୍ପର୍କରେ ବୋଧହୁଏ ଏଇବର୍ଷ ଏଇ ସଭାଗୃହରେ ମନ୍ତ୍ରୀ ମହୋଦୟ କହିଥିଲେ ଯେ କୌଣସି ନିର୍ଦ୍ଦିଷ୍ଟ ଘଟଣାପାଇଁ ଟଙ୍କା Sanction ହୋଇଥିଲା କିନ୍ତୁ ସେ ବିଭାଗରେ ଖର୍ଚ୍ଚ ନ ହୋଇ ଅନ୍ୟ ବାବଦରେ ସେ ଟଙ୍କା ଖର୍ଚ୍ଚ ହେଲା । ବର୍ତ୍ତମାନର ଅର୍ଥମନ୍ତ୍ରୀ ଓ ସେତେବେଳର ଶ୍ରୀ ରାଧାନାଥ ରଥ ଗତ ଆସେମ୍ବ୍ଲି ସଭ୍ୟ, ସେ ମଧ୍ୟ ସମାଜ ଖବର କାଗଜରେ ସେତେବେଳେ ଏହାର ଘୋର ବିରୋଧ କରିଥିଲେ ଓ ଏହି ବିଷୟରେ ଏହି ସଭାଘରେ ବହୁତ ସମାଲୋଚନା କରୁଥିଲେ । ଏହି ଭଳି ଖର୍ଚ୍ଚ ହୋଇ ଯାଇଥିବାବେଳେ ମତେ ଏହି Amendment ଉପରେ କହିବାର ସୁବିଧା ମିଳିନାହିଁ । ଅର୍ଥମନ୍ତ୍ରୀ କୁହନ୍ତୁ ଏହିପରି ଘଟୁଛି କି ନାହିଁ । Supplementary Demand ବାବଦରେ ଏ ଯେଉଁ Procurement bonus fundରେ 9 ଲକ୍ଷ ଟଙ୍କା ଥିଲା ସେଥିରୁ 25 ହଜାର ଟଙ୍କା Rural Welfare ରେ ଖର୍ଚ୍ଚ ହୋଇ ଯାଇଛି । ଏଇଟା ମଧ୍ୟ ସେହିପରି ହୋଇଛି ବୋଲି ମୋର ସନ୍ଦେହ ହେଉଛି । ଏଇଟା କେତେଦୂର କ'ଣ ଅର୍ଥମନ୍ତ୍ରୀ ଟିକିଏ କହି ଦିଅନ୍ତୁ ।

## 1952-53 ବର୍ଷର ବଜେଟ ଉପରେ ସାଧାରଣ ଆଲୋଚନା

ଡକ୍ଟର ଶ୍ରଦ୍ଧାକର ସୁପକାର: ଅର୍ଥମନ୍ତ୍ରୀଙ୍କ ବଜେଟ୍ ଭାଷଣ ସଙ୍ଗେ ଆଉ ଗୋଟିଏ ବହି 'How Orissa Feels' ବଣ୍ଟା ଯାଇଥିଲା କହି ଉକ୍ତ ବହି ଶିରୋନାମାର ପ୍ରଶ୍ନର ଉତ୍ତର ଦେଇଛନ୍ତି, 'I feel like a highly inflated tube inside an highly inelastic tyre'. ମାନ୍ୟବର ଅର୍ଥମନ୍ତ୍ରୀଙ୍କର ଭାଷଣରେ ଆଲୋଚନୀୟ ଓ ଚିନ୍ତନୀୟ ଏତେ ଉପାଦାନ ଏବଂ ବିଷୟବସ୍ତୁ ରହିଛି ଯେ ଏବଂ ଏ ବିଷୟରେ ମୋର କେତେଗୁଡ଼ିଏ କହିବାର ଅଛି ଯେ ଏବଂ ଏ ବିଷୟରେ ଆଲୋଚନା ପାଇଁ ଦିଆଯାଇଥିବା ସମୟର ସଂକ୍ଷିପ୍ତତା ଦୃଷ୍ଟିରୁ ମୋର ନିଜର ବକ୍ତବ୍ୟକୁ ସଂକୁଚିତ କରିବାର ପ୍ରୟୋଜନୀୟତା ବିଷୟ ଭାବିଲେ ମୁଁ ଗୋଟିଏ ଅତିଶକ୍ତ ବା Inelastic tyre ମଧ୍ୟରେ ରୁପି ହୋଇଥିବା ଅତିଶୟ ଯୋର ପମ୍ପ ଦିଆଯାଇଥିବା ରବର ଟିଉବ୍ ଭଳିଆ ମୁଁ ବୋଧ କରୁଛି'' ଆମ ରାଜ୍ୟର ଟିକସର ଭାର ସର୍ବାଧିକ ବୋଲି କହି ଅଧିକାଂଶ ଆଦିବାସୀ ଅଧ୍ୟୁଷିତ ଓ ପୂର୍ବ ଗଡ଼ଜାତ ଅଞ୍ଚଳର ଅନୁନ୍ନତ ଅବସ୍ଥାର ଅଭାବ ଅସୁବିଧା ବିଷୟ ଉଦ୍‌ବେଗର କାରଣ ବୋଲି ମତ ଦେଇଛନ୍ତି ।

ଶିକ୍ଷା ବିଭାଗ ପାଇଁ ଅର୍ଥର ଅପର୍ଯ୍ୟାପ୍ତତା, ଦୁର୍ନୀତି, ହୀରାକୁଦ ବନ୍ଧ ନିର୍ମାଣରେ ଅପବ୍ୟୟ, କ୍ଷତିପୂରଣ ଦେବାରେ ବିଳମ୍ବ ଆଦିକୁ କଠୋର ସମାଲୋଚନା କରି ସେ ଓଡ଼ିଶାକୁ ଭାରତ ସରକାର ଅଧିକ ସାହାଯ୍ୟ ଦେଇ ତା'ର ସର୍ବାଙ୍ଗୀନ ଉନ୍ନତି ଘଟାନ୍ତୁ ବୋଲି ଦାବି କରିଛନ୍ତି ସେ ମଇ 27 ତାରିଖ, 1952ରେ ପରାମର୍ଶ ଦେଇଛନ୍ତି'' ଏଥିରୁ ମୁଁ କହିବି ଆମ ସରକାର ଭାରତ ସରକାରଙ୍କୁ ଜଣାଇଦେବା ଉଚିତ ଯେ ଆମର ଏହି ପଛରେ ପଡ଼ିଥିବା ରାଜ୍ୟମାନଙ୍କ ପ୍ରତି

ଦୃଷ୍ଟି ଦେଇ ସେହି ରାଜ୍ୟମାନଙ୍କୁ ଅନ୍ୟ ରାଜ୍ୟମାନଙ୍କ ସହିତ ସମକକ୍ଷ କରନଗଲେ ସମଗ୍ର ଭାରତବର୍ଷ ପଛାଇ ଯିବ। ଆମର ଏ ବିଷୟରେ ବିଶେଷ ଯୋର ଦେବା ଦର୍କାର" ଏହିପରି ଶ୍ରଦ୍ଧାକର ଓଡ଼ିଶା ସରକାରଙ୍କୁ ତାଙ୍କର ଅବହେଳା ଓ ଉଦାସୀନତା ସଂପର୍କରେ ଚେତାଇ ଦେଇ କେନ୍ଦ୍ର ସରକାରଙ୍କ ଦାୟିତ୍ଵ ସଂପର୍କରେ ଆକ୍ଷେପାତ କରିଛନ୍ତି।

Shri SHRADHAKAR SUPAKAR ମାନ୍ୟବର ବାଚସ୍ପତି ମହାଶୟ ଗତକାଲି ବଜେଟ ସଂପର୍କରେ ଓଡ଼ିଶାର ଅର୍ଥମନ୍ତ୍ରୀଙ୍କ ଭାଷଣ ସଙ୍ଗେ ଆଉ ଗୋଟିଏ ବହି ଆମ୍ଭମାନଙ୍କୁ ଦିଆହୋଇଛି ଯେଉଁଥିରେ କି ଲେଖାଅଛି "How Orissa Feels". ଏ ପ୍ରଶ୍ନର ଉତ୍ତର କ'ଣ ହୋଇପାରେ ସେ ବିଷୟରେ କହିବା ପୂର୍ବରୁ How I feel, ମୁଁ କ'ଣ ଅନୁଭବ କରୁଛି ସେ ବିଷୟରେ କିଛି କହେଁ। I feel like a highly inflated tube inside an highly inelastic tyre. ମାନ୍ୟବର ଅର୍ଥମନ୍ତ୍ରୀଙ୍କର ଭାଷଣର ଆଲୋଚନାୟ ଓ ଚିନ୍ତନୀୟ ଏତେ ଉପାଦାନ ଏବଂ ବିଷୟବସ୍ତୁ ରହିଛି ଯେ, ଏବଂ ଏ ବିଷୟରେ ମୋର ଏତେ ଗୁଡ଼ିଏ କହିବ'ର ଇଚ୍ଛାଅଛି ଯେ ଏବଂ ଏ ବିଷୟରେ ଆଲୋଚନା ପାଇଁ ଦିଆଯାଇଥିବା ସମୟର ସଂକ୍ଷିପ୍ତତା ଦୃଷ୍ଟିରୁ ମୋର ନିଜର ବକ୍ତବ୍ୟକୁ ସଙ୍କୁଚିତ କରିବାର ପ୍ରୟୋଜନୀୟତା ବିଷୟ ଭାବିଲେ ମୁଁ ଗୋଟିଏ ଅତିଶକ୍ତ ବା enlastic tyre ମଧ୍ୟରେ ଘୁସିହୋଇଥିବା ଅତିଶୟ ଜୋର ପମ୍ପ ଦିଆଯାଇଥିବା ରବର ଟିଉବ୍ ଭଳିଆ ମୁଁ ବୋଧ କରୁଛି। How Orissa Feels ବିଷୟରେ ଭାବିଲେ ମଧ୍ୟ ସେହି ରବର ଟିଉବ୍ କଥା ମନେ ପଡ଼ୁଛି। Orissa Feels like a constantly inflated leaking tube inside an inelastic tyre· ଗୋଟିଏ ଦିଗରେ ଓଡ଼ିଶାର ଜନସାଧାରଣଙ୍କର ଜୋର ଦାରିଦ୍ର୍ୟ, କ୍ରମ ବର୍ଦ୍ଧମାନ କରଭାର ବହନରେ ସେମାନଙ୍କର ବର୍ଦ୍ଧମାନ ଅସାମର୍ଥ୍ୟ, କେନ୍ଦ୍ର ବା ଅନ୍ୟାନ୍ୟ ସୂତ୍ରରୁ ସାହାଯ୍ୟର ଅଳ୍ପତା, ଆମର ଆର୍ଥିକ ସ୍ଵଚ୍ଛଳତା ବଢାଇବାର ଉପାୟର ଅଭାବ ଯେପରି ଶକ୍ତ ଟାୟାର ରୂପରେ ଆମକୁ ଘୁସି ଧରି ଆମର ପ୍ରଗତିର ଆଶାକୁ ରୁଦ୍ଧ କରୁଛି। ଅନ୍ୟ ଦିଗରେ ଆମର ଦେଶ ଗଠନ ବିଭାଗମାନଙ୍କରେ ଆମ୍ଭମାନଙ୍କର ଅଧିକରୁ ଅଧିକ ପ୍ରୟୋଜନୀୟ ଅର୍ଥର ଆବଶ୍ୟକତା, ଷୋଡ଼ଷ ବର୍ଷୀୟ ଏହି ନବଗଠିତ ରାଜ୍ୟର ବିକାଶର ପ୍ରୟୋଜନୀୟତା ଶକ୍ତ ପମ୍ପ ଦିଆଯାଇଥିବା ଟିଉବ୍ ପରି ଆଉ ବଢି ନ ପାରି ବନ୍ଦ ହୋଇ ରହୁଛି। ଏହି ବିଷୟରେ କହିବାକୁ ଯାଇ ମାନ୍ୟବର ଅର୍ଥମନ୍ତ୍ରୀ ତାଙ୍କ ଭାଷଣର ୩୨ ପୃଷ୍ଠାରେ ସ୍ଵୀକାର କରିଛନ୍ତି, "ଆମ୍ଭେମାନେ ଯେତେ ଟିକସ୍ ଦେଉଁ ସେଥିରୁ କେତେକ ଟିକସ୍‌ର ହାର ସମଗ୍ର ଭାରତରେ ସର୍ବୋଚ୍ଚ। ପେଟରେ ଓଦାକନା ପକାଇ ଆମ୍ଭମାନଙ୍କୁ ଟିକସ୍ ଦେବାକୁ ପଡ଼େ। ଅର୍ଥାତ ଆମ୍ଭେମାନେ ଅମ୍ଭମାନଙ୍କର ପ୍ରୟୋଜନ ମେଣ୍ଟାଇ ପାରୁ ନାହୁଁ। ଆମ୍ଭେମାନେ ଆମ୍ଭମାନଙ୍କର ରାସ୍ତା, ଗାଁ ଜଳନିଷ୍କାସନ ଓ ଜଳ ଯୋଗାଣ ଆଦି ବିଷୟରେ ଆମ୍ଭମାନଙ୍କର ସହଚରମାନଙ୍କୁ ଅବହେଳା କରିଥାଉଁ ଏବଂ ପ୍ରାଥମିକ ଶିକ୍ଷା ଓ ସାଧାରଣ ସ୍ଵାସ୍ଥ୍ୟ ଦିଗରେ ଦେଶ ପ୍ରତି ଆମ୍ଭମାନଙ୍କର ମୌଳିକ

କର୍ତ୍ତବ୍ୟ ସୁଦ୍ଧା କରିପାରୁ ନ ଥାଉଁ । ନିର୍ମମ ଭବରେ ଖର୍ଚ୍ଚ କାଟ କରି ସୁଦ୍ଧା ଆମ୍ଭେମାନେ ଆମ୍ଭମାନଙ୍କ ବଜେଟ୍‌କୁ ସମତୁଲ କରିପାରି ନ ଥାଉଁ । ଚତୁର୍ଦ୍ଦିଗରେ ଆୟମାନଙ୍କ ଅଭବ ଓ ଅସନ୍ତୋଷ ଘେରି ରହିଛି । ଆଦିବାସୀ ଅଞ୍ଚଳ ଓ ପୂର୍ବ ଗଡ଼ଜାତ ଅଞ୍ଚଳମାନଙ୍କର ପଶ୍ଚାତ୍‌ପଦ ଅବସ୍ଥା ଆମ୍ଭମାନଙ୍କର ସବୁଠୁ ବଳି ବଡ଼ ଉଦ୍‌ବେଗର କାରଣ" ।

ପୂର୍ବ ବର୍ଷମାନଙ୍କର ବଜେଟ୍‌ରେ ଯେପରି ଆମର ଦେଶର ସାଧାରଣ ଅବସ୍ଥାରେ ଆତ୍ମ ସନ୍ତୋଷ ପ୍ରକାଶ କରାଯାଉଥିଲା, ବିକାଶର ପ୍ରୟୋଜନୀୟତା ନାମରେ ଆୟ ତୁଳନାରେ ବ୍ୟୟ ଅଧିକା ରଖାଯାଉଥିଲା ଏବଂ ଶାସନ ବିଭଗଠାରୁ ଗଠନମୂଳକ ବିଭଗରେ ଅଧିକା ଖର୍ଚ୍ଚ କରାଯାଉଛି ବୋଲି ଆତ୍ମ ପ୍ରଶଂସାମୂଳକ ମନୋଭବ ପ୍ରକାଶ କରାଯାଉଥିଲା ଏବଂ ଏ ବର୍ଷ ମାର୍ଚ୍ଚ ମାସରେ ମହାମାନ୍ୟ ରାଜ୍ୟପାଳଙ୍କ ଭଷଣରେ ଯେପରି ଏକ ଅପ୍ରକୃତ ସମୃଦ୍ଧିର ଅନନୁଭବ ବିକାଶର ଚିତ୍ର ଆମ୍ଭେମାନେ ଦେଖିଥିଲୁ, ମାନ୍ୟବର ଅର୍ଥମନ୍ତ୍ରୀଙ୍କର ଭଷଣରେ ସେ ଆତ୍ମ ପ୍ରଶଂସା ବା ଆତ୍ମ ସନ୍ତୋଷ ପରିବର୍ତ୍ତରେ ପ୍ରକୃତ ଅବସ୍ଥା, ଦୈନନ୍ଦିନ ଅନୁଭବ ଯୋଗ ଅଭବ, ଅନାଟନର ଏକ ବାସ୍ତବ ଚିତ୍ରଥିବା ବାସ୍ତବିକ ଆଶାର କଥା ।

ପୂର୍ବ ବର୍ଷମାନଙ୍କରେ କୁହାଯାଉଥିଲା ଆମର ଆର୍ଥିକ ଅବସ୍ଥା ଯାହା ହେଉନା କାହିଁକି ଆଗେ ଖର୍ଚ୍ଚ କରି ଚାଲିଯିବା ଏବଂ ବ୍ୟୟ ଅନୁସାରେ ଆୟକୁ ପ୍ରଭବିତ କରିବା ଏବଂ ଏହାର କାରଣ ସ୍ୱରୂପ କୁହାଯାଉଥିଲା । ଆମର ଗଠନ ମୂଳକ ବିଭଗମାନଙ୍କର ବିକାଶର ପ୍ରୟୋଜନୀୟତାକୁ କାଟି ଦିଆଯିବ ନାହିଁ । କିନ୍ତୁ ଫଳତଃ ବ୍ୟୟରେ ସଂଯମର ଅଭବ ଯୋଗୁଁ ପ୍ରତିବର୍ଷ ଆର୍ଥିକ ଅନାଟନ ବୃଦ୍ଧି ପାଇ ଦେଶର ଆର୍ଥିକ ପରିସ୍ଥିତି ଗତ 1959 ଅଗଷ୍ଟ ମାସର ସଂକଟମୟ ହୋଇଯାଇଥିଲା । ବର୍ତ୍ତମାନ ମଧ୍ୟ ଆମର ଆର୍ଥିକ ଦୁରବସ୍ଥା ରହିଛି । ତାହା ସଙ୍ଗେ ସଙ୍ଗେ ଲୋକଙ୍କ ଉପରେ କରଭର ମଧ୍ୟ ବଢ଼ିଛି । ଅଥଚ ଜନସାଧାରଣଙ୍କର ଜୀବନମାନ (Standard of living) ବଢ଼ି ନାହିଁ । ଏ ଗତାନୁଗତିକ ପ୍ରଥା ପରେ ଏ ବର୍ଷ ଅନେକ ବିଭଗରେ ଅନାବଶ୍ୟକୀୟ ବ୍ୟୟ ସଙ୍କୋଚ କରି ବଜେଟ୍‌କୁ ସମତୁଲ କରିବାର ଚେଷ୍ଟା ମଧ୍ୟ ଅନ୍ୟ ଏକ ନୂତନ ବିଷୟ ଏବଂ ଆଶ୍ୱସ୍ତିର କଥା । ବଜେଟ୍‌ରୁ ମୋଟ 39 ଲକ୍ଷ 17 ହଜାର ବ୍ୟୟ ସଙ୍କୋଚ କରିଥିବା ଯୋଗୁଁ ମୁଁ ମାନ୍ୟବର ମନ୍ତ୍ରୀଙ୍କୁ ଧନ୍ୟବାଦ ଦେଉଛି । କିନ୍ତୁ ଚନ୍ଦ୍ରରେ କଳଙ୍କ ପରି ଏପରି କେବଳ ନିର୍ମାଣ ବିଭଗରେ କର୍ତ୍ତନ ନ ହୋଇ, ଶାସନ ବିଭଗ ବିଶେଷତଃ ପୋଲିସ ବିଭଗରେ ବ୍ୟୟ ସଂକୋଚ କରିଥିଲେ ସେ ପ୍ରକୃତ ଧନ୍ୟବାଦର ପାତ୍ର ହୋଇପାରିଥାନ୍ତେ । ଏ ବର୍ଷ ବ୍ୟୟବୃଦ୍ଧି ମଧ୍ୟରେ ଗୋଟିଏ ଉଲ୍ଲେଖ ଯୋଗ୍ୟ ବିଷୟ ହେଉଛି, ପୋଲିସ ବିଭଗରେ ଖର୍ଚ୍ଚ ଆଠ ଲକ୍ଷ ଟଙ୍କା ବଢ଼ିଛି । ପୋଲିସ ବିଭଗର ଖର୍ଚ୍ଚ 1,43,46,000 ଏବଂ ପୋଲିସ୍ କୋଠାବାଡ଼ି ବାବଦ 10,23,624 ଏପରି ସର୍ବମୋଟ 1,53,74 ହଜାର ଖର୍ଚ୍ଚର ବ୍ୟବସ୍ଥା କରାଯାଇଛି ଏବଂ ଶିକ୍ଷା ବିଭଗ ପାଇଁ ମୋଟ 1,39,94,000 ଏବଂ କୋଠାବାଡ଼ି ପାଇଁ 3,18,306 ଏପରି ମୋଟ 1,43,12,306 ଟଙ୍କା ଖର୍ଚ୍ଚର ବ୍ୟବସ୍ଥା ହୋଇଛି । ଶାନ୍ତିପ୍ରିୟତା ପାଇଁ ଆମ

ଏ ରାଜ୍ୟର ନାମ ଅଛି । ଏପରି ଅବସ୍ଥାରେ ପୋଲିସର ଶକ୍ତି ବୃଦ୍ଧି କରିବା ଫଳରେ କେତେକ ସ୍ଥଳରେ ପୋଲିସ ନିଜର ଅସ୍ତିତ୍ୱ ବିଷୟରେ ଲୋକଙ୍କୁ ସଚେତନ କରିବା ପାଇଁ ବରଗଡ଼ ନିକଟବର୍ତ୍ତୀ ସରଳାଠାରେ ଯେପରି ଅମାନୁଷିକ କାଣ୍ଡ କରିଛନ୍ତି, ତାହା ସ୍ଥାନୀୟ କଂଗ୍ରେସ ଏମ. ଏଲ. ଏ.ଙ୍କ ଏକ ବିବୃତି ଏବଂ ଅନୁସନ୍ଧାନ ଦାବିରୁ ବୁଝାଯାଉଛି । ଲୋକହିତକର ସରକାରଙ୍କର ପୋଲିସ ଆଜି ବଲାଙ୍ଗୀରରେ ପୁଂଜିପତି କେନ୍ଦୁପତ୍ର ଆମାନଙ୍କର ପକ୍ଷ ସମର୍ଥନ କରି ଗରିବ ଦଳନ କରୁଛନ୍ତି । ଏହା ବାସ୍ତବିକ ଦୁଃଖର କଥା ।

ଶିକ୍ଷା ବିଭାଗ ବିଷୟରେ ମାନ୍ୟବର ମନ୍ତ୍ରୀ କେତେକ ଉପାଦେୟ ମନ୍ତବ୍ୟ ପ୍ରକାଶ କରିଛନ୍ତି । କିନ୍ତୁ ଆମ ଦେଶର ବର୍ତ୍ତମାନ ବାତାବରଣ ଦୃଷ୍ଟିରୁ ଶିକ୍ଷା ପଦ୍ଧତିରେ ବିପ୍ଳବ ସାଧନ ପାଇଁ ଯେଉଁ ବିରାଟ ସାଧନା ଦରକାର, ଆମେ କ'ଣ ସେଥିପାଇଁ ପ୍ରସ୍ତୁତ ? ଉତ୍ତର ଓ ଦକ୍ଷିଣ ଓଡ଼ିଶାର ଦୁଇ ପ୍ରକାର ଶିକ୍ଷା ନିୟମକୁ ଏକତ୍ର କରି ଗୋଟିଏ Uniform Education Code କରିବାକୁ ଷୋଳବର୍ଷ ଲାଗିଲାଣି ।

ଆଞ୍ଚଳିକ ଉନ୍ନୟନ ଯୋଜନା, ଜମିଦାରୀ ଉଚ୍ଛେଦ, କ୍ଷୁଦ୍ର ଜଳସେଚନ ଯୋଜନା, କୃଷି, ଶିଳ୍ପ ଇତ୍ୟାଦି ବିକାଶ ବିଭାଗ ବିଷୟରେ ମାନ୍ୟବର ଅର୍ଥମନ୍ତ୍ରୀ ଅନେକ କଥା କହିଛନ୍ତି । ସାଧାରଣ ଶାସନ ଏବଂ ବିକାଶ ବିଭାଗରେ ଯେଉଁ ପରିମାଣରେ ବୃଦ୍ଧିର ଖର୍ଚ୍ଚ ଏବଂ କର୍ମୀର ବ୍ୟସ୍ତତା ଦରକାର ତାହା ଆମର ହୋଇପାରୁ ନାହିଁ । ଯୋଜନା ପରେ ରିପୋର୍ଟ, ସ୍କିମ, ପ୍ରୋଜେକଟ୍ କେତେ କେତେ ହେଉଛି । କିନ୍ତୁ ପରିମାଣରେ କ'ଣ ହେଉଛି ? କାର୍ଯ୍ୟ କେତେଦୂର ଆଗେଇଛି ? ଯଦି ନ ହେଉଛି ତହିଁର କାରଣ କ'ଣ ? ଆମର ଅଫିସରମାନଙ୍କର ପରିବର୍ତ୍ତନ ଦେଖି ଫାଇଲମାନଙ୍କର ଅଚଳ ଅବସ୍ଥା ଏବଂ ରିପୋର୍ଟ ଓ ଯୋଜନା ଦେଖି ମନେ ହୁଏ ସତେ କ'ଣ ଆମର ଅଫିସରବାହିନୀ ଏକ ଖରସ୍ରୋତା ତରଙ୍ଗିଣୀ ଯହିଁରେ କି ରିପୋର୍ଟ, ପ୍ରୋଜେକ୍ଟ, ଯୋଜନାମାନ ଗୋଟିଏ ଗୋଟିଏ ବୁଦ୍‌ବୁଦ ଏବଂ ଫାଇଲମାନ ଏକ ନଦୀଗର୍ଭସ୍ଥ ଶିଳାଗଣି । ବିଭିନ୍ନ ବିଭାଗମାନଙ୍କରେ କର୍ମଚାରୀମାନଙ୍କର ଦକ୍ଷତାର ଅଭାବ ବିଷୟରେ ମାନ୍ୟବର ଅର୍ଥମନ୍ତ୍ରୀ ୫ ପୃଷ୍ଠାରେ ଯେଉଁ ବିଳାପ କରିଛନ୍ତି, ତାହା ସେହି ଘନ ଘନ ବଦଳି ଯୋଗୁଁ ଅନେକ ପରିମାଣରେ ସମ୍ଭବ ହେଉଛି ବୋଲି ମୋର ମନେ ହୁଏ । ହୀରାକୁଦ ରିପୋର୍ଟରେ ଖୋସଲା ଲେଖିଲେ ଝରମାନେ ମହାନଦୀଗର୍ଭରେ ସ୍ୱର୍ଣ୍ଣରେଣୁ ଆହରଣ କରନ୍ତି । ଏଥିରୁ ଜଣାପଡୁଛି ଯେ ମହାନଦୀ ଗର୍ଭରେ କେଉଁଠି ହୁଏତ ସୁନାଖଣି ଥାଇପାରେ । ହୀରାକୁଦଠାରେ ସୁନାପରି ଉଜ୍ଜ୍ୱଳ ଚକଚକିଆ ଧାତବ ପଦାର୍ଥ ବାହାରିଲା । ତାହା ପରୀକ୍ଷା ପାଇଁ ପଠାଗଲା । କିନ୍ତୁ ଆମର ଦୁର୍ଭାଗ୍ୟକୁ ସୁନା ତମ୍ବା ହୋଇଗଲା । ଆମରି ଦୁର୍ଭାଗ୍ୟକୁ ଆମର ବୁଡ଼ି ଅଞ୍ଚଳର ସୁନା ଫଳାଉଥିବା ଜମିକୁ ସରକାର ତମ୍ବା ମୂଲ୍ୟରେ ଆମଠାରୁ ନେଇ ଯାଇ ଅନ୍ୟ ଲୋକଙ୍କୁ ସୁନା ଦରରେ ବିକୁଛନ୍ତି । ଆମରି ଦୁର୍ଭାଗ୍ୟକୁ ଯେଉଁ ଇଂଜିନିଅର ବା ଅନ୍ୟାନ୍ୟ ଅଫିସରମାନେ ଆମ ସରକାରଙ୍କ ତଳେ ଯୋଗ୍ୟ ବୋଲି ବିବେଚିତ ହୋଇଥାନ୍ତି, ଉଚ୍ଚ ଡ଼ିଗ୍ରୀ ହାସଲ କରିଛନ୍ତି, ସେମାନେ

ହୀରାକୁଦକୁ ଗଲେ ତମା ମୂଲ୍ୟରେ ବିକ୍ରୀତ ହୁଅନ୍ତି । ଆମର ଏମ୍. ଏସ୍. ସି. ପାସ ସେଠି ଲାବରଟେରୀରେ ପାଆନ୍ତି ଟ 100 ଙ୍କା ଅନ୍ୟ ବି. ଏସ୍. ସି. ସେଠି ପାଆନ୍ତି ଟ 160 ଙ୍କା ଏବଂ ସେଥିପାଇଁ ଓଡ଼ିଆକୁ ପ୍ରତିବାଦ କରି ଇସ୍ତଫା ଦେବାକୁ ପଡେ । ମଧ୍ୟପ୍ରାଚ୍ୟରେ ଖ୍ୟାତି ଲାଭ କରିଥିବା ଆମର ଜଙ୍ଗଲର ଶାଳକାଠ ସେଠି ତମାପରି ଅନାଦୃତ ହୁଏ, ପଞ୍ଜାବର ଦେବଦାରୁ କାଠ ସୁନା ମୂଲ୍ୟରେ ରେଲ ଲାଇନରେ ବ୍ୟବହୃତ ହୁଏ । ଆମର କୁଲି, ଆମର କର୍ମଚାରୀ ଆମର ବଳଦ ସେଠି ତମା । ଦୁର୍ଭାଗ୍ୟ ଆମର ସମ୍ବଲପୁରରେ ସୁନାର କୁକୁଡ଼ା ଉଡ଼ିବ ବୋଲି ସରକାର ଦିନେ ଆମକୁ କହିଥିଲେ—ଆମର କିନ୍ତୁ ଉଡ଼ିବ ତମାର କୁକୁଡ଼ା । Hewers of wood and drawers of water ଆମରି ଘରେ ଆମେ exploited ବା ନିଷ୍ପେସିତ ହୋଇ ରହିଥିବା ।

ଓଡ଼ିଶାର ଅତୀତ ଭବିଷ୍ୟତରେ ଏ ରାଜ୍ୟର ସମୃଦ୍ଧି ତିନୋଟି ମୌଳିକ ସମ୍ପତ୍ତି ଉପରେ ପ୍ରତିଷ୍ଠିତ ହେବ ବୋଲି କୁହାଯାଉଛି । ପ୍ରଥମ ହୀରାକୁଦ, ଦ୍ୱିତୀୟ ତୁତୁମା-ମାଛକୁଣ୍ଡ ଏବଂ ତୃତୀୟ ବଣାଇ-କେନ୍ଦୁଝର-ସୁନ୍ଦରଗଡ-ମୟୂରଭଞ୍ଜ ପ୍ରଭୃତି ଅଞ୍ଚଳରେ ଥିବା ଆମର ବିସ୍ତୀର୍ଣ୍ଣ ଖଣିଜ ସଂପତ୍ତି । ହୀରାକୁଦ ଅଞ୍ଚଳର ବା ଓଡ଼ିଶାର କେତେଜଣ ଲୋକଙ୍କୁ ଏ ଯୋଜନାର ସଂପୂର୍ଣ୍ଣ ବା ବିଶେଷ ଦାୟିତ୍ୱ ମୁଣ୍ଡାଇବା ପାଇଁ ପ୍ରସ୍ତୁତ କରଯାଇଛି ? କୋରାପୁଟର କେତେଜଣ ଯୁବକଙ୍କୁ ତୁତୁମାର ବିଦ୍ୟୁତ ସମ୍ପତ୍ତିର ବିକାଶିକ ରୂପେ ପ୍ରସ୍ତୁତ କରଯାଇଛି ? ଗଡ଼ଜାତ ଅଞ୍ଚଳର କେତେ ଛାତ୍ର ଖଣିଜ ବିଦ୍ୟାରେ ବିଶେଷଜ୍ଞ ହେବାପାଇଁ ପ୍ରସ୍ତୁତ ହେଉଛନ୍ତି ? ଏ ସବୁ ଦାୟିତ୍ୱ କାହାର ? ଆମ ଶିଳ୍ପ ବିଭାଗ କ'ଣ ଖାଲି ଋଣ ଦାନ ପାଇଁ ଅଛି ? ଏତେ କୋଟି ଟଙ୍କା ଯୋଜନାମାନଙ୍କରେ ଖର୍ଚ୍ଚ ହୋଇଥିଲାବେଳେ କେତେ ଜଣ ଆଇ. ଏସ୍. ସି., ବି. ଏସ୍. ସି. ଛାତ୍ର ଓଡ଼ିଶାର ସୁଯୋଗ ଅଭାବରୁ କିରାଣୀ, ମାଜିଷ୍ଟ୍ରେଟ୍, ଓକିଲ ହେଉଛନ୍ତି ? ଆମର କେତେ ସୁନାକୁ ଆମେ ତମାକରି ଦେଉଥାଇଁ ସେ କଥା ସରକାର ବିଚାର କରିଛନ୍ତି କି ?

ହୀରାକୁଦ ପୁନର୍ବସତି ବିଷୟରେ ମାନ୍ୟବର ଅର୍ଥମନ୍ତ୍ରୀ ସ୍ଥାନୀୟ ସଦସ୍ୟ ଓ ଲୋକଙ୍କର ପୂର୍ଣ୍ଣ ସହଯୋଗ କାମନା କରିଛନ୍ତି । କିନ୍ତୁ କାର୍ଯ୍ୟ ହେଉଛି କାମନାର ସଂପୂର୍ଣ୍ଣ ବିପରୀତ । ସରକାର ଦିନେ ଲୋକଙ୍କୁ କହିଥିଲେ ଜମି ବଦଳରେ ଜମି, ଘର ବଦଳରେ ଘର, ଉଦାର କ୍ଷତିପୂରଣ ଇତ୍ୟାଦି ଦିଆଯିବ । ଏ ପ୍ରତିଶ୍ରୁତି ବାରମ୍ବାର ମନେ ପକାଇବାକୁ ଆଜିକାଲି ମୋତେ ଲଜ୍ଜା ବୋଧ ହେଲଣି ! ଏ ହେଲା ପ୍ରତିଶ୍ରୁତି । କାର୍ଯ୍ୟ କ୍ଷେତ୍ରରେ କଣ ହୋଇଛି ? ଏ ବର୍ଷ 38 ଖଣ୍ଡ ଗାଁର ଲୋକମାନଙ୍କୁ ନୋଟିସ ଦିଆଯାଇଛି, ତୁମେ ଘରଦ୍ୱାର, ଜମିବାଡ଼ି ଛାଡ଼ି ଚାଲିଯାଅ । ଏ ବର୍ଷ ବର୍ଷାରେ ତୁମ ଗାଁମାନ ବୁଡ଼ିଯିବାର ସମ୍ଭାବନା ରହିଛି । କେଉଁଠାକୁ ଯିବେ ତହିଁର ସୂଚନା ନାହିଁ 38 ଖଣ୍ଡ ଗାଁଆର ଲୋକଙ୍କୁ ନୋଟିସ ଦିଆଗଲା । ଲୋକେ ଆତଙ୍କିତ ହୋଇ ଘରଦ୍ୱାର ଛାଡ଼ି ଚାଲିଯିବେ ବୋଲି ଆଶାକରି ଯାହା କରଯାଇଛି । ମାତ୍ର ଏ ମଧ୍ୟରେ ବୁଆଡେ Revenue Boardର ମାନ୍ୟବର ସଭ୍ୟ କହିଛନ୍ତି, ପ୍ରାୟ

15 ଖଣ୍ଡ ଗାଁ ବଢିରେ ବୁଡ଼ିବ କିନ୍ତୁ ହୀରାକୁଦ କର୍ତୃପକ୍ଷ କହିଛନ୍ତି ଏ ବର୍ଷ କୌଣସି ଗାଁ ବଢ଼ି ହୋଇ ବୁଡ଼ିବ ନାହିଁ । ଯଦି ହୁଏ 4/5 ଖଣ୍ଡ ଗାଁରେ ବିଶେଷ ବଢି ହୋଇ ଅଳ୍ପଦିନ ପାଇଁ ଜମିବାଡ଼ି ଧୋଇଯିବ । କେଉଁ କଥା ବିଶ୍ୱାସ କରିବେ ? ଲୋକଙ୍କର ଜୀବନ ମରଣ ସମସ୍ୟା । ସରକାରୀ କର୍ତ୍ତୃପକ୍ଷ କିନ୍ତୁ 'ମିଛୁଆ ଗୋପାଳ' ପରି ରଙ୍ଗ ଲଗାଇଛନ୍ତି । ସଭାପତି ମହାଶୟ, ଆପଣ ପିଲାଦିନେ ପଢିଥିବା ଗୋଟିଏ ଗପ ଆପଣଙ୍କୁ କହିଦିଏଁ । ଗୋଟିଏ ଗଉଡ ଟୋକା ଗାଈ ଚରାଉଥାଏ । ସେ ଦିନେ ଥଟ୍ଟା କରିବା ପାଇଁ 'ବାଘ, ବାଘ ବୋଲି ପାଟି କଲା । ଗାଁ ଲୋକେ ଦଉଡ଼ି ଆସିଲେ । ଗଉଡ ଟୋକା ହସିଲା । କହିଲା ତମେ ଗାଁ ଲୋକେ ସମସ୍ତେ ଓଲୁ । ଲୋକେ ରାଗି ଚାଲିଗଲେ, ଆଉଥରେ ଠକିଲା, ଆଉ ଥରେ ଲୋକେ ଦଉଡ଼ିଲେ । ତୃତୀୟ ଥର ସତକୁ ସତ ବାଘ ଆସି ଗାଈକୁ ମାରିଲା । ଆଜି ହଜାର ହଜାର ଲୋକଙ୍କର ଦୁର୍ଦ୍ଦଶାର ସୁଯୋଗ ସରକାର ନେଉଛନ୍ତି । ଗଉଡ ଟୋକାପରି ସେମାନଙ୍କୁ ଆତଙ୍କିତ କରି ବୁଡ଼ି ଅଞ୍ଚଳକୁ ନିର୍ଜନ କରିବାକୁ ଚାହାନ୍ତି । ଏ ଖାଦ୍ୟ ଅନାଟନ ସମୟରେ ହଜାର ହଜାର ଏକର ସୁନାର ଜମି ବରବାଦ ହେଉ ସେଥିରେ ସରକାରଙ୍କର ଯାଏ ଆସେ କେତେ । ଲୋକଙ୍କୁ ଜମିରୁ ତଡ଼ି ସେମାନଙ୍କୁ ନେବାକୁ ହେବ ସାଗ୍ରାମାଲ, ବସିଆପଡା, ବଡ଼ମାଳ ପୁନର୍ବସତି କେନ୍ଦ୍ରକୁ, ଲୋକେ ପୁନର୍ବସତି କେନ୍ଦ୍ରକୁ ଦେଖିବାକୁ ଯାଉଛନ୍ତି । ସୁନା ବଦଳରେ ତମା ଦେଖି ତାଙ୍କର ଆଖି ଝଲସି ଯାଉନାହିଁ । ଆଲଉଦିନର ପୁରୁଣା କୁହୁକ ଦୀପ ବଦଳରେ ସରକାର ଦେବାକୁ ଚାହାନ୍ତି ନୂଆ ଚକଚକିଆ ଦୀପ । ନୀଦାଘର ମଧ୍ୟାହ୍ନରେ ତୃଷାର୍ତ୍ତ ଗୋରୁ ଯେପରି ଆତୁର ହୋଇ ଓରିଏଣ୍ଟ ପେପରମିଲ୍ ଦ୍ୱାରା କଳୁଷିତ ଇବ ନଦୀର ସ୍ରୋତକୁ ଯାଇ ନିରାଶ ହୋଇ ଦୀର୍ଘ ନିଶ୍ୱାସମାରି ପାଣି ନ ପିଇ ଫେରି ଆସେ, ଚାଷୀମାନେ ସେହିପରି ଏ ନୂଆ ପୁନର୍ବସତି କେନ୍ଦ୍ରମାନଙ୍କର ବ୍ୟବସ୍ଥା ଦେଖି କିଂ କର୍ତବ୍ୟ ବିମୂଢ଼ ହୋଇ ଫେରୁଛନ୍ତି । ସରକାର ଲୋକଙ୍କୁ ଭାବପ୍ରବଣ ମୂଢ଼ ବୋଲି ଦୋଷ ଦିଅନ୍ତି । * * * * 38 ଖଣ୍ଡ ଗାଁର ହଜାର ହଜାର ଲୋକଙ୍କର ଅବସ୍ଥା ଆପଣ ଥରେ କଳ୍ପନା କରି ଦେଖନ୍ତୁ କାଲିର ଅବସ୍ଥା ସେମାନେ କଳ୍ପନା ସୁଦ୍ଧା କରିପାରୁ ନାହାନ୍ତି ।

ବାସଚ୍ୟୁତ ଲୋକଙ୍କୁ ବର୍ଦ୍ଧିତ ହାରରେ କ୍ଷତିପୂରଣ ଦିଆଯିବ ବୋଲି ଯୋଜନାର ଖର୍ଚ୍ଚ ବଢିବ ବୋଲି କୁହାଯାଉଛି । କିଛିଦିନପାଇଁ 10 କୋଟି ଟଙ୍କା ବର୍ଦ୍ଧିତ ହାରରେ କ୍ଷତିପୂରଣ ଦିଆଯିବା ହୁଏତ ତାଙ୍କରିଠାରୁ ଅର୍ଥାତ୍ ସେହି ଅଞ୍ଚଳରୁ 13 କୋଟି ଟଙ୍କା ଉନ୍ନୟନ କର ବା betterment fee ହିସାବରେ ଆଦାୟ କରାଯିବ । କବି, ସଙ୍ଗୀତଜ୍ଞଙ୍କ ଭାଷାରେ ଆମେ ସରକାରଙ୍କୁ କହିବୁ "ଆଶା ଦେଇ ଯଦି ଆଶାୟୀପ୍ରାଣେ ଦେଲ କାହିଁକି, ନେଲ କାହିଁକି ?" ।

ସରକାର ଚାହାନ୍ତି ଆମର ସହଯୋଗ କିନ୍ତୁ ସେଠି ସରକାରୀ କର୍ମଚାରୀମାନଙ୍କର ଦକ୍ଷତାର ମାପକାଠି ହେଉଛି ଆମର ତଣ୍ଟି ଚିପିବାର ଦକ୍ଷତା । କେନ୍ଦ୍ରରୁ ସାହାଯ୍ୟ ଆମ ରାଜ୍ୟର ଆୟର ଏକ ଅନ୍ୟତମ ପନ୍ଥା । ଏହା ମଧ୍ୟରୁ 5 ବର୍ଷିଆ ଯୋଜନା ପାଇଁ ଦିଆଯାଉଥିବା 15 କୋଟି ଟଙ୍କା ଆୟକର ଏବଂ ଝୋଟ ରପ୍ତାନି ଶୁଳ୍କ ବାବଦକୁ ଆମର

ପାଇବା ଟଙ୍କା ଏବଂ ଅନୁନ୍ନତ ସମାଜର ଉନ୍ନତି ପାଇଁ କେନ୍ଦ୍ର ସରକାରଙ୍କଠାରୁ ପାଇବା ଟଙ୍କା ପ୍ରଧାନ । 5 ବର୍ଷିଆ ଯୋଜନାରୁ ଦେଖାଯାଉଛି ଯେ 'କ' ଶ୍ରେଣୀୟ ରାଜ୍ୟମାନଙ୍କ ମଧ୍ୟରେ କେବଳ ଆସାମକୁ ଛାଡ଼ିଦେଲେ ଓଡ଼ିଶାର ଭାଗ ସବୁଠାରୁ କମ୍ । ଭାରତ ସରକାରଙ୍କ ଶାସନ ବିଧାନରେ ବ୍ୟବସ୍ଥା ଅଛି ଯେ, ସେମାନେ ଦେଶସାରା ସାମ୍ୟ ପ୍ରତିଷ୍ଠା କରିବେ; କିନ୍ତୁ ଆମେ ଦେଖୁଛୁ କେନ୍ଦ୍ର ସରକାରଙ୍କଠାରୁ ବିଭିନ୍ନ State ଯେଉଁ ସାହାଯ୍ୟ ପାଉଛନ୍ତି ତହିଁରେ ସାମ୍ୟ ପରିବର୍ତ୍ତେ ବୈଷମ୍ୟ ବୃଦ୍ଧି ହେଉଛି ଏବଂ ଓଡ଼ିଶା ଓ ଆସାମ ପରି ଗରୀବ ରାଜ୍ୟକୁ ଆହୁରି ଗରୀବ କରିବାକୁ ଯୋଜନା କରାଯାଉଛି । ଏଥିରୁ ମୁଁ କହିବି ଆମ ସରକାର ଭାରତ ସରକାରଙ୍କୁ ଜଣାଇ ଦେବା ଉଚିତ ଯେ ଆମର ଏହି ପଛରେ ପଡ଼ିଥିବା ରାଜ୍ୟମାନଙ୍କ ପ୍ରତି ଦୃଷ୍ଟି ଦେଇ ସେହି ରାଜ୍ୟମାନଙ୍କୁ ଅନ୍ୟରାଜ୍ୟମାନଙ୍କ ସହିତ ସମକକ୍ଷ କରା ନ ଗଲେ ସମଗ୍ର ଭାରତବର୍ଷ ପଛାଇ ଯିବ । ଆମର ଏ ବିଷୟରେ ବିଶେଷ ଜୋର ଦେବା ଦରକାର ।

ଆଉ ମୋର ପୂର୍ବବର୍ତ୍ତୀ ବକ୍ତା ଯେପରି କହିଲେ ଯେ 39 ଲକ୍ଷ ଟଙ୍କା ଆମର ଖର୍ଚ୍ଚ କାଟ କରାଯାଇଛି ତାହା ଆହୁରି ଯେପରି ଭାବରେ ବେଶୀ କରଯାଏ ଏବଂ ଯେପରି ଭାବରେ ଆମର ଗଠନମୂଳକ କାର୍ଯ୍ୟମାନଙ୍କରେ ବେଶୀ ଖର୍ଚ୍ଚ ହୁଏ ଏବଂ ଶାସନ ବିଭାଗରୁ ଖର୍ଚ୍ଚ କମ ହୋଇଯାଏ ସେଥି ପ୍ରତି ମାନ୍ୟବର ଅର୍ଥମନ୍ତ୍ରୀ ବିଶେଷ ଦୃଷ୍ଟି ଦେବା ଦରକାର ।

ଶେଷରେ ମୁଁ କହିବାକୁ ଚାହେଁ, ପ୍ରଥମରୁ ଗୋଟିଏ ତୁଳନା ଦେଇଥିଲି ଯେ ଓଡ଼ିଶାରେ ବାରମ୍ବାର ଏହିପରି ଟଙ୍କାର ବରବାଦ ହେଉଛି, ଏଡିକି ବେଳୁ ତାକୁ ସଂଶୋଧନ କରିବାକୁ ଚେଷ୍ଟା କରନ୍ତୁ । ସେଥିପାଇଁ ଆମର ବର୍ତ୍ତମାନ ବିଶେଷ ଦରକାର ଯେ ପ୍ରୟୋଜନୀୟ ଖର୍ଚ୍ଚ ଯେପରି ବଢ଼େ, ଗଠନମୂଳକ କାର୍ଯ୍ୟ ଯେପରି ଭଲ ହୁଏ ଶାସନ ବିଭାଗ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ବିଭାଗମାନ ବିଶେଷ ଭାବରେ କାର୍ଯ୍ୟକାରୀ ହୁଏ, ସେଥିପ୍ରତି ଅର୍ଥମନ୍ତ୍ରୀ ଦୃଷ୍ଟି ଦେବେ ବୋଲି ମୁଁ ଆଶା କରୁଛି ।

## ଓଡ଼ିଶା ସାଧାରଣ ଶୃଙ୍ଖଳାରକ୍ଷା (ସଂଶୋଧନ) ବିଲ୍, 1952

ସ୍ୱାଧୀନତା ଲାଭ ପରେ ଓଡ଼ିଶା ପରି ବିଭିନ୍ନ ରାଜ୍ୟରେ ଶାନ୍ତି ଶୃଙ୍ଖଳା ରକ୍ଷା ଏକ ସମସ୍ୟା ହୋଇଥିଲା । ବିଶେଷତଃ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଅନେକ ସରଳ ଜନସାଧାରଣ ଗ୍ରାମ୍ୟ, ଏମିତିକି ଆଦିବାସୀମାନେ ବିଭିନ୍ନ ସମୟରେ ଗଣ୍ଡଗୋଳ ଓ ଆନ୍ଦୋଳନ ଆରମ୍ଭ କରିଦେଇଥାନ୍ତି । ସାଧାରଣ ଶୃଙ୍ଖଳା ରକ୍ଷା ଆଇନର ସଂଶୋଧନ ମିଆଦ ବୃଦ୍ଧିପାଇଁ ଏକ ବିଲ୍ ବିଧାନସଭାରେ ଆଗତ ହୋଇଛି । ଏହା ଉପରେ କହିବା ପାଇଁ ବାଚସ୍ପତି ବିରୋଧଦଳ ନେତା ଡକ୍ଟର ସୂପକାରଙ୍କୁ ଅନୁରୋଧ କରିଥିଲେ । ଏହା ଉପରେ ଉଭୟ ପକ୍ଷରୁ ବହୁ ଆଲୋଚନା ଓ ସମାଲୋଚନା ହୋଇଥିଲା । ଆଠଗଡ଼ର ସଭ୍ୟ ଶ୍ରୀ ରାଧାନାଥ ରଥ କମ୍ୟୁନିଷ୍ଟମାନେ ହିଂସାକାଣ୍ଡ

ଘଟାଇଛନ୍ତି ବୋଲି ଅଭିଯୋଗ କରିଥିବାରୁ ଡ଼ଃ ସୂପକାର ତା'ର ଉତ୍ତରରେ କହିଛନ୍ତି ଯେ ଶ୍ରୀଯୁକ୍ତ ରଥ ନିଜେ ସ୍ୱୀକାର କରିଛନ୍ତି ଯେ କମ୍ୟୁନିଷ୍ଟମାନେ କେତେକ ପରିବର୍ତ୍ତନ ସୃଷ୍ଟି ବିପ୍ଳବ ଘଟାଉଛନ୍ତି ଏବଂ ଏହା ଦେଶ ପକ୍ଷେ ମଙ୍ଗଳକର । ସେମାନେ ପୁଣି ଅନ୍ୟ ରାଷ୍ଟ୍ରର ନୀତି ପ୍ରଚାର କରୁଛନ୍ତି ବୋଲି ଶ୍ରୀ ରଥଙ୍କର ଅଭିଯୋଗ ଏବଂ ସେଥିପାଇଁ ଏହିପରି ଆଇନ ଆବଶ୍ୟକ ହେଉଛି ବୋଲି ମତ ପ୍ରକାଶ କରିଛନ୍ତି । "କିନ୍ତୁ ଏହି ପ୍ରକାର ଆଇନ କରି ଦେବା ଦ୍ୱାରା ଯେ ପ୍ରକୃତରେ କମ୍ୟୁନିଷ୍ଟ ମତବାଦର ପ୍ରତିରୋଧ କରାହୋଇଛି ବା ତାହାକୁ ଦବାଇ ଦିଆଯାଇଛି, ଏକଥା ମୁଁ ବିଶ୍ୱାସ କରିପାରୁନାହିଁ ବରଂ ଏହା ଫଳରେ କମ୍ୟୁନିଷ୍ଟ ମତବାଦର ପ୍ରସାର ହୋଇଛି ଏବଂ ସେମାନେ ବେଶୀ ପରିମାଣରେ ଜନସାଧାରଣଙ୍କ ସହାନୁଭୂତ ଆକର୍ଷଣ କରିପାରିଛନ୍ତି ।

କିନ୍ତୁ ଡଃ ସୂପକାରଙ୍କ ମତ ଯେ ଅନେକ କଂଗ୍ରେସବାଦୀ ଲୋକ ଯେଉଁମାନେ ମୁହଁରେ ଅହିଂସାବାଦୀ ବୋଲି ପ୍ରଚାର କରୁଛନ୍ତି ସେମାନଙ୍କ ମଧ୍ୟରୁ ଅନେକ ବର୍ତ୍ତମାନ ଶାସନ କାଳରେ ସୁବିଧା ଓ ସାହାଯ୍ୟ ନେଇ ଅନ୍ୟାନ୍ୟ ନିଜର ବ୍ୟକ୍ତିଗତ ସୁବିଧା ନେଇ ସେମାନେ ଯେଉଁ ପ୍ରକାର ହିଂସାକାଣ୍ଡ ସମୟେ ସମୟେ କରୁଛନ୍ତି, ସେଇଟା କମ୍ୟୁନିଷ୍ଟ-ମାନଙ୍କର ଯେଉଁ ହିଂସାବାଦ ତାହାଠାରୁ ଶତଗୁଣରେ ଯେ ମାରାତ୍ମକ ଏକଥା ଯେଉଁମାନେ ଅନୁଭବୀ ସେମାନେ ବୁଝିପାରୁଥିବେ ।" (ଓଡ଼ିଶା ବିଧାନସଭା ବିବରଣୀ ତା 31-1-1952) ଏହା ତାଙ୍କର ଅନୁଭୂତିର କଥା ବୋଲି ସେ କହିଛନ୍ତି ଏବଂ ଏବେ ମଧ୍ୟ ଅନେକ ତାହା ଅନୁଭବ କରୁଛନ୍ତି ।

The Hon'ble the SPEAKER : Has the hon'ble the member the authority to make a statement ?

Shri RADHANATH RATH : Sir, in consultation with the Leader of the House I have made the statement.

The Hon'ble the SPEAKER : In view of this may I ask the Leader of the Opposition if he desires to continue the discussion on this motion.

ଶ୍ରୀ ଶରଧାକର ସୂପକାର : ମାନ୍ୟବର ସଭାପତି ମହାଶୟ, ଆଜି ଯେଉଁ Bill ଆମ ସମ୍ମୁଖରେ ଉପସ୍ଥାପିତ କରା ହୋଇଛି, ଏହି ବିଷୟ ନେଇ ଉଭୟ ପକ୍ଷରୁ ଯେଉଁ ଆଲୋଚନା ଓ ସମାଲୋଚନା ହୋଇଛି, ସେଥିରୁ ମୋର ମନେହେଉଛି, ଏହି Bill ଆଣିବା ବିଶେଷ ଆବଶ୍ୟକତା ଅଛି ବୋଲି ଜଣା ପଡୁନାହିଁ । ଏହି Bill Statement of Object and Reasonsରେ ଅଛି :

As the conditions which necessiated enactment of this Act and the emergency for which it was passed still exist, this fresh Bill is brought before the Legislature to secure continuance of the provisions of this Act with suitable amendments for a further period of one year with effect from the 1st April 1952.

ଏହି Bill ଯେତେବେଳେ 1948 ସାଲରେ ପ୍ରଥମେ ଉପସ୍ଥାପିତ କରାହୁଏ, ସେହି ସମୟରେ ଏହାର ପ୍ରୟୋଜନୀୟତା ଦର୍ଶାଇ ତଦାନୀନ୍ତନ ପ୍ରଧାନମନ୍ତ୍ରୀ ଯେଉଁ ସମୟରେ ଦେଶରେ ଯେଉଁ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା ସେହି ପରିସ୍ଥିତି ବିଷୟରେ ସେ କଥା ଅନେକ କହି ପାରିଥିଲେ । ସେହି ପରିସ୍ଥିତି ମଧ୍ୟରେ ସେ ଯାହା କହିଥିଲେ ମୁଁ ସଂକ୍ଷିପ୍ତରେ କହିବାକୁ ଯାଉଛି । 1948 ସାଲରେ ଯେତେବେଳେ ଏହି Bill ପ୍ରଥମେ କରାହୁଏ, ସେହି ସମୟରେ ପୂଜନୀୟ ବାପୁଜୀଙ୍କ ହତ୍ୟାକାଣ୍ଡ ହୋଇଥିଲା । ସେଥିପାଇଁ ଦେଶରେ ଘୋର ଗୃହକଳହ ସୃଷ୍ଟି ହୋଇଥିଲା । ତା'ପରେ ପାକିସ୍ଥାନର ଉତ୍ପତ୍ତି ଯୋଗୁଁ ଦେଶ ଭିତରେ ଯେଉଁ ବିଭଜନ ହୋଇଥିଲା ସେଥିପାଇଁ ମଧ୍ୟ ଦେଶ ଭିତରେ ଗୋଟିଏ ଉତ୍ତେଜନା ଦେଖା ଯାଇଥିଲା । ସେହି ସମୟରେ ମଧ୍ୟ ପୂର୍ବତନ ଗଡ଼ଜାତ ମିଶାଣ ପାଇଁ କେତେକ ଆନ୍ଦୋଳନ ଦେଖା ଯାଇଥିଲା । ଏହି ସବୁ ଦୃଷ୍ଟିରୁ ସେହି ସମୟରେ ଏହି ପ୍ରକାର ଗୋଟିଏ ଗୋଟିଏ ଆଇନର ପ୍ରୟୋଜନୀତା ଆବଶ୍ୟକତା ଅଛି ବୋଲି ତଦାନୀନ୍ତନ ପ୍ରଧାନମନ୍ତ୍ରୀ କହିଥିଲେ । ତା'ପରେ ପ୍ରତ୍ୟେକ ବର୍ଷ ଏହି Bill ନୂଆ ନୂଆ ଆକାର ଧାରଣ କରି ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରାଯାଉଛି । ସେହି ସମୟରେ ଯେଉଁ ଅବସ୍ଥା ଥିଲା, ଦେଶରେ ସେହି ସମୟରେ ଯେଉଁ ଅଶାନ୍ତି ଥିଲା ବର୍ତ୍ତମାନ ଅବସ୍ଥା ଯାହା ତା' ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି ଏହା ବୋଧହୁଏ ନିଜେ ସରକାର ସ୍ୱୀକାର କରିବେ । 1948 ପରେ ପରିବର୍ତ୍ତିତ ଆକାରରେ ଏହି Bill ଦେତେଥର ଉପସ୍ଥାପିତ କରାଯାଇଛି ସେହି ସମୟରେ ଅନେକ ଥର କୁହାଯାଇଛି ଯେ ପୂର୍ବରେ ଯେଉଁ ପରିସ୍ଥିତି ଥିଲା ବର୍ତ୍ତମାନ ଦେଶରେ ସେହି ପ୍ରକାର ପରିସ୍ଥିତି ନାହିଁ । ତଥାପି ଆମମାନଙ୍କ ସମ୍ମୁଖରେ କମ୍ୟୁନିଷ୍ଟମାନଙ୍କ ଯେଉଁ menace ବା ଭୟ ରହିଛି ସେଥିପ୍ରତି ସଭ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା ଏବଂ କୁହାଯାଇଥିଲା ଯେ କମ୍ୟୁନିଷ୍ଟମାନଙ୍କୁ ଆୟତ୍ତରେ ରଖିବାକୁ ହେଲେ ଆମ୍ଭମାନଙ୍କର ଏହି ପ୍ରକାର ଆଇନ ବିଶେଷ ଦରକାର । ଏହି ବିଷୟରେ ଅନେକ ପ୍ରକାର ଆଲୋଚନା ହୋଇଯାଇଛି । ମାନ୍ୟବର ଆଠଗଡ଼ର ସଭ୍ୟ ଖୁବ୍ ଯୋର ଦେଇ କହିଛନ୍ତି ଯେ କମ୍ୟୁନିଷ୍ଟମାନେ ହିଂସାକାଣ୍ଡର ଆଶ୍ରୟ ଛାଡୁ ନାହାନ୍ତି । ସେଥିପାଇଁ ଆମ୍ଭମାନଙ୍କୁ ବାଧ୍ୟ ହୋଇ ଏହି ପ୍ରକାର ଆଇନର ଆଶ୍ରୟ ନେବାକୁ ହେଉଛି । ଏକଥା ସ୍ୱୀକାର କରୁଛନ୍ତି ଯେ କମ୍ୟୁନିଷ୍ଟମାନେ ଯେଉଁ ପରିବର୍ତ୍ତନ ଚାହୁଁଛନ୍ତି ସେହି ପରିବର୍ତ୍ତନ ହେଲେ ଦେଶର ଉନ୍ନତି ହେବ । ତାଙ୍କର ଆପତ୍ତି ହେଉଛି ଯେ କମ୍ୟୁନିଷ୍ଟମାନେ ଯେଉଁ ଅପର ରାଷ୍ଟ୍ରର ନୀତି ଓ ଆଶ୍ରୟ ନେଉଛନ୍ତି ତାହା ହିଂସାତ୍ମକ ନୀତି ହୋଇ ଥିବାରୁ

ଏହି ପ୍ରକାର ଆଇନର ପ୍ରୟୋଜନ ହେଉଛି କିନ୍ତୁ ଏହି ପ୍ରକାର ଆଇନ କରି ଦେବା ଦ୍ୱାରା ଯେ ପ୍ରକୃତରେ କମ୍ୟୁନିଷ୍ଟ ମତବାଦର ପ୍ରତିରୋଧ କରା ହୋଇଛି ବା ତାହାକୁ ଦବାଇ ଦିଆ ଯାଇଛି ଏ କଥା ମୁଁ ବିଶ୍ୱାସ କରି ପାରୁନାହିଁ । ବରଂ ଏହାଫଳରେ କମ୍ୟୁନିଷ୍ଟ ମତବାଦର ପ୍ରସାର ହୋଇଛି ଏବଂ ସେମାନେ ବେଶୀ ପରିମାଣରେ ଜନସାଧାରଣଙ୍କ ସହାନୁଭୂତି ଆକର୍ଷଣ କରି ପାରିଛନ୍ତି ବୋଲି ମୋର ମନେ ହୁଏ । କାହିଁକି ନା ଯଦି ଆମ ଦେଶର ଗତ ୨୦/୩୦ ବର୍ଷର ପରମ୍ପରା ଆମେ ଦେଖୁ ତାହା ହେଲେ ଆମେମାନେ ଦେଖିବାକୁ ପାଇବା ଯେ ଦମନ ଦ୍ୱାରା ଅର୍ଥାତ୍ ଯେଉଁମାନଙ୍କୁ ଦମନ କରାଯାଉଛି ସେମାନଙ୍କ ପ୍ରତି ଦେଶର ଜନସାଧାରଣଙ୍କର ସାହାନୁଭୂତି ଆକୃଷ୍ଟ ହୋଇଛି । ସେଥିପାଇଁ ଯେଉଁ ଉଦ୍ୟୋଗରେ ଏହି ଦମନମୂଳକ ଆଇନ ଜାରି କରାହୋଇଛି ସେହି ଆଇନର ଉଦ୍ଦେଶ୍ୟ ସଫଳ ହୋଇ ପାରିବ ନାହିଁ । ଅବଶ୍ୟ ସରକାର ଯେଉଁ ଉଦ୍ଦେଶ୍ୟରେ ଏହି Bill କରାଯାଇଛି ବୋଲି କହୁଛନ୍ତି ତାକୁ ଯଦି ଆମେ ବିଶ୍ଲେଷଣ କରି କାର୍ଯ୍ୟ କ୍ଷେତ୍ରରେ ଦେଖୁ ତାହାହେଲେ ଜଣାଯିବ ଯେ ସେହି ଉଦ୍ଦେଶ୍ୟରେ ଏହି Bill ପ୍ରୟୋଗ କରାହୋଇନାହିଁ । କାର୍ଯ୍ୟକ୍ଷେତ୍ରରେ ଦେଖାଯାଇଛି ଯେ କେବଳ କମ୍ୟୁନିଷ୍ଟ ଦମନ ପାଇଁ ଏହା ନୁହେଁ ଅନ୍ୟାନ୍ୟ ରାଜନୈତିକ ବିରୋଧ ଦମନ କରିବା ପାଇଁ ଏହା ପ୍ରୟୋଗ କରାଯାଇଛି ଏବଂ ଏହି ବିଷୟରେ ଏତିକି ମାତ୍ର ଉଦାହରଣ ସ୍ୱରୂପ କହିବି ଯେ ଗତ ନିର୍ବାଚନ ପୂର୍ବରୁ ଗଣତନ୍ତ୍ର ପରିଷଦର ମଧ୍ୟ କେତେକ ବିଶିଷ୍ଟକର୍ମୀଙ୍କ ବିରୋଧରେ ଏହି ଦମନ ନୀତି ପ୍ରୟୋଗ କରାଯାଇଥିଲା ଏବଂ ଏହି ଦମନନୀତି ବିରୁଦ୍ଧରେ ମଧ୍ୟ ପୂର୍ବରୁ ସମାଲୋଚନା ହୋଇଯାଇଛି । ଗତଥର ଯେତେବେଳେ ଏହି ବିଷୟରେ ଆଲୋଚନା ହେଲା ସେହି ସମୟରେ ସେଇଟା ନିର୍ବାଚନ ପୂର୍ବବର୍ତ୍ତୀ ସମୟ—ଅନେକ ମାନ୍ୟବର ସଭ୍ୟ ସମାଲୋଚନା କରିଥିଲେ ଯେ ଏହିପରି ଆଇନ ରହିବା ଦ୍ୱାରା ସ୍ୱାଧୀନ ଓ ନିରପକ୍ଷ ନିର୍ବାଚନ ହୋଇ ପାରିବ ନାହିଁ । ବ୍ୟବସ୍ଥା ସଭାର ସଭ୍ୟମାନଙ୍କୁ ସେତେବେଳେ ସରକାର ନିର୍ଭର ଜବାବ ଦେଇଥିଲେ ଯେ ନିର୍ବାଚନରେ ହସ୍ତକ୍ଷେପ କରିବା ଉଦ୍ଦେଶ୍ୟରେ ଏ ଆଇନ କରାଯାଉନାହିଁ । କିନ୍ତୁ ଯେଉଁମାନେ ଶାନ୍ତି ଶୃଙ୍ଖଳା ରକ୍ଷା କରିବାରେ ବିରୋଧ କରନ୍ତି କେବଳ ସେହିମାନଙ୍କ ବିରୁଦ୍ଧରେ ଏହା ପ୍ରୟୋଗ କରାଯିବ, କିନ୍ତୁ ଯେଉଁମାନେ ନିୟମ କାନୁନ ମାନି ଚଳିବେ ସେମାନେ ଏଥିରେ ଭୟ କରିବାର କୌଣସି କାରଣ ନାହିଁ । କିନ୍ତୁ ଦୁଃଖର ସହିତ କହିବାକୁ ହେଉଛି ଯେ ଗତ ନିର୍ବାଚନ ପୂର୍ବରେ ସରକାରୀ ଦଳ ବିରୁଦ୍ଧରେ ଯେଉଁମାନେ ନ୍ୟାୟ ସଙ୍ଗତ ବା constitutional ଭାବରେ ଲଢିବାକୁ ଚେଷ୍ଟା କରିଛନ୍ତି ସେମାନଙ୍କୁ ମଧ୍ୟ ଦମନ କରାଇବା ପାଇଁ ଆଇନ ପ୍ରୟୋଗ ହୋଇଛି । ସେଥିପାଇଁ ମୁଁ କହିବାକୁ ଚାହେଁ ଯେ ଯଦି ପ୍ରକୃତରେ ସରକାର ଏହା କମ୍ୟୁନିଷ୍ଟମାନେ ଯେଉଁମାନଙ୍କୁ ସେ କହୁଛନ୍ତି ଯେ ସେ ହିଂସାତ୍ମକ ବିପ୍ଳବ କରୁଛନ୍ତି ସେମାନଙ୍କ ବିରୁଦ୍ଧରେ ପ୍ରୟୋଗ କରିବାର ଥିଲା ତାହାହେଲେ ସେ ଦଳ, ସେ ବେଆଇନ ଘୋଷଣା କରି

କେବଳ ସେହି ଦଳ ବିରୋଧରେ କାର୍ଯ୍ୟାନୁଷ୍ଠାନ କରିଥାନ୍ତେ । କିନ୍ତୁ ଏ ପ୍ରକାର ସର୍ବସାଧାରଣଙ୍କ ଉପରେ ପ୍ରୟୋଗ କରାଯାଇ ପାରିବା ଭଳିଆ ଆଇନ କାହିଁକି ତିଆରି ହୋଇଛି ? ଏଥିପାଇଁ ଏଥିରେ ସନ୍ଦେହ କରିବାର ଯଥେଷ୍ଟ ଅବକାଶ ରହିଛି ଯେ ଯେଉଁମାନେ ରାଜନୈତିକ ବିରୋଧ କରିବେ, ସେଇଟା ହିଂସା ମାର୍ଗରେ ହେଉ ବା ଅହିଂସା ମାର୍ଗରେ ହେଉ ସେମାନଙ୍କ ମଧ୍ୟରୁ ଅନେକଙ୍କ ବିରୁଦ୍ଧରେ ଏହା ପ୍ରୟୋଗ କରଯିବାର ସମ୍ଭାବନା ରହିଛି । କମ୍ୟୁନିଷ୍ଟମାନେ ହିଂସାତ୍ମକ ବିପ୍ଳବ କରୁଛନ୍ତି । ସେଥିପାଇଁ ତାଙ୍କ ବିରୁଦ୍ଧରେ ଏହା ପ୍ରୟୋଗ କରଯାଉଛି ବୋଲି ଯାହା କୁହାଯାଇଛି ସେ କଥା ଯଦି ବିଶ୍ଳେଷଣ କରଯାଏ ତାହାହେଲେ ଆମେ ଦେଖିବାକୁ ପାଇବା ଯେ ଏହି ଆଇନ ବଳରେ ସେହି ହିଂସାତ୍ମକ କାଣ୍ଡ ବା ବିପ୍ଳବ ବନ୍ଦ କରି ହେବ କି ନାଁ ? ମୁଁ ଭବୁଛି ଏହି ଆଇନ୍ ଯେଉଁଥିପାଇଁ ନିର୍ଦ୍ଦିଷ୍ଟ ସେ କାର୍ଯ୍ୟ ଏ ଆଇନ ଦ୍ୱାର ହୋଇ ପାରିବ ନାହିଁ । ଆହୁରି ମଧ୍ୟ ଦେଖା ଯାଉଛି ଯଦି ହିଂସାବାଦୀ ବୋଲି କମ୍ୟୁନିଷ୍ଟଙ୍କ ବିପକ୍ଷରେ ଏହା ପ୍ରୟୋଗ ହେଉଛି ବୋଲି ସରକାର କହୁଛନ୍ତି ତାହାହେଲେ ଯେଉଁମାନେ ହିଂସାବାଦୀ ଅର୍ଥାତ୍ କମ୍ୟୁନିଷ୍ଟ ନୁହନ୍ତି ସେହିମାନଙ୍କୁ ମଧ୍ୟ ଏହା ପ୍ରଯୁଜ୍ୟ ହେବା ଦରକାର । ଯେପରିକି ଦେଖା ଯାଉଛି ଅନେକ ହିଂସାବାଦୀ ଲୋକ ଯେଉଁମାନେ ମୁହଁରେ ଅହିଂସାବାଦୀ ବୋଲି ପ୍ରଚ୍ଚର କରୁଛନ୍ତି ସେମାନଙ୍କ ମଧ୍ୟରୁ ଅନେକ ବର୍ତ୍ତମାନ ଶାସନ କଳରେ ସୁବିଧା ଓ ସାହାଯ୍ୟ ନେଇ ଅନ୍ୟାନ୍ୟ ନିଜର ବ୍ୟକ୍ତିଗତ ସୁବିଧା ନେଇ ସେମାନେ ଯେଉଁ ପ୍ରକାର ହିଂସାକାଣ୍ଡ ସମୟେ ସମୟେ କରୁଛନ୍ତି ସେଇଟା କମ୍ୟୁନିଷ୍ଟମାନଙ୍କର ଯେଉଁ ହିଂସାବାଦ ତାହାଠାରୁ ଶତଗୁଣରେ ଯେ ମାରାତ୍ମକ ଏ କଥା ଯେଉଁମାନେ ଅନୁଭବୀ ସେମାନେ ବୁଝି ପାରୁଥିବେ । ମୋର ମଧ୍ୟ ଏ ବିଷୟରେ ବ୍ୟକ୍ତିଗତ ଅଭିଜ୍ଞତା ଅଛି । ତା'ପରେ ଅନେକ ଯୁକ୍ତି କରଯାଇଛି କମ୍ୟୁନିଷ୍ଟମାନେ ଋଷିଆର ଆଦେଶ ନେଇ କାର୍ଯ୍ୟ କରୁଛନ୍ତି ଓ ସେଠାରେ Democracy ବା ଗଣତନ୍ତ୍ର ଶାସନ ନାହିଁ । ସେ'ତ Dicttrorship of the Proletariat ବା ସର୍ବହରଙ୍କ ଏକଛତ୍ରବାଦ ଚ୍ଚଲିଛି । ତେଣୁ କମ୍ୟୁନିଷ୍ଟମାନେ ଏଠାରେ ଏହି ଆଇନ ବିରୋଧ କରିବାର କୌଣସି ଅଧିକାର ନାହିଁ । ଏହି ଯେଉଁ ଯୁକ୍ତି କରଯାଇଛି ସେଇଟା ଠିକ୍ ନହେଁ ବୋଲି ମୁଁ କହିବି । କାହିଁକିନା ଋଷିଆରେ ଯେ ପ୍ରକାର ଶାସନ ପ୍ରଚଳିତ ଅଛି, ଯେଉଁ constitution ବା ସଂବିଧାନ ପ୍ରଚଳିତ ଅଛି ଆମ ଦେଶରେ ସଂବିଧାନ ତା'ଠାରୁ ସଂପୂର୍ଣ୍ଣ ଭିନ୍ନ ଏବଂ ଋଷିଆ ସହିତ ଦେଶକୁ ତୁଳନା କରିବା ଠିକ୍ ନୁହେଁ । ଆମ ଦେଶରେ ଯେଉଁ ସଂବିଧାନ ପ୍ରଚଳିତ ଅଛି ସେଥିରେ ଯେଉଁ ନାଗରୀକ ସ୍ୱାଧୀନତା ଆମ୍ଭମାନଙ୍କୁ ମିଳିଛି ସେ ଦୃଷ୍ଟିରୁ ଆମ୍ଭମାନଙ୍କୁ ବିଷୟଟି ବିଚ୍ଚର କରିବାକୁ ହେବ ଏବଂ ତଦ୍ୱାର ଆମେ ସ୍ପଷ୍ଟ ଭବରେ ଉପଲବ୍ଧି କରିବା ଯେ ଏ ପ୍ରକାର ଆଇନର ପ୍ରୟୋଜନୀୟତା ନାହିଁ ଏବଂ ଏହା ପୁରାପୁରି ଆଇନାନୁମୋଦିତ ନୁହେଁ । ତେଣୁ ମୁଁ ଭବୁଛି ଯେ ଏ ପ୍ରକାର କୌଣସି emergency ବା ଜରୁରୀ

ଅବସ୍ଥା ଦେଶରେ ସୃଷ୍ଟି ହୋଇନାହିଁ ଯେଉଁଥି ପାଇଁ କି ଏ ପ୍ରକାର ଆଇନ ପ୍ରଚଳିତ ହେବା ଦରକାର । ଅବଶ୍ୟ ସରକାରଙ୍କ ତରଫରୁ ଯୁକ୍ତି କରଯାଇ ପାରେ ଏବଂ ବୋଧହୁଏ କରଯିବ ଯେ ଯେହେତୁ Preventive Detention Act ବା ଅଟକ ବନ୍ଦୀ ଆଇନ କେନ୍ଦ୍ର ସରକାର ପ୍ରଚଳିତ କରିଛନ୍ତି ଏବଂ ତାହା ୬ ମାସ ପର୍ଯ୍ୟନ୍ତ ଯେ ପର୍ଯ୍ୟନ୍ତ କି ନିର୍ବାଚିତ Parliament ଗୃହ ସେ ବିଷୟରେ ନିଷ୍ପତ୍ତି ନ କରିବେ ସେ ପର୍ଯ୍ୟନ୍ତ ଗ୍ଲୁ ରହିବ । ସେହି ଦୃଷ୍ଟିରୁ ସରକାରଙ୍କ ଦ୍ୱାର ଯୁକ୍ତି କରଯାଇ ପାରେ ଯେ ସେ ଆଇନକୁ ଖାପ ଖାଇଲା ଭଳିଆ ଆମ ରଜ୍ୟ ବା ପ୍ରଦେଶ ମଧ୍ୟ ଗୋଟିଏ ଶୃଙ୍ଖଳା "Maintenance of Public Order Act" କରିବା ଦରକାର । ଯଦି ତାହା ଆମେ ନ କରୁ ତା'ହେଲେ ହୁଏତ ଯେଉଁମାନେ ଏ ପ୍ରକାର ଗୋଳମାଳ କରିବାକୁ ଯାଉଛନ୍ତି ସେମାନଙ୍କ ବିପକ୍ଷରେ ଏପରି କୋହଳ ଆଇନ—"Orissa Maintenance of Public Order Act—ବଦଳରେ ସେମାନଙ୍କର ଗତିବିଧି ନିୟନ୍ତ୍ରଣ କରିବା ପାଇଁ ସରକାର ଆହୁରି କଠିଣ ବ୍ୟବସ୍ଥା କରିବାକୁ ପଡ଼ିପାରେ ଏବଂ ସେଥିରେ ଯେଉଁମାନଙ୍କୁ ଏହି ଆଇନ ଦ୍ୱାର restriction କରଯାଇ ପାରନ୍ତା, ସେମାନଙ୍କୁ ସରକାର Preventive Detention Act ବଳରେ ଅଟକ ବନ୍ଦୀ କରିବାକୁ ବାଧ୍ୟ ହେବେ । କିନ୍ତୁ ମୁଁ ଭବୁଛି ଏ ପ୍ରକାର ଯୁକ୍ତି ମଧ୍ୟ ଯୁକ୍ତି ସଙ୍ଗତ ନୁହେଁ । କାରଣ ଯେଉଁମାନେ ଯଦି କୌଣସି ରକମ ଶୃଙ୍ଖଳା ଭଙ୍ଗ କରୁ ଥାଆନ୍ତି, ଯେଉଁମାନଙ୍କ ବିଷୟ Preventive Detention Actରେ ଆସିବ, ସେମାନଙ୍କୁ ଏଥିରେ ପକାଇବାର କଥା ଏବଂ ଯେଉଁମାନେ ସେ ଆଇନର କ୍ଷଥାରେ ପଡ଼ିବେ ନାହିଁ ସେମାନଙ୍କ ଉପରେ କୌଣସି କଟକଣା ନ କଲେ ମଧ୍ୟ ମୁଁ ଭବୁଛି ସେଥିରେ ଆମ ଦେଶର ଶାନ୍ତି ଶୃଙ୍ଖଳାରେ କୌଣସି ରକମ ବ୍ୟାଘାତ ଘଟିବ ନାହିଁ । ଏ ବିଷୟରେ ଆଉ ଗୋଟିଏ କଥା ପ୍ରତି ମୁଁ ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରିବି । ଯେଉଁ ସମୟରେ ଏ ଆଇନଟା ପ୍ରଥମ ଗ୍ଲୁ ହେଲ ସେ ସମୟରେ କୁହାଯାଇଥିଲ ଯେ ଆଦିବାସୀ ଆନ୍ଦୋଳନ ଯୋଗୁ ଏପ୍ରକାର ଆଇନ କରଯାଉଛି । ସେ ଯେଉଁ ଯୁକ୍ତି ସରକାର ପକ୍ଷ ଦେଉଥିଲେ ବର୍ତ୍ତମାନ ଆଲୋଚନାରୁ ଦେଖାଯାଉଛି, ସେ ବିଷୟରେ ଅନେକ ମାନ୍ୟବର ସଭ୍ୟ ଉତ୍ତର ଦେଇ ସାରିଛନ୍ତି । ମୁଁ କେବଳ ସର୍ବଶେଷରେ ଏତିକି ମାତ୍ର ସୂଚନା ଦେବାକୁ ଗ୍ହେଁ ଯେ ସରକାର ଯାହା କହିଛନ୍ତି ଆଦିବାସୀମାନଙ୍କୁ ଅନେକ ରାଜନୈତିକ ଦଳ ନିଜ ନିଜ ସ୍ୱାର୍ଥ ସାଧନ କରିବା ଉଦ୍ଦେଶ୍ୟରେ ଖରାପ ରାସ୍ତାରେ ନେଇ ଯାଇ ପାରନ୍ତି ଏବଂ ସେଥିପାଇଁ ଏ ପ୍ରକାର ଆଇନର ପ୍ରୟୋଜନୀୟତା ଅଛି ମୁଁ ଭବୁଛି ଯେ ଯଦି ଏହି ଯୁକ୍ତିକୁ ଧରାଯାଏ ତା'ହେଲେ ଯେଉଁ ଦଳ ବର୍ତ୍ତମାନ ଶାସନ କଳ ଚଳାଇଛନ୍ତି ସେମାନେ ମଧ୍ୟ ଯଦି ଆଦିବାସୀମାନଙ୍କୁ ନିଜର ରାଜନୈତିକ ମତବାଦରେ ପ୍ରଭବିତ କରିବାକୁ ଚେଷ୍ଟା ନ କରନ୍ତେ ତାହାହେଲେ ଏପ୍ରକାର ଯୁକ୍ତିର ଯଥାର୍ଥତା ରୁହନ୍ତା । କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ଦେଖା ଯାଉଛି ଯେ ଗୋଟିଏ ଭିନ୍ନ ନାମ ଦେଇ ଅର୍ଥାତ୍ ଆଦିବାସୀ କଂଗ୍ରେସ ନାମ ଦେଇ ସେହି

ଆଦିବାସୀମାନଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ରାଜନୈତିକ ମତବାଦର ଅନୁଗାମୀ କରିବାର ଚେଷ୍ଟା କରାଯାଉଛି ଅଥଚ ଅନ୍ୟ ଯଦି କେହି ସେମାନଙ୍କ ମଧ୍ୟରେ ରାଜନୈତିକ ମତବାଦ ପ୍ରଚାର କରିବା ପାଇଁ ହେଉ ବା ସାମାଜିକ ସେବା କରିବା ପାଇଁ ହେଉ ଯଦି ସେ କଂଗ୍ରେସ ନୀତିଭୁକ୍ତ ନ ହୋଇଥାନ୍ତି ତା'ହେଲେ ତାଙ୍କୁ ସେ କାର୍ଯ୍ୟରୁ ବିରତ କରିବା ପାଇଁ ଚେଷ୍ଟା କରାଯାଉଛି ଏବଂ ସେଥିରେ ତାଙ୍କୁ ବାଧା ଦିଆଯାଉଛି । ମୁଁ ଭାବୁଛି ସରକାରୀ ଶାସନ କଳ ଯେଉଁ କଂଗ୍ରେସ ଦଳ ଚଳାଉଛନ୍ତି ସେହି କଂଗ୍ରେସ ଦଳ ପକ୍ଷରେ ଏଇଟା ଠିକ୍ ହୋଇନାହିଁ, ଯଦି ସେମାନେ ଚାହୁଁଥାନ୍ତି ଯେ ଆଦିବାସୀମାନଙ୍କୁ କୌଣସି ରକମ ରାଜନୈତିକ ମତବାଦରେ ପ୍ରଭାବିତ କରିବା ଉଚିତ ନୁହେଁ ଏଇଟା ଯଦି ଆମର ମତ ହେଲା, ତା'ହେଲେ ମୁଁ ଦାବି କରିବି ଏବଂ ଦୃଢ଼ତାର ସହିତ ଦାବି କରିବି ଯେ ସେମାନଙ୍କୁ ଆଦିବାସୀ କଂଗ୍ରେସ ବା କଂଗ୍ରେସ ମତବାଦ ମଧ୍ୟ ଗ୍ରହଣ କରାଇବା ପାଇ ଚେଷ୍ଟା ନ ହେଉ ।

ତା'ପରେ ଆଉ ଯେଉଁସବୁ ଯୁକ୍ତି ଦେଖାଯାଇଛି ସେ ବିଷୟରେ ଅନେକ ହୋଇ ଯାଇଛି । ମୁଁ କେବଳ ଏହି ସବୁ ବିଷୟ ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି ଏବଂ ମୁଁ ଆଶା କରୁଛି ଯେ ସରକାର ଏ ଆଇନଟା ଯାହାର କି ବର୍ତ୍ତମାନ ଅବସ୍ଥାରେ କୌଣସି ରକମର ବିଶେଷ ପ୍ରୟୋଜନୀୟତ ନାହିଁ ସେ ବିଷୟଟା ଉପଲବ୍ଧି କରିବେ । ତେବେ ଯଦି ସରକାର କୌଣସି ମତେ ଏହାକୁ ପାସ୍ କରାଇ ନେବାକୁ ଚାହାନ୍ତି ତା'ହେଲେ ମୁଁ ତାଙ୍କୁ ଅନୁରୋଧ କରିବି ଯେ ଅନ୍ତତଃ ଏହାକୁ ବର୍ଷକ ପାଇଁ କାର୍ଯ୍ୟକାରୀ ନ କରି ଯେତେଦିନ ପର୍ଯ୍ୟନ୍ତ Preventive Detention Act ଚାଲୁ ରହିଛି କେବଳ ସେତିକି ଦିନ ପର୍ଯ୍ୟନ୍ତ ପ୍ରଚଳନ କରିବା ଆବଶ୍ୟକ ଅବଶ୍ୟ ଆମ୍ଭମାନଙ୍କର ଏ ଆଇନଟା ଦିନେ ସୁଦ୍ଧା ରହୁ ଏଇଟା ଆମେ ଚାହୁଁ ନା ଯଦି ସରକାର ନିହାତି କରିବାକୁ ଚାହାନ୍ତି ତାହାହେଲେ ମୁଁ ତାଙ୍କୁ ଅନୁରୋଧ କରିବି, ଏହା କେବଳ ୬ ମାସ ପାଇଁ କରାଯାଉ ଏବଂ ଏହି ଆଇନରେ ଯେଉଁସବୁ କଟକଣାମଳକ ବ୍ୟବସ୍ଥା ରହିଛି ସେ କଟକଣାମୂଳକ ବ୍ୟବସ୍ଥାମାନ ଯେତେଦୂର ସମ୍ଭବ କମ୍ କରି ଦିଆଯିବା ଉଚିତ୍ ବୋଲି ମୁଁ ଭାବୁଛି ।

## ଓଡ଼ିଶା ଉପମନ୍ତ୍ରୀ ବେତନ ବିଲ୍ ,1952

ଆଜିକାଲି ପରି ସେତେବେଳେ ମଧ୍ୟ ରାଜନୈତିକ ଦଳର ସ୍ୱାର୍ଥ ଦୃଷ୍ଟିରୁ ବିଶେଷତଃ ଦଳୀୟ ନେତାମାନଙ୍କର ସନ୍ତୋଷବିଧାନ ପାଇଁ ମନ୍ତ୍ରୀ ତଥା ଉପମନ୍ତ୍ରୀଙ୍କ ସଂଖ୍ୟା ଅହେତୁକ ଭାବରେ ବଢ଼ାଇ ଦିଆଯାଉଥିଲା । ଏହା ଫଳରେ କେବଳ ମନ୍ତ୍ରୀ/ଉପମନ୍ତ୍ରୀମାନଙ୍କ ବେତନ ବାବଦରେ ଯେତିକି ବ୍ୟୟ ଘଟୁଥିଲା, ତାଙ୍କ ପାଇଁ ସହକାରୀ, ଷ୍ଟେନୋ, ପିଅନ, ଗାଡ଼ି ଆଦି ବିଭିନ୍ନ ସୁବିଧା ସୁଯୋଗ ଦେବାରେ ତା'ଠାରୁ ବହୁ ଅଧିକ ବ୍ୟବହାର ବଢୁଥିଲା । ଏହା ରାଜ୍ୟର

ଅର୍ଥନୈତିକ ଅବସ୍ଥା ଦୃଷ୍ଟିରୁ ବିଶେଷ କ୍ଷତିକାରକ ଓ ଅନ୍ୟାୟ ବୋଲି ସାମ୍ପ୍ରତିକ ସ୍ଥିତିରେ ଯେମିତି ବିବେକମାନ ଓ ସଚେତନ ନାଗରିକମାନଙ୍କର ଚିନ୍ତାର ବିଷୟ ହୋଇଛି, ସେତେ-ବେଳେ ( ଏପ୍ରିଲ 2,1952 ) ମଧ୍ୟ ଡଃ ସୂପକାର ପ୍ରବୀଣ ବିରୋଧୀଦଳ ନେତା ଭାବରେ ମର୍ମେ ମର୍ମେ ଅନୁଭବ କରିଛନ୍ତି । ସେ ତେଣୁ ଓଡ଼ିଶାର ଲୋକସଂଖ୍ୟା ଓ ପ୍ରଶାସନିକ ବ୍ୟୟଭାର ଦୃଷ୍ଟିରୁ ଉପମନ୍ତ୍ରୀ ରଖିବା ଅନାବଶ୍ୟକ ବୋଲି ମତଦେଇଛନ୍ତି । ସେ ଆର୍ଥିକ ବ୍ୟୟକୁ ହିସାବ କରି ଯଥାର୍ଥରେ କହିଛନ୍ତି, "ପ୍ରଥମରେ ମୁଁ କହିବି ଯେ ଆମର ଏଠାରେ ଯେଉଁ ଆୟବ୍ୟୟ ହେଉଛି, ସେଥିରେ 1951-52 ହିସାବରୁ ଦେଖାଯାଇଛି ଯେ, ଆମର ଏବର୍ଷ ମଧ୍ୟରେ Total Revenue 10,50 ଲକ୍ଷ ଟଙ୍କା ଏବଂ ଲୋକସଂଖ୍ୟା ଅନୁସାରେ ଯଦି ହିସାବ କରାଯାଏ, ତାହାହେଲେ ଦେଖାଯିବ ଯେ per capita Revenue ଅର୍ଥାତ୍ ପ୍ରତି ଜଣ ପିଛା ହିସାବ କଲେ 7'8 ଟଙ୍କା ଖର୍ଚ୍ଚ ହେଉଛି । ତହିଁରୁ କେତେକ ଉନ୍ନତିକର ଯୋଜନା ଅର୍ଥାତ୍ ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦି ବିଷୟରେ ଜଣପିଛା 2'2 ଟଙ୍କା ଖର୍ଚ୍ଚ ହେଉଛି । ଅଥଚ୍ ଅନ୍ୟ ଉନ୍ନତ ଓ ଅନୁନ୍ନତ ରାଜ୍ୟରେ ମଧ୍ୟ per capita ଆୟଦୃଷ୍ଟିରୁ ଏ ଦିଗରେ ଅଧିକ ବ୍ୟୟ ହୋଇଥାଏ । ଆମର ମନ୍ତ୍ରୀମାନଙ୍କ ସଂଖ୍ୟା ଓ ବ୍ୟୟ ଆମରାଜ୍ୟର ଲୋକସଂଖ୍ୟା ଓ ଆୟ ତୁଳନାରେ ଯଥେଷ୍ଟ ଅଧିକ ଅଛି ବୋଲି ଡ଼ଃ ସୂପକାରଙ୍କ ମତ । ତା'ପରେ ଆମର ଶାସନ Top heavy ହୋଇଛି ବୋଲି କହିଛନ୍ତି ଏବଂ ଅହେତୁକ ଶାସନ I. A. S. ଓ O. A. S. ଅଫିସରଙ୍କ ସଂଖ୍ୟା ବୃଦ୍ଧି ଘଟିଛି ବୋଲି ସମାଲୋଚନା କରିଛନ୍ତି । ଖୁବ୍ ଧୈର୍ଯ୍ୟ ଓ ବିଗ୍ମର ସହିତ ଡ଼ଃ ସୂପକାର ଏ ସଂପର୍କରେ କ'ଣ କହିଛନ୍ତି ଦେଖନ୍ତୁ ।

ମୁଁ ଆଉ ଏ ସମ୍ପର୍କରେ ବେଶୀ କିଛି କରିବାକୁ ଯାଉନାହିଁ । କାହିକି ନା ଅର୍ଥ କେମିତି ବରବାଦ ହେଉଛି, ଗରିବ ଚପରାସୀ କିମ୍ବା ଗରିବ ସ୍କୁଲ ମାଷ୍ଟର 20/25 ଟଙ୍କା ଦରମା ପାଉଛି, ତାକୁ କିପରି ଟଙ୍କା ଅଣ୍ଟୁନାହିଁ, ମନ୍ତ୍ରୀମାନେ ଏତେ ଟଙ୍କା ନେଉଛନ୍ତି ଅଥଚ ସ୍କୁଲରେ ପାଠ ପଢ଼ାଇବାକୁ ମାଷ୍ଟର ନାହାନ୍ତି, ସ୍କୁଲ ଘରେ ଗ୍ରୁବି ପଡ଼ୁଛି, ଡ଼ାକ୍ତରଖାନାରେ ଔଷଧ ନାହିଁ ରଙ୍ଗ ପାଣି ମିଳୁଛି, କୌଣସି ଗରିବଲୋକ ଡ଼ାକ୍ତରଖାନାକୁ ଗଲେ ଡ଼ାକ୍ତର କହୁଛନ୍ତି ଏଠାରେ ଔଷଧ ନାହିଁ, ତୁମେ ଅମୁକ ଔଷଧ ଅମୁକ ଦୋକାନରୁ କିଣି କରି ଖାଅ, ଇତ୍ୟାଦି କଥା ଅନେକ ବନ୍ଧୁ କହିଯାଇଛନ୍ତି, ତେଣୁ ମୁଁ ସେ ସବୁ କହିବାରେ ଲାଭ ନାହିଁ । ମୁଁ ଏ ବିଲର ବିରୋଧ କରି ପ୍ରକାଶ୍ୟ ଅଭିଯୋଗ କରୁଛି ଯେ ନିଜ ଦଳକୁ ବଞ୍ଚାଇବା ପାଇଁ, ନିଜ ସ୍ୱାର୍ଥକୁ ବଜାୟ ରଖିବା ପାଇଁ, ନିଜେ ମନ୍ତ୍ରୀ ଗାଦିରେ ବସି ରହିବା ପାଇଁ, ଗରିବ ଜନସାଧାରଣଙ୍କ ସମ୍ପତ୍ତି ଲୁଟ କରାଯାଉଛି । ଯେଉଁମାନେ ଏହିଭଳି ଜଘନ୍ୟ କାର୍ଯ୍ୟ କରିବାକୁ ଯାଉଛନ୍ତି, ତାଙ୍କ ସାମନାରେ ବସିବା ପାଇଁ ମୋତେ ଲଜ୍ଜ୍ୟା ଲାଗୁଛି । କ୍ଷମା କରିବେ ବାଚସ୍ପତି ମହାଶୟ, ମୁଁ ଏ କଥା କହିଲା ବେଳେ ଅନ୍ତର ସହିତ କହୁଛି, କାରଣ ଏମାନେ ସାଧାରଣ ସମ୍ପତ୍ତି ଯେପରି ଭାବରେ ଅପବ୍ୟୟ କରିବାକୁ ଯାଉଛନ୍ତି । ଏଇଟା ପୁରାପୁରି ବନ୍ଦ କରାଯାଇ ପାରନ୍ତା, ଯଦି ମାନ୍ୟବର ପ୍ରଧାନ ମନ୍ତ୍ରୀ ଏହା ଭାବନ୍ତେ, ମୁଁ ଭାବୁଛି ସେ ଏହା

ନିଷ୍ଚୟ କରି ପାରନ୍ତେ । ଏହାଦ୍ୱାରା ପ୍ରଧାନମନ୍ତ୍ରୀଙ୍କର କି ଲାଭ ହେବ । କାରଣ ଅନ୍ୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ ଯେତେ ମଥା ଖେଳାଉଛନ୍ତି, ସେତିକି ମଥା ସେ ଯଦି ଖେଳାନ୍ତେ ଗରିବ ଜନସାଧାରଣଙ୍କର ଉପକାର ପାଇଁ, ତାହାହେଲେ ବହୁତ କାମ କରି ପାରନ୍ତେ । ଲୋକେ ତାଙ୍କୁ ପସନ୍ଦ କରନ୍ତେ ଓ ସେ ଲୋକଙ୍କ ଘୃଣାର ପାତ୍ର ହୋଇ ନ ଥାନ୍ତେ । ସେ ଆଜି ଯେଉଁ ବିଲ ଆଗତ କରିଛନ୍ତି ଏହାର ଉଦ୍ଦେଶ୍ୟ legalised looting ବା ଆଇନ ସମ୍ମତ ଲୁଟି କରିବା ପାଇଁ ଏ ବିଲ ଯାହା ଫଳରେ ସେ ଏପରି ନିନ୍ଦାର ପାତ୍ର ହୋଇଅଛନ୍ତି । ସେଥି ସକାଶେ ମୁଁ ଏ ବିଲର ପୁରାପୁରି ବିରୋଧ କରୁଛି ।

Shri SHRADHAKAR SUPAKAR: ମାନ୍ୟବର ବାଚସ୍ପତି ମହାଶୟ, ଏ ଯେଉଁ Deputy Ministers, Salary Bill ଆସିଛି ତାକୁ ମୁଁ ବିରୋଧ କରୁଛି ଏବଂ ବିରୋଧ କରିବାର ପ୍ରଧାନ କାରଣ ହେଉଛି, ବର୍ତ୍ତମାନ ପରିସ୍ଥିତିରେ ଆମର ଉପମନ୍ତ୍ରୀ ରଖିବାର ଆଦୌ ଦରକାର ନାହିଁ ବୋଲି । ଯେଉଁ 7 ଜଣ ଉପମନ୍ତ୍ରୀ ନିଯୁକ୍ତ ହୋଇଛନ୍ତି, ସେମାନଙ୍କ ଉପରେ ମୋର ବ୍ୟକ୍ତିଗତ କୌଣସି ଆକ୍ଷେପ ନାହିଁ । ବରଂ ସେମାନଙ୍କ ପ୍ରତି ମୋର regard ଅଛି । କିନ୍ତୁ ବ୍ୟକ୍ତିଗତ କଥା ଛାଡ଼ିଦେଇ ଯଦି ନୀତି ଦୃଷ୍ଟିରୁ ବିଚାର କରିବା ତା'ହେଲେ ଆମେ ଦେଖି-ବାକୁ ପାଇବା ଯେ, ଓଡ଼ିଶାର ଯେଉଁ ପରିସ୍ଥିତି ବର୍ତ୍ତମାନ ଅଛି, ସେପରି ଅବସ୍ଥାରେ ଉପ ମନ୍ତ୍ରୀ ରହିବା ଉଚିତ ନୁହେଁ । ଏହି ଦୃଷ୍ଟିରୁ ବିଚାର କରିବାକୁ ଗଲେ ବର୍ତ୍ତମାନ ଦେଖିବାକୁ ପାଇବା ଯେ, ଆମର ଲୋକସଂଖ୍ୟା ଦୃଷ୍ଟିରୁ ଯାହା ଆୟ ବ୍ୟୟ ହେଉଛି ସେଥିରେ ଆମର ଏତେ ଉପମନ୍ତ୍ରୀ ଦରକାର ନାହିଁ । ଏହା ସଙ୍ଗେ ସଙ୍ଗେ ଯଦି ଆମେ ଓଡ଼ିଶାର ଅବସ୍ଥାକୁ ଭାରତର ଅନ୍ୟାନ୍ୟ ରାଜ୍ୟମାନଙ୍କ ଅବସ୍ଥା ସହିତ ତୁଳନା କରୁ, ତା'ହେଲେ ମଧ୍ୟ ଦେଖିବାକୁ ପାଇବା ଯେ ଅନ୍ୟାନ୍ୟ ରାଜ୍ୟମାନଙ୍କରେ ଯେପରି ଭାବରେ ପରିଚାଳନା ହେଉଛି, ଅନ୍ୟାନ୍ୟ ପ୍ରଦେଶ ମାନଙ୍କରେ ଯେଉଁ ସଂଖ୍ୟାରେ ମନ୍ତ୍ରୀ, ଉପମନ୍ତ୍ରୀ ନିଯୁକ୍ତ ହୋଇଛନ୍ତି ଏବଂ ସେହି ପ୍ରଦେଶମାନଙ୍କରେ ଯେପରି ସମସ୍ୟା ଏବଂ ଆର୍ଥିକ ପରିସ୍ଥିତି ଓ ଅନ୍ୟାନ୍ୟ ଅବସ୍ଥା ଅଛି, ସେହି ଅବସ୍ଥାମାନ ଯଦି ତୁଳନା କରାଯାଏ, ତା'ହେଲେ ଆମ୍ଭେମାନେ ଦେଖିବାକୁ ପାଇବା ଯେ, ଆମ ପ୍ରଦେଶର ଯେତିକି ଦରକାର, ଏହା ତାହାଠାରୁ ବହୁତ ବେଶୀ ହୋଇଛି । ପ୍ରଥମରେ ମୁଁ କହିବି ଯେ, ଆମର ଏଠାରେ ଯେଉଁ ଆୟ ବ୍ୟୟ ହେଉଛି, ସେଥିରେ 1951-52 ହିସାବରୁ ଦେଖାଯାଇଛି ଯେ, ଆମର ବର୍ଷ ମଧ୍ୟରେ Total Revenue 10, 50 ଲକ୍ଷ ଟଙ୍କା ଏବଂ ଲୋକସଂଖ୍ୟା ଅନୁସାରେ ଯଦି ହିସାବ କରାଯାଏ ତାହାହେଲେ ଦେଖାଯିବ ଯେ Per capita Revenue ଅର୍ଥାତ୍ ପ୍ରତି ଜଣ ପିଛା 7·2 ଟଙ୍କା ଆଦାୟ କରାଯାଉଛି । ସେହି ତୁଳନାରେ ଖର୍ଚ୍ଚ ହେଉଛି 11·58 ଲକ୍ଷ ଟଙ୍କା; ଅର୍ଥାତ୍ ପ୍ରତି ଜଣପିଛା ହିସାବ କଲେ 7·8 ଟଙ୍କା ହେଉଛି । ତହିଁରୁ କେତେକ ଉନ୍ନତିକର ଯୋଜନା ଅର୍ଥାତ୍ ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦି ବିଷୟରେ ଜଣପିଛା 2·2 ଟଙ୍କା ଖର୍ଚ୍ଚ ହେଉଛି । ଓଡ଼ିଶାର ଅବସ୍ଥା ଯଦି ଅନ୍ୟାନ୍ୟ ପ୍ରଦେଶ ସଙ୍ଗେ ତୁଳନା କରାଯାଏ, ତାହାହେଲେ ଆମ୍ଭେମାନେ ଦେଖିବାକୁ

ପାଇବା ଯେ, ପଶ୍ଚିମ ବଙ୍ଗ, ବିହାର, ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ ପ୍ରଭୃତି ପ୍ରଦେଶମାନଙ୍କରେ ଆମ ପ୍ରଦେଶ ତୁଳନାରେ per capita ବା ଜଣପିଛା Revenue ଏବଂ ଜଣପିଛା ଖର୍ଚ୍ଚ ଖୁବ୍ ବେଶୀ ହେବ । ସେସବୁ ପ୍ରଦେଶମାନଙ୍କ ସହିତ ଏସବୁ ବିଷୟ ତୁଳନା କଲେ ଦେଖିବାକୁ ପାଇବା ଯେ, ଲୋକସଂଖ୍ୟା, ଆର୍ଥିକ ପରିସ୍ଥିତି ଇତ୍ୟାଦି ତୁଳନାରେ ଅନ୍ୟାନ୍ୟ ପ୍ରଦେଶର ମନ୍ତ୍ରୀମାନଙ୍କର ସଂଖ୍ୟା ଆମଠାରୁ 2 ଗୁଣ ବା 3 ଗୁଣ ଜମ୍ । ସେମାନଙ୍କର ଆର୍ଥିକ ସ୍ୱଚ୍ଛଳତା ଓ ଅନ୍ୟାନ୍ୟ ସମସ୍ୟାଗତ ସବୁ ରକମ କଥା ଦେଖି ଯଦି ବିଗ୍ଭର କରୁ, ତା'ହେଲେ ଆମ୍ଭେମାନେ ଦେଖିବାକୁ ପାଇବା ଯେ, ଆମର ବହୁତ ବେଶୀ ସଂଖ୍ୟାରେ ମନ୍ତ୍ରୀମାନେ ଅଛନ୍ତି । ନୂତନ ମନ୍ତ୍ରୀମଣ୍ଡଳ ଯେଉଁ କେତୋଟି ପ୍ରଦେଶରେ ଗଠନ କରାଯାଇଛି, ଯଥା—ମଧ୍ୟପ୍ରଦେଶ, ହାଇଦ୍ରାବାଦ, ରାଜସ୍ଥାନ ଏବଂ ଅନ୍ୟାନ୍ୟ ଯେଉଁ ପ୍ରଦେଶରେ ମନ୍ତ୍ରୀମଣ୍ଡଳମାନ ଗଠନ କରାଯାଇଛି, ସେହି ରାଜ୍ୟମାନଙ୍କର ଆର୍ଥିକ ଅବସ୍ଥା ତୁଳନା କଲେ ମୁଁ ବିଶ୍ୱାସ କରୁଛି, ମାନ୍ୟବର ପ୍ରଧାନମନ୍ତ୍ରୀ ନିଶ୍ଚୟ ସ୍ୱୀକାର କରିବେ ଯେ, ସେହି ତୁଳନାରେ ଆମର ମନ୍ତ୍ରୀ ନିଶ୍ଚୟ ବେଶୀ । ସେ ଦିନ ଯେଉଁ ସମୟରେ ପ୍ରଥମେ ଏ ସମସ୍ୟାର ଆଲୋଚନା ହୋଇଥିଲା, ସେ ଦିନ କଟକ ସହରର ମାନ୍ୟବର ସଭ୍ୟ ଯୁକ୍ତି ଦେଖାଇଥିଲେ ଯେ, ପ୍ରଥମେ ଆମର ସଭ୍ୟ ସଂଖ୍ୟା 60 ଥିଲା, ତା'ପରେ ତାହା ବଢ଼ି 91 ହୋଇଥିଲା ଏବଂ ସେ ସମୟରେ ଆମର ମନ୍ତ୍ରୀ ସଂଖ୍ୟା 8 ହୋଇଥିଲା । ବର୍ତ୍ତମାନ ସେହି ଅନୁସାରେ ଯଦି ତୁଳନା କରାଯାଏ, ତା'ହେଲେ 13 ଜଣ ମନ୍ତ୍ରୀ ହେବାଟା କିଛି ଅଧିକ ହୋଇନାହିଁ । ତା'ପରେ ଯୁକ୍ତି ଦେଖାଯାଇଥିଲା ଯେ, ବର୍ତ୍ତମାନେ ମନ୍ତ୍ରୀମାନଙ୍କୁ ଲୋକମାନଙ୍କର ସଂସର୍ଶରେ ବେଶୀ ଆସିବାକୁ ପଡୁଛି ଏବଂ ସେହି ତୁଳନାରେ ଆମର ମନ୍ତ୍ରୀମାନଙ୍କର ସଂଖ୍ୟା ଯଥେଷ୍ଟ ଏବଂ ବେଶୀ ନୁହେଁ । ଆଜି ମାନ୍ୟବର ସଭ୍ୟ ଶ୍ରୀ କରୁଣାକର ପାଣିଗ୍ରାହୀ ମଧ୍ୟ ଯୁକ୍ତି କରିଛନ୍ତି ଯେ, ଦେଶରେ ଯେଉଁ ପରିମାଣରେ ଅଶାନ୍ତି ଦେଖାଯାଉଛି, ସେ ବିଷୟ ଯଦି ଆମେ ବିଗ୍ଭର କରିବା, ତା'ହେଲେ ଆମର ମନ୍ତ୍ରୀ, ଉପମନ୍ତ୍ରୀମାନଙ୍କର ସଂଖ୍ୟା ବେଶୀ ନୁହେଁ । କିନ୍ତୁ ଏଇଟା କ'ଣ ସତ୍ୟ ଏବଂ ମାନ୍ୟବର ପ୍ରଧାନମନ୍ତ୍ରୀ କ'ଣ ବିଗ୍ଭର କରୁଛନ୍ତି ଯେ, ଅନ୍ୟାନ୍ୟ ପ୍ରଦେଶ ଅବସ୍ଥା ସଙ୍ଗେ ତୁଳନା କଲେ, ସେହି ପ୍ରଦେଶରେ ଯେଉଁ ସଂଖ୍ୟାରେ ସଭ୍ୟ ଅଛନ୍ତି, ସେହି ତୁଳନାରେ ମନ୍ତ୍ରୀ ଅଛନ୍ତି ? ଆପଣ ଜାଣିଥିବେ ଯେ, ପ୍ରାୟ ସବୁ ପ୍ରଦେଶ ବା ରାଜ୍ୟର ଲୋକସଂଖ୍ୟା ଅନୁପାତରେ ସଭ୍ୟ ସଂଖ୍ୟା ସ୍ଥିର କରାଯାଇଛି । ଲକ୍ଷେ ଲୋକରେ ଜଣେ ପ୍ରତିନିଧି । କେବଳ କେତୋଟି ବଡ଼ ବଡ଼ ରାଜ୍ୟରେ ଯଥା—ମାନ୍ଦ୍ରାଜ ଓ ଉତ୍ତର ପ୍ରଦେଶରେ 1 ଲକ୍ଷ 20 ହଜାରରେ ଜଣେ ପ୍ରତିନିଧି ନିର୍ବାଚିତ ହୋଇ ଆସିଛନ୍ତି । ଏଇଟା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଅନ୍ୟାନ୍ୟ ପ୍ରଦେଶମାନଙ୍କରେ ମଧ୍ୟ ସଭ୍ୟ ସଂଖ୍ୟା ବଢ଼ିଛି କିନ୍ତୁ ସେହି ଅନୁପାତରେ ମନ୍ତ୍ରୀମାନଙ୍କର ସଂଖ୍ୟାତ ବଢ଼ିନାହିଁ । ତା'ପରେ ଅର୍ଥନୈତିକ ଅବସ୍ଥାକୁ ବିଶେଷ ଭାବରେ ବିଗ୍ଭର କରିବାକୁ ହେବ ଏବଂ ଏ ବିଷୟରେ ଯେଉଁ ସରକାରୀ ଦଳର ସଭ୍ୟମାନେ

ସମାଲୋଚନା କରିଛନ୍ତି ଯେ, ଅର୍ଥନୈତିକ ପରିସ୍ଥିତି ବିଷୟରେ ଆଲୋଚନା କରିବା ବେଳେ ଭୁଲ ରହି ଯାଉଛି । ସାଲେପୁରର ମାନ୍ୟବର ସଭ୍ୟ କହିଲେ ଯେ, ଆମ ପ୍ରଦେଶରେ ଯେଉଁ ଅନୁପାତରେ ଅପବ୍ୟୟ ହେଉଛି, ସେହି ଅନୁପାତରେ ଯଦି ଆମେ ଉପମନ୍ତ୍ରୀ ସଂଖ୍ୟା ବଢାଇ ଦେଉଁ, ତା'ହେଲେ ସେ ଅପବ୍ୟୟ କମିଯିବ ଏବଂ ଆମେ ସେହି ଉପମନ୍ତ୍ରୀଙ୍କ ନିଯୁକ୍ତି ବିଷୟରେ ଯେଉଁ ଅଧିକା ଖର୍ଚ୍ଚ କରିବୁ, ସେତିକି ପରିମାଣରେ ଅପବ୍ୟୟ ସଙ୍କୋଚ ହୋଇ ପାରିବ । ମୁଁ କିନ୍ତୁ ଭାବେ, ଏଇଟା ଠିକ୍ ଓଲଟା ଯୁକ୍ତି । ବିଗତ ଅଭିଜ୍ଞତାରୁ ଜଣା ପଡ଼ୁଛି ଯେ, ମନ୍ତ୍ରୀମାନଙ୍କର ସଂଖ୍ୟା ବା ଉପମନ୍ତ୍ରୀମାନଙ୍କର ସଂଖ୍ୟା ବଢାଇ ଦେଲେ ଯେ ଅପବ୍ୟୟ କମିଯିବ, ଏଇଟା ଠିକ୍ ନୁହେଁ । ବରଂ ମନ୍ତ୍ରୀ ମାନଙ୍କର ସଂଖ୍ୟା ବୃଦ୍ଧିରେ ଦଳଗତ ଅଶାନ୍ତି ବଢିବ ଏବଂ ଯେଉଁମାନେ ଭାବୁଛନ୍ତି, ସେମାନେ ମନ୍ତ୍ରୀ ହୋଇ ପାରନ୍ତେ କିନ୍ତୁ ସେମାନଙ୍କ ବିଷୟରେ ବିଚାର କରାଗଲା ନାହିଁ, ସେମାନଙ୍କ ମନରେ ଏହି ମନ୍ତ୍ରୀ ସଂଖ୍ୟା ବୃଦ୍ଧିରେ ବେଶୀ ଅସନ୍ତୋଷ ହେଉଛି ବୋଲି ମୁଁ ସ୍ପଷ୍ଟ ଅନୁଭବ କରୁଛି । ଯଦି କେହି ଭାବୁଥାନ୍ତି ଯେ, ମନ୍ତ୍ରୀ ସଂଖ୍ୟା 13 ହେଲେ ବି ଏହି ଅଶାନ୍ତି ଦୂର ହେବନାହିଁ, ତେବେ ସେ କ'ଣ ଭାବୁଛନ୍ତି ଯେ, 73 ଜଣ ମନ୍ତ୍ରୀ କରିଦେଲେ ଅଶାନ୍ତି ଦୂରୀଭୂତ ହେବ ? ତା'ପରେ ଦେଶରେ ମନ୍ତ୍ରୀ ସଂଖ୍ୟା ବୃଦ୍ଧି ହେବା ଫଳରେ ଅପବ୍ୟୟ କମିଯିବ, ଏକଥା ମୁଁ ବିଶ୍ୱାସ କରୁନାହିଁ । ତା'ପରେ ଏସବୁ ଯୁକ୍ତି ଛାଡ଼ି ଦେଲେ ମଧ୍ୟ ଆମର ବରାବର ଯୁକ୍ତି ହୋଇ ଆସୁଛି ଯେ, ଆମର ଯେଉ ଶାସନ ଚାଲିଛି, ସେଟା ଅତି top heavy ହୋଇ ଚାଲିଛି । ଆମର ଯେଉଁ ପରିମାଣରେ I. A. S. ଅଫିସର ଅଛନ୍ତି, Secretary, Deputy Secretary, Under-Secretary ପ୍ରଭୃତି ଅଛନ୍ତି, ସେଟା ଆମ ପ୍ରଦେଶର ପ୍ରୟୋଜନୀୟତା ତୁଳନାରେ ବହୁତ ବେଶୀ । ଏ ବିଷୟରେ ସରକାରଙ୍କ ପକ୍ଷରୁ ମଧ୍ୟ ଅନେକ ଥର ଆପତ୍ତି କରାଯାଇଛି । ବର୍ତ୍ତମାନ ଯୁକ୍ତି କରାଯାଉଛି ଯେ, ଯଦି ମନ୍ତ୍ରୀ ସଂଖ୍ୟା ବଢାଇ ଦିଆଯାଏ, ତା'ହେଲେ ଆମର ଯେଉଁ ଦକ୍ଷତା, ସେଇଟା ବୃଦ୍ଧି ପାଇବ । ଏଇ ଯେଉଁ ବିରୁଦ୍ଧ ଯୁକ୍ତି, ଏଥିରେ ମଧ୍ୟ କୌଣସି ଯଥାର୍ଥତା ନାହିଁ । ତା'ପରେ କାହିଁକି ଏ ମନ୍ତ୍ରୀମାନଙ୍କୁ ନିଯୁକ୍ତ କରାଯାଇଛି, ସେ ବିଷୟରେ ଟିକିଏ ବିଶ୍ଳେଷଣ କରି ଦେଖାଯାଉ । Billର Statement of Objects and Reasons ରେ କୁହାଯାଇଛି "To help the Ministers" ଅର୍ଥାତ୍ ମନ୍ତ୍ରୀମାନଙ୍କୁ ସାହାଯ୍ୟ କରିବା ପାଇଁ ଏ ଉପମନ୍ତ୍ରୀମାନଙ୍କୁ ନିଯୁକ୍ତ କରାଯାଉଛି । ତେବେ ଏହାର ଅର୍ଥ ଦୁଇ ପ୍ରକାରର ହୋଇପାରେ । ଏହାର ଅର୍ଥ ହୋଇପାରେ ଯେ, କୌଣସି ବିଭାଗର ସର୍ବାପେକ୍ଷା ଦାୟିତ୍ୱ ମନ୍ତ୍ରୀଙ୍କ ଉପରେ ରହିବ ଏବଂ ତାଙ୍କ ତଳେ ଜଣେ ଉପମନ୍ତ୍ରୀ ରହିବେ ଯେକି ମଝିରେ ରହିବେ ଏବଂ ମନ୍ତ୍ରୀଙ୍କର ଶେଷ ନିଷ୍ପତ୍ତି ହେବା ପୂର୍ବରୁ କୌଣସି Policy ବା Programme ଉପରେ ବିଚାର କରିବେ । ଯଦି ଏଥିପାଇଁ ଉପମନ୍ତ୍ରୀ ନିଯୁକ୍ତ କରାଯାଇ ଥାଏ ତେବେ ମୁଁ କହିବି ଯେ, ଆମର ସରକାରୀ କଳରେ ଯେଉଁ Red-Tapism ଅଛି, ଯେଉଁଥିପାଇଁ କୌଣସି ବିଷୟରେ ନିଷ୍ପତ୍ତି ଶୀଘ୍ର ହୋଇ ପାରେନା

ସେ ପ୍ରଣାଳୀକୁ ଆହୁରି ବଢାଇ ଦିଆଯିବ ଏବଂ ତାହା ଫଳରେ ବର୍ତ୍ତମାନ ଯେଉଁସବୁ ବିଶେଷ ସମସ୍ୟା ରହିଛି, ସେ ସବୁର ସମାଧାନ ଦିଗରେ ବିଳମ୍ବ ହେବ ।

Shri NILAKANTH DAS: ବାଚସ୍ପତି ମହାଶୟ, Parliamentରେ ଯଦି ମାନ୍ୟବର ସଭ୍ୟମାନେ ଶୋଇ ପଡନ୍ତି, ତାହାହେଲେ ତାଙ୍କ ଚୌକିରେ ଛାରପୋକ ଛାଡ଼ିବା ଦରକାର ପଡ଼େ କି ?

Shri SHRADDHAKAR SUPAKAR: ଦୁଃଖର ବିଷୟ ମୁଁ ଯେଉଁ ଭାଷଣ ଦେଉଛି ବୋଧହୁଏ ତାହା ଶୁଣିବାକୁ interesting ହେଉନାହିଁ । ସେଥିପାଇଁ ସଭ୍ୟମାନଙ୍କର ଶୋଇବାର ପ୍ରବୃତ୍ତି ହେଉଛି । ଯାହାହେଉ ମୁଁ କହିବାକୁ ଯାଉଥିଲି ଯେ-ଯଦି Deputy Minister ମାନଙ୍କର function ହୁଏ ଯେ ସେମାନେ ବିଭାଗୀୟ ମନ୍ତ୍ରୀମାନଙ୍କୁ ସାହାଯ୍ୟ କରିବେ ଏବଂ ତାହାଫଳରେ ଶାସନର ଉନ୍ନତି ହେବ ସେଥିରେ ମୁଁ ଏକମତ ନୁହେଁ । ଯଦି ସରକାରଙ୍କ ଅଭିପ୍ରାୟ ଥାଏ ଯେ, ଏହି ନୂତନ ଯୁବକମାନଙ୍କୁ ଶାସନ ବିଭାଗମାନଙ୍କରେ training ଦେବେ ତାହାହେଲେ ସେ ଅଲଗା କଥା । ଅପର ପକ୍ଷରେ ଯଦି ହିସାବ କରଯାଏ।ହଯ, ଯେଉଁ ଉପମନ୍ତ୍ରୀମାନେ ନିଯୁକ୍ତ ହେବେ, ସେମାନଙ୍କୁ ଗୋଟିଏ ଗୋଟିଏ Departmentର Special charge ଦିଆଯିବ ଏବଂ ସେ ବିଷୟରେ ବିଭାଗୀୟ ମନ୍ତ୍ରୀ କୌଣସି ରକମ ହସ୍ତକ୍ଷେପ ସାଧାରଣତଃ କରିବେ ନାହିଁ, ତାହାହେଲେ ମୁଁ ଭାବୁଛି, ସେମାନଙ୍କୁ ଉପମନ୍ତ୍ରୀ ହିସାବରେ ନିଯୁକ୍ତ କରଗଲା ବୋଲି କହିବା ଠିକ୍ ହେବ ନାହିଁ ବରଂ କହିଲେ ଠିକ୍ ହେବ ଯେ ଆଉ 7 ଜଣ ମନ୍ତ୍ରୀଙ୍କୁ ନିଯୁକ୍ତ କରଗଲା । ଯଦି 13 ଜଣ ମନ୍ତ୍ରୀଙ୍କୁ ନିଯୁକ୍ତ କରଯାଏ, ତାହାହେଲେ ମୁଁ କହିବି 13 ଜଣ ମନ୍ତ୍ରୀଙ୍କ ମଧ୍ୟରୁ 6 ଜଣ ମନ୍ତ୍ରୀ ଓ 7 ଜଣ ଉପମନ୍ତ୍ରୀ କହିବା ଦ୍ୱାରା କେବଳ ଆମେ ସତ୍ୟ ନ କହି ନ୍ୟାୟର ଅପଳାପ କରୁଛୁ । ଯଦି ସେମାନଙ୍କ ଉପରେ କୌଣସି ବିଭାଗର ପୂର୍ଣ୍ଣ ଦାୟିତ୍ୱ ଦିଆଯାଏ ଏବଂ ସେଥିପାଇଁ ତାଙ୍କୁ ପୂରା ଭାବରେ ଭାଗୀ କରଯାଏ, କେବଳ ସେମାନଙ୍କ ଦରମାରେ ପାର୍ଥକ୍ୟ ରଖି ଏହି ସଭା ଗୃହରେ ଏପରି ଛଳନା କରି କୁହାଯାଏ ଯେ କେବଳ 6 ଜଣ ମନ୍ତ୍ରୀଙ୍କୁ ସାହାଯ୍ୟ କରିବା ପାଇଁ 7 ଜଣ ଉପମନ୍ତ୍ରୀ ନିଯୁକ୍ତ ହେଉଛନ୍ତି, ତାହାହେଲେ ଏହା କେବଳ ଧର୍ମକୁ ଆଖିଠାରିବା ପରି ହେଉଛି । ତା'ପରେ ଆଉ ଗୋଟିଏ ଯୁକ୍ତି କରଯାଇଛି ଯେ, ଯଦି ଏହି ପ୍ରକାର ବିଲ୍ ଆଗତ କରଯାଇ ନ ଥାନ୍ତା, ତାହାହେଲେ ସବୁ ମନ୍ତ୍ରୀମାନଙ୍କର ଦରମା ହଜାରେ ଲେଖାଏଁ ହୋଇଥାନ୍ତା ; ସେହି 7 ଜଣ ଉପମନ୍ତ୍ରୀଙ୍କ ଦରମା 250 ଟଙ୍କା ଲେଖାଏଁ କମାଇ ଦେବାପାଇଁ ଏ ବିଲ୍ ଆଗତ କରଯାଇଅଛି । ଏଥିରେ ମାନ୍ୟବର ସଭ୍ୟମାନେ ଖୁସୀ ହେବାର କଥା, କାରଣ ଏହା କରିବା ଦ୍ୱାରା ଆମ ଉପରେ ଯେଉଁ ଅଧିକ କର ଭାର ହୋଇଥାନ୍ତା, ସେ କରଭାରକୁ ସରକାର ଲାଘବ କରିଦେଇଛନ୍ତି । ଏହି ଯୁକ୍ତିରେ ମଧ୍ୟ ସାରବତ୍ତା ଅଛି ବୋଲି ଦୁର୍ଭାଗ୍ୟବଶତଃ ମୁଁ ଉପଲବ୍ଧି କରି ପାରୁନାହିଁ ।

ବିରୋଧୀ ବିରୁଦ୍ଧ ଦଳର ଅନ୍ୟାନ୍ୟ ସଭ୍ୟମାନେ କହିଛନ୍ତି ଯେ ଅନ୍ୟାନ୍ୟ ପ୍ରଦେଶରେ ଯେଉଁଠାରେ ଲୋକସଂଖ୍ୟା ଦୃଷ୍ଟିରୁ ଅର୍ଥାତ୍ ଅବସ୍ଥା ଦୃଷ୍ଟିରୁ ଏବଂ ସେ ସବୁ ପ୍ରଦେଶର ପରିସ୍ଥିତି ଦୃଷ୍ଟିରୁ ମନ୍ତ୍ରୀମାନଙ୍କର ଦାୟିତ୍ୱ ବେଶୀ ଗୁରୁତର, ସେଠାରେ ମଧ୍ୟ ସେମାନେ ଟ. 750·00ଙ୍କା ଲେଖାଏଁ ଦରମା ନେଉଛନ୍ତି । ଏପରି ଅବସ୍ଥାରେ ମନ୍ତ୍ରୀମାନଙ୍କ ଦରମା ଟ. 750·00ଙ୍କା କରିଦେଇ ଖର୍ଚ୍ଚ କମାଇ ଦିଆଯାଇଛି ବୋଲି କହିବାରେ କିଛି ଯୁକ୍ତି ନାହିଁ । ବରଂ ଯଦି ଆମେ ବିଚାର କରୁ ଯେ ଆମ ମନ୍ତ୍ରୀମାନଙ୍କ ଦରମା ବାବଦରେ ପୂର୍ବେ କେତେ ବ୍ୟୟ ହେଉଥିଲା ଏବଂ ବର୍ତ୍ତମାନ କେତେ ବ୍ୟୟ ହେଉଛି, ଯଦି ଆମେ ତୁଳନାତ୍ମକ ଆଲୋଚନା କରୁ, ତାହାହେଲେ ଦେଖିବା ଯେ ପୂର୍ବରୁ ଆମକୁ ଆଠଜଣ ମନ୍ତ୍ରୀଙ୍କ ଦରମା ବାବଦରେ ଟ. 96,000ଙ୍କା ଖର୍ଚ୍ଚ କରିବାକୁ ପଡୁଥିଲା । ବର୍ତ୍ତମାନ ମନ୍ତ୍ରୀ ଓ ଉପମନ୍ତ୍ରୀମାନଙ୍କ ଦରମା ବାବଦରେ ଟ. 1,35,000ଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । ଏଥିରୁ ଦେଖାଯାଉଛି ଯେ, ପୂର୍ବାପେକ୍ଷା ଏହି ବାବଦରେ ଖର୍ଚ୍ଚ ଦେଢଗୁଣ ବଢ଼ିଯାଇଛି । ଏଯେଉଁ ବିଲ୍‌କୁ ଆମେ ସମାଲୋଚନା କରୁଛୁ, ସେଥିରେ କେବଳ ଉପ-ମନ୍ତ୍ରୀମାନଙ୍କ ଦରମା ବିଷୟରେ ଅଛି । ତାର ପାରିପାର୍ଶ୍ୱିକ, ତାର ଆନୁସଙ୍ଗିକ ଯେଉଁ ସବୁ ଖର୍ଚ୍ଚ ଅଛି, ସେ ସବୁ ବିଷୟରେ ଆମେ ସଂପୂର୍ଣ୍ଣ ଅଚେତନ ଅଛୁ ବୋଲି ମୁଁ ଭାବୁଛି । ଅର୍ଥାତ୍ ଉପମନ୍ତ୍ରୀ ନିଯୁକ୍ତି ଫଳରେ ଆମର ଯେଉଁ ଅନ୍ୟାନ୍ୟ ଖର୍ଚ୍ଚ ବଢ଼ିବ, ସେ ବିଷୟରେ ମଧ୍ୟ ଆସେମ୍ବ୍ଳି ବିଚାର କରିବା ଉଚିତ୍ । ପ୍ରଥମେ travelling allowance କଥା ଧରଯାଉ । କୁହାଯାଇଛି ଯେ ସାରା ପ୍ରଦେଶ ମଧ୍ୟରେ ବିଭିନ୍ନ ସ୍ଥାନରେ ଲୋକମାନଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କରେ ଆସିବା ପାଇଁ ଏହି 7 ଜଣ ସଂପର୍କରେ ଉପମନ୍ତ୍ରୀଙ୍କୁ ନିଯୁକ୍ତ କରଯାଇଛି । ଆମ ମନ୍ତ୍ରୀମାନଙ୍କ travelling allowance ରେ ଯାହା ଖର୍ଚ୍ଚ ହୋଇଛି, ଉପମନ୍ତ୍ରୀମାନଙ୍କ ନିଯୁକ୍ତି ଫଳରେ ତାର ଦୁଇଗୁଣ ନିଶ୍ଚୟ ଖର୍ଚ୍ଚ ହେବ । ଏହାଛଡ଼ା ଅନ୍ୟାନ୍ୟ ବାବଦରେ ମଧ୍ୟ ଖର୍ଚ୍ଚ ବଢ଼ିଯିବ, ଯଥା—Steno ଓ Personal Assistant ଇତ୍ୟାଦି ଅନ୍ୟାନ୍ୟ ଆନୁସଙ୍ଗିକ ଖର୍ଚ୍ଚ ମଧ୍ୟ ବଢ଼ିଯିବ । ତାପରେ ଆଉ ଗୋଟିଏ କଥା, ଯାହାକୁ କି ବିଶେଷ ଅନୁଧ୍ୟାନ କରିବାର କଥା, ସେ ହେଉଛି ମନ୍ତ୍ରୀମାନଙ୍କ ଗସ୍ତ ଫଳରେ ଜିଲ୍ଲାମାନଙ୍କରେ ଦୈନନ୍ଦିନ କାର୍ଯ୍ୟରେ ଯେଉଁ dislocation ହେଉଛି ତାହା ଉପମନ୍ତ୍ରୀମାନଙ୍କ ନିଯୁକ୍ତି ଫଳରେ ଆହୁରି ବଢ଼ିଯିବ । ଏ କଥାର ଯଥାର୍ଥତା ମାନ୍ୟବର ମୁଖ୍ୟମନ୍ତ୍ରୀ ଭଲ ଅଧିକେ ଉପଲବ୍ଧି କରିପାରିବେ । ମନ୍ତ୍ରୀମାନଙ୍କ ଗସ୍ତ ସମୟରେ ଜିଲ୍ଲା ମାଜିଷ୍ଟ୍ରେଟ୍, ଆଡ଼ିସନାଲ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କୁ କିପରି ପରିଶ୍ରମ କରିବାକୁ ପଡେ, ତାହା ସେ ଜାଣିଥିବେ । ଆହୁରି ମଧ୍ୟ ଗତ ଆସେମ୍ବ୍ଳିର ଜଣେ ସଭ୍ୟ ହିସାବରେ ଅନେକ ମନ୍ତ୍ରୀଙ୍କର tour programme ଦେଖିଛି । ସେଥିରେ କୌଣସି କୌଣସି ମନ୍ତ୍ରୀ ମଧ୍ୟ mention କରିଥାନ୍ତି ଯେ, ଅମୁକ subdivisionରେ ଅମୁକ ଦିନ ମନ୍ତ୍ରୀ ଉପସ୍ଥିତ ହେବେ ଏବଂ Subdivisional Officer will arrange some meeting at such and such

place and the Minister will address the meeting ଏହା tour programmeରେ ଅନ୍ତର୍ଭୁକ୍ତ ହୋଇଥାଏ । ଯଦି ଆମର କର୍ମଚାରୀମାନେ ଏହିପରି ଭାବରେ ସଭା ସମିତିର ଆୟୋଜନ କରିବେ, ମନ୍ତ୍ରୀମାନଙ୍କର ସୁବିଧା ଅସୁବିଧା ପ୍ରତି ଦୃଷ୍ଟି ରଖିବା କାର୍ଯ୍ୟରେ ଅଧିକ ପରିମାଣରେ ବ୍ୟାପୃତ ହେବେ ତାହାହେଲେ ମୁଁ ଭାବୁଛି, ବର୍ତ୍ତମାନ ଯେପରି ପ୍ରତ୍ୟେକ ଜିଲ୍ଲାରେ ଜଣେ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଜଣେ ଆଡ଼ିସନାଲ ମାଜିଷ୍ଟ୍ରେଟ୍ ଅଛନ୍ତି Deputy Minister ନିଯୁକ୍ତ ହେବା ଫଳରେ ହୁଏତ ପ୍ରତ୍ୟେକ ଜିଲ୍ଲାରେ ଜଣେ ଲେଖାଏଁ ଅଧିକା Deputy Magistrate ନିଯୁକ୍ତ କରିବାର ଦରକାର ପଡ଼ିବ । ଏ କଥା ମୁଁ with all the seriousness that I Command, କହୁଛି । ଏ କଥାଟାକୁ ମୁଁ humourusly କହୁନାହିଁ । ଏ ବିଷୟରେ ମଧ୍ୟ ବିଶେଷ ଭାବରେ ବିଚାର କରିବାର କଥା ତା ପରେ କୁହାଯାଉଛି ଯେ ପୂର୍ବେ ନୌକରସାହି ଶାସନ ଚାଲିଥିଲା । ଲାଟ ସାହେବ, ଜିଲ୍ଲା ମାଜିଷ୍ଟ୍ରେଟ ବିଭାଗୀୟ ସେକ୍ରେଟାରୀ ପ୍ରଭୃତି ସର୍ବେସବା ଥିଲେ । ଲୋକ ପ୍ରତିନିଧିମାନଙ୍କ ହାତରେ କୌଣସି ଅଧିକାର ନ ଥିଲା । କିନ୍ତୁ ବର୍ତ୍ତମାନ ଲୋକପ୍ରିୟ ସରକାର ପ୍ରତିଷ୍ଠିତ ହୋଇଥିବାରୁ, ଲୋକପ୍ରତିନିଧି ସରକାର ପ୍ରତିଷ୍ଠିତ ହୋଇଥିବାରୁ, ଦେଶର ବିଭିନ୍ନ ଅଞ୍ଚଳରୁ ଦାବିମାନ ଆସୁଛି ଯେ ଆମର ଅମୁକ ବିଷୟରେ ସୁବିଧା କର, ଆମର ଅମୁକ ବିଷୟରେ ଅଭାବ ପୂରଣ କର । ଏପରି ଶତ ଶତ, ସହସ୍ର ସହସ୍ର ଦରଖାସ୍ତ ଆସୁଛି । ଲୋକଙ୍କର ଏହିସବୁ ସୁବିଧା, ଅସୁବିଧା, ଅଭାବ ଅଭିଯୋଗ ଠିକ୍ ଠିକ୍ ବିଚାର କରିବା ପାଇଁ ଏହି 6 ଜଣ ମନ୍ତ୍ରୀ ଯଥେଷ୍ଟ ନୁହନ୍ତି, ସେଥିପାଇଁ ମନ୍ତ୍ରୀସଂଖ୍ୟା ବଢାଇବା ଦରକାର । ଏ ବିଷୟରେ ମୁଁ ଏତିକିମାତ୍ର ଅତି ବିନୟର ସହିତ କହିବାକୁ ଚାହେଁ ଯେ, ମନ୍ତ୍ରୀମାନଙ୍କର ଯାହା କର୍ତ୍ତବ୍ୟ ସେ ବିଷୟରେ ମାନ୍ୟବର ପ୍ରଧାନମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନେ ଯଥେଷ୍ଟ ସଚେତନ ଅଛନ୍ତି ଓ ରହିବେ ବୋଲି ମୋର ମନେହୁଏ ନାହିଁ । ଯଦି ମାନ୍ୟବର ମନ୍ତ୍ରୀମାନେ ଏହିସବୁ ଦରଖାସ୍ତ ବିଷୟରେ ବିଶେଷ ଭାବରେ ତାଙ୍କର ଶ୍ରମବିନିଯୋଗ କରନ୍ତି, ତାହାହେଲେ ମୁଁ ଭାବୁଛି ଏହି 6 ଜଣ ମନ୍ତ୍ରୀ ଉକ୍ତ କାର୍ଯ୍ୟ ପାଇଁ ଯଥେଷ୍ଟ ହୁଅନ୍ତେ । ବର୍ତ୍ତମାନ ଯେଉଁସବୁ ସମାଲୋଚନା ହେଉଛି ଯେ କେବଳ ମନ୍ତ୍ରୀମାନେ ଗସ୍ତ ଖର୍ଚ୍ଚ ନେବା ସାର ହେଉଛି, ଲୋକଙ୍କର ବିଶେଷ ଉପକାର ହୋଇ ପାରୁନାହିଁ, ସେଥିରେ ଯଥେଷ୍ଟ ଯଥାର୍ଥତା ଅଛି ବୋଲି ମୋର ମନେ ହେଉଛି । ଅର୍ଥାତ୍ ଯେଉଁସବୁ ଦରଖାସ୍ତ ପଡୁଛି ସେ ଗୁଡ଼ିକର ପ୍ରତିକାର ହେଉନାହିଁ ଏବଂ ଅନ୍ୟ ପକ୍ଷରେ ଯେଉଁ ସ୍ଥାନରେ ହସ୍ତକ୍ଷେପ କରିବା ଉଚିତ ନୁହେଁ, ସେ ଯାଗାରେ ହସ୍ତକ୍ଷେପ କରାଯାଉଛି । ଏ ବିଷୟରେ ମୋର ଜଣେ ମାନ୍ୟବର ବନ୍ଧୁ ଯେ କି ବର୍ତ୍ତମାନ ମନ୍ତ୍ରୀ ଆସନରେ ପ୍ରତିଷ୍ଠିତ ହୋଇଛନ୍ତି, ସେ ଦିନେ କ୍ଷୋଭ ପ୍ରକାଶ କରୁଥିଲେ ଯେ ବିଭାଗୀୟ ସେକ୍ରେଟାରୀ, ଜିଲ୍ଲା ମାଜିଷ୍ଟ୍ରେଟ ପ୍ରଭୃତି ଯେଉଁମାନେ ଆମର executive serviceରେ ଅଛନ୍ତି, ସେମାନଙ୍କ ମଧ୍ୟରେ ବିଶୃଙ୍ଖଳା ଦେଖା ଦେଇଛି । ସେମାନେ ଜନସାଧାରଣଙ୍କୁ କର୍ମଚାରୀ ବୋଲି ଉପଲବ୍ଧି କରୁ ନାହାନ୍ତି । ସେମାନଙ୍କ

ମଧ୍ୟରେ ଏପରି (atmosphere) ବାତାବରଣ ସୃଷ୍ଟି କରିବା ଦରକାର, ଯେଉଁଥିରେ କି ସେମାନେ ତାହା ଉପଲବ୍ଧି କରିପାରିବେ । କିନ୍ତୁ ଆମ ମନ୍ତ୍ରୀମାନେ ତାହା କରଉନାହାନ୍ତି ବୋଲି ସେ ଅଭିଯୋଗ କରିଥିଲେ ।

କିନ୍ତୁ ଏଥିପାଇଁ ଯେ ଆମ୍ଭମାନଙ୍କର ଲୋକପ୍ରିୟ ମନ୍ତ୍ରୀମାନେ ଲୋକପ୍ରିୟ ହେବା ପରିବର୍ତ୍ତେ ଆଂଶିକ ପରିମାଣରେ ଦାୟୀ ନୁହନ୍ତି, ସେ ବିଷୟରେ ସେମାନେ ଗଭୀର ଭବରେ ଚିନ୍ତା କରିବା ଦରକାର ।

Shri RADHANATH RATH : ସଭାପତି ମହାଶୟ, ମାନ୍ୟବର ସଭ୍ୟ କ'ଣ କହୁଛନ୍ତି କିଛି ବୁଝି ହେଉନାହିଁ ।

Shri SHRADHAKAR SUPAKAR : ମୋର କହିବାର ଉଦ୍ଦେଶ୍ୟ ହେଉଛି, ଏ ଯେଉଁ ଅଭିଯୋଗ ହେଉଛି ଯେ ଯେଉଁ ବିଭାଗୀୟ କର୍ମଚାରୀମାନେ ଅଛନ୍ତି, ଏତଦ୍ୱାରା ମୁଁ ଖାଲି I. C. S., I. A. S. କିମ୍ବା Departmentର Secretaryଙ୍କ କଥା କହୁନାହିଁ । ସରକାରଙ୍କର ଯେତେ ସବୁ କର୍ମଚାରୀ ଅଛନ୍ତି, ଜିଲ୍ଲାରେ ହେଉ କି ସବ୍‌ଡ଼ିଭିଜନରେ ହେଉ, ସେମାନଙ୍କ ବିରୁଦ୍ଧରେ ଯେଉଁ ସବୁ ଅଭିଯୋଗ ହେଉଛି ଯେ ସେମାନେ ତାଙ୍କର Position ଠିକ୍ ଭବରେ ରକ୍ଷିପାରୁ ନାହାନ୍ତି, ସେମାନେ ଯଥେଷ୍ଟ ସଚେତନ ନୁହନ୍ତି, ଏପରି ଯେଉଁ ଅଭିଯୋଗ କରଯାଉଛି, ସେଥିପାଇଁ ଆମ୍ଭମାନଙ୍କର ବିଭାଗୀୟ ମନ୍ତ୍ରୀ ଲୋକପ୍ରିୟ ହେବା ଇଚ୍ଛାରେ ସେମାନଙ୍କ କାର୍ଯ୍ୟରେ ଯେଉଁ ହସ୍ତକ୍ଷେପ କରୁଛନ୍ତି, ସେଥିପାଇଁ ଏହି ମନ୍ତ୍ରୀମାନେ ଆଂଶିକ ପରିମାଣରେ ଦାୟୀ କି ନୁହେଁ, ସେ ବିଷୟ ଅନୁଧ୍ୟାନ କରିବା ଉଚିତ । ଯଦି ଉଦାହରଣସ୍ୱରୂପ କୌଣସି ବିଶେଷ ବିଷୟରେ କହେ ତା ହେଲେ ସେଟା ବର୍ତ୍ତମାନ ଶାସନ ଦୃଷ୍ଟିରୁ ଠିକ୍ ହେବନାହିଁ । କେବଳ Hypothetical ହିସାବରେ ମୁଁ ସେଟା କହିବାକୁ ଚାହେଁ । ଯଦି ମନେ କରନ୍ତୁ, କୌଣସି ଜିଲ୍ଲା ଅଫିସର କିମ୍ବା କୌଣସି ସେକ୍ରେଟେରୀଙ୍କ ଅଫିସରେ କୌଣସି ନିମ୍ନ କର୍ମଚାରୀ କୌଣସି Act of indiscipline commit କଲେ ଏପରି ବିଷୟରେ ଯଦି ବିଭାଗୀୟ ମନ୍ତ୍ରୀମାନଙ୍କର ଦୃଷ୍ଟି ଆକର୍ଷଣ କରଯାଏ, ଏବଂ ବିଭାଗୀୟ ମନ୍ତ୍ରୀ ଯଦି ଏଥିରେ ହସ୍ତକ୍ଷେପ କରନ୍ତି, ତା ହେଲେ ସେଟା ବିଭାଗୀୟ କର୍ମଚାରୀ ବା ଉଚ୍ଚତମ କର୍ମଚାରୀମାନଙ୍କ ମନରେ ଅସନ୍ତୋଷ ଆଣିବ ।

The Hon'ble Shri DINABANDHU SAHU : ଯଦି Pension ବିଷୟ ନେଇ ଜଣେ କେହି ମନ୍ତ୍ରୀଙ୍କ ପାଖରେ ଆପତ୍ତି କରେ, ତେବେ ମନ୍ତ୍ରୀ ସେଥିରେ ହସ୍ତକ୍ଷେପ କରିବେ କି ନାହିଁ ?

Shri SHRADHAKAR SUPAKAR : ନିଷ୍ପତ୍ତି କରିବେ, କିନ୍ତୁ କେଉଁ ବିଷୟଗୁଡ଼ିକର ଭାର ଯେଉଁ କର୍ମଚାରୀମାନଙ୍କ ହାତରେ ଦିଆଯାଇଛି, ସେଥିରେ ହସ୍ତକ୍ଷେପ କରିବା ଉଚିତ ନୁହେଁ ଏବଂ ଏହି ବିଷୟରେ ମୁଁ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଅନ୍ୟାନ୍ୟ ଗଣତାନ୍ତ୍ରିକ ଦେଶରେ ଲୋକପ୍ରିୟ ମନ୍ତ୍ରୀମାନଙ୍କର ପ୍ରଧାନ କର୍ତ୍ତବ୍ୟ ହେଉଛି ଏପରି ହସ୍ତକ୍ଷେପ ନ କରିବା । ଅବଶ୍ୟ ଏ ବିଷୟରେ କୌଣସି ଉପଦେଶ ଦେବାକୁ ମୁଁ ଯାଉନାହିଁ, କିନ୍ତୁ ଯାହା authoritative ପୁସ୍ତକମାନଙ୍କରେ ଅଛି ସେ ବିଷୟ ପ୍ରତି ମୁଁ ଅତି ବିନୟ ସହକାରେ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରୁଛି । Principles and Policy ଅର୍ଥାତ୍ ନୀତି ନିର୍ଦ୍ଦେଶ ବିଷୟରେ ଯେଉଁ ବିଶେଷ ଦାୟିତ୍ୱ ଏହି ବ୍ୟବସ୍ଥା ସଭର ପ୍ରତିନିଧି ହିସାବରେ ଆମ୍ଭମାନଙ୍କର ରହିଛି, ତା'ର ଦୈନନ୍ଦିନ କାର୍ଯ୍ୟକାରିତାରେ, ସାଧାରଣଙ୍କର କୌଣସି ଅନୁରୋଧ ଯୋଗୁ ହେଉ, କିମ୍ବା ଅନ୍ୟ କୌଣସି କାରଣରୁ ହେଉ, ଯେପରି ଭାବରେ କି ଏହି ମନ୍ତ୍ରୀମାନଙ୍କଦ୍ୱାରା ହସ୍ତକ୍ଷେପ ହେଉଛି, କୌଣସି ଲୋକ ଯେପରି ତାହା ନ କରେ ସେଥିପ୍ରତି ବିଶେଷ ଭାବରେ ସତର୍କ ରହିବା ଦରକାର । ତା' ପରେ ବର୍ତ୍ତମାନ ମନ୍ତ୍ରୀମାନଙ୍କ ପାଖରେ ଏତେ ବେଶୀ ପରିମାଣରେ ଦରଖାସ୍ତ ପଡୁଛି, ତାହାର ସୀମା ନାହିଁ । ମୁଁ ଭାବୁଛି ମନ୍ତ୍ରୀମାନେ ସେଥିରେ remarks pass କରିଦେବା ଦ୍ୱାରା ବିଭାଗୀୟ କର୍ମକର୍ତ୍ତାମାନଙ୍କ କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରୁଛନ୍ତି । କେତେଗୁଡ଼ିଏ fundamental ବା ନୀତିଗତ ସମସ୍ୟାପ୍ରତି ମାନ୍ୟବର ପ୍ରଧାନମନ୍ତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରିବି । ମୁଁ ଭାବୁଛି, ଆମ ଦେଶର ବର୍ତ୍ତମାନ ପରିସ୍ଥିତି ଯାହା ଆମର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ଆମର ଆଉ ଜଣେ ନୂଆ Deputy Ministerର ପ୍ରୟୋଜନୀୟତା ନାହିଁ ।

The House their adjourned to meet at 11 A. M. on Wednesday, the 3rd April, 1952.

## ଓଡ଼ିଶା ପୌରପାଳିକା (ସଂଶୋଧନ), 1952 ଉପରେ ଭାଷଣ

ଓଡ଼ିଶା ବିଧାନସଭାରେ କେତେଦିନ ଧରି ଉଭୟ ସରକାର ଓ ବିରୋଧୀ ଦଳ ପକ୍ଷରୁ ଓଡ଼ିଶା ମ୍ୟୁନିସିପାଲ ବିଲ୍, 1952 ଉପରେ ଘମାଘୋଟ ଆଲୋଚନା କରଯିବା ପରେ ଡଃ ସୁପକାର 1953 ଏପ୍ରିଲ 10 ତାରିଖରେ କହିଛନ୍ତି ଯେ ଷୋଡ଼ଶ ଶତାବ୍ଦୀରେ ସେକ୍ସପିଅର ଲେଖିଥିଲେ "Frailty thy name is woman" ମାତ୍ର ବିଂଶ ଶତାବ୍ଦୀରେ "Inconsistency thy name is Government କହିବା ଅଧିକ ଯଥାର୍ଥ ହେବ । କାରଣ ଗୋଟିଏ ଆଇନ ଉପରେ ସରକାର ଯେଉଁ ପ୍ରକାର ସଂଶୋଧନ ପ୍ରସ୍ତାବ ଆଣୁଛନ୍ତି "ସେଥିରୁ ଜଣାପଡୁଛି ଯେ ସରକାରଙ୍କ କାର୍ଯ୍ୟକଳାପରେ ଘୋର ଅସାମଂଜସ୍ୟ ରହିଛି" ।

ଧର୍ମଶାଳାସବୁ ପାଣି ଓ ଆଲୋକ ଟିକସ ଦେବାରୁ ଅବ୍ୟାହତି ପାଇବେ ବୋଲି ଆଇନ ଥିଲା, ମାତ୍ର ଏଥିରେ ଯାହା ସଂଶୋଧନ ପ୍ରସ୍ତାବ ଆସିଲା, ସେଥିରେ କୁହାଗଲା ଯେ ଏସବୁ ଦାତବ୍ୟ ସଂସ୍ଥା ନ୍ୟାସ ପ୍ରଭୃତି ପୌରପାଳିକାଙ୍କର ସନ୍ତୋଷ ଅନୁସାରେ କାର୍ଯ୍ୟକରୁଥିବେ, ଉଦାହରଣ ସ୍ୱରୂପ ଦୈନଂଦିନ ଜୀବନରେ ସୃଷ୍ଟି ହେଉଥିବା ସମସ୍ୟା ବା ଅଳିଆ, ଅପରିଷ୍କାର ପଦାର୍ଥ ବା ଆବର୍ଜନ ଇତ୍ୟାଦି ସଫା କରିଦେଉଥିବେ। ଓଡ଼ିଶା ନଦୀ ପ୍ରଦୂଷଣ ବିଲ୍ ସଂପର୍କରେ କହି ଜନସାଧାରଣ କିପରି ବିଷାକ୍ତ ଜଳ ପାନ ତଥା ବ୍ୟବହାର କରିବାକୁ ବାଧ୍ୟ ହେଉଛନ୍ତି। ଡଃ ସୂପକାର ତାହା ଗ୍ରୁଝଇ-ଛନ୍ତି ଆଇନ କରି ଜନସାଧାରଣଙ୍କୁ ରକ୍ଷା କରିବା ବା ସୁବିଧା ଦେବା ପରିବର୍ତ୍ତେ ସରକାର ବିଭିନ୍ନ ଆପଦ ଓ ଅସୁବିଧାର ଶିକାର କରୁଛନ୍ତି। ସେ ଏହି ପ୍ରସଂଗରେ ମନୁଷ୍ୟର ସ୍ୱାସ୍ଥ୍ୟକୁ ସଂପୂର୍ଣ୍ଣ ରୂପେ ନଷ୍ଟ କରି ଯନ୍ତ୍ରଦେବତାର ପୂଜା କରି ମନୁଷ୍ୟକୁ ହତାଦର କରାଯାଉଛି।

ଡଃ ସୂପକାର ଜନସାଧାରଣଙ୍କ ମଙ୍ଗଳ ଦୃଷ୍ଟିରୁ ସରକାରଙ୍କୁ କଠୋର ସମାଲୋଚନା କରିବାରେ ପଶ୍ଚାତ୍‌ପଦ ହୋଇନାହାନ୍ତି। ବିଭିନ୍ନ ପୁସ୍ତକ ଓ ସାହିତ୍ୟଶାସ୍ତ୍ରରୁ ଉଦାହରଣ ଦେଇ ସେ ନିଜର ବକ୍ତବ୍ୟକୁ ସତ୍ୟ ଓ ସାର୍ଥକ ପ୍ରମାଣିତ କରିଛନ୍ତି। ନିମ୍ନୋକ୍ତ ଭାଷଣରୁ ଏହି ଉକ୍ତିର ଯଥାର୍ଥ ପ୍ରତିପାଦିତ ହେବ।

The SPEAKER: It is now time for the hon'ble member to stop.

Shri SHRADHAKAR SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏ ବିଷୟରେ ଯେଉଁ ସବୁ ଆଲୋଚନା ହେଲା ଏବଂ ସରକାରୀ ଓ ବିରୋଧୀ ପକ୍ଷରୁ କେଉଁ ସଂଶୋଧନ ପ୍ରସ୍ତାବ ଆଗତ ହେଲା ସେଥିରେ ଗୋଟିଏ କଥା ମୋର ମନେ ପଡୁଛି ଯେ Shakespeare ବୋଧହୁଏ ଷୋଡ଼ଶ ଶତାବ୍ଦୀରେ କହିଥିଲେ "Frailty thy name is woman" ଯଦି Shakespeare ବିଂଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥାନ୍ତେ ତାହା-ହେଲେ ବୋଧହୁଏ ସେ କହୁଥାନ୍ତେ "Inconsistency, thy name is Government" କାରଣ ସରକାରଙ୍କ ପକ୍ଷରୁ ଯେଉଁପ୍ରକାର ସଂଶୋଧନ ପ୍ରସ୍ତାବ ଆଗତ ହେଲା ଏବଂ ମାନ୍ୟବର ଉପମନ୍ତ୍ରୀ ଯେଉଁ ସଂଶୋଧନ ପ୍ରସ୍ତାବ ବିଶେଷ ଜୋର ସହିତ ଆଗତକଲେ ସେଥିରୁ ଜଣାପଡୁଛି ଯେ ସରକାରଙ୍କ କାର୍ଯ୍ୟକଳାପରେ ଘୋର ଅସାମଞ୍ଜସ୍ୟ ରହିଛି। ସେ ଯେଉଁ ସମୟରେ ଏ ପ୍ରସ୍ତାବ ଆଗତ କଲେ ସେହି ସମୟରେ ଅନ୍ୟ ସଭ୍ୟମାନଙ୍କର ସଂଶୋଧନ ପ୍ରସ୍ତାବର ଉତ୍ତରଦେଲେ ଏବଂ ନିଜର ସଂଶୋଧନ ପ୍ରସ୍ତାବ ଆଗତ କଲେ। ସେଥିପାଇଁ ତାଙ୍କର ସଂଶୋଧନ ପ୍ରସ୍ତାବ ବିଷୟରେ ଆଲୋଚନା କରିବାର ସୁଯୋଗ ମୋତେ ମିଳି ନ ଥିଲା। କାରଣ Minister in-charge has the last word. ସେଥିପାଇଁ ସେ ସମୟରେ ଯେଉଁ ସୁଯୋଗ ମୁଁ ପାଇପାରିଲି ନାହିଁ ସେ ସୁଯୋଗ ସଂକ୍ଷିପ୍ତ ଭାବରେ ବର୍ତ୍ତମାନ ନେବାକୁ ଚାହୁଁଛି। ସେ

ଯେଉଁ ସମୟରେ ସଂଶୋଧନ ପ୍ରସ୍ତାବ ଆଗତ କଲେ ସେ ସମୟରେ ଆପତ୍ତି ହୋଇଥିଲା ଯେ ଏହିପରି ଭାବରେ ପ୍ରସ୍ତାବଟି ଆଗତ କଲେ ଏହିସବୁ ଅସୁବିଧା ଉଠୁଛି । He has had the last word. ତାଙ୍କର ଏହି ସଂଶୋଧନ ଉପରେ ଆଲୋଚନା କରିବାର ସୁଯୋଗ ମିଳିନାହିଁ । ଯାହାହେଉ ସେ ବିଷୟରେ କେତେକ କଥା ମୁଁ ବର୍ତ୍ତମାନ କହିବାକୁ ଯାଉଛି । ଆପଣ ଦେଖିବେ ଏ ଯେଉଁ exemption clause ଦିଆଯାଉଛି ଏଥିରେ Clause 8 ରେ ଅଛି "Dharmasalas may be exempted from water and lighting taxes" Clause 10 ରେ ଅଛି, "Dharmasalas may be exempted from the tax" କିନ୍ତୁ ମାନ୍ୟବର ଉପମନ୍ତ୍ରୀ Clause 9 ବିଷୟରେ ଯାହା ଦେଇଛନ୍ତି ସେଥିରେ "shall" ଅଛି । ପୂର୍ବରେ ଏ ଆଇନର ବିଧାନ କିପରି ଥିଲା Select Committee ତାହାର କିପରି ସଂଶୋଧନ କରିଛନ୍ତି ଏବଂ ବିଭାଗୀୟ ଉପମନ୍ତ୍ରୀ ସେ ସଂଶୋଧନର କିପରି ସଂଶୋଧନ କରିଛନ୍ତି ସେଗୁଡ଼ିକ ଦେଖିଲେ ଆପଣ ବୁଝିପାରିବେ ଯେ ବାସ୍ତବିକ ଆମର ଏହି ବ୍ୟବସ୍ଥା ସଭରେ ଯେଉଁ ସବୁ ସଂଶୋଧନ ଗୃହୀତ ହେଉଛି ଏବଂ ଯେଉଁ ସବୁ ସଂଶୋଧନ ପ୍ରତ୍ୟାଖ୍ୟାତ ହେଉଛି ସେଥିରେ ଯୁକ୍ତିର ମୂଲ୍ୟ ଆଦୌ ନାହିଁ, ସଂଖ୍ୟାର ମୂଲ୍ୟ ଅଛି । ଯୁକ୍ତିଯୁକ୍ତ କୌଣସି ସଂଶୋଧନ ଦେଲେ ସେଇଟା ସଂଖ୍ୟାଦ୍ୱାରା ପ୍ରତ୍ୟାଖ୍ୟାନ ହୋଇଯାଉଛି ଏବଂ ସଂଖ୍ୟାଦ୍ୱାରା ଅତିଶୟ ଅଯୌକ୍ତିକ ପ୍ରସ୍ତାବ ମଧ୍ୟ ହୋଇପାରୁଛି । ଆପଣଙ୍କ ଦୃଷ୍ଟି ମୁଁ 134 ଦଫା clause *(d)* ପ୍ରତି ଆକର୍ଷଣ କରୁଛି-"That the Municipal Council may at a meeting exempt from the payment of the tax any Jail, Reformatory, Asylum, Charitable Hospitals and Dispensaries or Educational Institutions in which an establishment is maintained for the cleaning of latrine, urinals and cesspools therein." ତା' ସଙ୍ଗରେ Select Committee ଦ୍ୱାରା ଆଗତ ହୋଇଥିବା Clause 9ର ସଂଶୋଧନ ପ୍ରସ୍ତାବ ଯଦି ଛାଡ଼ି ଦିଆଯାଏ; ଆଉ ଛାଡ଼ି ଦେଲାପରେ ତାକୁ ପଢାଯାଏ, ତାହାହେଲେ ଆପଣ ଦେଖିବେ ତାହା ଏହିପ୍ରକାର ଆକାର ଧାରଣ କରୁଛି–"The Municipal Councillors at a meeting may exempt from payment of the tax, any Dharmasala, Jail, Reformatory, Asylums, Charitable Hospital and Dispensaries or Educational Institutions in which an establishment is maintained for the cleaning of latrines, urinals and cesspools therein :

Provided that in the case of Dharmasalas the owner has made efficient arrangements, to the satisfaction of Municipal Council, for the daily removal therefrom all rubbish and filth." କିନ୍ତୁ ଏ ଯେଉଁ ସଂଶୋଧନ ପ୍ରସ୍ତାବ ମାନ୍ୟବର ଉପମନ୍ତ୍ରୀ ଦେଇଛନ୍ତି ତାକୁ ପଢ଼ିଲେ ଦେଖିବେ–"That the Municipal Councillors at a meeting shall exempt from

payment of the tax, any Dharmasala, Jail, Reformatory, Asylums, Charitable Hospital and Dispensaries or Educational Institutions in which an establishment is maintained for the cleaning of latrines, urinals and cesspools therein :

Provided that in the case of Dharmasalas the owner has made efficient arrangements, to the satisfaction of municipal Council, for the dialy removal therefrom all rubbish and filth." ଏ ଉଭୟ ଧାରା ତୁଳନା ଯଦି କରିବେ, ତାହାହେଲେ ଦେଖିବାକୁ ପାଇବେ ଯେ ଉଭୟ ମତରେ କେବଳ ଗୋଟିଏ ଶବ୍ଦ ପାର୍ଥକ୍ୟ ରହିଛି । Select Committeeରେ ଆଗତ ହୋଇଥିବା ସଂଶୋଧନ ପ୍ରସ୍ତାବରେ "may" ଏବଂ ମାନ୍ୟବର ବିଭାଗୀୟ ଉପମନ୍ତ୍ରୀ ଯାହାକୁ "shall" କରିଛନ୍ତି ତାଙ୍କର ଅନ୍ୟଗୁଡ଼ିକ କାହିଁକି "may" ହୋଇ ରହିଲା, ସେ ଯୁକ୍ତି ଦେଖାଯାଇନାହିଁ । ବରଂ ଅନ୍ୟ clause ମାନ ଆଲୋଚନା କଲାବେଳେ ତା'ର ସମ୍ପୂର୍ଣ୍ଣ ବିରୋଧାତ୍ମକ ଯୁକ୍ତି ଦେଖାଯାଇଛି । ଯେତେବେଳେ ଏହିସବୁ ଧର୍ମଶାଳା ବା ଯାତ୍ରୀ ଧର୍ମଶାଳାମାନଙ୍କ ବିଷୟରେ ଏହି 'shall' clauseଟି ରହୁ ବୋଲି ଆଲୋଚନା କରାଯାଉଛି ଏବଂ ପ୍ରସ୍ତାବ ଦିଆଯାଇଛି । ସେତେବେଳେ ସରକାରୀ ପକ୍ଷରୁ ମାନ୍ୟବର ବିଭାଗୀୟ ଉପମନ୍ତ୍ରୀ ଏବଂ ସରକାରୀ ସଭ୍ୟମାନେ ଯୁକ୍ତି କରିଛନ୍ତି ଯେ ଏସବୁ ବିଷୟରେ Municipality Councilର ସ୍ୱାଧୀନତା ରହିବା ଦରକାର । ସମଗ୍ର ବିଷୟ ବିବେଚନା କରି ସେମାନେ କେଉଁ ଅନୁଷ୍ଠାନକୁ ଏହିସବୁ ସୁବିଧା ଦେବେ, କାହାକୁ ନ ଦେବେ ବିଚାର କଲାବେଳେ ସେମାନଙ୍କୁ ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ହାତରୁ ପୂର୍ଣ୍ଣ ସ୍ୱାଧୀନତା ଦେବା ଉଚିତ । ସେହି ଯୁକ୍ତି ଯଦି ଏତେ ଯୁକ୍ତିଯୁକ୍ତ ହୁଏ, ଯଦି ଏ ଗୃହ ଦ୍ୱାରା ତାହା ଗୃହୀତ ହୋଇଥାଏ, ତାହାହେଲେ ଏ ଯୁକ୍ତି ଯାହା କରାଯାଇଛି, ଯାହା ବିଭାଗୀୟ ମନ୍ତ୍ରୀ ଦେଇଛନ୍ତି ଏବଂ ଯାହାକୁ ଏହି ଗୃହ ପାସ୍ କରିଛି ଯେ ଏଇ ସ୍ଥାନରେ latrine tax ହେବ ବୋଲି, ସେଠାରେ 'shall' ହେବ, ମୋର କ୍ଷୁଦ୍ର ବୁଦ୍ଧି ଏବଂ ବିବେକରେ ମୁଁ ଏହାର ଯୁକ୍ତିଯୁକ୍ତତା ହୃଦୟଙ୍ଗମ କରିପାରୁନାହିଁ ।

Shri SHRADDHAKAR SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏହି ବିଲ୍‌କୁ ଜନମତ ପାଇଁ ପଠାଇବା ପ୍ରସ୍ତାବ ହୋଇଛି, ଏହି ପ୍ରସ୍ତାବକୁ ମୁଁ ସମର୍ଥନ କରୁଛି ।

ଅଧ୍ୟକ୍ଷ ମହାଶୟ, ଆପଣ ଜାଣିଥିବେ ଆମ ଦେଶର ଆଇନ ଅନୁସାରେ ମଣିଷ ମାରିଲେ ଫାଶୀ ହୁଏ । ଆପଣ ଏ କଥା ମଧ୍ୟ ଉପଲବ୍ଧି କରିଥିବେ ଆମ ଦେଶର ମନ୍ତ୍ରୀମାନେ ବହୁ ଉପକାର କରୁଛନ୍ତି ଓ ସମଗ୍ର ଦେଶର ପ୍ରତିନିଧି ହିସାବରେ ସେମାନେ ଅଛନ୍ତି ।

ଯଦି ଆମେ ଗୋଟିଏ ଆଇନ କରିଦେଉ ଯେ ଜଣେ ମନ୍ତ୍ରୀ ଯଦି ମଣିଷ ମାରନ୍ତି ତାହାହେଲେ ତାଙ୍କୁ କୌଣସି ଆଇନ ଅଦାଲତର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ, ତାଙ୍କୁ ଗିରଫ କରାଯିବ ନାହିଁ । ତାଙ୍କ ବିରୁଦ୍ଧରେ ପୁଲିସ ରିପୋର୍ଟ କରାଯିବ ନାହିଁ, କେବଳ ଦଶଟି ପଇସା ମାତ୍ର ଜରିମାନା ଦେଇ ସେ ନରହତ୍ୟା ଅପରାଧରୁ ମୁକ୍ତି ଲଭିବେ । କେବଳ ଗୋଟିଏ ଟ୍ରେଜେରୀ ଚାଲାନରେ ଦଶଟି ପଇସା ମାତ୍ର ଜମା କରନ୍ତି, ତାହାହେଲେ ସେହି ନରହତ୍ୟା ଦୋଷ ତାଙ୍କର ଶେଷ ହେବ । ଏହି ପ୍ରକାର ଆଇନ ଯଦି କାର୍ଯ୍ୟକାରୀ ହୁଏ ତା'ହେଲେ ଜଣାଯିବ ଯେ ସେ'ଟା ଗୋଟିଏ ଅତି ଉପାଦେୟ ଏବଂ ଅତି ନ୍ୟାୟସଙ୍ଗତ ଆଇନ ହେବ । ଆଜି ବ୍ୟବସ୍ଥାପକ ସଭରେ ଯେଉଁ ଆଇନଟିକୁ ପାସ୍ କରାଯାଉଛି ଏଇଟା ଠିକ୍ ସେଇ ଧରଣର ଏବଂ ଏଥିରେ ନା ଅଛି ନ୍ୟାୟ, ନା ଅଛି ଯୁକ୍ତିଯୁକ୍ତତା, ନା ଅଛି ମାନବିକତା, ଦେଶର ଉପକାର କରିବା ପାଇଁ ଏଇ ବିଲ୍ ଆଗତ କରାଯାଉଛି ବୋଲି ଯାହା କୁହାଯାଉଛି ନା ଅଛି ସେହି ଉଦ୍ଦେଶ୍ୟ ସିଦ୍ଧି । ଏହାର କେବଳ ମାତ୍ର ଗୋଟିଏ ଉଦ୍ଦେଶ୍ୟ ଅଛି ଏବଂ ସେହି ଉଦ୍ଦେଶ୍ୟ ହେଉଛି କୁବେର ପୂଜା ଆପଣ ଦେଖିବେ ଏହି ବିଲକୁ The Orissa River Pollution Prevention Bill ଆଖ୍ୟା ଦିଆଯାଇଛି । କିନ୍ତୁ ମୁଁ ଭାବୁଛି ଏହାକୁ ଯଦି Orissa River Pollution Authorisation Bill ଆଖ୍ୟା ଦିଆଯାଇଥାନ୍ତା ତା'ହେଲେ ଏଟା ଅଧିକ ଯୁକ୍ତିଯୁକ୍ତ ହୋଇଥାନ୍ତା । କାରଣ ଏଥିରେ ଯାହା ଅଛି ସେଇଟା ଏହି ନଦୀ ଜଳ ଦୂଷଣ ନିବାରଣ କରିବା ପରିବର୍ତ୍ତେ ନଦୀ ଜଳକୁ କିପରି ବିଶେଷ ଭାବରେ ଦୂଷିତ କରି ପାରିବ, ଆମର ଶିଳ୍ପପତି, ଆମର ପୁଞ୍ଜିପତିମାନଙ୍କୁ କିପରି ଅବାଧ କ୍ଷମତା ଦିଆଯିବ, ଭଗବାନ ଆମକୁ ଯେଉଁ ପାଣି ଦେଇଛନ୍ତି ସେହି ପାଣିକୁ କିପରି ଆମଠାରୁ ଲୋପ କରି ପାରିବେ, ସେ ବିଷୟରେ ପୂର୍ଣ୍ଣ କ୍ଷମତା ସେମାନଙ୍କୁ ଦେବାପାଇଁ, ସେମାନଙ୍କୁ ପୂର୍ଣ୍ଣ licence ଦେବା ପାଇଁ ଏହି ବିଲକୁ ଉପସ୍ଥାପିତ କରଯାଇଛି, ଏବଂ ଏଥିରେ ଗୋଟିଏ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି, ଏ ବିଲ୍‌ଟି ଏପରି ଗୋଟିଏ ସମୟରେ ଉପସ୍ଥାପିତ କରଯାଇଛି ଯେତେବେଳେ କି'ଏ ସଭର ସଭ୍ୟମାନେ ଦୀର୍ଘ ଦେଢ଼ ମାସ ଧରି ଖାଦ୍ୟର ବିଭିନ୍ନ ସମସ୍ୟା ଆଲୋଚନାରେ ଭାଗନେଇ ଅତ୍ୟନ୍ତ ମାନସିକ କ୍ଳାନ୍ତିର ଚରମ ସୀମାରେ ଉପନୀତ ହୋଇଛନ୍ତି । ହୁଏତ ଏ ବିଷୟରେ କୌଣସି କୌଣସି ଦୀର୍ଘ ଆଲୋଚନା କଲେ ସେମାନେ ଯେପରି ଅନୁଭବ କରିବେ ଏମିତି ଗୋଟାଏ ଛୋଟ ବିଲ୍ ବିଷୟରେ କାହିଁକି ଏତେ ସୁଦୀର୍ଘ ଆଲୋଚନା ହେଉଛି ଏବଂ ଏହା ଏପରି ଗୋଟିଏ ସମୟରେ ଆଗତ କରଯାଇଛି ଯେଉଁ ସମୟରେ କି ଆମକୁ ଦୈନିକ ସାତଘଣ୍ଟା ଏ ବ୍ୟବସ୍ଥାପକ ସଭରେ ବସି କାର୍ଯ୍ୟ କରିବାକୁ ହେଉଛି, ଏପରି ସମୟରେ କାର୍ଯ୍ୟ କରିବାକୁ ହେଉଛି ଯେଉଁ ସମୟରେ କି ବିଷୟ ବସ୍ତୁଟି ଯେତେ ଉପାଦେୟ ହେଉନା କାହିଁକି ତାହା ମନୁଷ୍ୟ ମସ୍ତିଷ୍କର ଗ୍ରହଣ ଶକ୍ତିର ଅତୀତ ହୋଇ ଯାଉଥିବାରୁ ସେମାନଙ୍କର ହୁଏତ ଏହି ବିଲ୍‌ର ଗୁରୁତ୍ୱ ଉପଲବ୍ଧି କରିବାରେ ପୂର୍ଣ୍ଣ ଭାବରେ ସମର୍ଥନ ନ ଥିବ ବା ତାଙ୍କର ପ୍ରବୃତ୍ତି ନ ଥିବ । ସେଥିପାଇଁ ଆପଣଙ୍କୁ ଅନୁରୋଧ

କରିବି ଏପରି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଲ୍ ଏଥିରେ ଆପଣ ଯେତେ ଧୈର୍ଯ୍ୟଯୁକ୍ତ କରନ୍ତୁ ନା କାହିଁକି, ମାନ୍ୟବର ସଭ୍ୟମାନେ ଯେତେ ଧୈର୍ଯ୍ୟଯୁକ୍ତ ହୋଇଥାନ୍ତୁ ନା କାହିଁକି, ଅନ୍ତତଃ ମୋତେ ସୁଯୋଗ ଦେବେ, ଆମର ବ୍ୟବସ୍ଥାପକ ସଭାର Proceedingsରେ recorded ହୋଇ ରହିବ, ସରକାର ଆଜି ଯେଉଁ କାର୍ଯ୍ୟ କରିବାକୁ ଯାଉଛନ୍ତି ତା'ର ଗୋଟିଏ ସୁଦୃଢ଼ ପ୍ରତିବାଦ ଅନ୍ତତଃ ଜଣେ ସଭ୍ୟ କରିଥିଲେ ଏହି ବିଷୟଟା ଅନ୍ତତଃ ଯେପରି ଏହି ବ୍ୟବସ୍ଥାପକ ସଭାର ବିବରଣୀରେ ଲିପିବଦ୍ଧ ହୋଇ ରହେ ସେଥିପାଇଁ ମୁଁ ଅନୁରୋଧ କରୁଛି । ତା'ପରେ ଏ ବିଷୟରେ ସରକାର ଯେପରି ଭାବରେ ଅନ୍ୟାୟ ଏବଂ ଅବିଚାର କରି ଏ ବିଲ୍‌ଟା ଆଗତ କରିଛନ୍ତି ଏବଂ ଏହି ବିଲ୍‌ଟା ଆଗତ କରିବା ଦ୍ୱାରା ଅଦୂରଦର୍ଶିତାର ଚରମ ପରିଚୟ ଦେଇଛନ୍ତି ସେ ବିଷୟ ଧୀରେ ଧୀରେ ପ୍ରକାଶ କରିବି ଏବଂ ପ୍ରମାଣ କରିବାକୁ ଚେଷ୍ଟା କରିବି । କିନ୍ତୁ ମୁଁ ପ୍ରଥମରୁ କହିଦେବାକୁ ଚାହେଁ, ଏହି ବିଲ୍‌ର ଯେଉଁ objects and reasons ଦିଆଯାଇଛି, ତା ସଙ୍ଗେ ସଙ୍ଗେ ଏହି ବିଲ୍‌ରେ ଯେଉଁ ବ୍ୟବସ୍ଥା ଅଛି, ସେଟା ମତେ ଦେଖାଯାଉଛି ଗୋଟିଏ ମହାକାଳ ଫଳପରି । ଅବଶ୍ୟ ମହାକାଳ ଫଳ ମୁଁ ଦେଖି ନାହିଁ । ଶୁଣିଛି ସେଟା ଗୋଟାଏ ଚିତ୍ତାକର୍ଷକ ଫଳ । ବାହାରଟି ତା'ର ଭାରି ସୁନ୍ଦର ଲାଲରଙ୍ଗ, କିନ୍ତୁ ଭିତରେ ତା'ର ଖାଲି ବିଷ । ଲୋକ ଯଦି ତାକୁ ଖାଇ ଦିଏ ତେବେ ତା'ର ମୃତ୍ୟୁ ସୁନିଶ୍ଚିତ । ସେଇପରି ଭାବରେ ଏହି ବିଲ୍‌କୁ ତୁଳନା କରିବି । ମୁଁ ସ୍ପଷ୍ଟ ଭାବରେ କହି ଦେବାକୁ ଚାହେଁ ଏହି ବିଲ୍‌ରେ କେଉଁ Statement of Objects and Reasons ଦିଆଯାଇଛି ଏଇଟା ଯେଉଁ ଉଦ୍ଦେଶ୍ୟରେ କରଯାଇଛି ବୋଲି କୁହାଯାଇଛି । ସେ ଉଦ୍ଦେଶ୍ୟ ସାଧନ କରିପାରିବ ନାହିଁ । ବରଂ ଲୋକ ସାଧାରଣଙ୍କର ଏତେ କ୍ଷତି ବଢ଼ିବ, ଯେଉଁ ଜନତା ପ୍ରତିନିଧିରୂପେ ଆମେ ଏଠାରେ ବସି ଥାଏ ସେଇ ଜନତାର ପ୍ରତି ଯେ ଏତେ ଅତ୍ୟାଚାର ହେଉଛି ସେଟା ହୁଏତ ସରକାର ଉପଲବ୍ଧି କରିସାରିଥିବେ । ଯଦି କୌଣସି ମାନ୍ୟବର ମନ୍ତ୍ରୀ ଏ ବିଷୟରେ ମନ ଧ୍ୟାନ ନ କରି ଥାନ୍ତି, ତା' ହେଲେ ସେଇଟା ଅଦୂର ଭବିଷ୍ୟତରେ କରିବେ । Statement of Objects and Reasonsରେ ଉଲ୍ଲେଖ ହୋଇଛି—"Big Industries requiring plenty of water are generally located on the banks of rivers. In Orissa certain big Industries, such as Orient Paper Mills, the Orissa Textile Mills and Electrical Plants have been set up on river banks and more such industries are likely to be set up in future. One of the consequences of such location of industries on the river banks is that they generally discharge the effluents into the rivers. If steps are not taken to treat the effluents properly before discharging into the river, there is the possibility of these effluents polluting the river water and thereby causing inconvenience to the people living by the side of the rivers and injuring their health.

In order to avoid such inconvenience and injury to public health it has been considered necessary to enact a law to regulate the discharge of effluents into the river water in a manner so as not to pollute the river water to such an extent as may be detrimental to the public health and at the same time the working of mills and factories are not seriously hampered. This Bill seeks to achieve this object." ଏହି ବିଷୟ ଆମର ମାନ୍ୟବର ମୁଖ୍ୟମନ୍ତ୍ରୀ ବ୍ୟାଖ୍ୟା କରିଛନ୍ତି । ମୁଁ ଆଉଥରେ କହିବାକୁ ଗ୍ରହେଁ ଏଇଟା ଯେଉଁ ଜନ-ସାଧାରଣଙ୍କ ଉପକାର ପାଇଁ କରଯାଉଛି ବୋଲି କୁହାଯାଇଛି ସେଟା ଜନସାଧାରଣଙ୍କର ଉପକାର କରିବା ପରିବର୍ତ୍ତେ ଅପକାର କରିବ ଏବଂ ସେମାନଙ୍କୁ ଏହି ବିଷମୟ ଜଳରୁ ରକ୍ଷା କରିବା ପରିବର୍ତ୍ତେ ବେଶୀ ବିଷଯୁକ୍ତ ପାଣି ବ୍ୟବହାର କରିବାକୁ ବାଧ୍ୟ କରିବ । ଏ କଥା କହିବା ନିଷ୍ପ୍ରୟୋଜନ ଯେ ଆମ ଦେଶରେ ପାଣି ଯେପରି ଦରକାର ଅର୍ଥାତ୍ ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶମାନଙ୍କରେ ମନୁଷ୍ୟର ଜୀବନ ଧାରଣରେ ପାଣି ଯେପରି ବ୍ୟବହୃତ ହୁଏ, ସେ ତୁଳନାରେ ଆମ ଦେଶରେ ବହୁତ ବ୍ୟବହୃତ ହୁଏ । ଏଇ ଦୃଷ୍ଟିରୁ ଆମ ଦେଶରେ ଆବହମାନ କାଳରୁ ଏହିସବୁ ନଦୀକୁ "ମା" ବୋଲି କୁହାଯାଇଛି । ସେଥିପାଇଁ ଆଜି ଗଙ୍ଗା, ଗୋଦାବରୀ ନଦୀର ଜଳକୁ ପ୍ରତ୍ୟେକ ବ୍ୟକ୍ତି ଅତି ସମ୍ମାନ ଦେଇଥାନ୍ତି ଏବଂ ସେହି ନଦୀରେ ସ୍ନାନ କରିବା, ସେହି ନଦୀର ଜଳ ପାନ କରିବା, ସ୍ୱର୍ଗ ପ୍ରାପ୍ତିର ଉପାୟ ବୋଲି ଆମେ ଭାବୁଥାଉଁ । କିନ୍ତୁ ସେହି "ମା"କୁ ଯେ ଆମେ ଆଜି ବିଷ ଦେଇ ମାରି ଦେଉଛେ, ସେହି ପାପର ପ୍ରାୟଶ୍ଚିତ ନାହିଁ । ମନୁସଂହିତାରେ ଉଲ୍ଲେଖ ଅଛି ପାଣିକୁ କୌଣସି ପ୍ରକାରେ ଦୂଷିତ କରିବା ଅନୁଚିତ, ସେଥିରେ ଅଛି—

"ନାପ୍‌ସୁ ମୂତ୍ରଂ ପୁରୀଷଂ ବା ଷ୍ଠୀବନଂ ବା ବିନିକ୍ଷିପେତ୍
ଉଚ୍ଛିଷ୍ଟମପି ଗ୍ରମେଧ୍ୟଂ ଲୋହିତଂ ବା ବିଷାଣି ବା ।"

ଅର୍ଥାତ୍ ମୂତ୍ର, ମଳ ଛେପ, ଉଚ୍ଛିଷ୍ଟ ପଦାର୍ଥ, ଦୂଷିତ, ରକ୍ତ ବା ବିଷ ଇତ୍ୟାଦି ଦ୍ୱାରା ପାଣିକୁ ଦୂଷିତ କରିବା ଉଚିତ ନୁହେଁ । ଆପଣ ଦେଖିଥିବେ ବିଶେଷତଃ ଯେଉଁ ଲୋକେ ନଦୀ କୂଳରେ ବାସ କରନ୍ତି, ସେମାନେ ନଦୀରେ ଦାନ୍ତ ଘଷିବା ସମୟରେ ଦାନ୍ତକାଠି ନଦୀ ଗର୍ଭରେ ପକାନ୍ତି ନାହିଁ ଏବଂ ଦାନ୍ତ କାଠି ପକାଇବାଟାକୁ ପାପ ବୋଲି ବିଚାରିଥାନ୍ତି । ଅଭ ଆମ ଭାରତରେ ଏବଂ ଓଡ଼ିଶା ପକ୍ଷରେ ନଦୀର ଜଳ ଯେ ଅତି ପ୍ରୟୋଜନୀୟ ଏ କଥା କେହି ଅସ୍ୱୀକାର କରିପାରିବେ ନାହିଁ । କାରଣ ଆପଣ ଦେଖିବେ ଅନ୍ୟାନ୍ୟ ସଭ୍ୟ ଦେଶରେ ଯେଉଁଠାରେ industry ମାନ କରଯାଉଛି, ଯେଉଁ ଦେଶରେ କଳ କାରଖାନାମାନ କରଯାଉଛି, ସେହି ଦେଶମାନଙ୍କରେ ସରକାର ପ୍ରତ୍ୟେକ ଲୋକକୁ water-supply କରିବାକୁ ବା ପାଣିକୁ ବିଶେଷ ଭାବରେ ବିଶୋଧନ କରିଦେବାର ବ୍ୟବସ୍ଥା କରିଥାନ୍ତି । ଆମ ଦେଶରୁ ସରକାର industrialisation ବା ଶିଳ୍ପର ଉନ୍ନତି ପାଇଁ ଏତେ

ଆଗ୍ରହାନ୍ୱିତ ହେଲେ ସୁଦ୍ଧା ସେମାନଙ୍କର ଏଇ ଯେଉଁ ପ୍ରାଥମିକ କର୍ତ୍ତବ୍ୟ ଯେ ଲୋକମାନଙ୍କୁ ପିଇବା ପାଇଁ ଏବଂ ଗାଧୋଇବା ପାଇଁ ପାଣି ଯୋଗାଇବା ସେ ବିଷୟରେ କି କାର୍ଯ୍ୟାନୁଷ୍ଠାନ କରୁଛନ୍ତି ବୋଲି ମୁଁ ସ୍ୱାସ୍ଥ୍ୟ ବିଭଗର ଉପମନ୍ତ୍ରୀଙ୍କୁ ଯଦି ପଗ୍ଚରେ ତା' ହେଲେ ସେ କହିବେ ଆମ ହାତରେ ପଇସା ନାହିଁ, ଆପଣ ଯାହା କହିଛନ୍ତି ସେସବୁ ହେଉଛି destructive criticism । ଏ କଥା କିନ୍ତୁ ନିଶ୍ଚିତ ଯେ ସରକାର ଗୋଟିଏ ଦିଗରେ ଯଦି ଆମର ଅତ୍ୟାବଶ୍ୟକୀୟ ଜଳକୁ ଦୂଷିତ କରିବାକୁ ଶିଳ୍ପପତି ଏବଂ ପୁଞ୍ଜିପତିମାନଙ୍କୁ ଅନୁମତି ଦେବାକୁ ଏବଂ ସେହି ସୂତ୍ରରେ ଶିଳ୍ପର ଉନ୍ନତି କରବା ପାଇଁ ଏତେ ବ୍ୟସ୍ତ ସେତେବେଳେ ବଡ଼ ବଡ଼ ସହରମାନଙ୍କରେ ସୁଦ୍ଧା protected water-supply ପାଇଁ ଯେତେବେଳେ କୁହାଯାଇଥାଏ, ସେତେବେଳେ ସେମାନେ କାହିଁକି ଆମକୁ ନୂଆ ଦିଲ୍ଲୀର ରାସ୍ତା ଦେଖାଇ ଦିଅନ୍ତି ? ସେମାନେ କହନ୍ତି ଆମ ହାତରେ ପଇସା ନାହିଁ । ଆପଣ ନୂତନ ଦିଲ୍ଲୀର ଶରଣ ଭିକ୍ଷା କରନ୍ତୁ । ଅନ୍ୟ ଦେଶରେ ପାଣି ନ ହେଲେ ମଧ୍ୟ ଲୋକେ ଯେପରି ସୁରା ବା ମଦ ଖାଇ ସ୍ୱାସ୍ଥ୍ୟ ରକ୍ଷାକରି ପାରନ୍ତି ଏବଂ ପାନୀୟର ଅଭାବ ପୂରଣ କରିଥାନ୍ତି, ଆମ ଦେଶରେ କିନ୍ତୁ ଶତକଡ଼ା ୨୨ ଲୋକଙ୍କ ଗାଧୋଇବା ପାଇଁ ଏବଂ ପିଇବା ପାଇଁ ପାଣି ଦରକାର କରନ୍ତି ଏବଂ ବିନା ପାଣିରେ ଜୀବନଧାରଣ କରିବା ତାଙ୍କ ପକ୍ଷରେ ଅସମ୍ଭବ ବୋଲି କହିଲେ ଚଳେ । କିନ୍ତୁ ଏହିସବୁ ପାଣିର ଦୁରୁପୋଯୋଗକରି ଏବଂ ଏହାର indunstrial use କରି ଏହାକୁ କିପରି ଅନ୍ୟାନ୍ୟ ଦେଶମାନଙ୍କରେ ସୁଦ୍ଧା ଲୋପ କରିଦିଆଯାଉଛି ଏବଂ ମନୁଷ୍ୟର ସ୍ୱାସ୍ଥ୍ୟକୁ ସମ୍ପୂର୍ଣ୍ଣରୂପେ ନଷ୍ଟ କରି ଯନ୍ତ୍ର ଦେବତାର ପୂଜା କରି ମନୁଷ୍ୟକୁ ହତାଦାର କରାଯାଉଛି ସେ ବିଷୟରେ ମୁଁ 4th October 1952 ର ହରିଜନ ପତ୍ରିକାରୁ କେତେକ ଅଂଶ ଉଦ୍ଧୃତ କରୁଛି ।

Shri Richard B. Greggs ତାଙ୍କର "Which Way Lies Hope" ପୁସ୍ତକରେ କହିଛନ୍ତି—

"Every gallon of gasoline (petrol) takes 7 to 10 gallons of water in its manufacture. One ton of viscous rayon demands 2,00,000 gallons of water in its process of making. To produce a ton of synthetic rubber takes three times that amount. Each ton of paper made in Modern paper pulp mills requires 50,000 gallons of water in the making. At the beginning of the World War. II, there were about 200 paper mills in the United States, making about 10,000,000 tons or more of finished paper. That means 500,000,000,000 gallons of water. When it comes to the mills, a ton of cotton cloth requires 60,000 gallons of water.. . . . . .

Shri NABAKRUSHNA CHAUDHURI (Chief Minister) : କେଉଁ statement କଥା ପଚାରୁଛନ୍ତି ?

Shri SHRADDHAKAR SUPAKAR : ସେଇଟା ଜୁନ୍ 1950ରେ Department of Industriesରୁ ପ୍ରକାଶିତ ହୋଇଥିଲା, ସେଇଟା ବର୍ତ୍ତମାନ ମୋ ପାଖରେ ନାହିଁ । ଦୁଇ ତିନି ଦିନ ଭିତରେ ମଗାଇ ଦେଇ ପାରିବି ?

Shri GODAVARIS MISRA : ଅଦାଲତ କ'ଣ ଏହାକୁ Contempt of Court ମନେ କଲେ ନାହିଁ ?

Shri SHRADDHAKAR SUPAKAR : ଆମେ ଏଥିପ୍ରତି ଅଦାଲତର ଦୃଷ୍ଟି ଆକର୍ଷଣ କରିଥିଲେ, ତାହାର ପ୍ରତିକାର ହୋଇଥାନ୍ତା; କିନ୍ତୁ ଆମେ ଅନ୍ୟ କାର୍ଯ୍ୟରେ ଏତେ ବ୍ୟସ୍ତଥିଲୁ ଯେ ଏଥିପ୍ରତି ଆମେ ଅଦାଲତର କିମ୍ବା High Courtର ଦୃଷ୍ଟି ଆକର୍ଷଣ କରି ନାହୁଁ । ତା'ପରେ ଆହୁରି ଦୁର୍ଭାଗ୍ୟର କଥା ଯେ ଯେତେବେଳେ ଏ ମକଦ୍ଦମା ବିଚାର ପାଇ ପ୍ରସ୍ତୁତ ହେଲା ଏବଂ ଯେତେବେଳେ ଆମେ କଟକର ତାଙ୍କର ବିଭାଗୀୟ କର୍ମଚାରୀମାନଙ୍କ ସାକ୍ଷୀ ଦେବ ପାଇଁ "ସମନ" କଲୁ ସେତେବେଳେ ଆମର ଲୋକ-ପ୍ରତିନିଧି ସରକାରଙ୍କର ସର୍ବୋଚ୍ଚ କର୍ମଚାରୀମାନେ ସେହି ସାକ୍ଷୀମାନଙ୍କୁ ଗୋଟିଏ conferenceରେ ଡାକିଥିଲେ ଏବଂ ସେଠାରେ ତାଙ୍କ ସହିତ ପରାମର୍ଶ କରିଥିଲେ । ଏହି ବିଷୟରେ ଯେତେବେଳେ ମୁଁ ବ୍ୟବସ୍ଥା ସଭାରେ ପ୍ରଶ୍ନ କଲି ମାନ୍ୟବର ମୁଖ୍ୟମନ୍ତ୍ରୀ ତାକୁ deny କଲେ ଯେ ସେପରି କିଛି କରା ଯାଇନାହିଁ, ଅର୍ଥାତ୍ conference ଡକାଯାଇ ନାହିଁ ବୋଲି କହିଲେ ତା'ପରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ଗୋଟିଏ ଚିଠି ଲେଖିଲି ଯେ ଯେଉଁମାନେ ଆମର ସାକ୍ଷୀମାନଙ୍କୁ ପ୍ରଭାବିତ କରିବା ପାଇଁ ଚେଷ୍ଟା କରିଥିଲେ, ସେମାନେ ଉଚ୍ଚପଦସ୍ଥ ଦାୟିତ୍ୱ ସମ୍ପନ୍ନ ସରକାରୀ କର୍ମଚାରୀ । ଆପଣ ଅନୁଗ୍ରହ କରି ସେ ବିଷୟରେ ପଚାରି ଏହି ସତ୍ୟତାର ଜବାବ ଦେବେ କି ? ତହିଁର କୌଣସି ଉତ୍ତର ଦୁର୍ଭାଗ୍ୟବଶତଃ ମୁଁ ପାଇପାରୁ ନାହିଁ । ସେ ଚିଠି ପାଇ ନାହିଁ ବୋଲି ମାନ୍ୟବର ମନ୍ତ୍ରୀ ବ୍ୟବସ୍ଥା ସଭା ଆଲୋଚନାରେ କହିଥିଲେ । ଠିକ୍ ସେହି ସମୟରେ ତହିଁର ଗୋଟିଏ ନକଲ ମୋ ପାଖରେ ଥିଲା । ତାକୁ ସେତେବେଳେ ବ୍ୟବସ୍ଥାପକ ସଭାର ସେକ୍ରେଟେରୀଙ୍କୁ ଦେଇଥିଲି । ଏହା ଯଦି ସତ୍ୟ ହୁଏ ଯେ ପ୍ରକୃତରେ ସେମାନେ ଆମର ସାକ୍ଷୀମାନଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟାକରି ନାହାଁନ୍ତି, ତାହାହେଲେ ମୁଁ ଆଶ୍ୱସ୍ତ ହେବି ଯେ ଆମର ଦେଶରେ ଯେଉଁ କର୍ମଚାରୀମାନେ ଅଛନ୍ତି ସେମାନେ ସଚ୍ଚା କର୍ମଚାରୀ ଏବଂ ସେମାନଙ୍କ ବିରୁଦ୍ଧରେ ଅନେକ ମିଥ୍ୟା କଳଙ୍କ ଆରୋପ କରାଯାଇଥାଏ । କିନ୍ତୁ ଆଜି ତା 10-4-1953 ସୁଦ୍ଧା ସେ ଚିଠିର ଉତ୍ତର ମୁଁ ପାଇ ନାହିଁ । ତା'ପରେ ଏହି ମକଦ୍ଦମାର ବିଚାର ବର୍ଷେ କାଳ ଚାଲି 1950 ଏପ୍ରିଲ ମାସରେ ଏହି ମକଦ୍ଦମା ଆଗତ କରା ଯାଇଥିଲା । କଟା ଘା'ରେ ଲୁଣ ଦେଲେ କିପରି ଲାଗେ ସେଇଟା ମୁଁ ପ୍ରତ୍ୟକ୍ଷ ଅନୁଭବ କରିଛି । ଅନୁଭବ କରିଛି ଏହି ହିସାବରେ ଯେ ଯେତେବେଳେ

ସକାଳେ କ୍ଷୌର ହୋଇ ଯଦି କୌଣସି ଯାଗାରେ କାଟି ହୋଇ ଯାଇ ଥାଏ, ତାହାହେଲେ ମଧ୍ୟାହ୍ନ ସମୟରେ ବିଶ୍ରାମ ବେଳେ ଗ୍ରୀଷ୍ମ ହେତୁ ଯେଉଁ ଝାଳ ବାହାରେ, ସେହି ଲୁଣିଆ ଝାଳ କଟା ଯାଗାରେ ବାଜିଲେ ଯେପରି ଲାଗେ, ତାହା ସ୍ପଷ୍ଟ ଭାବରେ ଉପଲବ୍ଧି କରିଛି । ସରକାର ଆମ କଟା ଘା'ରେ ଲୁଣ ଦେବା ପାଇଁ ସେହି ସମୟରେ ଗୋଟାଏ ବିରାଟ ପ୍ରୟନ୍ କରିଥିଲେ ଯଦିଓ ଏହି ସମୟରେ ସ୍ପଷ୍ଟ ଭାବରେ ଜାଣିଥିଲେ ଯେ ଏହି ମିଲ୍‌ର ପାଣି ମଇଳା ହୋଇ ବହୁଦୁର ପର୍ଯ୍ୟନ୍ତ ନଦୀର ପାଣି ଖରାପ ହେଉଛି ଏବଂ ଏପରି ଅବସ୍ଥାରେ ମିଲ୍‌କୁ ଆହୁରି ଅଧିକ ବଢ଼ାଇବା ଉଚିତ ନୁହେଁ । କାରଣ ଖରା ଦିନରେ ନଦୀର ପାଣି ଯେତିକି ଅଛି, ତାହା 1853 ସାଲରେ ଯେତିକି ପରିମାଣରେ ପାଣି ଆସୁଥିଲା 1953 ସାଲରେ ମଧ୍ୟ ନଦୀର ପାଣି ଯେତିକି ଆସୁଛି । ଏପରି ଅବସ୍ଥାରେ ଆଉ ଏ ମିଲ୍‌କୁ ଅଧିକ ବଢ଼ାଇବା ଉଚିତ ନୁହେଁ ବୋଲି ସରକାର ଉପଲବ୍ଧି କରିବା ଉଚିତ ଥିଲା । ତଥାପି ଏହି ମକଦ୍ଦମା ଚାଲୁ ହେବାର 8 ମାସ ପରେ ତାଙ୍କର expert ପାଣି ଖରାପ ହେଉ ଥିବାର ପରୀକ୍ଷା କରିବାର ଏକମାସ ପରେ Contempt of Court ପାଇଁ ଉପଯୁକ୍ତ ଥିବା statement ଦେବାର 6 ମାସ ପରେ ଆମର ରାଜ୍ୟପାଳ 1950 ସାଲ ଡିସେମ୍ବର ମାସରେ ଯାଇ ଏହି ମିଲ୍‌ର extention open କଲେ ଯାହା ଫଳରେ କି ପୂର୍ବରୁ ଯେତିକି ପରିମାଣ କାଗଜ ଉତ୍ପନ୍ନ ହେଉଥିଲା ତା'ର ଦୁଇଗୁଣ ବଢ଼ିଗଲା ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀ ଠିକ୍ ତା'ର ପରବର୍ଷ 1951 ବଜେଟ୍ ଭାଷଣରେ ଗର୍ବ କରି କହିଥିଲେ ଯେ ଓଡ଼ିଶାରେ ଆମେ ଶିଳ୍ପର ଉନ୍ନତି କରିବାକୁ ଯାଉଛୁ । ପୂର୍ବରୁ ଆମର 10 ହଜାର ଟନ୍ କାଗଜ ଉତ୍ପନ୍ନ ହେଉଥିଲା । ଆମେ ଗତ ଡିସେମ୍ବର ମାସ ଠାରୁ 20 ହଜାର ଟନ କାଗଜ ଉତ୍ପନ୍ନ କରୁଛୁ । 20 ହଜାର ଟନ୍ କାଗଜ ଉତ୍ପନ୍ନ କରୁଛନ୍ତି ଯେତେବେଳେ ଏହି କଥା ସଭ୍ୟମାନେ ଶୁଣିଲେ, ଓଡ଼ିଶାର ଜନତା ଶୁଣିଲେ ଯେ ଦେଶ ଏତେ ଦୂର ସମୃଦ୍ଧିଶାଳୀ ହୋଇଗଲା ଯେ ଗୋଟିଏ stepରେ double promotion ହେଲା, ସେତେବେଳେ ଓଡ଼ିଶାର ଜନସାଧାରଣ ଖୁସୀ ହୋଇଥିବେ । କିନ୍ତୁ ସମ୍ବଲପୁରର ନିରୀହ ଜନତା ବୁଝିପାରିଲେ ଯେ ନଦୀର ପାଣି ଯେତିକି ମଇଳା ହେଉଥିଲା ଠିକ୍ ତା'ର ଦୁଇଗୁଣ ମଇଳା ଆଜିଠାରୁ ହେବ ଏବଂ ସେଠା ସେମାନେ ପ୍ରତ୍ୟକ୍ଷ ଭାବରେ ଉପଲବ୍ଧି ମଧ୍ୟ କଲେ । ଏହି ବିଷୟରେ ଯେତେବେଳେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ବଜେଟ ଭାଷଣକୁ ସମାଲୋଚନା କରିବାକୁ ଚାହିଁଲି, ସେତେବେଳେ ସରକାର Contempt of Court କହି ଗୋଟିଏ ଅସତ୍ୟ ବିବୃତି ଦେଇଥିଲେ । ସେହି ସରକାର ମୋର ମୁଖ ବନ୍ଦ କରି ଦେଲେ, ସେ କହିଲେ ଗୋଟାଏ ମକଦ୍ଦମା ଚାଲୁ ଅଛି ଏବଂ ଚାଲୁଥିବା ସମୟରେ ଏପରି ମାମଲତ୍‌ବାଦୀ କାମ ଆଇନ ଅଦାଲତକୁ ପ୍ରଭାବିତ କଲା ଭଳିଆ କାମ କରିବା ସଭ୍ୟଙ୍କର କୌଣସି ଅଧିକାର ନାହିଁ । ଆଜି ମଧ୍ୟ ମୁଁ ଯେତେବେଳେ ଏହି ବିଲ୍‌ର ଆଲୋଚନା କରୁଛି, ସେତେବେଳେ ଗୋଟିଏ ନାଗପାଶ ବନ୍ଧା ହୋଇଥିବା ଲୋକ ପରି ଅନୁଭବ କରୁଛି । କାହିଁକି ମୁଁ ଆଜି ମଧ୍ୟ ଉପଲବ୍ଧି କରୁଛି ସେହି ମକଦ୍ଦମା

ଓଡ଼ିଶାର ସର୍ବପ୍ରଧାନ ନ୍ୟାୟାଳୟ Orissa High Courtର ବିଗ୍ରହାଧୀନ ଅଛି ଏବଂ ସେହି ଦୃଷ୍ଟିରୁ ଏ ବିଷୟରେ କୌଣସି କଥା କହିବାର ମୋର ଅଧିକାର ନାହିଁ । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର କୌଣସି କଥା କହିବାର ଅଧିକାର ନାହିଁ, ଏବଂ ଏହି ପ୍ରକାର ବିଲ୍ ଏ ପ୍ରକାର ଅବସ୍ଥାରେ ଆଗତ କରିବାର ସରକାରଙ୍କ କୌଣସି ଅଧିକାର ନାହିଁ । କିନ୍ତୁ କହିବି କି ନ କହିବି, କହିବାକୁ ଲଜ୍ଜ, ନ କହିଲେ ଦେହ ଜଳି ଯାଉଛି, ଯାହା କର୍ତ୍ତବ୍ୟ ସେଇଟା ଯଦି Contempt of Court ହୁଏ, ତାହାହେଲେ କର୍ତ୍ତବ୍ୟ ଖାତିରିରେ ଆଜି ଏହି ସବୁ ଯବନିକା ଉତ୍ତୋଳନ କରିବାକୁ ବାଧ୍ୟ ହେଉଛି, ତା'ପରେ ତା'ର ପରବର୍ତ୍ତୀ ଘଟଣା ହେଉଛି 1st April of 1952, All Fools' Days ସେହି ଦିନ ମୁନସିଫ୍ କୋର୍ଟରେ ଆମର ମକଦ୍ଦମା degree ହେଲା । ଠିକ୍ ତା'ପରେ ସରକାରଙ୍କ ମନରେ ଗୋଟିଏ ବିଶେଷ ଚିନ୍ତା ଜାଗ୍ରତ ହେଲା । ଯେଉଁ ସରକାର ଏହି ବାରବର୍ଷ ମଧ୍ୟରେ ଲୋକ ସାଧାରଣଙ୍କର ଉପକାର ପାଇଁ କୌଣସି କାର୍ଯ୍ୟ କରି ନ ଥିଲେ, ଏବଂ ତାଙ୍କର ଯାହା କର୍ତ୍ତବ୍ୟ ପାଳନ କରି ନ ଥିଲେ, ମିଲ୍ କର୍ତ୍ତୃପକ୍ଷଙ୍କୁ ସରକାର ସୁବିଧା ଦେବା ପାଇଁ ଯଥାସାଧ୍ୟ ଚେଷ୍ଟା କରୁଥିଲେ; ଲୋକଙ୍କର ଅସୁବିଧା ଦୂର କରିବାକୁ କିଛି କରୁ ନ ଥିଲେ ସେହି ସମୟରେ ମୁଁ ଏହି ବ୍ୟବସ୍ଥାପକ ସଭାରେ ଉପସ୍ଥିତ ଥିବାରୁ ଆମର Board of Revenue ସଭ୍ୟ 1-4-1952ରେ ଆମର ଓକିଲ ଶ୍ରୀଯୁକ୍ତ ବୋଧରାମ ଦବେଙ୍କ ସହିତ ପରାମର୍ଶ କରିଥିଲେ ଯେ ଏଇଟା ହେଲେ ଦେଶର ଶିଳ୍ପ ସମୂହରେ ବାଧା ପଡ଼ିବ, ଶାନ୍ତି ରକ୍ଷାରେ ବିଶେଷ ଅସୁବିଧା ହେବ । କିପରି ଭାବରେ ମିଟମାଟ୍ ହୋଇଗଲେ ଭଲ ହୁଅନ୍ତା । ସେଥିରେ ସେ ପୁଣି ମଧ୍ୟସ୍ଥ ଭାବରେ ଅବତୀର୍ଣ୍ଣ ହେଲେ ଏହି ବିଷୟରେ ମୁଁ ଗତ ତା 27-5-1952ରେ ଏହି ବ୍ୟବସ୍ଥାପକ ସଭାରେ ଯେଉଁ ପ୍ରଶ୍ନ ପଚାରିଥିଲି—Orissa Legislative Assembly Proceedings, dated the 27th May 1952, page 1, Question No. 287 ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ସେଥିରେ ଅଛି,—

Will the Government be pleased to state—(*a*) if after the decree against the Orient Paper Mills, Ltd. in Title Suit 118 of 1950 in the Court of the Munsif, Sambalpur, Shri B. Sivaraman, I. C. S., Commissioner, Northern Division, Sambalpur, approached the advocate of the plaintiffs on behalf of the defendants to effect a compromise in the suit regarding the injuction against the mill not to discharge their effleuent into the river IB; and

(*b*) if the answer to (*a*) be in the affirmative, whether the attempt was made at the instance of the Government or privately ?

Answer by Shri Nabakrushna Chaudhuri (Chief Minister): (a) Shri B. Sivaraman, I. C. S., Member, Board of Revenue, contacted Shri Bodhram Dubey, a leading citizen of Sambalpur and Shraddhakar Supakar, a plaintiff to the suit, to find out whether a compromise was possible which will allow working of the company and at the same time not inconvenience the public.

(b) This was done purely in his official capacity as Officer-in-charge of law and order of the Division on his own initiative. ତା'ପରେ ଯେଉଁ Supplementary Questions ହେଲା, ସେଗୁଡ଼ିକ ଟିକିଏ interesting ବୋଲି ଆପଣ ଅନୁଭବ କରିବେ ପ୍ରଶ୍ନ ପଚରାଗଲା—

Whether any instruction was issued to him by the Government ? ଏହାର ଉତ୍ତର ହେଲା—

There was no instruction from the Government to Mr. Sivaraman.

ଓଡ଼ିଶା ଦୁଗ୍ଧ ଯୋଗାଣ ବିଲ, 1952

କୌତୁହଳର ବିଷୟ ଯେ, ଓଡ଼ିଶା ଦୁଗ୍ଧ ଯୋଗାଣ ବିଲ ସତ୍ୟବାଦୀର ସଭ୍ୟ ଶ୍ରୀ ନୀଳକଣ୍ଠ ଦାସଙ୍କ ଦ୍ୱାରା ଆଗତ ହୋଇଛି । "ଏଇଟା ହେଉଛି ଏ ବିଲ୍‌ର ସବୁଠାରୁ ବଡ ଦୋଷ । ଏ ବିଲ୍‌ଟା ଯଦି ଅନ୍ୟ କାହାଦ୍ୱାରା ବିରୋଧୀ ଦଳରୁ ବା କଂଗ୍ରେସ ତରଫରୁ ଦିଆଯାଇଥାନ୍ତା, ତାହେଲେ ମୁଁ ବିଶ୍ୱାସ କରୁଛି ଯେ କଂଗ୍ରେସ ପକ୍ଷ ଏହାର ଉପାଦେୟତା ବୁଝି ପାରିଥାନ୍ତେ" (ଡଃ ସୁପକାର, ଓଡ଼ିଶା ବିଧାନସଭା, ମାର୍ଚ୍ଚ 13, 1953) । ଏହା ଉପରେ ବିଭିନ୍ନ ବିରୋଧୀ ଓ ସରକାରୀ ଦଳର ସଭ୍ୟ ମତାମତ ଦେଇଥିଲେ । Health Inspector ଓ District Health Officerମାନେ ଯେମିତି ନିଜର କର୍ତ୍ତବ୍ୟ ଠିକ୍ ମତେ ଚଳାଉ ନାହାନ୍ତି ଓ ଦୋକାନମାନଙ୍କରେ ଦୂଷିତ ଖାଦ୍ୟ ବିକ୍ରୟ କରାଯାଉଛି, ସେମିତି ଯେଉଁ କର୍ମଚାରୀମାନେ ଏଥିପାଇଁ ରହିବେ, ସେମାନେ କରିବେ ନାହିଁ । ଫଳରେ ଶିଶୁ ଓ ରୋଗୀମାନେ ଦୂଷିତ ଦୁଗ୍ଧ ପାନ କରି ଅଧିକ ପୀଡ଼ିତ ହେବେ । କେତେ ଜଣ ସଭ୍ୟ ଏହି ବିଲ୍ ଆଣିବାରେ ଆନ୍ତରିକତାର ଅଭାବ ରହିଛି ବୋଲି ଅଭିଯୋଗ କରିଛନ୍ତି । ସର୍ଦ୍ଦାର ସୁରେନ୍ଦ୍ର ନାଥ ସାଙ୍କ ପରି ସଭ୍ୟ କେବଳ ଖବର କାଗଜରେ ନାମ ବାହାରିବା ପାଇଁ ଏହି ବିଲ୍ ଆଗତ କରିଛନ୍ତି । ତାର ଉତ୍ତରରେ ଡଃ ସୁପକାର କହିଛନ୍ତି, "ନୀଳକଣ୍ଠ ଦାସଙ୍କ ପରି ଜଣେ ବିଜ୍ଞ ପଣ୍ଡିତ ଲୋକଙ୍କର ନାମ ପ୍ରାୟ ଅନେକଥର ଏ ଦେଶର ଖବର କାଗଜମାନଙ୍କରେ ବାହାରିଥିବ । ତଥାପି ଯଦି ସେ କେବଳ ଖବର କାଗଜମାନଙ୍କରେ ତାଙ୍କର ନାମ ବାହାରିବା ଉଦ୍ଦେଶ୍ୟରେ ଏହି ବିଲ୍ ଆଗତ କରିଥାନ୍ତେ, ମୁଁ

ତାହେଲେ ଭାବୁଛି ଏଇଟା ବେଶ ପକ୍ଷରେ ବଡ ଦୁର୍ଭାଗ୍ୟର କଥା ।" ଏହି ବିଲ୍‌ର ଉପକାରିତା ଉପରେ ସେ ମଧ୍ୟ ସନ୍ଦେହ ପ୍ରକାଶ କରିଛନ୍ତି । ମାତ୍ର ସରକାରୀ ପକ୍ଷରୁ ଏହା ଆଗତ ଓ ସମର୍ଥିତ ହୋଇଥିଲେ, ଏହାର କାର୍ଯ୍ୟକାରିତା ଆଶାନୁରୂପ ହୋଇଥାନ୍ତା ବୋଲି ଆଶା କରିଛନ୍ତି । ତତ୍କାଳୀନ ଅବସ୍ଥାରେ ଖାଣ୍ଟି ଦୁଧର ଅଭାବ ଓ ଟିଣ ଦୁଗ୍ଧର ବ୍ୟବହାରରେ ଅସୁବିଧା ଉପରେ ଆଲୋକପାତ କରିଛନ୍ତି ଏବଂ ତାଙ୍କର ମତାମତକୁ କଂଗ୍ରେସର ଜଣେ ଟାଣୁଆ ସଭ୍ୟ ଶ୍ରୀ ବିଜୟ କୁମାର ପାଣି ମଧ୍ୟ ସମର୍ଥନ କରିଛନ୍ତି ।

Shri SHRADDHAKAR SUPAKAR : ମାନନୀୟ ଅଧ୍ୟକ୍ଷ ମହାଶୟ, ଏ ଯେଉଁ ବିଲ୍ ଆଗତ ହୋଇଛି ଏଥିରେ ଗୋଟିଏ ମାତ୍ର ବଡ ଦୋଷ ମୁଁ ଦେଖିପାରୁଛି । ତାହା ହେଉଛି ଏଇ ବିଲ୍‌ଟି ଅନ୍ୟ କାହାଦ୍ୱାରା ଆଗତ ନ ହୋଇ ସତ୍ୟବାଦୀର ସଦସ୍ୟ ଶ୍ରୀ ନୀଳକଣ୍ଠ ଦାସଙ୍କ ଦ୍ୱାରା ଆଗତ ହୋଇଛି । ଏଇଟା ହେଉଛି ଏ ବିଲ୍‌ର ସବୁଠାରୁ ବଡ ଦୋଷ । ଏ ବିଲ୍‌ଟା ଯଦି ଅନ୍ୟ କାହାଦ୍ୱାରା ବିରୋଧୀ ଦଳରୁ କିମ୍ବା କଂଗ୍ରେସ ତରଫରୁ ଦିଆଯାଇଥାନ୍ତା ତାହାହେଲେ ମୁଁ ବିଶ୍ୱାସ କରୁଛି ଯେ କଂଗ୍ରେସ ପକ୍ଷ ଏହାର ଉପାଦେୟତା ବୁଝିପାରିଥାନ୍ତେ । ଏଇ ବିଲ୍‌ରେ କଣ ଦୋଷ ଅଛି, କାହିଁକି ଏ ବିଲ୍ ଆଗତ ହୋଇ ପାରିବ ନାହିଁ, କି ପାଶ୍ ହୋଇପାରିବ ନାହିଁ, ଆଉ ପାଶ୍ ହେଲା ପରେ କାର୍ଯ୍ୟକାରୀ ହୋଇପାରିବ ନାହିଁ ଏ ବିଷୟରେ କେତେକ ଅତି ଚିତ୍ତାକର୍ଷକ ସମାଲୋଚନା ମୁଁ ଶୁଣିଲି, କିନ୍ତୁ ଏ ଯେଉଁ ସମାଲୋଚନା ହେଲା, ଏଇ ସମାଲୋଚନାର ଅର୍ଥ ମୋର ଦୁର୍ଭାଗ୍ୟ ବଶତଃ ମୁଁ ପୁରାଭାବରେ ଉପଲବ୍ଧି କରିପାରିଲି ନାହିଁ । ଶ୍ରୀ ଉପେନ୍ଦ୍ର ମହାନ୍ତି କହିଲେ ଯେ ଏଇଟା କାହିଁକି ଚା ଦୋକାନ ପାଇଁ ହେଉଛି, ଏଇଟା ସମସ୍ତଙ୍କ ପାଇଁ କାହିଁକି ପ୍ରଯୁଜ୍ୟ ନ ହେବ ? ଘରେ ଯେଉଁମାନେ ଚା ଖାଉଛନ୍ତି, ସେମାନଙ୍କୁ ମନାକରି ଦିଆଯାଉ ଯେ ଯେଉଁମାନେ ଚା ଖାଇବେ ସେମାନେ କେବଳ tinned ଦୁଧ ଖାଇବେ ଏବଂ ଗାଈ ଦୁଧ ରହିବ ପିଲାମାନଙ୍କ ପାଇଁ । କଫି କୋକୋ ଏହା ସାଙ୍ଗରେ ଯଦି ମିଶା ନ ହୋଇଥିବ ସେମାନେ ଖାଇବେ । କେବଳ ପିଲାମାନଙ୍କ ପାଇଁ ଏବଂ ରୋଗୀମାନଙ୍କ ପାଇଁ ଗାଈ, ମଇଁଷି ଦୁଧ ରଖାଯାଉ । ଏହି କଥାଟା ଯେ ଏ ବିଲ୍‌ର କେତେ ଦୂର ବିରୋଧ କରୁଛି, ତାହା ବିଚାର କରିବାର କଥା । ତାହା ସଙ୍ଗେ ସଙ୍ଗେ ଅନ୍ୟ ସଭ୍ୟମାନେ ଆପତ୍ତି କରି କହିଛନ୍ତି ଯେ ଏ ବିଲ୍ କିପରି enforce ହେବ । ସେଇଟା ମୁଁ ଭାବୁଛି ପଣ୍ଡିତ ମହାଶୟଙ୍କ ବିଲ୍‌ର ବିରୁଦ୍ଧ ନୁହେଁ । ଶ୍ରୀ ଉପେନ୍ଦ୍ର ମହାନ୍ତି ଯେଉଁ ଯୁକ୍ତି ଆଗତ କରିଛନ୍ତି ସେହି ଯୁକ୍ତିର ବିରୋଧ କରୁଛି । ବିଶେଷ କରି ଶ୍ରୀ ସୁରେନ୍ଦ୍ର ନାଥ ଦାସ ସେହି ଯୁକ୍ତିରେ ଆପତ୍ତି କରିଛନ୍ତି । ଏଇ କଥା ସତ ଏବଂ ଏ କଥା ସମ୍ଭବ ଯେ ଚା ଦୋକାନରେ ଯଦି ଗାଈ ଦୁଧ ବ୍ୟବହାର କରଯାଉଥିବ, ତାକୁ ନିୟନ୍ତ୍ରଣ କରଯାଇ ପାରିବ କିନ୍ତୁ କୌଣସି ଘରେ କୌଣସି ଲୋକ ଯଦି ଚା ସାଙ୍ଗରେ ଦୁଧ ମିଶାଏ ତାହାହେଲେ ଶ୍ରୀ ନିଶାମଣି ଖୁଣ୍ଟିଆ ଯେପରି କହିଲେ ଯେ ସେହି ଗୃହର ପିଲାମାନଙ୍କୁ C. I. D. ସ୍ୱରୂପ

ନିଯୁକ୍ତ ନ ହେଲେ ତାହା detect କରା ହୋଇ ପାରିବ ନାହିଁ । ତାପରେ ଯେପରି କୁହାଯାଇଛି, ଦୋକାନମାନଙ୍କରୁ ଏହା detect କରିବାକୁ ହେଲେ ପୁଲିସ ସଂଖ୍ୟା ବଢ଼ାଇବାକୁ ହେବ ଏବଂ ସେଥିପାଇଁ ଆମ୍ଭମାନଙ୍କୁ ଅନେକ ଟଙ୍କା ଆହୁରି ପୁଲିସଙ୍କ ପିଛା ଖର୍ଚ୍ଚ କରିବାକୁ ହେବ । ଏହି ଯୁକ୍ତି ମୁଁ ଶୁଣି ଆପ୍ୟାୟିତ ହେଲି । ଆମର କଣ food adulteration ହେଉ ନାହିଁ ? Food products ଏବଂ ଏ ଯେଉଁ vegetable ghee ଅଛି, ଏହାକୁ ଅନ୍ୟାନ୍ୟ gheeରେ ମିଶା ଯାଉଛି, ଯାହା ଫଳରେ କି ଆମର ଖାଦ୍ୟଦ୍ରବ୍ୟ ଦୂଷିତ କରଯାଉଛି । ତାର ପ୍ରତିରୋଧ ପାଇଁ ଯେଉଁ ଆଇନ ଅଛି ସେ ଆଇନ କଣ ପ୍ରଯୁଜ୍ୟ କରିବା ପାଇଁ ପୁଲିସ ଦରକାର ପଡୁଛନ୍ତି ? ସେହି ପ୍ରଶ୍ନର ଉତ୍ତର ମୁଁ ଚାହେଁ । ଅବଶ୍ୟ ଏକଥା ସ୍ୱୀକାର କରିବାକୁ ହେବ ଯେ ଆମ ଦେଶରେ ଯେଉଁ ପରିମାଣରେ ଖାଦ୍ୟ ଜିନିଷକୁ adulterated କରଯାଉଛି ତାହା ଦୂର କରିବା ପାଇଁ ଯେଉଁ ଆୟୋଜନ ଦରକାର ସେଇଟା ନାହିଁ । ଆମର Health Inspector ଅଛନ୍ତି, District Health Officer ଅଛନ୍ତି, ଯେଉଁମାନେ କି କୌଣସି ସ୍ଥାନରେ ଏଇ ପ୍ରକାର ଖରପ ଜିନିଷ ଦୋକାନମାନଙ୍କରେ ତିଆରି କରନ୍ତି, ଗୁଡ଼ିଆ ଦୋକାନରେ ଖରପ ଜିନିଷ ତିଆରି ହୁଏ ବା କୌଣସି ଜାଗାରେ ଖରପ ଜିନିଷ ବିକ୍ରି ହୁଏ, ସେଇଟା detect କରୁଛନ୍ତି । ଏହିମାନଙ୍କ ଦ୍ୱାର ପୂରଭବରେ ଆମେ ହୁଏତ ଯେତେଦୂର ଚାହୁଁଛୁ, ସେହିପରିମାଣରେ ବନ୍ଦ ନ ହୋଇ ଥାଇପାରେ, କିନ୍ତୁ ଏକଥା କଣ ସ୍ୱୀକାର୍ଯ୍ୟ ନୁହେଁ କି ଏହିପରି Food Adulteration Act ଆମ ଦେଶରେ ନ ଥିଲେ ଆମ ସ୍ୱାସ୍ଥ୍ୟର ଯେତେଦୂର ଅବନତି ବା କ୍ଷୀଣ ହୁଅନ୍ତା ତାଠାରୁ କିଛି କମୁଛି ? ଲୋକେ ଲାଭପାଇଁ, ନିଜର ସ୍ୱାର୍ଥ ସାଧନ କରିବା ପାଇଁ ଯେଉଁପରି ଭବରେ ଦେଶର ଜନସାଧାରଣଙ୍କ ସ୍ୱାସ୍ଥ୍ୟପ୍ରତି ଖାତିର ନ କରି ଖାଦ୍ୟ ଜିନିଷକୁ ଯେଉଁ ପ୍ରକାର adulterated କରୁଛନ୍ତି, ଏହି ଆଇନ ଥିବା ଫଳରେ ସେମାନେ ଯେତେଦୂର ସାହାସର ସହିତ କରିବା କଥା ସେତେ ସାହାସ କରୁ ନାହାନ୍ତି । ଏହି Act ନ ଥିଲେ ଯେତେଦୂର ଲୋକଙ୍କର କ୍ଷତି ଘଟନ୍ତା ତାହା ତୁଳନାରେ ଅନେକ କମ୍ ହୋଇଛି । ଏକଥା କଣ କେହି ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି ଅନ୍ୟ ପକ୍ଷରୁ ? ସେହି ଦୃଷ୍ଟିରୁ ମୁଁ କହେ on principle, ଯଦି ଏହି ଆଇନକୁ ଗ୍ରହଣ କରଯାଏ, ତା'ହେଲେ କ'ଣ ଆମର ଯେଉଁ District Health Officer ବା Health Inspector ଅଛନ୍ତି, ସେମାନେ ସହରରେ କିମ୍ବା ମଫସଲରେ ଯେଉଁଠି ଯାନିଯାତ୍ରା ସମୟରେ ବା ଅନ୍ୟାନ୍ୟ ସମୟରେ କୌଣସି ରକମ ଦୂଷିତ କିମ୍ବା ବିଷାକ୍ତ ଖାଦ୍ୟ ଯେପରି ବିକ୍ରି ନହୁଏ ତାର କ'ଣ କୌଣସି ବ୍ୟବସ୍ଥା କରିପାରିବେ ନାହିଁ ? ତେଣୁ ଏହି ପ୍ରସ୍ତାବ ଯେତେବେଳେ ହୁଏ, ତାର ତୀବ୍ର ସମାଲୋଚନା କାହିଁକି କରଯାଉଛି ମୁଁ ବୁଝିପାରୁ ନାହିଁ । ପ୍ରଥମରୁ ମୁଁ ଦେଖିଲି ଜଣେ ବିରୋଧୀୟ ଉପମନ୍ତ୍ରୀ ଯେଉଁ ଉପମନ୍ତ୍ରୀଙ୍କ ନାମ ଗତକାଲି Select Committeeରେ ନେବାପାଇଁ, ସରକାରୀ ଦଳର ଅନ୍ୟ ଜଣେ ଉପମନ୍ତ୍ରୀ suggestion ଦେଇଥିଲେ, ସେହି ଉପମନ୍ତ୍ରୀ ଉଠି ସରକାରୀ ତରଫରୁ ପ୍ରଥମେ ତାର

ବିରୋଧ କଲେ । ବୋଧହୁଏ ଏହାର ପ୍ରଧାନ କାରଣ ହେଉଛି ଏହି ବିଲ୍‌ର ଦୁର୍ଭାଗ୍ୟ ଯେ, ମାନ୍ୟବର ସାକ୍ଷୀଗୋପାଳର ସଭ୍ୟ ଏ ବିଲ୍‌କୁ ଆଗତ କରିଛନ୍ତି । ତା ନହୋଇ ଯଦି principle ଦୃଷ୍ଟିରୁ ଧରଯାଏ, ଯେ ଦୋକାନମାନଙ୍କରେ ଯେଉଁ ଦଧ ବ୍ୟବହର କରଯାଉଛି, ସେଇଟା ନିଶ୍ଚୟ ରୋଗୀ ଏବଂ ଶିଶୁମାନଙ୍କ ଖାଦ୍ୟ ପକ୍ଷରେ ଅଧିକ ଉପାଦେୟ ହେବ । ତେଣୁ ମୁଁ ବୁଝିପାରୁ ନାହିଁ, ଏହି ବିଲ୍‌କୁ Select Committeeକୁ ପଠାଇବା ପାଇଁ ଏତେ କାହିଁକି ବିରୋଧ କରଯାଉଛି । ତାପରେ ମାନ୍ୟବର ଛତ୍ରପୁରର ସଭ୍ୟ ଗୋଟିଏ ଆର୍ଥିକ ଯୁକ୍ତି ଦେଖାଇ କହିଛନ୍ତି ଯେ ଏହି ବିଲ୍‌କୁ ଯଦି ଆଇନରେ ପରିଣତ କରଯାଏ ତାହାହେଲେ ଆମ ଦେଶର ଯେଉଁ ଗଉଡମାନେ ଅଛନ୍ତି ବା ଅନ୍ୟାନ୍ୟ ଯେଉଁ ଦୁଧ ବ୍ୟବସାୟୀମାନେ ଅଛନ୍ତି, ସେମାନଙ୍କ ବ୍ୟବସାୟରେ ବାଧା ପଡ଼ିବ । ଏହି ଯୁକ୍ତି କେତେଦୂର ଯୁକ୍ତିଯୁକ୍ତ ସେଟା ମଧ୍ୟ ଜନସାଧାରଣ ବିଚାର କରିବେ । ଗୋଟିଏ ଦିଗରୁ ଦେଖିବାକୁ ଗଲେ ଏହି ବିଲ୍‌ଟି ଯଦି ପାଶ୍ ହୋଇ ଆଇନରେ ପରିଣତ ହୁଏ ତାହାହେଲେ ଶିଶୁ ଏବଂ ରୋଗୀମାନଙ୍କର ଲାଭ ହେବ । ଅନ୍ୟ ଦିଗରୁ ଦେଖିବାକୁ ଗଲେ ଏହି ବିଲଟି ଯଦି ଆଇନରେ ପରିଣତ ନ ହୁଏ ତାହେଲେ ଗଉଡ ବା ଦୁଧ ବ୍ୟବସାୟୀମାନଙ୍କର ଲାଭ ହେବ । ତେଣୁ ଏକ ପକ୍ଷରେ ହେଲା ଦେଶର ଶିଶୁ ଓ ରୋଗୀଙ୍କର ଲାଭ ଓ ଆଉ ଗୋଟିଏ ହେଲା ଗଉଡ ବା ଅନ୍ୟାନ୍ୟ ଦୁଧ ବ୍ୟବସାୟୀଙ୍କର ଲାଭ । ଏହି ଦୃଷ୍ଟିରୁ ବିଚାର କଲେ ଛତ୍ରପୁରର ମାନ୍ୟବର ସଭ୍ୟ ଯେଉଁ ଯୁକ୍ତି ବାଢ଼ିଛନ୍ତି ତାର ଉପାଦେୟତା ସମ୍ବନ୍ଧରେ କାହିଁକି ମୋର ସନ୍ଦେହ ହେଉଛି । ତା'ପରେ ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ ଯେ କହିଲେ କେବଳ ଖବର କାଗଜରେ ନାମ ବାହାରିବା ପାଇଁ ପଣ୍ଡିତ ନୀଳକଣ୍ଠ ଦାଶ ଏହି ବିଲ୍ ଆଣିଛନ୍ତି । ତାର ଉତ୍ତରରେ ମୁଁ ଏତିକି କହିବାକୁ ଚାହେଁ ନୀଳକଣ୍ଠ ଦାଶଙ୍କ ପରି ଜଣେ ବିଜ୍ଞ ପଣ୍ଡିତ ଲୋକଙ୍କର ନାମ ପ୍ରାୟ ଅନେକ ଥର ଏ ଦେଶର ଖବର କାଗଜମାନଙ୍କରେ ବାହାରିଥିବ । ତଥାପି ଯଦି ସେ କେବଳ ଖବର କାଗଜରେ ତାଙ୍କର ନାମ ବାହାରିବା ଉଦ୍ଦେଶ୍ୟରେ ଏହି ବିଲ୍ ଆଗତ କରିଥାନ୍ତି । ମୁଁ ତାହାହେଲେ ଭାବୁଛି ଏଇଟା ଦେଶ ପକ୍ଷରେ ବଡ ଦୁର୍ଭାଗ୍ୟର କଥା । ତାହା ନ ହେଲେ ତାଙ୍କର ନାମ ସେଥିରେ ବାହାରିବ ନ ବାହାରିବାରେ ଆମର କିଛି ଯାଏ ଆସେ ନାହିଁ । ଆମର ଯଦି ଏ ବିଲ୍ ଦ୍ୱାରା ଉପକାର ହେବ, ତା'ହେଲେ ଆମେ ଏହାକୁ ଗ୍ରହଣ କରିବା, ସେଥିରେ ଯଦି ଚାହୁଁନା ତାଙ୍କର ନାମ ଖବର କାଗଜରେ ବାହାରିପଡେ ତେବେ..........

## ଓଡ଼ିଶା ପ୍ରଜା (ରୟତ) ସୁରକ୍ଷା (ସଂଶୋଧନ) ବିଲ୍, 1952

ଓଡ଼ିଶା ପ୍ରଜା ତଥା ରୟତମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଜମିଦାରୀ ପ୍ରଥା ପ୍ରଚଳିତ ଥିଲାବେଳେ ଏହି ଆଇନ୍ ପ୍ରଣୟନ କରଯାଇଥିଲା ଏବଂ ବାରମ୍ବାର ସଂଶୋଧନ କରଯାଇଥିବାରୁ ଡକ୍ଟର ସୂପକାର କିଛି ଆଲୋଚନା କରିବାକୁ ଚାହିଁଛନ୍ତି ଏବଂ ବାଚସ୍ପତିଙ୍କ ଅନୁମତି କ୍ରମେ କହିଛନ୍ତି ଯେ ଏଇ ଆଇନର ମିଆଦ କେତେଥର ବଢାଇ ଦିଆଯାଇଥିଲା । ଜମିଦାରୀ

ଉଚ୍ଛେଦ ବିଲ୍ ଓ କୃଷି ବିଲ୍ ଆଗତ ତଥା ପାସ୍ କରିବା ପାଇଁ ସରକାର ତତ୍ପର ହୋଇଥିବାରୁ ଏହି ଆଇନର ସଂଶୋଧନ ତଥା ମିଆଦ ବୃଦ୍ଧି ଅନାବଶ୍ୟକ ବୋଲି ସେ ମତ ଦେଇଛନ୍ତି । ତେଣୁ ସଂପୃକ୍ତ ବିଲ୍ ଆଣି କୃଷି ତଥା କୃଷକଙ୍କ ଅବସ୍ଥାର ଉନ୍ନତି ସାଧନ କରିବାକୁ ସେ ପରାମର୍ଶ ଦେଇଛନ୍ତି । ତେବେ ବର୍ଷକପାଇଁ ଏହି ଆଇନର ମିଆଦ ବଢ଼ାଇବାକୁ କହି ସେ ବିଭାଗୀୟ ମନ୍ତ୍ରୀଙ୍କୁ ଅନୁରୋଧ କରିଛନ୍ତି ଯେ "ଆଉ କାଳବିଳମ୍ବ ନ କରି ଗୋଟିଏ ପୂର୍ଣ୍ଣାଙ୍ଗ ଆଇନ ଆଣନ୍ତୁ । ଆମ୍ଭେମାନେ 4/5 ବର୍ଷ ହେଲା ଜମିଜମା ନେଇ ସରକାର ଚାଷୀମାନଙ୍କର ମଙ୍ଗଳ ବିଧାନ ନିମନ୍ତେ କୃଷିର ଉନ୍ନତିପାଇଁ ଏବଂ ଦେଶର ଖାଦ୍ୟ ସମସ୍ୟା ସମାଧାନପାଇଁ କିଛି କରିବେ ବୋଲି ଅନାଇ ବସିଛୁ" ।

ଡଃ ସୂପକାର ଏହିପରି ନ୍ୟାୟୋଚିତ କଥା କହିଛନ୍ତି ଏବଂ ତାଙ୍କ ପରେ ବିଭାଗୀୟ ମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ଉତ୍ତର ଦେଇ ବିରୋଧୀ ଦଳ ସଭ୍ୟ ଓ ନେତାମାନଙ୍କର ମନ୍ତବ୍ୟର ସାରକଥାକୁ କେତେକାଂଶରେ ସ୍ୱୀକାର କରିଛନ୍ତି । ତାପରେ ଏହି ପ୍ରସ୍ତାବ ସଭରେ ଅନୁମୋଦିତ ତଥା ଗୃହୀତ ହୋଇଥିଲା ।

ଶ୍ରୀ ଶ୍ରଦ୍ଧାକର ସୂପକାର : I want to say.

The Hon'ble the SPEAKER : ମୁଁ ମନେ କରୁଛି ଏ ବିଷୟରେ ଭଲ ଭାବରେ ଆଲୋଚନା ହୋଇ ଗଲାଣି । After the speech of the Leader of the Opposition I will call upon the Revenue Minister to make this Speech.

ଶ୍ରୀ ଶ୍ରଦ୍ଧାକର ସୂପକାର : ମାନ୍ୟବର ସଭାପତି ମହାଶୟ, ଏହି ଆଇନ୍‌ଟି 1948 ସାଲରେ ପ୍ରଥମେ ପାସ ହୋଇଥିଲା । ସେ ସମୟରେ ମୁଁ ବ୍ୟବସ୍ଥା ସଭାରେ ସଦସ୍ୟ ନ ଥିଲି କିନ୍ତୁ ଯେଉଁମାନେ ସେ ସମୟରେ ସଦସ୍ୟ ଥିଲେ ଏବଂ ଯେଉଁମାନେ ମୂଳ ଆଇନ୍ ପାସ ହେବାପାଇଁ ଦାୟୀ ସେମାନଙ୍କ ମଧ୍ୟରୁ ଅନେକ ମତ ପ୍ରକାଶ କରିଥିଲେ ଯେ ଏହି ଆଇନ୍ ପାସ କରିବା ସମୟରେ ତହିଁ ଉପରେ ଆଲୋଚନା ବହୁତ ହୋଇଥିଲେ ମଧ୍ୟ ଯଥେଷ୍ଟ ଭାବରେ ତାହା ଆଲୋଚନା ହୋଇପାରି ନ ଥିଲା । ଏହି ଆଇନ୍‌ର ମିଆଦ ଯେତେବେଳେ ବଢ଼ାଇ ଦିଆ ହେଉଥିଲା ଏହାର ଆଲୋଚନା ଏ ଗୃହରେ ହୋଇଥିଲା ଏବଂ ଅନେକ ମାନ୍ୟବର ସଦସ୍ୟ ଏହାର ଦୋଷ ତ୍ରୁଟି ଦର୍ଶାଇ ଅସନ୍ତୋଷ ପ୍ରକାଶ କରିଥିଲେ । ସେହିପରି ବିଗତ ବର୍ଷମାନଙ୍କରେ ମଧ୍ୟ ଏହାକୁ ସମାଲୋଚନା କରାଯାଇଛି । ତଥାପି ସୁଦ୍ଧା ଆମ୍ଭେମାନେ ଦେଖିବାକୁ ପାଉଁ ଯେ କୌଣସି କାରଣରୁ ଆମ ସରକାର ଏହି ବିଷୟରେ ଶେଷ ସିଦ୍ଧାନ୍ତରେ ଉପନୀତ ହେବାକୁ ସମୟ ପାଇ ନାହାନ୍ତି । ବୋଧହୁଏ ସେହି କାରଣମାନଙ୍କ ମଧ୍ୟରୁ ଗୋଟିଏ ବିଶେଷ କାରଣ ହେଉଛି ଜମିଦାରୀ ଉଚ୍ଛେଦ ବିଲ୍ ଓ କୃଷି ବିଲ୍ ପାସ କରାଇବା ପାଇଁ ଆମ ସରକାର ବିଶେଷ ତତ୍ପର ଥିବା ଯୋଗୁଁ । ସେହି ଆଇନମାନଙ୍କ ସଙ୍ଗରେ ଏହି ଆଇନର ବିଶେଷ ସମ୍ବନ୍ଧ ଥିବାରୁ ଏ ଆଇନ କିପରି ଭାବରେ ପରିବର୍ତ୍ତନ କରାଯିବ ସେଥିପ୍ରତି ଦୃଷ୍ଟି ନ ଦେଇ

ବର୍ଷକୁ ବର୍ଷ ତା'ର ଆୟୁଷ ବଢ଼ାଇବାକୁ ସରକାର ଚେଷ୍ଟା କରୁଛନ୍ତି ? କିନ୍ତୁ ବର୍ତ୍ତମାନ ସମୟ ଆସିଛି ଯେ ଜମିଦାରୀ ଉଚ୍ଛେଦ ବିଲ୍ ପାସ ହୋଇଗଲାଣି । ଆଉ ମଧ୍ୟ କୃଷି ଆଇନ ପାସ ହୋଇଗଲାଣି । ବର୍ତ୍ତମାନ ସେହି ଦୁଇ ଆଇନ ଆମ ଦେଶରେ ପ୍ରଚଳିତ ହେବ ଏବଂ ସେହି ଦୁଇ ଆଇନ ପ୍ରଚଳନ ହେଲା ସମୟରେ ସେଥିରେ କ'ଣ କ'ଣ ଭୁଲ ବାହାରୁଛି ଏବଂ କୃଷକମାନଙ୍କର କ'ଣ ଅସୁବିଧା ହେଉଛି ତାହାର କାର୍ଯ୍ୟକାରିତା କେତେଦୂର ଫଳପ୍ରଦ ହେଉଛି ଏ ସବୁ ଜାଣିବାର ସୁଯୋଗ ସରକାର ପାଇବା ସଙ୍ଗେ ସଙ୍ଗେ ସେହି ଆଇନ ସଙ୍ଗେ ଖାପ ଖୁଆଇ ଏହି ଆଇନ କିପରି ଭାବରେ ସଂଶୋଧନ କରାଯିବ, ଆମ କୃଷକମାନଙ୍କର କିପରି ଉପକାର ହେବ, ଖାଦ୍ୟ ସମସ୍ୟା କିପରି ସମାଧାନ ହୋଇ କୃଷକମାନେ ମାଲିମୋକଦମାରେ ବର୍ତ୍ତମାନ ଯେପରି ହଇରାଣ ହେଉଛନ୍ତି କିମ୍ବା ଅନ୍ୟାନ୍ୟ ଆଇନଗତ ଦୋଷତ୍ରୁଟି ରହୁଛି ସେସବୁ ଯେପରି ନ ହେବ ସେ ଅନୁସାରେ ଆଇନକୁ ସଂଶୋଧନ କରି ଯେପରି ଭାବରେ ତାହା ପରିବର୍ତ୍ତନ ହୁଏ ସେଥିପାଇଁ ଯତ୍ନବାନ ହେବେ । ମାନ୍ୟବର ବିଭାଗୀୟ ମନ୍ତ୍ରୀ ମତ ପ୍ରକାଶ କଲେ ଯେ 15 ତାରିଖ ଏପ୍ରିଲ 1943 ସାଲ ପୂର୍ବରୁ ଏ ବିଷୟରେ ସେ କାର୍ଯ୍ୟାନୁଷ୍ଠାନ କରିବେ । କିନ୍ତୁ ମୁଁ ଭାବୁଛି ଯେ ଆମର ତ ଆଉ ଗୋଟିଏ ଅଧିବେଶନ ଆସନ୍ତା ମଇ ମାସରେ ବସିବାର ଅଛି । ତା' ପୂର୍ବରୁ ଏହିସବୁ ବିଷୟ ପ୍ରତି ଧ୍ୟାନ ଦେଇ ଏହି କୃଷି ସମ୍ବନ୍ଧରେ ଅନ୍ୟାନ୍ୟ ଆଇନକୁ ଲକ୍ଷ୍ୟ ରଖି ଓ ରୟତ କିପରି ଭଲ ହେବ ସେଥିପ୍ରତି ଦୃଷ୍ଟି ଦେଇ ସେ ଗୋଟିଏ ପୂର୍ଣ୍ଣ ବିଲ୍ ଯଦି ସେ ସେହି ସମୟରେ ଆଗତ କରିବେ ତାହା ହେଲେ ଆମ କୃଷକମାନଙ୍କର ବିଶେଷ ଉପକାର ହୋଇ ପାରିବ ବୋଲି ମୁଁ ଆଶା କରେ । ଏ ବିଷୟ ନେଇ ଯେଉଁମାନେ ବିଲ୍‌ଟିକୁ ବିରୋଧ ମଧ୍ୟ କରୁଛନ୍ତି, ମୁଁ ଯାହା ବୁଝିପାରୁଛି ସେମାନେ ଏଥିପାଇଁ ବିରୋଧ କରୁଛନ୍ତି ଯେ ଏ ଆଇନ ଦ୍ୱାରା କୃଷକମାନଙ୍କର ଯେତେ ସୁବିଧା ହେବ ବୋଲି ସରକାର ଭାବୁଛନ୍ତି ସେପରି ସୁବିଧା ହେଉ ନ ଥିବାରୁ ଏହାକୁ ଉଠାଇ ଦିଆଯାଉ ବୋଲି ଆପତ୍ତି ଉଠାଇଛନ୍ତି । କିନ୍ତୁ ଯାହା ହେଉ ଯେତେବେଳେ ଏ ଆଇନଟି ପ୍ରଚଳିତ ହେଉଛି ମୁଁ ଭାବୁଛି ଏ ଆଇନକୁ ବର୍ଷକ ପାଇଁ ବଢ଼ାଇ ଦେବା ପାଇଁ ଯେଉଁ ପ୍ରସ୍ତାବ ହେଉଛି ତାହା ଗୃହୀତ ହେଉ କିନ୍ତୁ ମାନ୍ୟବର ବିଭାଗୀୟ ମନ୍ତ୍ରୀଙ୍କୁ ଅନୁରୋଧ କରୁଛି ଆଉ କାଳବିଳମ୍ବ ନ କରି ଗୋଟିଏ ପୂର୍ଣ୍ଣାଙ୍ଗ ଆଇନ ଆଣନ୍ତୁ । ଆମ୍ଭେମାନେ 4/5 ବର୍ଷ ହେଲା ଜମିଜମା ନେଇ ସରକାର ଚାଷୀମାନଙ୍କର ମଙ୍ଗଳ ବିଧାନ ନିମନ୍ତେ କୃଷିର ଉନ୍ନତି ପାଇଁ ଏବଂ ଦେଶର ଖାଦ୍ୟ ସମସ୍ୟା ସମାଧାନ ପାଇଁ କିଛି କରିବେ ବୋଲି ଅନାଇ ବସିଛୁଁ । ମୁଁ ଆଶା କରେ ଏଭଳିଆ ଗୋଟିଏ ଆଇନ ବିଭାଗୀୟ ମନ୍ତ୍ରୀ ଆସନ୍ତା ମଇ ମାସରେ ଆଗତ କରିବେ ।

## ବହୁମୁଖୀ ନଦୀ ଯୋଜନା ହୀରାକୁଦ ଜଳଭଣ୍ଡାର ପ୍ରକଳ୍ପ ବ୍ୟୟ ବରାଦ

ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ 1952 ଜୁନ୍ 20 ତାରିଖରେ ହୀରାକୁଦ ଜଳଭଣ୍ଡାର ଓଡ଼ିଶା ବିଧାନସଭାର 1953 ମାର୍ଚ୍ଚ 31 ସୁଦ୍ଧା ଟ 13,10,16,000 ଙ୍କାର ଏକ ଖର୍ଚ୍ଚ ଦାବି ଆଗତ କରିଥିଲେ । ଏଥିପାଇଁ ରାଜ୍ୟପାଳଙ୍କ ସୁପାରିଶ ନିଆଯାଇ ଥିଲା ଏବଂ

ବାଚସ୍ପତି ଏହି ପ୍ରସ୍ତାବ ଆଗତ କରିବା ପାଇଁ ଅନୁମୋଦନ କରୁଥିଲେ । ମାତ୍ର ସମ୍ବଲପୁରର ଲୋକପ୍ରତିନିଧି ତଥା ବିରୋଧୀ ଦଳ ନେତା ଡଃ ଶ୍ରଦ୍ଧାକର ସୁପକାର ଏହି ବ୍ୟୟ ବରାଦକୁ ଏକ ଟଙ୍କାକୁ କମାଇ ଦେବା ପାଇଁ ପ୍ରସ୍ତାବ ଆଣି କହିଛନ୍ତି, "ଏ ଦାବୀରେ 14 କୋଟି ଟଙ୍କା ଆମ ସାମନାରେ ଉପସ୍ଥାପିତ କରାଯାଇଛି । ଆମ ପ୍ରଦେଶର ଅନ୍ୟାନ୍ୟ ବ୍ୟୟ କେବଳ 12/13 କୋଟି ଥିବା ସ୍ଥଳେ ଏବଂ ଏ ଦାବୀର 14 କୋଟି ଥିବା ସ୍ଥଳେ ଟଙ୍କା ଅନୁପାତରେ ଯଦି ସମୟର ବିଗ୍ଭର କରାଯାଇଥାନ୍ତା, ତାହା ହେଲେ ଏ demand ପାଇଁ ଆମକୁ 7 ଦିନ ସମୟ ମିଳିଥାନ୍ତା" ମାତ୍ର ଏଥିପାଇଁ ମାତ୍ର 3 ଘଣ୍ଟା ମିଳି ଥିବାରୁ ସେ ଅସନ୍ତୋଷ ପ୍ରକାଶ କରି ସରକାର ଏହାକୁ ଆବଶ୍ୟକ ଗୁରୁତ୍ୱର ସହିତ ବିଗ୍ଭର କରୁନାହାନ୍ତି ବୋଲି ଅଭିଯୋଗ ଆଣିଛନ୍ତି ।

ଡଃ ସୁପକାର ଏହି ପ୍ରକଳ୍ପର ପୃଷ୍ଠଭୂମି ବର୍ଣ୍ଣନା କରି ଏହାର ଖର୍ଚ୍ଚ ଅଟକଳ ବଢି ବଢି ସେତେବେଳେ କିପରି ଆକାଶ ଛୁଇଁଥିଲା, ତାହା ଦେଖାଇଛନ୍ତି । ଏହି ପ୍ରସଙ୍ଗରେ ବାଣପୁର ସଭ୍ୟ ଶ୍ରୀ ଗୋଦାବରିଶ ମିଶ୍ରଙ୍କ କଥାକୁ ଦୋହରାଇ ସେ କହିଛନ୍ତି "ବସ୍ତୁ ବଦଳରେ ଆମେ ପାଇଛୁ ଧୂମ ଏବଂ ଘିଅ ଓ ମହୁ ବଦଳରେ ଆମେ ପାଇଛୁ ଭଲୁ" । ସେତିକି ଏକର ଜମିରେ ଏହାର ପାଣି ମାଡ଼ିବ ବୋଲି କଳନା କରାଯାଇଥିଲା । ତାହା କ୍ରମେ କମି ଯାଉଛି ଏବଂ ଯେଉଁ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ ହେବାର ଅଛି, ତା'ର ବ୍ୟବହାର ପାଇଁ ଉପଯୁକ୍ତ ବ୍ୟବସ୍ଥା ହୋଇ ନାହିଁ । ସେମିତି ହୀରାକୁଦ ବନ୍ଧ ଯୋଗୁଁ ଯେତେସବୁ ସୁବିଧା ମିଳିବାର ଆଶା ଥିଲା, ତାହା ଦିନକୁ ଦିନ ମଉଳି ଯାଉଛି । ବନ୍ୟାର ପ୍ରକୋପ ହ୍ରାସ ପାଇବାର ସମ୍ଭାବନା ଥିଲେ ହେଁ "ହୀରାକୁଦ ଅଞ୍ଚଳରେ ଗୋଟିଏ ଚିରସ୍ଥାୟୀ ବନ୍ୟା ସମସ୍ୟାର ସୃଷ୍ଟି କରାଯିବ" ।

ଯେଉଁ ଅଧିକାରୀ, କର୍ମଚାରୀ ଓ ଇଞ୍ଜିନିୟରଗଣ ହୀରାକୁଦ ବନ୍ଧ ଓ ଜଳଭଣ୍ଡାର ନିର୍ମାଣ ଦାୟିତ୍ୱରେ ଥିଲେ, ସେମାନେ ଆଦୌ ଆନ୍ତରିକ ଉଦ୍ୟମ କରୁନାହାନ୍ତି ଏବଂ ସେମାନଙ୍କର ଉଦାସୀନତା ଓ ଅନାଗ୍ରହ ଯୋଗୁଁ ଆକ୍ରାନ୍ତ ଜନସାଧାରଣ ଅସୀମ ଅସୁବିଧାର ସମ୍ମୁଖୀନ ହେଉଛନ୍ତି ବୋଲି ସେ ସମାଲୋଚନା କରିଛନ୍ତି । ସେମାନଙ୍କୁ ଅଧିକ ଉତ୍ତରଦାୟୀ ଓ ସମ୍ବେଦନଶୀଳ କରାଯିବା ଉଚିତ ବୋଲି ପରାମର୍ଶ ଦେଇଛନ୍ତି ।

## Capital outlay on multipurpose river schemes—Hirakud Dam Project

Shri NABAKRUSHNA CHAUDHURI (Chief Minister). Sir, I beg to move that the Assembly do assent to a demand which will come in course of payment during the year ending the 31st March 1953 of such sum as, together with the expenditure already authorised in the vote on account, will amount to Rs. 13,10,16,000 in respect of the head "80—A—Capital Outlay on Multipurpose River Scheme Hirakud Dam Project".

This appropriation has the recommendation of the Governor.

The SPEAKER: Motion moved.

ଶ୍ରୀ ଶ୍ରଦ୍ଧାକର ସୁପକାର : ମାନ୍ୟବର ବାଚସ୍ପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ ଏ ଦାବୀକୁ ଟ 1 ଟଙ୍କାକୁ କମାଇ ଦିଆଯାଉ । ଏ ଦାବୀରେ 14 କୋଟି ଟଙ୍କା ଆମ ସାମନାରେ ଉପସ୍ଥାପିତ କରାଯାଇଛି । ଆମ ପ୍ରଦେଶର ଅନ୍ୟାନ୍ୟ ବ୍ୟୟ କେବଳ 12/13 କୋଟି ଥିବା ସ୍ଥଳେ ଏବଂ ଏ ଦାବୀର 14 କୋଟି ଥିବା ସ୍ଥଳେ ଟଙ୍କା ଅନୁପାତରେ ଯଦି ସମୟର ବିଗ୍ଭର କରାଯାଇଥାନ୍ତା ତାହାହେଲେ ଏ Demand ପାଇଁ ଆମକୁ 7 ଦିନ ସମୟ ମିଳିଥାନ୍ତା । କିନ୍ତୁ ସମୟ ପାଇଁ ପ୍ରତିଯୋଗିତା ଥିବାରୁ ଏ ଦାବୀ ପାଇଁ କେବଳ 2 ଘଣ୍ଟା ସମୟ ମିଳିଛି । ମୁଁ ଆପଣଙ୍କୁ ଅନୁରୋଧ କରିବି ଏ Demand ର ଗୁରୁତ୍ୱ ଦୃଷ୍ଟିରୁ ଏ ବିଷୟରେ ମୋତେ ଟିକିଏ ସ୍ୱଚ୍ଛ ଭବରେ କହିବାକୁ ଅନୁମତି ଦେବେ । ଏ ଦାବୀ ବିଷୟରେ କହିବା ପୂର୍ବରୁ ମୁଁ ଏହାର ଇତିହାସ ବିଷୟରେ ଟିକିଏ ସାମାନ୍ୟ ସୂଚନା ଦେବାକୁ ଗ୍ଭହେଁ । 6 ବର୍ଷ ପୂର୍ବେ ଯେତେବେଳେ ଏହିସବୁ ନଦୀ ଉପତ୍ୟକା ଯୋଜନାମାନ ହାତକୁ ନେବାର ପ୍ରସ୍ତାବ ହୋଇ-ନଥିଲା ସେ ସମୟରେ ଠିକ୍ ଯୁଦ୍ଧ ପରେ ପରେ ଆମ ସରକାର ଦେଖିଲେ ଯେ ସ୍ୱାଧୀନତା ପ୍ରାପ୍ତି ସଙ୍ଗେ ସଙ୍ଗେ ଆମର 12 ଶହ କୋଟି Sterling Balance ହୋଇଛି । ଏତେଗୁଡ଼ିଏ ଟଙ୍କା କ'ଣ କରାଯିବ ଏ ବିଷୟରେ ବୋଧହୁଏ ଆମେ ବିଶେଷ ଭବରେ ଚିନ୍ତା କରିପାରୁ ନଥିବା ଯୋଗୁଁ ଆମ ଭରତ ସରକାର ଠିକ୍ କଲେ ଯେ ଆମେରିକାରେ ନଦୀ ଉପତ୍ୟକା ଯୋଜନା ହୋଇଛି, ରୁଷିଆରେ ମଧ୍ୟ ହୋଇଛି, ତେଣୁ ଆମ ଭରତବର୍ଷରେ ମଧ୍ୟ ବିଭିନ୍ନ 4/5 ଟି କ୍ଷେତ୍ରରେ ନଦୀ ଉପତ୍ୟକା ଯୋଜନାମାନ ଆରମ୍ଭ କରିବା ଉଚିତ । ସେହି ଅନୁସାରେ 1945-46 ସାଲରେ, ଦାମୋଦର, ହୀରାକୁଦ, ଭକ୍ରା, କୁଶୀ, ନଙ୍ଗଲ ଇତ୍ୟାଦି ନଦୀ ଉପତ୍ୟକା ଯୋଜନାମାନ ଆରମ୍ଭ କରିବାର ଠିକ୍ ହେଲା । ସେ ସମୟରେ ଆମ୍ଭେମାନେ ଦେଖିଥିଲୁ ଆମ ଆଖି ଆଗରେ 12 ଶହ କୋଟି ଟଙ୍କା ଥିଲା । ହୀରାକୁଦ ପାଇଁ କେବଳ 48 କୋଟି ଦାମୋଦର ପାଇଁ କେବଳ 55 କୋଟି କୁଶୀ ପାଇଁ କେବଳ 43 କୋଟି ଏବଂ ଭକ୍ରା ପାଇଁ କେବଳ 100 କୋଟି ଟଙ୍କା ବ୍ୟବସ୍ଥା କରାଯାଇ ଥିଲା । ସେତେବେଳେ ଆମେ ଭବିଥିଲୁ ଏଇଟା ଅତି ସାମାନ୍ୟ ଟଙ୍କା । ତେଣୁ ଏ ଟଙ୍କା ଖର୍ଚ୍ଚ କରିବାରେ ଆମ୍ଭମାନଙ୍କର ବିଶେଷ ଦୂରଦୃଷ୍ଟି ଦରକାର ନାହିଁ ଏବଂ ଏହିସବୁ ଯୋଜନା ଏକସାଙ୍ଗରେ ହାତକୁ ନିଆଗଲା । ସେ ଯୋଜନା ଯେତେବେଳେ ଆମ ଓଡ଼ିଶା ବ୍ୟବସ୍ଥାପକ ସଭରେ ତା 28-8-1947 ରେ ଉପସ୍ଥାପିତ କରାଗଲା ସେ ଆଲୋଚନା ସମୟରେ ଅନେକ ଯୁକ୍ତି ଆମର ସଭ୍ୟମାନେ ଉପସ୍ଥାପିତ କରିଥିଲେ ଏବଂ ସରକାରଙ୍କୁ ପ୍ରଶ୍ନ କରିଥିଲେ । ବ୍ୟବସ୍ଥା ସଭର ତଦାନୀନ୍ତନ ପ୍ରସିଦ୍ଧ ସଭ୍ୟ ଶ୍ରୀଯୁକ୍ତ ଉମାଚରଣ ପଟ୍ଟନାୟକ ସନ୍ଦେହ କରିଥିଲେ ଯେ ଯେଉଁ ଟଙ୍କା ଖର୍ଚ୍ଚ ହେବ ସେଥିରେ ଆମର ଦାୟିତ୍ୱ କ'ଣ ଅଛି ? ମୁଁ ଏହା ପୂର୍ବରୁ ମଧ୍ୟ କହିଛି ଯେ ସେ ସମୟରେ ତଦାନୀନ୍ତନ ପ୍ରଧାନ ମନ୍ତ୍ରୀ କହିଥିଲେ ଯେ ଯେଉଁ ଟଙ୍କା ଖର୍ଚ୍ଚ ହେବ ସେ ଟଙ୍କାର

ସୁଧ ଏବଂ ମୂଳ ଆମକୁ ଦେବାକୁ ପଡ଼ିବ ନାହିଁ, ଯଦି ସେଥିରୁ ଆମର କିଛି ଲଭ ନ ହୁଏ । ଯଦି ସେଥିରୁ କିଛି ଲଭ ହୁଏ ତାହା ହେଲେ ସୁଧ ଏବଂ ମୂଳ ପରିଶୋଧ କରିବାର ଦାୟିତ୍ୱ ଆମର ରହିବ । ଏ ବିଷୟରେ ତା 28-8-1947 ରିଖର Assembly Proceedings ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ତାକୁ ପଢିଲେ ଅନେକଗୁଡ଼ିଏ ମୂଲ୍ୟବାନ ତଥ୍ୟ ଜାଣି ପାରିବେ । ସେ ସମୟରେ ଉତ୍ସାହରେ ଆମେ ଯୋଜନା ଆରମ୍ଭ କରିଥିଲୁ, ଆଶାରେ ଆମେ ରହିଥିଲୁ ଆମର ବହୁତଗୁଡ଼ିଏ ଟଙ୍କା ଅଛିବୋଲି ଉତ୍ସାହରେ ଆମେ ମାତିଥିଲୁ । କିନ୍ତୁ ସମୟ ଗଡ଼ିଗଲା ପରେ ସେହି 12 ଶହ କୋଟି Sterling Balance ର ମୋହ ପ୍ରଭାତର କୁହେଳିକା ପରି ଧୀରେ ଧୀରେ ଅପସାରିତ ହୋଇଗଲା ଏବଂ ଆମ ଆର୍ଥିକ ଅବସ୍ଥାର ପ୍ରକୃତ ନଗ୍ନରୂପ ଆମେ ଜାଣିବାକୁ ପାଇଲୁ । ବର୍ତ୍ତମାନ ଅବସ୍ଥା ଯାହା ହୋଇଛି ତାହା ମାନ୍ୟବର ବାଣପୁର ସଭ୍ୟଙ୍କ ଭାଷାରେ ବସ୍ତୁ ବଦଳରେ ଆମେ ପାଇଛୁ ଧୂମ ଏବଂ ଘିଅ ଓ ମହୁ ବଦଳରେ ଆମେ ପାଇଛୁ ଜଲ । ଯାହା ଆମେ ଭାବିଥିଲୁ କାର୍ଯ୍ୟକ୍ଷେତ୍ରରେ ତାହା ଓଲଟା ହୋଇଛି । ଆପଣ ଦେଖିଥିବେ ପ୍ରଥମେ ଯେତେବେଳେ ଯୋଜନା ହୋଇଥିଲା ସେତେବେଳେ 47 କୋଟି 81 ଲକ୍ଷ ଟଙ୍କା ବ୍ୟୟ କରିବାର ସ୍ଥିର ହୋଇଥିଲା ଏବଂ ସେ ସମୟରେ ଆମର ପ୍ରସିଦ୍ଧ ଇଂଜିନିଅର ରଙ୍ଗାୟା ଆମକୁ ଗୋଟିଏ ସତର୍କବାଣୀ ଶୁଣାଇ ଥିଲେ । ସେ ଯାହା କହିଥିଲେ ଆପଣଙ୍କ ଆଗରେ ସେଥିରୁ ଗୋଟିଏ କଥା ଉଦ୍ଧାର କରୁଛି ।

"Sage Valmiki, author of the immortal Epic Ramayana in his own unique way, declares that people who always sing praises in sweet and soft language are easily found, but those that give, or listen to, whole-some but unpleasant advice are very rare. The author (S. J. Rangaya) has had to express unwelcome opinions on the prospects of the Hirakud Dam Project as now conceived.

Just as this note was finished it was announced in the Madras 'Indian Express' that the Orissa Legislative Assembly met and unanimously approved the Project. A grave responsibility rests on them as posterity will judge them by the results of this hazardous venture".

1947 ରେ ଆମ Assembly ରେ ସେ ଯୋଜନା ପାସ ହୋଇଯିବା ପରେ ସେହି ଦିନଠାରୁ ଗୋଟିଏ ଗୁରୁତର ବଡ଼ ଯୋଜନାର ପୂର୍ଣ୍ଣ ଦାୟିତ୍ୱ ଆମେ ମୁଣ୍ଡରେ ମୁଣ୍ଡାଇଲୁ । ସେ ସମୟରେ କିନ୍ତୁ ଆମ ମୁଣ୍ଡରେ ବୋଝଟି ଲଘୁ ହୋଇଥିଲା । ବର୍ତ୍ତମାନ ତାହା Revised Estimate ଫଳରେ କେତେ ବଢି ଯାଇଛି ତାହା କିଛିଦିନ ତଳେ ମୁଁ ଯେଉଁ ପ୍ରଶ୍ନ ପଚାରିଥିଲି ସେଥିରୁ ଆପଣ ସ୍ପଷ୍ଟ ବୁଝିପାରିବେ । Starred Question No. 562 ପ୍ରତି ଆପଣଙ୍କ ଦୃଷ୍ଟି

ଆକର୍ଷଣ କରୁଛି । ସେଥିରେ original Dam construction ପାଇଁ 16 କୋଟି 16 ଲକ୍ଷ ଟଙ୍କା ଖର୍ଚ୍ଚ ହେବାର ଥିଲା । ସେ ସମୟରେ ଉଠାଯା forecast କରିଥିଲେ ଯେ 24 କୋଟି 24 ଲକ୍ଷ ଟଙ୍କା ଖର୍ଚ୍ଚ ହେବ । ବର୍ତ୍ତମାନ ଦେଖାଯାଉଛି 16 କୋଟି 16 ଲକ୍ଷ ଟଙ୍କା ପରିବର୍ତ୍ତେ latest estimate ହୋଇଛି 35 କୋଟି 98 ଲକ୍ଷ ଟଙ୍କା । Irrigation ପାଇଁ 7 କୋଟି 80 ଲକ୍ଷ ପରିବର୍ତ୍ତେ ଆମେ 19 କୋଟି 63 ଲକ୍ଷ ଟଙ୍କା ଖର୍ଚ୍ଚ କରିବାକୁ ଯାଉଛୁ । Hydro-electricity ରେ 22 କୋଟି ବଦଳରେ 63 କୋଟି 26 ଲକ୍ଷ ଟଙ୍କା ଖର୍ଚ୍ଚ ହେବାକୁ ଯାଉଛି । ଏହିପରି ସର୍ବମୋଟ 47 କୋଟି 81 ଲକ୍ଷ ପରିବର୍ତ୍ତେ 92 କୋଟି 77 ଲକ୍ଷ ଖର୍ଚ୍ଚ ହେବାର ବ୍ୟବସ୍ଥା ହୋଇଛି । କିନ୍ତୁ ଏ ଯେଉଁ estimate ଦିଆଯାଇଛି, ସେଥିରେ ସୁଧ ସାମିଲ ହୋଇନାହିଁ । ବୋଧହୁଏ ଆମେ ଯେଉଁ ଋଣ ଆଣୁଛୁ, ତାହା ସାଙ୍ଗରେ ଯଦି ସୁଧ ସାମିଲ କରି ଦିଆଯାଏ ତାହାହେଲେ 92 କୋଟି ଟଙ୍କାରୁ ବହୁତ ବେଶୀ ହୋଇଯିବ । ତେବେ ଆମେ ଦେଖିବାର କଥା ଯେ ଆମେ ଯେଉଁ 47 କୋଟି ବଦଳରେ 92 କୋଟି ଟଙ୍କା ଖର୍ଚ୍ଚ କରିବାକୁ ଯାଉଥାଏ ତା ବାଦେ ସୁଧର ଦାୟିତ୍ୱ ଆମ ମୁଣ୍ଡରେ ପଡୁଛି । ସେଥିରୁ ଯଦି sufficient return ପାଇବାର ଆଶା ଆମର ଥାଆନ୍ତା ଏବଂ ଯଥେଷ୍ଟ ପରିମାଣରେ ଘିଅ ମହୁ ପାଇବାର ଆଶା ଥାଆନ୍ତା ଏବଂ ଯେଉଁ ଋଣ ଆମେ ଆଣୁଛୁ ତା'ର ସୁଧ ମୂଳ ପରିଶୋଧ କରି ପାରିବାର ଶକ୍ତି ଅଚିର ଭବିଷ୍ୟତରେ ଦେଖିପାରିବା ଭଳିଆ ଆଶା ଥାଆନ୍ତା ତାହାହେଲେ କିଛି ଶୋଚନା କରିବାର ନଥାନ୍ତା । କିନ୍ତୁ ଦେଖାଯାଉଛି ସେମାନେ ଯେଉଁ estimate ଦେଇଛନ୍ତି ସେ estimate କୁ ଯଦି ପ୍ରକୃତ ଘଟଣା ସଙ୍ଗେ ତୁଳନା କରି ଆମେ ଦେଖୁଁ ତାହାହେଲେ ଆମେ ଦେଖିବାକୁ ପାଇବା ଯେ ଆମର ଭବିଷ୍ୟତ ଘୋର ଅନ୍ଧକାରମୟ ।

ପ୍ରଥମତଃ Irrigation କଥା ଦେଖାଯାଉ । Irrigation ଯୋଜନାରେ ପ୍ରଥମରୁ ଥିଲା ଯେ ହୀରାକୁଦରେ ଯେଉଁ କେନାଲମାନ ବାହାରିବ ତହିଁରେ 8 ଲକ୍ଷ ଏକର ଜମିରେ ପାଣି ମାଡ଼ିବ । ତା ପରେ ବର୍ଷେ ନଯାଉଣୁ ଆମକୁ କୁହାଗଲା ଯେ 11 ଲକ୍ଷ ଏକର ଜମିରେ ପାଣି ମାଡ଼ିବ । ବର୍ତ୍ତମାନ 1952 ସାଲରେ କୁହାଯାଉଛି ଯେ 19 ଲକ୍ଷ ଏକର ଜମିରେ ପାଣି ମାଡ଼ିବ । ଏଇଟା ବିଶିଷ୍ଟ ଇଞ୍ଜିନିଅରମାନଙ୍କ କଳ୍ପନା । ତେଣୁ ଏହାକୁ କବିର କଳ୍ପନା ବୋଲି ଉଡ଼ାଇ ଦିଆଯାଇ ନ ପାରେ । କିନ୍ତୁ ଏ ବିଷୟରେ ମୁଁ କେତେକ ଐତିହାସିକ ଘଟଣାର ଉଲ୍ଲେଖ କରିବି । କେତେକ Historical parallel ଦେବି ଯେଉଁଥିରୁ କି ଆପଣ ଅନୁମାନ କରିବେ ଏହିସବୁ ଇଞ୍ଜିନିଅରମାନଙ୍କ କଳ୍ପନା କେବଳ କଳ୍ପନା ମାତ୍ର । ଏହା ହୁଏତ ଦିନେ କବିର କଳ୍ପନାରେ ପର୍ଯ୍ୟବସିତ ହୋଇପାରେ । କଟକ, ପୁରୀ, ବାଲେଶ୍ୱର ଅଞ୍ଚଳରେ ଯେତେବେଳେ କେନାଲ ସ୍ଥାପିତ ହୁଏ ସେ ସମୟରେ କ'ଣ ହୋଇଥିଲା ନା ବଡ଼ ବଡ଼ ପ୍ରସିଦ୍ଧ ଇଞ୍ଜିନିଅର Sir Arthur Cotton ଭଳିଆ Engineer ଯାହା କଳ୍ପନା କରିଥିଲେ ଘଟଣା ଚକ୍ରରେ ଅବସ୍ଥା ଯାହାହେଲା ସେଥିପ୍ରତି ଆପଣଙ୍କ ଦୃଷ୍ଟି ମୁଁ ଆକର୍ଷଣ କରିବି । Cuttack District Gazetteer ର 110 ପୃଷ୍ଠାର କେତୋଟି ଧାଡ଼ି ଆପଣଙ୍କ ସାମନାରେ ଉପସ୍ଥାପିତ

କରିବି । ସେଥିରେ କୁହାଯାଇଛି ଯେତେଟଙ୍କା ଖର୍ଚ୍ଚ ହୋଇଥିଲା ତହିଁରୁ ସେମାନେ ବାର୍ଷିକ ଶତକଡ଼ା 21 ଲାଭ କରିବେ । କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଦେଖାଗଲା ଶତକଡ଼ା ୦.49 କେବଳ ଲାଭ ହୋଇଛି । Sir Arthur Cotton କଳ୍ପନାକରିଥିଲେ ଯେ 22 ଲକ୍ଷ 50 ହଜାର ଏକର ଜମିରେ ପାଣି ମାଡ଼ିବ । ବର୍ତ୍ତମାନ ସେହିପରି ହୀରାକୁଦ ଯୋଜନାରେ 19 ଲକ୍ଷ ଏକର ଜମିରେ ପାଣି ମାଡ଼ିବ ବୋଲି କଳ୍ପନା କରା ହୋଇଥିଲା, ଫଳରେ ହେଲା କ'ଣ ନା ବାସ୍ତବ କ୍ଷେତ୍ରରେ କେବଳ 2 ଲକ୍ଷ ଏକରରେ ପାଣି ମାଡ଼ିଲା । ସେ ଯାହା ପ୍ଲାନ୍ କରିଥିଲେ ତା'ର ଦଶମାଂଶ ଜମିରେ ସୁଦ୍ଧା ପାଣି ମାଡ଼ି ପାରିଲା ନାହିଁ । ସେ ଯେଉଁ rate ରେ duty ଆଦାୟ କରିବେ ବୋଲି ସ୍ଥିର କରିଥିଲେ ତାହା ଆଦାୟ କରାଯିବା ସମ୍ଭବ ହୋଇ ପାରିଲା ନାହିଁ ।

ତାପରେ electricity କଥା ଧରାଯାଉ । Electricity ବିଷୟରେ କୁହାଯାଇଛି ଯେ ଆମର ବାର୍ଷିକ 3½ ଲକ୍ଷ kilowat electricity ବାହାରିବ, କିନ୍ତୁ ଏହି 3½ ଲକ୍ଷ electricity କାର୍ଯ୍ୟରେ ଲଗାଇବାକୁ କେତେ ବର୍ଷ ଲାଗିବ ସେ ବିଷୟରେ ମୁଁ ଆପଣଙ୍କୁ ଅନ୍ୟାନ୍ୟ Hydro-electricity ବା ଜଳ ବିଦ୍ୟୁତ୍ ଯୋଜନାରେ କେତେ ବର୍ଷ ଲାଗିଛି ତାହା କହିଦେବାକୁ ଚାହେଁ । ଆପଣ ଜାଣିଥିବେ ବମ୍ବେ ପ୍ରଦେଶ ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ବିଶେଷତଃ ଓଡ଼ିଶା ତୁଳନାରେ ଖୁବ ଧନୀ ଏବଂ ସେଠାରେ ପୁଞ୍ଜିପତି ବହୁତ ଅଛନ୍ତି ଓ ସରକାରଙ୍କର ମଧ୍ୟ ଆର୍ଥିକ ଶକ୍ତି ଖୁବ ଜୋର ଅଛି । କିନ୍ତୁ ସେହି ସ୍ଥାନରେ ଯେଉଁ Tata Hydro-electric Installation ଅଛି ସେଥିରୁ କେବଳ ମାତ୍ର 2 ଲକ୍ଷ kwt ଉପଯୋଗ କରିବାକୁ 30 ବର୍ଷ ଲାଗିଥିଲା । ଯାମସେଦପୁରରେ ଯେଉଁ କାରଖାନା ମାନ ଅଛି ସେଥିରେ କେବଳ 1 ଲକ୍ଷ 30 ହଜାର kwt ବିଦ୍ୟୁତ୍ ଶକ୍ତିକୁ ପୁରାପୁରି ଭାବରେ ଉପଯୋଗ କରିବାପାଇଁ 40 ବର୍ଷ ଲାଗିଛି ଏବଂ ମହୀଶୂରରେ ଯେଉଁ ଜଳ ବିଦ୍ୟୁତ୍ ଯୋଜନା ଅଛି ସେଥିରେ ମାତ୍ର 60 ହଜାର kwt କୁ ଉପଯୋଗ କରିବା ପାଇଁ 45 ବର୍ଷ ଲାଗିଛି । ଆମର ଯେଉଁ 3½ ଲକ୍ଷ kwt ବିଦ୍ୟୁତ୍ ଶକ୍ତି ସଙ୍ଗେସଙ୍ଗେ ବାହାରି ପଡ଼ିବ ବୋଲି କୁହା ଯାଉଛି ତାକୁ ଉପଯୋଗ କରିବାପାଇଁ ଆମ ସରକାରଙ୍କର କଣ ଯୋଜନା ଅଛି ।

ଅନ୍ୟ କ୍ଷେତ୍ରରେ ଦେଖାଯାଉଛି ଯେ ସେହି ବିଷୟରେ ସରକାର ଏ ପର୍ଯ୍ୟନ୍ତ ପ୍ରାଥମିକ କାର୍ଯ୍ୟାନୁଷ୍ଠାନ କରିନାହାନ୍ତି । ଅପର ପକ୍ଷରେ ଦେଖାଯାଉଛି ଯେ lower power house ଏବଂ power channel ବାବଦ୍‌ରେ ଯେଉଁ କାର୍ଯ୍ୟାନୁଷ୍ଠାନ କରା ଯାଇଥିଲା, ତାକୁ 3 ବର୍ଷ ପର୍ଯ୍ୟନ୍ତ ସ୍ଥଗିତ ରଖି ଦିଆଯାଇଛି । ଏ ବିଷୟରେ ଆପଣଙ୍କ ଅନୁମତି ସହ Estimate Committee of the Central Water Power Commission and Multipurpose River Valley Scheme ର କେତେକ line ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ସେଥିରେ କୁହା ଯାଇଛି ଯେ ଏହି Lower Power House 1955-56 ପର୍ଯ୍ୟନ୍ତ

ରଖିଦିଆଯାଇଛି ଏବଂ ତାପରେ ଏ ବିଷୟରେ ବିସ୍ତାର ଜଣାଯିବ । ଏ ସମ୍ପର୍କରେ ଗତ ମାର୍ଚ୍ଚ Sessionରେ ଗୋଟିଏ ପ୍ରଶ୍ନର ଉତ୍ତରରେ ମାନ୍ୟବର ମୁଖ୍ୟମନ୍ତ୍ରୀ କହିଥିଲେ ଜମି acquire କରିବା, ଅନ୍ୟାନ୍ୟ ଘରଦ୍ୱାର ଏବଂ ବନ୍ଧ ତିଆରି ବାବଦ୍‌ରେ ଟଙ୍କା ଖର୍ଚ୍ଚ ହେବ । କିନ୍ତୁ ଜଣାଯାଇଛି, hydro-electric machine ଆଣିବା ବାବଦ୍‌ରେ 2 କୋଟି ଟଙ୍କା ଖର୍ଚ୍ଚ ହୋଇଛି । ଏ ବାବଦ୍‌ରେ ମୁଁ ପ୍ରଶ୍ନ ଦେଇନାହିଁ । ଏ ବିଷୟରେ ମାନ୍ୟବର ବିଭାଗୀୟ ମନ୍ତ୍ରୀ ପ୍ରକୃତ ତଥ୍ୟ ତାଙ୍କ ଉତ୍ତର ଦେଲାବେଳେ କହିଲେ ଆମେ ବାଧିତ ହେବୁ । 1955-56 ପର୍ଯ୍ୟନ୍ତ ଯଦି ଏହା ଗ୍ଲିଯାଏ, ସେଥିରେ ଏ ପର୍ଯ୍ୟନ୍ତ ଯାହା ଖର୍ଚ୍ଚ ହୋଇଛି, ପୁଣି ନୂତନ ଖର୍ଚ୍ଚ ଯେ କରିବାକୁ ପଡ଼ିବ, ସେ ବିଷୟରେ ସନ୍ଦେହ ନାହିଁ । ଏ ଗଲା irrigation ଏବଂ electricity ବିଷୟରେ । Flood Control ବିଷୟରେ ମୁଁ କହିବି ଯେ Flood control ଯାହା କୁହାଯାଉଛି ତାର ପରିଣାମ କେବଳ ଏତିକିହେବ ଯେ ଉପକୂଳ ଅଞ୍ଚଳରେ ଯେଉଁ ବନ୍ୟା ବର୍ଷକୁ ବର୍ଷ ହେଉଛି, ସେହି ବନ୍ୟା ଅନେକାଂଶରେ ସମାଧାନ ହୋଇପାରିବ ବୋଲି ବିଶେଷଜ୍ଞମାନେ କହିଛନ୍ତି । କିନ୍ତୁ ତା ବଦଳରେ ହୀରାକୁଦ ଅଞ୍ଚଳରେ ଗୋଟିଏ ଚିରସ୍ଥାୟୀ ବନ୍ୟା ସମସ୍ୟାର ସୃଷ୍ଟି କରାଯିବ । ଏହିସବୁ ବିଷୟରେ ମୋର କହିବାର ଉଦ୍ଦେଶ୍ୟ ହେଉଛି ଯେ ସରକାର ଯେଉଁ 92 କୋଟି ଟଙ୍କା ଖର୍ଚ୍ଚ କରିବାକୁ ଯାଉଛନ୍ତି ସେ ବିଷୟରେ ଆମ ଦରିଦ୍ର ଓଡ଼ିଶା ଦେଶର ବାର୍ଷିକ ଆୟ ବର୍ତ୍ତମାନ 10 କୋଟି ଟଙ୍କା । ଆମେ ଯଦି ଏପରି କୌଣସି ନିର୍ଦ୍ଦିଷ୍ଟ, ସୁଚିନ୍ତିତ ଯୋଜନା ନକରୁ, ଯାହାଫଳରେ ଆମର ହୀରାକୁଦ ହେବା ପରେ ଆମେ ଯେଉଁ ସାମାନ୍ୟ ସଂପତ୍ତି ପାଇବୁ ଯେଉଁ electricity generate ହେବ ଏବଂ ଯେଉଁ canal ବାହାରିବ, ତାକୁ ସଙ୍ଗେସଙ୍ଗେ ପ୍ରୟୋଗ କରିବାର ଉପଯୁକ୍ତ ଏବଂ ତୁରନ୍ତ ବ୍ୟବସ୍ଥା ଯଦି ନକରୁ ତାହେଲେ ମୁଁ ଭାବୁଛି ଏହା ଆମର ବୋଝ ଉପରେ ନଳିତା ବିଡ଼ା ହେବ ଏବଂ ଆମେ ଯେଉଁ କ୍ଷତିର ଆଶଙ୍କା କରୁଥାଇ ସେ କ୍ଷତି ବହୁତ ପରିମାଣରେ ବଢ଼ିଯିବ । ଉଦାହରଣ-ସ୍ୱରୂପ ମୁଁ କହିବି ଯଦି କୌଣସି ବଡ଼ ବଡ଼ hydro-electric machine ଅଣାଯାଏ, ଆପଣ ଜାଣିଥିବେ ପ୍ରତ୍ୟେକ machineର ଗୋଟିଏ wears & tears ଥାଏ । Depreciation ବାବଦରେ ଖର୍ଚ୍ଚ ହୁଏ । ଯଦି ଆମେ ବଡ଼ ବଡ଼ ମେସିନ୍ ଆଣି ତାକୁ ସଂପୂର୍ଣ୍ଣ ଉପଯୋଗୀ ନ କରିପାରିବା, ତେବେ ଏଥିରେ depreciation ବାବଦ୍‌ରେ ଯେତେ ଖର୍ଚ୍ଚ ହେବ ତଦ୍ୱାରା ଆମକୁ ଅନେକଗୁଡ଼ିଏ କ୍ଷତି ସହିବାକୁ ପଡ଼ିବ । ଏହା ଫଳରେ ଏହି 92 କୋଟି ଟଙ୍କା ଏବଂ ତାର ଯେଉଁ ସୁଧ, ତା ଉପରକୁ ଯେ ଆମ ଉପରେ ଆହୁରି କେତେ ବୋଝ ପଡ଼ିବ, ସେ ବିଷୟରେ ଆଜିଠାରୁ କୌଣସି କଳ୍ପନା କରିହେଉ ନାହିଁ । ସେହିପରି Irrigation ବାବଦ୍‌ରେ ମଧ୍ୟ ସେହି ପ୍ରକାର ଯେଉଁ machine ଆସିବ, ତହିଁର କୌଣସି ସୁଚିନ୍ତିତ ଯୋଜନା ଯଦି ନହୁଏ, ତାହେଲେ ମୁଁ ଭାବୁଛି ଯେ ପୂର୍ବରେ coast canal ବାବଦ୍‌ରେ Sir Arthur Cottonଙ୍କ ପରିକଳ୍ପନା ଯେପରି ଯଥେଷ୍ଟ ପରିମାଣରେ ଲାଭପ୍ରଦ ହୋଇପାରି ନଥିଲା, ସେହିପରି ହୀରାକୁଦ ଅଞ୍ଚଳରେ ମଧ୍ୟ ହେବାର ଆଶଙ୍କା ରହିଛି । ତାପରେ ମୁଁ ଏହି ସଭା ଗୃହରେ ଅନେକ ଥର ଏ ଯେଉଁ ହୀରାକୁଦ ତିଆରି ହେଉଛି, ତାର ଭିତିରି ଖର୍ଚ୍ଚ ପ୍ରଣାଳୀ ବିଷୟରେ ଆଲୋଚନା

କରିଛି । ସେହି ଯାଗାରେ କିପରି ଭବରେ ଅର୍ଥର ବିରଟ ଅପବ୍ୟୟ ଘୁଲିଛି, ସେ ବିଷୟରେ ଆପଣଙ୍କର ଏବଂ ସରକାରଙ୍କ ଦୃଷ୍ଟି ଅନେକ ଥର ଆକର୍ଷଣ କରିଛି । ଆଗଥର ମାନଙ୍କପରି ଏଥର ମଧ୍ୟ ଯେଉଁ କେତେକ ପ୍ରଶ୍ନଥିଲ, ସେଠାରେ ଯେଉଁ ବିରଟ ଅପବ୍ୟୟ ଘୁଲୁଛି ତହିଁର ନିଦର୍ଶନ ମାତ୍ର ଥିଲ । ସରକାର ହୁଏତ ଭବୁଛନ୍ତି ଏବଂ ମୋତେ ଦୁଃଖର ସହିତ କହିବାକୁ ପଡୁଛି ଯେ ଜଣେ ମାନ୍ୟବର ମନ୍ତ୍ରୀ ମଧ୍ୟ ଏହି ରକମ ସୂଚନା ଦେଇଥିଲେ ଯେ ଯେତେବେଳେ ଏ ପ୍ରକାର ଗୋଟିଏ ବିରଟ କାରବାର ଘୁଲିଛି, କୋଟି କୋଟି ଟଙ୍କା ଯେଉଁଠାରେ ବ୍ୟୟ ହେଉଛି ସେଠାରେ ଆପଣ ଯଦି 3/4 କିମ୍ବା 10ଟା ଅପବ୍ୟୟର ଦୃଷ୍ଟାନ୍ତ ଦେଖାଇଲେ ତା ହେଲେ ଆମକୁ ଧରିନେବାକୁ ହେବ ଯେ ବଡ଼ ବଡ଼ ଯୋଜନାରେ ଏହିପରି ହେବା ସ୍ୱାଭବିକ ଯେତେବେଳେ ଏଡ଼େ ବଡ଼ ଗୋଟାଏ ବିରଟ କାମ ହେଉଛି, ଅପବ୍ୟୟ କେତେ ବା ହେବ, ଗୁଡ ପର୍ବତରୁ ପିମ୍ପୁଡ଼ିମାନେ ଗୁଡ଼ ଖାଇ ଖାଇ କେତେ ଖାଇବେ । କିନ୍ତୁ ମୁଁ ସରକାରଙ୍କୁ ସ୍ପଷ୍ଟ ଭବେରେ ଜଣାଇ ଦେବାକୁ ଋହେଁ ଯଦି ଏହିପରି ଭବରେ ଋଲେ ଏ ଅପବ୍ୟୟ ମୋଟେ ବନ୍ଦ ହେବନାହିଁ । ଦୃଷ୍ଟାନ୍ତ ସ୍ୱରୂପ ମୁଁ କହିବି ଯେ ଭତହାଣ୍ଡିରୁ ଯେପରି ସବୁ ଗୁଡ଼ିକ ନ ଚିପି ଗୋଟିଏ ମାତ୍ର ଚିପାଯାଏ ଏବଂ ସବୁ ଚିପିବା ଯେପରି କୌଣସି ସୁପକାର ପକ୍ଷରେ ସମ୍ଭବ ନୁହେଁ, ସେହିପରି ଭତହାଣ୍ଡିରୁ କେବଳ ସାମାନ୍ୟ କେତେଗୁଡ଼ିଏ ମାତ୍ର ଚିପିକରି ଦେଖାଉଛି । ବାକୀ ଭତ ବିଷୟରେ ଧାରଣା କରିବା ଓ ଭତ ଗାଳିଦେବା ଦାୟିତ୍ୱ ସରକାରଙ୍କର । ତେବେ ଏ ବିଷୟରେ ଯେଉଁ ଅପବ୍ୟୟ ହେଉଛି ସେହି ଦୃଷ୍ଟାନ୍ତ ସଙ୍ଗେ ଯଦି ଧାରଣା କରଯାଏ ଯେ ଟଙ୍କା ଅପବ୍ୟୟ ତୁଳନାରେ ଜମିର ଅପବ୍ୟୟ କେତେ ହେଉଛି ତାହା ଯଦି ଆପଣ ଟିକିଏ ଅନୁଧ୍ୟାନ କରି ଦେଖିବେ ତାହାହେଲେ ଆହୁରି ବିସ୍ମିତ ହେବେ । ସ୍କୁଲ ପିଲଙ୍କ ଗୋଟିଏ ମୋଟର ଗାଡ଼ି ନେଇ ଯଦି ବାର୍ଷିକ 18 ହଜାର ଟଙ୍କା ଖର୍ଚ୍ଚ ହେଉଥାଏ ଏବଂ ଏହା ନିଶ୍ଚିତ କଥା ଏ ବିଷୟରେ ମୋର ଗୋଟିଏ ପ୍ରଶ୍ନର ଉତ୍ତରରେ ସରକାର କହିଥିଲେ ଯେ ସେଥିରେ ପିଲମାନଙ୍କୁ ନେବାଛଡ଼ା ଅଫିସର-ମାନେ ମଧ୍ୟ ଅଫିସକୁ ଯାନ୍ତି । ମୁଁ କିନ୍ତୁ କହିବି ଏହା ଅନ୍ୟାନ୍ୟ ଅନେକଗୁଡ଼ିଏ କାର୍ଯ୍ୟରେ ଲଗୁଛି ଯଥା ସିନେମା ଦେଖିଯିବା, କଚେରୀକି ଯିବା ଇତ୍ୟାଦି । କିନ୍ତୁ ସେ ମୋଟର ବିଶେଷ ଭବରେ କେବଳ ସ୍କୁଲ ପିଲଙ୍କୁ ନେବା ଆଣିବାପାଇଁ ଉଦ୍ଦିଷ୍ଟ । ଏହି କାର୍ଯ୍ୟରେ ଯଦି 18 ହଜାର ଟଙ୍କା ଖର୍ଚ୍ଚ ହେଉଥିବା କୁହାଯାଏ, ସେଥିରେ ଆପଣ ବିସ୍ମିତ ହୋଇ ପାରନ୍ତି । ମୁଁ ବିସ୍ମିତ ନୁହେଁ । ଯେଉଁଠାରେ ହସ୍‌ପିଟାଲରେ ବାର୍ଷିକ 21 ହଜାର ଟଙ୍କା ଔଷଧ ବାବଦରେ ବ୍ୟୟ ହେଉଛି ବୋଲି କୁହାଯାଏ ଏବଂ ଗୋଟିଏ ମଟର ଭ୍ୟାନରେ ପେଟ୍ରୋଲ ବ୍ୟବହାର ଟ 7,200ଙ୍କା ଖର୍ଚ୍ଚ ହେଉଛି ବୋଲି କୁହାଯାଏ, ସେଥିରେ ଆପଣ ବିସ୍ମିତ ହେବେ; ମୁଁ ନୁହେଁ । କିନ୍ତୁ ମୁଁ ଅତି ବିସ୍ମିତ ହୁଏ ଯେଉଁ ସମୟରେ କୁହାଯାଏ ଯେ ବୁର୍ଲାରେ ଯେଉଁଠି କି କେବଳ 2/4 ଘର ତିଆରି ହୋଇଛି ଏବଂ ଆଜି ଗୋଟିଏ ପ୍ରଶ୍ନର ଉତ୍ତରରେ ମାନ୍ୟବର ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଏହି ଘରପାଇଁ କେବଳ 2 ଲକ୍ଷ 37 ହଜାର ମାତ୍ର ଇଟା ଖର୍ଚ୍ଚ ହୋଇଛି, ସେଥିପାଇଁ 23 ଲକ୍ଷ ଇଟା ପୋଡ଼ାଯାଇଛି ଏବଂ ତାହା ପୋଡ଼ାଇବାପାଇଁ

23 ଏକର ଗ୍ରଷ ଜମି ଦରକାର ହୁଏ, ସେଥିରେ ଆପଣ ବିସ୍ମିତ ନ ହୋଇ ପାରନ୍ତି, ଯେଉଁମାନେ ଗ୍ରଷ ନ କରୁଛନ୍ତି; ସେମାନେ ନ ହୋଇ ପାରନ୍ତି । କିନ୍ତୁ ଯେଉଁମାନେ ଗ୍ରଷୀ, ବିଶେଷତଃ ଏହି ଖାଦ୍ୟ ଅନାଟନ ଯୁଗରେ ସେମାନେ ଶୁଣି ବିସ୍ମିତ ହେବେ । ଏ ବିଷୟରେ ଆପଣଙ୍କ ଦୃଷ୍ଟି ଗୋଟିଏ ପ୍ରଶ୍ନପ୍ରତି ଆକର୍ଷଣ କରିବି । ଆଜି ମୋର ଶ୍ରଦ୍ଧେୟ ବନ୍ଧୁ ଅଟାବିଗର ମାନ୍ୟବର ସଭ୍ୟ ଗୋଡ଼ଉଗାରେ ଇଟାମାଟି ବାବଦରେ ଯେଉଁ ପ୍ରଶ୍ନ ପଗ୍ରରିଥିଲେ, ସେ ବିଷୟରେ ମୁଁ ଦୁଇବର୍ଷ ତଳେ 7-12-1950ରେ ଗୋଟିଏ ପ୍ରଶ୍ନ ପଗ୍ରରିଥିଲି ଯାହାର ଉତ୍ତରରେ କୁହାଯାଇଥିଲା ଯେ ଗୋଡ଼ଉଗାରେ ଗ୍ରଷ ଜମି ବାବଦରେ 23 ଏକରରୁ ଊର୍ଦ୍ଧ୍ୱ ଜମି ଚିରଦିନପାଇଁ acquire କରାଯାଇଛି ଏବଂ ସେହି ସମୟରେ କେତୋଟି ଘର ତିଆରି ହୋଇଛି ବୋଲି ପଗ୍ରରିବାରୁ ତହିଁର ଉତ୍ତର ଦେଇପାରି ନ ଥିଲେ । ଆଜି ସୁଖର କଥା ତହିଁର ଉତ୍ତର ଦେଇ କହିଛନ୍ତି ଯେ ସେ ବାବଦ୍‌ରେ 2 ଲକ୍ଷ 37 ହଜାର ଇଟା ଖର୍ଚ୍ଚ ହୋଇଛି । ମୁଁ କେବଳ ଏତିକି ମାତ୍ର କହିବାକୁ ଗ୍ରହେଁ ଯେ ସମ୍ବଲପୁରରେ ପଡ଼ିଆ ଜମିର ଅଭାବ ନଥିବା ସ୍ଥଳେ ଏ ଖାଦ୍ୟ ଅନାଟନ ଯୁଗରେ 23 ଲକ୍ଷ ଇଟାପାଇଁ ଯଦି 23 ଏକର ଜମି ସବୁଦିନ ପାଇଁ acquire କରାଯାଏ, ତାହା ଯେ କେଡ଼େ ଗୁରୁତର ବ୍ୟାପାର ତାହା ଯେଉଁମାନେ ଗ୍ରଷୀ ଏବଂ ଯେଉଁମାନଙ୍କର ଜମି ଅଛି ସେମାନେ ସ୍ପଷ୍ଟଭାବରେ ବୁଝିପାରୁଥିବେ । ଏହା କେବଳ ଗୋଟିଏ ମାତ୍ର ଉଦାହରଣ । ମୁଁ ପୁଣି ସରକାରଙ୍କୁ ଅତି ନମ୍ରତାର ସହିତ କହିବି ଯେ ସେ ଏହି ଗୋଟିଏ, ଦୁଇଟି ଉଦାହରଣରୁ ଭାବନ୍ତୁ ନାହିଁ ଯେ ଆଉ କୌଣସିଠାରେ ଏପରି ହେଉ ନାହିଁ । ଏଥିପାଇଁ ବାରମ୍ବାର ଦାବୀ ହୋଇ ଆସିବା ଫଳରେ ସରକାର ଗୋଟିଏ ପୁନର୍ବସତି ପରାମର୍ଶଦାତା କମିଟି ଗଢ଼ିଥିଲେ । ସେ କମିଟି ପରାମର୍ଶ ଦେଲେ ଯେ ଯେଉଁ ଜମି ସରକାର ବ୍ୟବହାର କରୁନାହାନ୍ତି ବା ଯେଉଁ ଜମି Dam ପାଇଁ ଦରକାର ହେଉନାହିଁ ସେ ଜମିକୁ ଗ୍ରଷୀମାନଙ୍କୁ ଦେଇଦେବା ଉଚିତ୍ । ସେହି ଗୋଟିଏ ମାତ୍ର resolutionପାଇଁ ସରକାର ସେ କମିଟିକୁ ଭାଙ୍ଗିଦେଲେ, ତାଙ୍କ ପରାମର୍ଶ ଗ୍ରହଣ କଲେନାହିଁ । କେବଳ ସେତିକି ନୁହେଁ ଏହି ପ୍ରକାର ଅନେକ ଜାଗାରେ ଯେ କେତେ ଜମି ଲୋକସାନ କରି ଦିଆଯାଉଛି ତାର ଇୟତା ନାହିଁ । ଆଉ ଗୋଟିଏ ମାତ୍ର ଉଦାହରଣ ଦେବି, ତା ହେଉଛି ଯେ କୃଷି ଫାର୍ମ ବିଷୟରେ; ଗତ ମାର୍ଚ୍ଚ sessionରେ ଗୋଟିଏ ପ୍ରଶ୍ନ ପଗ୍ରରିଥିଲି ଯେ ଯେତେବେଳେ ଗୋଟିଏ ଆଦର୍ଶ କୃଷି ଫାର୍ମ ପାଇଁ ଜମି acquire କଲେ, ଜଣେ Special officer ନିଯୁକ୍ତ କଲେ । କିନ୍ତୁ ଏଇ Special officer ନିଯୁକ୍ତି ହେବାର ମାସେ ଦୁଇ ମାସ ମଧ୍ୟରେ ତାଙ୍କୁ ବଦଳି କରି ଦିଆଗଲା ଏବଂ ସେହି କୃଷି ଫାର୍ମର ଜିମା ଜଣେ Engineerଙ୍କ ହାତରେ ଦିଆଗଲା । ସେଇ Engineer ବର୍ତ୍ତମାନ ସେଇ ଫାର୍ମ ମାରଫତରେ ଅଛନ୍ତି । ଏବଂ ସରକାରଙ୍କର ଯେତେବେଳେ କୌଣସି ଲୋକ ସେ ବିଷୟରେ କୌଣସି ଦାୟିତ୍ୱ ନେଉ ନାହାନ୍ତି, ତାର ଖର୍ଚ୍ଚ କିଛି ବୁଝୁ ନାହାନ୍ତି ବା ସେଥିରୁ କଣ ଆଦାୟ ହେଲା କିଛି ପାଉନାହାଁନ୍ତି, ସେ ସମୟରେ ସରକାରଙ୍କର ଉଚିତ ଥିଲା ଏ ପ୍ରକାର ଜମି ଯେଉଁ ଲୋକମାନଙ୍କର ସେମାନଙ୍କୁ ତାହା ଫେରାଇ ଦେବା । କିନ୍ତୁ ପ୍ରତିବାଦ ସତ୍ତ୍ୱେ

ଏ ସମ୍ବନ୍ଧରେ କୌଣସି ପ୍ରତିକାର ହେଉନାହିଁ । ସବୁ କିଛି ଆମେ ଯାହା ଭାବୁଛୁ ସରକାର ତାକୁ ମୂଲ୍ୟହୀନ ବୋଲି ମନେ କରୁଛନ୍ତି । ସେଠି ଯେତେ ଲୁଟ ଚାଲିଛି, ଯେତେ ଅର୍ଥର ଅପବ୍ୟୟ ହେଉଛି ତହିଁ ପ୍ରତି ସରକାର ଉଦାସୀନ ରହିଛନ୍ତି । ସେଠାରେ ଯେଉଁ ସବୁ ମୂଲ୍ୟବାନ ସମସ୍ୟା ଉପୁଜିଛି ତାକୁ ସରକାର ଖୁବ୍ ଅଳ୍ପ କରି ଭାବୁଛନ୍ତି । ସେଥିପ୍ରତି ସେମାନେ ଢେର ଉଦାସୀନ ରହିଛନ୍ତି । ତାର କାରଣ ସ୍ୱରୂପ ମୁଁ କହୁଛି, ସରକାର ଯେଉଁ ନୂଆ ଆଇନ କରିଛନ୍ତି ତାର ଫଳ ସ୍ୱରୂପ ଯେଉଁ ଜମି ସ୍ୱଳ୍ପ ମୂଲ୍ୟରେ ବିକ୍ରି ହେବା କଥା, ଯେଉଁ ଜମି ସାଧାରଣ ବଜାରରେ ବିକ୍ରି ହୋଇଥିଲେ ବହୁତ ଦାମ ହୋଇଥାନ୍ତା, ସରକାର ଏହି ନୂଆ ଆଇନ କରିବା ଦ୍ୱାରା ତାକୁ ମୁଁ ଗଲ ବଜେଟ ଭାଷଣରେ ଯେପରି କହିଥିଲି ତାକୁ ଟମ୍ପା ମୂଲ୍ୟରେ Acquire କରି ନେଉଛୁ ଏବଂ ସେହି ଜମିକୁ ଅନ୍ୟ ଲୋକମାନଙ୍କଠାରେ ସହସ୍ର ସହସ୍ର ଗୁଣରେ ପଟ୍ଟା ଦେଉଛନ୍ତି । ସଭାପତି ମହାଶୟ, ମୁଁ କହିବିଯେ ଯଦି ଆପଣ ଗୋଟିଏ ଜିନିଷକୁ ମୋଠାରୁ ଟଙ୍କାକରେ ନେଇ କରି ଅନ୍ୟ ଜଣକୁ ସେଇ ଜିନିଷ 1,600 ଟଙ୍କାରେ ବିକ୍ରି କରନ୍ତି କିମ୍ବା ଟ 1,200ଙ୍କାରେ ବିକ୍ରି କରନ୍ତି ଏଇଟା black marketing ହେବ କି ନାହିଁ ମୁଁ କହିପାରୁନାହିଁ । ସେହିପରି ଯେଉଁ ଜମିକୁ ଆମଠୁ ଏକଟଙ୍କା ମୂଲ୍ୟରେ ନେଉଛନ୍ତି ସେଇ ଜମିକୁ ଯଦି ଅନ୍ୟ ଲୋକମାନଙ୍କୁ ହଜାରେ କିମ୍ବା 1,200 ଟଙ୍କା ମୂଲ୍ୟରେ ଦେଉଥାନ୍ତି ତାହାହେଲେ ତାକୁ କଣ କୁହାଯିବ ମୁଁ କହିପାରୁଁନାହିଁ । କିନ୍ତୁ କାର୍ଯ୍ୟ ହେଉଛି ସେଇଆ । ଯେଉଁ ଗରିବ ଲୋକେ ଯେଉଁମାନଙ୍କର ଏହି ଜମିବାଡି ଏକମାତ୍ର ଆଶା ଭରସା ସେମାନଙ୍କଠାରୁ ଜମି ହୁଏତ ଆଜକୁ 5/6 ବର୍ଷ ହେଲା Acquire ହୋଇ ସାରିଲାଣି ଏବଂ ସେହି ଜମି Acquire ବାବଦରେ ଆଜି ପର୍ଯ୍ୟନ୍ତ କୌଣସି କ୍ଷତିପୂରଣ ସୁଦ୍ଧା ଦିଆଯାଇ ନାହିଁ କିମ୍ବା ଦିଆ ଯାଉନାହିଁ । ଯେତେବେଳେ ପଚରା ଯାଉଛି ସେ ସମୟରେ ତାର ପ୍ରତିକାର ସ୍ୱରୂପ କିମିତି ଆହୁରି ବିଳମ୍ବ ହେବ ସେ କାମରେ, ତାର ଉପାୟ ସୃଷ୍ଟି କରାଯାଉଛି । ସଭାପତି ମହାଶୟ, ଏଇ ଯେଉଁ ନୂଆ Land Acquisition Rule ହୋଇଛି ତାର ଧାରାମାନ ଆପଣ ପଢିଥିବେ । ଏଥିରେ ଗୋଟିଏ ନିୟମ ଅଛି, ଯେତେବେଳେ ଜଣକର ଜମି Acquire କରାଯିବ ଏଇଟା Speedy Acquisition ପାଇଁ ହେଉଛି—ସେତେବେଳେ ତାଠାରୁ ନିଶ୍ଚୟ ସେ ଯାଗା ନିଆଯିବ । ଏଇଟା ଯେପରି ସରକାରଙ୍କର ଗୋଟିଏ କର୍ତ୍ତବ୍ୟ ବୋଲି ସେମାନେ ବୁଝୁଛନ୍ତି ମୁଁ କହେ ଯେ ଯଦି ସରକାର ଅତି ଚଞ୍ଚଳ ଜଣେ ଲୋକଠାରୁ ଜମିବାଡ଼ି ନେବାକୁ ଚାହୁଁଛନ୍ତି, ଯେଉଁ ଲୋକମାନଙ୍କର ଜମି ନିଆଗଲା, ଯେଉଁମାନଙ୍କର ଏକ ମାତ୍ର ଆଶା ଭରସା ଜମି ବାଡ଼ିକୁ କାଢି ନିଆଗଲା, ସେମାନଙ୍କୁ ଅତି ସୁବିଧାରେ ଓ ଖୁବ୍ ଶୀଘ୍ର ଯେପରି କ୍ଷତିପୂରଣ ଦିଆଯିବ, ସେଟାକୁ ମଧ୍ୟ ସରକାର ନିଜର ପ୍ରଧାନ କର୍ତ୍ତବ୍ୟ ବୋଲି ମନେ କରିବା ଉଚିତ୍ । ଯଦି ଏଇ କ୍ଷତିପୂରଣ ନେଇ ଲୋକମାନେ ଅମେଳ ହୁଅନ୍ତି ଏବଂ ସରକାର ଯେଉଁ ଦରରେ କ୍ଷତିପୂରଣ ଦିଅନ୍ତି ସେ ଦରରେ ନେବାକୁ ସେମାନେ ପ୍ରସ୍ତୁତ ନୁହନ୍ତି ତେବେ ସେଥିପାଇଁ ଯେଉଁ ଆଇନଗତ ବ୍ୟବସ୍ଥା ରହିଛି ସେଟା ଅତିଶୀଘ୍ର କରିବା ଦରକାର । ମାତ୍ର କାର୍ଯ୍ୟକ୍ଷେତ୍ରରେ ଆମେ ଦେଖୁଛୁ ଯେ ସେଟା ଯେପରି ସେମାନେ

ନପାଇବେ ଏବଂ ଲୋକେ ଯେପରି ଅଭାବରୁ ସ୍ୱଭାବ ନଷ୍ଟ ହୋଇ ଶେଷରେ କମ ଦରରେ ନେବାକୁ ଯେମିତି ବାଧ୍ୟ ହେବେ ସେପରି ନାନା ରକମର ଅନ୍ୟାୟ ଓ ଅବୈଧ ପନ୍ଥା ଅବଲମ୍ବନ କରାଯାଉଛି । ମୁଁ କେବଳ ଗୋଟିଏ ମାତ୍ର ଉଦାହରଣ ଦେବାକୁ ଚାହେଁ ଯେ ଏଇ ଯେଉଁ ନୂଆ ଆଇନ ହୋଇଛି, ତାର ନବମ ଧାରାରେ ଅଛି ଯେ ଜଣେ ଲୋକ ଯଦି ସରକାର ଦରରେ ଅସନ୍ତୁଷ୍ଟ ହେଲା ତାହାହେଲେ ସେ ତାକୁ କେବଳ ସାତଦିନ ମାତ୍ର ସମୟ ଦେବେ । ସେ ସେହି ସମୟ ମଧ୍ୟରେ ତାର ଆପତ୍ତି ଜଣାଇପାରେ ଯେ ସେ ସରକାର ଦରରେ ଅସନ୍ତୁଷ୍ଟ ଏବଂ ଏଇଟା Arbitrator ପାଖକୁ ପଠାଯାଉ । ଏହି Arbitrator ପାଖକୁ ପଠାଯିବାପାଇଁ ଅନେକଗୁଡ଼ିଏ ଦରଖାସ୍ତ 1950 ସାଲରୁ ଦିଆଗଲାଣି । ସେଗୁଡ଼ିକ ପ୍ରଥମେ Land Acquisition officerଙ୍କ ପାଖରେ ଦିଆଯାଏ । ତାପରେ ସରକାରଙ୍କ ପାଖକୁ ଆସେ । ତାପରେ Arbitratorଙ୍କ ପାଖକୁ ଯିବାର କଥା । କିନ୍ତୁ ସେଇ Land Acquisition ଅଫିସରଙ୍କ ଯୋଗୁଁ ହେଉ—ସେ ବୋଧହୁଏ ଭାବିଛନ୍ତି ଏଗୁଡ଼ିକ କିପରି ସରକାରଙ୍କଠାରେ ନ ପଡ଼ୁ ଏବଂ ଏଥିପାଇଁ ସରକାରଙ୍କ ତରଫରୁ ତାଙ୍କୁ ବାହାବା ଦିଆ ଯାଉଛି । ଏଥି ଯୋଗୁଁ ଅନେକ ସମୟ ବିତିଗଲା ଏହି Arbitrator ନିଯୁକ୍ତ କରିବାରେ । କେବଳ ସେତିକି ନୁହେଁ 1951 ସାଲ ଜାନୁଆରୀ ମାସରେ ମୁଁ ଯେତେବେଳେ ଏ ବିଷୟରେ ପ୍ରଶ୍ନ ପଚାରିଥିଲି ସେତେବେଳେ ଏହି ଯେଉଁ 1950 ସାଲ ମଇ ଓ ଅଗଷ୍ଟ ମାସରେ ଯେଉଁ Arbitration Petition ପଡ଼ିଥିଲା ସେଇଟା ପ୍ରଶ୍ନର ଉତ୍ତର ଦେଲାବେଳେ ନକହି ଲୁଚାଇ ଦେଲେ । ଏହିସବୁ ବିଷୟରେ କେବଳ ଯେ ବିଳମ୍ବେ କାର୍ଯ୍ୟସିଦ୍ଧି ହୁଏ ବୋଲି ଭାବି ଲୋକଙ୍କର ସନ୍ତୋଷ ହେଉ ବା ନହେଉ ସେଥିପ୍ରତି ଭ୍ରୂକ୍ଷେପ ନକରି ସରକାର ଏହି ବିଳମ୍ବକୁ ପ୍ରକୃଷ୍ଟ ପନ୍ଥା ବୋଲି ଠିକ୍ କରିଛନ୍ତି । ଏ ବିଷୟରେ ସତକୁ ମଧ୍ୟ ଚାଲି ଦିଆଯାଉଛି । ଏ ବିଷୟରେ ଯେତେବେଳେ ଗତବର୍ଷ ବଜେଟ ଅଧିବେଶନରେ ମୁଁ ସରକାରଙ୍କର ସମାଲୋଚନା କରିଥିଲି କେବଳ Land Acquisition ବାବଦରେ ନୁହେଁ, ପୁନର୍ବସତି ବାବଦରେ ମଧ୍ୟ । ପୁନର୍ବସତି ସମସ୍ୟା ଏହି କ୍ଷତିପୂରଣ ସମସ୍ୟାଠାରୁ ଆହୁରି ଗୁରୁତର । ମୁଁ ଏହା ପୂର୍ବରୁ ଯାହା କହିଛି ସରକାର କିପରି ପୁନର୍ବସତି ପାଇଁ କୌଣସି ବ୍ୟବସ୍ଥା ନକରି 38 ଖଣ୍ଡ ଗାଁରୁ ଲୋକମାନଙ୍କୁ ଛାଡ଼ି ଯାଅ ବୋଲି କହୁଛନ୍ତି, ସେଇ ବିଷୟରେ ମୁଁ ପୂର୍ବରୁ ଯାହା କହିଛି ତାର ଆଉ ପୁନରାବୃତ୍ତି କରିବା କୌଣସି ଦରକାର ନାହିଁ । ଏହା କାହିଁକି କୁହାଯାଉଛି ? ଲୋକମାନଙ୍କ ମନରେ ଦିନେ ଗୋଟିଏ ଆଶା ଦିଆଯାଇଥିଲା ଯେତେବେଳେ ପ୍ରଥମକରି ଏହି ହୀରାକୁଦ ବନ୍ଧ ପ୍ରସ୍ତାବ ହୁଏ, ସେତେବେଳେ ଆଶା ଦିଆଯାଇଥିଲା, ସେମାନଙ୍କ ପାଇଁ ପୁନର୍ବସତି ବ୍ୟବସ୍ଥା କରାଯିବ ବୋଲି, ଆଜି ଠିକ୍ ତାର ଓଲଟା କାମ ହେଉଛି ଏବଂ ନାନାପ୍ରକାର ଯୁକ୍ତି ଦେଖାଇ ଦିଆହେଉଛି । ସରକାର କହୁଛନ୍ତି ଯେ କେତେଜଣ ଓକିଲ, କେତେଜଣ ଗୌନ୍ତିଆ, କେତେଜଣ ସ୍ୱାର୍ଥପର ବ୍ୟକ୍ତି ସେମାନଙ୍କୁ ନିଜ ସ୍ୱାର୍ଥସିଦ୍ଧି ପାଇଁ ଲୋକଙ୍କୁ ଭୁଲ ବାଟରେ ନେଉଛନ୍ତି ତା ସଙ୍ଗେସଙ୍ଗେ ପୁଣି କହୁଛନ୍ତି ଏ ଯେଉଁ ତଥାକଥିତ ନେତା, ତଥାକଥିତ ଗୌନ୍ତିଆ ଏବଂ ତଥାକଥିତ ସ୍ୱାର୍ଥପର ଲୋକଙ୍କ ପ୍ରଲୋଭନରେ ପଡ଼ି

ଲୋକମାନେ ସରକାରଙ୍କ କଥାକୁ ମାନୁଛନ୍ତି, କିନ୍ତୁ ତଥାପି କାହିଁକି ଲୋକମାନେ ସେହି ପୁନର୍ବସତି କେନ୍ଦ୍ରକୁ ଯାଉ ନାହାନ୍ତି ? ଏ ବିଷୟରେ ଯେତେବେଳେ କୌଣସି କଥା ପଚରା ଯାଉଛି ସେତେବେଳେ ଠିକ୍ ଓଲଟା ବିଷୟ ଜବାବ୍ ଦେଉଛନ୍ତି ଯେ ସେମାନେ ବେଶୀ ତ ରୋଜଗାର କରି ପାରିବେ ନାହିଁ, ପୁନର୍ବସତି କେନ୍ଦ୍ରକୁ ଆସିବେ କେମିତି ? କିନ୍ତୁ ପ୍ରକୃତ କଥା ତା ନୁହେଁ । ଗୋଟିଏ ନିର୍ଦ୍ଦେଶ ଦିଆଯାଇଛି ଯେ ତୁମେ ଘରଛାଡ଼ି ପୁନର୍ବସତି କେନ୍ଦ୍ରକୁ ଚାଲିଯାଅ । ଆଉ ସେମାନେ ଯଦି ପୁନର୍ବସତି କେନ୍ଦ୍ରକୁ ନ ଯାନ୍ତି ତେବେ ଓକିଲମାନଙ୍କ ସଙ୍ଗରେ, ଗୋତିଆମାନଙ୍କ ସଙ୍ଗରେ, ତଥାକଥିତ ନେତାମାନଙ୍କ କଥାରେ ପଡ଼ିଯାଉ ନାହାନ୍ତି ବୋଲି କହୁଛନ୍ତି । ସରକାର ପୁଣି କହୁଛନ୍ତି ଯେହେତୁ ସେମାନେ ଏଠାରେ ବେଶୀ ମଜୁରୀ ପାଉଛନ୍ତି ସେଠାକୁ ଗଲେ ବେଶୀ ମଜୁରୀ ପାଇବେ ନାହିଁ । ଏଠି ବେଶୀ ରୋଜଗାର କରୁଛନ୍ତି । ସେଠି ବେଶୀ ରୋଜଗାର ହେବନାହିଁ । ସେଥିପାଇଁ ସେମାନେ ଯାଉ ନାହାନ୍ତି । କିନ୍ତୁ ଏଇଟା ଠିକ୍ ନୁହେଁ । ମୁଁ ଅତି ନମ୍ରତାର ସହିତ କହିବି ସେଠି ମୂଲିଆ ଲୋକ ଥାଇ ପାରନ୍ତି, କିନ୍ତୁ ସେହିସବୁ ଗ୍ରାମର ଅଧିକାଂଶ ଲୋକଙ୍କର ଜୀବୀକା ହେଲା କୃଷି, ଆଉ କୃଷିବିନା ସେମାନଙ୍କର ଜୀବୀକା ନିର୍ବାହ କରିବା ଛଡ଼ା ଅନ୍ୟ ଉପାୟ ସେମାନେ ଶିଖିନାହାନ୍ତି । ଏହି ପ୍ରକାର ପ୍ରଚାର ଫଳରେ ସେମାନଙ୍କ ମନରେ ନୈରାଶ୍ୟ ଭାବ ଜାତ ହୋଇଛି । ସେଥିପାଇଁ ମୁଁ କହିବି ଯେ ଯଦି ସରକାର ଏ ପ୍ରକାର ଧୂଆଁବାଣ ସୃଷ୍ଟି ନ କରି ପ୍ରକୃତରେ ଲୋକମାନଙ୍କୁ ସାହାଯ୍ୟ ସହାନୁଭୂତି ଦେବାକୁ ଆଗ୍ରହାନ୍ୱିତ ହୁଅନ୍ତି ତେବେ ଏ ପ୍ରକାର ଅସାମଞ୍ଜସ୍ୟ ଯୁକ୍ତିମାନ ଅବତାରଣା ନ କରି ଲୋକଙ୍କର ସାହଚର୍ଯ୍ୟ ଓ ସହଯୋଗ ଖୋଜନ୍ତି, ତାହେଲେ ଅନେକ ବେଶୀ କାମ ହୋଇପାରନ୍ତା । ଦୁଇଦିନ ତଳେ ମୋର ଜଣେ ମାନ୍ୟବର ବନ୍ଧୁ ଏ ବିଷୟରେ ପ୍ରଶ୍ନ ପଚାରିଥିଲେ, ତାର ଉତ୍ତରରେ ସରକାର କହିଥିଲେ ଯେ ଲୋକେ ପୁନର୍ବସତି ସ୍ଥାନକୁ ଯିବାପାଇଁ ପ୍ରସ୍ତୁତ ନୁହନ୍ତି । ମୁଁ ଜାଣେ ବ୍ୟକ୍ତିଗତ ଅଭିଜ୍ଞତାରୁ ଜାଣେ, ଯାହା କି ମୁଖ୍ୟମନ୍ତ୍ରୀ ଏ ପର୍ଯ୍ୟନ୍ତ ଜାଣି ନାହାନ୍ତି । ଦୁଃଖର କଥା ଷଡ଼ିଜୁଗ ଗ୍ରାମର ଲୋକଙ୍କୁ ସାଙ୍ଗମେଲ ପୁନର୍ବସତି ଅଞ୍ଚଳକୁ ଯିବାକୁ କୁହାଗଲା । ସେମାନେ ସେଠାକୁ 2/3 ଥର ଯାଇ ସେଠାକାର ଅଫିସରଙ୍କୁ ପଚାରିଲେ ଯେ, ଆମକୁ କେଉଁ ଜମି ଦେବେ କହନ୍ତୁ ଓ ସେଇ ଜମିକୁ ଆମ ନାମରେ ପଟ୍ଟା କରିଦେବା ପରେ ଆମେ ଏଠାକୁ ଆସିବାପାଇଁ ବନ୍ଦୋବସ୍ତ କରିବୁ । କିନ୍ତୁ ସରକାର କହୁଛନ୍ତି ଯେ ତୁମେ ପ୍ରଥମେ ଆସି ଏଠାରେ ଘରଦ୍ୱାର କରି ରୁହ । ତାପରେ ଆମେ ତୁମକୁ ଜମିଦେବା ବନ୍ଦୋବସ୍ତ କରିବୁ । ଏଇଟା ସେହି ନୀତି, ଯେଉଁ ନୀତିରେ କି ଶୃଗାଳ ଗୋଟିଏ ହାତୀକୁ ପଙ୍କିଳ ସରୋବରରେ ସେ ନେଇ ପକାଇ ଦେଇଥିଲା ଯେପରି କି ସେଠୁ ସେ ବାହାରି ନ ପାରିବ । ସେହିପରି ସେହି ଗାଁ ଲୋକଙ୍କୁ କୁହା ଯାଉଛି ଯେ ବର୍ତ୍ତମାନ ଘର ତିଆରି କର, କିନ୍ତୁ ସରକାର ଆଜି ପର୍ଯ୍ୟନ୍ତ ଲୋକଙ୍କ ପ୍ରତି ଯେଉଁପରି ବ୍ୟବହାର କରିଛନ୍ତି, ସେହି ପ୍ରକାରେ ସେହି ଲୋକଙ୍କୁ ଯେ ବ୍ୟବହାର ନ କରାଯିବ ତାର ସ୍ଥିରତା କଣ ? ସରକାର ହୁଏତ କହିବେ ଯେ ଆମେ ଯେଉଁ ହିସାବରେ କଳ୍ପନା କରିଛୁ, ଆମେ ଯେଉଁ ହିସାବରେ କହିବୁ ସେହି ହିସାବରେ ଚଳିବାକୁ ହେବ । ସେତେବେଳେ ସେମାନେ ସେଠି ରହିଯାଇଥିବେ,

ତେଣୁ ତାଙ୍କ କଥା ଅନୁଯାୟୀ ଜମି ନେବାକୁ ବାଧ୍ୟ ହେବେ। ସରକାରଙ୍କ ଦୃଷ୍ଟିରୁ ଏ ଗୋଟିଏ ଭଲ ପୁନର୍ବସତି କେନ୍ଦ୍ର। ପ୍ରତ୍ୟେକ ଅଞ୍ଚଳର ଲୋକଙ୍କୁ ଡାକି ଏହି ପୁନର୍ବସତି କେନ୍ଦ୍ର ଦେଖାଉଛନ୍ତି। କିନ୍ତୁ ସେମାନଙ୍କୁ କୁହାଯାଉଛି ଏଇଟା ଦେଖ। କିନ୍ତୁ ରଖିବାର ଅଧିକାର ତୁମର ନାହିଁ। ଏଇଠି ତୁମେ ରହିବ କି ନାହିଁ ସେଟା ପରେ ବୁଝାଯିବ। ଏହି ପ୍ରକାରେ ଯଦି ବ୍ୟବହାର କରଯାଏ ସରକାର ଯେପରିଭବରେ ଲୋକଙ୍କର ସହଯୋଗ ଭିକ୍ଷା କରୁଛନ୍ତି ତାହା କଣ ସମ୍ଭବ ହେବ ? ଯଦି ସେମାନେ ଲୋକଙ୍କଠାରୁ ସହଯୋଗ ଆଶା କରନ୍ତି ସେମାନେ ସରଳ ବ୍ୟବହାର କରିବା ଉଚିତ୍। ସମ୍ବଲପୁର ଲୋକେ ଅତି ସରଳ ବିଶ୍ୱାସୀ ଓ ନିରୀହ ଏବଂ ସେମାନଙ୍କ ପ୍ରତି ଏଇ ଗତ ୬ ବର୍ଷ ଧରି ଯେପରି ଭବରେ ବ୍ୟବହାର କରାଯାଉଛି ତାହା ଅତି ଲଜ୍ୟାର କଥା। ସେମାନେ ଜମିବାଡ଼ି ଘରଦ୍ୱାର ସବୁ ହରାଇବାକୁ ଯାଉଛନ୍ତି। ସେମାନଙ୍କୁ ଯେପରି ଭବରେ ପ୍ରତିଶ୍ରୁତି ଦିଆହୋଇଥିଲ ଏବଂ ଯେପରି ଭବରେ ବ୍ୟବହାର କରାଯାଉଛି ତାହା ଦେଖିଲେ, ତାହା ଶୁଣିଲେ ବିସ୍ମିତ ହେବାକୁ ହୁଏ। ଏ ବିଷୟରେ ଆହୁରି ଅନ୍ୟାନ୍ୟ ଅନେକ ବକ୍ତା କହିବେ। କିନ୍ତୁ ଆଉ ଗୋଟିଏ ଦୁଇଟି ବିଷୟ ସଂକ୍ଷିପ୍ତ ଭବରେ କହି ମୁଁ ଶେଷ କରିବି।

ପ୍ରଥମରୁ ମୁଁ ଗୋଟିଏ ପ୍ରଶ୍ନ ପଚାରିଥିଲି ଯେ ଏହି ହୀରାକୁଦ କଣ୍ଟ୍ରୋଲ ବିଷୟରେ ଗୋଟିଏ Enquiry Committee ବସା ଯାଇଥିଲ ଯେଉଁଥିରେ କି Mr. Makelire ଯେ କି କେନ୍ଦ୍ରପୂର୍ତ୍ତ ବିଭଗର ବିଶେଷଜ୍ଞ, Mr. C. M. Bennett ଯେ କି ପୂର୍ବରୁ ଓଡ଼ିଶାର Chief Engineer ଥିଲେ ଏବଂ Mr. P. C. Padhi ଏହି ତିନିଜଣଙ୍କୁ ନେଇ ଗୋଟିଏ ବିଶେଷଜ୍ଞ Committee ବସା ଯାଇଥିଲ। ସେ ବିଶେଷଜ୍ଞ Committee ଏ ମଧ୍ୟରେ ଗୋଟିଏ ରିପୋର୍ଟ ଦେଇଛନ୍ତି ଯାହାକି ଗୋଟିଏ ସମ୍ବାଦ ପତ୍ରର news itemରେ ବାହାରିଛି। ସେଥିରୁ ଦେଖାଯାଉଛି ଦୁଇଜଣ ବିଶେଷଜ୍ଞ Engineer ମତ ପ୍ରକାଶ କରିଛନ୍ତି ଯେ ଏହି ଯେଉଁ ହୀରାକୁଦ Dam execute କରହେଉଛି ଏଥିରେ ଯେଉଁ Financial Advisor ରହିଛନ୍ତି ସେଥିରେ ତାଙ୍କର କଣ୍ଟ୍ରୋଲ ଥିବା ଫଳରେ ଏବଂ ସେ ବିଷୟରେ କେତେକ audit ଇତ୍ୟାଦି କରିବା ଫଳରେ କାର୍ଯ୍ୟରେ ବାଧା ଆସୁଛି ଏବଂ ସେମାନେ ପରାମର୍ଶ ଦେଇଛନ୍ତି ଏହିସବୁ Financial Advisorଙ୍କର କୌଣସି କର୍ତ୍ତୃତ୍ୱ ସେଥିରେ ନ ରହୁ। କିନ୍ତୁ ଏହା ଦୁଃଖର କଥା କି ସୁଖର କଥା ମୁଁ କହି ପାରିବି ନାହିଁ। ଏଥିରେ ଜଣେ ତୃତୀୟ ସଭ୍ୟ ରହିଛନ୍ତି ଯେ କି ହେଉଛନ୍ତି ଜଣେ ଓଡ଼ିଆ ଏବଂ ଯେ କି କେନ୍ଦ୍ର ସରକାରରେ ଅତି ଉଚ୍ଚପଦ ଲଭ କରିଛନ୍ତି ସେ କିନ୍ତୁ ମତ ଦେଇଛନ୍ତି ଯେ Financial Advisorଙ୍କ control ଏଥିରୁ ଉଠାଇଦେବା ସମୀଚୀନ ହେବନାହିଁ, ଆମର ଓଡ଼ିଶା ସରକାରଙ୍କର ଅର୍ଥମନ୍ତ୍ରୀ ତାଙ୍କର ଭଷଣରେ କହିଲେ ଆମର ଯେଉଁ Spending Departmentମାନ ଅଛି ଯେଉଁଥିରେ କି କର୍ମଚାରୀ-ମାନଙ୍କ ଦାୟିତ୍ୱ କେବଳ ଖର୍ଚ୍ଚ କରିବାର ଅଛି ସେ ସବୁଥିରେ ଗୋଟିଏ brake ବା

control ରଖିବା ଦରକାର, ସେ ଗୋଟିଏ ପ୍ରସ୍ତାବ ଦେଇଛନ୍ତି ପ୍ରତ୍ୟେକ ବଡ଼ ବଡ଼ Spending Department ପାଇଁ ଗୋଟିଏ ଲେଖାଏଁ Financial Advisor ରଖିବା ଦରକାର । ପୂର୍ବରୁ ହୀରାକୁଦ ପାଇଁ Financial Advisor ନଥିଲେ । ଏହି ଗୃହରେ ବାରମ୍ବାର ସମାଲୋଚନା ହେବା ଫଳରେ ଏବଂ ହୀରାକୁଦରେ ଯେଉଁ ଅପବ୍ୟୟ ହେଉଛି ତା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ ହେବା ଫଳରେ ୧୯୪୯ ମସିହାରେ ହୀରାକୁଦ ପାଇଁ ଜଣେ Financial Advisor ନିଯୁକ୍ତ ହେଲେ । ତାଙ୍କର କଣ୍ଟ୍ରୋଲ ଥିବା ସତ୍ତ୍ୱେ ,ଆମେ ଯେଉଁ ଅପବ୍ୟୟ ଦୃଷ୍ଟାନ୍ତମାନ ପଢ଼ୁଛୁ ଏବଂ ସରକାରଙ୍କଠାରୁ ଶୁଣୁଛୁ ତହିଁରେ ବିସ୍ମିତ ହେବାକୁ ହୁଏ । ଏପରି ଅବସ୍ଥାରେ ତାକୁ ଯଦି ଉଠାଇ ଦିଆଯାଏ ତାହେଲେ ମୁଁ ଭାବୁଛି ସେଠି ଯେଉଁ କର୍ତ୍ତୃପକ୍ଷ କାର୍ଯ୍ୟାନୁଷ୍ଠାନ କରୁଛନ୍ତି ଯାହାକୁ C. W. and P. C. Central Water Power ଅନୁଷ୍ଠାନ କରୁଛନ୍ତି ତାହା ବଦଳରେ ହୁଏତ ମୋର ଆଶଙ୍କା ହେଉଛି ତାହା Criminal Wastage and Plunder Commission ଅନୁଷ୍ଠାନରେ ପରିଣତ ହୋଇଯିବ । ଏହି ବିଷୟରେ ଖବର କାଗଜରେ କୁହାଯାଇଛି କେନ୍ଦ୍ର ସରକାର ଆମର ପ୍ରାଦେଶିକ ସରକାରଙ୍କ ସଙ୍ଗେ ପରାମର୍ଶ କରୁଛନ୍ତି ।

ମୁଁ ସରକାରଙ୍କୁ ନମ୍ରତାର ସହିତ କହିବି ଏହି ବିଷୟରେ ଯେପରି ଉପଯୁକ୍ତ Financial Control ରହେ ସେଥିପତି ସେମାନେ ସତର୍କ ହେବେ, ତାପରେ ଆହୁରି କେତେକ ବିଷୟ ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବି । ଭାରତ Parliament ତରଫରୁ ଯେଉଁ Estimate Committee ବସିଥିଲା ତାଙ୍କର ରିପୋର୍ଟ ପ୍ରତି ପ୍ରଥମେ ଆପଣଙ୍କର ଦୃଷ୍ଟି ଆକର୍ଷଣ କରିବି । ସେଥିରେ ଏଇ ଯେଉଁ Financial Advisor, ତାଙ୍କର ଦାୟିତ୍ୱ ବଢ଼ାଇ ଦେବା ଉଚିତ ବୋଲି ପରାମର୍ଶ ଦେଇଛନ୍ତି । ସେମାନେ କହିଛନ୍ତି (Passage 38 of the Estimates Committee's Report) "It is necessary that a Financial Advisor of sufficient seniority with sufficient authority and having a large number of discretion to decision on the spot should be posted to the organisation" ତା' ପରେ ସେମାନେ ଦର୍ଶାଇଛନ୍ତି ଏହିପରି ପରିଚାଳନାରେ କିପରି ବିଶୃଙ୍ଖଳା ହେଉଛି । ସେଇଟ paragraph 17ରେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି ।

ମୁଁ ସେଥିରୁ ଆଉ ବେଶୀ ଉଦ୍ଧୃତ ନକରି ଏ ଗୃହର ସମୟ ନଷ୍ଟ କରିବାକୁ ଯାଉନାହିଁ । କିନ୍ତୁ ସେଥିରୁ ସ୍ପଷ୍ଟ ଜଣାପଡୁଛି ଯେଉଁମାନେ ସେଠି କାର୍ଯ୍ୟ କରୁଛନ୍ତି, ଯେଉଁମାନେ ସବୁଠାରୁ ଉଚ୍ଚତମ ଅଫିସର ସେମାନେ ଯେପରି ବିଶୃଙ୍ଖଳା, ଯେପରି ଅଯୋଗ୍ୟତା ଦେଖାଇଛନ୍ତି ଯାହା ଫଳରେ କି ସେଠାରୁ ସେମାନଙ୍କୁ ପରିବର୍ତ୍ତନ କରିବାକୁ ବାଧ୍ୟ କରାଯାଉଛି । ତାହା ଅତି ଦୁଃଖର ବିଷୟ ଏବଂ ଏହି ହୀରାକୁଦ ଯୋଜନାର

କିଭଳି ଭବରେ ପ୍ରଗତି ହେବ ସେ ବିଷୟରେ ମୋ ମନରେ ସମୟ ସମୟରେ ସନ୍ଦେହ ହେଉଛି । ତାପରେ ମୁଁ କହିବି ଏହି ହୀରାକୁଦରେ ଯେଉଁ କାର୍ଯ୍ୟ ହେଉଛି, ବରାବର ଏବଂ ବାରମ୍ବାର ଆପତ୍ତି ହେଉଛି । ଏଥିରେ ଆମର ଓଡ଼ିଶା ପ୍ରଦେଶର କର୍ମଚାରୀ ଏବଂ ଶ୍ରମିକମାନେ ଯେଉଁ ପରିମାଣରେ ସ୍ଥାନ ପାଇବାର କଥା ସେ ପରିମାଣରେ ପାଉନାହାନ୍ତି । ସେମାନେ ଯେତେ ଯୋଗ୍ୟ ହୁଅନ୍ତୁ ପଛକେ ସେଠାକୁ ଗଲେ ଅଯୋଗ୍ୟ ବୋଲି ପ୍ରମାଣିତ ହେଉଛନ୍ତି । ଏ ବିଷୟରେ ମୁଁ ପୁନରାବୃତ୍ତି କରିବାକୁ ଯାଉନାହିଁ । କେବଳ ଏତିକି ମାତ୍ର କହି ଦେବାକୁ ଚାହେଁ—ଅବଶ୍ୟ କଥାଟା ସତ୍ୟ କି ମିଥ୍ୟା ମୁଁ ଜାଣେନାହିଁ ସେଟା ସରକାର କହିବେ—ଜଣେ Engineer ଯେ କି ଯଥେଷ୍ଟ ପାରଗ ତାଙ୍କୁ ଗତ ୬ ମାସ ହେଲ ଆମ State Serviceରୁ ହୀରାକୁଦ Serviceକୁ ପରିବର୍ତ୍ତନ କରିବା ପାଇଁ ସରକାର ଚେଷ୍ଟା କରୁଛନ୍ତି । କିନ୍ତୁ ୬ ମାସ ମଧ୍ୟରେ ସଫଳ ହୋଇ ପାରିନାହାନ୍ତି । ମୁଁ କହିବି ଆମ ସରକାରଙ୍କର ଯେଉଁମାନେ ଖୁବ୍ ଯୋଗ୍ୟ ବୋଲି ବିବେଚିତ ହେଉଛନ୍ତି ଆମ State Serviceରେ ସେ ପ୍ରକାର Engineer, Overseer ଏବଂ ଉଚ୍ଚତମ କର୍ମଚାରୀ ଯଦି ଯଥେଷ୍ଟ ସଂଖ୍ୟାରେ ସେଠାକୁ ନ ଯାଆନ୍ତି, ତାହେଲେ ଆମର ହୀରାକୁଦରୁ ଆମେ ଯେଉଁ ପରିମାଣରେ ଲଭ ପାଇବାର କଥା ଏବଂ ସେଥିରେ ଆମେ ଯେଉଁ ପରିମାଣରେ ଦାୟିତ୍ୱ ନେବାର କଥା, ସେ ଲଭ ଆମେ ପାଇପାରୁ ନାହୁଁ କି ସେ ଦାୟିତ୍ୱ ପାଇଁ ଆମେ କେବେହେଲେ ଯୋଗ୍ୟ ହୋଇ ପାରିବୁ ନାହିଁ । ଯଦି ଆମର ଅଫିସରମାନେ ବର୍ତ୍ତମାନ ଅଯୋଗ୍ୟ ବୋଲି, inexperience ବୋଲି, ସେଠାରେ ଅବହେଳିତ ହେଉଛନ୍ତି ଏବଂ ସେଠାରେ unwanted ଭବରେ ରହିଛନ୍ତି ଏବଂ ଯଦି ତାହା ପ୍ରକୃତ ସତ୍ୟ ହୋଇଥାଏ, ଯଦି ସେମାନଙ୍କୁ ଆଜିଠାରୁ ସରକାର training ଦେବାପାଇଁ ବାଧ୍ୟ ନକରନ୍ତି ତା ହେଲେ ଆମେ ଆଉ କେବେ ଯୋଗ୍ୟ ହେବା ? ଏ ବିଷୟରେ ସରକାରଙ୍କର ଯେଉଁ ଦାୟିତ୍ୱ ରହିଛି, ଯେଉଁ କର୍ତ୍ତବ୍ୟ ରହିଛି, ସେ ଦାୟିତ୍ୱ, ସେ କର୍ତ୍ତବ୍ୟ ସରକାର ଆଜି ପର୍ଯ୍ୟନ୍ତ ତୁଲାଇପାରି ନାହାନ୍ତି । ମୁଁ ଆଶା କରୁଛି ଭବିଷ୍ୟତରେ ଏ ପ୍ରକାର passive ବା ନିର୍ବିକାର ମନୋବୃତ୍ତି ନ ଧରି ଯେପରି ଆମର ଲୋକେ ସେ ଯୋଜନାର ଦାୟିତ୍ୱରେ ତାଙ୍କର ନାର୍ଯ୍ୟ ଅଂଶ ପାଇବେ ସେଥିପାଇଁ ସରକାର ଯଥେଷ୍ଟ ଦୃଷ୍ଟି ଦେବେ । ତାପରେ ଶେଷରେ ସରକାରଙ୍କୁ ଆଉ ଗୋଟିଏ ଅନୁରୋଧ କରିବି । ଆମେ ଏ ଯୋଜନାରେ ବହୁତ ଅର୍ଥ ବ୍ୟୟ କରୁଛୁ ଯାହା ଫଳରେ କି ଆମକୁ ଅନେକ ଦିନ ପର୍ଯ୍ୟନ୍ତ ଋଣଗ୍ରସ୍ତ ହୋଇ ରହିଯିବାକୁ ହେବ, ଯାହା ଫଳରେ କି ଆମେ ଯେଉଁ ସମସ୍ୟାର ସମାଧାନ ପାଇଁ ଏହି ଯୋଜନା ଉପରେ ବିଶେଷ ଗୁରୁତ୍ୱ ଦେଉଛୁ ସେ ସମସ୍ୟାର ସମାଧାନ ନ ହୋଇ ସେ ସମସ୍ୟା ଆହୁରି ଜଟିଳ ଓ ଗରୁତର ହେବ । ସମସ୍ୟାଟି ହେଉଛି ଅଧିକ ଖାଦ୍ୟ ଉତ୍ପାଦନ ସମସ୍ୟା । ୧୯୪୭ରେ ଯେତେବେଳେ ଏହି ଯୋଜନା ଆରମ୍ଭ ହୁଏ ସେତେବେଳେ କଥା ଥିଲ ଯେ ଏଥିରେ ୮୪,୯୬୦ ଏକର cultivable lands ବା ଚାଷଯୋଗ୍ୟ ଜମି ପାଣିରେ ବୁଡ଼ିଯିବ ।

କିନ୍ତୁ ବର୍ତ୍ତମାନ ଏହି ବର୍ଷ ପରେ ଦେଖାଯାଉଛି ଯେ ସେ ରୁଷଜମି ପରିମାଣ ପ୍ରାୟ ଦୁଇଗୁଣ ହୋଇଯାଇଛି ଅର୍ଥାତ ୧,୪୨,୨୯୦ ଏକର ହୋଇଛି । ମୁଁ ସରକାରଙ୍କୁ ଅନୁରୋଧ କରିବି ଆମର ଏ ପ୍ରକାର ଅନିଶ୍ଚିତ ଭବିଷ୍ୟତ ଥିବା ସତ୍ତ୍ୱେ ଏବଂ ଆମର ଏହି ଯେଉଁ ଗୁରୁତ୍ୱଦାୟିତ୍ୱ ପ୍ରାୟ ୯୨ କୋଟିରୁ ଅଧିକ ଟଙ୍କାର ଦାୟିତ୍ୱ ନେବାକୁ ପଡୁଥିବା ଦୃଷ୍ଟିରୁ ଏଇଟା କଣ ସମ୍ଭବ ହୁଅନ୍ତା ନାହିଁ । ଯଦି ଏପ୍ରକାରର ଗୋଟିଏ ବିରାଟ ଯୋଜନା ଯାହାକୁ କି ନିଶ୍ଚିତ ବୋଲି ଏପର୍ଯ୍ୟନ୍ତ ନିଶ୍ଚୟ କରାଯାଇ ପାରୁନାହିଁ ଏବଂ ଯେଉଁଥି ପାଇଁକି Mazumdar Committee ନାମରେ ଗୋଟିଏ କମିଟି ବସା ଯାଇଥିଲା to examine the technological feasibility ଏବଂ ଯେଉଁ କମିଟିର ରିପୋର୍ଟ କି ଆଜି ପର୍ଯ୍ୟନ୍ତ ଲୋକ ଲୋଚନର ଅଗୋଚରରେ ରହିଛି ସେ ଅବସ୍ଥା ଦୃଷ୍ଟିରୁ ଆମେ ଏହି ପ୍ରକାର ଗୋଟିଏ ବିରାଟ ଯୋଜନାରେ ହାତ ନ ଦେଇ, ଅପେକ୍ଷାକୃତ କମ୍ ବ୍ୟୟରେ କମ୍ ଲୋକଙ୍କର ସର୍ବନାଶ କରି, କମ୍ ଯୋଜନା କରି, କମ୍ ଖର୍ଚ୍ଚ କରି ସମ୍ବଲପୁର ଭଳିଆ ଗୋଟିଏ ହୀରାକୁଦ ଯୋଜନା କରିହେବ କି ନାହିଁ ସେ ବିଷୟରେ ସରକାର ଧ୍ୟାନଦେବେ ।

## 1952-53 ବର୍ଷର ଛନିମାସିଆ ବଜେଟ ଉପରେ ଭାଷଣ

ହୀରାକୁଦ ବନ୍ଧ ନିର୍ମାଣରେ ଆରମ୍ଭରୁ ଯେଉଁ ଖର୍ଚ୍ଚର କଳନା କରାଯାଇଥିଲା, ତାହା କ୍ରମେ ବଢ଼ିବଢ଼ି ଚାଲିଥିଲା । ଏହି ପ୍ରକଳ୍ପର ଲାଭ ଅପେକ୍ଷା କ୍ଷତି ବେଶୀ ହେବ ଏବଂ ଯେତିକି ଖର୍ଚ୍ଚ କରାଯିବ, ସେହି ଅନୁପାତରେ ଆୟ ନ ହେବାର ଆଶଙ୍କା ରହିଛି ବୋଲି ଅନେକ ମତ ପ୍ରକାଶ କରୁଥିଲେ । ଋଣ କରି ଏପରି ବନ୍ଧ ନିର୍ମାଣ କରିବାକୁ ଡକ୍‌ଟର ସୂପକାର ଅପବ୍ୟୟ କହିଛନ୍ତି । ଓଡ଼ିଶା ବିଧାନସଭାରେ 1952 ମାର୍ଚ୍ଚ 17 ତାରିଖରେ କାଟ ପ୍ରସ୍ତାବ ଆଗତ କରି କହିଛନ୍ତି, "ଆମେ କେବଳ ଆଜି ପର୍ଯ୍ୟନ୍ତ tourist ବା ଦର୍ଶକ ମନୋବୃତ୍ତି ନେଇ ଦେଖୁଛୁ ହୀରାକୁଦରେ ଯେଉଁ ଅପବ୍ୟୟ ଚାଲିଛି ତାହା ଆୟବ୍ୟୟ ହିସାବ ବୁଦ୍ଧି, ଏହା ପାଇଁ କେତେକ ପରିମାଣରେ ଦାୟୀ । ଆମର ଲକ୍ଷ୍ୟ କରିବା ଉଚିତ୍ ଏବଂ ଗଭୀର ଭାବରେ ଚିନ୍ତା କରିବା ଉଚିତ୍" । ଅପବ୍ୟୟର ଦୃଷ୍ଟାନ୍ତ ଦେଇ ସେ କହିଛନ୍ତି ଯେ ଓଡ଼ିଶା ଜଙ୍ଗଲରେ କାଠର ଅଭାବ ନଥିଲେ ସୁଦ୍ଧା ପ୍ରାୟ 372 ହଜାର ଟଙ୍କା ମୂଲ୍ୟର ରେଲୱେ ସ୍ଲିପର ପଞ୍ଜାବରୁ ଅଣାଯାଇଥିଲା । ଆମ ପ୍ରଦେଶରେ ବଳଦ ଥିଲେ ସୁଦ୍ଧା ଗୋଟିଏ କୃଷି ଫାର୍ମ ପାଇଁ ସରକାରୀ ଖର୍ଚ୍ଚରେ ପଞ୍ଜାବରୁ ବଳଦ ଅଣାଗଲା । River Valley Development'ର କାର୍ଯ୍ୟ ଆଶାନୁରୂପ ହେଉ ନାହିଁ । ଆଗ ଏ ସବୁଥିରେ କର୍ମନିଷ୍ଠା ସୃଷ୍ଟି କରିବାକୁ ହେବ । ତେଣୁ ଡଃ ସୂପକାର କହିଛନ୍ତି, "ତେଣୁ ଏ ବିଷୟରେ ମୁଁ ଦୁଃଖର ସହିତ କହିବି ଯେ ଆମ ସରକାର ସଂପୂର୍ଣ୍ଣ ଭାବରେ ଉଦାସୀନ । ଉଦାସୀନତାକୁ ବର୍ଜନ କରି ଭବିଷ୍ୟତରେ ଯେପରି ଆମର କ୍ରମବର୍ଦ୍ଧମାନ ଋଣ ଭାର ଓ

ଅଯଥା ଖର୍ଚ୍ଚ କମା ହୁଏ ସେ ବିଷୟ ପ୍ରତି ସରକାର ବିଶେଷ ଦୃଷ୍ଟି ଦେବେ, ଏହା ଆଶା କରି ଏ କାଟ ପ୍ରସ୍ତାବ ଆଗତ କରୁଛୁ ।”

ସେହିପରି ପୂର୍ବରୁ ମାର୍ଚ୍ଚ 14 ତାରିଖରେ ବିଧାନସଭାରେ ଡକ୍ଟର ସୂପକାର କହିଛନ୍ତି ଯେ ଟ୍ୟାକ୍ସ ଆକାରରେ ଯେଉଁ ଟଙ୍କା ସରକାର ଆଦାୟ କରୁଛନ୍ତି, ତାର କିପରି ସଦୁପଯୋଗ ହେବ ଦେଖନ୍ତୁ । ମହାକବି କାଳିଦାସ ରଘୁବଂଶରେ ଦିଲୀପଙ୍କ ରାଜତ୍ୱ ପ୍ରସଙ୍ଗରେ ଯାହା କହିଛନ୍ତି ତାକୁ ଉଦ୍ଧାର କରି ଡଃ ସୂପକାର କହିଛନ୍ତି,

“ପ୍ରଜାନାମେବ ଭୂତ୍ୟର୍ଥଂ ତାଭ୍ୟୋଂ
ବଳିମଗ୍ରହୀତମ୍
ସହସ୍ର ଗୁଣ ମୁତ୍ସ୍ରଷ୍ଟୁଂ ମାର୍ଦରେ ହିଁ ରସଂରବିଃ”

ଯେପରି ସୂର୍ଯ୍ୟ ସମୁଦ୍ର ଓ ନଦୀମାନଙ୍କ ପାଣି ଶୁଖାଇ ଶେଷରେ ବର୍ଷାଦ୍ୱାରା ଲୋକଙ୍କର ଅନେକ ଉପକାର କରେ, ସେହିପରି ଆମ୍ଭମାନଙ୍କ ସରକାର ଆମ୍ଭମାନଙ୍କ ଠାରୁ ଯେଉଁ ଟଙ୍କା ନେଉଛନ୍ତି ସେଟାକୁ ଲୋକହିତକର କାର୍ଯ୍ୟରେ ବିନିଯୋଗ କରାଯିବା ଉଚିତ୍ ।” ଏହି ଶ୍ଳୋକ ପରିପ୍ରେକ୍ଷୀରେ ସରକାରୀ ଅପବ୍ୟୟକୁ ଡକ୍ଟର ସୂପକାର ସମାଲୋଚନା କରିଛନ୍ତି ।

## THE BUDGET

### Vote on Account—General Discussion of (contd.)

Shri SHRADDHAKAR SUPAKAR : ଏ ଯେଉଁ ବଜେଟ୍ ଉପସ୍ଥାପିତ କରାହୋଇଛି, ଏ ବିଷୟରେ ଦେଖିବାକୁ ଗଲେ ପ୍ରଥମ କଥା ଆମର ବିଚାର କରିବାକୁ ହେବ ଯେ, ଏ ଯେଉଁ ଖର୍ଚ୍ଚ ମଞ୍ଜୁର ପାଇଁ ଆମ୍ଭମାନଙ୍କ ସମ୍ମୁଖରେ ଏ ତାଲିକା ଉପସ୍ଥାପିତ କରାହୋଇଛି । ଏହା ଲୋକ ସାଧାରଣଙ୍କର ଉପକାର ପାଇଁ କେତେ ଦୂର କାର୍ଯ୍ୟକାରୀ ହେବ । ଆମ୍ଭମାନଙ୍କ ଠାରୁ tax ସ୍ୱରୂପରେ ହେଉ ବା ରେଭିନ୍ୟୁ ସ୍ୱରୂପରେ ହେଉ, ଯେଉଁ ଟଙ୍କା ଆଦାୟ କରାଯାଉଛି ଏବଂ ଯାହାର ମଞ୍ଜୁର ପାଇଁ ଏହି ବଜେଟ୍ ଉପସ୍ଥାପିତ କରାହୋଇଛି, ତାହାରି ତୁଳନାରେ ଯଦି ଆମ୍ଭେମାନେ ଉପକାର ପାଇ ନ ପାରିବା ତାହାହେଲେ ଏହି ବଜେଟ୍ ଗ୍ରେଣ୍ଟରେ ବିଶେଷ କିଛି ଆମ୍ଭେମାନେ ଲାଭବାନ ହୋଇପାରିବା ନାହିଁ । ଆମ୍ଭେମାନେ ନିଜେ Private enterprise ଓ ନିଜର ଚେଷ୍ଟାରେ ଯେତେ ଖର୍ଚ୍ଚ କରି ଯେତେ ଉପକାର ପାଇପାରନ୍ତୁ, ସରକାର ଆମ୍ଭମାନଙ୍କଠାରୁ ଯେଉଁ ଟଙ୍କା ନେଉଛନ୍ତି—ସେଟା ଗୋଟିଏ ବଡ organisation ଥିବା ଯୋଗୁଁ ଆଦାୟ ତୁଳନାରେ

ଆମ୍ଭମାନଙ୍କର ଉପକାର ବେଶୀ କରିବା କଥା—ମୁଁ ଏ ବିଷୟରେ କାଳିଦାସଙ୍କ ରଘୁବଂଶରୁ ଗୋଟିଏ ଉକ୍ତି କହୁଛି, ଦିଲ୍ଲୀପଙ୍କ ରାଜତ୍ୱ ବିଷୟରେ ସେ କହିଛନ୍ତି ଯେ,

"ପ୍ରଜାନାମେବ ଭୂତ୍ୟର୍ଥଂ ସ ତାଭ୍ୟୋ ବଳିମଗ୍ରହୀତମ୍,
ସହସ୍ର ଗୁଣ ମୁତ୍ସ୍ରଷ୍ଟୁଂ ମାଦତ୍ତେ ହି ରସଂ ରବିଃ ।"

ଯେପରିକି ସୂର୍ଯ୍ୟ, ସମୁଦ୍ର ଓ ନଦୀମାନଙ୍କ ପାଣି ଶୁଖାଇ ଶେଷକୁ ବର୍ଷାଦ୍ୱାରା ଲୋକଙ୍କର ଅନେକ ଉପକାର କରେ ସେହିପରି ଆମ୍ଭମାନଙ୍କ ସରକାର ଆମ୍ଭମାନଙ୍କଠାରୁ ଯେଉଁ ଟଙ୍କା ନେଉଛନ୍ତି ସେଟାକୁ ଲୋକହିତକର କାର୍ଯ୍ୟରେ ବିନିଯୋଗ କରିବା ଉଚିତ୍ । ଦୁଃଖର ବିଷୟ ଯେ ଆମ୍ଭେମାନେ ଦେଖୁଛୁ ଆମ୍ଭମାନଙ୍କର ଯେଉଁ ଆଦାୟ ହେଉଛି, ରେଭିନ୍ୟୁ ଯାହା ହେଉଛି ସେଟା ବେଶୀ କରି ଦରିଦ୍ରମାନଙ୍କଠାରୁ ଆଦାୟ କରାଯାଉଛି ଏବଂ ଯେଉଁ Sourceରୁ ଆମ୍ଭେମାନେ ଆଦାୟ କରିବାର କଥା ସେହିଠାରୁ ଆମ୍ଭେମାନେ ଯଥେଷ୍ଟ ଅର୍ଥ ଆଦାୟ କରିପାରୁନାହୁଁ । ଅନ୍ୟ ପକ୍ଷରେ ଯେଉଁ ସବୁ ବିଭାଗରେ ଖର୍ଚ୍ଚ ବେଶି ହେବାର କଥା ସେହି ସବୁ ଲୋକହିତକର ବିଭାଗରେ ସେତିକି ଅନୁପାତରେ ଖର୍ଚ୍ଚ ନ ହୋଇ ବାଜେ ବିଷୟରେ ଖର୍ଚ୍ଚ ହୋଉଛି । ସରକାର Welfare State କରିବାକୁ ଯାଇ କେବଳ Individual Stateରେ ଆମର ରାଜ୍ୟକୁ ପରିବର୍ତ୍ତିତ କରୁଛନ୍ତି, ମୁଁ କେତେକ ବିଶେଷ ବିଷୟ ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଆମର ଯେଉଁ ଆଦର୍ଶ Constitutionର Directive Policyରେ ଅଛି ସେହି ଆଦର୍ଶକୁ ଆମ୍ଭେମାନେ ଅତି ଶୀଘ୍ର କାର୍ଯ୍ୟରେ ପରିଣତ କରିବାର କଥା ଏବଂ ଏହି ଆଦର୍ଶକୁ କିପରି ଭାବରେ କାର୍ଯ୍ୟରେ ପରିଣତ କରିବା ସେହି ବିଷୟରେ ଗୋଟିଏ Planning Committee ଗଢା ଯାଇଛି ଓ ସେମାନଙ୍କର ଗୋଟିଏ ରିପୋର୍ଟ ପ୍ରକାଶ ପାଇଛି ଓ ସେହି ବିଷୟରେ ମୁଁ ଦେଖୁଛି ଯେ ଆମ ପ୍ରଦେଶ ପାଇଁ 15 କୋଟି ଟଙ୍କା ଭାରତ ସରକାର ଦେଇଛନ୍ତି । ଏହି ଟଙ୍କା କିପରି ଭାବରେ ଲୋକହିତକର କାର୍ଯ୍ୟରେ ନିଯୁକ୍ତ ହୋଇପାରିବ ଏବଂ ପରମ୍ପରା ଗତ ଅତୀତରେ ଯେପରି ବହୁଟଙ୍କା ଅପବ୍ୟୟ ହୋଇଛି ସେହିପରି ଭବିଷ୍ୟତରେ ମଧ୍ୟ ଯେପରି ଅପବ୍ୟୟ ନ ହୁଏ ଠିକଠିକ ଭାବରେ ବ୍ୟୟିତ ହୁଏ ଏବଂ ସେହି ଆୟ ତୁଳନାରେ ଲୋକଙ୍କର ଉପକାର ବେଶୀହୁଏ ସେହି ବିଷୟରେ ଆମ୍ଭ ସରକାର ଧ୍ୟାନ ଦେବାର କଥା । କାହିଁକି ନା ଏହି Five-years Planର ଆରମ୍ଭରେ ଏହି ନୂଆ Assembly ଆରମ୍ଭ ହୋଇଛି । ଯଦି ଆମ୍ଭେମାନେ ସମସ୍ତେ ଓ ସରକାର ଖୁବ ମନ ପ୍ରାଣ ଦେଇ ଆନ୍ତରିକତାର ସହ ଏହାକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରନ୍ତୁ ତାହା ହେଲେ ମୁଁ ଭାବୁଛି ଏଥିରେ ଆମ୍ଭେମାନେ ଅନେକ ଉପକାର ପାଇ ପାରିବା । ଆମ ରାଜ୍ୟରେ ଯେଉଁ ପ୍ରାକୃତିକ ସଂପଦ ରହିଛି ଯାହାକୁ ପୂର୍ଣ୍ଣ ଭାବରେ ଉପଯୋଗ କରିବାକୁ ଆମର ମହାମାନ୍ୟ ରାଜ୍ୟପାଳ ତାଙ୍କ ବକ୍ତବ୍ୟରେ ଉପଦେଶ ଦେଇଛନ୍ତି ଆଉ ବିଶେଷ କରି ମୁଁ ଭାବେ ଯେ ଆମ୍ଭମାନଙ୍କର ଏହି ପ୍ରାକୃତିକ ସମ୍ପଦକୁ ଯେପରି ଭାବରେ ଉପଯୋଗ କରିବାର କଥା ଆମ୍ଭେମାନେ

ତାହାର କୌଣସି ମୌଳିକ କାର୍ଯ୍ୟାନୁଷ୍ଠାନ ସୁଦ୍ଧା କରିପାରିନାହୁଁ । ଅନେକ ସୁବିଧା ଥାଇ କରି ମଧ୍ୟ ଆମ୍ଭେମାନେ କୌଣସି ଗଠନମୂଳକ କାର୍ଯ୍ୟ କରିପାରି ନାହୁଁ । କିନ୍ତୁ ଏହିପରି ଭାବରେ ଯଦି କୌଣସି ନା କୌଣସି କାରଣକୁ ଆଳ ଦେଖାଇ ଆମ୍ଭେମାନେ ଏହିପରି ଭାବରେ ଚାଲିଥିବା, ତାହାହେଲେ ଉନ୍ନତିର ଆଶା ସୁଦୂର ପରାହତ । ବିଶେଷତଃ ସରକାରଙ୍କ ଦୃଷ୍ଟି ଆମ୍ଭମାନଙ୍କର ଭୂସମ୍ପଦ ବା ଖଣିଜ ସମ୍ପଦ ଏବଂ ବନ୍ୟ ସମ୍ପଦ ବିଷୟ ପ୍ରତି ଆକର୍ଷଣ କରିବି । ଏହି ଖଣିଜ ସମ୍ପଦ ବିଷୟ ଗତ ଦୁଇ ତିନିବର୍ଷ ଧରି ବହୁ ସମାଲୋଚନା ହେଉଛି ଯେ ଏହି ବିଷୟରେ ସ୍ୱତନ୍ତ୍ର ବ୍ୟବସ୍ଥା କରଯାଉ ଯେପରିକି ସରକାରଙ୍କ କର୍ତ୍ତୃତ୍ୱ ବେଶୀ ରହିବ ଏବଂ ତାହାର ଲାଭ ଆମ୍ଭେମାନେ ବେଶୀ ପରିମାଣରେ ପାଇ ପାରିବା ସେ ବିଷୟରେ ଅନେକ ସମାଲୋଚନା ହୋଇଛି କିନ୍ତୁ ଦୁଃଖର ବିଷୟ ଏହି ବିଷୟରେ ପଦେ ହେଲେ ଅଗ୍ରସର ହୋଇ ପାରିନାହିଁ । ବନ୍ୟ ସମ୍ପଦ ବିଷୟରେ ସୁଦ୍ଧା ତଥୈବ । ସେଥିରେ ମଧ୍ୟ ଆମ୍ଭେ ଯେତେ ଖର୍ଚ୍ଚ କରୁଛୁ ତାହ ରି ତୁଳନାରେ ଆମ୍ଭମାନଙ୍କର ଆୟ ବଢୁ ନାହିଁ । Afforestation Scheme ବା ଆମର ବନ୍ୟ ସମ୍ପଦର କିପରି ଉନ୍ନତି ହେବ ସେ ବିଷୟରେ ଆମେ ଅଗ୍ରସର ହୋଇ ପାରୁନାହୁଁ । କୃଷି ବିଷୟରେ ମଧ୍ୟ ମୁଁ ଅନେକବାର ପୂର୍ବ ଆସେମ୍ବ୍ଲିରେ ଆଲୋଚନା କରିଛି ଯେ ଆମେ ଯେଉଁ ଅନୁପାତରେ ଖର୍ଚ୍ଚ କରୁଛୁ ସେହି ଅନୁପାତରେ ଫଳାଫଳ ପାଉନାହୁଁ ଏବଂ ଏହି ବିଷୟରେ କୌଣସି କାର୍ଯ୍ୟାନୁଷ୍ଠାନ ସୁଦ୍ଧା ଆମ୍ଭେମାନେ କରିନାହୁଁ ଏବଂ ଆମ୍ଭେମାନେ ଗଭୀର ଭାବରେ ଚିନ୍ତା କରୁନାହୁଁ ।

ତା'ପରେ ଆଉ ଗୋଟିଏ ବିଷୟ ପ୍ରତି ବିଶେଷ ଧ୍ୟାନ ଦେବାର କଥା ଯେ ଆମ୍ଭେମାନେ ଯେଉଁ ଆଦର୍ଶ ଧରି ଶିଳ୍ପକୁ ଜାତୀୟକରଣ କରିବା ଦିଗରେ ପ୍ରାଥମିକ କାର୍ଯ୍ୟାନୁଷ୍ଠାନ ସ୍ୱରୂପ Road Service, Passenger Bus Services ଯାହା 2/3 ବର୍ଷ ତଳେ ଆରମ୍ଭ କରିଥିଲୁ, ଗତ 2/3 ବର୍ଷ ମଧ୍ୟରେ ଆମ୍ଭର ଯେଉଁ ଅଭିଜ୍ଞତା ହୋଇଛି, ସେଥିରେ ମୋର ବ୍ୟକ୍ତିଗତ ମତ ସେ ଅଭିଜ୍ଞତା ବଡ଼ ତିକ୍ତ ଏବଂ ଯଦି ପ୍ରଥମରୁ ଆମେ ଏହି ଭାବରେ ଗତି କରୁ ତା'ହେଲେ ଆମର ଯେଉଁ ଆଦର୍ଶ ଆମେ ଯାହା ଭାବୁଛୁ ଯେ, ଜାତୀୟକରଣ ବା Nationalisation ଦ୍ୱାରା ଆମ୍ଭେମାନେ ଦେଶକୁ ସମୃଦ୍ଧ କରିବୁ ଏବଂ ଆମର ଯେଉଁ ଦୈନ୍ୟ ଏବଂ ଦୁର୍ଦ୍ଦଶା ସେ ସବୁ ଘୁଞ୍ଚାଇ ପାରିବୁ, ଲୋକଙ୍କ ଉପରୁ କରଭାର କମ୍ କରାଇବୁ ଏବଂ ଆମ୍ଭର ଜାତୀୟକରଣ ଦ୍ୱାରା ପ୍ରାକୃତିକ ସମ୍ପଦର ଆହୁରି ବେଶୀ ଅଭିବୃଦ୍ଧି ଭବିଷ୍ୟତରେ ହୋଇପାରିବ ଏବଂ ଦେଶକୁ ବିତ୍ତବଶାଳୀ କରିପାରିବା ବୋଲି ଯେଉଁ କଳ୍ପନା ଅଛି ତାହା ଆମର ପ୍ରାଥମିକ କାର୍ଯ୍ୟାନୁଷ୍ଠାନରୁ ସେହି ସ୍ୱପ୍ନ ଅଳୀକ ହେବାର ଆଶଙ୍କା କରାଯାଉଛି । ଏହି ବିଷୟରେ ଯଦି ଆମେ ପୂରାପୂରି ଭାବରେ ସତର୍କ ନ ରହୁ ଏବଂ ଏ ଯେଉଁ ଦୋଷତଟି ଦେଖାଦେଇଛି ସେ ବିଷୟରେ ଆମେ ଯଦି ଆଜିଠାରୁ ସତର୍କ ନ ରହୁ ତାହା ହେଲେ ଆମେ ଯେତେ ଯେତେ କାର୍ଯ୍ୟରେ ହାତ ଦେଇଛୁ ତାହା ଯେ ବିଫଳ ହେବ

ତାହାନୁହେଁ, ଭବିଷ୍ୟତରେ ଆମର ଅଗ୍ରସର ହେବାପାଇଁ ଯେଉଁ କଳ୍ପନା ଅଛି ସେ କଳ୍ପନା ମଧ୍ୟ କାର୍ଯ୍ୟରେ ପରିଣତ ହୋଇପାରିବ ନାହିଁ ।

ତା'ପରେ ବଡ ବଡ ଯୋଜନାର କଥା ଯଦି ଧରାଯାଏ ତାହାହେଲେ ହୀରାକୁଦ ଯୋଜନା ବିଷୟରେ ମୁଁ ଏ ସଭା ଗୃହରେ ସଭ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିଛି, ବର୍ତ୍ତମାନ ଆଉ ସମୟ ନାହିଁ ମୁଁ ଆଉ ବିଶେଷ ସମୟ ନେବାକୁ ଚାହୁଁ ନାହିଁ । କେବଳ ଗୋଟିଏ ଯୋଡ଼ିଏ କଥା ପ୍ରତି ମୁଁ ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରିବି । ହୀରାକୁଦ ବନ୍ଧ ହେବା ଫଳରେ ଆମ୍ଭେମାନେ ଯେଉଁ ଲକ୍ଷ ଲକ୍ଷ କିଲୋୱାଟ ବିଦ୍ୟୁତଶକ୍ତି ଉତ୍ପାଦନ ହେବ ସେଇ ବିଦ୍ୟୁତଶକ୍ତି କିପରି ପୂର୍ଣ୍ଣ ବିନିଯୋଗ କରିପାରିବା ସେ ବିଷୟରେ ଆମ୍ଭମାନଙ୍କର କୌଣସି ନିର୍ଦ୍ଦିଷ୍ଟ ଯୋଜନା ଆଜି ପର୍ଯ୍ୟନ୍ତ ହୋଇ ପାରିନି ନାହିଁ । ଯୋଜନା ଯେ ଗୋଟିଏ ହେବ ତା'ମଧ୍ୟ ଆମେ ବୁଝିପାରିଲୁ ନାହିଁ । ମୋର ଜଣେ ବନ୍ଧୁ ଏହି ସଭାର ସଭ୍ୟ ଦିନେ କହୁଥିଲେ ଯେ ଆମେ ବିଦେଶରୁ ଟଙ୍କା ଆଣି, Capital ଆଣି, ପୁଂଜି ଆଣି ସେଥିରେ ନୂତନ ନୂତନ ସୁବିଧା କରିବା ଏବଂ ଏହି ବିଦ୍ୟୁତଶକ୍ତିର ପୂର୍ଣ୍ଣ ଉପଯୋଗ କରିବା କିନ୍ତୁ ମୁଁ ଭାବେ ଯେ ଯଦି ଆମେ ସେଇ ରକମ ରାସ୍ତାରେ ଚାଲୁ ତାହାହେଲେ ତା'ର ଫଳ ହେବ ଯେ, ଯେପରି ଇଂରେଜମାନେ ଦିନେ ଆସି ଆମ୍ଭମାନଙ୍କ ଉପରେ ରାଜନୈତିକ ପ୍ରଭୁତ୍ୱ କରୁଥିଲେ ସେହିପରି ଅନ୍ୟ ବୈଦେଶିକ ଶକ୍ତିମାନେ ଆସି ଆମ୍ଭମାନଙ୍କ ଉପରେ ଅର୍ଥନୈତିକ ପ୍ରଭୁତ୍ୱ କରିବେ । ଏହି ଅବସ୍ଥାରେ ଆମ୍ଭମାନଙ୍କୁ ସଚେତନ ହେବାକୁ ହେବ । ତା'ନହେଲେ ଯଦି ଆମେ ଏପରି ଭାବରେ ବଡ଼ ବଡ଼ କାର୍ଯ୍ୟରେ ଅଗ୍ରସର ହେଉଥାଉଁ ତାହାହେଲେ ତା'ର ଫଳ ଯେ ଭବିଷ୍ୟତରେ କେତେ ଭୟାବହ ହେବ ସେ ବିଷୟରେ ଆମ୍ଭେମାନେ ଆଦୌ ଚିନ୍ତା କରୁନଥିବା ବଡ ଦୁଃଖର ବିଷୟ । ମୁଁ ଆଉ ଏ ବିଷୟରେ କହି ବିଶେଷ ସମୟ ନେବି ନାହିଁ । ଭବିଷ୍ୟତରେ ଏ ସବୁ ବିଷୟ ପ୍ରତି ମୁଁ ମାନ୍ୟବର ସଭ୍ୟମାନଙ୍କର ଦୃଷ୍ଟି ବିଶେଷ ଭାବରେ ଆକର୍ଷଣ କରିବି ।

ବର୍ତ୍ତମାନ କେବଳ ମୁଁ ଏତିକି କହିବାକୁ ଚାହେଁ ଯେ ଏ ଯେଉଁ On Account Budget ବା ତିନି ମାସିଆ ବଜେଟ୍ ଉପସ୍ଥାପିତ କରଯାଇଛି ମୋର ସେ ବିଷୟରେ ସରକାରଙ୍କୁ ଆଉ ଗୋଟିଏ ଅନୁରୋଧ ଯେ ସେଇଟା ଏ ବର୍ଷ ଗୋଟାଏ exceptional procedure ବୋଲି ଧରନ୍ତୁ । ବ୍ରିଟିଶ ପାର୍ଲିଆମେଣ୍ଟରେ ଅବଶ୍ୟ ପ୍ରତିବର୍ଷ Votes on Accounts ଉପସ୍ଥାପିତ କରଯାଏ ଏବଂ ତା'ର କାରଣ ହେଉଛି ଯେ ବ୍ରିଟିଶ ପାର୍ଲିଆମେଣ୍ଟ ବର୍ଷକରେ 6 ମାସରୁ ବେଶୀ ବସେ ଏବଂ ସେଠାରେ ସବୁ ବିଷୟରେ ସମସ୍ତ ସଭ୍ୟମାନେ ଟିକିନିଖି ଆଲୋଚନା କରିବାର ସୁଯୋଗ ଏବଂ ସୁବିଧା ପା'ନ୍ତି । ମୁଁ ବିଶ୍ୱାସ କରୁଛି ଏହି ବର୍ଷ କେବଳ ନିର୍ବାଚନ ହୋଇଥିବା ଯୋଗୁଁ ଏବଂ ଆର୍ଥିକ ବର୍ଷ 31 ମାର୍ଚ୍ଚ ମଧ୍ୟରେ ସରିଯାଉଥିବା ଯୋଗୁଁ ଆମ ସରକାର ଏ

Votes on Accounts ଉପସ୍ଥାପିତ କରିଛନ୍ତି । ସେଥିରେ ଆମେ ବିଶେଷ କିଛି ଆପତ୍ତି କରୁନାହୁଁ । ଭବିଷ୍ୟତରେ ଏହା ଯେପରି ନ ହୁଏ ସେଥିପ୍ରତି ସରକାର ଦୃଷ୍ଟି ଦେବେ ଏବଂ ଏହି 109 (a) ଏବଂ 110 ଧାରାର ଉପଯୋଗ ଯେପରି ଭବିଷ୍ୟତରେ କରିବାକୁ ନ ପଡେ ସେଥିପ୍ରତି ସରକାର ଦୃଷ୍ଟି ଦେବେ ବୋଲି ମୁଁ ଅନୁରୋଧ କରୁଛି । କାରଣ ଏହି Vote on Account Budgetକୁ ଆମେ ତରତରରେ ବିଗ୍ଭର କରିବାକୁ ବାଧ୍ୟ ହେବୁ । ପ୍ରତ୍ୟେକ ବିଷୟ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରିବାକୁ ହେଲେ Civil Budget Estimateକୁ ବିଶେଷ ଭାବରେ ଆଲୋଚନା କରିବା ଦରକାର ଏବଂ ସେଇଟା ଆର୍ଥିକ ବର୍ଷ ହେବା ପୂର୍ବରୁ ଅର୍ଥାତ୍ 31 ମାର୍ଚ୍ଚ ପୂର୍ବରୁ ଯେପରି ଆଗତ ହୁଏ ସେଥିପ୍ରତି ସରକାର ଦୃଷ୍ଟି ଦେବେ ବୋଲି ମୋର ଅନୁରୋଧ ।

## THE BUDGET (VOTE ON ACCOUNT)

## VOTING THE DEMAND FOR GRANT ON ACCOUNT

**ଶ୍ରୀ ଶଙ୍କରଶଙ୍କର ସୁପକାର:** ମାନ୍ୟବର ବାଚସ୍ପତି ମହୋଦୟ, ହୀରାକୁଦ ବନ୍ଧ ଯୋଜନାରେ ଆମର କଣ୍ଟ୍ରୋଲ କିପରି ବେଶୀ ରହିବ ସେ ବିଷୟରେ ଗତ ପରଦିନ ବୈଠକରେ ମୁଁ ଗୋଟିଏ କାଟ ପ୍ରସ୍ତାବ ଆଗତ କରିଥିଲି । 1947 ଜୁଲାଇ ମାସରେ ହୀରାକୁଦ ବନ୍ଧ ଯୋଜନା ବିଷୟରେ, ଯେତେବେଳେ ଶ୍ରୀଯୁକ୍ତ ଖୋସଲାଙ୍କର ପ୍ରଥମ ରପୋର୍ଟ ପ୍ରକାଶିତ ହେଲା, ସେତେବେଳେ ସେଥିରେ ଲେଖା ଥିଲା ଯେ ଏହି ଯୋଜନାରେ ମୋଟ 47 କୋଟି 81 ଲକ୍ଷ ଟଙ୍କା ଖର୍ଚ୍ଚ ହେବ । ଅଗଷ୍ଟ 28 ତାରିଖରେ ଓଡ଼ିଶା ବ୍ୟବସ୍ଥା ସଭାରେ ଏହି ରିପୋର୍ଟ ଆଲୋଚିତ ହୋଇ ମଞ୍ଜୁରୀ ପାଇଲା । ସେ ଆଲୋଚନା ସମୟରେ ତଦାନୀନ୍ତନ ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଏହି ଯୋଜନା କାର୍ଯ୍ୟ ବା Executionର ଦାୟିତ୍ୱ ଓ ଆର୍ଥିକ ଦାୟିତ୍ୱ ବିଷୟରେ ବିଶେଷ ଭାବରେ ବ୍ୟାଖ୍ୟା କରିଥିଲେ । ସେ କହିଥିଲେ ଯେ "I may say that unless scheme is productive nobody will ask us to pay interest out of our own resources. Payment of interest will wholly depend on the profits we make out of our productive schemes. If there is no profit there is no interest. That is the clear case. ଏହା ବ୍ୟବସ୍ଥା ସଭାର ବିବରଣୀ ଅଗଷ୍ଟ 28 ତାରିଖ 1947 ସାଲରେ 84 ପୃଷ୍ଠାରେ ଅଛି । ତାପରେ 87 ପୃଷ୍ଠାରେ ସେ କହିଛନ୍ତି "We cannot pay interest, we cannot pay for the capital which will be required for this construction". ଏଥିରୁ ଜଣାପଡୁଛି ଯେ ଆମର ମୂଳରୁ କଥା ଥିଲା ଯେ ଆମର ଏହି କାର୍ଯ୍ୟ ଯଦି ଲାଭଜନକ ହୁଏ ତେବେ ଯାଇଁ ଆମେ ତହିଁର ଦାୟିତ୍ୱ ନେବା । ଠିକ୍ 28 ତାରିଖ ଦିନ ଏହି ଆଲୋଚନା ସରିଲା ପରେ ମହୀଶୂରର ଅବସର ପ୍ରାପ୍ତ Chief Engineer ଶ୍ରୀଯୁକ୍ତ ରଙ୍ଗୈୟା, ଯେ କି ପୂର୍ବେ ଓଡ଼ିଶା

ବନ୍ୟା ତଦନ୍ତ କମିଟିର ସଭାପତି ହୋଇଥିଲେ, ସେ ହୀରାକୁଦ ବନ୍ଧ ବିଷୟରେ ତାଙ୍କର ଶେଷ ରିପୋର୍ଟ ପ୍ରକାଶ କରିଥିଲେ ଏବଂ ସେଥିରେ ସେ ଲେଖିଥିଲେ ଯେ, ହୀରାକୁଦ ଯୋଜନାରେ ଅନ୍ତତଃ ୧୦୦ କୋଟି ଟଙ୍କା ଖର୍ଚ୍ଚ ହେବ ଏବଂ ଆୟ ବ୍ୟୟ ବିଷୟରେ ଆଲୋଚନା କରି ସେ ସରକାରଙ୍କୁ ଅନୁରୋଧ କରିଥିଲେ ଯେ ଗୋଟିଏ ବିଶେଷଜ୍ଞ କମିଟି ଦ୍ୱାରା ଏହା ପରୀକ୍ଷିତ ହେଉ । ଉକ୍ତ ରିପୋର୍ଟର ମୁଖବନ୍ଧରେ ସେ ଯାହା ଲେଖିଛନ୍ତି ତା'ର ସାରମର୍ମ ହେଉଛି ଯେ ଓଡ଼ିଶା ବ୍ୟବସ୍ଥା ସଭାରେ ହୀରାକୁଦ ବନ୍ଧ ଯୋଜନାକୁ ମଞ୍ଜୁରୀ ହେବା ଦ୍ୱାରା ସେମାନେ ଏକ ଅତି ଗୁରୁଦାୟିତ୍ୱ ନେଇଛନ୍ତି । ତା'ପରେ ସେ ଲେଖିଛନ୍ତି ଯେ ବାଲ୍ମୀକି ତାଙ୍କ ରାମାୟଣରେ କହିଛନ୍ତି ଯେ ତୋଷାମଦ କରି କଥା କହିବାର ଅନେକ ଲୋକ ଅଛନ୍ତି କିନ୍ତୁ ପ୍ରକୃତ ଦୋଷଗୁଣ ଦର୍ଶାଇବା ଲୋକ ବିରଳ । ଏଥିପାଇଁ ସେ ନିଜ ପୁସ୍ତକର ମୁଖବନ୍ଧରେ ଏ ବିଷୟ ଉଲ୍ଲେଖ କରିଥିଲେ । ସେତେବେଳେ ତାଙ୍କ କଥା ଶୁଣିବାର ଧୈର୍ଯ୍ୟ ଏବଂ ସେ ଯୋଜନା ପରୀକ୍ଷା କରାଇବାର ମନୋବୃତ୍ତି ଆମ ସରକାରଙ୍କର ନଥିଲା । ସେହି ସମୟରେ ଖୋସଲା ରିପୋର୍ଟରେ 47 କୋଟି ୫1 ଲକ୍ଷ ଟଙ୍କା ଖର୍ଚ୍ଚ ହେବ ବୋଲି ହିସାବ କରି ସେହି ଅନୁସାରେ ଯୋଜନା କଲେ ଏବଂ ସେହି ଅନୁସାରେ ହୀରାକୁଦଠାରେ କାମ ଆରମ୍ଭ କରିବା ପୂର୍ବରୁ ଚିପିଲିମା ଠାରେ Subsidiary Dam ତିଆରି କାମ ଆରମ୍ଭ ହେଲା । ଚିପିଲିମାଠାରେ ଅନେକ କୋଠାବାଡ଼ି ତିଆରି ହେଲା, ପର୍ବତ ଖୋଳା ହେଲା, ବିସ୍ତୃତ ଜମି ପ୍ରାୟ ଛଅ ହଜାର ଏକରରୁ ଊର୍ଦ୍ଧ୍ୱ Acquire ହୋଇ କାମ ଆରମ୍ଭ ହେଲା ଏବଂ କାର୍ଯ୍ୟ ମଧ୍ୟ ଅନେକ ଆଗେଇଲା । କେବଳ Subsidiary Dam ରେ କେତେ ଖର୍ଚ୍ଚ ହୋଇଛି, ମୁଁ ଏ ବିଷୟରେ ପ୍ରଶ୍ନ ପଚାରିଥିଲି ଏବଂ ତାର ଉତ୍ତରରେ ମାନ୍ୟବର ପ୍ରଧାନମନ୍ତ୍ରୀ ୫ ତାରିଖ ଦିନ କହିଥିଲେ ଯେ, ଏଥିରେ ପ୍ରାୟ ୭୫ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଛି । ଏହା ବାହାରେ ଯଦି ଅନ୍ୟାନ୍ୟ ଘରଦ୍ୱାର, କ୍ଷତିପୂରଣ ଇତ୍ୟାଦି ହିସାବ କରାଯାଏ ତାହାହେଲେ ମୁଁ ଭାବୁଛି ଏହା ପ୍ରାୟ 2/3 କୋଟି ଟଙ୍କା ଖର୍ଚ୍ଚ ହୋଇଥିବ କିନ୍ତୁ ଏହା ମଧ୍ୟରେ ଖବର ଶୁଣାଗଲା ଯେ ଚିପିଲିମା କାର୍ଯ୍ୟ ବନ୍ଦ ହେଉଛି ଯେହେତୁ ଏହି Subsidiary Dam ରୁ ଯେଉଁ ବିଜୁଳି ଶକ୍ତି ବାହାରିବ ସେ ବିଜୁଳି ଶକ୍ତିର ପ୍ରୟୋଜନୀୟତାଠାରୁ ଜଳସେଚନର ପ୍ରୟୋଜନୀୟତା ଅଧିକ ଅଛି ଏବଂ ଏହି Subsidiary Dam ଅନିର୍ଦ୍ଦିଷ୍ଟ କାଳକୁ ସ୍ଥଗିତ ରଖାଗଲା । ଯେଉଁ ଯାଗାରେ ହଜାର ହଜାର ମଜୁରିଆ କାମ କରୁଥିଲେ ସେ ସ୍ଥାନ ବର୍ତ୍ତମାନ ପ୍ରାୟ ଲୋକ ଶୂନ୍ୟ ହୋଇଛି । ଗୋଟିଏ ବିଶେଷଜ୍ଞ କମିଟି ବସିଛି ଏବଂ ତାଙ୍କ ଯୋଗୁଁ ଏହା ବନ୍ଦ କରିଛନ୍ତି ବୋଲି ପ୍ରଧାନମନ୍ତ୍ରୀ ଉତ୍ତରରେ କହିଛନ୍ତି । ଏତେ ଅର୍ଥ ଶ୍ରାଦ୍ଧ ହେବା ପରେ ହଠାତ୍ କାମ ବନ୍ଦ ହେବା ରହସ୍ୟ କ'ଣ ? ଶ୍ରୀଯୁକ୍ତ ରଙ୍ଗେୟା ଦୁଇଟି କଥା ଉପରେ ଜୋର ଦେଇଥିଲେ । ପ୍ରଥମ କଥା ହେଉଛି ଯେ ଏ ଯୋଜନାରେ ଅନ୍ତତଃ 100 କୋଟି ଟଙ୍କା ଖର୍ଚ୍ଚ ହେବ । ଆଜି ପର୍ଯ୍ୟନ୍ତ ସରକାରୀ ଇସ୍ତାହାରରେ ପ୍ରଥମେ 47 କୋଟି ୫1 ଲକ୍ଷ ଟଙ୍କା ପ୍ରକାଶ ପାଇଥିଲା, ତା'ପରେ ୧୯୫୧ ଜୁଲାଇ ମାସରେ ପ୍ରକାଶ ହୋଇଥିବା First Five-year Plan Report ରେ ହୀରାକୁଦ ଯୋଜନା ସକାଶେ ୬୨ କୋଟି ୫୧ ଲକ୍ଷ ଖର୍ଚ୍ଚ ହେବ ବୋଲି ଲେଖା ଅଛି । ତା'ପରେ ଶୁଣାଯାଉଥିଲା

ଯେ ଏଥିରେ ୫୨ କୋଟି ଟଙ୍କା ଖର୍ଚ୍ଚ ହେବ । ଆଜି ସମ୍ବାଦ ପତ୍ରରେ ବୁଝାଯାଇଛି ଏଥିରେ ୭୨ କୋଟି ୯ ଲକ୍ଷ ଟଙ୍କା ଖର୍ଚ୍ଚ ହେବ । ଶ୍ରୀଯୁକ୍ତ ରଙ୍ଗେୟାଙ୍କ ରିପୋର୍ଟରେ 100 କୋଟି ଟଙ୍କା ଖର୍ଚ୍ଚ ହେବା କଥା ଯେଉଁମାନେ ଅବିଶ୍ୱାସ କରୁଥିଲେ ସେମାନେ ହୁଏତ କାଲି ବୁଝିବେ ଯେ ରଙ୍ଗେୟାଙ୍କ କଥିତ 100 କୋଟି ଟଙ୍କା ହୀରାକୁଦ ବନ୍ଧ ପାଇଁ ଯଥେଷ୍ଟ ନୁହେଁ । ଏହି ଯୋଜନା ସମ୍ବନ୍ଧରେ ପରୀକ୍ଷା କରିବାପାଇଁ ଯେତେବେଳେ ଶ୍ରୀଯୁକ୍ତ ରଙ୍ଗେୟା କହୁଥିଲେ ସେତେବେଳେ ଆମ ସରକାର ତାଙ୍କୁ ଓ ତାଙ୍କ ମତବାଦୀ ଲୋକଙ୍କୁ Saboteurs ବା ଧ୍ୱଂସବାଦୀ ବୋଲି କହୁଥିଲେ । ମାତ୍ର ଯୋଜନା ଆରମ୍ଭ ହେବାର 6 ବର୍ଷ ପରେ 17 କୋଟି ଟଙ୍କା ଖର୍ଚ୍ଚ ହୋଇ ସାରିଲା ପରେ, ହଜାର ହଜାର ରୟତ ଭୂମିହୀନ ହୋଇ ସାରିଲା ପରେ ଏବଂ ବହୁ ସଂଖ୍ୟାରେ ଘରଦ୍ୱାର ଶୂନ୍ୟ ହୋଇ ସାରିଲାପରେ ଆଜି ଶୁଣାଯାଉଛି ଯେ ଗୋଟିଏ କମିଟି ବସୁଛି । ସେ କମିଟିର ଉଦ୍ଦେଶ୍ୟ ହେଉଛି ହୀରାକୁଦ ବନ୍ଧର Technological feasibility ବିଷୟରେ ସନ୍ଧାନ କରିବା । 5 ବର୍ଷ ପୂର୍ବରୁ ଠିକ ଏଇ କାମ କରିଥିଲେ ଅନେକ ଅପବ୍ୟୟରୁ ରକ୍ଷା ମିଳିଥାନ୍ତା ଏବଂ ବର୍ତ୍ତମାନ ଯେପରି ଭାବରେ କାମ ହେଉଛି, ତହିଁରୁ ଅଧିକ ଦ୍ରୁତ ଗତିରେ କାମ ହୋଇ ପାରିଥାନ୍ତା । କିନ୍ତୁ ସେ ସମୟରେ ସେହି କମିଟି ବସାଇବା ପାଇଁ ଆମେ କହିଥିଲେ ଆମକୁ ବନ୍ଧ ବିରୋଧୀ, ଦେଶଦ୍ରୋହୀ ବୋଲି ଆଖ୍ୟା ଦିଆ ଯାଇଥାନ୍ତା । ଆମ ଦେଶର ପ୍ରାୟ ସମସ୍ତେ ଭାବୁଛନ୍ତି ଯେ ବନ୍ଧ ନିର୍ମାଣ ଫଳରେ ଫଳାଫଳ ଯାହା ହେଉନା କାହିଁକି ଚାଲିଥିବା ଅପବ୍ୟୟର ସ୍ରୋତ ବନ୍ଦ ହେଉ । ଏ ବିଷୟରେ ଆମ ସରକାର ବରାବର ଗୋଟିଏ ଉଦାସୀନ ଓ ନିର୍ବିକାର ନୀତି ଅବଲମ୍ବନ କରି ଆସିଛନ୍ତି କିନ୍ତୁ ଉଦାସୀନ ହେଲେ ସର୍ବନାଶ ହେବା ସୁନିଶ୍ଚିତ । ଋଷି ଚାରବାକଙ୍କର "ଋଣଂ କୃତ୍ୱା ଘୃତଂ ପିବେତ୍" ନୀତିରେ ଚାଲିଛି । ଏହି ଯୋଜନାରେ ଯଥେଷ୍ଟ ଲାଭ ନ ହେଲେ ଆମେ ସୁଧ ଏବଂ ମୂଳରେ ମୁଣ୍ଡ ପୁରାଇବା ଦରକାର ନାହିଁ କହିପାରନ୍ତି । ମାତ୍ର ଆମର ନୈତିକ ଦାୟିତ୍ୱ ରହିଛି । ଆମ ପାଇଁ ଯେଉଁ ଟଙ୍କା କେନ୍ଦ୍ର ସରକାର ଦେଉଛନ୍ତି ସେଟା ଆମ ଟ୍ରେଜେରୀରୁ ଆସିଥାଇ ନପାରେ କିନ୍ତୁ ଆମ ଗରୀବ ଲୋକେ ଯେଉଁ କର ଦେଉଛନ୍ତି ସେଇ କରରୁ ଏଇଟା ଆସୁଛି, ଏହା ଆମର ବୁଝିବା ଦରକାର । ଯଦି ଆମେ ଭାବୁ କେନ୍ଦ୍ର ସରକାର ଟଙ୍କା ଖର୍ଚ୍ଚ କରୁଛନ୍ତି, ବନ୍ଧ ଲାଭଜନକ ହେଉ ବା ନ ହେଉ ଆମର ମୁଣ୍ଡ ପୁରାଇବା ଦରକାର ନାହିଁ ତାହାହେଲେ ଆମେ ଗୋଟିଏ ଭୁଲ କରିବା । ସେହିପରି କେନ୍ଦ୍ର ସରକାର ଯଦି ଭାବୁଥାନ୍ତି ଟଙ୍କାଟା ଋଣ ହିସାବରେ ଦିଆଯାଉଛି, ତହିଁର ମାତ୍ରା ବେଶୀ ହେଲେ କ୍ଷତି କିଛି ନାହିଁ, ତା'ହେଲେ ସେମାନେ ମଧ୍ୟ ଭୁଲ କରୁଛନ୍ତି । ଏହି ଯୋଜନାକୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ କେନ୍ଦ୍ର ସରକାରଙ୍କୁ ଦିଆ ଯାଇଥିଲେ ମଧ୍ୟ ଅସଲ ଦାୟିତ୍ୱ ଆମର । କିନ୍ତୁ ଆମେ କେବଳ ଆଜି ପର୍ଯ୍ୟନ୍ତ Tourist ବା ଦର୍ଶକ ମନୋବୃତ୍ତି ନେଇ ଦେଖୁଛୁ, ହୀରାକୁଦରେ ଯେଉଁ ଅପବ୍ୟୟ ଚାଲିଛି ତାହା ଆୟ ବ୍ୟୟ ହିସାବ ବୃଦ୍ଧି, ଏହାପାଇଁ କେତେକ ପରିମାଣରେ ଦାୟୀ । ଆମର ଲକ୍ଷ୍ୟ କରିବା ଉଚିତ୍ ଏବଂ ଗଭୀର ଭାବେ ଚିନ୍ତା କରିବା ଉଚିତ୍ । ଏ ବିଷୟରେ ଆଉ ଅଧିକ ବକ୍ତୃତା କରିବାର ସମୟ ନାହିଁ କିନ୍ତୁ ସାମାନ୍ୟ କେତେକ ବିଷୟ ପ୍ରତି ମୁଁ ଦୃଷ୍ଟି ଆକର୍ଷଣ କରୁଛି । ଓଡ଼ିଶା ଜଙ୍ଗଲରେ କାଠର ଅଭାବ ନଥିଲେ ସୁଦ୍ଧା ପ୍ରାୟ

372 ହଜାର ଟଙ୍କା ମୂଲ୍ୟର ରେଲୱେ ଲାଇନ ସ୍ଲିପର ପଞ୍ଜାବରୁ ଅଣା ଯାଇଥିଲା । ଆମ ଦେଶରେ ବଳଦ ଥିଲେ ସୁଦ୍ଧା ଗୋଟିଏ ଆଦର୍ଶ କୃଷି ଫାର୍ମ ପାଇଁ ସରକାରୀ ଖର୍ଚ୍ଚରେ ପଞ୍ଜାବରୁ ବଳଦ ଅଣାଗଲେ । ଏହାଛଡ଼ା ଭଡ଼ା ହିସାବରେ ଏକ ଯୋଡ଼ି ବଳଦ ପାଇଁ ଦୈନିକ ଟ 10 ଙ୍କା ଠିକାଦାରମାନଙ୍କୁ ଦିଆଯାଏ । ହୀରାକୁଦଠାରେ ଯେଉଁ ହାଇସ୍କୁଲ ଅଛି ସେ ସ୍କୁଲର ସମସ୍ତ ଖର୍ଚ୍ଚ ହୀରାକୁଦ ଯୋଜନା ପାଣ୍ଠିରୁ ଦିଆଯାଏ । ସେଦିନ ଜଣେ ଉଚ୍ଚପଦସ୍ଥ କର୍ମଚାରୀ କହିଲେ ଯେ ପିଲାମାନଙ୍କୁ ଘରୁ ସ୍କୁଲକୁ ଏବଂ ସ୍କୁଲରୁ ଘରକୁ ମଟରରେ ନେବା ଆଣିବା ବାବଦ ଖର୍ଚ୍ଚ ହେଉଛି ମାସିକ ଟ 18,000ଙ୍କା । ଶୈଳବାଳା କଲେଜରେ ଏ ବାବଦରେ 8,770 ଟଙ୍କା ଖର୍ଚ୍ଚ ହୁଏ । ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଟ 4,500ଙ୍କା ଖର୍ଚ୍ଚ ହୁଏ । ମୁଁ ଶୁଣିଛି ସତ କି ମିଛ ସରକାର ଅନୁସନ୍ଧାନ କରିବେ ଯେ ଏ ଲାଇନ୍‌ରେ ଯେଉଁ ମାଇଲ ଷ୍ଟୋନ ଦିଆଯାଇଛି ଗୋଟା କୁଆଡ଼େ ଟ 40ଙ୍କା । ଏହି ଶେଷ (ମାଇଲଷ୍ଟୋନ) ବିଷୟରେ ଅବଶ୍ୟ I am subject to correction. 1948-49 ସାଲରେ ଯେତେବେଳେ ମହାନଦୀ ରେଳ Bridge ତିଆରି ହେଉଥିଲା ସେତେବେଳେ ମୁଁ ଶୁଣିଥିଲି ଯେ, ଦୁଇ ଜଣ ଲୋକଙ୍କଠାରୁ Tender ପଥର Slab ସକାଶେ ମଗା ଯାଇଥିଲା । ଜଣେ ଭଦ୍ରଲୋକ 100 ଖଣ୍ଡ ପଥର Slab କୁ ଟ 37ଙ୍କା ଟେଣ୍ଡର ଦେଇଥିଲେ, ଆଉ ଜଣେ ଟ 73ଙ୍କା ଦେଇଥିଲେ । ଯେଉଁ ଭଦ୍ରଲୋକ ଟ 73ଙ୍କା ରେ Tender ଦେଇଥିଲେ ତାଙ୍କୁହିଁ ଅର୍ଡର ଦିଆ ଯାଇଥିଲା, ଏ ପଥର Slab ଯୋଗାଇବା ପାଇଁ । ଏହାପରେ କେତେ ଯେ ଘଟଣା ଘଟୁଛି, ହୁଏତ ଆମ୍ଭମାନଙ୍କ ଗୋଚରରେ, ଅଗୋଚରରେ, ତାର ହିସାବ ନାହିଁ । ଯାହା ବାହାରକୁ ଫୁଟି ପଡ଼େ ତା ଦେଖିବାର କଥା । ତା ବାହାରେ ବିନା Muster roll ରେ କେତେ କ'ଣ ଟଙ୍କା ନେଣ ଦେଣ ହୋଇ ଯାଉଛି ତାର ସଂଖ୍ୟା ନାହିଁ । ଏହି ସବୁ ଦୁର୍ନୀତି ବନ୍ଦ କରିବା ପାଇଁ ଆମେ ବିଚାର କରିବା ଦରକାର । ଏହି ବିଷୟରେ ଅବଶ୍ୟ ଆମ ସରକାରଙ୍କର ଗୋଟିଏ River Valley Development Department ଅଛି, କିନ୍ତୁ ମୁଁ ଏଠାରେ ଜୋରରେ କହୁଛି ଯେ ସେ ଯେଉଁ River Valley Department ଅଛି, ତାର ପ୍ରକୃତ କାର୍ଯ୍ୟ ଯାହା ସେ ତାହା କରୁନାହିଁ । ଅବଶ୍ୟ ସରକାର କହିବେ ଯେ River Valley Departmentକୁ ଯେଉଁ ଦାୟିତ୍ୱ ଦିଆଯାଇଛି ତାହା ହେଉଛି କେବଳ ଲୋକଙ୍କର ପୁର୍ନବସତି ପାଇଁ କାମ କରିବା, କିନ୍ତୁ ଆମ ସରକାର ଚେଷ୍ଟା କରିବା ଉଚିତ୍ ଯେ ଏହିସବୁ ଯେଉଁ କାର୍ଯ୍ୟ ହେଉଛି ହୁଏତ ସେଥିରେ ବହୁତ ଅର୍ଥ ଦରକାର ପଡୁଛି । ତେଣୁ ସେଥିରେ ଆମର ଦାୟିତ୍ୱ କଣ ଆମେ ଅନ୍ତତଃ ବୁଝିବା ଉଚିତ୍ । ଆମ ପାଇଁ କେନ୍ଦ୍ର ସରକାର କ'ଣ କାର୍ଯ୍ୟ କରୁଛନ୍ତି ସେ ବିଷୟରେ ଅନ୍ତତଃ ଜାଣିବା ଦରକାର । ଏହି ବିଷୟରେ ସରକାରଙ୍କର ଗୋଟିଏ କଣ୍ଟ୍ରାକ୍ଟ ବୋର୍ଡ ଅଛି । ବର୍ଷକରେ ସେ କେତେଥର ବସେ ଅବଶ୍ୟ ମୁଁ ଜାଣେନା । କିନ୍ତୁ ସେଥିରେ ଯେଉଁସବୁ ସଭ୍ୟ ଅଛନ୍ତି ସେମାନେ ସେ ସ୍ଥାନରେ ସବୁଦିନେ ରହନ୍ତି ନାହିଁ । River Valley Departmentତ ଆଗରୁ କଟକରେ ରହୁଥିଲା । ବର୍ତ୍ତମାନ ଭୁବନେଶ୍ୱରରେ ଥାଇପାରେ ନା କ'ଣ ମୁଁ ଜାଣେନା । ଏହି ସବୁ ଦୁର୍ନୀତି ଓ ଦୋଷ ଦୂର କରିବା ପାଇଁ ସରକାର କାର୍ଯ୍ୟ କରିବା ଦରକାର । ଯାହା ଫଳରେ କି କାର୍ଯ୍ୟଟି ସ୍ୱଚ୍ଛ ଭାବେ

ଗ୍ଭଲି ପାରିବ । ଆମର ଗୋଟିଏ କଣ୍ଟ୍ରୋଲ ବୋର୍ଡ ହେବାର ସୂଚନା ଗତ ବର୍ଷ ଯେତେବେଳେ ମହାମାନ୍ୟ ଗଭର୍ଣ୍ଣର ଭି. ପି. ମେନନ୍ ଆମ ଓଡ଼ିଶାର ରାଜ୍ୟପାଳ ହୋଇ ଆସିଥିଲେ ସେତେବେଳେ ଆମକୁ ମିଳିଥିଲା । କିନ୍ତୁ ପରେ ଶୁଣିବାକୁ ପାଇଲୁ ଯେ କେନ୍ଦ୍ର ସରକାରଙ୍କର କେତେକ ଉଚ୍ଚ ପାହିଆ କର୍ମଚାରୀଙ୍କ ଚେଷ୍ଟାରୁ ତାହା ସ୍ଥଗିତ ହେଲା । ତା'ପରେ ଆମେ ବରାବର ଏହି ବ୍ୟବସ୍ଥା ସମ୍ବନ୍ଧରେ ଦାବୀ କରି ଆସିଛୁ ଯେ, ଯେତେବେଳେ କାର୍ଯ୍ୟ ଆମ ପାଇଁ ହେଉଛି, ସେତେବେଳେ ତାର ଦାୟିତ୍ୱ ଆମ ଉପରେ ଅଛି ଓ ଆମର କର୍ତ୍ତବ୍ୟ ହେଉଛି ଭଲରୂପେ ବୁଝି ସୁଝି କାମଟି କରିବା । ଆମର ଗୋଟିଏ ବିଶେଷ ଅଭାବ ରହିଛି କଣ୍ଟ୍ରୋଲ ବୋର୍ଡ । ତାହା ହେବା ଦରକାର । ସେ ବିଷୟରେ ମଧ୍ୟ ବଡ଼ ବଡ଼ ସ୍ଥାନରେ କୁହାଯାଇଛି, କିନ୍ତୁ ଆଜି ପର୍ଯ୍ୟନ୍ତ କିଛି ହୋଇ ପାରି ନାହିଁ । ଗତବର୍ଷ ମଧ୍ୟ ଏ ସମ୍ପର୍କରେ କିଛି ହୋଇ ପାରିନାହିଁ । କେବଳ ବର୍ତ୍ତମାନ ମୁଁ ଦେଖିବାକୁ ପାଇଲି ଆଲୋକର ଗୋଟିଏ କ୍ଷୀଣ ରଶ୍ମି ଯାହାକି ଆମ ରାଜ୍ୟପାଳ ମହାମାନ୍ୟ ଆସଫଅଲି କହିଛନ୍ତି । "I hope that there will be a Control Board". କିନ୍ତୁ ଏହି pious hope ବା କ୍ଷୀଣ ଆଶା କେବେ ଫଳବତୀ ହେବ ଜଣାନାହିଁ ଏବଂ ଏହି ବିଷୟରେ ଯେପରି ଆମର ଦରିଦ୍ର ଜନସାଧାରଣଙ୍କ ଅର୍ଥ ଅପବ୍ୟୟ ନ ହୁଏ ଏବଂ ଠିକ୍ ଭାବରେ ପରିଚାଳିତ ହୁଏ ସେ ବିଷୟରେ ଏକ ସ୍ଥାୟୀ କମିଟି ଆମର ରହିବା ଦରକାର । ଏ ବିଷୟରେ ସ୍ଥାନୀୟ ଯାହା କଟକଣା ଅଛି ଯଥା Financial Adviser's Office ବା ଅନ୍ୟାନ୍ୟ ଅଫିସ ସେଟା ଯଥେଷ୍ଟ ନୁହେଁ । ତା ପରେ ଦ୍ୱିତୀୟ କଥା ସେ ସ୍ଥାନରେ ଯେଉଁମାନେ କାର୍ଯ୍ୟରେ ବ୍ୟାପୃତ ଅଛନ୍ତି ଯଥା ଇଞ୍ଜିନିଅର ଓ ଅନ୍ୟାନ୍ୟ ଅଫିସରମାନେ ସେମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ଅନ୍ୟ ପ୍ରଦେଶର ଲୋକ । ସେମାନେ ହୁଏତ ଆମର ସ୍ଥାନୀୟ କର୍ମଚାରୀମାନଙ୍କଠାରୁ ଅଧିକା ଶିକ୍ଷା ଲାଭ କରିଥାଇ ପାରନ୍ତି ।

## 1952-53 ବଜେଟ ଉପରେ ଭୋଟ ଦାବୀ ଓ କାଟ ପ୍ରସ୍ତାବ ସଂପର୍କୀୟ ମନ୍ତବ୍ୟ

ରାଜସ୍ୱ ବିଭାଗର ଖର୍ଚ୍ଚ ଦାବି ଉପରେ ଡଃ ଶ୍ରଦ୍ଧାକର ସୂପକାର ଉପଯୁକ୍ତ କୃଷିନୀତି ଓ ରାଜସ୍ୱନୀତି ଗ୍ରହଣ କରି କୃଷି ଉପରେ ନିର୍ଭର କରୁଥିବା ସଂଖ୍ୟାଧିକ ଜନସାଧାରଣଙ୍କ ଅବସ୍ଥାରେ ଉନ୍ନତି କରିବାକୁ ପରାମର୍ଶ ଦେଇଛନ୍ତି । ଭାରତବର୍ଷରେ ଘଟୁଥିବା ବିଭ୍ରାଟ, ଉନ୍ନୟନ ଯୋଜନା କାର୍ଯ୍ୟକାରୀ କରିବାରେ ନିଷ୍ଠାର ଅଭାବ, କୃଷି ବିଭାଗରେ ଅର୍ଥ ଅପବ୍ୟୟ ଆଦିକୁ ସମାଲୋଚନା କରି ସେ Consolidation of holdings ଆଇନକୁ ଯେପରି ଦୃଢ଼ତାର ସହିତ କାର୍ଯ୍ୟକାରୀ ହୋଇପାରିବ ଦେଖିବାକୁ ସରକାରଙ୍କୁ ଦିଗ୍‌ଦର୍ଶନ ପ୍ରଦାନ କରିଛନ୍ତି । ଗୁରୁତ୍ୱପୂର୍ଣ୍ଣ ସମସ୍ୟାଗୁଡ଼ିକ ଉପରେ ଆଲୋଚନା କରିବାକୁ ଅଧିକ ସମୟ ଦାବି କରି ସେ କହିଛନ୍ତି, "ଯେଉଁ ସଭ୍ୟମାନେ କାଟ ପ୍ରସ୍ତାବ ଦେଇଛନ୍ତି, ସେମାନଙ୍କୁ

ଅନ୍ତତଃ ଯଥେଷ୍ଟ ସୁଯୋଗ ମିଳିବା ଉଚିତ୍ । ସେମାନେ ଯେଉଁ ବିଷୟରେ ଆଲୋଚନା କରିବା ପାଇଁ ନିର୍ଦ୍ଦିଷ୍ଟ କାଟ ପ୍ରସ୍ତାବ ଉପସ୍ଥାପିତ କରିବା ପାଇଁ ପ୍ରସ୍ତାବ ଦେଇଛନ୍ତି ଅନ୍ୟାନ୍ୟ ସଭ୍ୟମାନେ ସେ ବିଷୟ ଆଲୋଚନା କରିବା ପୂର୍ବରୁ ଏହି ନିର୍ଦ୍ଦିଷ୍ଟ ସମୟ ସୂଚୀ ମଧ୍ୟରେ ସେମାନେ ଯେପରି ସମୟ ପାଇ ପାରିବେ, ସେପରି ବ୍ୟବସ୍ଥା କରଗଲେ ଭଲ ହୁଅନ୍ତା ।"

ଏହି ପ୍ରସଂଗରେ ଡକ୍ଟର ସୂପକାର ଶ୍ରୀ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ଅଂଧେରୀ ନଗରୀ ନାଟକର ଉଦାହରଣ ଦେଇ ରାମରାଜ୍ୟ ପ୍ରତିଷ୍ଠା ପରିବର୍ତ୍ତେ ଆମ ରାଜ୍ୟରେ "ଅଂଧେରୀ" ଶାସନର ପ୍ରବର୍ତ୍ତନ ହେବାକୁ ଯାଉଛି ବୋଲି ଆଶଂକା କରିଛନ୍ତି । ଆଇନ-କାନୁନର ଖିଲାପରେ ଯେମିତି କାର୍ଯ୍ୟ ହେଉଛି ଏବଂ ଦୁର୍ନୀତି ଯେମିତି ପ୍ରତି ବିଭାଗରେ ଅନୁପ୍ରବିଷ୍ଟ ହେବାରେ ଲାଗିଛି, ସେଥିରେ Law and order ବ୍ୟବସ୍ଥା ବିପର୍ଯ୍ୟସ୍ତ ହେବ ବୋଲି ସେ କହିଛନ୍ତି । ସେ ଶେଷରେ କହିଛନ୍ତି (ଜୁନ 11,1952), "ମୁଁ ଏତିକି କହିପାରେ ଯେ ଖଜୁରୀ ଗଛ ପାହାଚ ପାହାଚ ଯେପରି ଆମର ବଡ଼ ଅଫିସରଙ୍କ ଠାରୁ ଆରମ୍ଭ କରି ଛୋଟ ଅଫିସର ପର୍ଯ୍ୟନ୍ତ ସମସ୍ତଙ୍କ ଭିତରେ ଏହି ପ୍ରକାର ଦୁର୍ନୀତି Corruption, inefficiency ରହିଛି ଏବଂ ଆମ ସରକାର ଅଂଧ ଭାବରେ ସେମାନଙ୍କୁ ସମର୍ଥନ କରିଚାଲିଛନ୍ତି । ଏହା ଯଦି ହୁଏ, ତେବେ ଆମ ଦେଶର ଉନ୍ନତି ସୁଦୂର ପରାହତ ।" ଏବେ ମଧ୍ୟ ଏହି ମନ୍ତବ୍ୟର ପ୍ରାସଂଗିକତା କମ୍ ନୁହେଁ ।

# THE BUDGET

## VOTING ON DEMANDS FOR GRANTS FOR THE YEAR 1952-53

### Land Revenue

Shri SADASIVA TRIPATHY (Minister): Sir, I beg to move that the Assembly do assent to a demand which will come in course of payment during the year ending the 31st March 1953 of such sum as, together with the expenditure already authorised in the vote on account will amount to Rs. 35,93,470 in respect of the head "7 Land Revenue".

This appropriation has the recommendation of the Governor.

The SPEAKER: Motion moved.

**ଶ୍ରୀ ଶ୍ରଦ୍ଧାକର ସୁପକାର:** ମାନ୍ୟବର ବାଚସ୍ପତି ମହୋଦୟ, ମୋ ନାମରେ ଯେଉଁ ଦୁଇଟି କାଟ ପ୍ରସ୍ତାବ ଅଛି ମୁଁ ଆପଣଙ୍କ ଅନୁମତି ନେଇ ସେ ଦୁଇଟି କାଟ ପ୍ରସ୍ତାବକୁ ଏକ ସଙ୍ଗରେ ଆଗତ କରୁଛି ଏବଂ ଉଭୟ ବିଷୟରେ ଏକ ସଙ୍ଗରେ ଆଲୋଚନା ଶେଷ କରିବି । ମୁଁ ପ୍ରସ୍ତାବ କରୁଛି ଯେ ଏ Demandକୁ ଟ 1ଙ୍କାକୁ କମାଇ ଦିଆଯାଉ ।

The SPEAKER: ନଂ 19 ଓ ନଂ 28 କାଟ ପ୍ରସ୍ତାବ ଭିନ୍ନଭିନ୍ନ ଉଦ୍ଦେଶ୍ୟରେ ଆଗତ କରା ଯାଇଛି । ତାହା ଏକ ସଙ୍ଗରେ ଆଲୋଚନା ହୋଇ ପାରିବ ନାହିଁ ।

Shri PABITRAMOHAN PRADHAN: Last year it was the practice that a member was allowed to discuss all his motions at one time. So, when Mr. Shraddhakar Supakar has two cut motions though on different items, he may be allowed to move them together.

**ଶ୍ରୀ ନବକୃଷ୍ଣ ଚୌଧୁରୀ** (ପ୍ରଧାନମନ୍ତ୍ରୀ): ସଭାପତି ମହାଶୟ, ବିଗ୍ଭର କରି ଦେଖାଯାଇଛି ଯେ ଏ ବର୍ଷ ସେପରି କଲେ ସୁବିଧାଜନକ ହେବନାହିଁ । ସେଥିପାଇଁ ଭିନ୍ନ ଭିନ୍ନ ଭାବରେ ଆଲୋଚନା କରାଗଲେ ସୁବିଧା ହେବ ।

**ଶ୍ରୀ ଶ୍ରଦ୍ଧାକର ସୁପକାର:** ମାନ୍ୟବର ବାଚସ୍ପତି ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ ଏ demandକୁ ଟ 1ଙ୍କାକୁ କମାଇ ଦିଆଯାଉ । ଏହି ଭୂ-ରାଜସ୍ୱ ବିଷୟରେ ଆଲୋଚନା କଲାବେଳେ ଆମର କି ରକମ ଭୂ-ରାଜସ୍ୱ ନୀତି ଅବଲମ୍ବନ କଲେ କୃଷିର ବିଶେଷ ଭାବରେ ଉନ୍ନତି ହେବ, ସେ ବିଷୟରେ ବିଶେଷ ଧ୍ୟାନ ଦେବା ଉଚିତ୍ । କାରଣ ଆମ ଦେଶର ଖାଦ୍ୟ ସମସ୍ୟା କୃଷି ଉନ୍ନତି ସହିତ ଓତଃପ୍ରୋତ ଭାବରେ ଜଡ଼ିତ; ସେଥିପାଇଁ ମୁଁ ଆଜି ଅତି ସଂକ୍ଷିପ୍ତ ଭାବରେ ଆମ ଭୂ-ରାଜସ୍ୱ ନୀତି ଆଲୋଚନା କରିବି ଏବଂ ଆମର କିପରି ଭାବରେ ରାଜସ୍ୱ ନୀତି ଅବଲମ୍ବନ କଲେ କୃଷିର ଉନ୍ନତି ହେବ ଏବଂ ଖାଦ୍ୟ ସମସ୍ୟାର ସମାଧାନ ହୋଇ ପାରିବ ସେ ବିଷୟରେ କେତେକ କଥା କହିବି । ପ୍ରଥମ କଥା ହେଉଛି ଯେ ବର୍ତ୍ତମାନ ଆମର ସରକାର ଜମିଦାରୀ ଉଚ୍ଛେଦ ଫଳରେ ମଧ୍ୟସ୍ୱତ୍ୱାଧିକାରୀମାନଙ୍କୁ ଉଠାଇ ଦେବାପାଇଁ ଯେଉଁ ଆଇନ କରୁଛନ୍ତି ସେଟା ଯଦି ଠିକ୍ ଭାବରେ ଓ ସାବଧାନତାର ସହିତ କାର୍ଯ୍ୟକାରୀ କରାଯାଏ ତେବେ ସମସ୍ୟାର ଅନେକାଂଶ ସମାଧାନ କରାଯାଇ ପାରିବ । କିନ୍ତୁ ମୁଁ ସରକାରଙ୍କୁ ଅନୁରୋଧ କରିବି ଯେ ଯେପରି କି ଭାଗଚାଷ ଆଇନ ପ୍ରଚଳନ ହେବା ଫଳରେ ଅନେକ ଯାଗାରେ ନାନା ରକମ ବିଭ୍ରାଟ ଘଟିଛି ସେପରି ଏ ଆଇନ ଫଳରେ ଯେପରି ନ ହୁଏ, ସେଥିପାଇଁ ଅତି ସାବଧାନତାର ସହିତ ଅଗ୍ରସର ହେବାକୁ ହେବ । ଜମିଦାରୀ ଉଚ୍ଛେଦ ସଙ୍ଗେ ସଙ୍ଗେ ଆମର ଗତବର୍ଷ ଏ ଯେଉଁ କୃଷି ଆଇନ ପାସ ହୋଇଛି, ସେ କୃଷି

ଆଇନରେ ଅଛି ଯେ କୃଷକୁ ସାହାଯ୍ୟ କରିବା; ଯଥା:—Consolidation of holdings and prevention of fragmentation of holdings. ଏ ବିଷୟରେ ଯେଉଁ ଆଇନ କରଯାଇଛି ତାହା ଯେପରି କାର୍ଯ୍ୟକାରୀ ହୋଇପାରିବ ସେଥିପ୍ରତି ସରକାର ବିଶେଷ ସାବଧାନତାର ସହିତ ଦୃଷ୍ଟି ଦେବେ । ଆମର ମାନ୍ୟବର ଅର୍ଥମନ୍ତ୍ରୀଙ୍କ ବଜେଟ ଭାଷଣରୁ ଆମେ ଶୁଣି ପାରିଥିଲୁ ଯେ ଆଂଚଳିକ ଉନ୍ନତିକର ଯୋଜନା ବିଷୟରେ କାର୍ଯ୍ୟାନୁଷ୍ଠାନ କରଯାଉଛି ଏବଂ 5 year plan ବା 5 ବର୍ଷିଆ ଯୋଜନା ଆନୁସାରେ ଏଥିପାଇଁ ଆମକୁ କେନ୍ଦ୍ର ସରକାର ଅନେକଗୁଡ଼ିଏ ଯୋଜନା ପାଇଁ କେତେଗୁଡ଼ିଏ ଟଙ୍କା ଦେଇଛନ୍ତି । ଏଥିପାଇଁ ଆମ ଓଡ଼ିଶାରେ 3ଟି କେନ୍ଦ୍ର ସ୍ଥିର କରଯାଇଛି ଏବଂ ସେ 3ଟି ଯାଗାରେ ଆଂଚଳିକ ଉନ୍ନୟନ କେନ୍ଦ୍ର ଖୋଲା ଯାଉଛି । ଏହି ଆଞ୍ଚଳିକ ଉନ୍ନୟନ ଯୋଜନା ବିଷୟରେ କେନ୍ଦ୍ର ସରକାର ଯେଉଁ ରିପୋର୍ଟ ବାହାର କରିଛନ୍ତି ମୁଁ ତାହା ଅଧ୍ୟୟନ କରୁଛି ।

ଶ୍ରୀ ରାଧାନାଥ ରଥ (ମନ୍ତ୍ରୀ): ମାନ୍ୟବର ବିରୋଧୀ ଦଳର ନେତା ଯେଉଁ ଆଞ୍ଚଳିକ ଉନ୍ନୟନ ଯୋଜନା କଥା କହୁଛନ୍ତି ସେ କ'ଣ Community Project କଥା କହୁଛନ୍ତି ନା ଆଉ କଣ ?

ଶ୍ରୀ ଶ୍ରଦ୍ଧାକର ସୁପକାର: ହଁ, ମୁଁ ସେହିକଥା କହୁଛି । ଏଥିରୁ ଜଣା ପଡ଼ୁଛି ଯେ ପୂର୍ବରେ ଯେପରି ସର୍ବୋଦୟ କାର୍ଯ୍ୟ ହେଉଥିଲା ଏବଂ ବର୍ତ୍ତମାନ ସୁଦ୍ଧା ଯେପରି ସର୍ବୋଦୟ କାର୍ଯ୍ୟ ପ୍ରଚଳିତ ହେଉଛି ଏଟା ତହିଁର ଗୋଟିଏ ଅମେରିକା ସଂସ୍କରଣ ଏବଂ ମାନ୍ୟବର ଅର୍ଥମନ୍ତ୍ରୀ ତାଙ୍କ ବଜେଟ ଭାଷଣରେ ଏ ପ୍ରକାର ସ୍ୱୀକାର କରିଛନ୍ତି । ସେ କହିଛନ୍ତି ଯେ, ଏହା ସର୍ବୋଦୟ କାର୍ଯ୍ୟପରି ଏବଂ ଭାରତ ଓ ଯୁକ୍ତରାଷ୍ଟ୍ର ମଧ୍ୟରେ ଯେଉଁ technical agreement ହୋଇଛି ତହିଁ ଫଳରେ ଏହି ଆଞ୍ଚଳିକ ଉନ୍ନୟନ ଯୋଜନାମାନ କାର୍ଯ୍ୟକାରୀ ହେଉଛି । ଏହି ଆଞ୍ଚଳିକ ଉନ୍ନୟନ ଯୋଜନା ଫଳରେ ଆମେ କେନ୍ଦ୍ର ସରକାରଙ୍କଠାରୁ ଆମ ମଫସଲ ଅଞ୍ଚଳର ଉନ୍ନତିପାଇଁ ଅନେକଗୁଡ଼ିଏ ଟଙ୍କା ପାଇଛୁଁ ; ଏଟା ଭଲ କଥା । ଆମେ ଦେଖିବା ଉଚିତ୍ ଯେ ଆମର କୃଷି ବିଭାଗ ଏବଂ ଅନ୍ୟାନ୍ୟ ବିଭାଗରେ ଦେଶର ଉନ୍ନତି କରିବାପାଇଁ ଅନେକଗୁଡ଼ିଏ ଟଙ୍କା ଯେପରି ଅପବ୍ୟୟ ହେଉଛି ଏବଂ ପ୍ରକୃତ ଚାଷୀମାନଙ୍କର କୌଣସି କାମରେ ଲାଗୁନାହିଁ ସେପରି ଭାବରେ ଯେପରି ଅପବ୍ୟୟ ନ ହୁଏ ସେଥିପ୍ରତି ସରକାର ବିଶେଷ ଦୃଷ୍ଟି ଦେବା ଉଚିତ । ତାପରେ ଏ ଯେଉଁ ଅଞ୍ଚଳରେ ଆଞ୍ଚଳିକ ଉନ୍ନୟନ ଯୋଜନାମାନ କରଯିବ, ଏଟା ସାଧାରଣ ସୁବିଧା ଦୃଷ୍ଟିରୁ ଯେପରି କରଯାଏ ତାହା ଦେଖିବା ଉଚିତ୍ ଏବଂ ଯେତେବେଳେ ପ୍ରାୟ 1½ କୋଟି ଉପରେ ବେଶୀ ଟଙ୍କା ଖର୍ଚ୍ଚ କରିବାପାଇଁ ସରକାର ଯାଉଛନ୍ତି ସେତେବେଳେ ସରକାର ବିଶେଷ ଭାବରେ ଦୃଷ୍ଟି ଦେବା ଉଚିତ୍ ଏବଂ ସେ ଅଞ୍ଚଳର କୃଷି ବିଶେଷ ଉନ୍ନତି କରିବାପାଇଁ ଚେଷ୍ଟା କରିବା ଉଚିତ୍ ।

ଶ୍ରୀ ରାଧାନାଥ ରଥ (ମନ୍ତ୍ରୀ): On a point of order. ମାନ୍ୟବର ବିରୋଧୀ ଦଳର ନେତା Community Project ବିଷୟରେ ବର୍ତ୍ତମାନ କହୁଛନ୍ତି, କିନ୍ତୁ ଏ demand କିମ୍ବା ଏ ବଜେଟରେ ସେଥିପାଇଁ କୌଣସି ବ୍ୟବସ୍ଥା ନାହିଁ । ସେଟା Supplementary Demand ଆକାରରେ ଆସିବାର କଥା ଏବଂ ଏହା Revenue ବିଭାଗ ସହିତ କେତେଦୂର ସଂପୃକ୍ତ ଏବଂ କେତେଦୂର ଆଲୋଚନା ହୋଇପାରିବ ଏବଂ ଏହା ଏ Demandର କେତେଦୂର ଅନ୍ତର୍ଭୁକ୍ତ ତାହା ଆପଣ ବିଚାର କରିବେ । କିନ୍ତୁ ମୋ ମତରେ ଏହା ଏ Demandର ଅନ୍ତର୍ଭୁକ୍ତ ନୁହେଁ ।

ଶ୍ରୀ ରତ୍ନାକର ସୂପକାର: ମୁଁ ଠିକ୍ ସେ କଥା କହିବାକୁ ଯାଉଥିଲି । ମୁଁ ବିଚାରିଥିଲି ଯେ କୃଷି ଉନ୍ନତି କରିବାପାଇଁ ଯେତେବେଳେ ଏହି ଆଞ୍ଚଳିକ ଉନ୍ନୟନ ଯୋଜନା କେନ୍ଦ୍ର ସରକାର କରିବାକୁ ଯାଉଛନ୍ତି ଏବଂ ସେଥିରେ ଏତେଗୁଡ଼ିଏ ଟଙ୍କା ଖର୍ଚ୍ଚ ହେଉଛି, fragmentation of holdings and consolidation of holdings ବିଷୟରେ ଯେପରି ବ୍ୟବସ୍ଥା ଆମ କୃଷି ଆଇନରେ ହୋଇଛି ତାହା ଏହି ଆଞ୍ଚଳିକ ଉନ୍ନୟନ ଯୋଜନାରେ ପରୀକ୍ଷାମୂଳକ ଭାବରେ କରି ଦେଖିବା ଉଚିତ । ଯଦି ତାହା ଏ ଆଞ୍ଚଳିକ ଯୋଜନାରେ କାର୍ଯ୍ୟକାରୀ ହୁଏ ତାହାହେଲେ ସମଗ୍ର ପ୍ରଦେଶବ୍ୟାପୀ ପ୍ରୟୋଗ କରି ସେଥିରୁ ଲାଭ ଉଠାଇବାପାଇଁ ସରକାର ଚେଷ୍ଟା କରିବେ ବୋଲି ମୁଁ ଆଶା କରୁଛି । ଶେଷରେ, ମୁଁ ଯେଉଁ ଆଞ୍ଚଳିକ ଉନ୍ନୟନ ଯୋଜନା ବିଷୟ କହିବାକୁ ଭାବିଥିଲି, ସେଥିପାଇଁ ବଜେଟରେ କୌଣସି ବ୍ୟବସ୍ଥା କରାଯାଇନାହିଁ ଯଦିଓ ଆମର ଅର୍ଥମନ୍ତ୍ରୀ ଏ ବିଷୟରେ ପ୍ରାୟ ୩୫ ପୃଷ୍ଠାବ୍ୟାପୀ ଭାଷଣ ଦେଇଛନ୍ତି । ଏ ବିଷୟରେ ଆଉ ଯାହା କହିବାର କଥା ଅନ୍ୟାନ୍ୟ ମାନ୍ୟବର ସଭ୍ୟ କହିବେ କାରଣ ମୋର ସମୟ ସରିଗଲାଣି ।

ଶ୍ରୀ ରତ୍ନାକର ସୂପକାର: ପୂର୍ବ ଆସେମ୍ବ୍ଲି ବୈଠକମାନଙ୍କରେ ସବୁ କାଟ ପ୍ରସ୍ତାବଗୁଡ଼ିକୁ ଗୋଟିକ ପରେ ଗୋଟିଏ ମାନ୍ୟବର ସଭ୍ୟମାନେ ଆଗତ କରୁଥିଲେ ଏବଂ ସେସବୁ କାଟ ପ୍ରସ୍ତାବ ଆଲୋଚନା ହେଲା ପରେ ମାନ୍ୟବର ବିଭାଗୀୟ ମନ୍ତ୍ରୀ ତହିଁର ଉତ୍ତର ଏକ ସଙ୍ଗେ ଦେଉଥିଲେ । ତାପରେ ଯେଉଁ ସଭ୍ୟମାନେ କାଟ ପ୍ରସ୍ତାବ ଦେଉଥିଲେ ସେମାନଙ୍କୁ କାଟ ପ୍ରସ୍ତାବ ଉଠାଇ ନେବାପାଇଁ କୁହାଯାଉଥିଲା । ଯେଉଁ ସଭ୍ୟମାନେ କାଟ ପ୍ରସ୍ତାବ ଉଠାଇ ନେଉ ନ ଥିଲେ ସେମାନଙ୍କର କାଟ ପ୍ରସ୍ତାବ ଉପରେ ଭୋଟ ନିଆ ଯାଉଥିଲା ଏବଂ ସେସବୁ କାଟ ପ୍ରସ୍ତାବ ପ୍ରତ୍ୟାହୃତ ହେଲା ପରେ ବା ଭୋଟ ନିଆ ସରିଲା ପରେ ମୂଳ ପ୍ରସ୍ତାବ ଉପରେ ଭୋଟ ନିଆଯାଉଥିଲା । ଏହି ବିଧି ବରାବର ଅନୁସରଣ କରାଯାଉଥିଲା । ବର୍ତ୍ତମାନ ଦେଖାଯାଉଛି ଯେ ଏହିସବୁ general ଉପରେ ଅର୍ଥାତ refusal of supplies ବାବଦରେ ଯଦି ଆମେ ଆଲୋଚନା କରୁ ତାହାହେଲେ ଅନ୍ୟ କାଟ ପ୍ରସ୍ତାବଗୁଡ଼ିକ ଆସିଲା ପୂର୍ବରୁ ଯଦି ଏହାର ଭୋଟ ପ୍ରଥମରୁ ନିଆଯାଏ ତାହାହେଲେ କ'ଣ

ହେବ ନା, ଅନ୍ୟାନ୍ୟ ଯେତେସବୁ କାଟ ପ୍ରସ୍ତାବ ରହିଛି ସେ ପ୍ରତ୍ୟେକ କାଟ ପ୍ରସ୍ତାବ ଉପରେ ଆଲୋଚନା ଯଦି ହୁଏ, ତାହାହେଲେ ମୁଁ ଭାବୁଛି ଯେ ସବୁ କାଟ ପ୍ରସ୍ତାବ ଆଲୋଚନା କରିବା ସୁଯୋଗ ସବୁ ସଭ୍ୟମାନେ ପାଇ ପାରିବେ ନାହିଁ । ତେଣୁ ଏ ବିଷୟରେ ମୋର କହିବାର ଏତିକି ଉଦ୍ଦେଶ୍ୟ ହେଉଛି, ଯେଉଁ ସଭ୍ୟମାନେ କାଟ ପ୍ରସ୍ତାବ ଦେଇଛନ୍ତି ସେମାନଙ୍କୁ ଅନ୍ତତଃ ଯଥେଷ୍ଟ ସୁଯୋଗ ମିଳିବା ଉଚିତ । ସେମାନେ ଯେଉଁ ବିଷୟରେ ଆଲୋଚନା କରିବା ପାଇଁ ନିର୍ଦ୍ଦିଷ୍ଟ କାଟ ପ୍ରସ୍ତାବ ଉପସ୍ଥାପିତ କରିବା ପାଇଁ ପ୍ରସ୍ତାବ ଦେଇଛନ୍ତି, ଅନ୍ୟାନ୍ୟ ସଭ୍ୟମାନେ ସେ ବିଷୟ ଆଲୋଚନା କରିବା ପୂର୍ବରୁ ଏହି ନିର୍ଦ୍ଦିଷ୍ଟ ସମୟସୂଚି ମଧ୍ୟରେ ସେମାନେ ଯେପରି ସମୟ ପାଇ ପାରିବେ ସେପରି ବ୍ୟବସ୍ଥା କରାଗଲେ ଭଲ ହୁଅନ୍ତା ।

**ଶ୍ରୀ ରତ୍ନାକର ସୁପକାର:** ମାନ୍ୟବର ବାଚସ୍ପତି ମହାଶୟ, ମୋର ପୂର୍ବବର୍ତ୍ତୀ ବକ୍ତା ଆମର ଶାସନ ବିଭାଗର ବିଭିନ୍ନ ଉପବିଭାଗମାନଙ୍କରେ କିଭଳି ବିଶୃଙ୍ଖଳା ହେଉଛି, ସେ ବିଷୟରେ ବର୍ଣ୍ଣନା କଲେ । ମୁଁ କହିବାକୁ ଚାହେଁ ଯେ ହିନ୍ଦୀ ସାହିତ୍ୟରେ ପ୍ରସିଦ୍ଧ ନାଟ୍ୟକାର ଶ୍ରୀ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ଅନ୍ଧେର ନଗରୀ ନାଟକ ଆପଣ ପଢ଼ିଥିବେ ମୁଁ ଭାବୁଛି ଆମ ଦେଶରେ ଯେଉଁ ଦେଶର ରାମରାଜ୍ୟ ପ୍ରତିଷ୍ଠା କରିବାର କଳ୍ପନା ଥିଲା, ସେହି ଦେଶରେ ବର୍ତ୍ତମାନ ଆମେ ସେହି ନାଟ୍ୟକାରଙ୍କ ବର୍ଣ୍ଣିତ 'ଅନ୍ଧେରୀ' ରାଜ୍ୟର ପ୍ରତିଷ୍ଠା କରିବାର କଳ୍ପନା କରୁଥାଇଁ । Rule ଓ law ଯାହା ଥିଲା ତା ବଦଳରେ ଆମର ସର୍ବୋଚ୍ଚ କର୍ମଚାରୀମାନେ ଆଇନର ବ୍ୟତିକ୍ରମ କରିବା ହିଁ ଗୋଟିଏ ବିବେକ ସମ୍ମତ ବିଷୟ ବୋଲି ଭାବୁଛନ୍ତି ଏବଂ ଆମର ସର୍ବୋଚ୍ଚ officer ମାନଙ୍କ ମଧ୍ୟରେ ଯେପରି ଭାବରେ ବିଶୃଙ୍ଖଳା ଯେପରି ଭାବରେ ଦୁର୍ନୀତି ପଶି ଯାଇଛି, ତାହା ବାସ୍ତବିକ ହୃଦୟବାନ ଓ ଶିକ୍ଷିତ ଲୋକ ଲକ୍ଷ୍ୟ କରିବା କଥା । ମୋର ବିଶେଷ ସମୟ ନ ଥିବାରୁ ଏହି ବିଷୟରେ ମୁଁ ସାମାନ୍ୟ 2/3 ଟା କଥା ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ପ୍ରଥମ କଥା ହେଉଛି ଯେ ଆମର ସମ୍ବଲପୁରରେ Revenue Board ର ମେମ୍ବର ଶ୍ରୀଯୁକ୍ତ ଶିଭରମାନଙ୍କ ବିଷୟ ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବି । ଏହି ବିଷୟରେ ଅଳ୍ପ ଦିନ ତଳେ ଏହି ସଭାଗୃହରେ ପ୍ରଶ୍ନଉତ୍ତର ଛଳରେ ଯେଉଁ କେତେ ବିଷୟରେ ଆଲୋଚନା ହୋଇଛି ତାହା ମୁଁ ସଂକ୍ଷିପ୍ତଭାବରେ ପୁନରାବୃତ୍ତି କରିବି । ଆପଣ ଜାଣିଥିବେ ସମ୍ବଲପୁରରେ ଗୋଟିଏ Orient Paper Mill ଅଛି ବା ଗୋଟିଏ କାଗଜକଳ ଅଛି । ଏହା ସେଠ 12 ବର୍ଷ ହେଲା ପ୍ରତିଷ୍ଠିତ ହୋଇଛି । ବିଶେଷଜ୍ଞମାନେ ପରାମର୍ଶ ଦେଇଛନ୍ତି ସେହି କାଗଜକଳରୁ ଯେଉଁ ପାଣି ବାହାରୁଛି, ତାହା କିପରି ଭାବରେ ବିଶୁଦ୍ଧ ହୋଇ ପାରିବ, ବିଶେଷଜ୍ଞମାନେ ପରାମର୍ଶ ଦେଇଥିଲେ ମଧ୍ୟ ସେହି ପରାମର୍ଶକୁ Mill କର୍ତ୍ତୃପକ୍ଷ ଗ୍ରହଣ କରି ନ ଥିବାରୁ ଆମ ଲୋକସାଧାରଣଙ୍କ ତରଫରୁ ଗୋଟିଏ ମକଦ୍ଦମା କରିବାକୁ ବାଧ୍ୟ ହୋଇଥିଲୁ । ଦୁଃଖର ବିଷୟ 12 ବର୍ଷ ଧରି ଲୋକେ ଆପତ୍ତି କରୁଥିଲେ ହେଁ ସରକାର ସେହି ବିଷୟରେ ବିଶେଷ ଦୃଷ୍ଟି ଦେଲେ ନାହିଁ । ଏ ବିଷୟ ଆମ ପ୍ରଧାନ ମନ୍ତ୍ରୀଙ୍କଠାରୁ ଆରମ୍ଭ କରି

ପ୍ରତ୍ୟେକ କର୍ମଚାରୀ ବଡ଼ ହୁଅନ୍ତୁ ବା ଛୋଟ ହୁଅନ୍ତୁ ପ୍ରତ୍ୟେକ ଲୋକପ୍ରତିନିଧି ଏବଂ ସମସ୍ତ ଜନସାଧାରଣ ଜାଣିଥିଲେ ସୁଦ୍ଧା ଏ ବିଷୟରେ ଲୋକେ ପ୍ରତିବାଦ କରିଥିଲେ ସୁଦ୍ଧା ଯେଉଁ ସମୟରେ ଏ ବିଷୟ ବିଚାରାଧୀନ ଥିଲା ସେହି ସମୟରେ ଆମ ସରକାର ଗୋଟିଏ Press Note ଜରିଆରେ ପ୍ରଚାର କଲେ ଯେ ପ୍ରକୃତରେ କୌଣସି ରକମ ଲୋକଙ୍କର ଅସୁବିଧା ହେଉ ନାହିଁ । ଏହାଦ୍ୱାରା ଦ୍ୱୈତ ସରକାର Court କୁ ପ୍ରଭାବିତ କରିବାକୁ ଚେଷ୍ଟା କରିଥିଲେ । ସେ ଯାହାହେଉ ସେ ମକଦମା Decree ହେଲା । ଠିକ୍ ତା'ର ଅବ୍ୟବହିତ ପରେ ଆମର ଦାୟିତ୍ୱସଂପନ୍ନ officer. ସମ୍ବଲପୁରର ବିଶିଷ୍ଟ ନେତା ବୋଧରାମ ଦୁବେଙ୍କୁ ଡକାଇ ଏ ବିଷୟରେ ରାଜିନାମା ପାଇଁ କେତେକ ସର୍ତ୍ତ ଦେଇଥିଲେ । ଏ ବିଷୟରେ ଗତ ତା 25-5-1952 ରେ ଯେଉଁ ପ୍ରଶ୍ନୋତ୍ତର ହୋଇଥିଲା ତାକୁ ଯଦି ଅନୁଧ୍ୟାନ କରି ଦେଖିବେ ତାହାହେଲେ ଆପଣ ବୁଝି ପାରିବେ ଯେ କିପରି ଆମର ସର୍ବୋଚ୍ଚ ଅଫିସରମାନେ ଏ ବିଷୟରେ ବିନାଦ୍ୱିଧାରେ ଏ ପ୍ରକାର ପୁଞ୍ଜିପତି ଏବଂ ବଡ଼ ଲୋକଙ୍କୁ ସମର୍ଥନ କରି ଜନସାଧାରଣଙ୍କ ହିତ ବିଷୟରେ କିପରି ଯାଇ ପାରନ୍ତି । ସେ ପ୍ରଶ୍ନୋତ୍ତର ଆପଣ ଯଦି ଦେଖିବେ ତେବେ ଏ କଥା ସ୍ପଷ୍ଟ ବୁଝି ପାରିବେ । Lawa and order ବା ଆଇନ ଶୃଙ୍ଖଳା ନାମ ଦେଇ ଯେଉଁ ପ୍ରକାର ଦୁର୍ନୀତି କରାଯାଉଛି ଏବଂ ଯେପରି ଭାବରେ ଏଇଟା କରାଯାଉଛି ତାହା ବାସ୍ତବିକ ଦୁଃଖର କଥା । ସେ ଯେଉଁ କାରଣ ଦର୍ଶାଇ Compromise କରିବାକୁ ଦେଇଥିଲେ ତାହା ହେଉଛି ମିଲ୍ କର୍ତ୍ତୃପକ୍ଷ ସେ ମଇଳା ପାଣିକୁ ଅଲଗା କରିବେ ଏବଂ ସେଥିରେ ବାଦୀ ପକ୍ଷ ସ୍ୱୀକାର କରିବେ ଯଦି ଏହି ମଇଳା ପାଣି ଅଲଗା କରିଦେବା ଦ୍ୱାରା ଲୋକଙ୍କର କିଛି ସୁବିଧା ହୋଇଥାନ୍ତା ବୋଲି ମାନ୍ୟବର ସଭ୍ୟ ବିଶ୍ୱାସ କରୁଥିଲେ ତାହାହେଲେ ବାଦୀଙ୍କ ସମ୍ମତି ନେଇ ସେଇଟା କ'ଣ କରି ପାରି ନ ଥାନ୍ତେ ? ଯଦି ସେ ଚାହିଁଥାନ୍ତେ ଏହି ସବୁ ବିଷୟ ଦେଖିଲେ ଆମର ସ୍ପଷ୍ଟ ପ୍ରତ୍ୟୟମାନ ହେଉଛି ଯେ ଆମର ଯେତେ ବଡ଼ ବଡ଼ କର୍ମଚାରୀ ହୁଅନ୍ତୁ ପଛକେ ଯେତେ ବଡ଼ ବଡ଼ ଦାୟିତ୍ୱଶୀଳ କର୍ମଚାରୀ ହୁଅନ୍ତୁ ପଛକେ, ସେମାନେ କିପରି ଏ ପ୍ରକାର ଦୁର୍ନୀତିରେ ଭାଗ ନେଉଛନ୍ତି । ଯେତେବେଳେ ଏ ସଭାଗୃହରେ ପ୍ରଶ୍ନ ହେଉଛି, ଆମର ସରକାର—ମୁଁ ବିଶେଷ ସମ୍ମାନ ସହିତ କହିବି—ଅନ୍ଧଭାବରେ ସେମାନଙ୍କୁ ସମର୍ଥନ କରୁଛନ୍ତି ।

ତା'ପରେ ଆଉ ଗୋଟିଏ ବିଷୟ ପ୍ରତି ମୁଁ ଆପଣଙ୍କରୁ ଦୃଷ୍ଟି ଆକର୍ଷଣ କରିବି । ସେହି ଅଫିସରଙ୍କ ବିରୁଦ୍ଧରେ ବରଗଡ଼ର ଜଣେ ଲୋକ, ଯାହା ନାମରେ କି କେତେକ ଜମି ଥିଲା ତା'ର ମୃତ୍ୟୁ ପରେ ତାଙ୍କ ନାତି ନାମରେ ସେ ଜମି ଦାଖଲ ଖାରଜ ହୋଇଛି । କିନ୍ତୁ ଜଣେ Revenue Inspector ଯେ କି ହୀରାକୁଦ ବିଭାଗରେ କାମ କରନ୍ତି ଯେଉଁ ଲୋକ କ୍ଷତିପୂରଣ ପାଇବାର କଥା ତାଙ୍କ ନାମରେ Record ନ କରି ଅନ୍ୟ ଲୋକଙ୍କ ନାଲରେ Record କରାଇଲେ ଯାହା ଫଳରେ ଅନ୍ୟ ଜଣେ ଲୋକଙ୍କୁ

କ୍ଷତିପୂରଣ ଦିଆଗଲା । ଏବିଷୟରେ ଯେ କ୍ଷତିପୂରଣ ପାଇବା ହକ୍‌ଦାର ସେ ଯେତେବେଳେ ନାଲିସ୍ କଲେ—Revenue Inspector ନାମରେ ମୋକଦମା ବିଗ୍ରହେଲା । ସେହି ମକଦ୍ଦମା ଏତେ ଗୁରୁତର ମକଦ୍ଦମା ଯେ Commitment proceedings ହେଲା । ରେଭିନ୍ୟୁ ଇନ୍‌ସ୍‌ପେକ୍ଟର ସେଥିରେ ତାଙ୍କ ନିଜ ପକ୍ଷକୁ ସମର୍ଥନ କରି ପାରୁଥାନ୍ତେ, ଜଣେ Police Sub-Inspector, proceedings watch କରିବାକୁ ପଠାପାଇ ପରିଥାନ୍ତା । ମାତ୍ର ତାହା ନ ହୋଇ ଜଣେ Special Government Advocate ଙ୍କୁ ନିଯୁକ୍ତ କରି କିପରି ସେ ଅଫିସରଙ୍କୁ ସୁବିଧା ଦେଇଛନ୍ତି ଓ ତାଙ୍କୁ ଆଜିପର୍ଯ୍ୟନ୍ତ suspend କରାଯାଇନାହିଁ ସେହି special Advocate ଙ୍କୁ ଦୈନିକ 140 ଟଙ୍କା fees ଦେଇ ନିଯୁକ୍ତି କରାଯାଇଛି ଏବଂ ୪/10 ମାସ ହେଲା ସେ case ଗ୍ଲଲିଛି ଏବଂ ତାଙ୍କୁ ମୋଟରେ ଏ ପର୍ଯ୍ୟନ୍ତ ଟ 1,120 ଙ୍କା ଦିଆଗଲାଣି । ଏ ବିଷୟରେ ଯେତେବେଳେ ପ୍ରଶ୍ନ ହୋଇଛି ମାନ୍ୟବର ବିଭଗୀୟ ମନ୍ତ୍ରୀ କହିଛନ୍ତି ଏ ବିଷୟରେ ଖବର ଆସିନାହିଁ । ଏ ବିଷୟରେ ମୁଁ ବହୁ ପୂର୍ବରୁ ପ୍ରଶ୍ନ ପଗ୍ଚରିଥିଲା । ଦୁଃଖର ସହିତ ମୁଁ କହିବାକୁ ବାଧ୍ୟ ହେଉଛି ଯେ ଯେଉଁ ବିଷୟରେ ଟିକିଏ ଗୋଳମାଳ ଥିବ ସେଥିରେ ବରାବର ଏହିପରି Plea ନେଉଛନ୍ତି ଯେ ପ୍ରଶ୍ନର ଉତ୍ତର ଏପର୍ଯ୍ୟନ୍ତ ଆସିନାହିଁ ।

ତା'ପରେ ଆଉ ଗୋଟିଏ ବିଷୟ ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବି ଯେ ହୀରାକୁଦ ବୁଡ଼ି ଅଞ୍ଚଳରେ ୩୪ ଖଣ୍ଡ ଗାଁ ଏହି ବର୍ଷ ବୁଡ଼ିଯିବ ବୋଲି ଗତ ଫେବୃଆରି ମାସରେ Board of Revenue Member ଙ୍କ ଦାୟିତ୍ୱରେ notice ବାହାରିଲା । ଏ ଯେଉଁ ୩୪ ଖଣ୍ଡ ଗାଁ ବୁଡ଼ିଯିବା କଥା ସେ ମଧ୍ୟରୁ 19 ଖଣ୍ଡ ଗାଁ ପାଇଁ ଆଜିପର୍ଯ୍ୟନ୍ତ କୌଣସି land acquisition notice ଦିଆ ଯାଇ ନ ଥିଲା । ମୁଁ ଏ ବିଷୟରେ ତା 2 5-1952 ରେ ଗୋଟିଏ ପ୍ରଶ୍ନ ପଗ୍ଚରିଥିଲି । ମାତ୍ର ସେ ପ୍ରଶ୍ନର ଉତ୍ତର ମିଳିଲା ତା 28-5-1952 ରେ । ଏଇ ପ୍ରଶ୍ନ ପାଇବା ପରେ ଅର୍ଥାତ ତା 12-5-1952 ରେ ସେ ବିଷୟରେ land acquisition notice ଜାରି କରଯାଇଛି ।

ଏ ବିଷୟରେ ଯେତେବେଳେ ମୁଁ ପ୍ରଶ୍ନ କରିଥିଲି ସେତେବେଳେ ସରକାର ଯୁକ୍ତି ଦେଖାଇଥିଲେ ଯେ ଯେଉଁ Land Acquisition Officer ସେ ବିଭଗରେ କାର୍ଯ୍ୟ କରନ୍ତି ତାଙ୍କର ସମୟ ନାହିଁ । 1946 ରୁ କୁହାଯାଉଛି ଯେ ହୀରାକୁଦ ବନ୍ଧ ଯୋଜନାରେ 150 ଖଣ୍ଡରୁ ଅଧିକ ଗାଆଁ ବୁଡ଼ିଯିବ । 1947 ସାଲରୁ ସେମାନେ Land Acquisition Officer ନିଯୁକ୍ତି କରି ସାରିଲେଣି । କିନ୍ତୁ ଏହି 4/5 ବର୍ଷ ଭିତରେ 150 ଟି ଗାଆଁରୁ କେବଳ 19 ଟି ଗାଆଁରେ କାର୍ଯ୍ୟାନୁଷ୍ଠାନ କରି ପାରିଛନ୍ତି । ବାକି ଯେତେ କାର୍ଯ୍ୟ ରହିଯାଇଛି ସେ ଯଦି ନିଜେ କାର୍ଯ୍ୟ କରି ପାରୁନାହାନ୍ତି, ସେଥିପାଇଁ ଆହୁରି ଅଧିକ ଅଫିସର ନିଯୁକ୍ତି କରାଯିବା ବିଷୟରେ କୌଣସି ପରାମର୍ଶ ସରକାରଙ୍କୁ ଦେଇ ନାହାନ୍ତି । Board of Revenue ର ସଭ୍ୟ ମଧ୍ୟ ଏ ବିଷୟରେ କିଛି କହି

ନାହାନ୍ତି । ଯଦି କହିଥାନ୍ତେ ସରକାର ଏ ବିଷୟରେ କାର୍ଯ୍ୟାନୁଷ୍ଠାନ କରିଥାନ୍ତେ–– ସରକାର କାର୍ଯ୍ୟାନୁଷ୍ଠାନ ନ କରିବାର କୋଣସି କାରଣ ନ ଥିଲା । ଏପରି ଯେଉଁମାନେ କାର୍ଯ୍ୟ କରୁଛନ୍ତି ଯେଉଁମାନେ ନିତାନ୍ତ ଅପାରଗ ସେମାନଙ୍କୁ ପୁଣି Special officer ରୂପେ ନିଯୁକ୍ତ କରାଯାଉଛି ଏବଂ ଏମାନଙ୍କ conduct ବିଷୟରେ ଯେତେବେଳେ ପ୍ରଶ୍ନ ଆସେ ସରକାର ସେହିମାନଙ୍କୁ ଅନ୍ଧଭାବରେ ସମର୍ଥନ କରିଥାନ୍ତି । ଏହିପରି ଆମ ଶାସନ କଳରେ inefficiency, corruption, servility to the mill-owners and capitalists ଏ ପ୍ରକାର ଭାବରେ ଆମର କାମ ହେଉଛି । ଏହିପରି ଯଦି ଆମର ସର୍ବୋଚ୍ଚ ଅଫିସରଙ୍କ ଭିତରେ ଦୁର୍ନୀତି ପ୍ରବେଶ କରେ ତାହାହେଲେ ଆମେ ତାଙ୍କ ତଳିଆ ଅଫିସରଙ୍କ ଠାରୁ ଅର୍ଥାତ୍ Deputy, Sub-Deputy ଓ Magistrate ଙ୍କ ଠାରୁ କ'ଣ ଆଶା କରିବା ? ସଂସ୍କୃତରେ ଗୋଟିଏ ଶ୍ଳୋକ ଅଛି :

ଯଦା ଯଦା ଚରତି ଶ୍ରେଷ୍ଠ ସ୍ତତ୍ର ଦେବେତରେ ଜନଃ।
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ।

ଆମର ସବୁଠାରୁ ବଡ଼ ଅଫିସର ଯଦି ଏହିପରି କରେ ତାହାହେଲେ ତାଙ୍କ ତଳରେ ଯେଉଁମାନେ ଅଫିସର ଅଛନ୍ତି ଠିକ୍ ସେହିପରି ଭାବରେ କରିବେ ଓ କରୁଛନ୍ତି । ଉଦାହରଣ ସ୍ୱରୂପ ସମ୍ବଲପୁରର Subdivisional Officer ଅଳ୍ପ କେତେଦିନ ତଳେ mill authority ଙ୍କ ପ୍ରରୋଚନାରେ ଯାଇ ଯେଉଁ ଲୋକମାନେ ଏହି ଗ୍ରୀଷ୍ମ ସମୟରେ ନଦୀରୁ ପାଣିନେଇ ନାନା ପ୍ରକାର ଚାଷ କରୁଥିଲେ ଓ ସେ ସବୁ ପାଣି ସେମାନଙ୍କ ପାଇବା ହକ୍ ଥିଲେ ମଧ୍ୟ କଟାଇ ଦେଇଛନ୍ତି । ଏହି ଅଞ୍ଚଳରେ ପାଣି ବର୍ତ୍ତମାନ Orient Paper Mill ଦରକାର କରୁଛନ୍ତି । ଅଥଚ ଲକ୍ଷ ଲକ୍ଷ ଲୋକଙ୍କର ଅସୁବିଧା କରି ଇବ ନଦୀର ସବୁପାଣି ନେଉଛନ୍ତି ଏବଂ ମିଲ୍‌ର ମଇଳା ପାଣି ଛାଡ଼ିଦେଉଛନ୍ତି । ଏଥିର ପ୍ରତିକାର S. D. O. କିଛି କରନ୍ତି ନାହିଁ । Member, Board of Revenue କିଛି କରନ୍ତି ନାହିଁ । ଏପରି କି ସରକାର ମଧ୍ୟ କିଛି କରିବେ ନାହିଁ, ଲୋକେ ହାହାକାର କରନ୍ତୁ ପଛକେ ଏଥିରେ ଆମର ଏକମାତ୍ର ସାହାଭରସା ଭଗବାନ । ବର୍ତ୍ତମାନ ସମ୍ବଲପୁରର ଲକ୍ଷ ଲକ୍ଷ ଲୋକ ଯେଉଁମାନେ କି ଏହି ଖରାରେ କଷ୍ଟ ଭୋଗ କରୁଛନ୍ତି ସେମାନେ ଗୁହାରି କଲେ କେହି ଶୁଣିବାକୁ ନାହିଁ । ମୋର ସମୟ ଅଭାବ ଥିବାରୁ ଆଉ ବେଶୀ କିଛି କହିବା ପାଇଁ ସମୟ ପାଉନାହିଁ । ମୁଁ ଏତିକି କହିପାରେ ଯେ "ଖଜୁରୀ ଗଛ ତ ମୂଳରୁ ପାହାଚ ପାହାଚ" ସେପରି ଆମର ବଡ଼ ଅଫିସରଙ୍କଠାରୁ ଆରମ୍ଭ କରି ଛୋଟ ଅଫିସର ପର୍ଯ୍ୟନ୍ତ ସମସ୍ତଙ୍କ ଭିତରେ ଏହି ପ୍ରକାର ଦୁର୍ନୀତି, Corruption, inefficiency ରହିଛି ଏବଂ ଆମ ସରକାର ଅନ୍ଧ ଭାବରେ ସେମାନଙ୍କୁ ସମର୍ଥନ କରିଚାଲିଛନ୍ତି । ଏହା ଯଦି ହୁଏ ତେବେ ଆମ ଦେଶର ଉନ୍ନତି ସୁଦୂର ପରାହତ । ଆଉ ଆମେ ଲୋକପ୍ରତିନିଧିମାନେ ଏଠି ଯାହା କହୁଛୁ, ଆମ ବିଭାଗୀୟ ମନ୍ତ୍ରୀ ଏ କାନରେ ଶୁଣି ସେ କାନରେ ଛାଡ଼ି ଦେଉଥିବେ ।

## ଅବସରପ୍ରାପ୍ତ ସରକାରୀ କର୍ମଚାରୀଙ୍କ ପୁନଃ ନିଯୁକ୍ତି ତଥା କାର୍ଯ୍ୟବୃଦ୍ଧି (Extension of Service) ସଂପର୍କୀୟ ପ୍ରସ୍ତାବ ଉପରେ ଭାଷଣ ।

ବିରୋଧୀ ଦଳର ନେତା ଭାବରେ ଡଃ ସୁପକାର ଧୀରସ୍ଥିର ଅଥଚ ଉଦ୍ବୋଧିତ ଭଙ୍ଗୀରେ ସରକାରଙ୍କୁ ସମାଲୋଚନ କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି ବରଂ ସେ ଗଠନମୂଳକ ସମାଲୋଚନା କରି ଆବଶ୍ୟକ ହେଲେ ସରକାରୀ କର୍ମଚାରୀ ତଥା ନେତୃ-ବର୍ଗଙ୍କୁ ସେ ଠିକଣା ଜବାବ ଦେଇଛନ୍ତି । ବିରୋଧୀ ଦଳର ସଭ୍ୟମାନେ ସରକାରଙ୍କୁ କେତେକ ଅବସରପ୍ରାପ୍ତ କର୍ମଚାରୀଙ୍କୁ କାର୍ଯ୍ୟବୃଦ୍ଧି ତଥା ପୁନଃ ନିଯୁକ୍ତିକୁ ସମାଲୋଚନା କରି ଏତଦ୍ବାରା ସରକାର ତୋଷାମଦ ଓ ଦୁର୍ନୀତିର ଦ୍ୱାର ଖୋଲିଯିବ ନିଜ ନିଜର ଆଶଙ୍କା ଜଣାଇଛନ୍ତି । ଡକ୍‌ଟର ସୁପକାର କହିଥିଲେ ବିଧାନସଭା (ତା 1-7-1952) ଯେ ସୁପ୍ରିମ ବିଚାରପତିମାନେ ୬୫ ବର୍ଷ ପରେ ଓ ହାଇକୋର୍ଟର ବିଚାରପତିମାନେ ୬୦ ବର୍ଷରେ ଅବସର ନେଲାପରେ ପୁନଃ ନିଯୁକ୍ତି ତ ଦୂରର କଥା କୋର୍ଟରେ ମଧ୍ୟ ପ୍ରାକ୍‌ଟିସି କରିବାକୁ ସମ୍ବିଧାନରେ ବାରଣ କରାଯାଇଛି । ଭବିଷ୍ୟତ ଚାକିରୀ ବା ସୁବିଧା ପାଇବା ଆଶାରେ ବିଚାରପତିମାନେ ଜାତିକୁ ନ୍ୟାୟ ବିଚାର ଦେଇ ନ ପାରନ୍ତି ବୋଲି ସମ୍ବିଧାନରେ ଏପ୍ରକାର ବାରଣ କରାଯାଇଛି । ଏହି ପ୍ରସଙ୍ଗରେ ସେ ରାୟସାହେବ, ରାୟବାହାଦୂର ଆଦି ଉପାଧି ଦେଇ ବ୍ରିଟିଶ ସରକାର କିପରି ତା'ର ଅନୁଗତ କର୍ମଚାରୀ ଓ ବ୍ୟକ୍ତି ବିଶେଷଙ୍କ ମୁହଁ ବନ୍ଦ କରଥିଲ, ତାର ଉଦାହରଣ ଦେଇଛନ୍ତି ।

ଡକ୍‌ଟର ସୁପକାର ଶେଷରେ କହିଛନ୍ତି, "କିନ୍ତୁ ମୁଁ ଦୁଃଖର ସହିତ କହିବି ଯେ ବର୍ତ୍ତମାନ ସେହିପରି ଏକ ପ୍ରସ୍ତାବ ବିରୋଧୀ ଦଳର ସଭ୍ୟ ଆଣିଥିବାରୁ ସେ (ମନ୍ତ୍ରୀ ମହାଶୟ) ତାଙ୍କୁ ବିରୋଧ କରି କହୁଛନ୍ତି ଯେ ଏପରି ପ୍ରସ୍ତାବ ଯଦି ଏ ଗୃହରେ ଆଲୋଚିତ ହୁଏ, ତାହାହେଲେ ଶାସନରେ ବିଶୃଙ୍ଖଳା ଉପୁଜିବ । କିନ୍ତୁ ଦୁଃଖର ବିଷୟ ମୁଁ ତାଙ୍କ ମତ ସହିତ ଏକମତ ହୋଇପାରୁନାହିଁ । ମାନ୍ୟବର ପ୍ରସ୍ତାବକ ଏ ଯେଉଁ ନୀତି ଉପରେ ଏ ଯେଉଁ ପ୍ରସ୍ତାବ ଆଗତ କରିଛନ୍ତି, ସେ ନୀତି ସହିତ ମୁଁ ସଂପୂର୍ଣ୍ଣ ଭାବରେ ଏକମତ ହେଉଛି" ।

ଶ୍ରଦ୍ଧାକରଙ୍କ ଏହି ଯୁକ୍ତି ଓ ଏପରି ଖେଦୋକ୍ତି ସଂପ୍ରତିକ କାଳରେ ମଧ୍ୟ ନିତାନ୍ତ ପ୍ରାସଙ୍ଗିକ, ଏହା ସମସ୍ତ ବୁଦ୍ଧିଜୀବୀ ଓ ବିବେକୀ ବ୍ୟକ୍ତି ସର୍ବାନ୍ତଃକରଣରେ ସ୍ୱୀକାର କରିବେ ।

Shri SHRADDHAKAR SUPAKAR: ମାନ୍ୟବର ସଭାପତି ମହାଶୟ, ଆପଣ ଜାଣିଥିବେ ସମ୍ବିଧାନରେ ଗୋଟିଏ ବ୍ୟବସ୍ଥା ଅଛି ଯେ High Court ର ବିଚାରପତିମାନେ 60 ବର୍ଷପରେ ଏବଂ Supreme Court ବିଚାରପତିମାନେ ୬୫ ବର୍ଷପରେ ଚାକିରୀ କରିପାରିବେ ନାହିଁ, ଏପରିକି retired ହେଲାପରେ Courtରେ Practice କରିପାରିବେ

ନାହିଁ ବୋଲି ବାଧା ଅଛି ଏହାର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ ହେଉଛି ଯଦି ବିଗ୍ରରପତି-ମାନଙ୍କ ମନରେ ଗୋଟିଏ ଭବିଷ୍ୟତ ଆଶା ରଖି ଦିଆଯାଏ ତା' ହେଲେ ଲୋକମାନଙ୍କ ମନରେ ସନ୍ଦେହ ହେବ, ସେମାନେ ଭବିଷ୍ୟତ ଗ୍ରକିରୀ ଆଶାରେ ସରକାରଙ୍କୁ ସନ୍ତୁଷ୍ଟ କରିବା ପାଇଁ ଇଚ୍ଛା କରୁଛନ୍ତି । ଏହି ଦୃଷ୍ଟିରୁ ସମ୍ବିଧାନରେ ଏହି ସ୍ୱାସ୍ଥ୍ୟକର ନିୟମଟି ରହିଛି । ସେହିପରି ଯଦି ଏପରି କୌଣସି ଗୋଟିଏ ନିୟମ ଏଠି ଆମର ସରକାରୀ ଅଫିସ ମାନଙ୍କରେ ରଖିଦିଆ ହୁଅନ୍ତା ତା'ହେଲେ ତା'ର ଉପାଦେୟତା ବିଶେଷ ପରିମାଣରେ ବଢ଼ିଯିବ । ଆପଣ ଜାଣିଥିବେ ପୂର୍ବରୁ ବ୍ରିଟିଶ ଅମଳରେ ଯେଉଁ କର୍ମଗ୍ରୀମାନେ ସରକାରଙ୍କର ବିଶେଷ ପ୍ରୀତିଭାଜନ ହୋଇ ପାରୁଥିଲେ ସେମାନେ ରାୟସାହେବ, ରାୟବାହାଦୁର, ଦେଓ୍ୱାନ ବାହାଦୁର ଇତ୍ୟାଦି ଉପାଧିମାନଙ୍କରେ ଭୂଷିତ ହେଉଥିଲେ । ଏହି ଉପାଧିରେ ଭୂଷଣ କରିବା ଦ୍ୱାରା ସେମାନେ ତାଙ୍କର ରାଜନୈତିକ ଉଦ୍ଦେଶ୍ୟ ଏହି ଉପାଧି ଭୂଷିତ କର୍ମଗ୍ରୀମାନଙ୍କ ଜରିଆରେ ସାଧନା କରି ପାରୁଥିଲେ । ବର୍ତ୍ତମାନ ଦେଖାଯାଉଛି ଆମର ଅଫିସରମାନଙ୍କଠାରୁ ସେ ସୁବିଧା କାଢ଼ିନିଆ ହୋଇଛି । କିନ୍ତୁ ବର୍ତ୍ତମାନ ଦେଖାଯାଉଛି ଯେଉଁ ଅଫିସରମାନେ ସରକାରଙ୍କୁ ବିଶେଷ ପରିମାଣରେ ସନ୍ତୁଷ୍ଟ କରିପାରୁଛନ୍ତି ସେମାନଙ୍କୁ ତା'ର ପ୍ରତିବଦଳରେ ସନ୍ତୁଷ୍ଟ କରିବା ପାଇଁ ଏକ ବିଶେଷ ଉପାୟ ଖୋଜା ଯାଉଛି । ସେଥିପାଇଁ ଅନେକ ସମୟରେ ଦେଖାଯାଉଛି ଯେ ଯେଉଁ ଅଫିସରମାନଙ୍କର କାର୍ଯ୍ୟକାଳ ପୂରିଯାଉଛି ସେମାନଙ୍କୁ ପନର୍ବାର କୌଣସି ନା କୌଣସି କାର୍ଯ୍ୟରେ ନିଯୁକ୍ତ କରଯାଉଛି ।

Shri DINABANDHU SAHU (Minister): ଯେତେବେଳେ ରାୟସାହେବ, ରାୟବାହାଦୁର ଉପାଧି ଦିଆଯାଉଥିଲା ସେତେବେଳେ କଣ ଏପରି ପୁନର୍ନିଯୁକ୍ତି କରଯାଉ ନ ଥିଲା ?

Shri SHRADDHAKAR SUPAKAR: ସେତେବେଳେ ଦିଆଯାଉଥିଲା କିନ୍ତୁ ବର୍ତ୍ତମାନ ବିଶେଷ ଭାବରେ ଦିଆଯାଉଛି । ମୋର କହିବାର ଉଦ୍ଦେଶ୍ୟ ହେଉଛି ଯେଉଁ ବିଭାଗମାନଙ୍କରେ ବିଶେଷଜ୍ଞତା ବିଶେଷ ପରିମାଣରେ ଦରକାର ଏବଂ ଯେଉଁ ନିଯୁକ୍ତିରେ ଏ ପ୍ରକାର ବିଶେଷ ଅଭିଜ୍ଞତା ନ ଥିଲେ କାର୍ଯ୍ୟ ଚଳିବା ଏକବାର ଅସମ୍ଭବ ଏବଂ ସେହି ବିଭାଗରେ ଯଦି ସେହି ଜାତୀୟ ବିଶେଷଜ୍ଞ କର୍ମଗ୍ରୀ ଆଉ କେହି ନ ଥିବେ ତା'ହେଲେ ସେହି ଅବସରପ୍ରାପ୍ତ ବିଶେଷଜ୍ଞ କର୍ମଗ୍ରୀଙ୍କୁ ଆଉ ବର୍ଷେ ଦୁଇବର୍ଷ ରଖିଲେ କୌଣସି ଆପତ୍ତି ଉଠିବାର ସମ୍ଭାବନା ନ ଥାଇ ପାରେ । କିନ୍ତୁ ଦେଖାଯାଉଛି ସାଧାରଣ ବିଭାଗମାନଙ୍କରେ ମଧ୍ୟ ଅଫିସରମାନଙ୍କୁ ଅବସର ନେବାପରେ ପୁନର୍ନିଯୁକ୍ତି କରଯାଉଛି । ଆଉ ଦୁଃଖର ସହିତ ଲକ୍ଷ୍ୟ କରାହେଉଛି ଯେଉଁ ଅଫିସରମାନେ ତାଙ୍କର ନିଯୁକ୍ତି ସମୟରେ କୌଣସି କାରଣରୁ ଉପରିସ୍ଥ କର୍ମଗ୍ରୀଙ୍କ ବିଶେଷ ପ୍ରୀତି ଭାଜନ ହୋଇପାରିଛନ୍ତି କେବଳ ସେହିମାନଙ୍କୁ ହିଁ ପୁନର୍ନିଯୁକ୍ତି କରଯାଉଛି ଯାହା ଫଳରେ କି

ହୁଏତ ଭବିଷ୍ୟତରେ ଏହିପରି ଗୋଟିଏ tendency ଆସିପାରେ ଯେଉଁ ବିଷୟରେ ମାନ୍ୟବର ମନ୍ତ୍ରୀ ମହାଶୟ ମନ୍ତବ୍ୟ ପ୍ରକାଶ କରିଛନ୍ତି ହୁଏତ ଏପରି ଗୋଟିଏ ସମୟ ଆସିପାରେ ଯେତେବେଳେ ପ୍ରତ୍ୟେକ କର୍ମଚାରୀଙ୍କ ମନରେ ଏପରି ଗୋଟିଏ tendency ଆସିବ କିପରି ଉପରିସ୍ଥ କର୍ମଚାରୀଙ୍କୁ ଏପରି ସନ୍ତୁଷ୍ଟ କରିରଖିବା ପାଇଁ ଯାହା ଫଳରେ କି ଭବିଷ୍ୟତରେ ତାଙ୍କର ପୁନର୍ନିଯୁକ୍ତି ପାଇବାର ବାଟ ସୁଗମ ହେବ । ଆମର ବିଶେଷ ଭାବରେ ଲକ୍ଷ୍ୟ କରିବା ଦରକାର ଯେ ପ୍ରତ୍ୟେକ କର୍ମଚାରୀମାନଙ୍କ ମନରେ ଏପରି ଗୋଟିଏ ଧାରଣା ଜନ୍ମାଇଦବାରେ ସେମାନେ କେବଳ ସେମାନଙ୍କର କର୍ତ୍ତବ୍ୟ କରିବେ, ତା'ଛଡ଼ା ଆଉଅଧିକ କିଛି ସେମାନେ ଆଶାକରିବା ଉଚିତ ନୁହେଁ ଏବଂ ସେମାନଙ୍କର ଅବସର ପ୍ରାପ୍ତି ଯେତେବେଳେ ଆସିଯାଉଛି ସେ ସମୟରେ ସେମାନେ ଯେତେ ଭଲକାମ କରୁଥାନ୍ତୁ ନା ପଛକେ at the age of retirement ସେମାନଙ୍କୁ ସାଧାରଣତଃ ନିଶ୍ଚୟ ଅବସର ନେବାକୁ ହେବ ଏବଂ ସେଥିପାଇଁ ନିୟମ ରହିବା ଉଚିତ । ସେହି ଉଦ୍ଦେଶ୍ୟ ନେଇ ବୋଧହୁଏ ମୁଁ ଭାବୁଛି ଏହି ପ୍ରସ୍ତାବଟା ଆଗତ କରଯାଇଛି । ଏ ବିଷୟରେ ମାନ୍ୟବର ବିଭାଗୀୟ ମନ୍ତ୍ରୀ ଯେଉଁ ଆଶଙ୍କା ପ୍ରକାଶ କରୁଛନ୍ତି ମୁଁ ଭାବୁଛି ସେ ଆଶଙ୍କା ସମୀଚୀନ ହେଉନାହିଁ । ସେ କହୁଛନ୍ତି non-official ବା ବେସରକାରୀ ସଭ୍ୟମାନେ ଏ ବିଷୟରେ ଯଦି କୌଣସି ପ୍ରକାର ହସ୍ତକ୍ଷେପ କରନ୍ତି କିମ୍ବା କୌଣସି ପ୍ରକାର ନୀତି ନିର୍ଦ୍ଦେଶର ସୂଚନା ଦିଅନ୍ତି ତା' ହେଲେ ଅଫିସରମାନଙ୍କ ମନରେ ଗୋଟିଏ ବିଶୃଙ୍ଖଳା ଭାବ ଜାତହେବ ଏବଂ ଏପରି ହେବାର ସମ୍ଭାବନା ରହିପାରେ । କିନ୍ତୁ ମୁଁ ଭାବୁଛି ଠିକ୍ ତା'ର ଓଲଟା ହେଉଛି । ମାନ୍ୟବର ପ୍ରସ୍ତାବକ ଯେଉଁ ପ୍ରସ୍ତାବଟି ଆଗତ କରିଛନ୍ତି ଏବଂ ଏ ବିଷୟରେ ସୂଚନା ଦେବାକୁ ଯାଇଁ ଯେ କେତୋଟି ବିଷୟ ଉଲ୍ଲେଖ କରିଛନ୍ତି, ମୁଁ ମୋର କ୍ଷୁଦ୍ର ମତିରେ ଭାବୁଛି ସେସବୁ ଦୃଷ୍ଟାନ୍ତ ଯଥୋପଯୁକ୍ତ ହୋଇଛି, କାହିଁକି ନା କୌଣସି ନିର୍ଦ୍ଦିଷ୍ଟ ବିଷୟରେ ଆଲୋଚନା କଲାବେଳେ ସେ ସବୁ illustrative ହୋଇଥାଏ ଏବଂ ସରକାର ତାହା ବୁଝିପାରନ୍ତି । ସେଥିପାଇଁ ସେ ଯେଉଁ ଦୃଷ୍ଟାନ୍ତ ଦେଇଛନ୍ତି ସେପରି ଦୃଷ୍ଟାନ୍ତ ମଧ୍ୟ ଅନେକ ସ୍ଥାନରେ ଦିଆଯାଇଛି । କେବଳ ସେତିକି ନୁହେଁ, ସରକାରୀ ଦଳ ତରଫରୁ ଅତୀତରେ ଏହି ପ୍ରକାର ସମାଲୋଚନା ଅନେକଥର ହୋଇଯାଇଛି ଏବଂ ଏହି ପ୍ରକାର ସମାଲୋଚନାର ପ୍ରଶସ୍ତତା ରହିବା ଦରକାର । ତେଣୁ ଏହି ପ୍ରକାର ସମାଲୋଚନା ଏ ବ୍ୟବସ୍ଥା ସଭାରେ ହେବା ଉଚିତ ନୁହେଁ ଏଭଳି କହିବା ଉଚିତ ନୁହେଁ । ଅବଶ୍ୟ ଯେତେବେଳେ ସମାଲୋଚନା ହୁଏ ସେତେବେଳେ ଆମର ବିଭାଗୀୟ କର୍ମଚାରୀମାନେ ଏହି ସଭା ଗୃହରେ ସେ ସମସ୍ତ ବିଷୟ ପ୍ରତିପାଦିତ କରିବାର ସୁଯୋଗ ପାଇ ପାରନ୍ତି ନାହିଁ । କିନ୍ତୁ ସେମାନେ ସେମାନଙ୍କର ବିଭାଗୀୟ ମନ୍ତ୍ରୀଙ୍କ ଆଗରେ ତାଙ୍କର କୈଫିୟତ ଉପସ୍ଥାପିତ କରିବା ପୂର୍ଣ୍ଣ ସୁଯୋଗ ରହିଛି, ଏବଂ ସେ ବିଭାଗୀୟ ମନ୍ତ୍ରୀଙ୍କର ମଧ୍ୟ ସେସବୁ ବିଚାର କରି ଦେଖିବାର ପୂର୍ଣ୍ଣ ସୁଯୋଗ ରହିଛି । ମୁଁ ଏଠାରେ ଆପଣଙ୍କର ଦୃଷ୍ଟି କି ଗୋଟିଏ ମାତ୍ର ଦୃଷ୍ଟାନ୍ତ ଆଣିବି । ପ୍ରାୟ 2 ବର୍ଷ ତଳେ ଆମର ବର୍ତ୍ତମାନ ଯେ

ପୂର୍ବ ବିଭାଗର ଉପମନ୍ତ୍ରୀ ହୋଇଛନ୍ତି ସେ ବିଶିଷ୍ଟ ଅଫିସରଙ୍କ ନାମରେ କେତେକ ଅଭିଯୋଗ ଆଗତ କରିଥିଲେ । କିନ୍ତୁ ମୁଁ ଦୁଃଖର ସହିତ କହିବି ଯେ ବର୍ତ୍ତମାନ ସେହିପରି ଏକ ପ୍ରସ୍ତାବ ବିରୋଧୀ ଦଳର ସଭ୍ୟ ଆଣିଥିବାରୁ ସେ ତାଙ୍କୁ ବିରୋଧ କରି କହୁଛନ୍ତି ଯେ ଏପରି ପ୍ରସ୍ତାବ ଯଦି ଏ ଗୃହରେ ଆଲୋଚନା ହୁଏ ତାହାହେଲେ ଶାସନରେ ବିଶୃଙ୍ଖଳା ଉପୁଜିବ । କିନ୍ତୁ ଦୁଃଖର ବିଷୟ ମୁଁ ତାଙ୍କ ମତ ସହିତ ଏକମତ ହୋଇ ପାରୁନାହିଁ । ମାନ୍ୟବର ପ୍ରସ୍ତାବକ ଏ ଯେଉଁ ନୀତି ଉପରେ ଏ ଯେଉଁ ପ୍ରସ୍ତାବ ଆଗତ କରିଛନ୍ତି ସେ ନୀତି ସହିତ ମୁଁ ପୂର୍ଣ୍ଣ ଭାବରେ ଏକମତ ହେଉଛି ।

Shri DINABANDHU SAHU (Minister): Sir, I want to correct the hon'ble Leader of the opposition. He carries the impression that I said as if members should not bring any allegation against officers. What I said was that hon'ble member got interested in some individual officer and by this he is creating indiscipline among such officers. I said that members are briefed by some other aspirants who do not get their chance. Without verifying facts, hon'ble members are making insinuations in this House which creates indiscipline among the officers.

## ଓଡ଼ିଶା ଅତ୍ୟାବଶ୍ୟକ ପଦାର୍ଥ ନିୟନ୍ତ୍ରଣ ଓ Requisitioning (Temp, Powers) ସଂଶୋଧନ ବିଲ 1952 ଉପରେ ମତାମତ ।

ବାଚସ୍ପତି ମହୋଦୟ ଅକ୍ଟୋବର 23, 1952 ଦିନ ଉପରୋକ୍ତ ବିଲ୍ ଉପରେ ଆଲୋଚନା କରିବା ପାଇଁ ଅନୁମତି ଦେଇଥିଲେ ଏବଂ ଡଃ ସୂପକାର ବିରୋଧୀ ଦଳ ନେତା ଭାବରେ ଏହି ବିଲର ଆୟୁଷ ଆହୁରି 2 ବର୍ଷ ବଢାଇ ଦେବା ପାଇଁ ପରାମର୍ଶ ଦେଇଛନ୍ତି । କେନ୍ଦୁପତ୍ର ଉପରେ ନିକଟ ଅତୀତରେ ଯେଉଁ ସମ୍ମିଳନୀ ହୋଇଥିଲା ସେଠାରେ କ'ଣ ଆଲୋଚନା ହେଲା ଏବଂ ତାର ଫଳାଫଳ କ'ଣ ହେଲା ସରକାର ଏ ବିଷୟରେ କି ନିଷ୍ପତ୍ତି ନେଲେ ଜାଣିବା ପାଇଁ ଚାହିଁଛନ୍ତି ।

ଶ୍ରୀ ସଦାଶିବ ତ୍ରିପାଠୀ : ଏହି ବିଲ୍ ପାସ କରାଇ ନେବାକୁ ପ୍ରସ୍ତାବ ଦେଲା ପରେ ଡଃ ସୂପକାର (ଅକ୍ଟୋବର 28; 1952) ମତ ଦେଇଥିଲେ ଯେ ଏହି ବିଲ୍‌ର ପ୍ରଥମ ଆଲୋଚନା ହେବା ସମୟରେ ଦୁଇଜଣ ବିଭାଗୀୟ ମନ୍ତ୍ରୀ ଯେଉଁ ଉତ୍ତରମାନ ଦେଲେ ସେଥିରେ ତାଙ୍କ ମନରେ କେତେ ସଂଦେହ ଜାତ ହୋଇଛି । ଲୁଗା, ସିମେଣ୍ଟ ଉପରେ ଅଯଥା ନିୟନ୍ତ୍ରଣକୁ ସେ ସମାଲୋଚନା କରିଛନ୍ତି ଏବଂ ଅତ୍ୟାବଶ୍ୟକ ଦ୍ରବ୍ୟ ତାଲିକାରେ ଯେଉଁଗୁଡ଼ିଏ ପଦାର୍ଥ ଅନ୍ତର୍ଭୁକ୍ତ ହୋଇଛି "କଦାପି ଆମେ କଳ୍ପନା କରିପାରିବା ନାହିଁ

ଯେ ଦୈନନ୍ଦିନ ଜୀବନ ବା ସାମାଜିକ ବ୍ୟବହାର୍ଯ୍ୟ ବସ୍ତୁ ହିସାବରେ ସେସବୁ ନିତ୍ୟାବ ବ୍ୟବହାର୍ଯ୍ୟ ଜିନିଷ ବୋଲି ଧରଯାଇପାରେ" ।

ରାଜନୈତିକ ଦୃଷ୍ଟିକୋଣରୁ କେନ୍ଦ୍ରପତ୍ର ନିୟନ୍ତ୍ରଣ କରା ଯାଉଛି ଏବଂ କେନ୍ଦ୍ରପତ୍ର ସମ୍ମିଳନୀକୁ "ଏକ ରାଜନୈତିକ ଶିକ୍ଷାକେନ୍ଦ୍ର" ବୋଲି ଅଭିହିତ କରିଛନ୍ତି । ସରକାରଙ୍କ ଆଦର୍ଶ ଓ କାର୍ଯ୍ୟପନ୍ଥା ମଧ୍ୟରେ ସାମଞ୍ଜସ୍ୟ ରକ୍ଷା କରାଯାଉ ନାହିଁ ବୋଲି ସେ ସମାଲୋଚନା କରିଛନ୍ତି । ଏହି ଡଃ ସୂପକାର ଜନସାଧାରଣଙ୍କ ମଙ୍ଗଳ ଦୃଷ୍ଟିରୁ ଯାହା ଉଚିତ ମନେ କରିଛନ୍ତ, ତାହା କହିବାକୁ ପଛାଇ ନାହାନ୍ତି ।

The SPEAKER: Motion moved that the Orissa Essential Articles Control and Requisitioning (Temporary Powers) Ammendment Bill, 1952 be taken into consideration.

ଶ୍ରୀ ଶବ୍ଦାକର ସୂପକାର: ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏହି ବିଲ୍ ଆଲୋଚନା କରିବା ପ୍ରସଙ୍ଗରେ ଅନେକ ଗୁଡ଼ିଏ ଅସୁବିଧାରେ ସମ୍ମୁଖୀନ ହେବାକୁ ପଡୁଛି । ସେଥିପାଇଁ ମୁଁ ଅନୁଭବ କରୁଛି ଯେ ଏହି ବିଲ୍ ଯେପରି ଭାବରେ ଆଲୋଚନା ହେବାର କଥା ଏବଂ ଆମେ ଏହି ବିଲ୍‌ର ଆଲୋଚନାରେ ଯେଉଁ କର୍ତ୍ତବ୍ୟ ପାଳନ କରିବାର କଥା ସେହି କର୍ତ୍ତବ୍ୟ ପାଳନରେ ଆମ୍ଭେମାନେ ଅସମର୍ଥ ହେଉଛୁ । ତାହାର ପ୍ରଧାନ କାରଣ ହେଲା ଯେ ଏହି ବିଲ୍‌ର ଆୟୁଷ ଆହୁରି 2 ବର୍ଷ ବଢାଇ ଦିଆଯାଉ ବୋଲି ଗୋଟି 1 ସଂଶୋଧନ ବିଲ୍ ଦିଆଯାଇଛି ଏବଂ ଆପଣ କହିଲେ ଯେ ମୂଳ ଆଇନର ଆଲୋଚନା ପୂରାପୂରି ଭାବରେ କରିବାର ଅଧିକାର ପ୍ରତ୍ୟେକ ସଭ୍ୟଙ୍କର ରହିଛି । କିନ୍ତୁ ଏହି ବିଷୟରେ ମୂଳ ଆଇନର ସଂଶୋଧନ ପାଇଁ ଯୋଡ଼ିଏ Ammendment ଦିଆଯାଇଥିଲା । ସେ ଦୁଇଟି ସଂଶୋଧନ ପ୍ରସ୍ତାବକୁ ଆପଣ ପ୍ରତ୍ୟାଖ୍ୟାନ କରି ଦେଇଛନ୍ତି । ତାପରେ ଏହି ବିଲ୍‌ର ଯାହା ମୁଖ୍ୟ ବିଷୟ ଏବଂ ଯେଉଁ ବିଷୟ ଆଲୋଚନା କରିବା ପାଇଁ ଅନେକ ସଭ୍ୟ ବିଶେଷ ଭାବରେ ଆଗ୍ରହାନ୍ୱିତ ମୂଳ ଆଇନର Scheduleରେ ସେ ସବୁ ବିଷୟମାନ ଦିଆଯାଇଛି । ସେ ସବୁ ବିଷୟମାନଙ୍କର ପୁନରାଲୋଚନା କରିବା ପାଇଁ ବର୍ତ୍ତମାନ ସମୟ ଆସିଛି କି ନାହିଁ ଏବଂ ତହିଁରେ କେତେ ପରିବର୍ତ୍ତନ ହେବା ଦରକାର ସେ ବିଷୟ ଏଥିରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ । ଆପଣ ଯଦି ମୂଳ ଆଇନକୁ ଦେଖିବେ ତାହାହେଲେ ଦେଖିବାକୁ ପାଇବେ ଯେ ଆଇନରେ ଯାହା ଅଛି ସେତା କେବଳ machinary ବା କିପରି ଭାବରେ ନିୟନ୍ତ୍ରଣ କରାଯିବ ସେ ବିଷୟରେ ସେଥିରେ ବ୍ୟବସ୍ଥା କରାଯାଇଛି ଏବଂ ତାହା ସଙ୍ଗେ ସଙ୍ଗେ କେଉଁ କେଉଁ ବିଷୟ ପ୍ରତି ନିୟନ୍ତ୍ରଣ ପ୍ରଯୁକ୍ତ ହେବ ସେ ବିଷୟରେ ଗୋଟିଏ ତାଲିକା ଦିଆଯାଇଛି । ଆପଣଙ୍କ ରୁଲିଂ ପରେ ଆଉ ବର୍ତ୍ତମାନ ସେହି ତାଲିକାରେ କୌଣସି ସଂଶୋଧନ କରିବାର ଅବକାଶ ନାହିଁ । ଆଉ ଗୋଟିଏ କଥା ହେଉଛି ଯେ ଏହି ସବୁ ବିଷୟରେ ଆଲୋଚନା ପାଇଁ ଯେଉଁ ସବୁ ଜିନିଷ, ଯେଉଁ ସବୁ ମାଲ ମସଲା ଦରକାର ସେସବୁ

ବିଷୟ ଆମ ସାମନାରେ ନାହିଁ । କେବଳ ବ୍ୟବସ୍ଥାପକ ସଭ ମଧ୍ୟରେ ଯାହା ହୋଇଛି ସେଟା ଛପା ନ ହୋଇଥିବାରୁ ଅସୁବିଧା ହେଉଛି ତାହା ନୁହେଁ । ଆପଣ ଜାଣିଥିବେ ଯେ ଗତ ବ୍ୟବସ୍ଥାପକ ସଭରେ କେନ୍ଦୁପତ୍ର ବିଷୟରେ ଗୋଟିଏ Conference କରିବାର ପ୍ରସ୍ତାବ ହୋଇଥିଲା ଏବଂ ସେ ପ୍ରସ୍ତାବ ଅନୁସାରେ ଗୋଟିଏ ସମ୍ମିଳନୀ ମଧ୍ୟ ଡକା ହୋଇଥିଲା । ସେ ସମ୍ମିଳନୀର ଫଳାଫଳ କଣ ହେଲା ଏବଂ ସରକାର ସେ ବିଷୟରେ କି ନିଷ୍ପତ୍ତି କଲେ ସେ ବିଷୟ ପୂର୍ବରୁ ମଧ୍ୟ ଜାଣି ପାରିଲୁ ନାହିଁ । ଆଜି ଏତେବେଳ ପର୍ଯ୍ୟନ୍ତ ମଧ୍ୟ ଆମେ ଜାଣି ପାରିଲୁ ନାହିଁ । ହୁଏତ ଆମର ଆଲୋଚନା ଯେତେବେଳେ ଶେଷ ହେବ ସେହି ସମୟରେ ମାନ୍ୟବର ମନ୍ତ୍ରୀ ତାଙ୍କର Statement କରି ଦେବେ ଏବଂ ତାପରେ ଆମ୍ଭମାନଙ୍କର ଆଉ ସେ ବିଷୟରେ କୌଣସି କଥା କହିବାର ଅଧିକାର ନ ଥିବ ।

The SPEAKER : ମାନ୍ୟବର ସଭ୍ୟ ଯଦି ଚାହାନ୍ତି ତାହେଲେ ଏହି ବିଲ୍‌ର final reply ପୂର୍ବରୁ ତାହା ମିଳିପାରେ ।

Shri DINABANDHU SAHU (Minister) : ବିଲ୍‌ର ୩ଟି Stage ଭିତରୁ ଆମ୍ଭେମାନେ ବର୍ତ୍ତମାନ consideration stageରେ ଅଛୁ । Consideration stageରେ ବୁଝାଯିବ, କ'ଣ କରାଯିବ, ନିଷ୍ପତ୍ତି ହୋଇଛି କି ନାହିଁ । ତାପର ପୁଣି ଯେତେବେଳେ Clause by Clause Stage ଆସିବ ସେ କଥା ପୁଣି ଉଠାଯାଇ ପାରେ । ତା ଛଡ଼ା final stage ମଧ୍ୟ ଅଛି ।

ଶ୍ରୀ ଶ୍ରଦ୍ଧାକର ସୁପକାର : Clause by Clause କିମ୍ବା third reading ବେଳେ କେବଳ ଏହି ବିଲ୍ ନେଇ ଆଲୋଚନା ହୋଇପାରେ । ତେଣୁ ମୁଁ ଭାବୁଛି ଏହି ବିଷୟରେ ଆମର କର୍ତ୍ତବ୍ୟ ପାଇଁ ଯେଉଁସବୁ ଜିନିଷ ଦରକାର ସେସବୁ ନଥିବା ଯୋଗୁଁ ଆମ୍ଭେମାନେ ଏ ବିଷୟରେ କୌଣସି ରକମ ଭାବ ନେଇ ପାରିବୁ ନାହିଁ ଏବଂ ଆପଣ ଯେଉଁ ମନ୍ତବ୍ୟ ପ୍ରକାଶ କଲେ ଏବଂ ସରକାରୀ ବେଞ୍ଚ ତରଫରୁ ଯେଉଁ ମନ୍ତବ୍ୟ ପ୍ରକାଶ କରିଛନ୍ତି ଯେ ଏହି ବିଲ୍‌ରେ ଅଯଥା ସମୟ ନିଆଯାଉଛି, ଏପର୍ଯ୍ୟନ୍ତ କଣ କରାଯାଉଛି ସେଇଟା ମିଳିଲେ ଏ ଆପତ୍ତି ଦୂର ହୋଇଯିବ ଏବଂ ବିନା ଆଲୋଚନାରେ ଏହି ବିଲ୍ ଚଞ୍ଚଳ ପାସ ହୋଇ ଯିବ ବୋଲି ମୁଁ ଭାବୁଛି ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : ଯେଉଁ Conference ହୋଇଥିଲା ତାହାର Proceeding କାଲି ଦେଇ ଦେବା ପାଇଁ ବନ୍ଦୋବସ୍ତ କରିବି ।

ଶ୍ରୀ ଶ୍ରଦ୍ଧାକର ସୁପକାର : ଆଜି ତ ଆଲୋଚନା ସରିଥିବ । କାଲି Proceeding ମାନ୍ୟବର ବିଭାଗୀୟ ମନ୍ତ୍ରୀ ଦେବେ ବୋଲି କହୁଛନ୍ତି ସେଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ ଦେଉଅଛି । କାଲି ତାହା କି କାମରେ ଲାଗିବ ?

ଶ୍ରୀ ନବକୃଷ୍ଣ ଚୌଧୁରୀ (ମୁଖ୍ୟମନ୍ତ୍ରୀ): ଖାଲି ଯଦି କେନ୍ଦ୍ରପକ୍ଷ ସମ୍ପର୍କ କମିଟିର ବିବରଣୀ ପାଇଁ କାର୍ଯ୍ୟ ଅଟକି ଥାଏ ତେବେ ଏ ଆଲୋଚନା କାଲିକି ସ୍ଥଗିତ ରହୁ । ସେ ବିବରଣୀ ମୋ ପାଖକୁ କେତେକଦିନ ଆଗରୁ ଆସିଥିଲା । ମୁଁ ଭାବିଥିଲି ଅନ୍ୟାନ୍ୟ ସମସ୍ତେ ଏହା ପାଇଥିବେ ।

ଶ୍ରୀ ଶ୍ରଦ୍ଧାକର ସୁପକାର: ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏ ବିଲ୍ ଆଲୋଚନା ନ କରିବାର ତିନି ଗୋଟି କାରଣ ଅଛି । ଖାଲି ଯେ Proceeding ପାଇ ନ ଥିବାରୁ ଆଲୋଚନା କରିପାରୁ ନାହୁଁ, ତାହା ନୁହେଁ । ତା ଛଡ଼ା ବି ଆହୁରି ଅନେକ ଅସୁବିଧା ଅଛି ।

The SPEAKER: ଏ ଗୋଟିଏ Expring Laws Continuance Bill, ମୂଳ ବିଲ୍‌ର ଯେଉଁ ନୀତି House ତାକୁ ଗ୍ରହଣ କରି ସାରିଛି । ବର୍ତ୍ତମାନ କେବଳ ତାହାର ଆୟୁଷ ବଢାଇ ଦିଆଯାଉଛି । ସୁତରାଂ ନୂଆକରି ବିଲ୍‌ର ନୀତି ଆଲୋଚନା କରିବାର scope ନାହିଁ । ଏ ବିଷୟରେ House of Commons ruling ଅଛି । ଏପରି ବିଲ୍‌ରେ ଅନ୍ୟ କୌଣସି Ammendment ହୋଇ ପାରିବ ନାହିଁ । ତେବେ ମାନ୍ୟବର ସଭ୍ୟମାନେ ଯଦି ସମସ୍ତେ ଚାହାନ୍ତି ଯେ କେନ୍ଦ୍ରପକ୍ଷ ସମ୍ପର୍କ କମିଟିର ବିବରଣୀ ନ ପାଇବା ପର୍ଯ୍ୟନ୍ତ ଏ ଆଲୋଚନା ସ୍ଥଗିତ ରହୁ, ତେବେ ବର୍ତ୍ତମାନ ଏ ଆଲୋଚନା ବନ୍ଦ ରହିପାରେ ।

ଶ୍ରୀ ଶ୍ରଦ୍ଧାକର ସୁପକାର: ଆପତ୍ତି ଯେ କେବଳ ଆପତ୍ତି ପାଇ କରଯାଉଛି ତା ନୁହେଁ । ପୂର୍ବରୁ ବ୍ୟବସ୍ଥା ସଭରେ ଯେଉଁ ବିବରଣୀ ସବୁ ହୋଇଛି ତାହା ମଧ୍ୟ ଆମେ ପାଇ ପାରିନାହୁଁ ।

The SPEAKER: ମାନ୍ୟବର ସଭ୍ୟ ଯାହା କହୁଛନ୍ତି ଗୋଟିଏ ବୈଠକ ଆରମ୍ଭ ହେବା ପୂର୍ବରୁ ପୂର୍ବ ବୈଠକର ସବୁ ବିବରଣୀ ସମ୍ପୂର୍ଣ୍ଣ ଭାବରେ ଛପା ହୋଇ ସଭ୍ୟମାନଙ୍କ ଭିତରେ ବଣ୍ଟନ କରା ସରୁଥାଏ କି ନା ତାହା ମୁଁ ଜାଣେନା । ଅନ୍ୟାନ୍ୟ ପ୍ରାଦେଶିକ ବ୍ୟବସ୍ଥା ସଭାମାନଙ୍କରେ ବା ପାର୍ଲିଆମେଣ୍ଟରେ ଏପରି ହେଉଛି କି ନା ସେ ଖବର ସଂଗ୍ରହ କରି ମୁଁ କାଲି କହିବ । ମାନ୍ୟବର ବାଣପୁରର ସଭ୍ୟ ଅନେକ ଦିନ ହେଲା ବ୍ୟବସ୍ଥାପକ ସଭାମାନଙ୍କରେ ଅଛନ୍ତି । ସେ କହିପାରିବେ ଏପରି ହେବା ସମ୍ଭବ କି ନୁହେଁ । ତା ଛଡା ଏହି ବିବରଣୀ ଗୁଡ଼ିକ Assembly officeରେ ଅଛି । ମାନ୍ୟବର ସଭ୍ୟମାନେ Office hour ଭିତରେ ଯେତେବେଳେ ଇଚ୍ଛା ଏଗୁଡ଼ିକ ଦେଖି ପାରନ୍ତି । ବାଣପୁରର ମାନ୍ୟବର ସଭ୍ୟ ଏହିପରି ଦେଖିବାପାଇଁ ଚାହିଁଥିଲେ ଏବଂ ତାଙ୍କୁ ସେ ସୁବିଧା ଦିଆଯାଇଥିଲା । କିନ୍ତୁ କୌଣସି ଅସୁବିଧା ବଶତଃ ସେ ଦେଖିପାରିଲେ ନାହିଁ । ବର୍ତ୍ତମାନ ଏ ବିଷୟ Agendaରେ ଥିଲା ଏବଂ ଆଲୋଚନା ଆରମ୍ଭ ହୋଇଛି । ସୁତରାଂ ଯଦି ମାନ୍ୟବର ସଭ୍ୟମାନେ ଚାହାନ୍ତି କାଲିକି ଏ ଆଲୋଚନା ସ୍ଥଗିତ ରହୁ । ତା ହେଲେ ସମସ୍ତଙ୍କ ରାଜିନାମାରେ ତାହା ହୋଇ ପାରିବ ।

ଶ୍ରୀ ପ୍ରତାପ କେଶରୀ ଦେଓ : କେନ୍ଦୁପତ୍ର ବିଷୟରେ ଆସେମ୍ବ୍ଲିରେ Proceeding ସବୁକୁ Cyclostyled କରି ବଣ୍ଟାଯାଉ ।

Shri SADASIVA TRIPATHY (Minister) : Sir, I beg to move that the Bill be passed.

The SPEAKER : Motion moved, that the Orissa Essential Articles Control and Requisitioning (Temporary Powers) Amendment Bill, 1952 be passed.

Shri SHRADDHAKER SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏ ବିଲ୍‌ର ପ୍ରଥମ ଆଲୋଚନା ହେବା ସମୟରେ 2 ଜଣ ବିଭାଗୀୟ ମନ୍ତ୍ରୀ ଯେଉଁ ଉତ୍ତରମାନ ଦେଲେ ସେଥିରେ ମୋ ମନରେ ଏତେଦୂର ସନ୍ଦେହ ଜାତ ହୋଇଛି ଯେ ବିଲ୍‌ର 3ୟ ଦଫା ଆଲୋଚନାରେ ସେ ବିଷୟରେ ବିଶେଷ ଆଲୋଚନା ନକରି ରହିପାରୁନାହିଁ । ମାନ୍ୟବର ରାଜସ୍ୱ ବିଭାଗ ମନ୍ତ୍ରୀ ମୋ ବକ୍ତବ୍ୟରେ ମୁଁ ଯେଉଁ କଥା କହିଥିଲି ସେ ବିଷୟରେ ଅନେକ କଥା ଉଲ୍ଲେଖ କରିଛନ୍ତି, ଏବଂ ସେଥି ମଧ୍ୟରୁ ସେ ଅନେକ କଥାରେ ଏକମତ ହୋଇଛନ୍ତି । ତଥାପି ଯେତେବେଳେ ମୋ ଦୃଷ୍ଟି କୋଣରୁ ମୁଁ ଦେଖୁଛି ତାଙ୍କ ଭାଷଣ ଏବଂ ମାନ୍ୟବର ବିକାଶ ଅବିଭାଗ ମନ୍ତ୍ରୀଙ୍କ ଭାଷଣରେ ଅନେକ ପ୍ରଭେଦ ପଡୁଛି ମୁଁ ଭାବୁଛି ହୁଏତ ରାଜସ୍ୱ ବିଭାଗ ମନ୍ତ୍ରୀ ମୋ କଥା ବୁଝିପାରିଲେ ନାହିଁ କିମ୍ବା ମନ୍ତ୍ରୀ ମହାଶୟମାନେ ଯେଉଁ କଥା କହିଲେ ମୁଁ ତାକୁ ବୁଝିବାକୁ ସଂପୂର୍ଣ୍ଣ ଭାବରେ ଅକ୍ଷମ ହେଲି । ମୁଁ ଯେଉଁ କଥା ଉଲ୍ଲେଖ କରିଥିଲି ସେଥିରୁ ଗୋଟିଏ କଥା ହେଉଛି ଏବଂ ସର୍ବ ପ୍ରଧାନ କଥା ହେଉଛି ଯେଉଁ କଥାଶୁଣି ମାନ୍ୟବର ରାଜସ୍ୱ ବିଭାଗ ମନ୍ତ୍ରୀ ଦୟାକରି ସଂପୂର୍ଣ୍ଣ ଭାବରେ ମୋ ସାଙ୍ଗରେ ଏକମତ ହୋଇଛନ୍ତି । ସେ କଥା ହେଉଛି କଣ୍ଟ୍ରୋଲ କୌଣସି ମତେ ରାଜସ୍ୱ ବୃଦ୍ଧି ପକ୍ଷରୁ ଯେ ବ୍ୟବହାର କରିବା ଅନୁଚିତ । ସେ କହିଛନ୍ତି ଯେ ଚାଉଳ ଆମଦାନି, ରପ୍ତାନୀ ଏବଂ ଲୁଗା, ସିମେଣ୍ଟ ଇତ୍ୟାଦି ଉପରେ ଯେଉଁ କଣ୍ଟ୍ରୋଲ ରହିଛି ସେଥିରେ ସରକାରଙ୍କର ଯେପରି ଲାଭର ଆଶା ନ ରହିବ ସେଥିପ୍ରତି ସେମାନେ ସର୍ବଦା ସଚେତନ ଅଛନ୍ତି । କିନ୍ତୁ ମୁଁ ଏକଥା ଅନ୍ୟ ପ୍ରସଙ୍ଗରେ କହିଥିଲି । ମୋର ବକ୍ତବ୍ୟ ଯଦି ଆଉଥରେ ଅଧ୍ୟୟନ କରନ୍ତି ଏବଂ ଯଦି ମୋର ପୂର୍ବ ବକ୍ତବ୍ୟ ଭଲ ଭାବରେ ଅଧ୍ୟୟନ କରିଥାନ୍ତି, ତା'ହେଲେ ସେ ହୁଏତ ବୁଝିବେ ଯେ ମୁଁ କହିଥିଲି Essential Articles ବୋଲି ଯେଉଁ ଦ୍ରବ୍ୟମାନ ଧରାଯାଉଛି ସେଥିମଧ୍ୟରୁ ଏପରି କେତେଗୁଡ଼ିଏ Essential Articles ଅଛି ଯାହାକି କୌଣସି ମାନଦଣ୍ଡରେ ମନୁଷ୍ୟର ବା ସମାଜର ମାନଦଣ୍ଡରେ Essential Articles ହିସାବରେ ଧରାଯାଇ ନ ପାରେ । କେବଳ ରାଜସ୍ୱ ବୃଦ୍ଧି ହିସାବରେ ସେ ସବୁକୁ ଗୋଟିଏ ଛାଞ୍ଚରେ ପକାଇବା ପାଇଁ ଏବଂ ଆଇନ ମଧ୍ୟରେ ପକାଇବା ପାଇଁ ସେ ସବୁକୁ Essential Articles କରାଯାଇଛି ।

ଏହି ପ୍ରସଙ୍ଗରେ ମୁଁ କହିଥିଲି ଯେ କେନ୍ଦୁ ପତ୍ର, ଚମଡ଼ା ଇତ୍ୟାଦି ଜିନିଷମାନ କଣ୍ଟ୍ରୋଲ ଯେ କୌଣସି ସ୍ତରକୁ ଯଦି ଆମ ଚିନ୍ତାଧାରକୁ ନେଇ କଦାପି ଆମେ କଳ୍ପନା କରି ପାରିବା ନାହିଁ ଯେ ଦୈନନ୍ଦିନ ଜୀବନ ବା ସାମାଜିକ ବ୍ୟବହାର୍ଯ୍ୟ ବସ୍ତୁ ହିସାବରେ ସେ ସବୁ ନିତ୍ୟାନ୍ତ ବ୍ୟବହାର୍ଯ୍ୟ ଜିନିଷ ବୋଲି ଧରଯାଇ ପାରେ । କେବଳ ସେସବୁ ଗୋଟିଏ Source of Revenue ହିସାବରେ ବା ରାଜସ୍ୱ ବୃଦ୍ଧି ହିସାବରେ Essential Articles ବୋଲି ଧର ଯାଇଛି । ଯଦି ରାଜସ୍ୱ ମନ୍ତ୍ରୀ ଏହା ସ୍ୱୀକାର କରିଛନ୍ତି ଯେ କଣ୍ଟ୍ରୋଲ କୌଣସି ମତେ ରାଜସ୍ୱ ବୃଦ୍ଧି ହିସାବରେ ନିଆଯାଉ ନାହିଁ ଏବଂ ସେ ଦିଗରେ କୌଣସି କାର୍ଯ୍ୟାନୁଷ୍ଠାନ କରଯାଉ ନାହିଁ ତା'ହେଲେ କେନ୍ଦୁ ପତ୍ର, ଚମଡ଼ା ଇତ୍ୟାଦି କାହିଁକି ତା' ଭିତରେ ସାମିଲ କରାଯାଉଛି । ଏ ବିଷୟରେ ମାନ୍ୟବର ବିକାଶ ବିଭାଗ ମନ୍ତ୍ରୀଙ୍କ ଓଜସ୍ୱିନୀ ବକ୍ତୃତା ଏବଂ ତାଙ୍କର ଆଇନଜ୍ଞ ସୁଲଭ ଯୁକ୍ତି ଚାତୁରୀ ଏବଂ ରାଜସ୍ୱ ବିଭାଗ ମନ୍ତ୍ରୀଙ୍କ ଭାଷଣ ଶୁଣି ମୋ ମନରେ ଅନେକ ଭ୍ରମ ଉପୁଜିଛି । ମାନ୍ୟବର ରାଜସ୍ୱ ବିଭାଗ ମନ୍ତ୍ରୀ କହିଲେ ଯେ ଆଇନର 3 ଧାରାକୁ ଆମେ ବ୍ୟବହାର କରିବାର ଅବକାଶ ପଡ଼ିନାହିଁ, ଯଦିଓ ସୋସାଲିଷ୍ଟ ଦଳର ସଭ୍ୟ କହନ୍ତି ଯେ ଏହି ଧାରା ଆହୁରି କଠୋରତର ଭାବରେ ପ୍ରଯୁଜ୍ୟ ହେବା ଉଚିତ । ଜମିବାଡ଼ି ଏବଂ ଧାନଚାଉଳ ହିସାବରେ ସୋସିଆଲିଷ୍ଟ ସଭ୍ୟ ଏହାକୁ କଠୋରତର ଭାବରେ ପ୍ରଯୁଜ୍ୟ ହେବା ଉଚିତ୍ ବୋଲି କହୁଛନ୍ତି । ମାନ୍ୟବର ରାଜସ୍ୱ ବିଭାଗ ମନ୍ତ୍ରୀ ବିଚାରୁଛନ୍ତି ଯେ ଏହା ପ୍ରୟୋଗ ହେବା ଉଚିତ ନୁହେଁ । ସେ ହୁଏତ ତାଙ୍କ ଚିନ୍ତାଧାରା ଠିକ୍ ବୋଲି ଭାବୁଛନ୍ତି, କିନ୍ତୁ ଏକଥା ରାଜସ୍ୱ ବିଭାଗ ମନ୍ତ୍ରୀ ଭୁଲିଗଲେ ଯେ ଏହି 3 ଧାରା କେନ୍ଦୁ ପତ୍ର କଣ୍ଟ୍ରୋଲ ସମ୍ବନ୍ଧରେ ବିଶେଷ ଭାବରେ ଜାରୀ ହେଉଛି ଏବଂ ଯଦି ଏହି 3 ଧାରା ନଥାନ୍ତା ତା'ହେଲେ କେନ୍ଦୁ ପତ୍ର କଣ୍ଟ୍ରୋଲ କରିବା ମୁହୂର୍ତ୍ତେ ସୁଦ୍ଧା ସମ୍ଭବପର ହୋଇପାରନ୍ତା ନାହିଁ । ମାନ୍ୟବର ରାଜସ୍ୱ ବିଭାଗ ମନ୍ତ୍ରୀ କହିଲେ ଯେ ଧାନଚାଉଳ କିମ୍ବା ଲୁଗା, ସିମେଣ୍ଟ ଇତ୍ୟାଦି Control Commoditiesରେ ଲାଭ ନରଖି ଆମେ ବ୍ୟବସାୟ କରୁଛୁ । ଏଇଟା ହୁଏତ ଆମ ସରକାରଙ୍କର କିମ୍ବା ଆମ ପ୍ରଦେଶର ଉଦାରତା ଯୋଗୁ ହୋଇପାରେ । କିନ୍ତୁ ମୁଁ କହୁଛି ଯେ ଏଇଟା କିପରି ଭାବରେ ସମ୍ଭବ ହେବ । ଯେତେଦିନ ପର୍ଯ୍ୟନ୍ତ ଧାନଚାଉଳ ଉପରେ କଟକଣା ରହିଛି ସେତେଦିନ ପର୍ଯ୍ୟନ୍ତ ବରଂ ଆମର ଚେଷ୍ଟା କରିବା ଉଚିତ ଏବଂ ଆମେ କୌଣସି ରାସ୍ତା ବାହାର କରିବା ଉଚିତ ଯେପରିକି ଏହା ଆମ ପ୍ରଦେଶର ଆୟର ଗୋଟିଏ ପନ୍ଥାରେ ପରିଣତ ହେବ । ତା'ହେଲେ ଆମ ପ୍ରଦେଶର ଅନେକ ଲାଭ ହେବ । ଏ ବିଷୟରେ ସେ ଯେତେବେଳେ କଥାଟି ଉତ୍‌ଥାପନ କରିଛନ୍ତି ମୁଁ ଟିକିଏ ବିସ୍ତୃତ ଭାବରେ ସେ ବିଷୟରେ କହିବି । ଓଡ଼ିଶା ଅନ୍ୟାନ୍ୟ ପ୍ରଦେଶମାନଙ୍କରୁ ବହୁତ ଜିନିଷ ଆମଦାନୀ କରୁଛି । କିନ୍ତୁ ତାହାର ଏକମାତ୍ର ଜିନିଷ ଧାନଚାଉଳ ଯାହାକୁ କି ସେ ପ୍ରଚୁର ପରିମାଣରେ ରପ୍ତାନି କରୁଛି, ଧାନଚାଉଳ ଛଡ଼ା ଆଉ ଯେଉଁ ସବୁ ଜିନିଷ ସେ ରପ୍ତାନି କରୁଛି ତାହା ସେତେ ଗୁରୁତର ନୁହେଁ । ଆମ ରାଜ୍ୟରୁ ଯେତେବେଳେ ରପ୍ତାନି ହେଉଛି ତାର ଦର ଯାହା ଅଛି ଏବଂ ଅନ୍ୟାନ୍ୟ ନିକଟବର୍ତ୍ତୀ ରାଜ୍ୟମାନଙ୍କରେ ଅର୍ଥାତ୍

ମାନ୍ଦ୍ରାସ, ବେଙ୍ଗଲ କିମ୍ବା ଅନ୍ୟାନ୍ୟ ନିଅଣ୍ଟିଆ ଅଞ୍ଚଳମାନଙ୍କରେ ଏହା ଯେତେବେଳେ ବିକ୍ରୀ ହେଉଛି ସେ ଦର ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରହିଛି । କିନ୍ତୁ ଏହି ଦରର ପାର୍ଥକ୍ୟ ହେତୁ ଯେଉଁ ଲାଭ ହେଉଛି ସେ ଲାଭ ପ୍ରାପ୍ୟ ଅଂଶ ଆମ ସରକାର ପାଇ ପାରୁ ନାହାନ୍ତି । ତା'ର କାରଣ ହେଉଛି ଯେ କେନ୍ଦ୍ର ସରକାର ଗୋଟିଏ ନିୟମ କରିଛନ୍ତି ଯେ ନିଅଣ୍ଟିଆ ପ୍ରଦେଶମାନଙ୍କରେ ଯେତିକି ଧାନ ବା ଖାଦ୍ୟଶସ୍ୟ ଉତ୍ପନ୍ନ ହେଉଛି, ବଳକା ପ୍ରଦେଶମାନଙ୍କରୁ ଯେତିକି ଧାନ ବା ଖାଦ୍ୟଶସ୍ୟ ରପ୍ତାନୀ ହେଉଛି ଏବଂ ବିଦେଶରୁ ଯେଉଁ ଖାଦ୍ୟଶସ୍ୟ ଆମଦାନୀ ହୋଇ ବଣ୍ଟା ହେଉଛି ସେ ସବୁର ଦରଦାମ ମିଶାଇ ହାରାହାରି ଯେଉଁ ଦର ଠିକ ହେବ ସେହି ଦରରେ ସେସବୁ ଖ୍ୟାଦ୍ୟଦ୍ରବ୍ୟ ବିକ୍ରୀ ହେବ ତାଫଳରେ ଆମ ଖାଦ୍ୟଦ୍ରବ୍ୟ free exportରେ ଯେତିକି ଲାଭ କରିବାର ସୁଯୋଗ ମିଳନ୍ତା ସେ ଲାଭ ଆମେ ପାଇପାରୁନାହୁଁ ଅବଶ୍ୟ ଦେଶର ଅନ୍ୟାନ୍ୟ ରାଜ୍ୟମାନଙ୍କରେ ଯେତେବେଳେ ଖାଦ୍ୟଶସ୍ୟର ଅନାଟନ ରହିଛି ସେତେବେଳେ ସେଥିରୁ ଅଧିକ ଲାଭ ହେବା ଏବଂ ଅନ୍ୟାନ୍ୟ ନିଅଣ୍ଟିଆ ପ୍ରଦେଶର ଅସୁବିଧାର ସୁଯୋଗ ନେଇ ଆମ ରାଜ୍ୟର ଧନବୃଦ୍ଧି କରିବା ନୀତିର କଦାପି ମୁଁ ପକ୍ଷପାତି ନୁହେଁ । କିନ୍ତୁ ବିଦେଶରୁ ଏବଂ ଅନ୍ୟାନ୍ୟ ରାଜ୍ୟମାନଙ୍କରୁ ଯେତେବେଳେ ଆମ ରାଜ୍ୟକୁ ଅନ୍ୟାନ୍ୟ ଜିନିଷ ଆମଦାନୀ ହେଉଛି ଏବଂ ସେଥିପାଇଁ ଯେତେବେଳେ ଆମକୁ ଅଧିକ ଦର ଦେବାକୁ ପଡୁଛି ତା ତୁଳନାରେ ଆମ ଏହି ପଣ୍ୟଦ୍ରବ୍ୟରୁ ଆଉ କିଛି ଅଧିକ ଲାଭ ପାଇଲେ ଆମ ରାଜ୍ୟର ଆର୍ଥିକ ଦୁରାବସ୍ଥା ସୁଧରି ଯାଆନ୍ତା ବୋଲି ମୁଁ ଭାବେ । ଯାହାହେଉ ଏ ବିଷୟଟି ଏତେ ପ୍ରାସଙ୍ଗିକ ନୁହେଁ ମାନ୍ୟବର ମନ୍ତ୍ରୀ ଏ ବିଷୟ ଉତ୍ଥାପନ କଲେ ବୋଲି ମୁଁ ଏ ବିଷୟରେ କହିବାକୁ ବାଧ୍ୟ ହେଲି । ବିଷୟଟି ହେଉଛି ଏହିଯେ ଯେଉଁ ସବୁ ଦ୍ରବ୍ୟ Essential Articles ତାଲିକାଭୁକ୍ତ ହୋଇଛି ସେହି ତାଲିକାଭୁକ୍ତ ଜିନିଷମାନଙ୍କ ନିୟନ୍ତ୍ରଣରେ ଏକମାତ୍ର ପନ୍ଥା ହେଉଛି 3 ନମ୍ବର ଧାରା । ବର୍ତ୍ତମାନ ଆଇନ ବିଭାଗ ମନ୍ତ୍ରୀ ଯେଉଁ Ruling ବିଷୟରେ କହିଲେ ସେ Ruling ଯଦି ଅଧ୍ୟକ୍ଷ ମହାଶୟ, ଆପଣ ଦେଖନ୍ତି ତେବେ ଜାଣିପାରିବେ ଯେ ଏହି 3 ଧାରା ଅନୁସାରେ ଏହି ସବୁ Control ବେଶୀଭାବରେ ପରିଚାଳିତ ହେଉଛି । ତେଣୁ ଏହି ଯେ Essential Article Controlର 3ୟ ଧାରାର ବ୍ୟବହାର ଦରକାର ପଡୁନାହିଁ, ଏକଥା କହିବା ଠିକ୍ ନୁହେଁ ।

ତା'ପରେ ମାନ୍ୟବର ବିକାଶ ବିଭାଗ ମନ୍ତ୍ରୀ କେନ୍ଦୁପତ୍ର Conference ଏବଂ କେନ୍ଦୁପତ୍ର ନିୟନ୍ତ୍ରଣ ବିଷୟରେ କେତେ କଥା କହିଗଲେ ଏହା ଗୋଟିଏ ନିୟନ୍ତ୍ରିତ ପଦାର୍ଥ ଏବଂ ରାଜନୈତିକ ଦୃଷ୍ଟି କୋଣରୁ ରାଜନୈତିକ ଉଦ୍ଦେଶ୍ୟରୁ ଏହାର ନିୟନ୍ତ୍ରଣ ବିପକ୍ଷରେ କେତେ ଲୋକ ଯାଉଛନ୍ତି । ମାନ୍ୟବର ସଭ୍ୟମାନେ ଆଲୋଚନା କରୁଛନ୍ତି ରାଜନୈତିକ ଦୃଷ୍ଟି କୋଣରୁ ବୋଲି ସେ ଆକ୍ଷେପ କରିଛନ୍ତି ଏବଂ ଆଲୋଚନା କରୁଛନ୍ତି କିନ୍ତୁ ମୁଁ ଅତି ବିନୟର ସହିତ କହିବି ଯେ ଯେତେବେଳେ ଆମେ ଏ ଯେଉଁ କେନ୍ଦୁପତ୍ର

Conference ଅଗଷ୍ଟ ମାସରେ ହେଲା ସେଠାକୁ ନିମନ୍ତ୍ରିତ ହୋଇଗଲୁ ଓ ସେ ଆଲୋଚନାରେ ଆମେ ଯୋଗଦେଲୁ । ସେତେବେଳେ ଆମେ ବୁଝିପାରିଲୁ ଯେ ସେଟା ଗୋଟାଏ Conference ନଥିଲା, ସେଟା ଥିଲା ଏକ ରାଜନୈତିକ ଶିକ୍ଷାକେନ୍ଦ୍ର, ଯେଉଁଥିରୁ କି ଆମେ ମାନ୍ୟବର ବିକାଶ ମନ୍ତ୍ରୀଙ୍କ ଠାରୁ ଓ ଅନ୍ୟାନ୍ୟ କେନ୍ଦ୍ରଙ୍କଠାରୁ Political lesson in diplomacy ବା ରାଜନୈତିକ ଶିକ୍ଷା ଲାଭ କଲୁ, ଏବଂ ସେଥିପାଇଁ ମୁଁ ତାଙ୍କୁ ବିଶେଷ ଧନ୍ୟବାଦ ଦେଉଛି, କିନ୍ତୁ ସେହି ରାଜନୈତିକ ଶିକ୍ଷା ଏହି ଗୃହରେ ବିଗତ ଆସେମ୍ବ୍ଲି ବୈଠକରେ ଯେତେବେଳେ ଆଲୋଚନା ହେଉଥିଲା ସେ ସମୟରେ ଯେଉଁ ବାତାବରଣରେ ଏହି କେନ୍ଦ୍ରପତ୍ର Conference କରିବାକୁ ଥିଲା ଏବଂ ଯେଉଁ ଉଦ୍ଦେଶ୍ୟ ନେଇ ମିଳାମିଶା କରିବା ପ୍ରସ୍ତାବ ହୋଇଥିଲା ଏବଂ ସବୁ ଦୃଷ୍ଟି କୋଣରୁ ବିଶିଷ୍ଟ ଲୋକଙ୍କୁ ନେଇ ଏଇ Conference କରିବାର ଥିଲା ସେହି ବାତାବରଣ ଏବଂ ସେହି ଦୃଷ୍ଟି କୋଣରୁ ସଂପୂର୍ଣ୍ଣ ବିପରୀତ ଆମେ ଦେଖିଲୁ ଯେତେବେଳେ ସେହି କେନ୍ଦ୍ରପତ୍ର ସମ୍ମିଳନୀରେ ଯୋଗଦେଲୁ ଏ ବିଷୟରେ ମାନ୍ୟବର ବିକାଶ ବିଭାଗ ମନ୍ତ୍ରୀ ଯାହା କହିଛନ୍ତି ସେ ମନ୍ତ୍ରୀ ହିସାବରୁ ନ କହି ମୁଁ ଭାବୁଛି ବେଶୀ ଭାବରେ ଜଣେ ଆଇନଜ୍ଞ ଅର୍ଥାତ ଓକିଲତି ଅଭିଜ୍ଞତା ଥିବା ଜଣେ ସଭ୍ୟ ହିସାବରେ କହୁଛନ୍ତି । ସରକାରଙ୍କର କର୍ତ୍ତବ୍ୟ ହେଉଛି ଯେ ସମସ୍ତ ଦୃଷ୍ଟି କୋଣ ଆଲୋଚନା କରି ନିରପେକ୍ଷ ଭାବରେ ଗୋଟିଏ ବିଚାର କରିବା । କିନ୍ତୁ ପ୍ରଥମରୁ ସେ ସମ୍ମିଳନୀରେ ଯେପରି ଭାବରେ କାର୍ଯ୍ୟ ଆରମ୍ଭ କରାହୋଇଥିଲା ଯେପରି ଭାବରେ ସରକାରଙ୍କ memorandum ତିଆରି ହୋଇଥିଲା, ସେଥିରେ ଆମର ଧାରଣା ହେଲା ଯେ ଖୁବ୍ ବିଶିଷ୍ଟ ଦୃଷ୍ଟି କୋଣ ଯାହାକୁ ଇଂରାଜିରେ କହନ୍ତି monopolistic view-point ସେହି ଦୃଷ୍ଟି କୋଣକୁ ସମସ୍ତଙ୍କ convert କରିବା ପାଇଁ ଏବଂ ସେହି ଭାବରେ ପ୍ରଭାବିତ କରିବାକୁ ସେହି ସମ୍ମିଳନୀ ଡକା ହୋଇଥିଲା ଏବଂ ସେହି ଭାବରେ ତାହାର ପରିସମାପ୍ତି ଘଟିଥିଲା । ମୁଁ ସରକାରଙ୍କୁ ପୁଣି ଥରେ ଅନୁରୋଧ କରିବି ମାନ୍ୟବର ବିକାଶ ବିଭାଗ ମନ୍ତ୍ରୀଙ୍କୁ ପୁଣିଥରେ ଅନୁରୋଧ କରିବି ଯେ ଯାହା ଯେତେ କରାଯାଉଛି, ଆମର ସମ୍ବିଧାନ ହେଲା ଆଦର୍ଶ ଏବଂ ଯେଉଁ ପନ୍ଥା ଆମେ ଅବଲମ୍ବନ କରିଥାଉଁ ସେଥି ନିମିତ୍ତ ସେ ମଧ୍ୟରେ କେତେ Provision ଅଛି ସେ ବିଷୟ ସେ ଅନୁଧ୍ୟାନ କରନ୍ତୁ । ସେ କହୁଛନ୍ତି ଯେଉଁମାନେ ରାଜନୈତିକ ଭାବରେ ପ୍ରଭାବିତ ହେଉଛନ୍ତି ତହିଁର ଫଳାଫଳ ପାଇଁ ସେମାନେ ସତର୍କ ରହିବା ଉଚିତ । ଏଟା ସେ ଯେତେବେଳେ କହିଲେ, ସେ ମଧ୍ୟ ଟିକିଏ ଭାବି ଦେଖିବା ଉଚିତ୍ ଯେ ଏ ଯେଉଁ କଥା—ଏ ଯେଉଁ କାର୍ଯ୍ୟ—ଏ ଯେଉଁ ଆଦର୍ଶ ଅଛି ଏବଂ ଯେଉଁ କାର୍ଯ୍ୟପନ୍ଥା ଅବଲମ୍ବନ କରାଯାଉଛି ସେଥିରେ ଗୋଟିଏ consistency ବା ସାମଞ୍ଜସ୍ୟ ରକ୍ଷା କରିବା ଯେ କୌଣସି ସରକାରର କର୍ତ୍ତବ୍ୟ—ସେ ଯେତେ ଶକ୍ତିଶାଳୀ ହୋଇଥାନ୍ତୁ ଏବଂ ତାର ଉଦ୍ଦେଶ୍ୟ ଯେତେ ମହତ୍ ହୋଇଥାଉ ଏ ଆଦର୍ଶ ଏବଂ କାର୍ଯ୍ୟ ପନ୍ଥା ମଧ୍ୟରେ ସାମଞ୍ଜସ୍ୟ ରକ୍ଷାକରିବା ପ୍ରତ୍ୟେକ

ବ୍ୟକ୍ତିର ଏବଂ ପ୍ରତ୍ୟେକ ସରକାରଙ୍କର ପ୍ରଧାନ ଏବଂ ପ୍ରଥମ କର୍ତ୍ତବ୍ୟ । ବିପକ୍ଷ ଦଳ ଯେ କୌଣସି ଉଦ୍ଦେଶ୍ୟରେ ପରିଚାଳିତ ହୋଇଥାନ୍ତୁ ନା କାହିଁକି ।

## ଓଡ଼ିଶା ମନ୍ତ୍ରୀମାନଙ୍କର ବେତନ ଓ ଭତ୍ତା ବିଲ୍, 1952 ଉପରେ ଭାଷଣ

1952ରେ ଓଡ଼ିଶା ମନ୍ତ୍ରୀମଣ୍ଡଳର ବେତନ ଓ ଭତ୍ତା ସଂପର୍କୀୟ ଏକ ବିଲ୍ ସରକାରଙ୍କ ତରଫରୁ ଏବଂ ତା ଉପରେ ଦୁଇଟି ସଂଶୋଧନ ପ୍ରସ୍ତାବ ମଧ୍ୟ ବିରୋଧୀଦଳ ତରଫରୁ ଆଗତ ହୋଇଥିଲା । ଏହା ଉପରେ ବହୁ ସଭ୍ୟ ବିସ୍ତୃତ ଆଲୋଚନା ପାଇଁ ଦାବି କରିବାରୁ ବାଚସ୍ପତି ପ୍ରତ୍ୟେକ ଇଚ୍ଛୁକ ସଭ୍ୟଙ୍କୁ 5 ମିନିଟ୍ ଲେଖାଁ ସମୟ ଦେବାକୁ କହିବାରୁ 1952 ନଭେମ୍ବର 5 ତାରିଖରେ ଡଃ ଶ୍ରଦ୍ଧାକର ସୂପକାର ଏପରି ସୀମିତ ସମୟ ଏପରି ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଉପରେ ଆଲୋଚନା ପାଇଁ ଯଥେଷ୍ଟ ନୁହେଁ ଏବଂ ଏହା ଫଳରେ ସଭ୍ୟଗଣ ଏଥିପ୍ରତି ନ୍ୟାୟ ବିଚାର କରିପାରିବେ ନାହିଁ ବୋଲି ମତ ଦେଇଥିଲେ । ବୈଧାନିକ ପ୍ରଶ୍ନ ଉଠାଇ ଶ୍ରଦ୍ଧାକର କହିଥିଲେ ଯେ ଏ ବିଷୟଟି ଯେତେ ଗୁରୁତ୍ୱପୂର୍ଣ୍ଣ ଭାବରେ ଆଲୋଚିତ ହେବାର କଥା 5 ମିନିଟ୍ ଭିତରେ ଗୋଟିଏ ଘଣ୍ଟି ବାଜିବାର ସମ୍ଭାବନା ଥିବାରୁ ସେମାନେ ଭଲ ଭାବରେ କହିପାରୁନାହାନ୍ତି । ମାତ୍ର ବାଚସ୍ପତି ସ୍ୱୀକାର କରିଛନ୍ତି ଯେ ଏପରି ଗୁରୁତ୍ୱପୂର୍ଣ୍ଣ ବିଲ୍ (Bill) ବିଷୟରେ ସମୟ ନିର୍ଦ୍ଦେଶ ସମ୍ବନ୍ଧରେ କୌଣସି ନିୟମ ନାହିଁ ଏବଂ ଏଥିରେ ଯଦି କୌଣସି ସମୟ ନିର୍ଦ୍ଦେଶ କରାଯାଏ, ତାହା କେବଳ ସମସ୍ତଙ୍କ ରାଜିନାମାରେ ହୋଇପାରିବ, ତା'ନହେଲେ ହୋଇପାରିବ ନାହିଁ । ସର୍ବଶ୍ରୀ ଗୋଦାବରୀଶ ମିଶ୍ର, ହରିହର ଦାଶ, ପ୍ରାଣକୃଷ୍ଣ ପରିଜା ପ୍ରମୁଖ ଘୋର ଆପତ୍ତି କରିବାରୁ ଶେଷରେ ସମୟ ନିର୍ଦ୍ଦିଷ୍ଟ ହୋଇପାରିନଥିଲା ।

ଡଃ ଶ୍ରଦ୍ଧାକର ସୂପକାର ଏହି ବିଲ୍ ପ୍ରସଙ୍ଗରେ ମହାକବି କାଳିଦାସଙ୍କ "ତବ ବାଧତି ବାଧତେ" ଉକ୍ତି ଓ ତତ୍ ସମ୍ପର୍କୀୟ ଘଟଣାଟି ଉଲ୍ଲେଖ କରିଥିଲେ । ମନ୍ତ୍ରୀମାନଙ୍କ ଦରମା ବୃଦ୍ଧିକୁ ସମର୍ଥନ ନକରି ଏଥିରେ dignity of positionରେ କିଛି ଉନ୍ନତି ବା ଅବନତି ହେବନାହିଁ ବୋଲି କହିଛନ୍ତି । ସେ ଯଥାର୍ଥରେ କହିଛନ୍ତି, "ମୁଁ ଭାବୁଛି, ଦରମା କୌଣସି ଲୋକର ମର୍ଯ୍ୟାଦା ବା Prestigeର ମାନଦଣ୍ଡ ହୋଇନପାରେ । 150 ଟଂକାରେ ମୋର କ୍ଷୁଦ୍ର ମତରେ ମୁଁ ଭାବୁଛି ଯେ, Leader of Oppositionର ଯେତିକି Prestige ବା dignity maintain କରିବାର କଥା, ମୁଁ ତାହା ରକ୍ଷା କରିବାକୁ ସମର୍ଥ ହେଉଛି" । ଗାନ୍ଧିବାଦ ଆମର ଆଦର୍ଶ ହୋଇଥିବାରୁ ଜନନାୟକ ତଥା ମନ୍ତ୍ରୀଗଣ ପ୍ରତିଦିନ ଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ଘଣ୍ଟାଏ ସୂତା କାଟିବା ଉଚିତ୍ । ଆମର ideal "Plain living and high thinking" ହେବା ଉଚିତ୍ ବୋଲି ଶ୍ରଦ୍ଧାକର ପରାମର୍ଶ ଦେଇଛନ୍ତି । Car Allowance ପାଇବା

ଯେତେବଡ କଥାନୁହେଁ, ତାକୁ ପାଇବାକୁ ସରକାର ଯେଉଁ ଯୁକ୍ତି କରୁଛନ୍ତି, ତାହା "ସଂଧ ନ ବାଧତେ ଗଜନ, ତବ ବାଧତି ବାଧତେ" ପରି ହେଉଛି । ଆଧୁନିକ ପରିସ୍ଥିତିରେ ମନ୍ତ୍ରୀମାନଙ୍କ ଦରମା ବୃଦ୍ଧି ଓ ସାଂସଦମାନଙ୍କର ପେନ୍‌ସନ ପାଇଁ ଦାବି ଏହି ଦୃଷ୍ଟିରୁ ବିଗ୍ଧର୍ଯ୍ୟ ।

**The Orissa Ministers Salaries and Allowances Bill, 1952**

The House will now take up further consideration of the Orissa Ministers Salaries and Allowances Bill along with the amendment moved by Shri Baishnamb Charan Pattnayak and by Shri Godavarish Misra that the Bill be circulated for eliciting public opinion there on by different dates.

ପରଦିନ ଯେତେବେଳେ ମୁଁ ଜାଣିବାକୁ ଚାହିଁଥିଲି, ଆଉ କେତେଜଣ ସଭ୍ୟ ଏ ଆଲୋଚନାରେ ଭାଗ ନେବେ, ସେତେବେଳେ ପ୍ରାୟ 25 ଜଣ ସଭ୍ୟ ଛିଡ଼ା ହୋଇଥିଲେ । 1ମ ଦିନ, ଏ ଆଲୋଚନାରେ 16 ଜଣ ମାନ୍ୟବର ସଭ୍ୟ ଭାଗ ନେଇଥିଲେ । ଏ ବିଷୟ ଖୁବ୍ ଗୁରୁତର ହେଲେ ମଧ୍ୟ ଏଥିରେ ବେଶୀ ସମୟ ନେବା ଦରକାର ହେବ ନାହିଁ । ସମସ୍ତଙ୍କୁ କହିବାକୁ ଦିଆଯିବ, କିନ୍ତୁ 5 ମିନିଟ୍ ସମୟ ଯଥେଷ୍ଟ ହେବ ବୋଲି ମୋର ଆଶା ଏବଂ ସମସ୍ତେ ଏଥିରେ ଏକମତ ହେବେ ।

Shri SHRADDHAKAR SUPAKAR : ଏ ଯେଉଁ ସମୟ ନିର୍ଦ୍ଦେଶ ଦିଆଯାଉଛି ସେ ବିଷୟରେ ମୁଁ ଯାହା ଲକ୍ଷ୍ୟ କରୁଛି ଯେ କେତେକ ଗୁରୁତର କଥା ନ କହି ରହିପାରୁ ନାହିଁ । ଆମର ଯେପରି general discussion of the Budget କିମ୍ବା discussion of the resolution ଏ ସବୁଥିରେ ସମୟ ନିର୍ଦ୍ଦେଶ ବା ସମୟ ସୀମାବଦ୍ଧ କରିବାର ଅଧିକାର ଅଛି under the rules of procedure and conduct of business, Bill ସମ୍ପର୍କରେ ସେହି ପ୍ରକାର କୌଣସି ସମୟର ସୀମା ରଖାଯାଇ ନାହିଁ । ଅନେକ ମାନ୍ୟବର ସଭ୍ୟ ଅନୁଭବ କରୁଛନ୍ତି ଯେ ଏ ପ୍ରକାର ଗୋଟିଏ 5 ମିନିଟ୍ ବା 10 ମିନିଟ୍ ସମୟ ରଖିଦେଲେ ଯାହା କୁହନ୍ତି "doing justice to the subject", ସେଇଟା କରିବା ସମ୍ଭବ ହେଉନାହିଁ । ତେଣୁ ଯଦି ଆମେ procedure of businessରେ ଯେଉଁ ନିୟମ ଅଛି ତାକୁ ମାନି ଚାଲିବା ତା' ହେଲେ ଯେତେବେଳ ପର୍ଯ୍ୟନ୍ତ କୌଣସି ମାନ୍ୟବର ସଭ୍ୟ କୌଣସି ଅବାନ୍ତର କଥା କହି ନାହାନ୍ତି କିମ୍ବା ପୂର୍ବରୁ ଯେଉଁ ସଭ୍ୟମାନେ debateରେ ଭାଗ ନେଇଛନ୍ତି ତାଙ୍କ ଯୁକ୍ତିକୁ ପୁନରାବୃତ୍ତି ନ କରିଛନ୍ତି ସେ ପର୍ଯ୍ୟନ୍ତ Bill ବିଷୟରେ ଆଲୋଚନା କରିବାର ଅଧିକାର ତାଙ୍କର ଅଛି । ଆପଣ ଯେତେବେଳେ ସ୍ୱୀକାର କରିଛନ୍ତି ଏ Billଟି ଗୋଟିଏ ଗୁରୁତର ବିଷୟ ଅନ୍ୟ ପକ୍ଷ ହୁଏତ ଏ ବିଷୟରେ ଏକମତ ନ ହୋଇ ପାରନ୍ତି, ତଥାପି ଆପଣ ଯେତେବେଳେ କହିଛନ୍ତି ଏଇଟା ଗୁରୁତର ବିଷୟ

ଏଇଟା ବିଶେଷ ସୁଖର କଥା । ସେଥିପାଇଁ ମୁଁ ଭାବୁଛି 5 ମିନିଟ୍ କିମ୍ବା 10 ମିନିଟ୍ ସମୟ ନିର୍ଦ୍ଦେଶ ଯଦି କରି ଦିଆଯାଏ ତା'ହେଲେ ଆମର ଏ ଯେଉଁ ନିୟମ ଅଛି ତା'ର ବ୍ୟତିକ୍ରମ କରାଯାଉଛି ଏବଂ ଆମର ସଭ୍ୟମାନେ ଅନେକେ ବୋଧ କରୁଛନ୍ତି ଯେ ଏ ବିଷୟଟି ଯେତେ ଗୁରୁତ୍ୱପୂର୍ଣ୍ଣ ଭାବରେ ଆଲୋଚିତ ହେବାର କଥା 5 ମିନିଟ୍ ଭିତରେ ଗୋଟିଏ ଘଣ୍ଟି ବାଜିବାର ସମ୍ଭାବନା ଥିବାରୁ ସେମାନେ ସେତେ ଭଲ ଭାବରେ କହିପାରୁ ନାହାନ୍ତି । ଏହି ଦୃଷ୍ଟିରୁ ମୁଁ ଭାବୁଛି ଏବଂ ଅତି ବିନୟର ସହିତ ଆପଣଙ୍କୁ ନିବେଦନ କରୁଛି, ଯେ ପର୍ଯ୍ୟନ୍ତ କୌଣସି ସଭ୍ୟ କିଛି ଅବାନ୍ତର କଥା କହି ନାହାନ୍ତି ବା ଅନ୍ୟ ମାନ୍ୟବର ସଭ୍ୟଙ୍କ ଯୁକ୍ତିକୁ ପୁନରାବୃତ୍ତି କରି ନାହାନ୍ତି ସେ ପର୍ଯ୍ୟନ୍ତ କୌଣସି ବାଧା ଦେବା ବା ସମୟର କଟକଣା କରିବା ଠିକ୍ ହେବନାହିଁ ।

The SPEAKER: ମାନ୍ୟବର ବିରୁଦ୍ଧ ଦଳର ନେତା ଶେଷ ବେଳକୁ କହିଲେ ଯେ ସେ ଅତି ବିନୟର ସହିତ କହୁଛନ୍ତି । ମୁଁ ତା'ଠାରୁ ଅଧିକତର ବିନୟର ସହିତ କହୁଛି ଯେ ସେ ଯେଉଁ ଆଇନ କାନୁନର କଥା କହିଲେ ସେଟା ଠିକ୍; ଯଦିଓ ସେହି ସେହି ନିୟମର ପ୍ରାୟ ଅଧିକାଂଶ ଛଳରେ ବ୍ୟତିକ୍ରମ କରାଯାଏ Bill ବିଷୟରେ ସମୟ ନିର୍ଦ୍ଦେଶ ସମ୍ବନ୍ଧରେ କୌଣସି ନିୟମ ନାହିଁ ଏବଂ ଏଥିରେ ଯଦି କୌଣସି ସମୟ ନିର୍ଦ୍ଦେଶ କରି ଦିଆଯାଏ ତାହା କେବଳ ସମସ୍ତଙ୍କୁ ରାଜିନାମାରେ ହୋଇପାରିବ, ତା' ନ ହେଲେ ହୋଇପାରିବ ନାହିଁ । ଏଥିରେ ଦେଖିବାର କଥା ଯେ ସମସ୍ତେ ଯେପରି କହିବାପାଇଁ ସମାନ ସୁଯୋଗ ପାନ୍ତି । କାରଣ କହିବା ପାଇଁ ସମସ୍ତଙ୍କର ସମାନ ଅଧିକାର ଅଛି । ମୋର ବିଶ୍ୱାସ 5 ମିନିଟ୍ ସମୟ ଯଥେଷ୍ଟ । କାହିଁକିନା ବାଣପୁରର ମାନ୍ୟବର ସଭ୍ୟ ଯେ କି ଏ ସଂଶୋଧନ ପ୍ରସ୍ତାବକୁ ଆଗତ କରିଛନ୍ତି ମୁଁ ଦେଖିଲି ସେ 5 ମିନିଟ୍‌ରୁ ଅଧିକ ସମୟ ନେଇ ନାହାନ୍ତି । ତେଣୁ ମୁଁ ଅନୁଭବ କରୁଛି ଯଦି 5 ମିନିଟ୍ ରଖାଯାଏ ଯଥେଷ୍ଟ ହେବ । ତେବେ ଯଦି ଦେଖାଯାଏ କେହି ଭଲ କଥା କହୁଛନ୍ତି ବା ନୂଆ କଥା କହୁଛନ୍ତି ଏବଂ ଯୁକ୍ତିର ପୁନରାବୃତ୍ତି କରୁନାହାନ୍ତି କିମ୍ବା ଅବାନ୍ତର କଥା କହୁନାହାନ୍ତି ତା'ହେଲେ ତାଙ୍କୁ ବନ୍ଦ କରାଯିବ ନାହିଁ ।

Shri SHRADDHAKAR SUPAKAR: ମାନ୍ୟବର ଅଧ୍ୟକ୍ଷ ମହାଶୟ, ମହାକବି କାଳିଦାସ ଥରେ ଅଜ୍ଞାତବାସ କରୁଥିଲେ । ଆଜି ମାନ୍ୟବର ଗୋକୁଳାନନ୍ଦ ପ୍ରହରାଜ କହିଲା ଭଳିଆ, ସେ ଗୋଟିଏ ଅପନ୍ତରିଆ ଗାଁରେ କୋରାପୁଟର ମଳିମୁଣ୍ଡିଆଙ୍କ ପରି ରହୁଥିଲେ । ଥରେ ବିକ୍ରମାଦିତ୍ୟ ଦେଖିଲେ ମହାକବି କାଳିଦାସ ନଥିଲେ, ତାଙ୍କ ସଭା ସୁନ୍ଦର ଦିଶୁନାହିଁ । ସେ ଭାରି ବ୍ୟସ୍ତ ହୋଇ ଘୂରିଆଡ଼େ କାଳିଦାସଙ୍କୁ ଖୋଜିବା ପାଇଁ ବାହାରିଲେ । ଶେଷରେ ଦେଖିଲେ ଯେ ତାଙ୍କର ଗୋଟିଏ ସବାରି ଥିଲା ତାକୁ ବୋହିବା ପାଇଁ ଲୋକ ମିଳିଲେ ନାହିଁ । ସେ ସମୟରେ ଓଳକ ଖୋଜି ଖୋଜି ତାଙ୍କ ଲୋକମାନେ ଜଣେ ଅତି ମଫସଲି ମଳିମୁଣ୍ଡିଆ ଜଣକୁ ବେଠିଆ କରିଦେଲେ । ରାଜା ଦେଖିଲେ ଯେ

ସେହି ଲୋକଟି ସବାରିଭାର ବୋହି ପାରୁନାହିଁ, ତାକୁ କହିଲେ 'ସ୍କନ୍ଧଂ ବିଶ୍ରାମ୍ୟ ତାଂ ଜାଲ୍ମ ସ୍କନ୍ଧଂତେ ଯଦ୍ ବାଧତି' । ଅର୍ଥାତ୍ ଆରେ ମଲିମୁଣ୍ଡିଆ, ତୋର କାନ୍ଧ ଯଦି ବଥାଉଛି, ଟିକିଏ ବିଶ୍ରାମ କର । ସେଠାରେ ସେ ଲୋକ କହିଲା 'ସ୍କନ୍ଧଂ ନ ବାଧତେ ରାଜନ, ତବ ବାଧତି ବାଧତେ' । ସେତେବେଳେ ରାଜା ମହାକବିଙ୍କୁ ଚିହ୍ନି ପାରିଲେ ।

ସେ ସମୟରେ ସେ ଜାଣିପାରିଲେ ଯେ ପ୍ରକୃତରେ ଏ ଲୋକଟି ମହାକବି କାଳିଦାସ । ଏଠାରେ ଯେଉଁପରି ଆଲୋଚନା ହେଉଛି ସେଥିରୁ ସାଧାରଣ ଲୋକେ ହୁଏତ ବୁଝିବେ ଯେ ଏ ଯେଉଁ ଯୁକ୍ତି ସରକାରଙ୍କ ତରଫରୁ କରାଯାଉଛି ସେଥିରେ 'ବାଧତି' ଶବ୍ଦ ଯେତେ ବାଧା ଦେଉଛି କିନ୍ତୁ ସେ ଭାର ବାଧା ଦେଉନାହିଁ । ୧୩ ଜଣ ମନ୍ତ୍ରୀଙ୍କ ଦରମା, ଗସ୍ତ ଖର୍ଚ୍ଚ, motor allowance ଓ ଅନ୍ୟାନ୍ୟ ଆନୁସଙ୍ଗିକ ଖର୍ଚ୍ଚ ବୃଦ୍ଧିରେ ସାଧାରଣ ମଲିମୁଣ୍ଡିଆଙ୍କ ଉପରେ ଯେଉଁ ବାଧା ବା ଭାର ପଡୁଛି ବା ପଡ଼ିବ ତା' ତୁଳନାରେ ଆଜି ଏ ବ୍ୟବସ୍ଥା ସଭାରେ ଯେଉଁ ଯୁକ୍ତି ସରକାରଙ୍କ ତରଫରୁ ବଢାଯାଉଛି ସେଇଟା ବାଧତି ଶବ୍ଦ ଅପେକ୍ଷା ଅଧିକ ବାଧୁଛି । ଏ ବିଷୟରେ ବିଶେଷକରି ମୁଁ ମାନ୍ୟବର କଟକ ସହରର ସଭ୍ୟ, ମାନ୍ୟବର ତାଳଚେରର ସଭ୍ୟ ଏବଂ ମାନ୍ୟବର ସାଲେପୁର ସଭ୍ୟଙ୍କର ଯୁକ୍ତି ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି । ଏ ବିଷୟରେ ଅନେକ ସଭ୍ୟ କହିଗଲେଣି । ମୁଁ କେବଳ ଏହି ଯୁକ୍ତିମାନ ବିଷୟରେ କେତେକ କଥା କହିବି । ସମୟ ଥିଲା ଯେତେବେଳେ କି କଂଗ୍ରେସ ତରଫରୁ ଗୋଟିଏ ନୀତି ଧାର୍ଯ୍ୟ କରାଯାଇଥିଲା ଯେ କାହାରିକୁ ୫ଶହ ଟଙ୍କାରୁ ଅଧିକ ଦରମା ଦିଆଯିବ ନାହିଁ, ମୋର ବନ୍ଧୁ ବାଲିଆପାଳର ସଭ୍ୟ ହୁଏତ ମୋତେ vulgar ବୋଲି ଦୋଷ ଦେବେ । କିନ୍ତୁ ସେ ଦୋଷ ଦେଲେ ମଧ୍ୟ ମୁଁ ପୁଣି ଥରେ ପ୍ରାତଃ ସ୍ମରଣୀୟ ମହାତ୍ମାଗାନ୍ଧିଙ୍କ ନାମ କହିବି । ସେ ଥରେ ୧୯୩୦ ସାଲ ଆନ୍ଦୋଳନର ଅବ୍ୟବହିତ ପୂର୍ବରୁ Viceroyଙ୍କୁ ଯେଉଁ ଚିଠି ଲେଖିଥିଲେ ସେଥିରେ ସେ ଲେଖିଥିଲେ ଯେ ଆପଣ ହୁଏତ ୨୧ ହଜାର ଟଙ୍କା ଦରମା ପାଉଛନ୍ତି । ଆପଣ ଜଣେ ଧନୀ ଲୋକ । ଆପଣଙ୍କର ଅର୍ଥ ଉପାର୍ଜନର ଅନ୍ୟ ପନ୍ଥା ଅଛି । ହୁଏତ ଆପଣ ୨୧ ହଜାର ସବୁଯାକ ଦୀନ ଦରିଦ୍ରମାନଙ୍କୁ ଦାନ କରି ଦେଉଥିବେ । କିନ୍ତୁ ସାଧାରଣ ଲୋକଙ୍କର ଦୈନନ୍ଦିନ ମାସିକ ବା ବାର୍ଷିକ ଆୟ ତୁଳନାରେ ଆପଣଙ୍କର ଏ ଦରମା ବହୁତ ବେଶି ଓ ଏତେ ଦରମା ନେବା ଅନୁଚିତ । ସେହି ନୀତିରେ ସେ ଧାର୍ଯ୍ୟ କରିଥିଲେ ଯେ ସର୍ବୋଚ୍ଚ ଦରମା ମାସିକ ୫ଶହ ଟଙ୍କା ହେବ । ସେ ଯେଉଁ ନୀତି ବ୍ୟାଖ୍ୟାନ କରିଥିଲେ ଏବଂ ଯେଉଁ ଆଦର୍ଶରେ ବର୍ତ୍ତମାନ ଭାରତର ପ୍ରତ୍ୟେକ ରାଷ୍ଟ୍ରରେ ପ୍ରଚଳିତ କଂଗ୍ରେସ ଶାସନ ଅନୁପ୍ରାଣିତ ଏବଂ ଉଦ୍‌ବୁଦ୍ଧ ହୋଇଥିଲା ଏବଂ ହେଉଛି ସେଥିରେ ୫ଶହ ଟଙ୍କା ସର୍ବୋଚ୍ଚ ଦରମା ନିର୍ଦ୍ଧାରଣ କରିବା ପ୍ରଧାନ ଏବଂ ପ୍ରଥମ ଉଦ୍ଦେଶ୍ୟ ଥିଲା । ଆମର ମନ୍ତ୍ରୀମାନେ, ଆମର ଶାସକମାନେ, ଆମର ଲୋକ ପ୍ରତିନିଧିମାନେ, ଏପରି ଗୋଟିଏ ପରମ୍ପରା ସୃଷ୍ଟି କରିବେ, ଏପରି ଗୋଟିଏ ଆଦର୍ଶ ସୃଷ୍ଟି କରିବେ ଯେ ତା'

ପ୍ରକୃତରେ ଗୋଟିଏ ଆଦର୍ଶ ହେବ ଏବଂ ଯେପରି ଲୋକେ ନ ଭାବିବେ ଦରମା କିଏ ବେଶୀ ପାଉଛ କିଏ କମ୍ ପାଉଛ, କିଏ କେତେଟା ମଟର ରଖି ପାରିଲ, କିଏ ବେଶୀ ଟି ପାର୍ଟି ଦେଇପାରିଲ, କିଏ ବେଶୀ ପୂର୍ତ୍ତି କରିପାରିଲ ଏବଂ କିଏ କେତେ personal dignity maintain କରିପାରିଲ ସେଇଟା ଯେପରି ମନୁଷ୍ୟର ମର୍ଯ୍ୟାଦାର ମାନଦଣ୍ଡ ନହୁଏ । କିନ୍ତୁ ଯୁକ୍ତି କରଯାଇଛି ଯେ ଆମର ମନ୍ତ୍ରୀମାନଙ୍କର dignity of position ବା ମର୍ଯ୍ୟାଦା ରକ୍ଷା କରିବାକୁ ହେବ । ଅନ୍ୟାନ୍ୟ ଦେଶରୁ ଯେଉଁମାନେ ଆସିବେ ସେମାନେ ଯେତେବେଳେ ମନ୍ତ୍ରୀଙ୍କ ସହିତ ଦେଖା କରିବେ ସେମାନେ ଭାବିବେ ଯେ ଏ ଦେଶର ଲୋକପ୍ରତିନିଧି ମନ୍ତ୍ରୀମାନେ ଯେତେବେଳେ ଏତେ ଗରିବ ସେତେବେଳେ ଏ ଦେଶର ଲୋକଙ୍କ ଠାରୁ କ'ଣ ଆଶା କରଯାଇପାରେ । ପୁଣି ଯୁକ୍ତି କରଯାଉଛି ଯେ ଯଦି ଆମର ମନ୍ତ୍ରୀମାନଙ୍କର sufficient standard of living ଏବଂ sufficient standard of comfort ନ ଥାଏ, ତାହାହେଲେ ଦେଶର ଶାସନ ଚଳି ପାରିବ ନାହିଁ । ଆହୁରି ଯୁକ୍ତି କରଯାଇଛି ଯେ, ମଟର ଗାଡ଼ି ନ ହେଲେ ଶାସନ ଚାଲିବ ନାହିଁ । ମଟର ଗାଡ଼ି ବିଷୟରେ ମୋର ଅଭିଜ୍ଞତା ନାହିଁ । କଟକ ସହରର ମାନ୍ୟବର ସଭ୍ୟଙ୍କଠାରୁ ପ୍ରଥମ ଥର ପାଇଁ ଶୁଣିଲି । ୫ ବର୍ଷ ଭିତରେ ମଟର ଗାଡ଼ିରେ କେତେ ଖର୍ଚ୍ଚ ହୁଏ, ସେ ବିଷୟରେ ପ୍ରଥମ କରି ଅଭିଜ୍ଞତା ଲଭ କଲି । କେବଳ ତାଙ୍କଠାରୁ ନୁହେଁ, ତାର ପୁନରାବୃତ୍ତି ହେଲ, ମାନ୍ୟବର ଡାକ୍ତରେର ସଭ୍ୟଙ୍କ ଦ୍ୱାରା । ତା'ପରେ ଯେତେବେଳେ ମାନ୍ୟବର ଛତ୍ରପୁରର ସଭ୍ୟ କହିଲେ ଯେ, ପ୍ରଧାନ ମନ୍ତ୍ରୀଙ୍କର ଯେଉଁ ସ୍ତରର dignity, ଯେଉଁ ସ୍ତରର prestige maintain କରିବାର କଥା, ବିରୁଦ୍ଧ ଦଳର ନେତାଙ୍କର ମଧ୍ୟ ସେହି ରକମ dignity ଓ prestige maintain କରିବା କଥା, ସେତେବେଳେ ମୁଁ ମନେ ମନେ କହିଛି, O' God, save me from my hon'ble friend from Patrapur । ସେତେବେଳେ ମୋ ମନରେ ଗୋଟିଏ ବିଭୀଷିକା ଜାତ ହୋଇଥିଲ । କାରଣ ମୋତେ ଯଦି ହଜାରେ ଟଙ୍କା ଦରମା ଦେଇ କୁହାଯାଏ ଯେ ତମେ ଗୋଟିଏ ୨୫/୨୬ ହଜାର ଟଙ୍କାର car maintain କରିବାକୁ ହେବ । ତା'ହେଲେ ମୁଁ ସେ nightmareରେ ଚାପି ହୋଇଯିବି । ତେଣୁ ମୁଁ ଭାବୁଛି, ଦରମା କୌଣସି ଲୋକର ମର୍ଯ୍ୟାଦା ବା prestigeର ମାନଦଣ୍ଡ ହୋଇ ନ ପାରେ । ୧୫୦ ଟଙ୍କାରେ ମୋର କ୍ଷୁଦ୍ର ମତରେ ମୁଁ ଭାବୁଛି ଯେ, Leader of the Oppositionର ଯେତିକି prestige ବା dignity maintain କରିବାର କଥା, ମୁଁ ତାହା ରକ୍ଷା କରିବାକୁ ସମର୍ଥ ହେଉଛି ।

Shri BIREN MITRA: ଓକିଲତିରୁ ଯେଉଁ ପଇସା ପାଉଛନ୍ତି, ତାହା କଣ ହୁଏ ?

Shri SHRADDHAKAR SUPAKAR: ଓକିଲତିରୁ ମୁଁ ଯାହା ପାଏ, ତାହା ମୋର ନିଜର ପରିଶ୍ରମରୁ ପାଏ । ସେଥିପାଇଁ କାହାରି ଅନୁଗ୍ରହ ଉପରେ ନିର୍ଭର

କରେ ନାହିଁ । ସେ ଯାହା ହେଉ ଯେଉଁ ଯୁକ୍ତି କରଯାଉଛନ୍ତି ଯେ ଦରମା ହିଁ ଯୋଗ୍ୟତାର ମାନଦଣ୍ଡ, ତାହାହେଲେ ଆମର ହାଇକୋର୍ଟ ଜଜ୍, Members of the Board of Revenue ବା ଅନ୍ୟାନ୍ୟ ଯେଉଁ ଉଚ୍ଚତମ କର୍ମଚାରୀମାନେ ଯେଉଁ ଦରମା ପାଉଛନ୍ତି ସେମାନଙ୍କ ଦରମା ହାର ମନ୍ତ୍ରୀମାନଙ୍କ ଦରମା ହାର ସଙ୍ଗେ ସମାନ କରି ଦିଆଯାଉ କିମ୍ବା ମନ୍ତ୍ରୀମାନଙ୍କର ଦରମା ସେମାନଙ୍କ ଦରମା ସଙ୍ଗେ ସମାନ କରି ଦିଆଯାଉ । That would be the only a logical argumernt, କିନ୍ତୁ ମୁଁ କହେ ଦରମା ହାର କୌଣସି ଲୋକର ଯୋଗ୍ୟତାର ମାନଦଣ୍ଡ ହୋଇ ନ ପାରେ । ମାନ୍ୟବର ତାଳଚେରର ସଭ୍ୟ ଯାହା କହିଲେ ସେଇଟା ହେଉଛି Confession of a Minister । ସେଇଟାକୁ ମୁଁ ମନ୍ତ୍ରୀଙ୍କର ଦୋଷୋକ୍ତି କହିବି ନାହିଁ, ସ୍ୱୀକାରୋକ୍ତି କହିବି ଯେ ଯିଏ ମନ୍ତ୍ରୀ ହୋଇ କେନ୍ଦୁଝର ଗସ୍ତରେ ଯିବ ଏବଂ ସେଠାକାର Circuit House ରେ ଯେଉଁ ଖାନସମା ଥିବ ତାକୁ ଟ ୩୦ଙ୍କା ବକ୍‌ସିସ୍ ଦେବାକୁ ପଡ଼ିବ; ମନ୍ତ୍ରୀ ଯଦି ହେବାକୁ ହୁଏ, ତାହାହେଲେ ଘରେ ୮ ଘଣ୍ଟା ଅବିଶ୍ରାମ ଭାବରେ ପଙ୍ଖା ଟଣେଇବାକୁ ହେବ । ଯଦି ମନ୍ତ୍ରୀ ହେବାକୁ ହୁଏ ତାହାହେଲେ ଚୂଡ଼ା, ଦହି, ଗୁଡ଼, ଲୁଣ, ଲଙ୍କାମରିଚ ସଂପୂର୍ଣ୍ଣଭାବରେ ବର୍ଜନ କରି fowl curry, ଚପ୍, କଟ୍‌ଲେଟ୍, ପଲଉ ଇତ୍ୟାଦିର ଆଶ୍ରୟ ନେବାକୁ ହେବ ।

Shri GODABARISHA MISRA: ବିରୁଦ୍ଧ ଦଳର ନେତାଙ୍କୁ ମୁଁ ଅନୁରୋଧ କରିବି ଯେ ବର୍ତ୍ତମାନ ସମସ୍ତେ କ୍ଷୁଧାର୍ତ୍ତ, ସେ ଏସବୁ ଜିନିଷର ନାମ ଉଚ୍ଚାରଣ କରନ୍ତୁ ନାହିଁ ।

Shri SHRADDHAKAR SUPAKAR : ମନ୍ତ୍ରୀ ଯଦି ହେବାକୁ ହୁଏ, ତାହାହେଲେ ମୋଟା ଦରମାରେ driver maintain କରିବାକୁ ହେବ । ମନ୍ତ୍ରୀ ହେବାକୁ ହେଲେ କେବଳ କେନ୍ଦୁଝର ଗସ୍ତରେ ଯାଇ ସେଠାକାର Circuit House ରେ ଥିବା ଖାନସମାକୁ ଟ ୩୦ଙ୍କା ବକ୍‌ସିସ୍ ଦେଲେ ଚଳିବ ନାହିଁ । ପ୍ରଦେଶର ପ୍ରତ୍ୟେକ ଡାକ ବଙ୍ଗଳାକୁ ଯିବାକୁ ପଡ଼ିବ । ସେ ହିସାବରେ ଯଦି ପ୍ରତି ଡାକ ବଙ୍ଗଳାରେ ଟ ୩୦ଙ୍କା ହିସାବରେ ବକ୍‌ସିସ୍ ଦିଆଯାଏ, ତାହାହେଲେ ବୋଧହୁଏ ଅତି କମ୍‌ରେ ମାସକୁ ୧,୭୫୦ ଟଙ୍କା ଯେ ନିଶ୍ଚୟ ଖର୍ଚ୍ଚ ହେବ ଏଥିରେ ସନ୍ଦେହ ନାହିଁ । ସେ ଯେଉଁ ହିସାବ ଟାଣିକା ଦେଇଛନ୍ତି ସେଥିରେ ମୁଁ ସଂପୂର୍ଣ୍ଣ ଏକମତ ହେଉଛି ।

କିନ୍ତୁ ଯେଉଁ ଲୋକେ ଆମକୁ ପ୍ରତିନିଧି କରି ପଠାଇଛନ୍ତି ସେହି ସାଧାରଣ ଲୋକଙ୍କର standard ଯାହା ଆମେ ଯଦି ସେହି standard maintain କରୁ ଏବଂ ସେହି ହିସାବରେ ଚଳୁ, ଆଉ କେଉଁଝର ଡାକ ବଙ୍ଗଳାରେ କୁକୁଡ଼ା କାଟି ନଖାଇ ଚୂଡ଼ାଗୁଡ଼ ଖାଉ ତାହାହେଲେ ହୁଏତ ଆମକୁ କେହି ନିହାତି ଗାଉଁଲିଆ ମଳିମୁଣ୍ଡିଆ ମଫସଲିଆ କହେ ମୁଁ ବିଶେଷଣ ବିଦ୍ୟାରେ ବିଶେଷଜ୍ଞ ନୁହେଁ । ଯଦି ହୋଇଥାନ୍ତି ତାହାହେଲେ ଅହୁରି ଅନ୍ତତଃ ଅନେକ ବିଶ୍ଳେଷଣ କରିପାରନ୍ତି କିନ୍ତୁ ମୁଁ କହିବି ମନ୍ତ୍ରୀ ହିସାବରେ ଦେଶର

ନେତା ହିସାବରେ ଯଦି ଏପରି କରାଯାଏ ତେବେ ଆମର ଯୋଗ୍ୟତା, ଆମର ମର୍ଯ୍ୟାଦା ଆଦୌ କ୍ଷୁର୍ଣ୍ଣ ହେବନାହିଁ । ଏଇଟା ମୋର ବ୍ୟକ୍ତିଗତ ଧାରଣା । ତା' ଫଳରେ କ'ଣ ହେବ ନା highest status and the lowest status of the society ଅର୍ଥାତ ସମାଜର ଉଚ୍ଚତମ ସ୍ତର, ନିମ୍ନତମ ସ୍ତର ମଧ୍ୟରେ ଯେଉଁ ବିଶେଷ ପାର୍ଥକ୍ୟ ଏବଂ ପ୍ରଭେଦ ରହିଛି ଏବଂ ଯାହାକୁ ଦୂର କରିବା ଆମର ସମସ୍ତଙ୍କର କାମ୍ୟ ଓ ସେଥିପାଇଁ ମଧ୍ୟ ଆମ ସଂବିଧାନରେ ବ୍ୟବସ୍ଥା ରହିଛି, ତାହା ଦୂର ହେବ । ଏ ଯେଉଁ ବିଶେଷ ପାର୍ଥକ୍ୟ ଆମ ସମାଜରେ ରହିଛି ତାକୁ ଆମେ ଦୂର କରିବାକୁ ଯିବା ନା ଆହୁରି ବଢ଼ାଇବାକୁ ଯିବା । ବିଦେଶରୁ କେହି ଯଦି ଆସନ୍ତି, ଯଥା—England, U. S. A. ପ୍ରଭୃତି ଦେଶରୁ ଯେଉଁମାନେ କି ବଡ଼ ବଡ଼ ବା highest standard of livingରେ ଅଭ୍ୟସ୍ତ, ଯଥା—Refregerator fan ଇତ୍ୟାଦି ଏବଂ Food Curry ଇତ୍ୟାଦି ଯେଉଁମାନଙ୍କ ନହେଲେ ନ ଚଳେ—ଯେପରିକି ଜଣେ ମାନ୍ୟବର ସଭ୍ୟ କହିଛନ୍ତି—ସେମାନେ ହୁଏତ ଆମକୁ ଦେଖିଲେ କହିବେ ଏମାନେ ନିହାତି ମଫସଲିଆ ବା ଗାଉଁଲିଆ, କିନ୍ତୁ ମୁଁ କହିବି ସେ କଥାରେ ଆଦୌ ବିଚଳିତ ହେବା ଆମର ଉଚିତ୍ ନୁହେଁ ।

ତାପରେ motor car କଥା ଦେଖାଯାଉ । motor ଯେ ମନୁଷ୍ୟର ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ, ବିଶେଷ କରି ମନ୍ତ୍ରୀମାନଙ୍କର ଏ କଥା ମୁଁ ଆଦୌ ଅସ୍ୱୀକାର କରି ପାରିବି ନାହିଁ । ମନ୍ତ୍ରୀ ହେବାକୁ ହେଲେ ଯେ motor ଗୋଟିଏ ନିହାତି ଦରକାର । ପ୍ରଥମରୁ motor ଦରକାର ଏବଂ ତାପରେ ମନ୍ତ୍ରୀତ୍ୱ ଦରକାର । ଏ ସତ୍ୟ ମଧ୍ୟ ମୁଁ ସ୍ୱୀକାର୍ଯ୍ୟ ହିସାବରେ ଗ୍ରହଣ କରି ନେଇଛି । କିନ୍ତୁ ଯଦି କୁହାଯାଏ ଯେ ମନ୍ତ୍ରୀମାନେ motor ଦ୍ୱାରା କ୍ରୀତଦାସ ହୋଇ ରହିବେ ଏବଂ ସେମାନଙ୍କୁ ୫ବର୍ଷରେ ୨୬ ହଜାର ଟଙ୍କା ଖର୍ଚ୍ଚ କରିବାକୁ ହେବ, ତାହାହେଲେ ମୁଁ ଏ କଥା ସହିତ ଏକମତ ହୋଇ ପାରୁନାହିଁ ।

ଅଧ୍ୟକ୍ଷ ମହାଶୟ, ଆଜି ଟ୍ରେଜରିର ମାନ୍ୟବର ସଭ୍ୟ ଯେଉଁ ଯୁକ୍ତି ବାଢ଼ିଲେ ସେ ଯୁକ୍ତିକୁ ଯେତେବେଳେ ମୁଁ ଶୁଣିଲି ସେତେବେଳେ ମୋର ମନେ ହେଲା ୧୯୨୧ ସାଲରେ ଦିନ ଥିଲା ଯେତେବେଳେ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ସାରା ଭାରତ ବର୍ଷରେ ବିଦେଶୀ ବା ବିଲାତୀ କପଡ଼ାକୁ bonfire କରାଯାଇଥିଲା; ଦେଶୀ ଜିନିଷର ଆଦର ବଢ଼ାଇବା ପାଇଁ, ସରଳତାର ମର୍ଯ୍ୟାଦା ବୃଦ୍ଧି ପାଇଁ ଆଜି ହୁଏତ ଦିନ ଆସିଛି, ମାନ୍ୟବର ଟ୍ରେଜରି ସଭ୍ୟଙ୍କର କଳ୍ପନା ଏବଂ ଆଶା ଯଦି ସଫଳ କରିବାକୁ ଆମେ ଯିବୁ ଯେତେବେଳେ ସମଗ୍ର ଦେଶରେ ଯେତେ ଖଦଡ଼ ଅଛି, ସେ ସବୁକୁ bonfire କରାଯିବା ଉଚିତ୍ । ଏହିଦିନ ଆଉ ବେଶୀ ଦୂର ନାହିଁ । କାହିଁକି ? ଏ ଯେଉଁ ଗାନ୍ଧିବାଦ, ଯାହାର କି ଗୋଟିଏ ପ୍ରତୀକ ହେଉଛି ଖଦଡ଼, ସୂତାକଟା ଏବଂ ସରଳ ଜୀବନ ଯାପନ—ଏଇଟା ଗୋଟାଏ ଚିନ୍ତାଧାରା । ଏଇଟା ଗୋଟାଏ Philosophy of life, ସେଟା ଦେଖନ୍ତୁ ଏବଂ ଅନ୍ୟ ଦିଗରୁ ମଧ୍ୟ ଦେଖନ୍ତୁ ଆଜି ଯେଉଁ ଯୁକ୍ତି କରାଗଲା ଯେ ମନ୍ତ୍ରୀ

ହେବାକୁ ହେଲେ ଅମୁକ ଜିନିଷ ଦରକାର । Standard of life ଏତିକି ଉଚ୍ଚ ହେବା ଦରକାର, ନ ହେଲେ ମନ୍ତ୍ରୀ ହୋଇ ପାରିବ ନାହିଁ । ଏହି ଦୃଷ୍ଟିକୋଣକୁ ଆପଣ ଭଲକରି ଦେଖନ୍ତୁ ଏବଂ ତୁଳନା କରନ୍ତୁ । ଆମର ମାନ୍ୟବର ପ୍ରଧାନମନ୍ତ୍ରୀ ତ ସର୍ବୋଦୟରେ ବିଶ୍ୱାସ କରନ୍ତି ଏବଂ ମୁଁ କହିବି ସେ ସରଳ ଜୀବନ ଯାପନ କରନ୍ତି । ଯଦି ମନ୍ତ୍ରୀ ହେବାକୁ ହେଲେ ଏହିସବୁ ପୂଜା ଉପକରଣ ଦରକାର, ଏହିସବୁ ଜିନିଷ ଦରକାର ବୋଲି କୁହାଯାଏ ଏବଂ ଅନ୍ୟ ପକ୍ଷରେ କୁହାଯାଏ ଯେ ଲୋକେ ଯେତେବଡ଼ ହୁଅନ୍ତୁ ନା କାହିଁକି ସେ ରାଷ୍ଟ୍ରପତି ଆସନ ଗ୍ରହଣ କରନ୍ତୁ ନା କାହିଁକି, ବିଶେଷ କରି ଆମ Governmentର ଯେ ମୁଖ୍ୟମନ୍ତ୍ରୀ ମଧ୍ୟ ପ୍ରତିଦିନ ଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ଘଣ୍ଟାଏ ସୂତା କାଟିବା ଉଚିତ୍ । ଯଦି ଏହିପରି ଆଦର୍ଶବାଦ ପ୍ରଚାର କରଯାଏ ତାହାହେଲେ ଆପଣ ବୁଝିପାରିବେ ମୁଁ ଯେଉଁ କଥା କହିଛି ସେ ଦିନ ଆସୁଛି, ଯେଉଁଦିନ ଖଦଡ଼ ଓ ଖଦୀ ଆଦର୍ଶବାଦର, ଖଦୀ ଦର୍ଶନର bonfire କରିବାକୁ ପଡ଼ିବ ।

ତାପରେ କେତେକ ବିଶିଷ୍ଟ ଆଲୋଚନା ଯାହା କରଯାଇଛି ସେ ବିଷୟରେ ମଧ୍ୟ ସାମାନ୍ୟ କେତେ କଥା କହିବାକୁ ମୁଁ ଚାହୁଁଛି । ଭଣ୍ଡାରୀ ପୋଖରୀର ମାନ୍ୟବର ସଭ୍ୟ ଶ୍ରୀ ଗୋକୁଳାନନ୍ଦ ମହାନ୍ତି କହିଛନ୍ତି ଯେ ସଭ୍ୟମାନେ ଯେତେବେଳେ ମାସକୁ ଟ ୯୦୦ଙ୍କା ପାଆନ୍ତି ସେତେବେଳେ ମନ୍ତ୍ରୀମାନେ ୧୦୦୦ ଲେଖାଁଏ ପା'ନ୍ତୁ ବା ୭୫୦ ପାଆନ୍ତୁ । ଏଥିରେ କ୍ଷତି କ'ଣ ଅଛି ? ସେ କହିଲେ ମାନ୍ୟବର ସଭ୍ୟମାନେ ବର୍ଷରେ ୩ ମାସ ପର୍ଯ୍ୟନ୍ତ କାମ କରନ୍ତି ଏବଂ ସେହି ୩ ମାସ ଭିତରେ ସେମାନେ କାମ କରି ବାର୍ଷିକ ୧୮୦୦ ଟଙ୍କା ପାଆନ୍ତି, ତାପରେ Daily Allowance ତ ଅଛି । ତାଙ୍କ କଥାରୁ କ'ଣ ମୁଁ ବୁଝିବି ଯେ ଯଦି ୧,୮୦୦ ଟଙ୍କା ୩ ମାସରେ ମିଳିଲା, ତେବେ ମାସିକ ହେଲା ଟ ୬୦୦ଙ୍କା । ତେବେ କଣ Daily Allowance ପଡ଼ିଲା ମାସକୁ ଟ ୩୦୦ଙ୍କା କରି, ମୋଟରେ ତାଙ୍କ ହିସାବ ଅନୁଯାୟୀ ମାସିକ ହେଲା ଟ ୯୦୦ଙ୍କା ? ତାହାହେଲେ ସେ କ'ଣ ଭାବୁଛନ୍ତି ଯେ ଆମର ଯେତେ ସଭ୍ୟ ଅଛନ୍ତି ସେମାନେ କେବଳ ୩ ମାସ କାମ କରନ୍ତି, ବର୍ଷର ବାକି ୯ ମାସରେ କୁମ୍ଭକର୍ଣ୍ଣ ଅବତାର ଧାରଣ କରନ୍ତି ? ସେମାନେ କ'ଣ ତାଙ୍କର Constituencyରେ ବା ନିର୍ବାଚନମଣ୍ଡଳୀରେ ବାକି ସମୟରେ କିଛି କାମ କରନ୍ତି ନାହିଁ ? ତାଙ୍କର କ'ଣ ସେ ଦାୟିତ୍ୱ ନାହିଁ ? ଏହି ସବୁ ଯୁକ୍ତି ଶୁଣି ମୋର ମନେ ପଡୁଛି ମାନ୍ୟବର ଯାଜପୁରର ସଭ୍ୟଙ୍କ ଯୁକ୍ତି, ତାଙ୍କ ଯୁକ୍ତି ଅନୁସାରେ ଆମେ ବର୍ତ୍ତମାନ ଯେଉଁ ବାଦାନୁବାଦ କରୁଥାଇଁ ସେଟା ହେଉଛି ଅଯୁକ୍ତିବାଦ । ବାସ୍ତବିକ ଏ କଥାରେ ତାଙ୍କ ସଙ୍ଗରେ ମୋର ସଂପୂର୍ଣ୍ଣ ଏକମତ । ଗୋଟିଏ ଦିଗରେ କୁହାଯାଉଛି ଯେ ଆମର ideal and plain living and high thinking ଅର୍ଥାତ୍ ସାଧାରଣ ଜୀବନ ଯାପନ, ଅନ୍ୟ ଦିଗରେ ଶୁଣାଯାଉଛି ମନ୍ତ୍ରୀ ହେବାକୁ ହେଲେ ଅମୁକ status maintain କରିବାକୁ ହେବ ।

(A Voice—Ideal is never reached) ହଁ Ideal is never reached, କିନ୍ତୁ ଅନ୍ତତଃ ideal ଆଡ଼େ ଗତି ହେବା ଉଚିତ୍ । ମାନ୍ୟବର ସଭ୍ୟ ଯାହା କହୁଛନ୍ତି ମୁଁ ପଗ୍ଚରେ ଯେଉଁ ଦିଗରେ ସେ ଆଦର୍ଶ ଅଛି ସେ ଦିଗକୁ ଯିବେ, ନା ତା'ର ବିପରୀତ ଦିଗକୁ ଯିବେ । ବାସ୍ତବିକ୍ ସେ ବିଷୟ ଭବି ଦେଖିବା କଥା । Which way should we go. ସେ ବିଷୟ ପ୍ରତି ସରକାର ଦୃଷ୍ଟି ଦିଅନ୍ତୁ ଏବଂ ଏହି ଯେ ଆଦର୍ଶବାଦର ବିରୋଧ, ଏ ବିଷୟରେ ବିଶେଷ ଲକ୍ଷ୍ୟ କରିବାର କଥା । ତେବେ ମୋର ଆଜି ପ୍ରଧାନ ବକ୍ତବ୍ୟ ହେଉଛି ମାନ୍ୟବର ମନ୍ତ୍ରୀମାନେ ଏକ ହଜାର ପାଇବେ କି ୭୫୦ ପାଇବେ, କେତେ Car Allowance ପାଇବେ ସେ ବିଷୟ ବଡ଼ କଥା ନୁହେଁ । ବଡ଼ କଥା ହେଉଛି ତାକୁ ସମର୍ଥନ କରିବା ପାଇଁ ଯେଉଁ ଯୁକ୍ତି ସବୁ ସରକାରୀ ପକ୍ଷରୁ ଦେଖାଯାଉଛି ସେଥିରୁ ମୋର ମନେ ହେଉଛି ସାଧାରଣ ଲୋକେ ଏହା ଶୁଣି ସରକାରଙ୍କୁ କହିବେ "ସନ୍ଧଂ ନ ବାଧତେ ରାଜନ ତବ ବାଧତି ବାଧତେ ।"

The SPEAKER: ବର୍ତ୍ତମାନ ମୁଖ୍ୟମନ୍ତ୍ରୀ ତାଙ୍କର ଉତ୍ତର ଦିଅନ୍ତୁ ।

## 1952-53 ଅତିରିକ୍ତ ଖର୍ଚ୍ଚ ଦାବୀ (Supplementary Budget) ଉପରେ ଭୋଟଦାନ ପୂର୍ବରୁ ଆଲୋଚନା

ସାଧାରଣ ପ୍ରଶାସନ ବିଭାଗର ଉପରୋକ୍ତ ଖର୍ଚ୍ଚ ଦାବୀକୁ ଶ୍ରୀ ମୁରଲୀଧର ପଣ୍ଡା 100 ଟଙ୍କାକୁ କମାଇ ଦେବାକୁ ଏକ କାଟ୍ ପ୍ରସ୍ତାବ ଆଣିଥିଲେ ଏବଂ ବାଚସ୍ପତି ଏହି ପ୍ରସ୍ତାବ ଉପରେ ଆଲୋଚନା କରିବାକୁ ଅନୁମତି ଦେଇଥିଲେ । ଡକ୍ଟର ସୂପକାର ଏହା ଉପରେ କହିବାକୁ ଯାଇ ବେସରକାରୀ ପ୍ରଚାରକ ବା କର୍ମୀ ନିଯୁକ୍ତି ସଂପର୍କରେ ସରକାର ଅନେକ ଟଙ୍କା ଖର୍ଚ୍ଚ କରୁଛନ୍ତି ଏବଂ ରାଜ୍ୟର ଆର୍ଥିକ ସଂକଟ ସମୟରେ ଏପରି ଖର୍ଚ୍ଚକୁ "ଅର୍ଥଶ୍ରାଦ୍ଧ" ବୋଲି ମତ ଦେଇଛନ୍ତି । ଏହି ପ୍ରଚାର କର୍ମୀମାନେ ସରକାରଙ୍କ ସ୍ତୁତିଗାନ କରିବା ଛଡ଼ା ଅଧିକ କିଛି କରୁନାହାଁନ୍ତି ବୋଲି ମତ ଦେଇ ସେ କହିଛନ୍ତି (ତା 21-10-1952), "ଆମେ ଦେଖୁଛୁଁ ଏହି ବିଭାଗ ଦ୍ୱାରା ଏବଂ ବିଭାଗୀୟ କର୍ମଚାରୀଙ୍କ ଦ୍ୱାରା ଆଜି ପର୍ଯ୍ୟନ୍ତ କୌଣସି ବିଶେଷ ମଙ୍ଗଳକର କାର୍ଯ୍ୟ ହୋଇ-ନାହିଁ" । ତେଣୁ ସେ "ଏ ଖର୍ଚ୍ଚକୁ ସଂପୂର୍ଣ୍ଣଭାବେ ଉଠାଇ ଦିଆଯାଉ । ତାହେଲେ ଓଡ଼ିଶା ପରି ଗରିବ ଦେଶ ଏ ଅର୍ଥଶ୍ରାଦ୍ଧରୁ ରକ୍ଷା ପାଇବ" ବୋଲି କହିଛନ୍ତି ।

* * *

1952 ଅକ୍ଟୋବର 22 ତାରିଖରେ ଡଃ ସୂପକାର ସେହିପରି Community Project ବା ଗ୍ରାମଗୋଷ୍ଠୀ ଯୋଜନା ସଂପର୍କରେ ନିଜର ପ୍ରତିକୂଳ ମତ ପ୍ରକାଶ କରିଛନ୍ତି । ଏହିପରି ଖର୍ଚ୍ଚବହୁଳ ଯୋଜନାମାନ କାର୍ଯ୍ୟକାରୀ କରିବାରେ ଜନସାଧାରଣଙ୍କର

ବିଶେଷ ଉନ୍ନତି ଘଟୁନାହିଁ । ବରଂ ସେମାନଙ୍କ ମନରେ ଅଧିକ ହତାଶା ଓ ନୈରାଶ୍ୟ ସୃଷ୍ଟି ହେଉଛି । ଚାଷ, ରାସ୍ତାଘାଟ ଆଦିର ଆଶାନୁରୂପ ଭାବେ ବିକାଶସାଧିତ ହେଉ-ନାହିଁ । ଡଃ ସୁପକାର ତେଣୁ ସରକାରଙ୍କୁ ସାବଧାନ କରାଇ କହିଛନ୍ତି, "ପ୍ରତି ପଦେ ପଦେ ଭୁଲ ଆଉ ଭ୍ରାନ୍ତ ଆମର ଗତିରୋଧ କରୁଛି । ଭବିଷ୍ୟତରେ ସେହି ଭୁଲ ଏବଂ ସେହି ଭ୍ରାନ୍ତ ଯେପରି ପୁନରାବୃତ୍ତି ନହୁଏ, ସେଥିପ୍ରତି ସରକାର ଆଜହୁଁ ବିଶେଷ ଦୃଷ୍ଟି ଦେବେ ବୋଲି ମୁଁ ଆଶା କରେ", ସରକାରୀ ଅପବ୍ୟୟକୁ ନିୟନ୍ତ୍ରଣ କରିବା ପାଇଁ ଶ୍ରଦ୍ଧାକରଙ୍କ ଗଠନମୂଳକ ସମାଲୋଚନା ଯେ ନିତାନ୍ତ ପ୍ରଣିଧାନଯୋଗ୍ୟ, ଏଥିରେ ସନ୍ଦେହ ନାହିଁ ।

**ଶ୍ରୀ ଶ୍ରଦ୍ଧାକର ସୁପକାର :** ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏ ଯେଉଁ କାଟ ପ୍ରସ୍ତାବ ମୋ ନାମରେ ଅଛି ତାହା ହେଉଛି ଯେ କେତେକ non-official worker ବା ବେସରକାରୀ ପ୍ରଚାରକ ବା କର୍ମୀ ନିଯୁକ୍ତି ବିଷୟରେ ମୁଁ ଏ କାଟ ପ୍ରସ୍ତାବ ଆଗତ କରିଛି । ଏହା ପୂର୍ବରୁ ପ୍ରାୟ ଅନେକ ବର୍ଷଧରି କେତେଗୁଡ଼ିଏ ବେସରକାରୀ ପ୍ରଚାରକ ମାସିକ ଟ 45ଙ୍କା ବେତନରେ କାର୍ଯ୍ୟ କରୁଥିଲେ ଏବଂ ସେହି ସମ୍ପର୍କରେ ସରକାରଙ୍କର ଅନେକ ହଜାର ଟଙ୍କା ଖର୍ଚ୍ଚ ହେଉଥିଲା । କିନ୍ତୁ ଗତବର୍ଷ 1951ରେ ଦେଖାଗଲା ଯେ ଓଡ଼ିଶାର ଆର୍ଥିକ ପରିସ୍ଥିତି ଯେପରି ସଙ୍କଟମୟ ଅବସ୍ଥାରେ ଗତିକରି ଚାଲିଛି ସେଥିରେ ଏ ପ୍ରକାର ବେସରକାରୀ କର୍ମୀ ବା ପ୍ରଚାରକ ନିଯୁକ୍ତ କରି ଗୁଡ଼ିଏ ଅର୍ଥଶ୍ରାଦ୍ଧ କରିବା ସମୀଚୀନ ନୁହେଁ । ସରକାର ବରାବର ଗୋଟିଏ ଧାରଣାରେ ଥିଲେ ଯେ ଆମର ବେଶି ଗୁଡ଼ିଏ ଖର୍ଚ୍ଚ ନକଲେ ସରକାର ଠିକ୍ ଚଳିବ ନାହିଁ ଏବଂ ଆମେ ଯାହା କରୁଛୁ ତା'ର କୌଣସି ରକମ ସ୍ତୁତିଗାନ କରିବା ପାଇଁ ଏବଂ ପ୍ରଚାର କରିବା ପାଇଁ ଅନେକଗୁଡ଼ିଏ କର୍ମୀ ଯେଉଁମାନେକି ସରକାରଙ୍କର ମତବାଦ ପୋଷଣ କରୁଥିଲେ ଏବଂ ସରକାରଙ୍କର ସ୍ତୁତିଗାନ କରୁଥିଲେ ସେମାନଙ୍କୁ ନିଯୁକ୍ତ କରାଯାଇଥିଲା । କିନ୍ତୁ ଗତବର୍ଷ ଜୁଲାଇ ମାସରେ ଯେତେବେଳେ ଆସେମ୍ବ୍ଲି ବୈଠକ ହୁଏ ସେହି ସମୟରେ ଗୋଟିଏ ଆର୍ଥିକ ସଙ୍କଟମୟ ପରିସ୍ଥିତିର ସୂଚନା ମିଳିଲା ଏବଂ ସେହି ପରିସ୍ଥିତିରୁ ବେସରକାରୀ ପ୍ରଚାରକମାନଙ୍କର ଚାକିରୀ ଶେଷ କରି ଦିଆଗଲା । ସେହି ପ୍ରଚାରକ-ମାନେ କି ଧରଣର କାର୍ଯ୍ୟ କରୁଥିଲେ ଏବଂ ଯେଉଁ ଉଦ୍ଦେଶ୍ୟରେ ସେମାନଙ୍କୁ ନିଯୁକ୍ତି କରାଯାଉଥିଲା ତାହା ସରକାର ବରାବର ଏହି ବ୍ୟବସ୍ଥା ସଭା ଭିତରେ ଏବଂ ବାହାରେ ପ୍ରଚାର କରୁଥିଲେ । ଏହି ପ୍ରଚାରକମାନେ ସରକାରଙ୍କର ଉଦ୍ଦେଶ୍ୟକୁ ଯେ ପୂରଣକରି ପାରୁ ନଥିଲେ ବରଂ ତା'ର ଓଲଟା ଫଳ ହେଉଥିଲା ଏଥିରେ କୌଣସି ସନ୍ଦେହ ନାହିଁ ଏବଂ ଓଡ଼ିଶାର ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ଏ ବିଷୟରେ ବୋଧହୁଏ ଏକମତ ହେବେ । ଅବଶ୍ୟ ଯେଉଁମାନେ ବର୍ତ୍ତମାନ ସରକାରଙ୍କର ସମର୍ଥକ ଅଛନ୍ତି ଏବଂ ଯେଉଁମାନଙ୍କୁ ଏହି ପ୍ରଚାରକମାନେ ପ୍ରଶଂସା କରୁଥିଲେ ସେମାନେ ଏଥିରେ ଅବଶ୍ୟ

ଖୁସି ହେବାର କଥା ଏବଂ ଏମାନଙ୍କୁ ସମର୍ଥନ କରିବାର କଥା । କିନ୍ତୁ ଦେଶର ସମୂହ ହିତ ଦୃଷ୍ଟିରୁ ଏମାନଙ୍କର ଯେ ପ୍ରୟୋଜନୀୟତା ନଥିଲା ଏବଂ ଏମାନଙ୍କୁ ଚାକିରୀରୁ ବିଦାୟ କରିଦେବା ପରେ ଏମାନଙ୍କର ଅଭାବ ଯେ ଆମ ଦେଶରେ ଆଦୌ ଅନୁଭୂତି ହୋଇ-ନାହିଁ ଏକଥା ସମସ୍ତେ ସ୍ୱୀକାର କରିବେ । ତେବେ ବର୍ତ୍ତମାନ କାହିଁକି କଥା ଉଠୁଛି ଯେ ଆମର ମାସିକ ଟ 100ଙ୍କା ଲେଖାଏଁ ବେତନ ଦେଇ ଏହି ପ୍ରକାର 20ଟି କର୍ମ-ଚାରୀ ନିଯୁକ୍ତ କରିବା । ଏଥିସଙ୍ଗେ କୁହାଯାଇଛି ଆଗେ ଟ 45ଙ୍କା ଦିଆଯାଉଥିଲା । ସେଥିପାଇଁ ହୁଏତ ଅଧିକ ଯୋଗ୍ୟତାସମ୍ପନ୍ନ ଲୋକ ମିଳୁନଥିଲେ ଏବଂ ବର୍ତ୍ତମାନ ଯଦି ଟ 100ଙ୍କା କରି ଦିଆଯାଏ, ଅବଶ୍ୟ ସେମାନଙ୍କର ସଂଖ୍ୟା କମାଇ ଦିଆଯାଇଛି, ତାହା-ହେଲେ ଅଧିକ ଯୋଗ୍ୟତାସମ୍ପନ୍ନ ଲୋକ ବାହାରିବେ । ଆମେ ଦେଖୁଛୁଁ ଏହି ବିଭାଗ ଦ୍ୱାରା ଏବଂ ବିଭାଗୀୟ କର୍ମଚାରୀଙ୍କ ଦ୍ୱାରା ଆଜି ପର୍ଯ୍ୟନ୍ତ କୌଣସି ବିଶେଷ ମଙ୍ଗଳକର କାର୍ଯ୍ୟ ହୋଇନାହିଁ ଏବଂ ସେମାନଙ୍କୁ ଯେଉଁ ଉଦ୍ଦେଶ୍ୟରେ ନିଯୁକ୍ତ କରାଯାଇଛି ବୋଲି କୁହାଯାଉଛି ଏବଂ ସେମାନେ ନିତାନ୍ତ ଦରକାରି ବୋଲି ପ୍ରଚାର କରାଯାଉଛି ସେହି ଉଦ୍ଦେଶ୍ୟରେ ବର୍ତ୍ତମାନ ଯେଉଁମାନେ ଅଛନ୍ତି ସେମାନଙ୍କ ଦ୍ୱାରା ମଧ୍ୟ ପୂରଣ ହୋଇ ପାରୁନାହିଁ । ଅବଶ୍ୟ ସେମାନଙ୍କ ମଧ୍ୟରୁ ଅନେକଙ୍କୁ 100 ଟଙ୍କା ଦେଉଛୁ ବୋଲି କହି ଏହାର ବହୁତ ଗୁଣ ଦରମା ଦିଆଯାଉଛି । ଏ ପ୍ରକାର ପ୍ରଚାରକ ନିଯୁକ୍ତ କଲାବେଳେ ସେମାନଙ୍କର ପ୍ରକୃତ ଯୋଗ୍ୟତା ଅଛି କି ନାହିଁ, ସେମାନଙ୍କର ପ୍ରକୃତ ଅଭିଜ୍ଞତା ଅଛି କି ନାହିଁ ତାହା ମୋଟେ ଦେଖାଯାଉ ନାହିଁ । ପ୍ରଚାର କାର୍ଯ୍ୟ କରିବା ପାଇଁ ଯେଉଁସବୁ ଗୁଣ ଦରକାର ଯଦ୍ୱାରାକି ଲୋକଙ୍କୁ ପ୍ରଭାବିତ କରାଯାଇ ପାରିବ ଏବଂ ଅନ୍ୟାନ୍ୟ ଯେଉଁସବୁ ଗୁଣ ଦରକାର ସେସବୁ ଗୁଣ ଥାଉ ବା ନ ଥାଉ ସେମାନେ ଯଦି ଉପରିସ୍ଥ ବ୍ୟକ୍ତିଙ୍କୁ ଇଂରେଜୀରେ ଯାହାକୁ କୁହନ୍ତି "Pleasing the boss" ଏହା କରିପାରିବାର ଗୁଣଥିଲେ ସେମାନଙ୍କୁ ନିଯୁକ୍ତି ଦିଆଯାଉଛି । ଏପରି ଅବସ୍ଥାରେ ଏବର୍ଷ ମାସକୁ ଟ 100ଙ୍କା ଲେଖାଏଁ ଦେଇ 20 ଜଣ ପ୍ରଚାରକ ନିଯୁକ୍ତି କରିବେ ଓ ଏ ବିଭାଗର ଅନ୍ୟାନ୍ୟ କାର୍ଯ୍ୟପାଇଁ ମଧ୍ୟ କେତେକଙ୍କୁ ନିଯୁକ୍ତ କରାଯିବ ଯାହା ଫଳରେ କି ଏ ବର୍ଷ 8,900 ଟଙ୍କା ଖର୍ଚ୍ଚ ହେବ । ଏହି ଅନୁପାତରେ ପ୍ରତିବର୍ଷ ପ୍ରାୟ 27 ହଜାର ଟଙ୍କା ଖର୍ଚ୍ଚ ହେବ । ମୁଁ ଭାବୁଛି ବୋଧହୁଏ ଏ ଟଙ୍କା ଗୋଟିଏ ଅର୍ଥଶ୍ରାଦ୍ଧ କରିବା ଛଡ଼ା ଅନ୍ୟ କିଛିନୁହେଁ । ଯଦି ଏହି ଟଙ୍କା ଅନ୍ୟ କୌଣସି କାର୍ଯ୍ୟରେ ବ୍ୟୟିତ ହୁଅନ୍ତା ଓ ଲୋକଙ୍କର ଉପକାର ହେଲା ଭଳିଆ କାର୍ଯ୍ୟରେ ବ୍ୟବହାର ହୁଅନ୍ତା, ତେବେ ଏହାର ସଦୁପଯୋଗ ହୁଅନ୍ତା । କାରଣ ସରକାର ଯେଉଁ ଗୁଣ ଅଛି ଦେଖି ଏମାନଙ୍କୁ ନିଯୁକ୍ତ କରୁଛନ୍ତି ବୋଲି କହୁଛନ୍ତି ସେ ଗୁଣ ସେମାନଙ୍କର ନାହିଁ । ଏମାନଙ୍କ ପିଛା ଏଟଙ୍କା ଖର୍ଚ୍ଚ ନ କରି ଯଦି ଅନ୍ୟ ଲୋକହିତକର ମାର୍ଗରେ ଖର୍ଚ୍ଚ କରାଯାଉଥାନ୍ତା ତେବେ ଲୋକଙ୍କର ଅଧିକ ଉପକାର ସାଧିତ ହୁଅନ୍ତା ବୋଲି ମୁଁ କହିବି । ତେଣୁ ମୁଁ ପ୍ରସ୍ତାବ କରୁଛି, ଏ ଖର୍ଚ୍ଚକୁ ସମ୍ପୂର୍ଣ୍ଣ-ଭାବେ ଉଠାଇ ଦିଆଯାଉ ତାହାହେଲେ ଓଡ଼ିଶା ପରି ଗରିବ ଦେଶ ଏ ଅର୍ଥଶ୍ରାଦ୍ଧରୁ

ରକ୍ଷା ପାଇବ । ଯେଉଁ ରାଜ୍ୟର ଆର୍ଥିକ ପରିସ୍ଥିତି ସ୍ୱଚ୍ଛଳ ନୁହେଁ, ଯେଉଁ ରାଜ୍ୟର ଋଣ ଓ ସୁଧ ଭାର ଧୀରେ ଧୀରେ ଏପରି ବଢ଼ି ଚାଲିଛି ଯେ ତା'ର ଭବିଷ୍ୟତ କ'ଣ ହେବ ଏବଂ ସେ କି ଆକାର ଧାରଣ କରିବ ଆମେ ତା'ର କଳ୍ପନା ସୁଦ୍ଧା କରିପାରୁ ନାହୁଁ, ସେ ରାଜ୍ୟରେ ଏପରି ଅର୍ଥଶ୍ରାଦ୍ଧ କରିବା ଆଦୌ ଉଚିତ୍ ନୁହେଁ । ଆମରି ରାଜ୍ୟରେ ଏପରି ଅବସ୍ଥା ରହିଥିବା ସତ୍ତ୍ୱେ ବର୍ତ୍ତମାନ ଏହି ଖର୍ଚ୍ଚ ନ କରି ଏହାକୁ ବନ୍ଦ କରି ଦିଆଯାଉ ଏହି ପ୍ରସ୍ତାବ ମୁଁ ଆଗତ କରୁଛି ।

Shri SHRADDHAKAR SUPAKAR: ମାନ୍ୟବର ଅଧକ୍ଷ ମହାଶୟ, ଏ ଯେଉଁ ଯୋଜନା...............

Shri GODABARISH MISRA: ବାଚସ୍ପତି ମହାଶୟ, ଆପଣ ସ୍ଥିର କରିଦିଅନ୍ତୁ, ଆପଣଙ୍କୁ କେଉଁ ନାମରେ ଡାକାଯିବ । ତା' ନ ହେଲେ କେହି ଆପଣଙ୍କୁ ଚୌକି ମହାଶୟ ଡାକିବେ ତ କେହି ବାଚସ୍ପତି ମହାଶୟ ଡାକିବେ, ଆଉ କେହି ଅଧ୍ୟକ୍ଷ ମହାଶୟ ବୋଲି ଡାକିବେ । ଯାହାହେଉ ଗୋଟିଏ ନାମକରଣ ସ୍ଥିର କରିଦିଅନ୍ତୁ, ଆପଣଙ୍କୁ ସେହି ଅନୁସାରେ ଡକାଯିବ । ତା ନ ହେଲେ ବଡ଼ ଅସୁବିଧା ହେଉଛି ।

Shri SHRADDHAKAR SUPAKAR: କେନ୍ଦ୍ରରେ ଯେଉଁ ପରିଭାଷା କମିଟି ବସିଥିଲା, ତାଙ୍କ reportରୁ ମୁଁ ଦେଖିଛି, Speakerର ଅନୁବାଦ ହେଉଛି ଅଧ୍ୟକ୍ଷ । ସେହି ଦୃଷ୍ଟିରୁ ମୁଁ ତାହା ବ୍ୟବହାର କରୁଛି ।

The SPEAKER: ପରିଭାଷା କମିଟି Speakerର ପରିଭାଷା ଅଧ୍ୟକ୍ଷ ବୋଲି ଦେଇଛନ୍ତି, ଏଇଟା ମୁଁ ଜାଣେ । ପରିଭାଷା କମିଟି ମୋ ଘରେ, ମୋ ଉପସ୍ଥିତିରେ ଏ କଥା ସ୍ଥିର କରିଥିଲେ କିନ୍ତୁ ଏଠାରେ କିଏ କ'ଣ ବୋଲି ଡ଼ାକୁଛନ୍ତି, ସେଥିରେ ମୁଁ ବାଧା ଦେବା ଯାଉନାହିଁ ।

Dr. PRANAKRUSHNA PARIJA: ଈଶ୍ୱର ଆଲ୍ଲା ତେରନାମ ।

Shri SHRADDHAKAR SUPAKAR: ଏ ଯେଉଁ Community Project ବା ଗ୍ରାମଗୋଷ୍ଠୀ ଯୋଜନା ହୋଇଛି, ଏ ସମ୍ପର୍କରେ ଆମକୁ ଟଙ୍କା ମଞ୍ଜୁର କରିବା ପାଇଁ କୁହାଯାଉଛି ଏବଂ ଏଥିପାଇଁ ଦାବୀର ବ୍ୟବସ୍ଥା ହୋଇଛି । କେବଳ ସେତିକି ନୁହେଁ, ଏହି ବାବଦରେ ଅର୍ଥମନ୍ତ୍ରୀ ମଧ୍ୟ ପରେ 26 ଲକ୍ଷ ଟଙ୍କା ଋଣ ପାଇଁ ଆଉ ଗୋଟିଏ ଅଧିକା ଦାବୀ ଉପସ୍ଥାପିତ କରିବେ । ଏହି ବିଷୟରେ ଗତ ବଜେଟ୍ ଅଧିବେଶନ ସମୟରେ ଏହାର ଗୋଟିଏ ସଂକ୍ଷିପ୍ତ ସୂଚନା ଦେଇ ମାନ୍ୟବର ଅର୍ଥମନ୍ତ୍ରୀ ଯାହା କହିଥିଲେ, ସେଥିରୁ ଜଣାପଡ଼ୁଛି, ଆମର 3 ବର୍ଷରେ ଏହି ଗ୍ରାମଗୋଷ୍ଠୀ ଯୋଜନା ବାବଦ୍‌ରେ 1 କୋଟି ୨୨ ଲକ୍ଷ ଟଙ୍କା ଖର୍ଚ୍ଚ ହେବ । ଅର୍ଥାତ୍ ହାରାହାରି ବାର୍ଷିକ ଗୋଟିଏ

ଗୋଟିଏ Project ପାଇଁ ୬5 ଲକ୍ଷ ଟଙ୍କା ଖର୍ଚ୍ଚ ହେବାପାଇଁ ହିସାବ କରଯାଇଥିଲା । ଆଉ ସେ କହିଥିଲେ, ୪୨ ଲକ୍ଷ ଟଙ୍କା ଋଣ ଆକାରରେ ଆମକୁ ମିଳିବ ଏବଂ 16 ଲକ୍ଷ ଟଙ୍କା grant ଆକାରରେ କେନ୍ଦ୍ରରୁ ମିଳିବ, ଏହି ଯୋଜନାର ପ୍ରାଥମିକ ସୂତ୍ରପାତ ହିସାବରେ । ଏହି supplementary demandରେ କେତେକ ଦାବୀ ଆଗତ କରଯାଇଛି । ଏହି ଗ୍ରାମଗୋଷ୍ଠୀ ଯୋଜନାର ଉଦ୍ଦେଶ୍ୟ ଏବଂ ଆଦର୍ଶ ଯେ ମହତ୍ ଏ ବିଷୟରେ ସନ୍ଦେହ ନାହିଁ । କିନ୍ତୁ ଏହାର ପରିଣତି ଏବଂ କାର୍ଯ୍ୟପନ୍ଥା କ'ଣ ହେବ, ଏ ବିଷୟରେ ଆଲୋଚନା କଲେ ଅନେକଗୁଡ଼ିଏ ସନ୍ଦେହ ମନ ମଧ୍ୟରେ ଜାଗ୍ରତ ହୁଏ ଏବଂ ଯେଉଁ ଆଦର୍ଶ ନେଇ କାର୍ଯ୍ୟ ଆରମ୍ଭ କରଯାଉଛି, ପରିଣାମରେ ସେହି ଆଦର୍ଶ ଯେ ସମ୍ପୂର୍ଣ୍ଣ ଭବରେ ଭ୍ରଷ୍ଟ ହୋଇଯାଇ ପାରେ, ଏ ଆଶଙ୍କା ମଧ୍ୟ କରଯାଇ ପାରେ ।

ପ୍ରଥମରେ ଯଦି ଆର୍ଥିକ ଦୃଷ୍ଟି କୋଣରୁ ଏ ବିଷୟଟିକୁ ଦେଖାଯାଏ, ତାହାହେଲେ ଆମେ ଦେଖିପାରିବା ଯେ, ଏହି ଯେଉଁ 1 କୋଟି ୨5 ଲକ୍ଷ ଟଙ୍କା ଆସନ୍ତା 3 ବର୍ଷ ମଧ୍ୟରେ ଖର୍ଚ୍ଚ ହେବ, ତା' ପରେ ହୁଏତ ଆମେ ଯେଉଁ ଅଞ୍ଚଳମାନଙ୍କର ବିକାଶ ପାଇଁ ଏହି ଖର୍ଚ୍ଚ କରୁଛୁ, ସେହି ଅଞ୍ଚଳ ପାଇଁ ଆଉ ଅଧିକ ଖର୍ଚ୍ଚ କରିବା ପାଇଁ ଆମକୁ ପଡ଼ିପାରେ । ତା' ସଙ୍ଗେସଙ୍ଗେ ଆହୁରି ମଧ୍ୟ ଏହି ପରିକଳ୍ପନାରେ ଅଛି, କେବଳ ଏହି ୨ଟି କେନ୍ଦ୍ରକୁ ନେଇ କାର୍ଯ୍ୟ ଆରମ୍ଭ କରଯାଉଛି, ତାହା ନୁହେଁ, ଆମର ଶେଷ ଲକ୍ଷ୍ୟ ହେଉଛି ସମଗ୍ର ପ୍ରଦେଶରେ ଯେପରି ଏହି ଗ୍ରାମଗୋଷ୍ଠୀ ଯୋଜନା କାର୍ଯ୍ୟକାରୀ ହୁଏ । ଯଦି ଆମେ ଏହି ଶେଷ ଲକ୍ଷ୍ୟରେ ପହଞ୍ଚିବାକୁ ଯାଉ, ତା'ହେଲେ ଆମେ ଦେଖିବାକୁ ପାଇବା ଯେ, ଓଡ଼ିଶା ପ୍ରଦେଶକୁ କେତେ ଭଗରେ ବିଭକ୍ତ କରଯାଇ ପାରେ, ଯେଉଁଥିରୁ କି ପ୍ରଥମରେ ଏହି ୨ଟି ଭଗ ନିଆଯାଇଛି । ଯଦି ସେହି ଅନୁସାରେ ହିସାବ କରଯାଏ, ତାହାହେଲେ ଆପଣ ଦେଖିବାକୁ ପାଇବେ ଏବଂ ସରକାର ନିଜେ ଯଦି ଏ ବିଷୟରେ ଅନୁଧ୍ୟାନ କରନ୍ତି, ତା'ହେଲେ ଦେଖିବାକୁ ପାଇବେ । ଏ 2 କୋଟି ଟଙ୍କାରେ ଯେ ଆମ ଲକ୍ଷ୍ୟ ହାସଲ ହୋଇଯିବ, ତାହା ନୁହେଁ, ଏହିପରି ଶହ ଶହ କୋଟି ଟଙ୍କା ଆମ୍ଭମାନଙ୍କୁ ଖର୍ଚ୍ଚ କରିବାକୁ ପଡ଼ିପାରେ ଏବଂ ଏହି ବାବଦରେ ଋଣ ଇତ୍ୟାଦିର ଭର ମଧ୍ୟ ଆମମାନଙ୍କ ଉପରେ ପଡ଼ିପାରେ ଏବଂ ପଡ଼ିବା ମଧ୍ୟ ସୁନିଶ୍ଚିତ । ତେବେ ଏହି ଯେଉଁ ଖର୍ଚ୍ଚ କରଯିବ, ସେ ଖର୍ଚ୍ଚ ଏବଂ ଯେଉଁ ଖର୍ଚ୍ଚ ପାଇଁ ଦାବୀର ବ୍ୟବସ୍ଥା କରଯାଇଛି, ଏହା ଇଂରଜୀ ଭାଷାରେ କହିବାକୁ ଗଲେ ହେଉଛି "The thin end of the wedge" ପରି ବର୍ତ୍ତମାନ ଆରମ୍ଭ କରଯାଉଛି । ଏଇଟା ଆମର ପ୍ରାଥମିକ ଖର୍ଚ୍ଚ । ଯଦି ମଝିରେ କୌଣସି କାରଣ ବଶତଃ ଆମେ ଏ ଖର୍ଚ୍ଚ ତୁଲାଇ ନ ପାରୁ, ତା'ହେଲେ ଏହାର ପରିଣତି କ'ଣ ହେବ, ଏହା ଯେକୌଣସି ଦୂରଦର୍ଶୀ କଳ୍ପନା କରି ପାରିବେ । ଏହି ବିଷୟରେ ମୋର ପୂର୍ବବର୍ତ୍ତୀ ବକ୍ତା ପ୍ରଥମରେ

ସୂଚନା ଦେଲେ ଯେ, ଆମେ ଯେତେବେଳେ ବହୁତଗୁଡ଼ିଏ ଟଙ୍କା ଗୋଟିଏ ଯାଗାରେ ରଖିବାକୁ ଯାଉଛୁ, ସେଠାରେ inflaticnery tendency ନିଶ୍ଚୟ ହେବ ଏବଂ ତା'ଫଳରେ ହୁଏତ ଆମେ ସେହି ଅଞ୍ଚଳ, ଯେଉଁ ଅଞ୍ଚଳରେ ଏହି ଗ୍ରାମଗୋଷ୍ଠୀ ଯୋଜନା ଆରମ୍ଭ କରିବାକୁ ଯାଉଥାଏ, ସେହି ଅଞ୍ଚଳର ଲୋକମାନଙ୍କର ଜୀବନର ମାନ ବା standard of living ହୁଏତ ବର୍ଦ୍ଧିଯିବ । କିନ୍ତୁ ଏହାର ପରିଣତି ନିକଟବର୍ତ୍ତୀ ଅଞ୍ଚଳରେ ନିଶ୍ଚୟ ପଡ଼ିବ ଏବଂ ନିକଟବର୍ତ୍ତୀ ଅଞ୍ଚଳ ଯଦି ଅନୁନ୍ନତ ହୁଏ, ତା'ହେଲେ ସେ ଅଞ୍ଚଳର ଦାରିଦ୍ର୍ୟ ଉତ୍କଟତର ହେବ ଏବଂ ଗୋଟିଏ ଅଞ୍ଚଳରେ ଯଦି ଉନ୍ନତି କରି ଯଦି ତା'ର ନିକଟବର୍ତ୍ତୀ ଅଞ୍ଚଳ ଅନୁନ୍ନତ ରହେ, ତା'ହେଲେ ତା'ର ପରିଣତି ଭଲ ହୁଏନାହିଁ । ଆହୁରି ମଧ୍ୟ ଗୋଟିଏ ଅଞ୍ଚଳରେ ଯଦି ବେଶୀ ଖର୍ଚ୍ଚ କରାଯାଏ ଏବଂ ତା'ର ନିକଟବର୍ତ୍ତୀ ଅଞ୍ଚଳରେ ସେହି ପରିମାଣରେ ଖର୍ଚ୍ଚ କରା ନ ଯାଏ ବା ଖର୍ଚ୍ଚ କରିବା ପାଇଁ ଆମେ ଭବିଷ୍ୟତରେ ପ୍ରସ୍ତୁତ ନ ହେଉ, ତା'ହେଲେ ତା'ର ଅର୍ଥନୈତିକ ପରିଣତି ତା'ର ନିକଟବର୍ତ୍ତୀ ଅଞ୍ଚଳରେ କ'ଣ ହେବ ସେଟା ମନ୍ତ୍ରୀ ମହାଶୟ ଭାବି ଦେଖିବାର କଥା ଏବଂ ପ୍ରଥମରୁ ଏହି ଯେଉଁ commitment କରି ଦିଆଯାଉଛି, ସେଥିପାଇଁ ଆମେ ପ୍ରସ୍ତୁତ ହେବାର କଥା । ଏଇଟା ହେଲା ଏହାର ଅର୍ଥନୈତିକ ଦୃଷ୍ଟିକୋଣ ।

ତା'ପରେ ଋଣ ହିସାବରେ ଆମେ ଯଦି ଦେଖିବାକୁ ଯାଉ, ତା'ହେଲେ ଆମେ ଦେଖିବା, ଏହି ଯେଉଁ 3ଟି କେନ୍ଦ୍ର ପାଇଁ ହାରାହାରି 90 ଲକ୍ଷ ଟଙ୍କା ଆମକୁ 3 ବର୍ଷ ମଧ୍ୟରେ ଋଣ କରିବାକୁ ପଡୁଛି ଏବଂ ଭବିଷ୍ୟତରେ ଏହି ପ୍ରକାର ଯୋଜନା ପାଇଁ ଯଦି ଆହୁରି ଋଣ ଆଣିବାକୁ ପଡେ, ତାହା ସଙ୍ଗେ ଆମର ଅନ୍ୟାନ୍ୟ ଯେଉଁ ଯୋଜନା ପାଇଁ ଅନୁନ୍ନତ ଅଞ୍ଚଳର ଉନ୍ନତି ସାଧନ ନିମିତ୍ତ ଯଥା—ହୀରାକୁଦ ଭଳି ଅନ୍ୟାନ୍ୟ ଯୋଜନା ପାଇଁ ଯେଉଁ ଋଣ ଆମେ ଆଣୁଛୁ ଏବଂ ଯେଉଁ ଋଣ ପାଇଁ ସୁଧ ହୁଏତ ଦେବାକୁ ପଡ଼ିପାରେ, ସେହି ଋଣର ଭାର କେତେ ଏବଂ ଓଡ଼ିଶାର ସାଧାରଣ କରଦାତା ସେ ଭାର ବହନ କରିବା ପାଇଁ କେତେଦୂର ସମର୍ଥ ଏବଂ ଏହି ଦିଗରୁ ଆମର ଭବିଷ୍ୟତ କଣ ହେବ ସେହି ବିଷୟ ବର୍ତ୍ତମାନଠାରୁ ଲକ୍ଷ୍ୟ କରିବାର କଥା । ତା'ପରେ ଏହି ଯେଉଁ ଉନ୍ନତିମୂଳକ ଯୋଜନା ବର୍ତ୍ତମାନ କରାଯାଉଛି, ଏଇଟାକୁ administrative ଦୃଷ୍ଟିକୋଣରୁ ମଧ୍ୟ ବିଚାର କରି ମୁଁ ସାମାନ୍ୟ କେତେକଥା କହିବାକୁ ଚାହେଁ । କୃଷି ଶିକ୍ଷା, ସ୍ୱାସ୍ଥ୍ୟ ଏସବୁ ଦିଗରୁ ଗ୍ରାମମାନଙ୍କର ଉନ୍ନତି କରିବା ପାଇଁ ଏହି ଯେଉଁ ସବୁ ଯୋଜନା କରାଯାଇଛି, ଏଇଟା କିଛି ଗୋଟାଏ ନୂଆ କଥା ନୁହେଁ । ମହାତ୍ମା ଗାନ୍ଧିଙ୍କର ଯେଉଁ ସର୍ବୋଦୟ ପରିକଳ୍ପନା ଥିଲା, ଏଇଟା ପ୍ରାୟ ସେହି ଆଦର୍ଶରେ ଅନୁପ୍ରାଣିତ ହୋଇଛି । କିନ୍ତୁ ସର୍ବୋଦୟ ପନ୍ଥା ଏବଂ ଏହି ପନ୍ଥା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଅଛି ବୋଲି ଅନ୍ତତଃ ମୁଁ ଭାବୁଛି । କାରଣ ସର୍ବୋଦୟ ପନ୍ଥାର ମୌଳିକ ନୀତି ହେଲା ଯେ plain living ଏବଂ high thinking ଅର୍ଥାତ୍ ଲୋକେ ଯେମିତି ସରଳ ଜୀବନ

ଯାପନ କରନ୍ତି, ଅନ୍ତରେ ସନ୍ତୁଷ୍ଟ ରହି ନିଜର ଜୀବନରେ ଉଚ୍ଚ ଚିନ୍ତା ଏବଂ କାର୍ଯ୍ୟପନ୍ଥାକୁ ଯେପରି ପ୍ରତିଷ୍ଠିତ କରିପାରିବେ ଏବଂ ସମଗ୍ର ଦେଶକୁ ଏହି ଦିଗରେ ଅନୁପ୍ରାଣିତ କରି ପାରିବେ ଏବଂ ସମସ୍ତଙ୍କର ମଙ୍ଗଳ ପାଇଁ ଏହି ରକମ ଚିନ୍ତା ଏବଂ ଭାବନା କରିବେ ଏବଂ ତାକୁ କାର୍ଯ୍ୟରେ ପରିଣତ କରିବେ, ଏଇଟା ଥିଲା ସର୍ବୋଦୟ ପନ୍ଥାର ମୂଳ ଲକ୍ଷ୍ୟ । କିନ୍ତୁ ବର୍ତ୍ତମାନ ଏହି ଯେଉଁ ଗ୍ରାମଗୋଷ୍ଠୀ ଯୋଜନା କରାଯାଉଛି ଏହାର ପ୍ରଧାନ ଲକ୍ଷ୍ୟ ହେଲା ଯେ, ଜନସାଧାରଣଙ୍କର ଜୀବନଧାରଣର ମାନ କିପରି ବଢ଼ିବ, ସେହି ବିଷୟ ଦେଖିବା । ଏହି standard of living ଯଦି ବଢ଼ାଇ ଦିଆଯାଏ ଏବଂ ସେହି standard of living ଯଦି maintain କରା ନ ଯାଏ, ପଶ୍ଚାତରେ ଏଇଟା ଭବିଷ୍ୟତରେ ଯେପରି ରହିବ ରହେ, ସେଇଟା ଯଦି ଆମେ ନ ଦେଖୁ, ଯେଉଁମାନଙ୍କ ପାଇଁ ଏହି କାର୍ଯ୍ୟ ହେଉଛି ଏବଂ ଏତେ ପରିଶ୍ରମ କରି କରାଯାଉଛି, ସେମାନଙ୍କର ଜୀବନ ହୁଏତ ସାମୟିକ ଭାବରେ ଉନ୍ନତ ହୋଇପାରେ, ସାମୟିକ ଭାବରେ ସେମାନେ ସୁଖୀ ହୋଇ ପାରନ୍ତି କିନ୍ତୁ ତାର ପରିଣାମ ହୁଏତ ସୁଖକର ହୋଇ ନ ପାରେ । ଏହି ଦିଗରୁ ମଧ୍ୟ ଏଇଟା ଦେଖିବାର କଥା । ଆମର ଏହି ଯେଉଁ ସର୍ବୋଦୟ କାର୍ଯ୍ୟ ଏବଂ ଗ୍ରାମଗୋଷ୍ଠୀ ଯୋଜନାର ଆଦର୍ଶ ଏହି ଦୁଇଟି ଆଦର୍ଶବାଦ ମଧ୍ୟରେ କିପରି ସମନ୍ୱୟ ଆସିପାରିବ ଏବଂ ଏହି ଯେଉଁ ଆଦର୍ଶଗତ ବିରୋଧ ଏ ଉଭୟଙ୍କ ମଧ୍ୟରେ ଅଛି, ଏହି ବିରୋଧର ସମନ୍ୱୟ ହେବା ଯେ, ଅସମ୍ଭବ ଏଇଟା ମୋର କାହିଁକି ମନେ ହେଉଛି । ସେହି ଦୃଷ୍ଟିରୁ ବର୍ତ୍ତମାନ ଯଦି ସରକାର ଏହି ନୂତନ ରାସ୍ତାରେ ଯାଉଛନ୍ତି, ତାହାହେଲେ ଏହାର ଭବିଷ୍ୟତ ପାଇଁ ସଚେତନ ରହିବା ନିତ୍ୟାନ୍ତ ଦରକାର । ତା'ପରେ practical ବା ପ୍ରକୃତରେ ଯେପରି କାମ ହେବ, ସେ ଦିଗରୁ ଯଦି ଆମେ ଦେଖିବାକୁ ଯିବା, ତାହାହେଲେ ଆମେ ଦେଖିବା ଯେ ଏହାଦ୍ୱାରା ଆମର କିପରି ଉନ୍ନତି ହୋଇ ପାରିବ । ଅତୀତରେ ସରକାରଙ୍କ ଦ୍ୱାରା ଏହି ଉନ୍ନତିମୂଳକ ବିଧାନ ଲାଗି ଯେଉଁଠି ଯେତେ ଚେଷ୍ଟା ହୋଇଛି, କେଉଁଠି ହେଲେ ଆମେ କାହିଁକି ଆଶାନୁରୂପ ଫଳ ପାଇନାହୁଁ । ସୁତରାଂ ଅତୀତର ଅଭିଜ୍ଞତାରୁ ଶିକ୍ଷା ଲାଭ କରି ଆମେ ଯଦି ସାରା ଦେଶର ଭବିଷ୍ୟତ ନିର୍ମାଣ କରିବାକୁ ଚେଷ୍ଟା କରୁଁ, ତାହାହେଲେ ଯାଇ ଆମର ଉଦ୍ଦେଶ୍ୟ ସଫଳ ହୋଇ ପାରିବ, ନ ହେଲେ ଏହାର ପରିଣାମ ଭୟାବହ ହେବାର ସମ୍ଭାବନା ରହିଛି । ଆମେ ଅତୀତରେ ଦେଖିଛୁ ଯେ ଯେତେବେଳେ ଆମେ ଚାଷର ଉନ୍ନତି କରିବାକୁ ଯାଇଛୁ, ଚାଷୀର ପ୍ରକୃତରେ କ'ଣ ଦରକାର ଏହି ଦୃଷ୍ଟିକୋଣରୁ ଆମେ ଅଗ୍ରସର ନ ହୋଇ ଆମର ସରକାରୀ ଦୃଷ୍ଟିକୋଣରୁ ଏବଂ ବିଭାଗୀୟ କର୍ମଚାରୀଙ୍କ ଦୃଷ୍ଟିକୋଣରୁ ଯେପରି ଦରକାର, ସେହି ଅନୁସାରେ ପରିଚାଳିତ ହୋଇଥାଉଁ । ତାହାଫଳରେ ହୁଏତ ଆମର କାଗଜ ପତ୍ର ଠିକ୍ ଥାଇପାରେ କିନ୍ତୁ ଆମେ ସ୍ପଷ୍ଟ ଦେଖୁଛୁ ଯେ, କୃଷିର ଯେଉଁ ପରିମାଣରେ ଉନ୍ନତି କରିବାକୁ ଆମେ ଆଶା ପୋଷଣ କରିଥିଲୁ ଏବଂ ଯେଉଁ ପରିମାଣରେ ଉପକାର ମିଳିବାର ଆଶା କରିଥିଲୁ ଏବଂ ଏବେ ମଧ୍ୟ ଆଶା କରୁଛୁ, ଆମର ସେ ଆଶା ସଫଳ

ହୋଇନାହିଁ ଓ ହେଉନାହିଁ । ସେହି ପରିମାଣରେ ଉନ୍ନତି ହୋଇ ପାରିନାହିଁ । ଏ ବିଷୟରେ ଅନେକ ସମୟରେ ବହୁତ ଆଲୋଚନା ହୋଇ ଯାଇଛି । ତେଣୁ ସେ ସବୁର ପୁନରାବୃତ୍ତି ନ କରି ମୁଁ କେବଳ ଏତିକି କହିବି ଯେ, ଅତୀତର ଅଭିଜ୍ଞତା ବର୍ତ୍ତମାନ ଯେପରି ଭବିଷ୍ୟତ ପାଇଁ ଆମକୁ ସାବଧାନ କରାଇଦିଏ, ସେ ପ୍ରତି ଆମେ ଆଜହୁଁ ସତର୍କ ହେବା ଦରକାର । ଏହି ବିଷୟରେ ଅନ୍ତତଃ ସରକାରୀ ତରଫରୁ ଅତୀତରେ ଯେଉଁ ଭୁଲ କରାଯାଇଛି ଏବଂ ଯେଉଁ ଭ୍ରାନ୍ତି ଦେଖାଯାଇଛି, ଯାହା ଫଳରେ କି ଆମ୍ଭେମାନେ କୌଣସି ଯୋଜନା, ତାହାର ଉଦ୍ଦେଶ୍ୟ ଯେତେ ମହତ୍ ହୋଇଥାଉ ପଛକେ, କରିବାକୁ ଗଲେ, ତାହା ଆଶାନୁରୂପ ଫଳପ୍ରଦ ହୋଇପାରୁନାହିଁ । ପ୍ରତି ପଦେ ପଦେ ଭୁଲ ଆଉ ଭ୍ରାନ୍ତି ଆମର ଗତିରୋଧ କରୁଛି । ଭବିଷ୍ୟତରେ ସେହି ଭୁଲ ଏବଂ ସେହି ଭ୍ରାନ୍ତିର ଯେପରି ପୁନରାବୃତ୍ତି ନ ହୁଏ, ସେଥିପ୍ରତି ସରକାର ଆଜହୁଁ ବିଶେଷ ଦୃଷ୍ଟି ଦେବେ ବୋଲି ମୁଁ ଆଶାକରେ ।

ଏହି ବିଷୟରେ ଯଦି ଆମେ ବିଶ୍ଳେଷଣ କରୁ, ସରକାରଙ୍କର ଯାହା ଭୁଲ, ସେଥିରୁ ଆମେ ଦେଖିବାକୁ ପାଇବା ଚାଷୀ ବା ଗାଁ ଲୋକମାନେ ଯେଉଁ ହିସାବରୁ ଏବଂ ଯେଉଁ ଦୃଷ୍ଟିକୋଣରୁ ତାଙ୍କର ଉନ୍ନତି ଚାହାଁନ୍ତି, ସେହି ଦୃଷ୍ଟିକୋଣ ପ୍ରତି ସରକାର ଯଥେଷ୍ଟ ମନୋଯୋଗ ଦେଇପାରି ନାହାନ୍ତି ଏବଂ ତା ସଙ୍ଗେ ସଙ୍ଗେ ସେମାନଙ୍କଠାରୁ ଯେତେଦୂର ସହଯୋଗ ପାଇବାର କଥା ତାହା ପାଇବାର ଚେଷ୍ଟା କରାଯାଇ ନାହିଁ । ବେଶୀକରି ଯୋର ଦିଆଯାଇଛି, କାଗଜ ପତ୍ରରେ କିପରି ଆମର figure ଠିକ୍ ରହିବ, ଆମର ଯେତେ ଟଙ୍କା ଖର୍ଚ୍ଚ ହେବାର କଥା, ତାହା କିପରି lapse ନ କରିବ ଏବଂ ଯେତେ ବିହନ ଦେବାର କଥା ବା ଅନ୍ୟାନ୍ୟ ଋଣ ସାହାଯ୍ୟ ଦେବାର କଥା, ସେ ପରିମାଣ କିପରି ଠିକ୍ ରହିବ ତା'ର ସଦୁପଯୋଗ ହେଉ ବା ଉନ୍ନତି ହେଉ, ସେଥିପ୍ରତି ଯେପରି ବିଶେଷଭାବେ ଦୃଷ୍ଟି ଦିଆଯାଇ ନାହିଁ ଏବଂ ଚାଷୀଙ୍କର କ'ଣ ଦରକାର ଓ କିପରି ଭାବରେ ସାହାଯ୍ୟ କଲେ, ତାହା ସବୁଠାରୁ ବେଶୀ ଉପକାରରେ ଆସି ପାରିବ, ସେଥିପ୍ରତି ଯେପରି ଦୃଷ୍ଟି ଦିଆଯାଇ ନାହିଁ, ତାହା ଦେବାର କଥା ।

ତା'ପରେ କୃଷିର ଉନ୍ନତି ପାଇଁ ଗ୍ରାମଗୋଷ୍ଠୀ ଯୋଜନା ହେଉଛି । କିନ୍ତୁ କୃଷି ବିଭାଗ ଅଭିଜ୍ଞତାରୁ ଦେଖାଯାଇଛି ଯେ, ସରକାର ଗୋଟିଏ ନିର୍ଦ୍ଦିଷ୍ଟ କର୍ମପନ୍ଥା ଯଦି ଆରମ୍ଭ କଲେ ସେହି କର୍ମପନ୍ଥା କିପରି ଭାବରେ କୌଣସି ନିର୍ଦ୍ଦିଷ୍ଟ ଫଳ ଦେବା ପର୍ଯ୍ୟନ୍ତ ଏବଂ ଉପଯୁକ୍ତ ଭାବରେ ପରୀକ୍ଷିତ ହେବା ପର୍ଯ୍ୟନ୍ତ ତାକୁ ସମୟ ଏବଂ ସୁଯୋଗ ଦିଆଯାଏ, ସେଥିପ୍ରତି ଦୃଷ୍ଟି ଦିଆଯାଇ ନାହିଁ ଏବଂ ଯୋଜନାଗୁଡ଼ିକ ଭିତରୁ ଗୋଟିଏ ଯୋଜନା ଆରମ୍ଭ କରି ତହିଁରୁ ପୂରାପୂରି ପରୀକ୍ଷା ନ ହେବା ପର୍ଯ୍ୟନ୍ତ ନୂଆ ନୂଆ ଅନେକ କଥା ଆରମ୍ଭ କରାଯାଇଛି, ଯାହା ଫଳରେ କୃଷି ବିଭାଗରେ ବହୁପରିମାଣରେ ବିଶୃଙ୍ଖଳା ଦେଖାଯାଇଛି ।

ଏହା ଯେପରି ନ ହୁଏ ସେ ବିଷୟ ପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ହେବ । ତା’ପରେ ଆମ ଦେଶର ଜନସାଧାରଣଙ୍କ ମନରେ ଯେଉଁ ପରିମାଣରେ ନୈରାଶ୍ୟ ଓ ଅସନ୍ତୋଷ ଦେଖାଦେଉଛି ସରକାର ଯେଉଁ ବ୍ୟାପକ ଯୋଜନାମାନ କୃଷିର ଉନ୍ନତି ପାଇଁ କରୁଛନ୍ତି ତାହା ଫଳବତୀ ହେଉନାହିଁ । ତାହା ଯେପରି ଆଉ ନ ରହେ ଏବଂ ଲୋକେ ଯେପରି ଅଧିକ ଉତ୍ସାହରେ ଅନୁପ୍ରାଣିତ ହେବେ ସେଥିପ୍ରତି ବିଶେଷ ଦୃଷ୍ଟି ଦେବା ଏବଂ ଲୋକଙ୍କଠାରୁ ସାହାଯ୍ୟ ଓ ସହଯୋଗ ଅଧିକରୁ ଅଧିକ ପରିମାଣରେ ଯେପରି ମିଳିପାରିବ ସେଥିପ୍ରତି ମଧ୍ୟ ଦୃଷ୍ଟିଦେବା ଦରକାର । ସେଥିପ୍ରତି ମୁଁ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଏ ବଜେଟରେ ଯାହା ଅଛି ଟ୍ରାକ୍‌ଟର ଜିପ ସବୁ କିଣା ହେବ, ଏତେ ଅଫିସର ରହିବେ, କର୍ମଚାରୀ ରହିବେ ଏସବୁ ଉପରେ ଯେତିକି ଦୃଷ୍ଟି ଦିଆଯାଉଛି ଯଦି ସେଥିରେ ଆମର ଶକ୍ତିର ଅଧିକାଂଶ ବ୍ୟୟ ହୋଇଯାଏ ତା’ହେଲେ ମୁଁ ଭାବୁଛି ତହିଁର ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ନାହିଁ ଏବଂ ଅତୀତରେ ଯେପରି କେବଳ କୌଣସି ଫଟୋ ଛାପିବା କିମ୍ବା ପ୍ରଚାର କରିବା ଉଦ୍ଦେଶ୍ୟରେ କାର୍ଯ୍ୟପନ୍ଥା ବ୍ୟବହୃତ ହୋଇଛି କିନ୍ତୁ ସେଥିର ଫଳାଫଳ କ’ଣ ହେଲା ସେଥିପ୍ରତି ଦୃଷ୍ଟି ଦିଆଯାଉ ନାହିଁ, ତାହା ଯେପରି ନ ହୁଏ ଏବଂ ଭବିଷ୍ୟତରେ ଯେଉଁ କାର୍ଯ୍ୟପନ୍ଥା ଅବଲମ୍ବନ କରାଯାଉଛି ଏବଂ ଯେତିକି ଖର୍ଚ୍ଚ ହେଉଛି ସେଥିରେ ଲୋକଙ୍କର କିପରି ଉପକାର ହେବ ଏବଂ ଯେଉଁ ଗ୍ରାମଗୋଷ୍ଠୀର ଉନ୍ନତି ପାଇଁ ଏସବୁ କର୍ମପନ୍ଥା ଅବଲମ୍ବନ କରାଯାଉଛି ସେଥିରେ ଯେତିକି ପ୍ରକୃତରେ ଟଙ୍କା ଖର୍ଚ୍ଚ ହେଉଛି ସବୁ ଯେପରି ସେମାନଙ୍କର ମଙ୍ଗଳ ପାଇଁ ବ୍ୟୟ କରାଯାଏ ସେଥିପ୍ରତି ବିଶେଷ ପରିମାଣରେ ଦୃଷ୍ଟି ଦେବାର କଥା । ଶେଷରେ ମୁଁ ସରକାରଙ୍କୁ ଆଉଥରେ ସୂଚାଇ ଦେବାକୁ ଚାହେଁ, ସାବଧାନ କରିଦେବାକୁ ଚାହେଁ ଯେ ଏଇଟା ଯେଉଁ ଆଦର୍ଶରେ ଅନୁପ୍ରାଣିତ ହୋଇଛି ଏବଂ ଯେଉଁ ବିରାଟ ବ୍ୟୟର ଏହା ପ୍ରାରମ୍ଭିକ ସୂଚନା, ସେହି ଆଦର୍ଶ ଏବଂ ବ୍ୟୟ ଫଳରେ ଲୋକଙ୍କର ସବୁଠାରୁ ବେଶି ଉତ୍ସାହ ଯେପରି ହେବ ଏବଂ ସମଗ୍ର ରାଜ୍ୟରେ ଯେପରି ଲୋକେ ଉପକାର ପାରିବେ ଏବଂ ଯାହା ଫଳରେ ପ୍ରକୃତରେ ଆମେ ଯେଉଁ ଟଙ୍କା ଋଣ ଆଣି ଖର୍ଚ୍ଚ କରିବାକୁ ଯାଉଛୁ ସେ ଖର୍ଚ୍ଚଟା ଯେପରି ପେଟ୍ରୋଲ ଜିପ୍ କିମ୍ବା ଅନ୍ୟାନ୍ୟ ଦିଗରେ ଅଧିକ ଅପବ୍ୟୟରେ ଖର୍ଚ୍ଚ ନ ହୁଏ ସେଥିକୁ ଅଧିକ ସତର୍କତାର ସହିତ ବିଶେଷ ଦୃଷ୍ଟି ଦେଇ ସରକାର ଅଗ୍ରସର ହେବେ ବୋଲି ମୁଁ ଆଶାକରେ ।

The SPEAKER: ବର୍ତ୍ତମାନ ମୋ ଆଗରେ ସାତଜଣ ମାନ୍ୟବର ସଭ୍ୟଙ୍କର ନାମ ଅଛି । ଆହୁରି କେତେକ ସଭ୍ୟ ବୋଧହୁଏ ଏ ଆଲୋଚନାରେ ଭାଗନେବାକୁ ଚାହିଁବେ । ସେଥିପାଇଁ ମୁଁ ମାନ୍ୟବର ସଭ୍ୟମାନଙ୍କୁ ଅନୁରୋଧ କରିବି ଯେ, ସେମାନେ 10 ମିନିଟ ଭିତରେ ସେମାନଙ୍କର ବକ୍ତବ୍ୟ ଶେଷ କରନ୍ତୁ ।

ଓଡ଼ିଶା କୃଷି (ସଂଶୋଧନ) ବିଲ୍, 1952

ତତ୍କାଳୀନ କୃଷିମନ୍ତ୍ରୀ ଦୀନବନ୍ଧୁ ସାହୁ କୃଷିର ଉନ୍ନତି ପାଇଁ କୃଷି ପରିଷଦ (Agriculture Board) ଗଠିତ ହେବ ଏବଂ ଉକ୍ତ ସଂସ୍ଥା for good husbandry and good land ownership ପାଇଁ ଆବଶ୍ୟକ ବିଧିବିଧାନ ଓ ଅବସ୍ଥାବ୍ୟବସ୍ଥା ନିମନ୍ତେ ପରାମର୍ଶ ଓ ଦିଗ୍‌ଦର୍ଶନ ପ୍ରଦାନ କରିବେ ବୋଲି ମତ ଦେଇଛନ୍ତି । କୃଷିର ଉନ୍ନତି ଓ କୃଷକର ସୁବିଧା କରିବା ପାଇଁ ଆଇନ୍ ପ୍ରଣୟନ କରିପାରିବେ ବୋଲି କହିବାରୁ ଡଃ ସୁପକାର ଦୁଃଖ ପ୍ରକାଶ କରି ପୂର୍ବରୁ ପ୍ରଚଳିତ ଆଇନର ସଂଶୋଧନ ପାଇଁ ଦାବି କରିଛନ୍ତି । ଇଂଲଣ୍ଡର Agriculture Act ଛାୟାରେ ଆମର Agriculture Act ପ୍ରଣୟନ କରାଯାଇଛି ବୋଲି ସମାଲୋଚନା କରିଛନ୍ତି । ବୋର୍ଡଟି କିପରି ପ୍ରତିନିଧିମୂଳକ ହେବ ଏବଂ ବିଶେଷଜ୍ଞମାନେ ରହି ଉପଯୁକ୍ତ ପରାମର୍ଶ ଓ ଦିଗଦର୍ଶନ ଦେଇ ପାରିବେ, ଏଥିପାଇଁ ସେ ପରାମର୍ଶ ଦେଇଛନ୍ତି । Consolidation of holdings ଓ prevention of fragmentation of holdings ପାଇଁ ଆଶୁ ପଦକ୍ଷେପ ନେବା ପାଇଁ ପରାମର୍ଶ ଦେଇଛନ୍ତି । Economic holdings, Community Project, District Agriculture Committee ମାନଙ୍କୁ ସକ୍ରିୟ କରିବା ପାଇଁ ତାଙ୍କର ଉପଦେଶ ପ୍ରଣିଧାନଯୋଗ୍ୟ ।

Shri SHRADDHAKAR SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏହି ବିଲରେ ଯେଉଁ ମୂଳ ଆଇନର ସଂଶୋଧନର ପରିକଳ୍ପନା କରାଯାଇଛି, ଦୁଃଖର ବିଷୟ ସେ ମୂଳ ଆଇନ ବିଷୟରେ ଧାରଣା କରିବା ପାଇଁ ଆମର ବ୍ୟବସ୍ଥାପକ ସଭା ସଭ୍ୟମାନଙ୍କର ସୁଯୋଗ ପାଇବାରେ ଯଥେଷ୍ଟ ଅସୁବିଧା ରହିଛି । ଏହି ଆଇନ ପାସ ହେବା ପ୍ରାୟ ବର୍ଷକରୁ ଅଧେ ହୋଇଗଲାଣି । କିନ୍ତୁ ଏହା ରାଷ୍ଟ୍ରପତିଙ୍କ ମଞ୍ଜୁରି ପାଇନଥିବା ଯୋଗୁଁ ଏହାର ଶେଷଥର ଛପା ହେବାରେ ବିଳମ୍ବ ହୋଇଛି ଏବଂ ସେହି ଆଇନ କେବେ ଯେ ମିଳିବ ତାହା ଜାଣିବା ବଡ଼ ମୁସ୍କିଲ । ଏଇଟା ହେଉଛି ଗୋଟିଏ ବଡ଼ ଅଭାବ, ଯାହା ଫଳରେ ମାନ୍ୟବର ସଭ୍ୟମାନଙ୍କୁ ହୁଏତ ଅସୁବିଧା ପଡ଼ିପାରେ । ଏହି ଆଇନ ବିଷୟରେ ବିଶେଷ ଭାବରେ 'ଆଲୋଚନା କରିବାକୁ ତା'ପରେ ଆଇନର ଆଲୋଚନା ହେବା ସମୟରେ ଏହାର କ'ଣ ମୌଳିକ ନୀତି ବିଶେଷ କରି ଧାରାମାନଙ୍କ ଉପରେ କ'ଣ କିପରି ଭାବରେ ଆଲୋଚନା ହୋଇଥିଲା ତାହା ମଧ୍ୟ ପାଇବା ମୁସ୍କିଲି ହେଉଛି । ସେଥିପାଇଁ ମୁଁ ଭାବୁଛି ଏ ବିଷୟରେ ମୂଳ ଆଇନରେ ଯାହାଥିଲା ସେ ବିଷୟରେ କେତେକ କଥା କହିବା ଦରକାର ପଡୁଛି । ଏହି ମୂଳ ଆଇନ ସେତେବେଳେ ପ୍ରଥମେ ବିଲ ଆକାରରେ ଉପସ୍ଥାପିତ ହେଲା ବ୍ୟବସ୍ଥାପକ ସଭା ଆଗରେ ଇଂଲଣ୍ଡର Agriculture Act ଛାୟାରେ ଏହି ବିଲଟି ଆଗତ କରାଯାଇଥିଲା । ସେହି ଆଇନ ବଳରେ ସାରା ରାଜ୍ୟରେ କୃଷି କିପରି ନିୟନ୍ତ୍ରଣ ହେବ, ତା'ର ପରିକଳ୍ପନା କରାଯାଇ ଥିଲା । ଏହାର ଲକ୍ଷ୍ୟ ନେଇ ମାନ୍ୟବର ବିଭାଗୀୟ ମନ୍ତ୍ରୀ ଯାହା କହିଲେ ସେଟା କେବଳ administrative ବା ପରିଚାଳନା ବିଭାଗ ସମ୍ବନ୍ଧରେ । ଏହି ଆଇନରେ ବ୍ୟବସ୍ଥା ଅଛି, ଏହି ପରିଚାଳନା ପାଇଁ

ତିନିପ୍ରକାର ବ୍ୟବସ୍ଥା କରାଯିବ । ପ୍ରଥମଟି ହେଉଛି State Agriculture Board of Orissa, ଯେଉଁଥିରେକି ସମଗ୍ର ପ୍ରଦେଶରେ କୃଷି ସହିତ ସଂପୃକ୍ତ ଥିବା ବିଭାଗୀୟ କର୍ମଚାରୀ, ଲୋକ-ପ୍ରତିନିଧି ଏବଂ ଏହି ବିଷୟରେ ଯେଉଁମାନେ ଆଗ୍ରହାନ୍ୱିତ ଓ ଯେଉଁମାନଙ୍କଠାରୁ ବିଶେଷ ସାହାଯ୍ୟ ପାଇବାର କଥା, ଏହି ପ୍ରକାର କେତେକ ଲୋକଙ୍କୁ ନେଇ ଗୋଟିଏ ପ୍ରାଦେଶିକ Board ର ପରିକଳ୍ପନା କରାଯାଇଛି । ଏଇଟା ସରକାରୀ level ରେ ସାରା ପ୍ରଦେଶରେ ଓ ଏହା ସବୁଠାରୁ ବଡ଼ । ଆଉ ଗୋଟିଏ ପରିକଳ୍ପନା ଏହା ମଧ୍ୟରେ କରାଯାଇଛି, ଯେ ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଗୋଟିଏ District Agriculture Committee ଗଢାଯିବ । ସାରା ପ୍ରଦେଶରେ କୃଷି ନିୟନ୍ତ୍ରଣ ଭାର ଯେପରି ପ୍ରାଦେଶିକ Board ନେବେ ସେହିପରି ଯେଉଁମାନେ ଜିଲ୍ଲା କୃଷି କମିଟିରେ ରହିବେ ସେମାନେ ଜିଲ୍ଲାରେ କୃଷିର ଉନ୍ନତି ଏବଂ ପରିଚାଳନା ବା ନିୟନ୍ତ୍ରଣର ଦାୟିତ୍ୱ ନେବେ । ତା'ପରେ ଜିଲ୍ଲା ମଧ୍ୟରେ କିମ୍ବା ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଗୋଟିଏ ଗୋଟିଏ କୃଷି ସମିତି ଗଢ଼ା ହେବାର ପରିକଳ୍ପନା ଅଛି ଏବଂ ଏହି ସମିତିର ସଭ୍ୟମାନେ ନିଜ ନିଜ ଅଞ୍ଚଳର କୃଷି ନିୟନ୍ତ୍ରଣ ବିଷୟରେ ଦାୟୀ ହେବେ । ତା'ପରେ କୃଷି ନିୟନ୍ତ୍ରଣ କିପରି କରାଯିବ ସେଇଟା ହେଉଛି ବଡ଼ କଥା, ସେ ବିଷୟରେ ମଧ୍ୟ ବ୍ୟବସ୍ଥା ଅଛି । ପ୍ରଥମ ହେଉଛି ଯେଉଁମାନେ ଜମିଦାର ବା ଜମି ମାଲିକ ଅର୍ଥାତ୍ ଯେଉଁମାନେ ନିଜେ ଚାଷ ନ କରି ଜମି ମାଲିକ ହୋଇ ବସିଛନ୍ତି, ସରକାର ସେମାନଙ୍କ ଉପରେ କେତେକ ଦାୟିତ୍ୱ ଦେବାର କ୍ଷମତା ଏଥିରେ ଅଛି । ସେମାନେ ଯଦି ସେଗୁଡ଼ିକ ନ କରନ୍ତି ତାହା ହେଲେ ତାଙ୍କ ଉପରେ କେତେକ କାର୍ଯ୍ୟାନୁଷ୍ଠାନ କରିବାର ବ୍ୟବସ୍ଥା ଏଥିରେ ଅଛି । ଆପଣ ଯଦି ମୂଳ ଆଇନର 11 ଧାରା ଦେଖିବେ, ତାହା ହେଲେ ଦେଖିପାରିବେ ଯେ ଗୋଚରଣ ଭୂମିର ବ୍ୟବସ୍ଥା ଜଳସେଚନ ପାଇଁ ମାଛ ଚାଷ ଆଦି ପାଇଁ ବ୍ୟବସ୍ଥା ଏବଂ ଯେମିତି ଲୋକେ ସହଜରେ ଜଙ୍ଗଲରୁ କାଠ ଆଣି ଘର ତିଆରି କରିବାର ସୁବିଧା ପାଇବେ । ତହିଁର ବ୍ୟବସ୍ଥା, ବନ୍ୟ ଜନ୍ତୁଙ୍କ ଉପଦ୍ରବରୁ ରକ୍ଷା ପାଇବା ବ୍ୟବସ୍ଥା, ଜାତିଆ ଖତ ଯୋଗାଇବାର ବ୍ୟବସ୍ଥା ଇତ୍ୟାଦି ନାନା ରକମର ବ୍ୟବସ୍ଥା କରିବାକୁ ଜମି ସତ୍ୱାଧିକାରୀମାନଙ୍କୁ କୁହାଯିବ । ସେମାନେ ଯଦି ନ କରନ୍ତି ତହିଁର ପ୍ରତିକାର କରାଯିବ । ସେମାନଙ୍କୁ ଜମିରୁ ସାମୟିକ ଭାବରେ ଉଚ୍ଛେଦ କରି ସରକାର ନିଜେ ସେ ସବୁ ଚଳାଇବେ କିମ୍ବା ଅନ୍ୟ କୌଣସି କମିଟି ଜରିଆରେ ତହିଁର ବନ୍ଦୋବସ୍ତ କରିବେ । ଅବଶ୍ୟ ଯାହାଙ୍କୁ ସେଥିରୁ କାଢି ଦିଆଯିବ ତାଙ୍କୁ କ୍ଷତିପୂରଣ ଦିଆଯିବ । ତା'ପରେ ଯେଉଁମାନେ ନିଜେ ଚାଷ କରନ୍ତି ସେମାନଙ୍କ ଉପରେ କଟକଣା ଏବଂ ନିୟନ୍ତ୍ରଣ ବ୍ୟବସ୍ଥା କରାଯାଇଛି ଯେ କୃଷି ସମିତି ଜରିଆରେ ସେମାନଙ୍କୁ କୁହାଯିବ ଯେ ସେମାନେ ନିଜେ ଯେଉଁ ଜମିରେ ଚାଷ କରୁଛନ୍ତି ସେହି ଜମିରେ କିପରି ଭାବରେ ଫସଲ କରିବେ, crop planning ବା କୌଣସି ନିର୍ଦ୍ଦିଷ୍ଟ ଫସଲ ଉତ୍ପାଦନ କରିବାକୁ ସେମାନଙ୍କୁ କୁହାଯାଇ ପାରେ । ଅନାବାଦି ଜମି ସବୁ ସେମାନଙ୍କୁ ଆବାଦ କରିବାକୁ ଦିଆଯାଇ ପାରେ । କୌଣସି irrigation sources ବା drainage works କରିବାକୁ ବା କୌଣସି ବନ୍ୟ ଜନ୍ତୁଙ୍କ ଉପଦ୍ରବରୁ ରକ୍ଷା କରିବାକୁ ନିର୍ଦ୍ଦେଶ ଦିଆଯାଇ ପାରେ । କୌଣସି ନିର୍ଦ୍ଦିଷ୍ଟ ଫସଲ ଚାଷ କରିବା ଇତ୍ୟାଦି କୃଷି ସମ୍ବନ୍ଧୀୟ

ନାନା ରକମର ନିର୍ଦ୍ଦେଶ ଦିଆଯିବ ଚାଷିମାନଙ୍କୁ । ଯଦି ସେମାନେ ତାହା ନ କରିବେ ତାହା ହେଲେ ସେମାନଙ୍କୁ ମଧ୍ୟ ଜମିରୁ ଉଚ୍ଛେଦ କରାଯିବ । ଅବଶ୍ୟ ତାଙ୍କୁ ସାମୟିକ କ୍ଷତି ପୂରଣ ଦିଆଯିବ । ତା'ପରେ ଏଥିରେ ଗୋଟିଏ ବିଶେଷ ବ୍ୟବସ୍ଥା ଅଛି consolidation of holdings ଏବଂ prevention of fragmentation of holdings, ଏଇଟା ମଧ୍ୟ ଗୋଟିଏ ବଡ଼ କଥା । କାହିଁକି ନା ଆମ ଦେଶରେ ଜମି ସବୁ ଛୋଟ ଛୋଟ ଭାଗରେ ବିଭକ୍ତ ହୋଇଯାଇଛି ଯାହା ଫଳରେ କି ଅନେକ ଆଲୋଚନା ହେଉଛି ସେ ଜମି ସବୁ ଛୋଟ ଛୋଟ ଖଣ୍ଡ ହୋଇଯିବା ଫଳରେ ଯେଉଁମାନେ ଚାଷ କରୁଛନ୍ତି ସେମାନେ ଉପଯୁକ୍ତ ପରିମାଣରେ ଲାଭ ପାଇ ପାରୁ ନାହାନ୍ତି । ଏହାର ପ୍ରତିକାର ସ୍ୱରୂପ ଯେଉଁମାନଙ୍କ ହାତରେ ଅଳ୍ପ ଜମି ଅଛି, ଯାହା କି economic holding ଠାରୁ କମ, ସେମାନଙ୍କ ହାତରୁ ସେ ଜମି ନିଆଯାଇ ତିନି ଚାରିଜଣ ବା ତହିଁରୁ ଅଧିକ ଚାଷୀମାନଙ୍କର ଜମି ମିଶାଇ ଦେଇ ଯେପରି ଗୋଟିଏ economic holding ହୋଇପାରିବ ତହିଁର ବ୍ୟବସ୍ଥା କରାଯିବ । ଆଉ ମଧ୍ୟ ଜମି ସବୁର ବିକ୍ରି ବନ୍ଧକ ଏବଂ ହସ୍ତାନ୍ତର ଉପରେ ନିୟନ୍ତ୍ରଣ ବ୍ୟବସ୍ଥା କରାଯିବ । ତା'ପରେ ଏ ବାବଦରେ ଯାହା ଖର୍ଚ୍ଚ ଅଛି ଏବଂ ନୂତନ scheme ବା ଯୋଜନା ବିଷୟରେ ମଧ୍ୟ ବ୍ୟବସ୍ଥା କରାଯାଇଛି । ଏହି ବିଲ ଯେତେବେଳେ ଉପସ୍ଥାପିତ ହୁଏ ଏହା Select Committee କୁ ଯାଇଥିଲା ଏବଂ ଏହା ବ୍ୟବସ୍ଥା ସଭାରେ ମଧ୍ୟ ବିସ୍ତୃତ ଭାବରେ ଆଲୋଚିତ ହୋଇଥିଲା । ବର୍ତ୍ତମାନ ଯେଉଁ ଉଦ୍ଦେଶ୍ୟରେ ଏହି ବିଲ୍‌ଟି ଆଗତ କରାଯାଇଛି ଅର୍ଥାତ୍ ଏହି ଆଇନ ସମଗ୍ର ପ୍ରଦେଶ ପ୍ରତି ପ୍ରଯୁଜ୍ୟ ନହୋଇ ଏକ ନିର୍ଦ୍ଦିଷ୍ଟ ସୀମିତ ଅଞ୍ଚଳରେ ଯେପରି ପ୍ରଯୁଜ୍ୟ ହୁଏ ସେଇକଥା ଉପରେ ମୁଁ ବିଶେଷ ଭାବରେ ଜୋର ଦେଇଥିଲି । ସେ ସମୟରେ ମୁଁ କହିଥିଲି ଏହା ଏପରି ଗୋଟିଏ ବିପ୍ଳବାତ୍ମକ ଆଇନ ଯେ ଏହା ଯଦି ଠିକ୍ ସାଧୁ ଉଦ୍ଦେଶ୍ୟରେ ଏବଂ ଭଲଭାବରେ କାର୍ଯ୍ୟକାରୀ କରାଯାଏ ତା'ହେଲେ କୃଷିର ପ୍ରକୃତ ଉନ୍ନତି ହେବାର ସମ୍ଭାବନା ରହିଛି କିନ୍ତୁ ଆମେ ଯେଉଁ ଅଫିସର ବା ଲୋକଙ୍କୁ ନେଇ ଆମର ଏହି କୃଷି ବିଭାଗର ପରିଚାଳନା କରୁଥାଉଁ ତହିଁରୁ ଆମର ଯାହା ଅଭିଜ୍ଞତା ହୋଇଛି ସେଥିରେ ଯଦି ସମଗ୍ର ପ୍ରଦେଶରେ ଏକପ୍ରକାର ଆଇନ ପ୍ରଚଳନ କରୁଁ ତା'ହେଲେ ଏହାକୁ ସମ୍ଭାଳି ପାରିବା ଏକପ୍ରକାର ସମ୍ଭବ ହୋଇପଡ଼ିବ । କାହିଁକି ଗୋଟିଏ ସାମାନ୍ୟ ଜିନିଷ ଦେଖାଯାଉଛି ଯେ consolidation of holdings and prevention of fargmentation of holdings. ମାନ୍ୟବର ଚୌଧୁରୀଙ୍କ ସଭାପତିତ୍ୱରେ ଯେଉଁ Land Laws Enquiry Committee ବସିଥିଲା ସେହି କମିଟିର ରିପୋର୍ଟ ଯଦି ଆପଣ ଦେଖିବେ ତା'ହେଲେ ଜାଣିବେ ଯେ ସେହି ରିପୋର୍ଟର ଶେଷ ଭାଗରେ ଚାଷୀମାନଙ୍କର କେତେ ଜମି ତା'ର ଗୋଟିଏ ତାଲିକା କରାଯାଇ ଦିଆଯାଇଥିଲା, ଏକ ଏକର, ଦୁଇ ଏକର ବା କମ୍ ଜମି ଥିବା ଲୋକଙ୍କ ସଂଖ୍ୟା ଆମ ରାଜ୍ୟରେ ଏତେ ବେଶି ଯେ consolidation of holdings ଏହି ଆଦର୍ଶକୁ ଏହି ଭାବକୁ ପ୍ରକୃତ କାର୍ଯ୍ୟରେ ପରିଣତ କରିବାକୁ ହେଲେ ଆମକୁ ବହୁତ ଖର୍ଚ୍ଚ ଓ ବହୁତ ପରିଶ୍ରମ କରିବାକୁ ପଡ଼ିବ ଏବଂ ଅନେକଗୁଡ଼ିଏ ବିଷମ ସମସ୍ୟାର ସମ୍ମୁଖୀନ ହେବାକୁ ହେବ ଏହା କେବଳ ଗୋଟିଏ ମାତ୍ର ସମସ୍ୟା । ତା' ଛଡା ଅନ୍ୟାନ୍ୟ ଅନେକ ରକମ ସମସ୍ୟା ରହିଛି । ଏସବୁ

ଯଦି ସମଗ୍ର ଓଡ଼ିଶାରେ ବ୍ୟାପକ ଭାବରେ ପ୍ରୟୋଗ କରିବାକୁ ହୁଏ ତାହାହେଲେ ଆମେ ହୁଏତ ଲକ୍ଷ ସଂଖ୍ୟାରେ ଅଫିସର ନିଯୁକ୍ତ କଲେ ଯାଇ ତହିଁର ସନ୍ତୋଷଜନକ ସମାଧାନ ହୋଇପାରିବ । ତା'ପରେ ଏ ଯେଉଁ କୃଷି ବିଭାଗ ଅଛି ସେଥିରେ ଅତୀତରେ ଆମେ ଯାହା କରିଥାଉ ସେ ସାମାନ୍ୟ ଗୋଟିଏ cart-rim distribution ଯାହାକି କୃଷି ବିଭାଗ କରିଥାରେ ହୁଏ ସେଇ ଗୋଟିଏ ସାମାନ୍ୟ କାମ କରିବାରେ କେତେ ବାଧା ଏବଂ କେତେ ଅସୁବିଧା ଆମକୁ ପଡ଼ୁଛି ଏହିସବୁ ଦୃଷ୍ଟି କୋଣରୁ ଯଦି ଆମେ ଏତେବଡ଼ ବ୍ୟାପକ କ୍ଷମତା ପ୍ରୟୋଗ କରିବାକୁ ଯିବା ତାହାହେଲେ ଅସୁବିଧା ପଡ଼ିପାରେ । ସେଥିପାଇଁ ମୁଁ ଗୋଟିଏ suggestion ଦେଇଥିଲି ଯେ ଏହା ଏକ ନିର୍ଦ୍ଦିଷ୍ଟ ସୀମିତ ଅଞ୍ଚଳରେ ପ୍ରୟୋଗ କରାଯାଉ । ସେ ସମୟରେ ମୋର ପ୍ରସ୍ତାବ ହୁଏତ ବ୍ୟବସ୍ଥା ସଭା ଗ୍ରହଣ କରି ପାରିଲେ ନାହିଁ । କିନ୍ତୁ ସୁଖର କଥା ମୁଁ ଯେଉଁ ଉଦ୍ଦେଶ୍ୟରେ ଏବଂ ଚିନ୍ତାରେ ଅନୁପ୍ରାଣିତ ହୋଇ ଏହି suggestion ଦେଇଥିଲି ନିଜେ ରାଷ୍ଟ୍ରପତି ସେହି ଉଦ୍ଦେଶ୍ୟରେ ଏବଂ ସେହି କାରଣରୁ ଆମ ରାଷ୍ଟ୍ର ସରକାରଙ୍କୁ ପରାମର୍ଶ ଦେଲେ ଯେ ସମଗ୍ର ପ୍ରଦେଶରେ ବ୍ୟବହୃତ କରିବାକୁ ଚେଷ୍ଟା ନକରି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଏହାର ବ୍ୟବହାର କରନ୍ତୁ । ସେ ଯାହା ହେଉ, ବର୍ତ୍ତମାନ ଯାହା କରାଯାଉଛି ବର୍ତ୍ତମାନ ଏ ଯେଉଁ Community Project ଓଡ଼ିଶା ରାଷ୍ଟ୍ରର ତିନୋଟି ବିଭିନ୍ନ ଅଞ୍ଚଳରେ ଆରମ୍ଭ କରାଯାଇଛି, ସେହି ଅଞ୍ଚଳରେ ହୁଏତ ଏହି କୃଷି ଆଇନର ପରୀକ୍ଷା କରିବା ପାଇଁ ଏ ଆଇନ କରାଯାଇ ଥାଇପାରେ କିନ୍ତୁ ଯଦି ତାହା କାର୍ଯ୍ୟକାରୀ କରାଯାଏ ଅବଶ୍ୟ ସେହି ଅଞ୍ଚଳମାନଙ୍କରେ କୃଷିର ଅନ୍ୟାନ୍ୟ ଉନ୍ନତି ପାଇଁ ଅନେକ ଟଙ୍କା ଖର୍ଚ୍ଚ ହୋଇଛି, ମଧ୍ୟ ଅନେକ ଯୋଜନା ହୋଇଛି । ତା' ସଙ୍ଗେ ସଙ୍ଗେ ଏହି ଆଇନଟା ହୁଏତ ସେଇ ଅଞ୍ଚଳରେ ପ୍ରଚଳିତ କରାଯାଇ ପାରିବ । କିନ୍ତୁ ମୁଁ ସରକାରଙ୍କୁ ବିଶେଷ ଅନୁରୋଧ କରୁଛି ଏ ଆଇନ୍‌ର ପରିଗ୍ରହଣା କରିବାବେଳେ ଅତି ସତର୍କତାର ସହିତ ଗତି କରିବାକୁ ପଡ଼ିବ । ଏହି ଆଇନ୍‌ର କୃଷିର ନିୟନ୍ତ୍ରଣ ପାଇଁ ଅତି ବ୍ୟାପକ କ୍ଷମତା ଦିଆଯାଇଛି ଏବଂ ସେ କ୍ଷମତାରୁ ଅନେକ ଅଂଶ କୃଷି ସମିତିମାନଙ୍କୁ ଦିଆଯାଉଛି District Agricultural Committee ମାନଙ୍କୁ ଦିଆଯାଇଛି । ଏହା ଯେପରି କୌଣସି ନିର୍ଦ୍ଦିଷ୍ଟ ଶ୍ରେଣୀର ବା ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକମାନଙ୍କ କୃଷି କାର୍ଯ୍ୟରେ ବାଧା ଓ ଅସୁବିଧା ଆଣିବା ପରିବର୍ତ୍ତେ ସେମାନଙ୍କର, ସରକାରଙ୍କର ତଥା ଭାରତର ସମଗ୍ର ଜନସାଧାରଣଙ୍କର ଯେଉଁ ଲକ୍ଷ୍ୟ ଏବଂ ଧ୍ୟେୟ ଅର୍ଥାତ୍ ସମଗ୍ର ଦେଶରେ କିପରି କୃଷିର ଉନ୍ନତି ହେଉ ଏବଂ ଆମର କ୍ରମାଗତ ବଢ଼ିଆସୁଥିବା ଖାଦ୍ୟ ସମସ୍ୟାର ଗୋଟିଏ ମୌଳିକ ଏବଂ ଚିରନ୍ତନ ସମସ୍ୟାର ସମାଧାନ ହେଉ ; ସେ ଦିଗରେ ଏ ଆଇନ୍ ସେପରି ଠିକ୍ ଭାବରେ ବ୍ୟବହାର ହୁଏ ଏବଂ ସେହି ଉପାୟ କରିବା ଦିନରୁ ସମସ୍ତ ପ୍ରତିବନ୍ଧକ ଯେପରି ଦୂର କରାଯାଏ ସେଥିପ୍ରତି ସରକାର ଅତି ସତର୍କତା ସହିତ ଏବଂ ଅତି ସାବଧାନତାର ସହିତ ଏହି ଆଇନ ବ୍ୟବହାର କରିବେ । କାରଣ ମୁଁ ଭାବୁଛି ଏହା ଗୋଟିଏ ଯେପରି କୁହାଯାଏ double edged weapon ଏହାକୁ ଯଦି ଭଲଭାବରେ ବ୍ୟବହାର କରାଯାଏ . ତା'ହେଲେ ଭଲ ଫଳ ଫଳିବ । ତା ନ ହେଲେ ଏଥିରୁ ଅନେକ ଅନିଷ୍ଟ ହେବାର ମଧ୍ୟ ସମ୍ଭାବନା ରହିଛି ।

## ମନ୍ତ୍ରୀମଣ୍ଡଳ ବିରୋଧରେ ଅବିଶ୍ୱାସ ପ୍ରସ୍ତାବ ଆଗତ କରି ଆଲୋଚନା

1953 ଏପ୍ରିଲ 15 ତାରିଖରେ ଡଃ ଶଙ୍କାକର ସୁପକାର ଓଡ଼ିଶା ସରକାରଙ୍କ ମନ୍ତ୍ରୀମଣ୍ଡଳ ବିରୋଧରେ ଅନାସ୍ଥାପ୍ରସ୍ତାବ ଆଗତ କରି ଜନସାଧାରଣଙ୍କ ମଙ୍ଗଳ ଦୃଷ୍ଟିରୁ ସରକାର କାର୍ଯ୍ୟ କରୁନାହାନ୍ତି ବୋଲି ଅଭିଯୋଗ କରିଥିଲେ । କଂଗ୍ରେସ ଦଳ କ୍ରମେ ଲୋକପ୍ରିୟତା ହରାଉଛି ଏବଂ କ୍ରମେ ନିର୍ବାଚିତ ହେଉଥିବା କଂଗ୍ରେସୀ ସଭ୍ୟଙ୍କ ସଂଖ୍ୟା ବିଧାନସଭାରେ କିପରି ହ୍ରାସ ପାଉଛି, ତା'ର ସୂଚନା ଦେଇଛନ୍ତି । ସେ ମନ୍ତ୍ରୀମଣ୍ଡଳକୁ ସାବଧାନ କରାଇବା ନିମନ୍ତେ ଏହାକୁ ଶେଷ ଚେଷ୍ଟା ବୋଲି କହିଛନ୍ତି । "ସେଥିରେ ଯେଉଁ ଅବିଶ୍ୱାସ ପ୍ରସ୍ତାବ ଦିଆଯାଇଛି, ଏହାର ଭାଗ୍ୟ କ'ଣ, ଭବିଷ୍ୟତ କ'ଣ ? କିନ୍ତୁ ମୁଁ ତାଙ୍କୁ ଏହି କଥା ସୂଚାଇ ଦେବା ପାଇଁ as a desparte ତାଙ୍କୁ ସାବଧାନ କରିବାକୁ ଚାହୁଁଛି । Let them be aware of the writings on the wall. ଗଣତନ୍ତ୍ର ଶାସନର ଲୋକପ୍ରତିନିଧି ଶାସନ ନହୋଇ ମୁଖ୍ୟମନ୍ତ୍ରୀଙ୍କ ଭାଷା ପ୍ରୟୋଗ କରି "ଅନାଡିତନ୍ତ୍ର" ପ୍ରତିଷ୍ଠା ହେଉଛି ବୋଲି କହିଛନ୍ତି । ଦୁର୍ନୀତି, ବ୍ୟଭିଚାର ଓ ଅନାଚାର ସରକାରୀ କଳରେ ଓ ଦଳରେ ବ୍ୟାପୁଛି ବୋଲି କହି ଦିନକୁ ଦିନ top heavy administration ର ଗୁରୁଚାପ ଜନତାଙ୍କ ଉପରେ ବଢ଼ି ଚାଲିଛି ବୋଲି ଅଭିଯୋଗ କରିଛନ୍ତି । ସେ river pollution prevention Bill ପ୍ରସଙ୍ଗରେ ମୁଖ୍ୟମନ୍ତ୍ରୀ Orient Paper Mill ବିରୁଦ୍ଧରେ ବିଶେଷ କିଛି କାର୍ଯ୍ୟାନୁଷ୍ଠାନ ହୋଇପାରିବ ନାହିଁ ବୋଲି କହିଛନ୍ତି । ଭୂତପୂର୍ବ ମନ୍ତ୍ରୀ ଶ୍ରୀ ପବିତ୍ର ମୋହନ ପ୍ରଧାନ ଏସବୁ ଦୂର କଲେ ସରକାର ବିଦାୟ ନେଇଯାନ୍ତୁ ବୋଲି ସେ ଦାବି କରିଛନ୍ତି, ଏହିପରି ଡଃ ସୁପକାର ସରକାରଙ୍କୁ ତାଙ୍କ ଭାଷାରେ ପ୍ରୟୋଗ କରି ସାବଧାନ କରାଇଛନ୍ତି, ଦୋଷତ୍ରୁଟି ଦେଖାଇ ଅବସ୍ଥାର ଉନ୍ନତି ଆଣିବାକୁ ଚେଷ୍ଟା କରିଛନ୍ତି ।

× × ×

ଡକ୍ଟର ସୁପକାର 1953 ଏପ୍ରିଲ 22 ତାରିଖରେ ବିଧାନସଭାରେ ଭାଗନେଇଥିବା ସମସ୍ତ ସଭ୍ୟଙ୍କ ଭାଷଣ ଉପରେ ନିଜର ଟିପପଣୀ କିପରି ବିଜ୍ଞତା, ବ୍ୟଙ୍ଗ, ହାସ୍ୟପରିହାସ ଆଦି ମାଧ୍ୟମରେ ପ୍ରଦାନ କରିଛନ୍ତି, ତାହା କେତେ ଉପଭୋଗ୍ୟ, ଆପଣମାନେ ପଢ଼ିଲେ ଜାଣି ପାରିବେ ।

## MOTION OF NO CONFIDENCE IN THE MINISTRY

**ଶ୍ରୀ ଶ୍ରଦ୍ଧାକର ସୁପକାର**: Sir, I beg to move that this House has no confidence in the present ministry.

ମାନ୍ୟବର ଅଧ୍ୟକ୍ଷ ମହାଶୟ, 1946 ସାଲରେ ଯେତେବେଳେ ଆମ ରାଜ୍ୟରେ ସାଧାରଣ ନିର୍ବାଚନ ଆରମ୍ଭ ହେଲା ସେତେବେଳେ ସଂରକ୍ଷିତ ସ୍ଥାନ ଯଥା, ଶ୍ରମିକ ନିର୍ବାଚନ ମଣ୍ଡଳୀ, ଜମିଦାର ନିର୍ବାଚନ ମଣ୍ଡଳୀ ଏବଂ ମୁସଲମାନ ନିର୍ବାଚନ ମଣ୍ଡଳୀ ଆଉ କେତେକ

ମନୋନୀତ ସଭ୍ୟଙ୍କ ଛଡ଼ା ଅବଶିଷ୍ଟ ଯେତେ ନିର୍ବାଚକମଣ୍ଡଳୀ ଥିଲା ସେଥିରେ ଅତି ଅଧିକ ସଂଖ୍ୟାରେ କଂଗ୍ରେସ ଦଳର ସଭ୍ୟମାନେ ନିର୍ବାଚିତ ହୋଇ ଆସିଥିଲେ ଏବଂ ତନ୍ମଧ୍ୟରୁ ଅନେକ ସ୍ଥାନରେ ଆଦୌ ପ୍ରତିଯୋଗିତା ହୋଇନଥିଲା । ସମଗ୍ର ପ୍ରଦେଶର ଜନସାଧାରଣଙ୍କର କଂଗ୍ରେସ ପତି ସେ ସମୟରେ ଯେଉଁ ଅସୀମ ଆସ୍ଥା, ଏହି ନିର୍ବାଚନ ଫଳାଫଳ ତହିଁର ଏକ ନିଦର୍ଶନ । ତା'ପରେ 1946 ସାଲଠାରୁ 1951 ସାଲ ଶେଷ ପର୍ଯ୍ୟନ୍ତ ଆମ ରାଜ୍ୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଶାସନ ଚଳାଇଲେ ଏବଂ ଆପଣ ଜାଣିଥିବେ ଯେ ପ୍ରାୟ ଏହି 6 ବର୍ଷ ମଧ୍ୟରେ କଂଗ୍ରେସ ସରକାର ଦୁଇଟି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଥିଲେ । ଗୋଟିଏ ହେଉଛି ହୀରାକୁଦ ବନ୍ଧ ନିର୍ମାଣ ଓ ଅନ୍ୟଟି ହେଉଛି ପୂର୍ବତନ ଗଡ଼ଜାତମାନଙ୍କର ପ୍ରଦେଶ ସହିତ ମିଶ୍ରଣ, କିନ୍ତୁ ଏହି ଦୁଇଟି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରୁଥିବା ସତ୍ତ୍ୱେ, ଯେତେବେଳେ 1951-52 ସାଲରେ ଏ ପ୍ରଦେଶରେ ପୁନର୍ବାର ସାବାଳକ ଭୋଟ ପ୍ରଥାରେ ଜନସାଧାରଣଙ୍କ ଭୋଟ ନିଆଗଲା, ସେତେବେଳେ ଦେଖାଗଲା ଯେ 140 ଜଣ ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରୁ କଂଗ୍ରେସ ଏବଂ ଆଦିବାସୀ କଂଗ୍ରେସକୁ ମିଶାଇ କେବଳ 67 ଜଣ ମାତ୍ର ନିର୍ବାଚିତ ହୋଇଛନ୍ତି । ଆଦିବାସୀ କଂଗ୍ରେସକୁ ସ୍ୱତନ୍ତ୍ର ଭାବରେ ଉଲ୍ଲେଖ କରିବାର ଅର୍ଥ ହେଉଛି ଯେ ଗତ ନିର୍ବାଚନ ସମୟରେ ଆଦିବାସୀ କଂଗ୍ରେସ, କଂଗ୍ରେସଠାରୁ ସ୍ୱତନ୍ତ୍ର ଭାବରେ ପ୍ରଚାର କରି ଭୋଟ ଭିକ୍ଷା କରୁଥିଲେ । ଏହି 67 ଜଣ ସଭ୍ୟଙ୍କୁ ନେଇ ସେତେବେଳେ ସରକାର ଗଠନ କରିବା ସମ୍ଭବ ହୋଇ ନଥିଲା । ତେଣୁ ସେହି ସମୟରୁ ଆପଣ ଦେଖିବେ ଯେଉଁ ସଭ୍ୟମାନେ କଂଗ୍ରେସ ବିପକ୍ଷରେ ପ୍ରଚାର କରି କଂଗ୍ରେସ ପ୍ରାର୍ଥୀଙ୍କୁ ପରାଜିତ କରି ସ୍ୱାଧୀନ ପ୍ରାର୍ଥୀ ହିସାବରେ ଭୋଟ ଲାଭ କରି ଆସିଥିଲେ ସେମାନେ ହଠାତ୍ ମନେ କଲେ ଯେ ଦେଶରେ ସଙ୍କଟମୟ ପରିସ୍ଥିତିରେ ବର୍ତ୍ତମାନ ଯଦି ସେମାନେ କଂଗ୍ରେସ ସହିତ ଯୋଗ ନ ଦିଅନ୍ତି ତାହାହେଲେ ଦେଶର ଅବସ୍ଥା ସଙ୍କଟାପନ୍ନ ହେବ । ତେଣୁ ଏହି ସ୍ୱାଧୀନ ସଭ୍ୟମାନଙ୍କ ମଧ୍ୟରୁ 7 ଜଣ ସଭ୍ୟ ଆସି ସେ ସମୟରେ କଂଗ୍ରେସ ଦଳରେ ଯୋଗ ଦେଇଥିଲେ । ତେଣୁ ଏହି 74 ଜଣ ସଭ୍ୟ ଯେଉଁମାନେ କି କେବଳ କଂଗ୍ରେସ ଦଳର ବୋଲି ଧରି ନିଆ ଯାଇ ନ ପାରେ; ସେମାନେ ଗୋଟିଏ ମିଳିତ ଦଳ, ବା ମିଳିତ ସରକାର । ତା ମଧ୍ୟରେ କଂଗ୍ରେସ ଦଳ, ଆଦିବାସୀ କଂଗ୍ରେସ ଦଳ, ଏବଂ ସଙ୍କଟମୋଚନ ଦଳ - ଏହିପରି ତିନୋଟି ଦଳର ସଭ୍ୟଙ୍କୁ ନେଇ କଂଗ୍ରେସ ସରକାର ଗଢ଼ାଯାଇଥିଲା । ତାପରେ ଆପଣ ଦେଖିବେ ଯେ ଏ ଯେଉଁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ାହେଲା ସେ ସମୟରେ ଏବଂ ତା ପୂର୍ବରୁ ଆମ ରାଜ୍ୟ ସରକାର 1948 ସାଲ ପରେ ଯେତେବେଳେ ଗଡ଼ଜାତ ମିଶ୍ରଣ ହେଲା, ସେତେବେଳେ ଗଡ଼ଜାତର ଜନସାଧାରଣଙ୍କ ତରଫରୁ ନିର୍ବାଚନ ପାଇଁ ଦାବି ହୋଇଥିଲେ ସୁଦ୍ଧା ସରକାର ସେଇ ଦାବିକୁ ଭ୍ରୁକ୍ଷେପ ନକରି ପୂର୍ବତନ ଗଡ଼ଜାତ ଅଞ୍ଚଳରୁ 31 ଜଣଙ୍କୁ ମନୋନୀତ କରି ତଦାନୀନ୍ତନ ବ୍ୟବସ୍ଥା ସଭାଗୃହରେ ନିଆଯାଇଥିଲା । ସେ ସମୟରେ ଗଡ଼ଜାତ ଅଞ୍ଚଳର ଜନସାଧାରଣଙ୍କ ତରଫରୁ ବାରମ୍ବାର ଦାବି ହେଉଥିଲା ଯେ ଗଡ଼ଜାତରେ ନିର୍ବାଚନ ହେଉ ।

କିନ୍ତୁ ଗଡ଼ଜାତ ମିଶ୍ରଣପରେ ସେମାନଙ୍କ ପ୍ରତି ଗଡ଼ଜାତ ଜନସାଧାରଣଙ୍କ ପ୍ରତି ସରକାର ବିଜେତା ମନୋଭାବ ପୋଷଣ କରିଥିଲେ ଏବଂ ତା'ର ଗୋଟିଏ ସ୍ପଷ୍ଟ ପ୍ରମାଣ ଗତ ସାଧାରଣ ନିର୍ବାଚନରେ ମିଳିଥିଲା ଆପଣ ଯଦି ଗତ ନିର୍ବାଚନରେ ଯେଉଁ ଭୋଟ ଫଳାଫଳ ହୋଇଛି ତାହା analysis କରିବେ ତାହାହେଲେ ଆପଣ ଦେଖିବାକୁ ପାଇବେ ଯେଉଁଟା କି ଖାଣ୍ଟି ଗଡ଼ଜାତ ଅଞ୍ଚଳ, ଯେଉଁ ନିର୍ବାଚନମଣ୍ଡଳୀମାନଙ୍କ ସହିତ ଓଡ଼ିଶାର ପୂର୍ବତନ ଜିଲ୍ଲାମାନ ମିଶ୍ରଣ ହୋଇନାହିଁ ସେ ପ୍ରକାର 49ଟି ନିର୍ବାଚନମଣ୍ଡଳୀ ମଧ୍ୟରୁ କଂଗ୍ରେସ କେବଳ 15ଟି ନିର୍ବାଚନମଣ୍ଡଳୀରେ ଜୟଯୁକ୍ତ ହେଲେ ଏବଂ କଂଗ୍ରେସ ବିରୁଦ୍ଧରେ 34ଟି ନିର୍ବାଚନମଣ୍ଡଳୀର ସଭ୍ୟମାନେ ନିର୍ବାଚିତ ହୋଇ ଆସିଲେ । ଏଇଟା ଗୋଟିଏ ଜ୍ୱଳନ୍ତ ନିଦର୍ଶନ ଯେ ଯଦିଓ ଆମେ ବାରମ୍ବାର ଦାବି କରିଥାଉଁ ଯେ ଆମର ଗଡ଼ଜାତ ଅଞ୍ଚଳରେ ଯେଉଁ ଲୋକମାନେ ଅଛନ୍ତି ସେମାନେ ଆମର ଭାଇ, ଆମରି ଲୋକ, ତଥାପି ଆମ ଲୋକ ପ୍ରତିନିଧି କଂଗ୍ରେସ ସରକାର ସେମାନଙ୍କ ପ୍ରତି କିପରି ବ୍ୟବହାର କରିଥିଲେ ତାହାର ଗୋଟିଏ ପରୀକ୍ଷା ଫଳ ସ୍ୱରୂପ ଏହି ଗତ ସାଧାରଣ ନିର୍ବାଚନ ଫଳରୁ ଜଣା ପଡ଼ୁଛି । ତାହାପରେ ଏ ଯେଉଁ ମନ୍ତ୍ରୀମଣ୍ଡଳ ଗଢ଼ାହେଲା ସେ ସମୟରେ ଅନେକ ସମାଲୋଚନା ହେଲା ଯେ ଯେଉଁ ସଭ୍ୟମାନେ ଏ ପ୍ରକାର ମତ ପରିବର୍ତ୍ତନ କରି ଲୋକମତ ବିରୁଦ୍ଧରେ .କଂଗ୍ରେସ ଦଳକୁ ପରାସ୍ତ କରି ପରେ କଂଗ୍ରେସ ଦଳ ସହିତ ଯୋଗ ଦେଇଛନ୍ତି ସେମାନେ ଯଦି ତାହା କରିନଥାନ୍ତେ ତାହାହେଲେ ହୁଏତ ସରକାରଙ୍କୁ ସେହି ସମୟରେ ଆଉ ଗୋଟିଏ ନିର୍ବାଚନର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା । ତାହା କଂଗ୍ରେସ କଲେ ନାହିଁ ଏବଂ କରିବା ସମୀଚୀନ ମଧ୍ୟ ମନେ କଲେନାହିଁ । ସେମାନେ ଭାବିଲେ ଯେ ଏ କ୍ଷମତା ଯାହା ହାତକୁ ଆସିଛି ତାହା ଗଣତାନ୍ତ୍ରିକ ଉପାୟରେ କିମ୍ବା ଅବୈଧାନିକ ଉପାୟରେ ହେଉ, ରଖିବା ଉଚିତ ଏବଂ ସେହି ଉଦ୍ଦେଶ୍ୟରେ ଏ ଯେଉଁ ମନ୍ତ୍ରୀମଣ୍ଡଳ ଗଢ଼ାହେଲା ତାହା ଆଜି ପର୍ଯ୍ୟନ୍ତ ଚାଲି ଆସିଛି । ଏଇଟା ଯେତେବେଳେ ଆରମ୍ଭ ହେଲା ସେ ସମୟରେ ଆପଣ ଜାଣିଥିବେ ମନ୍ତ୍ରୀମଣ୍ଡଳକୁ ଅଧିକ ମାତ୍ରାରେ ବଢ଼ାଇ ଦିଆଗଲା ଏବଂ ଯେତେବେଳେ ପ୍ରତିବାଦ ହେଲା ସେ ସମୟରେ ସରକାରଙ୍କ ତରଫରୁ ଯୁକ୍ତି ହୋଇଥିଲା ଯେ ମନ୍ତ୍ରୀମଣ୍ଡଳକୁ ଯଦି ବଢ଼ାଇ ନ ଦିଆଯାଏ ତାହାହେଲେ ଦେଶର ଶାସନ ଚଳିବ ନାହିଁ ଆମ ଦେଶରେ ଯେଉଁ ଲାଞ୍ଚମିଛ ଚାଲିଛି ତାକୁ ବନ୍ଦ କରିବାପାଇଁ, ଅପବ୍ୟୟ ବନ୍ଦ କରିବା-ପାଇଁ, ଦେଶର ଶାସନ ଉନ୍ନତ କରିବା ପାଇଁ ଏହି ମନ୍ତ୍ରୀମଣ୍ଡଳ ବଢ଼ାଇ ଦିଆଯାଇଛି ଏବଂ ଏହି ବ୍ୟବସ୍ଥା ସଭାକୁ ଏବଂ ଏହି ବ୍ୟବସ୍ଥାସଭା ଜରିଆରେ ଦେଶର ସାଧାରଣ ଜନତାଙ୍କୁ କୁହାଯାଉଥିଲା "Wait and See" ଆମେ କିପରି ଭାବରେ କାର୍ଯ୍ୟ କରୁଛୁ ତାହା ଆପଣମାନେ ଦେଖନ୍ତୁ । ଆଜି ବର୍ଷକରୁ ଅଧିକ କାଳ କଂଗ୍ରେସ ସରକାର ଶାସନର କର୍ଣ୍ଣଧାରରେ ଅଛନ୍ତି ଏବଂ ଏହି ବର୍ଷକ ମଧ୍ୟରେ ତାଙ୍କର ନିର୍ବାଚନ ପ୍ରତିଶ୍ରୁତି ଯଥା—ଦେଶର ସମୃଦ୍ଧି କରିବା ପାଇଁ ଏବଂ ଉନ୍ନତି ଦିଗରେ ଅଗ୍ରସର କରିବାପାଇଁ ଯାହା ଏହି ବ୍ୟବସ୍ଥା ସଭା ମଧ୍ୟରେ ଦେଇଆସିଛନ୍ତି, ବିଭିନ୍ନ ସମାଲୋଚନା ବିଷୟରେ ଯେଉଁସବୁ ଉତ୍ତର

ଦେଇଆସିଛନ୍ତି ତାକୁ ସେମାନେ କେତେଦୂର ପାଳନ କରିଛନ୍ତି ତାହା ଦେଖିବାର ସମୟ ଆସିଛି । ଏହିସବୁ ବିଷୟ ଯଦି ଆପଣ ଦେଖିବେ ତାହାହେଲେ ଆପଣ ସ୍ପଷ୍ଟ ଅନୁଭବ କରିବେ ଯେ କଂଗ୍ରେସ ସରକାର ଯେଉଁ ଆଶା ଜନସାଧାରଣଙ୍କୁ ଏବଂ ଏହି ଗୃହକୁ ଦେଇଥିଲେ ସେମାନେ ସେ ଆଶାକୁ ପୂରଣ କରି ନାହାନ୍ତି । ଅବଶ୍ୟ ଆଜି ସମ୍ବାଦପତ୍ରମାନଙ୍କରେ ପ୍ରକାଶ ହେଉଛି । ଏ ସଭାରେ ମଧ୍ୟ କୁହାଯିବ ଯେ ଆମର ତ ସଂଖ୍ୟା ଅଛି 71, ବିରୋଧୀ ଦଳର ସଂଖ୍ୟା କମ୍ ଅଛନ୍ତି । ତେଣୁ ଯାହା ଇଚ୍ଛା ଆମେ କରିଯିବୁ । ସେଥିରେ ଏ ଯେଉଁ ଅବିଶ୍ୱାସ ପ୍ରସ୍ତାବ ଦିଆଯାଇଛି, ଏହାର ଭଗ୍ୟ କ'ଣ, ଭବିଷ୍ୟତ କ'ଣ ? କିନ୍ତୁ ମୁଁ ତାଙ୍କୁ ଏହି କଥା ସୂଚାଇ ଦେବାପାଇଁ as a desperate measure ତାଙ୍କୁ ସାବଧାନ କରିବାକୁ ଚାହୁଁଛି 'Let them beware of the writings on the wall'. ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏ ଯେଉଁ ଆଲୋଚନା ଚାଲିଛି ସେଇଟା କଂଗ୍ରେସ ଦଳର ମାନ୍ୟବର ସଭ୍ୟମାନଙ୍କୁ ସୁଖ ଲାଗୁନଥାଇ ପାରେ ଏବଂ ସେମାନେ ଚେଷ୍ଟା କଲେ ଥରେ ଅଧେ କାହିଁକି ବାରମ୍ବାର interrupt କରି ପାରନ୍ତି କିନ୍ତୁ ସେମାନେ ଆଉ ଅଧୈର୍ଯ୍ୟ ହୋଇ ରହିବା ଉଚିତ ନୁହେଁ । ସେମାନେ ଧୀରସ୍ଥିର ଭାବରେ ଏହି ସବୁ ବକ୍ତୃତା ଶୁଣିବାକୁ ମୁଁ ବିନୀତ ଅନୁରୋଧ କରୁଛି ଯାହା ପ୍ରିୟ ଏବଂ ସତକଥା ସେଇଟା କହିବା ଅନେକ ସମୟରେ ଅସମ୍ଭବ ହୋଇ ପଡ଼େ ଏବଂ ବର୍ତ୍ତମାନ ଏ ଯେଉଁ ପ୍ରସ୍ତାବ ଦିଆଯାଇଛି ସେଥିରେ କଂଗ୍ରେସ ଦଳର ମାନ୍ୟବର ସଭ୍ୟମାନଙ୍କର ଶ୍ରୁତିମଧୁର ହେଲଭଳି କଥା କହିବାର ବିଷୟ ମୋର ନାହିଁ । ତେଣୁ ମୁଁ ତାଙ୍କୁ ଅନୁରୋଧ କରିବି ଯେ ସେମାନେ ଧୈର୍ଯ୍ୟର ସହିତ ଏ ଆଲୋଚନାକୁ ଶୁଣନ୍ତୁ । ମାନ୍ୟବର ଅଧ୍ୟକ୍ଷ ମହାଶୟ, ଗତ ଏକ ବର୍ଷଧରି ଏ ଯେଉଁ କଂଗ୍ରେସ ଶାସନ ଚାଲିଛି ଏଇଟା ପ୍ରକୃତରେ ଲୋକ ପ୍ରତିନିଧି ଶାସନ ନ ହୋଇ, ଗଣତନ୍ତ୍ର ଶାସନ ନ ହୋଇ, ଯଦି ମୁଁ ମୁଖ୍ୟମନ୍ତ୍ରୀଙ୍କର ଭାଷା ପ୍ରୟୋଗ କରିପାରେ ତାହାହେଲେ ମୁଁ କହିବି ଆଜି ଆମେ ଗୋଟିଏ 'ଅନାଡ଼ି ତନ୍ତ୍ର' ପ୍ରତିଷ୍ଠା କରିଥାଇଁ । କାରଣ ଆମେ ଦେଖୁଥାଇଁ ଆମର ଏହି ମନ୍ତ୍ରୀମଣ୍ଡଳ ବା କଂଗ୍ରେସ ସରକାର ଯେଉଁ ପରିମାଣରେ ଶାସନକୁ ନିୟନ୍ତ୍ରଣ କରିବାରେ ସଂଗଠିତ କରିବେ, ବ୍ୟବସ୍ଥା କରିବାର ଦାୟିତ୍ୱ ଯାହା ନେଇଛନ୍ତି ସେହି ଦାୟିତ୍ୱ ସେମାନେ ତୁଲାଇ ପାରିନାହାନ୍ତି । ଆପଣ ଦେଖିବେ ଯାହା ଏହି ସଭାଗୃହରେ ବାରମ୍ବାର ଆଲୋଚନା ହୋଇଥାଏ ଯେ ଦେଶରେ ଯେଉଁ ସବୁ ଦୁର୍ନୀତି, ବ୍ୟଭିଚାର, ଅନାଚାର ଚାଲିଛି ତାହାର ପ୍ରତିକାର କ'ଣ ଏବଂ ସେ ବିଷୟରେ ଆମ ସରକାର କ'ଣ କରିଛନ୍ତି ? ଏ ବିଷୟରେ କୁହାଯାଇଥାଏ ଯେ ମାନ୍ୟବର ସଭ୍ୟମାନେ ଯଦି କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ ଆଣନ୍ତି ତାହାହେଲେ ତାରି ପ୍ରତିକାର କରାଯିବ କିନ୍ତୁ ଯେତେବେଳେ କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ ଅଣାଯାଏ ସେ ସମୟରେ ଦେଖାଯାଇଛି ଯାହା ସରକାର ସ୍ୱୀକାର କରିଛନ୍ତି ଯେ ଏ ପ୍ରକାର ଦୁର୍ନୀତି, ବ୍ୟଭିଚାର ଏବଂ ଏ ପ୍ରକାର ଅନାଚାର ଆମ ସରକାରୀ ଦଳରେ ଅଛି । ଆପଣ ଜାଣିଥିବେ ଦୁଇଦିନ ତଳେ ତା 10 ରିଖ ଦିନ ନଦୀ ଜଳ ଦୂଷଣ ଅବରୋଧ ବିଲ୍ ଉପରେ ଆଲୋଚନା

ସମୟରେ ସରକାରୀ କଳରେ ଥିବା ଅତି ଉଚ୍ଚତମ କର୍ମଚାରୀମାନେ କି ପ୍ରକାର ବ୍ୟଭିଚାର ଦ୍ୱାରା ଆମର ସାଧାରଣ ଜୀବନକୁ, ଆମର ସରକାରକୁ କଳୁଷିତ ଏବଂ ପଙ୍କିଳ କରିଦେବାକୁ ଚେଷ୍ଟା କରୁଛନ୍ତି ସେ ବିଷୟରେ ମୁଁ ଅନେକ ଅଭିଯୋଗ କରିଥିଲି । ସୁଖର କଥା ମାନ୍ୟବର ମୁଖ୍ୟମନ୍ତ୍ରୀ ସେହି ସବୁ ଅଭିଯୋଗ ସ୍ୱୀକାର କରିଥିଲେ । ଯଦି ଏହି ପ୍ରକାର ଗୁରୁତର ଅଭିଯୋଗ ସତ ହୁଏ ଯାହାକି ସରକାର ନିଜେ ସ୍ୱୀକାର କରିଛନ୍ତି, ଯଦି ଆମର ସର୍ବୋଚ୍ଚ ଅଫିସରମାନେ ଏହି ପ୍ରକାର କଳଙ୍କରେ କଳଙ୍କିତ; ଯଦି ଏ କଥା ସମ୍ଭବ ଯେ ଜଣେ ପୁଞ୍ଜିପତି ଯାହାଙ୍କର ବାର୍ଷିକ 3/4 କୋଟି ଟଙ୍କା ଆୟ, ସେ ଆମର କର୍ମଚାରୀମାନଙ୍କୁ, ଆମର ବ୍ୟବସ୍ଥାପକମାନଙ୍କୁ ପ୍ରଭାବିତ କରିବାପାଇଁ, ନ୍ୟାୟ ପଥରୋଧ କରିବା ପାଇଁ ଏବଂ ଅନ୍ୟାୟର ପ୍ରତିଷ୍ଠା ପାଇଁ ଚେଷ୍ଟା କରନ୍ତି ଏବଂ ସେଥିରେ ଯଦି ଆମର କର୍ମଚାରୀମାନେ ପ୍ରଭାବିତ ହୁଅନ୍ତି, ସେଇ କର୍ମଚାରୀଙ୍କ ବିରୁଦ୍ଧରେ ଯଦି କାର୍ଯ୍ୟାନୁଷ୍ଠାନ ନହୁଏ ତାହାହେଲେ ମୁଁ କହିବି either the officers should have gone or the Ministers should have gone. କିନ୍ତୁ ଆଜି ମନ୍ତ୍ରୀମଣ୍ଡଳ ମଧ୍ୟ ଅଛନ୍ତି ଏବଂ ଯେଉଁ କର୍ମଚାରୀମାନେ ଏ ପ୍ରକାର ବ୍ୟଭିଚାର କ୍ଳିଷ୍ଟ, କଳୁଷିତ ସେମାନେ ମଧ୍ୟ ଆମ ଶାସନରେ କର୍ଣ୍ଣଧାରରୂପେ ବିରାଜମାନ କରୁଛନ୍ତି । ଯେତେବେଳେ କୁହାଯାଉଛି ଯେ ଏହି ଅଫିସରମାନଙ୍କ ଦ୍ୱାରା କ'ଣ ଶାସନ ପରିଚାଳିତ ହେବ ? ସେତେବେଳେ କୁହାଯାଉଛି ଯେ ଏଥିରେ ଆମର ସରକାର ହିସାବରେ ଦାୟିତ୍ୱ କ'ଣ ? ଯେତେବେଳେ ହୀରାକୁଦରେ କର୍ମଚାରୀ ନିଯୁକ୍ତି ବିଷୟରେ କୁହାଯାଉଛି ସେତେବେଳେ କୁହାଯାଉଛି ଏ ବିଷୟରେ ଆମର କରିବାର କିଛି ନାହିଁ । ଯେଉଁଟା Union Public Service Commission କର୍ତ୍ତୃତ୍ୱାଧୀନ ତାହା ସେମାନେ ବିଚାର କରିବେ ଏବଂ ଯେଉଁଟା ତଳତଳିଆ କର୍ମଚାରୀଙ୍କ ନିଯୁକ୍ତି ତାହା ଚିଫ୍ ଇଞ୍ଜିନିୟର କରିବେ । ତେବେ ଯଦି ସରକାର ଏ ପ୍ରକାର ଦୁର୍ନୀତି-ଗ୍ରସ୍ତ, ବ୍ୟଭିଚାର କଳୁଷିତ କର୍ମଚାରୀମାନଙ୍କୁ ପ୍ରଶ୍ରୟ ଦେବେ, ତାପରେ ଆମେ ଯଦି ସମାଲୋଚନା କରୁ ଯେ ଯେଉଁସବୁ ଦୁର୍ନୀତି, ଦୋଷ ଏବଂ କଳଙ୍କ ଦେଖାଯାଉଛି ସେଥିରେ ଆମର ଲୋକ ପ୍ରତିନିଧି ସରକାର ସମ୍ପୂର୍ଣ୍ଣ ଭାବରେ ଦାୟୀ, ତାହାହେଲେ ସେ ଅଭିଯୋଗ, ମୁଁ କହିବି, ସମ୍ପୂର୍ଣ୍ଣ ସତ୍ୟ ଏବଂ ସତ୍ୟ ଉପରେ ପ୍ରତିଷ୍ଠିତ ଏବଂ ତାହା ସରକାରଙ୍କ ଦ୍ୱାରା ସ୍ୱୀକୃତିପ୍ରାପ୍ତ ହୋଇଛି । ଯେଉଁ ଅଭିଯୋଗ ସତ୍ତ୍ୱେ ସେଇ କର୍ମଚାରୀମାନେ ଆମ ସରକାରଙ୍କ ଅଧୀନରେ କାର୍ଯ୍ୟ କରି ଆସୁଛନ୍ତି, ଯେଉଁ କର୍ମଚାରୀମାନେ କି କୌଣସି ସଭ୍ୟ ଦେଶରେ ହୁଏତ ଏ ଅଭିଯୋଗ ହେବାର ପରଦିନ ଚାକିରୀରୁ ବିତାଡ଼ିତ ହୋଇଥାନ୍ତେ ; ସେମାନଙ୍କ ଆଦେଶ ଆମେ ଯଦି ଶିରୋଧାର୍ଯ୍ୟ କରି ସରକାର ପରିଚାଳନା କରିବ ତା'ହେଲେ ମୁଁ ଭାବିବି ଯେ ଆମର ଏ ସରକାରଙ୍କ ଭବିଷ୍ୟତ ଘୋର ଅନ୍ଧକାରମୟ, ଏବଂ ଏ ରାଜ୍ୟର ଭବିଷ୍ୟତ ମଧ୍ୟ ଘୋର ଅନ୍ଧକାରମୟ କାରଣ ଯଦି ଆମର କ୍ଷୁଦ୍ରତମ କର୍ମଚାରୀ ଜଣେ ଚପରାସୀ ବା ଜଣେ ମୂଲିଆ କିମ୍ବା ଜଣେ କିରାଣୀ ଟ 10 ଲାଞ୍ଚ ନେଲ, ତାକୁ ଯଦି ଆମେ ଛ ମାସ କି ବର୍ଷେ ପର୍ଯ୍ୟନ୍ତ ଜେଲଦଣ୍ଡ ଦେଇ ନ୍ୟାୟ ପ୍ରତିଷ୍ଠା କରିବା ବୋଲି ଭାବୁଥାଉଁ ତଦ୍ୱାରା ଦେଶର ଦୁର୍ନୀତି ନିବାରିତ ହେବ ବୋଲି ମୁଁ ମନେ

କରୁନାହିଁ । କିନ୍ତୁ ତା ସଙ୍ଗେ ସଙ୍ଗେ ଆମର ସର୍ବୋଚ୍ଚ କର୍ମଚାରୀମାନଙ୍କୁ ଯଦି ପ୍ରଶ୍ରୟ ଦେଉଥାଉଁ ଏବଂ ତାଙ୍କୁ ଦୂର କରିବା ବଦଳରେ ତାଙ୍କ ଦ୍ୱାରା ପରିଚାଳିତ ହେଉ, ତା'ହେଲେ ମୁଁ ପଚାରେ ଆମ ଦେଶର ଭବିଷ୍ୟତ କ'ଣ ହେବ ? ଯଦି ଆମେ ଏହି ପ୍ରକାର ଭାବରେ ସରକାର ପରିଚାଳନା କରୁଁ ଏବଂ ନିତ୍ୟାନ୍ତ ଅସହାୟ ଭାବରେ ଆମର ସରକାରଙ୍କ କର୍ତ୍ତୃତ୍ୱାଧୀନରେ ଥିବା ମନ୍ତ୍ରୀମଣ୍ଡଳ Independent of these highest officials ଯଦି ଏତେ ଅସହାୟ ବୋଧ କରୁଛନ୍ତି, ଯଦି ସରକାରୀ କର୍ମଚାରୀମାନେ non-co-operation ବା ଅସହଯୋଗର ଧମକ ଦେଲେ, ଯଦି ଆମ ସରକାର ଚମକି ଯାଉଥାନ୍ତି ବା ଡରି ଯାଉଥାନ୍ତି ତାହାହେଲେ ମୁଁ କହିବି ଯେ ଏ ରାଜ୍ୟର ଭବିଷ୍ୟତ କ'ଣ ହେବ ? ତା'ପରେ ଆମର ଯେଉଁ କେତେକ ଦୁର୍ନୀତି ବିଷୟରେ ଶୁଣାଯାଉଛି, ସେ ବିଷୟରେ ବେଶି ବ୍ୟାଖ୍ୟା କରିବାର ଅବକାଶ ନାହିଁ କାହିଁକି ନା ଏ ଯେଉଁ ବିଷୟ ତାକୁ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରିବାକୁ ଯଦି ଯିବା ତାହାହେଲେ ହୁଏତ ଆମେ ଦେଖିବାକୁ ପାଇବା ଯେ— କମ୍ବଳଯାକ ବାଳ । ସେଥିପାଇଁ ଦୁର୍ନୀତି ବିଷୟରେ ମୁଁ ସାମାନ୍ୟ କେତେକ କଥାର ଅବତାରଣା କରିବାକୁ ଚାହେଁ । ଯେଉଁ mining lease ବିଷୟରେ ଏ ସଭା ଗୃହରେ ଆଲୋଚନା ହୋଇଛି ଏବଂ ଯେଉଁ ବିଷୟରେ କି ଅନ୍ୟାନ୍ୟ ସଭ୍ୟମାନେ ମଧ୍ୟ ଆଲୋଚନା କରିବାରେ ଅବକାଶ ପାଇବେ ସେହି mining lease ବିଷୟରେ ସରକାର ଗତ ବର୍ଷ ମଧ୍ୟରେ ବିଗତ ମନ୍ତ୍ରୀମଣ୍ଡଳ ଗଠନ ହେଲାପରେ ଯେଉଁ କାର୍ଯ୍ୟକଳାପ ଅବଲମ୍ବନ କରିଛନ୍ତି ସେ ବିଷୟରେ ମଧ୍ୟ ଆଜି ସରକାରଙ୍କୁ ଗୋଟିଏ ପ୍ରଶ୍ନ ପଚାରିବା ଅବକାଶ ଆସିଛି । ଯେଉଁ ସବୁ କାର୍ଯ୍ୟ କରାଯାଇଛି ଯେଉଁମାନଙ୍କୁ mining lease ଦିଆଯାଇଛି ଏବଂ ଯେଉଁମାନଙ୍କର ଦାବିକୁ ଉପେକ୍ଷା କରାଯାଇଛି, ତାହା କ'ଣ, ନ୍ୟାୟାନୁମୋଦିତ ? ତାହା କ'ଣ, ଦୋଷ ଏବଂ ଦୁର୍ନୀତିରୁ ସମ୍ପୂର୍ଣ୍ଣ ମୁକ୍ତ ? କେନ୍ଦୁପତ୍ର ବାବଦରେ ବାରମ୍ବାର ଆଲୋଚନା ହେଉଛି । ଏ ବିଷୟରେ ମଧ୍ୟ ଅନ୍ୟାନ୍ୟ ସଭ୍ୟମାନେ ବିଶେଷ ଭାବରେ ଆଲୋଚନା କରିବା ଅବକାଶ ପାଇବେ । ସେଥିପାଇଁ ମୁଁ ଏ ବିଷୟରେ ବିଶେଷ କିଛି କହିବାକୁ ଯାଉନାହିଁ । କେବଳ ଏତିକି କହିବି ଯେ ଯେଉଁ ନୀତିର ଆଶ୍ରୟ ନେଇ ସମଗ୍ର ରାଜ୍ୟରେ କେନ୍ଦୁପତ୍ର ଠିକା ଦିଆଯିବ ବୋଲି ଦିନେ କୁହାଯାଉଥିଲା ଏବଂ ଦେଶର ଧନ ଏବଂ public income ବଢ଼ିବ ବୋଲି ଛଳନା କରି ସମଗ୍ର ରାଜ୍ୟରେ କେନ୍ଦୁପତ୍ରକୁ control କରିବେ ବୋଲି କୁହାଯାଇଥିଲା ଏବଂ ଆମକୁ ପ୍ରତିଶ୍ରୁତି ଦିଆଯାଇଥିଲା ସେହି ପ୍ରତିଶ୍ରୁତି-କରଣ ଆଜି ପୂରଣ କରାଯାଇଛି ? ଯେଉଁମାନଙ୍କୁ କେନ୍ଦୁପତ୍ର ଠିକା ଦିଆଯାଇଛି ସେଇଟା କ'ଣ open and above board ହୋଇଛି । ଆଜି ସମ୍ବଲପୁର ଜିଲ୍ଲାରେ ଘୋଷଣା ହେଲା ଯେ ଯେତେ ସବୁ ଜମିଦାରୀ ଅଛି ସେସବୁକୁ ନିଲାମରେ ଠିକା ଦିଆଯିବ । ନିଲାମରେ କେତେ ଆମେ ଉଠାଇବା କିମ୍ବା ନ ଉଠାଇବା ସେ ପର୍ଯ୍ୟନ୍ତ ଅପେକ୍ଷା ନ କରି ସାମାନ୍ୟ କେତେକ ଧନପତି ବିଡ଼ିପତ୍ର ମାଲିକଙ୍କୁ କଟକକୁ ଡାକି ଆଣି ତାଙ୍କ ନାମରେ ଜମିଦାରୀ ଗୁଡ଼ିକର କେନ୍ଦୁପତ୍ର ଠିକା ଦେଇ ଦିଆଗଲା । ଯେତେବେଳେ ପ୍ରଶ୍ନ ହେଲା ସେତେବେଳେ

ବୁଝାଗଲା ଯେ ନିଲମରେ ଯଦି ଦିଆଯାଇ ଥାଆନ୍ତା, ତାହାହେଲେ ହୁଏତ ଯଥେଷ୍ଟ ଟଙ୍କା ଆସି ନ ଥାନ୍ତା ଏବଂ Private Settlement ଯାହା କରାଯାଇଛି, ତା ଫଳରେ ଆମର ଲଭ ହେଉଛି । ଯେଉଁ ଲଭ ହୋଇଛି ତାକୁ ପ୍ରମାଣ କରିବା ପାଇଁ ଗୋଟିଏ Press Statement ସଙ୍ଗେ ସଙ୍ଗେ ବାହାର କରି ଦିଆଗଲା । କିନ୍ତୁ ମାନ୍ୟବର ବିଭାଗୀୟ ମନ୍ତ୍ରୀ ହୁଏତ ଭୁଲି ଯାଇଥିବେ ଯେ ସେ ଦିନେ ସମ୍ବଲପୁରରେ କେନ୍ଦ୍ରପଡ଼ conference ରେ ପ୍ରକାଶ କରିଥିଲେ ଯେ ଏହାଫଳରେ ଆମ State Exchequer କୁ ହୁଏତ 40 ଲକ୍ଷ ବା ଏକ କୋଟି ଟଙ୍କା ଆମଦାନୀ ହୋଇ ପାରିବ ଏବଂ ସେଥିପାଇଁ ସେ ଆମକୁ ଅନୁରୋଧ କରିଥିଲେ ଯେ ସବୁ Lease ଦେବା ବିଷୟରେ କେହି କୌଣସି ଆପତ୍ତି କରିବା ଉଚିତ ନୁହେଁ । ମୁଁ ସରକାରଙ୍କୁ ପଚାରିବାକୁ ଚାହେଁ ଯେ ଯେଉଁ Private Settlement ହୋଇଛି ଏବଂ ଯେଉଁ କେତେ ଜାଗାରେ ଠିକା ଦିଆଯାଇଛି ତା' ଫଳରେ Orissa State Exchequerକୁ କେତେ ଟଙ୍କା ଆସିଛି ? ତା'ପରେ ଅନ୍ୟାନ୍ୟ ଯେଉଁ ସବୁ ପ୍ରତିଶ୍ରୁତି ଦିଆଯାଇଛି ଏବଂ ଯେଉଁ ସବୁ ବିଷୟରେ ଆଲୋଚନା ହୋଇଛି ସେ ସବୁ ବିଷୟରେ ମଧ୍ୟ ସରକାର ବାରମ୍ବାର କହିଛନ୍ତି ଯେ ଆମେ ଏ ବିଷୟରେ ସତର୍କ ଅଛୁଁ ଏବଂ ସଜାଗ ଅଛୁଁ । ଏ ବିଷୟରେ ଉଚିତ ବ୍ୟବସ୍ଥା କରାଯାଉଛି । Top-heavy Adminisrtation ଦ୍ୱାରା ଯେଉଁ ଗୁରୁଭାର ଆମ ଉପରେ ପଡ଼ିଛି, ଯେଉଁ I. A. S. ବା ଉଚ୍ଚତମ କର୍ମଚାରୀ ଯେଉଁମାନେ କି ଅନ୍ୟାନ୍ୟ ନିକଟବର୍ତ୍ତୀ ରାଜ୍ୟ ତୁଳନାରେ ଅଧିକ ସଂଖ୍ୟାରେ ଆମ ରାଜ୍ୟରେ ଅଛନ୍ତି ବୋଲି ବିଭାଗୀୟ ମନ୍ତ୍ରୀ ସ୍ୱୀକାର କରିଛନ୍ତି ସେ ଗୁରୁଭାରରୁ ଆମେ ରକ୍ଷା ପାଇବାପାଇଁ ସରକାର କ'ଣ କରିଛନ୍ତି ? ତା'ପରେ ପ୍ରଶ୍ନୋତ୍ତର ସମୟରେ ବା ବଜେଟ ଆଲୋଚନା ବେଳେ ଯେଉଁ ସବୁ ପ୍ରତିଶ୍ରୁତି ଗତ ଏକ ବର୍ଷ ମଧ୍ୟରେ ଦିଆଯାଇଛି, ସେ ପ୍ରତିଶ୍ରୁତି ପାଳନ କରିବା ଦିଗରେ ସରକାର କ'ଣ କରିଛନ୍ତି ? ସେ ପ୍ରଶ୍ନ ପୁନରାବୃତ୍ତି କରିବାର ଦରକାର ପଡୁଛି । ମୁଁ ଆଶାକରେ ମାନ୍ୟବର ମନ୍ତ୍ରୀ ତା'ର ଉତ୍ତର ଦେବେ । ତା'ପରେ ସବୁଠାରୁ ଗୁରୁତର କଥା ହେଉଛି ଯେ ଆମେ ଏହି ଯେଉଁ ବ୍ୟବସ୍ଥାପକ ସଭା ମଧ୍ୟରେ ବସିଥାଉଁ, ସେ ଗୃହର ଗୋଟିଏ ପାଖରେ ଲେଖାଯାଇଛି "ସତ୍ୟମେବ ଜୟତେ" । ସେ ସତ୍ୟ ଅହିଂସାର ଆଦର୍ଶ ଧରି ଆଜି ଆମେ ଆମ ବ୍ୟବସ୍ଥାସଭାକୁ ସେହି ସତ୍ୟ ଏବଂ ଅହିଂସା ଦିଗରେ ନେବା ପାଇଁ ଅଗ୍ରସର ହେଉଥାଉଁ । କିନ୍ତୁ ଏହି ବ୍ୟବସ୍ଥାପକ ସଭାମଧ୍ୟରେ ଏବଂ ବାହାରେ ଆମର ମନ୍ତ୍ରୀମଣ୍ଡଳ କେତେ ଦୂର, କେତେଥର ଏବଂ କେତେ ଗୁରୁତର ଭାବରେ ସେହି ସତ୍ୟର ଅପଳାପ କରିଛନ୍ତି, ସେ ବିଷୟରେ ମଧ୍ୟ ଆମେ ତାଙ୍କଠାରୁ ଉତ୍ତର ଦାବି କରିବା ଅବକାଶ ଆସିଛି ।

ଏହି ବିଷୟରେ କେବଳ ଗୋଟିଏ କଥା ମୁଁ କହିବି ଗୋଟିଏ ହେଉଛି ପୂର୍ବତନ ମନ୍ତ୍ରୀ ମଣ୍ଡଳ କଥା । ଯଦିଓ ଏଟା ଏଠାରେ ଉତ୍ଥାପନ କରିବାର ବିଶେଷ ଅବକାଶ

ନାହିଁ, ଏଥିପ୍ରତି କେବଳ ପ୍ରସଙ୍ଗ କ୍ରମେ କହିବି । ପୂର୍ବେ ଯେତେବେଳେ ହୀରାକୁଦ ବୁଡ଼ି ଅଞ୍ଚଳର ଜମି ଦଖଲ ପାଇଁ ଆଇନ କରାଗଲା, ସେତେବେଳେ ମନ୍ତ୍ରୀ ମହାଶୟ ଯେ କି ବର୍ତ୍ତମାନର ମନ୍ତ୍ରୀମଣ୍ଡଳରେ ଅଛନ୍ତି, ସେ କହିଥିଲେ ଯେ ଏ ଯେଉଁ ଆଇନ ହେଉଛି ସେଇଟା ସମ୍ବଲପୁର ବୁଡ଼ି ଅଞ୍ଚଳ ପ୍ରତି ପ୍ରଯୁଜ୍ୟ ହେବ ନାହିଁ । ଏ ଆଇନ ଅନ୍ୟାନ୍ୟ ଅଞ୍ଚଳ ପ୍ରତି ପ୍ରଯୁଜ୍ୟ ହେବ । ଏ ସମ୍ବଲପୁର ବୁଡ଼ି ଅଞ୍ଚଳର ଲୋକେ ସେମାନଙ୍କର ଖଜଣାର 50ଗୁଣ ପାଇବେ । ଏହି ପ୍ରତିଶ୍ରୁତି ସେତେବେଳେ ଦିଆଯାଇଥିଲା । ତା'ପରେ ଯେତେବେଳେ Case ସବୁ Arbitrator ଙ୍କ Court ରେ ପଡ଼ିଥିଲା, ସେ ସରକାରଙ୍କର ଏ ପ୍ରତିଶ୍ରୁତି ଦେଖି ଆଶ୍ଚର୍ଯ୍ୟାନ୍ବିତ ହେଲେ, କାହିଁକିନା ସରକାର ଏ ପ୍ରକାର ଗୋଟିଏ ପ୍ରତିଶ୍ରୁତି ଦେଇ ଠିକ୍ ସେତିକିବେଳେ ଅନ୍ୟପ୍ରକାର ଆଇନ ମଧ୍ୟ କରି ପାରନ୍ତି ଏବଂ ସେ ଆଇନଟିକୁ enforce କରିବାଦ୍ୱାରା ସେ ପ୍ରତିଶ୍ରୁତି ମଧ୍ୟ ଭଙ୍ଗ କରି ପାରନ୍ତି । ଏହି ଯେଉଁ ପ୍ରତିଶ୍ରୁତି ଦିଆଯାଇଥିଲା, ତା' ଉପରେ Arbitrator ଙ୍କ Court ରେ ଯାହା decision ହେଲା ସେ ବିଷୟରେ ଏହି ବ୍ୟବସ୍ଥା ସଭରେ ଆଲୋଚନା ହୋଇଥିଲା ଏବଂ ସେତେବେଳେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ପ୍ରଶ୍ନ ହୋଇଥିଲା ଯେ ଲୋକଙ୍କଠାରୁ 6/7 ବର୍ଷ ହେଲା ଜମି acquire ହେଲାଣି, ସେମାନଙ୍କର arbitration ପାଇଁ ଯେଉଁ demand ତାକୁ ପାଇବା ପାଇଁ ଯଥାସମ୍ଭବ ଡେରି କରିବାର ଚେଷ୍ଟା କରାଯାଉଛି, ଯେପରି ଲୋକେ ବିରକ୍ତ ହୋଇ ଏବଂ ଅସହାୟ ହୋଇ ଯାହା ମିଳିବ ତାହା ନେବାକୁ ବାଧ୍ୟ ହେବେ । ଏଟା ସତ୍ୟ ଯେ ସେ ସମୟରେ ସରକାରଙ୍କ ତରଫରୁ ବାରମ୍ବାର ଚେଷ୍ଟା କରାଯାଉଥିଲା ଯେ ସେଟା କିପରି ଡେରି କରାଯାଉ ଏବଂ ଲୋକେ କିପରି ନ୍ୟାୟ ବିଚାର ନ ପାଆନ୍ତୁ । ସରକାର ସରକାର ହିସାବରେ ଅଯଥା ସମୟ ଡେରି କରି ତାଙ୍କ ପ୍ରତିଶ୍ରୁତି ଭଙ୍ଗ କରିଛନ୍ତି । କିନ୍ତୁ ଯେତେବେଳେ ପ୍ରଶ୍ନହେଲା, ସରକାରଙ୍କ ତରଫରୁ ସେତେବେଳ ମାନ୍ୟବର ମୁଖ୍ୟମନ୍ତ୍ରୀ କହିଲେ ଯେ Arbitrator ଯାହା ନିଷ୍ପତ୍ତି ଦେବେ ସେଟା ଆମେ ମାନିବାକୁ ପ୍ରସ୍ତୁତ ଅଛୁଁ । 6 ବର୍ଷ ପରେ ସରକାରଙ୍କର କାରସାଦି, କର୍ତ୍ତୃତ୍ୱ ଫଳରେ ଏତେ ଡେରି କଲା ପରେ, ଯେତେବେଳେ ଶେଷକୁ Arbitrator ନିଷ୍ପତ୍ତି ଦେଲେ, ସରକାର ଯେଉଁ ପ୍ରତିଶ୍ରୁତି ଏହି ଅଳ୍ପଦିନ ତଳେ ଦେଇଥିଲେ ଯେ Arbitratior ଙ୍କ ନିଷ୍ପତ୍ତି ଆମେ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛୁଁ, ସେ ପ୍ରତିଶ୍ରୁତି ଭଙ୍ଗ କରି ଆଜି ପୁଣି ସେ ସରକାର ସେ ବିଚାର ଯେପରି ଆଉ କିଛି ସମୟ ଗଡ଼ିବ ସେଥିପାଇଁ Arbitrator କୁ କହିଲେ ଯେ ଆମେ High Court ଦ୍ୱାରସ୍ଥ ହେବୁ, ଆମକୁ ଆଉ କିଛି ସମୟ ଦିଆଯାଉ ଏବଂ ସେ ଅନୁସାରେ Arbitratorଙ୍କ ଠାରୁ 6 ମାସ ସମୟ ନେଇଛନ୍ତି । ଯେଉଁ ଲୋକେ 6/7 ବର୍ଷ ଧରି ଜମିହୀନ ବାସହୀନ ଓ ଗ୍ରାମହୀନ ହୋଇ ପଡ଼ିଛନ୍ତି ଯେଉଁମାନଙ୍କୁ ସର୍ବସ୍ୱରୁ ବଞ୍ଚିତ କରିଛନ୍ତି ଏବଂ ଆମ ସରକାର ଯେଉଁମାନଙ୍କ ତ୍ୟାଗ ଉପରେ ଆଜି ଗୋଟିଏ ହୀରାକୁଦ ଯୋଜନା ପ୍ରତିଷ୍ଠିତ କରିବାକୁ ଯାଉଛନ୍ତି ସେମାନେ କିପରି ଅନାହାରରେ ମରନ୍ତୁ ଆଜି ଆମର ଲୋକପ୍ରତିନିଧି ସରକାର ସେଥିପାଇଁ ଖୋଜୁଛନ୍ତି ।

ତା'ପରେ ଆଉଗୋଟିଏ ବିଷୟପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ସେ ବିଷୟ ହେଉଛି River Pollution Prevention Bill ସେ ବିଷୟରେ ଆଲୋଚନାର ଉତ୍ତର ଦେଇ ମାନ୍ୟବର ମୁଖ୍ୟମନ୍ତ୍ରୀ କହିଲେ ଯେ Orient Paper Mill ବିରୁଦ୍ଧରେ ଯେଉଁ ମକଦ୍ଦମା କରାଯାଇଛି, ସେ ମକଦ୍ଦମା ପ୍ରତି ଏ ଆଇନ ଖାଟିବ ନାହିଁ । କାରଣ ଏହି ବିଷୟରେ ଗୋଟିଏ decision ଅଛି ଯେ ଏହି ବିଷୟରେ ଯେଉଁ ଆଇନ ଅଛି ଏ ଆଇନ ବିଷୟରେ ଅଦାଲତର ଯେଉଁ ମକଦ୍ଦମା ଚାଲିଛି ଏବଂ ଏହା ପୂର୍ବରୁ ଯେଉଁ ଘଟଣା ଘଟିଯାଇଛି ତାହାପ୍ରତି ଏହା ପ୍ରଯୁଜ୍ୟ ହେବନାହିଁ । କିନ୍ତୁ ମୁଁ କହେ ଯଦି ମୁଁ କେବେ ଆଇନ କାନୁନ ପଢ଼ି ନ ଥାନ୍ତି, ଯଦି ମୁଁ କେବେ Law Collegeରେ join କରି ନଥାଆନ୍ତି, ତାହାହେଲେ ମୁଖ୍ୟମନ୍ତ୍ରୀଙ୍କର ଏହି ଉକ୍ତିକୁ ବିନା ପ୍ରତିବାଦରେ ଗ୍ରହଣ କରିଥାଆନ୍ତି । ମୁଁ ଯତ୍‌କିଞ୍ଚିତ୍ ଆଇନ ପଢ଼ିଛି ଏବଂ ଗତ 14 ବର୍ଷ ଧରି ମୁଁ ସେ ଆଇନ ବ୍ୟବହାରରେ ମୋର ଜୀବନର ଅନେକ ସମୟ ବିନିଯୋଗ କରିଛି । ସେଥିପାଇଁ ମୁଁ ବୁଝିପାରୁଛି ଯେ ଏ ଆଶ୍ୱାସନାର କୌଣସି ମୂଲ୍ୟନାହିଁ । ଯଦି ମିଲ୍ କର୍ତ୍ତୃପକ୍ଷ ଏହି ବ୍ୟକ୍ତିଗତ କଳୁଷିତ ଆଇନର ଆଶ୍ରୟ ନେଇ ଆମର 3 ବର୍ଷର ଅକ୍ଳାନ୍ତ ପରିଶ୍ରମକୁ ବାଧା ଦେବା ପାଇଁ ଚେଷ୍ଟା କରିବେ, ତାହାହେଲେ ସେମାନେ ସମ୍ପୂର୍ଣ୍ଣ ଭାବରେ କୃତକାର୍ଯ୍ୟ ହୋଇପାରିବେ । ଆମର ଯେଉଁ ସାଧନା, ଆମର ଏ ଯେଉଁ ପ୍ରଚେଷ୍ଟା ତାକୁ ପଣ୍ଡ କରିବା ପାଇଁ ସରକାରଙ୍କ ଠାରୁ ଅଭୟ ବର ସ୍ୱରୂପ ଏ ଆଇନର ସୁବିଧା ସେମାନେ ପାଇ ପାରିବେ । ମୁଁ ଆଉ ବିଶେଷ କିଛି କରିବାକୁ ଚାହେନାହିଁ । କେବଳ ଶେଷକୁ ମୁଁ ଏତିକି କହିବି ଯେ ଯେଉଁ corruption, nepotion, inefficiency ଦୂର କରିବା ପ୍ରତ୍ୟେକ ସରକାର ଏବଂ ପ୍ରତ୍ୟେକ ସଭ୍ୟ ଦେଶର ପ୍ରତ୍ୟେକ ନାଗରିକର ପ୍ରଧାନ ଏବଂ ପ୍ରଥମ କର୍ତ୍ତବ୍ୟ । ସେ ଦିଗରେ ଆମ ସରକାର ଗତ ବର୍ଷକ ମଧ୍ୟରେ କେତେଦୂର ଅଗ୍ରସର ହୋଇଛନ୍ତି ? ଏସବୁ ଦୂର କରିବା ପରିବର୍ତ୍ତେ ସେ inefficiency, corruption, nepotism କିପରି ବେଶି ହେବ ଏବଂ ଆମର ଗଣତନ୍ତ୍ରକୁ, ଆମର ଶାସନକୁ ଆମରସମୃଦ୍ଧିକୁ କିପରି ଭାବରେ ସମୂଳେ ଲୋପ କରିବା, ସେ ଦିଗରେ ଆମ ସରକାର ଚେଷ୍ଟା କରି ଆସିଛନ୍ତି ।

ଏହି ସବୁ ଦୋଷ ଥିଲେ ଯେଉଁ ଆଦର୍ଶ ଉପରେ ଗଣତନ୍ତ୍ର ପ୍ରତିଷ୍ଠିତ, ସେହି ଆଦର୍ଶ ଯଦି ଲୋପ ହୋଇଯାଏ, ଯଦି ଆମ ଦେଶରେ ଦୁର୍ନୀତି ଏବଂ ବ୍ୟକ୍ତିଗତ ପୂର୍ଣ୍ଣ ହୁଏ, ତାହେଲେ ଗୋଟିଏ ଜମିଦାରୀ ଉଚ୍ଛେଦ ଆଇନ୍ ପାଶ କରିଦେଲେ, ଭୂଦାନଯଜ୍ଞ ବିଲ୍ ପାସ୍ କରିଦେଲେ ବା ଅଞ୍ଚଳଶାସନ ପ୍ରତିଷ୍ଠିତ ହୋଇଗଲେ, ଆମ ଦେଶର ଉନ୍ନତି ହୋଇପାରିବ ନାହିଁ । କାରଣ ଏଇଟା ଗୋଟାଏ galloping pthisis ଯାହାକି ଆମର ସମଗ୍ର ରାଜ୍ୟକୁ ଧ୍ୱଂସ କରିବ । Galloping pthisis ହେଲେ ଯେମିତି ସାମାନ୍ୟ କୌଣସି injection ବା କୌଣସି ଔଷଧ ଦ୍ୱାରା ରୋଗୀର ରୋଗ ଦୂର ହୋଇପାରେ ନାହିଁ, ସେହିପରି ନୈତିକ ଉନ୍ନତି ଏବଂ ନୈତିକ ପ୍ରତିଷ୍ଠା ସେ ଦିଗ

ଛାଡ଼ି ସରକାର ଆଜି ଯେଉଁ ଦିଗରେ ଅଗ୍ରସର ହେଉଛନ୍ତି, ସେଥିରୁ ଯଦି ସରକାରଙ୍କ ନିବୃତ୍ତ କରା ନ ଯାଏ, ତାହେଲେ ମୁଁ ଭାବୁଛି, ଆମ ସମଗ୍ର ରାଜ୍ୟର ଅଧଃପତନ ଅନିର୍ବାର୍ଯ୍ୟ ।

The SPEAKER: Motion moved that this House has no confidence in the present Ministry.

ଶ୍ରୀ ହରିହର ଦାସ (ଆସ୍କା): ମୁଁ କହୁଛି, ମାନ୍ୟବର ସଦସ୍ୟ ଶ୍ରଦ୍ଧାକର ସୂପକାର ଏ ଯେଉଁ motion ଆଣିଛନ୍ତି, ଏଥିରେ କିଛି ଯୋଡ଼ିବା କି କାଟିବା କଥା ନାହିଁ । ତେଣୁ ଏ ବିଷୟରେ ବିଶେଷ ଆଲୋଚନା ନକରି ଏହାକୁ ଗ୍ରହଣ କରିଗଲେ ଭଲ ହୁଅନ୍ତା ।

ଶ୍ରୀ ଶ୍ରଦ୍ଧାକର ସୂପକାର: ମୁଁ ଆପଣଙ୍କ ଅନୁମତି କ୍ରମେ ଆଉ ଦୁଇପଦ କହିବାକୁ ଯାଉଛି । ତାପରେ ମୁଁ ଶେଷ କଥା କହୁଛି ଯେ ସରକାରଙ୍କ ଶକ୍ତି ଏବଂ ସାମର୍ଥ୍ୟ ବିଷୟରେ କେବଳ ଯେ ଜନସାଧାରଣଙ୍କ ତରଫରୁ ବା କେବଳ ଏ ପକ୍ଷରୁ ଯେ ଆଲୋଚନା ହେଉଛି, ତାହା ନୁହେଁ ସରକାରୀଦଳର ସଭ୍ୟମାନେ ମଧ୍ୟ ଏପରି ଭାବରେ ସମାଲୋଚନା କରୁଛନ୍ତି, ଯାହାକି ମୁଁ ଆଜି କହିଲି ଏବଂ ଦୁଇଦିନ ପୂର୍ବରୁ ଯେଉଁ ବିଷୟରେ ମୁଁ କହିଥିଲି, ଆଉ ଯେଉଁଟାକି କି ପ୍ରାୟ ଗୋଟିଏ no-confidence motion ସଙ୍ଗେ ସମାନ, ସରକାରୀଦଳର ସଭ୍ୟମାନଙ୍କ ମଧ୍ୟରୁ କେତେକ ମଧ୍ୟ ସେଇଟାକୁ ପୂର୍ଣ୍ଣ ଭାବରେ ସମର୍ଥନ କରୁଛନ୍ତି । ଏ ବିଷୟରେ କେବଳ ଗୋଟିଏ ବକ୍ତୃତା ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବି । ଯେତେବେଳେ Appropriation Bill ର ଆଲୋଚନା ହେଉଥିଲା ସେ ସମୟରେ ଆମର ଭୂତପୂର୍ବ ମନ୍ତ୍ରୀ ଶ୍ରୀ ପବିତ୍ରମୋହନ ପ୍ରଧାନ୍ ମଧ୍ୟ ଅତି ଗୁରୁତ୍ୱ ଦେଇ କହିଥିଲେ Control or quit, Control or quit, Control or quit । ଏଇଟା ୩ଥର କହିବାର ଗୁରୁତ୍ୱ ଏବଂ ଉଦ୍ଦେଶ୍ୟ ଆପଣ ବୁଝିପାରିବେ, ଯଦି ଆପଣ Mahammadan Law ପଢ଼ିଥିବେ ? Mahammadan Law ରେ ଅଛି, ଛାଡ଼ପତ୍ର ଦେବାକୁ ହେଲେ, ତଲାଖ୍, ତଲାଖ୍, ତଲାଖ୍ ଏହିପରି ୩ଥର କହିବାକୁ ହୁଏ । Control or quit ଯଦି ୩ଥର କୁହାଯାଏ, ତା ହେଲେ ମୁଁ ଭାବୁଛି, ସରକାର ସେ ବିଷୟରେ ତାଙ୍କର ନିର୍ଦ୍ଦେଶ ଗ୍ରହଣ କରିବା ଉଚିତ । (clapping)

### ଓଡ଼ିଶା ମାତୃମଙ୍ଗଳ ବିଲ, 1953 ଉପରେ ବକ୍ତବ୍ୟ

ଡକ୍ଟର ସୂପକାର ନ୍ୟାୟନିଷ୍ଠ ଓ ସତ୍ୟଦ୍ରଷ୍ଟା । ଯେଉଁଠି ସରକାରଙ୍କର କାର୍ଯ୍ୟକୁ ଭଲ ବୋଲି ଉପଲବ୍ଧି କରିଛନ୍ତି ତାକୁ ସେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । (ସେପ୍‌ଟେମ୍ବର, 22, 1953 ବିଧାନସଭା ବିବରଣୀ) । ଯେଉଁଠି ଯାହାର ପ୍ରାପ୍ୟ ତାକୁ ଦେବାରେ ସେ ପଛାଇ ନାହାଁନ୍ତି । ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ହେଲା ଓଡ଼ିଶା

ମାତୃମଙ୍ଗଳ ବିଲ୍, 1953, ଯାହାପାଇଁ ସେ ଶ୍ରମ ବିଭାଗ ମନ୍ତ୍ରୀଙ୍କୁ ଧନ୍ୟବାଦ ଦେଇଛନ୍ତି । ଅବଶ୍ୟ ଏହା ଆଦର୍ଶ ସ୍ଥାନୀୟ ବିଲ୍ ନୁହେଁ । ମାତ୍ର ଏହା ଯେ ଶ୍ରମିକମାନଙ୍କର ପ୍ରସୂତି କାଳୀନ ଉପକାରରେ ଆସିବ ଏବଂ କଳକାରଖାନାରେ କଠିନ କାର୍ଯ୍ୟ କରୁଥିବା ସ୍ତ୍ରୀଲୋକମାନେ ଉପଯୁକ୍ତ ସାହାଯ୍ୟ ଓ ସହାନୁଭୂତି ପାଇ ପାରିବେ ତାଙ୍କୁ ଆନନ୍ଦ ଦେଇଛି । ଗର୍ଭବତୀ ସ୍ତ୍ରୀ, ପ୍ରସୂତି ପୂର୍ବରୁ ଓ ପରେ ମଜୁରି ପାଇବା, ଚିକିତ୍ସା ପାଇବା ଓ ନିରାପତ୍ତା ପାଇବା ଏକାନ୍ତ ଆବଶ୍ୟକ । ଏଇ ଆଇନ୍ କିପରି ଯଥାର୍ଥରେ କାର୍ଯ୍ୟକାରୀ ହୋଇପାରିବ, ତାହା ଏକ ବଡ ପ୍ରଶ୍ନ, "ଏହି ଆଇନ୍‌କୁ ଯଦି ଠିକ୍ ଭାବେ ପ୍ରୟୋଗ କରିବାରେ ଯେଉଁ Machinery ବା ଯେଉଁ କର୍ମଚାରୀମାନେ ଅଛନ୍ତି ସେମାନେ ଯଦି ଠିକ୍ ଠିକ୍ ଭାବେ ପ୍ରୟୋଗ ନକରନ୍ତି, ତାହା ହେଲେ ମୁଁ ଭାବୁଛି ଏ ଆଇନ ପାସ୍ କରିଦେଇ ସନ୍ତୁଷ୍ଟ ରହିଲେ ଆମର ବେଶୀ କିଛି ଲାଭ ହେବ ନାହିଁ ।" ଏହି ସତର୍କ ଘଣ୍ଟି କ'ଣ କୁମ୍ଭକର୍ଣ୍ଣ ସରକାରଙ୍କ କର୍ଣ୍ଣ ଗହ୍ୱରରେ ପ୍ରବେଶ କରିପାରେ ? ଏହା ହେଉଛି ଶ୍ରଦ୍ଧାକରଙ୍କ ସଂଶୟ ।

The SPEAKER: Motion moved that the Orissa Maternity Benefit Bill, 1953 be taken into consideration.

Shri SHRADDHAKAR SUPAKAR: ମାନ୍ୟବର ଅଧ୍ୟକ୍ଷ ମହାଶୟ, ଶ୍ରମବିଭାଗ ମନ୍ତ୍ରୀ ଏ ଯେଉଁ ମାତୃମଙ୍ଗଳ ବା ପ୍ରସୂତି ମଙ୍ଗଳ ବିଲ୍ ଆଗତ କରିଛନ୍ତି ସେଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ୍ ଦେଉଛି । ତେବେ ଏଇଟା ଯେ ପୂରାପୂରି ଆଦର୍ଶ ସ୍ଥାନୀୟ ବିଲ୍ ହୋଇଛି ମୁଁ କହିପାରୁ ନାହିଁ । ଏ ପ୍ରକାର ଗୋଟିଏ ବିଲ୍ ଓଡ଼ିଶା ପ୍ରଦେଶରେ ବହୁତ ଦିନ ପୂର୍ବରୁ ହେବାର ଉଚିତ ଥିଲା । ଯେଉଁ ସ୍ତ୍ରୀ ଶ୍ରମିକମାନେ ଖଣି କିମ୍ବା କଳକାରଖାନାରେ କାମ କରୁଛନ୍ତି ସେମାନଙ୍କ ପ୍ରସୂତି ସମୟ ପାଇଁ କି ସୁବିଧା କରା ଯାଇପାରେ ସେ ବିଷୟରେ କେନ୍ଦ୍ର ସରକାର ଏବଂ ଭାରତର ଅନ୍ୟାନ୍ୟ ପ୍ରଦେଶରେ ଆଇନ୍ ତିଆରି କରିବାରେ ଅନେକ ଚେଷ୍ଟା କରାଯାଇଛି ଏବଂ ଅନ୍ୟ ପ୍ରଦେଶମାନଙ୍କରେ ଏ ଆଇନ୍ ପାସ୍ ମଧ୍ୟ ହୋଇ ଯାଇଛି । ଏ ବିଷୟରେ ଭାରତରେ ପ୍ରଥମ କରି କେନ୍ଦ୍ର ସରକାରରେ ଶ୍ରୀ ଏମ୍. ଏନ. ଯୋଷୀ ଗୋଟିଏ ବିଲ୍ ଆଗତ କରିଥିଲେ ଏବଂ ୧୯୨୪ ସାଲରେ ପ୍ରଥମ କରି କେନ୍ଦ୍ର ବ୍ୟବସ୍ଥା ସଭାରେ ଏ ଆଇନ ପ୍ରଣୟନ କରିବାର ଚେଷ୍ଟା ହୋଇଥିଲା । କିନ୍ତୁ ଦୁଃଖର ବିଷୟ ଯେ ସେ ସମୟରେ ଯେଉଁ ବିଲ୍ ଆଗତ କରିଥିଲେ ସେ ବିଲ୍‌ଟି ପ୍ରତ୍ୟାଖ୍ୟାନ ହୋଇଥିଲା ଓ ପାସ୍ ହୋଇ ପାରି ନ ଥିଲା । ତାପରେ ଯେଉଁ ପ୍ରଦେଶମାନେ ଶିଳ୍ପ ଓ ବ୍ୟବସାୟ ଦିଗରେ ସମୃଦ୍ଧ ଓ ଯେଉଁଠାରେ କଳକାରଖାନା ବହୁତ ଅଛି ସେ ରାଜ୍ୟମାନଙ୍କରେ ଏ ବିଷୟରେ ଆଇନ୍ ପ୍ରଣୟନ କରାଯାଇଥିଲା । ଉଦାହରଣ ସ୍ୱରୂପ ୧୯୨୯ ସାଲରେ ବମ୍ବେରେ ଏବଂ ୧୯୩୦ ସାଲରେ ମଧ୍ୟ-ପ୍ରଦେଶରେ ପ୍ରସୂତି ମଙ୍ଗଳ ଆଇନ୍ ପାସ୍ ହୋଇଥିଲା । ମାନ୍ୟବର ଶ୍ରମ ବିଭାଗ ମନ୍ତ୍ରୀ ଯାହା କହିଲେ

ଯେ ୧୯୪୧ ସାଲରେ କେନ୍ଦ୍ର ସରକାର ଯେଉଁ ଆଇନ୍ ପାସ୍ କରିଛନ୍ତି ସେଇଟା ପରୀକ୍ଷାମୂଳକ ଭବରେ ପ୍ରୟୋଗ କରାଯାଇଛି ତାହା ଠିକ୍ ନୁହେଁ । କାରଣ କେନ୍ଦ୍ର ସରକାର ଏହି ଯେଉଁ ଆଇନ୍ ପାସ୍ କରିଛନ୍ତି ସେଇଟା କେବଳ ଭରତର ବିଭିନ୍ନ ଖଣିମାନଙ୍କରେ ଯେଉଁ ସ୍ତ୍ରୀ ଲେକମାନେ କାର୍ଯ୍ୟ କରୁଛନ୍ତି ଓ ଯେଉଁମାନେ ପ୍ରସୂତି ଅବସ୍ଥାରେ ଉପନୀତ ହୋଇଛନ୍ତି, ସେହିମାନଙ୍କ ପାଇଁ ହୋଇଛି; କାରଣ ଆପଣ ଜାଣିଥିବେ ଯେ ଖଣିଗୁଡ଼ିକର ପରିଚାଳନା ଦାୟିତ୍ୱ କେନ୍ଦ୍ର ସରକାରଙ୍କର ଏବଂ କେନ୍ଦ୍ର ସରକାରଙ୍କ ଅଧୀନରେ ଯେଉଁ ସବୁ ବିଭଗ ରହିଛି ସେହି ବିଭଗମାନଙ୍କରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କର ମଙ୍ଗଳ ବ୍ୟବସ୍ଥା କରିବା ଦାୟିତ୍ୱ କେନ୍ଦ୍ର ସରକାରଙ୍କର । କେବଳ ସେଥିପାଇଁ ଖଣି ଅଞ୍ଚଳରେ ପ୍ରସୂତିମାନଙ୍କର ମଙ୍ଗଳପାଇଁ ଏହି ବିଲ୍ ୧୯୪୧ ସାଲରେ ହୋଇଥିଲା । ଆମର ଏହି ଯେଉଁ ବିଲ୍ ହୋଇଛି ଏଇଟା କରିବାରେ ୧୯୪୬ ସାଲରେ ଯେ ବାଧାଥିଲ ଏହା ମୁଁ ଉପଲବ୍ଧି କରି ପାରୁନାହିଁ । କାରଣ ଯଦିଓ ଶ୍ରମିକର୍ମୀମାନଙ୍କର ମଙ୍ଗଳ ବିଷୟରେ ଆଇନ୍ ପ୍ରଣୟନ କରିବା ବିଷୟଟି Concurrent Jurisdiction ଅର୍ଥାତ୍ କେନ୍ଦ୍ର ସରକାର ତଥା ରାଜ୍ୟ ସରକାର ଉଭୟଙ୍କର ଏ ବିଷୟରେ ସମାନ ଅଧିକାର ଅଛି, ତଥାପି ଯେଉଁସବୁ କଳକାରଖାନାମାନଙ୍କର ପରିଚାଳନାର ଦାୟିତ୍ୱ ରାଜ୍ୟ ସରକାରଙ୍କର କର୍ତ୍ତୃତ୍ୱାଧୀନରେ ଅଛି ଏବଂ ସେଗୁଡ଼ିକର ପରିଚାଳନାରେ ଶାନ୍ତିଶୃଙ୍ଖଳା ଦେଖିବା ଦାୟିତ୍ୱ ରାଜ୍ୟ ସରକାରଙ୍କର ସେ ବିଷୟରେ ଆଇନ୍ ବ୍ୟବସ୍ଥା କରିବା ନିମିତ୍ତ ରାଜ୍ୟ ସରକାରଙ୍କର ପୂର୍ଣ୍ଣ କ୍ଷମତା ଅଛି । ସେ ଯେଉଁ ଯୁକ୍ତିର ଅବତାରଣା କରିଥିଲେ ସେ ଯୁକ୍ତିକୁ ଛାଡ଼ି ଦେଲେ ମଧ୍ୟ ଏକଥା କୁହାଯାଇପାରେ ଯେ ଆମର କଳକାରଖାନାମାନଙ୍କରେ କାର୍ଯ୍ୟକରୁଥିବା ସ୍ତ୍ରୀଲେକମାନଙ୍କର ଯେଉଁସବୁ ଅସୁବିଧା ହେଉଛି ଏ ପ୍ରକାର ଆଇନ୍ ନ ଥିବା ଯୋଗୁଁ ସେସବୁ ଅସୁବିଧା ପ୍ରତି ସରକାର ଆଜି ପର୍ଯ୍ୟନ୍ତ ଯଥେଷ୍ଟ ପରିମାଣରେ ସଚେତନ ଓ ଜାଗ୍ରତ ହୋଇ ନ ଥିଲେ । ଆଶ୍ଚର୍ଯ୍ୟର କଥା ଯେ, ଯେଉଁ ସମୟରେ ଓଡ଼ିଶାରେ ନୂଆ ନୂଆ ଶିଳ୍ପମାନ ସ୍ଥାପିତ ହେଉଛି ଏବଂ ଏ ରାଜ୍ୟ ଅନ୍ୟାନ୍ୟ ରାଜ୍ୟମାନଙ୍କ ପରି ଶିଳ୍ପ ଦିଗରେ ସମୃଦ୍ଧ ହେବାକୁ ଯାଉଛି ଓ ନୂଆ ନୂଆ କଳକାରଖାନା ବସିବାକୁ ଯାଉଛି; ସେ ସମୟରେ ଏପ୍ରକାର ଗୋଟିଏ ଆଇନ୍‌ର ଜରୁରି ଆବଶ୍ୟକତା ଅଛି । ତେବେ ମୁଁ କେବଳ ଗୋଟିଏ କଥା ଏ ବିଷୟରେ ଆପଣଙ୍କୁ କହିଦେବାକୁ ଚାହେଁ ଯେ ଏ ବିଲରେ ପ୍ରଧାନତଃ ଦୁଇଟି ଅସୁବିଧା ମୁଁ ଦେଖୁଛି । ପ୍ରଥମ ହେଉଛି ଯେ ଏହି ବିଲ୍‌ରେ ପ୍ରସୂତୀମାନଙ୍କ ମଙ୍ଗଳ ପାଇଁ କେବଳ ପ୍ରସୂତୀ କାହିଁକି ଗର୍ଭବତୀ ସ୍ତ୍ରୀ ଯେଉଁମାନେ କି କଳକାରଖାନାମାନଙ୍କରେ କାମ କରୁଛନ୍ତି ସେମାନେ ଏବଂ ଯେଉଁମାନେ ତା'ର ପରବର୍ତ୍ତୀ ଅବସ୍ଥାରେ ଥିବେ ଅର୍ଥାତ୍ ପ୍ରସୂତୀ ଅବସ୍ଥାରେଥିବେ ସେହି ସ୍ତ୍ରୀ ଲେକମାନଙ୍କର ସୁବିଧା ପାଇଁ ଏହି ଯେଉଁ ବ୍ୟବସ୍ଥା କରଯାଇଛି ସେଇଟା ସନ୍ତୋଷଜନକ ନୁହେଁ । ଆପଣ ଦେଖିବେ ଯେ ଏହାର clause 5ରେ ଅଛି subject to the provisions of this Act every woman worker in factory shall be entitled to this payment of

maternity benefit at the rate of eight annas a day for the actual days of her absence during the period immediately preceding her confinement, etc. ଏହାର ଅର୍ଥ ହେଲ ଯେ କୌଣସି ଗର୍ଭବତୀ ସ୍ତ୍ରୀ ପ୍ରସବର ଅବ୍ୟବହିତ ସପ୍ତାହ ପୂର୍ବରୁ କିମ୍ବା ପ୍ରସବର ୪ ସପ୍ତାହ ପର୍ଯ୍ୟନ୍ତ ଦୈନିକ ଆଠଅଣା ହାରରେ ମଜୁରି ପାଇବ ଏବଂ ତାକୁ ଏ ବିଲ୍‌ରେ ସେହି ଅଧିକାର ଦିଆଯାଇଛି । ବର୍ତ୍ତମାନ ଓଡ଼ିଶାର ବିଭିନ୍ନ ଶିଳ୍ପ କେନ୍ଦ୍ରମାନଙ୍କରେ କେବଳ ବର୍ତ୍ତମାନ କାହିଁକି ବିଗତ କେତେ ବର୍ଷ ଧରି ଦରଦାମ ଯାହା ଅଛି ତାହା ତୁଳନାରେ ଏହି ଦୈନିକ ଆଠଅଣା ଯେ ଅତି ସାମାନ୍ୟ ଏହା ଆପଣ ଉପଲବ୍ଧି କରୁଥିବେ । ଏହି ବିଲ୍‌ଟି ଅଧ୍ୟୟନ କଲେ ଆପଣ ବୁଝି ପାରିବେ ଯେ ଏଥିରେ ଏପରି କେତେକ ସ୍ପଷ୍ଟ ଚିହ୍ନ ଅଛି ଯେଉଁଥିରୁ ପରିଷ୍କାର ଜଣାପଡୁଛି ଯେ ଅନ୍ୟ କୌଣସି ପ୍ରଦେଶରେ ଆଇନରୁ ଏହା ନିଆଯାଇଛି, ହୁଏତ ସେ ଆଇନରେ ମଜୁରି per day eight annas ଥିବ ଏବଂ ସେଇଥିପାଇଁ ଏ ବିଲ୍‌ରେ eight annas a dayର ବ୍ୟବସ୍ଥା କରାଯାଇଛି । ୧୯୪୧ ସାଲରେ କେନ୍ଦ୍ର ସରକାର ଯେତେବେଳେ Mines Maternity Benefit Act ପାଶ୍ କଲେ ସେଥିରେ ସେମାନେ ବ୍ୟବସ୍ଥା କଲେ ଏହିସବୁ ଆସନ୍ନ ପ୍ରସବା ବା ପ୍ରସୂତୀ ସ୍ତ୍ରୀମାନେ ଯେଉଁ ସମୟତକ ଅନୁପସ୍ଥିତ ରହିବେ ସେମାନଙ୍କୁ ଦୈନିକ ବାରଅଣା ହାରରେ ମଜୁରି ଦିଆଯିବ । ଏହି ବିଲ ବୋଧହୁଏ ୧୯୪୧ ସାଲରେ ପାଶ ହୋଇଛି ଏବଂ ୧୯୪୫ ସାଲରେ ବୋଧହୁଏ ଏଥିରେ ସଂଶୋଧନ ହୋଇଛି । ଯେଉଁ ସମୟରେ ଏ ବିଲ୍ ପାଶ୍ ହୋଇଛି ତତ୍‌କାଳୀନ Index of Prices ଏବଂ ବର୍ତ୍ତମାନର Index of Prices ଯଦି ଆପଣ ତୁଳନା କରନ୍ତି ତାହାହେଲେ ଆପଣ ବୁଝିପାରିବେ ଯେ ସେ ସମୟରେ ଦରଦାମ ଯାହାଥିଲା ଏବଂ ବିଭିନ୍ନ କଳକାରଖାନାରେ ଏବଂ ଖଣିମାନଙ୍କରେ ମଜୁରି ଦର ଯାହାଥିଲା ବର୍ତ୍ତମାନ ହୁଏତ ତାଠାରୁ ଢେର ବେଶି । ତେଣୁ ଏହି ଯେଉଁ ବ୍ୟବସ୍ଥା କରାଯାଇଛି ଏଇଟା ଯେ ଯଥେଷ୍ଟ ନୁହେଁ । ସେଇଥିପାଇଁ ମୁଁ ଗୋଟିଏ ସଂଶୋଧନ ପ୍ରସ୍ତାବ ଦେଇଛି ଏବଂ ସେ ସଂଶୋଧନ ପ୍ରସ୍ତାବର ଅର୍ଥ ହେଉଛି ଯେ ଯଦି କୌଣସି ଆସନ୍ନପ୍ରସବା ବା ପ୍ରସୂତୀ ସ୍ତ୍ରୀ ଯେଉଁ କାରଖାନାରେ କାମ କରୁଥିବେ ସେହି କାରଖାନାରେ ସାଧାରଣତଃ ନିଯୁକ୍ତ ହୋଇଥିବା ସ୍ତ୍ରୀଲୋକମାନେ ଯେତିକି ମଜୁରୀ ପାନ୍ତି ସେହି ହାରରେ maternity benefit ଦିଆଯିବ । ତାପରେ ଦ୍ୱିତୀୟ କଥା ହେଉଛି ଯେ ଏ ପ୍ରକାର ବିଲ୍ ଯଦି ଆମେ ଖାଲି ପାଶ୍ କରି ଦେଉ ଏବଂ ସେ ଆଇନ ସବୁ କଳକାରଖାନାମାନଙ୍କରେ କିପରି ଠିକ୍ ଠିକ୍ ଭାବରେ ପ୍ରଯୁକ୍ତ ହେବ ସେଥିପ୍ରତି କଡ଼ା ନଜର ନ ଦେଉଁ ତାହାହେଲେ ଏପ୍ରକାର ଆଇନ ପାଶ୍ କରିଦେଲେ ଆମର କିଛି ଲାଭ ହେବ ନାହିଁ; ବରଂ ତା ଫଳରେ ଆମର ବ୍ୟବସ୍ଥାପକ ସଭାର ସଦସ୍ୟମାନେ ଏବଂ ଓଡ଼ିଶାର ଜନସାଧାରଣ ଏକ ଆତ୍ମପ୍ରତାରଣାର ବଶବର୍ତ୍ତୀ ହୋଇ ରହିବେ । ଆମର ଏ ଯେଉଁ କଳକାରଖାନା ଅଛି ମୁଁ ଆଜି ବିଶ୍ୱାସଯୋଗ୍ୟ

ସତ୍ତ୍ବ ଖବର ପାଇଛି ଯେ ଶ୍ରମିକମାନଙ୍କର ମଙ୍ଗଳପାଇଁ ଯେଉଁସବୁ ବ୍ୟବସ୍ଥା କରିବା ଦରକାର ଏବଂ ସେ ବିଷୟରେ ଆମର Labour Welfare Officers ବା Chief Labour Welfare Officer ଯେଉଁମାନେ ଅଛନ୍ତି, ସେମାନେ ଯେଉଁ ପ୍ରକାର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱସହକାରେ କାର୍ଯ୍ୟ କରିବାର କଥା ତାହା କରୁନାହାନ୍ତି ଏବଂ ସେଥିରେ ଘୋର ଅବହେଳା ଦେଖାଯାଇଛି ଏବଂ ଦେଖାଯାଉଛି । ଏପରି ମଧ୍ୟ ଅଭିଯୋଗ ହୋଇଛି ଯେ ରାଜଗାଙ୍ଗପୁର ସିମେଣ୍ଟ କାରଖାନାଠାରେ, ଏହି ବିରାଟ ଅନୁଷ୍ଠାନରେ ଯେଉଁସବୁ Fatal accident ହେଉଛି ତାହାର ମଧ୍ୟ ଯାହା ପ୍ରତିକାର ହେବାର କଥା ସେଟା ହେଉନାହିଁ ଏବଂ ଏହି ଅଭିଯୋଗ ମୁଁ ଶୁଣିବାକୁ ପାଉଛି ଯେ ସେହି ପ୍ରକାର ଯେଉଁଠି ମନୁଷ୍ୟ ଜୀବନ ହାନୀ ହେଉଛି ଗୁରୁତ୍ୱପୂର୍ଣ୍ଣ ଘଟଣାରେ ମଧ୍ୟ ଆମର ସରକାରଙ୍କର କର୍ମଚାରୀମାନେ ତାଙ୍କର କର୍ତ୍ତବ୍ୟ ପାଳନ କରିବାରେ ଅବହେଳା ଦେଖାନ୍ତି । ମୃତ ଶ୍ରମିକମାନଙ୍କର ଉତ୍ତରାଧିକାରୀମାନେ ଯେଉଁ କ୍ଷତିପୂରଣ ପାଇବାର କଥା ତାହା ସେମାନଙ୍କୁ ଦିଆଯିବାରେ ଯଦି ଏମାନେ ଅବହେଳା ଦେଖାନ୍ତି ତାହାହେଲେ ମୁଁ ବିଶ୍ୱାସ କରିପାରୁ ନାହିଁ ଯଦି ଏ ଆଇନ ପାସ୍ ହୁଏ ଏବଂ ଏହା ଫଳରେ ଯଦି ଆମେ ବିଶ୍ୱାସ କରିଥାଉଁ ଯେ ଆସନ୍ନ ପ୍ରସବା ବା ପ୍ରସୂତୀ ଶ୍ରମିକମାନଙ୍କୁ ପ୍ରସବର ୩ ସପ୍ତାହର ଅବ୍ୟବହିତ ପୂର୍ବରୁ ଏବଂ ୪ ସପ୍ତାହର ପରଯାଏ କଳକାରଖାନାର ମାଲିକମାନେ ବାଧ୍ୟତା ମୂଳକ ଭାବେ ସେମାନଙ୍କୁ ଛୁଟି ଦେବେ ଏବଂ ସେହି ସମୟ ପାଇଁ ସେମାନଙ୍କୁ ଯଥା ସମୟରେ ତାଙ୍କର ଯାହା ପାଉଣା ତାହା ଦେବେ । ସେଟା କେତେଦୂର କାର୍ଯ୍ୟକାରୀ ହେବ ? ଯଦି ଆମର ଏହି ଆଇନକୁ enforce କରିବାରେ, ଏହି ଆଇନକୁ ଠିକ୍‌ଭାବେ ପ୍ରୟୋଗ କରିବାରେ ଯେଉଁ machinery ବା ଯେଉଁ କର୍ମଚାରୀମାନେ ଅଛନ୍ତି ସେମାନେ ଯଦି ଠିକ୍ ଠିକ୍ ଭାବେ ପ୍ରୟୋଗ ନ କରନ୍ତି ତାହାହେଲେ ମୁଁ ଭାବୁଛି ଏ ଆଇନ ପାସ୍ କରିଦେଇ ସନ୍ତୁଷ୍ଟ ରହିଲେ ଆମର କିଛି ବେଶୀ ଲାଭ ହେବନାହିଁ । ଆଉ ଏ ବିଷୟରେ ଯାହା କହିବାର କଥା, ତାହା ମୁଁ କହିବି ।

The House then adjourned to meet again at 11 A. M. on Wednesday, the 23rd September 1953.

## ଓଡ଼ିଶା ଅଞ୍ଚଳ ଶାସନ ବିଲ୍ 1953

ଜମିଦାରୀ ବ୍ୟବସ୍ଥା ଉଠିଗଲା ପରେ ତାର କାର୍ଯ୍ୟକଳାପ ସଂପାଦିତ ହେବାପାଇଁ ଅଞ୍ଚଳ ଶାସନ ବ୍ୟବସ୍ଥା ପ୍ରଚଳିତ ହେଲା । ମାତ୍ର ସେଥିରେ ସାଧାରଣ ଲୋକଙ୍କୁ ବିଭିନ୍ନ ଦୁର୍ନୀତି ଓ ଦୁର୍ଗତିର ସମ୍ମୁଖୀନ ହେବାକୁ ପଡୁଥିଲା । କୃଷକ, ରଯତ ଓ ଜମିମାଲିକମାନଙ୍କ ମଧ୍ୟରେ ବହୁ ଅଶାନ୍ତି ଗଣ୍ଡଗୋଳର ସୂତ୍ରପାତ ହେଉଥିଲା । ତେଣୁ କୋର୍ଟ କଚେରୀରେ ମାଲିମକଦମା ସଂଖ୍ୟା ବଢିଯାଇଥିଲା ଏବଂ ଗ୍ରାମମାନଙ୍କରେ ଫୌଜଦାରୀ, ହିଂସାକାଣ୍ଡ ଓ ଗୋଳମାଳ ଅଧିକ

ଘଟୁଥିଲା, ସେଥିପାଇଁ ଅଞ୍ଚଳ ଶାସନ ବିଲ୍ ଉପରେ ଅଧିକ ଆଲୋଚନା କରିବାକୁ ବିଧାନସଭାରେ ଅଧିକ ଦାବି ହେଉଥିଲା ଏବଂ ଗ୍ରୁପ ପଡୁଥିଲା, ମାତ୍ର ସରକାର ଏହି ବିଲ୍ ଉପରେ ଆଲୋଚନା ପାଇଁ ଅଧିକ ସମୟ ଦେଉନଥିଲେ। ପୁଣି ଅନେକ ବିଲ୍ ବାକୀ ରହିଗଲେ ବାରମ୍ବାର ବିଧାନସଭାର କାର୍ଯ୍ୟ ଦିନର ସଂଖ୍ୟା ବଢାଇ ଦିଆଯିବାରୁ ସଭ୍ୟମାନେ ଅସୁବିଧାରେ ପଡୁଥିଲେ। ଏହାକୁ "ଏପରି ଆସେମ୍ବ୍ଲି ବସାଇବା ଦ୍ୱାରା ସଭ୍ୟମାନଙ୍କ ଉପରେ ଅତ୍ୟାଚାର କରଯାଇଛି" ବୋଲି ଅଭିଯୋଗ କରିଛନ୍ତି।

ଅଞ୍ଚଳ ଶାସନର ଗୁରୁତ୍ୱ ଦୃଷ୍ଟିରୁ ବିଲ୍‌କୁ ଲୋକମତ ପାଇଁ ପଠାଇବାକୁ କେତେକ ସରକାରୀ ସଭ୍ୟ ଦାବି କରିଛନ୍ତି। ମାତ୍ର ଡଃ ସୂପକାର ଏହାକୁ ସମୟ ନଷ୍ଟ କରିବାର ଏକ ବାହାନା ବୋଲି ବିଚାର କରି ଯଥାର୍ଥରେ କହିଛନ୍ତି (ଓ. ବି. ସି. ତା 16-4-1953). "ଆମେ ଏ ବ୍ୟବସ୍ଥା ସଭାରେ ଯେଉଁ ସଭ୍ୟମାନେ ଅଛୁ, ଆମେହିଁ ଲୋକମତର ଗୋଟିଏ ଗୋଟିଏ ପ୍ରତୀକ. ଆମେହିଁ ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀର ଲକ୍ଷ ଲକ୍ଷ ଲୋକମତ, ତେଣୁ ଲୋକମତପାଇଁ ପଠାଇବା ଦରକାର ନାହିଁ" ଉପ ବାଚସ୍ପତି ଏଥିରେ ଡ. ସୂପକାରଙ୍କ ମତ ଲୋଡ଼ିବାରୁ ସେ ସ୍ପଷ୍ଟଭାବରେ କହିଲେ ଯେ "ହଁ, ମୁଁ ବିରୋଧ କରୁଛି"। ଅଥଚ ଓଡ଼ିଶା ନଦୀ ଜଳ ପ୍ରଦୂଷଣ ଦାବି ହେଲେ ଆଲୋଚନା ହେଉନାହିଁ ବୋଲି ସେ ସମାଲୋଚନା କରିଛନ୍ତି। ଲୋକମତ ମଧ୍ୟ ଯଥାର୍ଥ ଭାବରେ ପ୍ରକାଶିତ ହୋଇପାରିବ ନାହିଁ ବୋଲି ଆଶଙ୍କା କରି ଶ୍ରଦ୍ଧାକର କହିଛନ୍ତି, "ତେଣୁ ମୁଁ ଭାବୁଛି ଯେ ସରକାର ପୂର୍ବରୁ ଯେଉଁ ନୀତି ଘୋଷଣା କରିଛନ୍ତି Public opinion ପାଇଁ ନ ପଠାଇ କାଳକ୍ଷେପଣ ନୀତିର ଆଶ୍ରୟ ନ ନେଇ ଏଇଟାକୁ ଗୋଟିଏ Select Committeeକୁ ପଠାଇବାର ପ୍ରସ୍ତାବ କଲେ ଭଲ ହୁଅନ୍ତା"। ମୁଁ ସରକାରଙ୍କୁ ଅନୁରୋଧ କରୁଛି ସେପରି ଗୋଟିଏ ପ୍ରସ୍ତାବ କରନ୍ତୁ।

**ଶ୍ରୀ ଶ୍ରଦ୍ଧାକର ସୂପକାର:** ଅଧକ୍ଷ ମହାଶୟ, ଆମର ବ୍ୟବସ୍ଥାସଭାର ସମୟ ତା 1-4-1953 ରିଖରେ ସରିବାର କଥା। ଆମର General Discussion on Budget and Voting on Demands ମଧ୍ୟରେ ଯଦିଓ କେତେକ ବିଲ୍ ପେସ୍ ହୋଇ ଯାଇଥିଲା, ତଥାପି ଶେଷକୁ ଦେଖିଲାବେଳକୁ ଆହୁରି ଅନେକ ବିଲ୍ ବାକି ରହିଯାଇଛି। ସେ ଦୃଷ୍ଟିରୁ Accommodate କରିବା ପାଇଁ ମୋତେ ଯେତେବେଳେ ଅନୁରୋଧ କଲେ ମୁଁ ସେ ସମୟରେ କିଛି କହି ନପାରି ସେଥିରେ ସ୍ୱୀକାର କରିଥିଲି। କାରଣ ମୋର ଧାରଣା ଥିଲା ଯେ ଏଥିରେ ଯେପରି କାମ Progress ହୋଇପାଉ। ମାତ୍ର ମୁଁ ବାରମ୍ବାର ଉପଲବ୍ଧି କରିଛି ଯେ ଦିନକୁ 7 ଘଣ୍ଟା କାମ କରିବାଦ୍ୱାରା ମାନ୍ୟବର ସଭ୍ୟମାନେ ବହୁତ ଅସୁବିଧାରେ ପଡୁଛନ୍ତି। କେନ୍ଦ୍ର ପାର୍ଲ୍ୟାମେଣ୍ଟରେ ପ୍ରାୟ ସାଧାରଣତଃ ଦିନକୁ 5 ଘଣ୍ଟା ବସିବାସ୍ଥଳେ ଏହି ବ୍ୟବସ୍ଥାସଭା 7 ଘଣ୍ଟା ବସାଯାଉଛି। ଏହି ବ୍ୟବସ୍ଥାସଭାର ଦୁଇଥର ବୈଠକ ହେବାଦ୍ୱାରା ଯେ ମାନ୍ୟବର ସଭ୍ୟମାନଙ୍କର ବ୍ୟକ୍ତିଗତ କେତେକ ଅସୁବିଧା ହେଉଛି ତାହାନୁହେଁ, ତାହା ଫଳରେ ବାହାରରେ ବିଭିନ୍ନ ସମ୍ବାଦପତ୍ରମାନଙ୍କରେ ଅନେକ ରକମ ଖବର ବାହାରୁଛି। ସେ ଖବର

ଜନସାଧାରଣ ପର୍ଚ୍ଚି ମନେକରିବେ ଯେ ବ୍ୟବସ୍ଥାସଭାର ସଭ୍ୟମାନେ ସେମାନଙ୍କର କର୍ତ୍ତବ୍ୟ ପ୍ରତି ଯଥେଷ୍ଟ ସଚେତନ ନୁହନ୍ତି । ଏହି ବଜେଟ Session April ପହିଲୁ ସୁଦ୍ଧା ସରି ନଥିଲା, ପୁଣି 1 ତାରିଖରୁ 8 ତାରିଖ ପର୍ଯ୍ୟନ୍ତ ବଢ଼ାଇ ଦିଆଗଲା, ପୁଣି 8 ତାରିଖରୁ 11 ତାରିଖ ଯାଏ ବଢ଼ାଇ ଦିଆଗଲା, ବର୍ତ୍ତମାନ ଗୋଟିଏ No confidence motion ଆସିଥିବାରୁ ବ୍ୟବସ୍ଥାସଭାର ପରିସର ଆଉ 2/3 ଦିନ ପର୍ଯ୍ୟନ୍ତ ବଢ଼ାଇ ଦିଆଗଲା । ଏ ଯେଉଁ ବେଶୀ ଘଣ୍ଟା ବଢ଼ାଇ ଦେବା ଦାୟିତ୍ୱ ଅର୍ଥାତ୍ 7 ଘଣ୍ଟା ବଢ଼ାଇ ଦେବା ଦାୟିତ୍ୱ ମୋ ଉପରେ କିମ୍ବା ସରକାରୀ ଦଳର ନେତାଙ୍କ ଉପରେ ପକାଇ ଦିଆଯାଏ ତାହାହେଲେ, ଅବଶ୍ୟ ଦୋଷ ସ୍ୱୀକାର କରିବାକୁ ହେବ । ତା' ସଙ୍ଗେ ସଙ୍ଗେ ମୁଁ ଏତିକି କହିବାକୁ ବାଧ୍ୟ ହେବି ଯେ ଆମର ଗୋଟିଏ Convention ହୋଇ ସାରିଲାଣି । ଆମର ଯାହା Business ଥିବ ଏବଂ ଯେତିକି Time ରଖା ଯାଇଥିବ ତାକୁ ଥରକୁଥର 2/3 ଦିନ ଲେଖାଏଁ ବଢ଼ାଇ ଦିଆଯାଉଛି । ତାକୁ ସେପରି ନକରି ଥରକେ 10 ଦିନ ପର୍ଯ୍ୟନ୍ତ ବଢ଼ାଇ ଦିଆ ଯାଆନ୍ତା ତାହାହେଲେ Question ଇତ୍ୟାଦି ଦେବାରେ ସୁବିଧା ହୁଅନ୍ତା । ଏହାଦ୍ୱାରା ମାନ୍ୟବର ସଭ୍ୟମାନଙ୍କୁ ମଧ୍ୟ ସୁବିଧା ହୁଅନ୍ତା । ଭେଗଗଇର ମାନ୍ୟବର ସଭ୍ୟ ଯାହା କହିଲେ ଯେ ଏପରି Assembly ବସାଇବାଦ୍ୱାରା ସଭ୍ୟମାନଙ୍କ ଉପରେ ଅତ୍ୟାଚାର କରାଯାଉଛି, ସଭ୍ୟମାନଙ୍କୁ ସେହିପରି ଅସୁବିଧା ପଡୁଥିବାରୁ ସେ ଏକଥା କହିଲେ । କିନ୍ତୁ ସେ Chair ପ୍ରତି ଆକ୍ଷେପ କରି କହିବାର ତାଙ୍କର ଉଦ୍ଦେଶ୍ୟ ନୁହେଁ ।

ଶ୍ରୀ ନିଳକଣ୍ଠ ଦାସ : ସଭାପତି ମହାଶୟ, ଗୋଟିଏ ବିଷୟ ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ, ସରକାର ପକ୍ଷର ଜଣେ ମେମ୍ବର କହିଲେ ଯେ ଯଦି ଛପାଇବାକୁ ହେବ, ତାହାହେଲେ ମାନ୍ୟବର ସଭ୍ୟ ଖର୍ଚ୍ଚ ଦେବେ କି ? ଏଇଭଳିଆ ଗୋଟିଏ କଥା କହିଲେ କି ନାହିଁ ମୁଁ ଜାଣିବାକୁ ଚାହେଁ ।

ଶ୍ରୀ ଶ୍ରଦ୍ଧାକର ସୂପକାର : ମାନ୍ୟବର ଉପାଧ୍ୟକ୍ଷ ମହାଶୟ, ଗତ ଏକବର୍ଷ ମଧ୍ୟରେ କେତେକ ସରକାରୀ ବିଲ୍ ଆଗତ କରିବା ସମୟରେ ପ୍ରସ୍ତାବ ହୋଇଛି ଯେ ଲୋକମତପାଇଁ ପଠାଇ ଦିଆଯାଉ । ବିଶେଷତଃ ଯେତେବେଳେ ଏପରି ପ୍ରସ୍ତାବ ବିରୁଦ୍ଧଦଳର କୌଣସି ମାନ୍ୟବର ସଭ୍ୟ ଆଗତ କରୁଛନ୍ତି ସେହି ସମୟରେ ସରକାରୀ ଦଳ ତରଫରୁ କେବଳ ମନ୍ତ୍ରୀମାନେ ନୁହନ୍ତି ଅନେକ ମାନ୍ୟବର ସଦସ୍ୟ ମଧ୍ୟ ଯେଉଁ ଯୁକ୍ତିର ଅବତାରଣା କରିଥାନ୍ତି ସେହି ଯୁକ୍ତିର ପୁନରାବୃତ୍ତି ଏଠାରେ କରିବା ଉପାଦେୟ ହେବ, କାରଣ ସେସବୁ ଯୁକ୍ତି ଯେ ଏହି ବିଲ୍‌ର ଆଲୋଚନା ହେବା ସମୟରେ କାହିଁକି ପ୍ରଯୁଜ୍ୟ ନହେବ ତହିଁର କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ । ଯେତେବେଳେ କୌଣସି ବିଲକୁ ଲୋକମତପାଇଁ ପଠାଇ ଦିଆଯାଉ ବୋଲି ପ୍ରସ୍ତାବ ଆଗତ କରାଯାଇଥାଏ ସେତେବେଳେ ସରକାରଙ୍କ ତରଫରୁ କୁହାଯାଏ ଯେ ଆମେ ଏ ବ୍ୟବସ୍ଥାସଭାରେ ଯେଉଁ ସଭ୍ୟମାନେ ଅଛୁ ଆମେହିଁ ଲୋକମତର ଗୋଟିଏ ଗୋଟିଏ ପ୍ରତୀକ, ଆମେହିଁ ପ୍ରତ୍ୟେକ ନିର୍ବାଚନମଣ୍ଡଳୀର ଲକ୍ଷ ଲକ୍ଷ ଲୋକଙ୍କର ପ୍ରତିନିଧି ହିସାବରେ ଆସିଥାଉଁ,

ଅତଏବ ଆମରି ମତହିଁ ଲୋକମତ, ତେଣୁ ଆଉ ଲୋକମତପାଇଁ ପଠାଇବା ଦରକାର ନାହିଁ । ଏ ବିଷୟରେ 2ୟ ଯୁକ୍ତି କରଯାଇଥାଏ ଯେ ଲୋକମତପାଇଁ ବିଲ୍ ପଠାଇଦେଲେ ଦୁଇ ତିନି ମାସ କାଳ ବିଳମ୍ବ ହେବ ଏବଂ ଏହି କାଳକ୍ଷେପଣ ନୀତି ଅନୁସରଣ କରିବା ଉଚିତ ନୁହେଁ । ବିଶେଷତଃ କୌଣସି ଗୁରୁତ୍ୱପୂର୍ଣ୍ଣ ବିଲ୍‌ରେ ଏପରି ହେବା ଉଚିତ ନୁହେଁ ।

The DEPUTY SPEAKER : ମାନ୍ୟବର ସଭ୍ୟ କ'ଣ ଲୋକମତପାଇଁ ଯିବା ପ୍ରସ୍ତାବକୁ ବିରୋଧ କରୁଛନ୍ତି ?

ଶ୍ରୀ ଶ୍ରଦ୍ଧାକର ସୂପକାର : ହଁ ମୁଁ ବିରୋଧ କରୁଛି । 3ୟ ଯୁକ୍ତି କରଯାଇଥାଏ, ଯେତେବେଳେ ଏ ବିଲ୍‌ଗୁଡ଼ିକ ସାଧାରଣ ଲୋକମତପାଇଁ ପଠାଯାଇଥାଏ ସେତେବେଳେ ଆମ ଦେଶରେ ଯେଉଁ ଅସଂଖ୍ୟ ଜନତା ଆମର ଯେଉଁମାନେ ଭୋଟର ବା ଜନସାଧାରଣ ବା ଗଣ ଯାହା କୁହନ୍ତୁ, ସେମାନେ ପ୍ରକୃତରେ ଏ ବିଲ୍‌କୁ ପାନ୍ତି ନାହିଁ । ପାଇଥାନ୍ତି କେଉଁମାନେ ନା ଯେଉଁମାନେ Sophisticated, ଯେଉଁମାନେ ଉଚ୍ଚ ଶିକ୍ଷିତ, ଓକିଲ ଶ୍ରେଣୀୟ, ମୁକ୍ତିଆର ଶ୍ରେଣୀୟ ଲୋକେ, ଡାକ୍ତର, Judge, Magistrate, ବ୍ୟବସାୟୀ—କେବଳ ଏହି ଶ୍ରେଣୀୟ ଲୋକମାନଙ୍କ ପାଖକୁ ଲୋକମତପାଇଁ ପଠାଯାଇଥାଏ । ଯେହେତୁ ସେମାନେ ଶିକ୍ଷିତ, ଯାହାକୁ କହନ୍ତି ପାଠୁଆ, ଧୋବଧାବଳିଆ, ଯେଉଁମାନେ କି ଆମର ଦେଶର ଅସଂଖ୍ୟ ଦରିଦ୍ର ଜନତା ସଙ୍ଗରେ ଦୈନନ୍ଦିନ ସମ୍ପର୍କ ରଖନ୍ତି ନାହିଁ ଏବଂ ଆମର ଲକ୍ଷ ଲକ୍ଷ ଜନତାର ଲୋକମତ କ'ଣ ସେ ଲୋକମତକୁ ଯେଉଁମାନେ ପ୍ରତିଫଳିତ କରିପାରନ୍ତି ନାହିଁ, ସେହି ପ୍ରକାର ପାଠୁଆ ଏବଂ ଦରପାଠୁଆ ଲୋକମାନଙ୍କ ପାଖକୁ ପଠା ଯାଇଥାଏ । ସେମାନଙ୍କଠାରୁ ଯେଉଁ ମତ ଆସେ ସେ ମତ ଲୋକମତ ବୋଲି ଧରଯାଇ ନପାରେ ଏବଂ ସେହି ଲୋକମାନଙ୍କଠାରୁ ଆମେ ଏ ବ୍ୟବସ୍ଥାପକସଭାରେ ଯେଉଁ ଶହେଖ୍ରିଶ ଜଣ ସଭ୍ୟ ଥାନ୍ତି ଯାହାଙ୍କୁ କି ଆମର ଏକୋଇଶ ବର୍ଷରୁ ଊର୍ଦ୍ଧ୍ୱ ପ୍ରତ୍ୟେକ ନରନାରୀ ଭୋଟ ଦେଇ ପ୍ରତିନିଧି ହିସାବରେ ପଠାଇଛନ୍ତି, ସେମାନଙ୍କ କଥାର ଗୁରୁତ୍ୱ ଅତି ଅଧିକ । ତେଣୁ ଏହି ପ୍ରକାର ଲୋକମତର କୌଣସି ମୂଲ୍ୟ ନାହିଁ । ଆହୁରି ଯୁକ୍ତି କରଯାଇଥାଏ ଯେ ଆମର କି Machinery ଅଛି ? ଆମେ କି ଉପାୟ ଅବଲମ୍ବନ କରିବା ବା କରିଥାଉଁ ଯେ ଆମେ ଯେଉଁ ବିଲ୍ ଲୋକମତପାଇଁ ପଠାଇବା ସେଥିପାଇଁ ଯେ ଆମର ପ୍ରକୃତ ଜନସାଧାରଣଙ୍କର ଯେଉଁମାନଙ୍କର ପ୍ରତିନିଧି ହିସାବରେ ଏବଂ ଯେଉଁମାନଙ୍କର ରାଜନୈତିକ ନ୍ୟାସ ନେଇ ବା Political Trust ନେଇ ଆମେ ଏ ବ୍ୟବସ୍ଥାପକସଭାରେ ସମବେତ ହୋଇଥାଉଁ, ସେମାନେ କିପରିଭାବରେ ତାଙ୍କର ମତ ଏସବୁ ବିଲ୍‌ମାନଙ୍କ ବିଷୟରେ ବ୍ୟକ୍ତ କରିପାରିବେ ସେଥିପାଇଁ ଆମର କୌଣସି Broad-based Machinery ନାହିଁ । ତେଣୁ ବିଲସବୁ ଲୋକମତପାଇଁ ପଠାଇବା ଆଦୌ ଉଚିତ ନୁହେଁ । କିନ୍ତୁ ଆଜି ଯେତେବେଳେ Table ଘୁରିଯାଇଛି, ଯାହାକୁ ଇଂରେଜିରେ କହନ୍ତି, The table has turned, ସେତେବେଳେ Government come with the proposal for reference of this Bill for eliciting pubblic opinion thereon. ଆଜି ସରକାରୀ ଦଳ ତରଫରୁ, ମନ୍ତ୍ରୀମାନଙ୍କ

ତରଫରୁ ଏବଂ କଂଗ୍ରେସ ଦଳର ପ୍ରଧାନ ସଦସ୍ୟମାନଙ୍କ ତରଫରୁ ଠିକ୍ ଓଲଟା ଯୁକ୍ତି କରାଯାଉଛି, କାଳେ ପୂର୍ବରୁ ଯେଉଁ Rule ସେମାନେ ପ୍ରୟୋଗ କରୁଥିଲେ ସେହି Rule ତାଙ୍କ ବିପକ୍ଷରେ ପ୍ରୟୋଗ କରାଯିବ । ସେଥିପାଇଁ ଆଜି କୁହାଯାଉଛି ଏ ବିଲ୍‌ରେ ଏପରି କେତେଗୁଡ଼ିଏ ମୌଳିକ ସମସ୍ୟା ଅଛି ଯାହାକି ବିନା ଲୋକମତରେ ସମାଧିତ ହୋଇପାରିବ ନାହିଁ । କୁହାଯାଉଛି ଯେ ସରକାର ଏ ବିଷୟରେ କୌଣସି ଶେଷ ସିଦ୍ଧାନ୍ତ କରି ନାହାନ୍ତି, They have kept their minds open ଏବଂ ଯଦି ଜନସାଧାରଣଙ୍କ ତରଫରୁ କୌଣସି ଉପାଦେୟ ସଂଶୋଧନ ପ୍ରସ୍ତାବ ଆସେ, ତାହାହେଲେ ସେଇଟା ଗ୍ରହଣ କରାଯିବ । କିନ୍ତୁ ଯେଉଁ ମୌଳିକ ସମସ୍ୟା ସମାଧାନପାଇଁ ସରକାରଙ୍କ ଦୃଷ୍ଟିକୋଣରୁ ଯାହା ଦିନେ ଅସ୍ୱାଭବିକ ଏବଂ ଅସାଧାରଣ ଥିଲ, ସେହି ପନ୍ଥା ଆଜି ଗ୍ରହଣ କରାଯାଉଛି ଯାହାକି ଅନ୍ୟାନ୍ୟ Bill ବିଷୟରେ ଗ୍ରହଣ କରିବାକୁ ସରକାର ସଂପୂର୍ଣ୍ଣ କୁଣ୍ଠିତ ଥିଲେ । ଏହି ଅସ୍ୱାଭବିକ ଏବଂ ଅସାଧାରଣ ପନ୍ଥା ବିଷୟରେ ସରକାରଙ୍କ ତରଫରୁ ଯେଉଁସବୁ ବାଧା ବା ପ୍ରତିବନ୍ଧକ ଅଛି ବୋଲି ଦେଖା ଯାଉଥିଲା ସେହି ବାଧା ଓ ପ୍ରତିବନ୍ଧକ କିପରି ଏଥିରେ ଏଡ଼ାଇ ଦିଆଯାଇ ପାରିବ ତାର କୌଣସି ଯୁକ୍ତିଯୁକ୍ତ ଉତ୍ତର ଅନ୍ତତଃ ମୁଁ ଶୁଣିନାହିଁ ଏବଂ ଆଶାକରୁଛି ଯେ ସରକାର ତହିଁର କୌଣସି ବନ୍ଦୋବସ୍ତ କରିବେ । ଏହି ବିଲ୍‌ଟି କେବଳ କେତେଜଣ ଓକିଲ, କେତେ ଜଣ ଜଜ୍ ଏବଂ କେତେଗୁଡ଼ିଏ Bar Association ଓ କେତେକ ଧୋବଧାଉଳିଆଙ୍କ ପାଖକୁ ନ ଯାଇ ଦେଶର ଅପାଠୁଆ ଲୋକସାଧାରଣ କିପରି ଏହାକୁ ବୁଝିବାର ସୁଯୋଗ ପାଇବେ ଏବଂ ଏହା କିପରି ଭବରେ Broad-based circulation ହେବ, ତାପାଇଁ କ'ଣ କ'ଣ ସ୍ୱତନ୍ତ୍ର Machinery ର ବନ୍ଦୋବସ୍ତ ସରକାର କରିଛନ୍ତି କହିବେ କି ?

ଶ୍ରୀ ସଦାଶିବ ତ୍ରିପାଠୀ (ମନ୍ତ୍ରୀ) ; ବିରୁଦ୍ଧଦଳର ମାନ୍ୟବର ନେତା ଯାହା କହୁଛନ୍ତି, ମୁଁ ସେ ବିଷୟରେ ଟିକେ କହିଦିଏ । ଏ ସଂପର୍କରେ ପୂର୍ବରୁ ଯେଉଁ list ରହିଥିଲା ସେ ଅନୁସାରେ କେବଳ Bar Association ଓ Judge, Magistrate ମାନଙ୍କ ପାଖକୁ ପଠାଯାଉଥିଲା । ସେ List ବର୍ତ୍ତମାନ ବଦଳିଯାଇଛି ଏବଂ ସେହି ଅନୁସାରେ ଜମିଦାରୀ ଉଚ୍ଛେଦ ଆଇନ ଯେତେବେଳେ ଲୋକମତପାଇଁ ପଠାଯାଇଥିଲା ସେତେବେଳେ ଦେଶରେ ଯେତେକ ରାଜନୈତିକ ଅନୁଷ୍ଠାନମାନେ ଅଛନ୍ତି, ସେ ଅନୁଷ୍ଠାନର ସଭାପତି, ସମ୍ପାଦକମାନଙ୍କ ପାଖକୁ ଏହା ପଠାଇ ଦିଆଯାଇଥିଲା । ତାଛଡ଼ା ଯଦି ଆଉ କୌଣସି ଅନୁଷ୍ଠାନ ରହିଥାନ୍ତି, ସେମାନଙ୍କର ତାଲିକା ଯଦି ମିଳେ କିମ୍ବା କୌଣସି ମାନ୍ୟବର ସଭ୍ୟ ପ୍ରସ୍ତାବ କରନ୍ତି, ତାହେଲେ ନିଶ୍ଚୟ ସେମାନଙ୍କ ପାଖକୁ ପଠାଇ ଦିଆଯିବ । ଏପରିକି ଆବଶ୍ୟକ ହେଲେ 4/5 ଖଣ୍ଡ Copy ମଧ୍ୟ ଦିଆଯିବ । ଜମିଦାରୀ ଉଚ୍ଛେଦ Bill ସଂପର୍କରେ ବିଭିନ୍ନ ରାଜନୈତିକ ଦଳମାନେ ଯେପରି ମତ ଦେବାର ସୁବିଧା ପାଇଥିଲେ ଏ ବିଲ୍ ସମ୍ପର୍କରେ ସେହି ସୁବିଧା ମଧ୍ୟ ପାଇବେ ।

ଶ୍ରୀ ବନମାଳୀ ମହାରଣା : ଦଳମାନଙ୍କୁ ତ ଦିଆଯିବ, ବ୍ୟକ୍ତିବିଶେଷଙ୍କୁ ଦିଆଯିବ କି ନାହିଁ ?

ଶ୍ରୀ ସଦାଶିବ ତ୍ରିପାଠୀ (ମନ୍ତ୍ରୀ) : ଦେଶରେ ଯେତେ ରକମ ରାଜନୈତିକ ଦଳ ଦେଖା ଯାଉଛନ୍ତି, ଯଥା—ଗଣତନ୍ତ୍ର ପରିଷଦ, Socialist Party, Communist Party, ଜନସଙ୍ଘ ପ୍ରଭୃତି ସେମାନଙ୍କୁ ତ ଏହା ଦିଆଯିବ, ତା'ଛଡ଼ା ମାନ୍ୟବର ସଦସ୍ୟମାନଙ୍କ ମନରେ ଯଦି ଥାଏ ଯେ ଏପରି ଆଉ କୌଣସି ଅନୁଷ୍ଠାନ ଅଛନ୍ତି, ଯାହାଙ୍କ ପାଖକୁକି ଏହା ପଠାଯିବା ଉଚିତ, ସେକଥା ଜାଣିଲେ ସେମାନଙ୍କ ପାଖକୁ ମଧ୍ୟ ପଠାଇ ଦିଆଯିବ ।

ଶ୍ରୀ ଶ୍ରଦ୍ଧାକର ସୂପକାର : ମାନ୍ୟବର ରାଜସ୍ୱ ମନ୍ତ୍ରୀ ଯେଉଁ ଯୁକ୍ତି ଉପସ୍ଥାପିତ କଲେ, ଠିକ୍ ସେହି ଯୁକ୍ତି ବିଷୟରେ ମୁଁ କେତେକ Clarification ଚାହୁଁଥିଲି । ସେ କହିଛନ୍ତି ଯେ ଗୋଟିଏ List ଥିଲା, ବର୍ତ୍ତମାନ ସେ List ର ପରିବର୍ତ୍ତନ କରଯାଇଛି ଏବଂ ସେହି ଅନୁସାରେ ବିଭିନ୍ନ ରାଜନୈତିକ ଦଳ ଓ ବିଭିନ୍ନ ସଂଗଠନର ସଭାପତି ଓ ସଂପାଦକମାନଙ୍କ ପାଖକୁ ଏହା ପଠାଇ ଦିଆଯିବ । ସେ List ପରିବର୍ତ୍ତନ କରଯାଇଛି । List ର ପରିବର୍ତ୍ତନ ଯଦି ହେଉଥାଏ ବା ହୋଇଥାଏ, ସେ List ର ପୂର୍ବବର୍ତ୍ତୀ List ରେ........

ଶ୍ରୀ ନୀଳକଣ୍ଠ ଦାସ : ଗେଜେଟ୍‌ରେ Notification କରି କହିବେ କି ଏମାନଙ୍କୁ ଆମେ ଦେଲୁ, ଆଉ ଯଦି କିଏ ଚାହିଁବେ, ଆମକୁ ମାଗିଲେ ଆମେ ଦେବୁ ।

ଶ୍ରୀ ସଦାଶିବ ତ୍ରିପାଠୀ (ମନ୍ତ୍ରୀ) : ମୁଁ ହଠାତ୍ କହିପାରିବି ନାହିଁ । ମୋର ମନେ ହେଉଛି, ଅନେକ ଲୋକ ଗେଜେଟରୁ ଦେଖି ସେମାନଙ୍କର ମତ ଦେଇଥିଲେ ଏବଂ ସରକାର ମଧ୍ୟ ସେସବୁ ମତ ଛପାଇକରି ଦେଇଥିଲେ ।

ଶ୍ରୀ ଶ୍ରଦ୍ଧାକର ସୂପକାର : ସତ୍ୟବାଦୀର ମାନ୍ୟବର ସଭ୍ୟ ବୋଧହୁଏ ମୋ ଯୁକ୍ତି ବୁଝିପାରିଲେ ନାହିଁ । ଯଦି କୌଣସି List ପରିବର୍ତ୍ତନ କରଯାଏ ଏବଂ ପରିବର୍ତ୍ତନ କରି ଯଦି କୁହାଯାଏ ଯେ ପୂର୍ବରୁ ଯେଉଁ List ଥିଲା ସେ List ପରିବର୍ତ୍ତନ କରି ନୂତନ ଗୋଟିଏ List କରିଦେଲେ, ସେଥିରେ ଲୋକମତ ପ୍ରତିଫଳିତ ହୋଇପାରିବ, ତାହେଲେ ଏହି ପନ୍ଥା ପୂର୍ବରୁ ଅନ୍ୟାନ୍ୟ ବିଲ୍‌ମାନଙ୍କ ସଂପର୍କରେ କାହିଁକି ଅବଲମ୍ବନ କରଯାଇ ନଥିଲା, ସେଇଟା ହେଉଛି, ମୋର ବିଶେଷ ପ୍ରଶ୍ନ ।

ଶ୍ରୀ ସଦାଶିବ ତ୍ରିପାଠୀ (ମନ୍ତ୍ରୀ) : ଆଗରୁ ଯେଉଁ list ଥିଲା, ସେ list ପରିବର୍ତ୍ତନ କରି ପରିବର୍ତ୍ତିତ list ଅନୁସାରେ ଜମିଦାରୀ ଉଚ୍ଛେଦ ଆଇନ ସଂପର୍କରେ ଲୋକମତ ଗ୍ରହଣ କରାଯାଇଥିଲା । ବର୍ତ୍ତମାନ ଯେଉଁ ଆଇନ ଲୋକମତ ପାଇଁ ଯିବ, ତାହା ମଧ୍ୟ ସେହି ପରିବର୍ତ୍ତିତ list ଅନୁସାରେ ଯିବ ।

ଶ୍ରୀ ଶ୍ରଦ୍ଧାକର ସୂପକାର : ପରିବର୍ତ୍ତିତ list ବା ଅପରିବର୍ତ୍ତିତ list କଥା ମୁଁ କହୁନାହିଁ । ମୁଁ କହୁଛି ଯେ, ଜମିଦାରୀ ଉଚ୍ଛେଦ ବିଲ୍ ବା ଅଞ୍ଚଳଶାସନ ବିଲ୍, ଏହି ବିଲ୍‌ମାନ ଲୋକମତ ପାଇଁ ପଠାଗଲେ, କାହିଁକି ଧରାଯିବ ଯେ ଏଥିରେ ଯେଉଁସବୁ

ମତାମତ ଆସୁଛି, ତହିଁରେ ଓଡ଼ିଶାର ଜନସଧାରଣଙ୍କର ମତ ପ୍ରତିଫଳିତ ହେଉଛି । କିନ୍ତୁ ଅନ୍ୟାନ୍ୟ ଯେଉଁ ବିଲ୍‌ମାନ, ଯଥା—ଓଡ଼ିଶା ନଦୀ ଜଳ ପ୍ରଦୂଷଣ ଆଇନ ପ୍ରଭୃତି, ଯେତେବେଳେ ଲୋକମତ ପାଇଁ ପଠାଯାଉ ବୋଲି ଦାବୀ ହୁଏ, ସେତେବେଳେ କାହିଁକି କୁହାଯାଏ ଯେ ଆମର ସେପରି କୌଣସି machinery ନାହିଁ । ତେଣୁ ମୋର କ୍ଷୁଦ୍ର ବୁଦ୍ଧିରେ ମୁଁ କେବଳ ଗୋଟିଏ କଥା ଭାବୁଛି ଯେ ଯେଉଁ ସବୁ Billରେ ସଧାରଣ ଲୋକମତ ପ୍ରତିଫଳିତ ନହେଉ ବୋଲି ସରକାର ଉଦ୍‌ଗ୍ରୀବ ଏବଂ ଆକାଂକ୍ଷିତ ଏବଂ ଯେଉଁ ସବୁ ବିଲ୍ ଏହି ବ୍ୟବସ୍ଥାପକ ସଭରେ majority ଦ୍ୱାରା, ସେଇଟା ନ୍ୟାୟ ହେଉ କିମ୍ବା ଅନ୍ୟାୟ ହେଉ, ପାସ୍ କରାଇ ଦେବାକୁ ସରକାର ଚାହାନ୍ତି, ସେ ସମ୍ପର୍କରେ ଲୋକମତ ପାଇଁ ଯାଉ ବୋଲି ପ୍ରସ୍ତାବ ହେଲେ, ସରକାର ତାର ବିରୋଧ କରୁଥାନ୍ତି ଏବଂ ଯେଉଁ ସବୁ ବିଷୟରେ ତାଙ୍କର ଦୃଷ୍ଟିକୋଣରୁ ବିଶେଷ ବିଜ୍ଞାପନ ଦେବା ବା ବିଶେଷ ଭାବରେ advertisement କରିବା ବେଶୀ ଦରକାର ପଡେ, ସେହି ବିଲ୍‌କୁ ଲୋକମତ ପାଇଁ ପଠାଇବା ବିଷୟରେ କେବଳ ଯେ ସେମାନେ କୌଣସି ବାଧା ନ ଦେଇଥାନ୍ତି ତାହା ନୁହେଁ, ସରକାରଙ୍କ ନିଜ ତରଫରୁ ଏଭଳି ବିଲ୍ ଲୋକମତ ପାଇଁ ପଠାଯାଉ ବୋଲି ପ୍ରସ୍ତାବ ଆସେ । ତେଣୁ ମୁଁ କହିବି ଏହି ଯେଉଁ ବିଲ୍ ଅଛି, ଏହାକୁ କେବଳ କେତେ ଜଣ ଧୋବଧାଉଳିଆ Bar Associationର ମେମ୍ବର, କେତେ ଜଣ Magistrate କିମ୍ବା District Judge ଭଳିଆ ଉଚ୍ଚପଦସ୍ଥ ବା କୌଣସି କୌଣସି ଦଳର ସମ୍ବାଦପତ୍ର ସଂପାଦକମାନଙ୍କ ପାଖକୁ ଲୋକମତ ପାଇଁ ପଠାଇ ଅର୍ଥର ଅପବ୍ୟୟ ନକରି ଏହାକୁ Select Committeeକୁ ଦେଲେ ଭଲ ହୁଅନ୍ତା ଅବଶ୍ୟ ମୁଁ ଏହିଟା ଯାହା କହୁଛି ସରକାର ଯେଉଁ ଯୁକ୍ତି ଦେଖାଇଥାନ୍ତି ତା'ର ପୁନରାବୃତ୍ତି କରୁଛି । ତା'ପରେ ଏ ବିଲ୍‌ର ମୌଳିକ ପରିବର୍ତ୍ତନ ଦରକାର । ଏ ବିଲ୍‌ର ସମ୍ବନ୍ଧରେ ଜନସାଧାରଣଙ୍କର ପ୍ରତିକ୍ରିୟା ଦରକାର ପଡୁଛି ଏବଂ ସେଥିପାଇଁ ବିଲ୍ public opinion ପାଇଁ ଯାଉ ବୋଲି ଯୁକ୍ତି ଦେଖାଯାଇଛି । ଆମର ଯେତେସବୁ Bill ଏ ବ୍ୟବସ୍ଥାପକ ସଭରେ ଆଗତ କରାଯାଉଛି, ସେଥିରୁ କେଉଁ କେଉଁ Bill ପ୍ରକୃତରେ ଦେଶର ଶାସନ ନୀତିରେ ମୌଳିକ ପରିବର୍ତ୍ତନ ଆଣିବ ଏବଂ ଯେଉଁ ବିଲ୍ ସେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ସେ ବିଲ୍ ମଧ୍ୟ ମୁଁ ଦେଖୁଛି କେବଳ ସରକାର ଦଳର ସଭ୍ୟମାନଙ୍କର ଦୃଷ୍ଟିକୋଣ, ଅନ୍ୟାନ୍ୟ ସଭ୍ୟମାନଙ୍କ ଦୃଷ୍ଟିକୋଣ ଉପରେ ବିଶେଷ ଭାବରେ ନିର୍ଭର କରୁଛି । Deputy Minister Salaries' Bill ଟା ଆଦୌ ମୌଳିକ ନଥିଲା ଏବଂ River Pollution Prevention Bill ମଧ୍ୟ ମୌଳିକ ନଥିଲା ବୋଲି ଯୁକ୍ତି କରାଯାଇଛି କିନ୍ତୁ ଜମିଦାରୀ ଉଚ୍ଛେଦ ଏବଂ ଅଞ୍ଚଳଶାସନ ବିଲ୍‌ରେ ମୌଳିକ ପରିବର୍ତ୍ତନ ହେବା ବିଷୟରେ କୁହାଯାଇଛି । ଏ ବିଲ୍‌କୁ ଅଧ୍ୟୟନ କଲେ ମୁଁ କହିବି ଯେ ଏଇଟା ହୁଏତ ଆଦର୍ଶବାଦ ଦୃଷ୍ଟିକୋଣରୁ ପ୍ରଶଂସନୀୟ ହୋଇପାରେ । କିନ୍ତୁ ଯେଉଁ ଆଦର୍ଶ ଆମର Land Revenue and Land Tenure Committee Reportରେ ଲେଖା ଯାଇଥିଲା

ଏବଂ ଯେଉଁ ଆଦର୍ଶ ଭରତର ଅନ୍ୟାନ୍ୟ ରାଜ୍ୟମାନଙ୍କରେ ଯେଉଁଠାରେ କି ଏ ପ୍ରକାର ଅଞ୍ଚଳଶାସନ ବା ଗ୍ରାମସଭାଦ୍ୱାରା ସ୍ଥାନୀୟ ସ୍ୱାୟତ୍ତଶାସନ ବ୍ୟବସ୍ଥା ପ୍ରଚଳନ ଅଛି, ତାହା ସହିତ ଏହାକୁ ତୁଳନା କଲେ ଏବଂ ଆମର ବର୍ତ୍ତମାନ ଯେପରି ସ୍ଥାନୀୟ ସ୍ୱାୟତ୍ତଶାସନ ଚାଲିଛି, ତା ତୁଳନାରେ ଏହା କେତେଦୂର ଉନ୍ନତି ପଥରେ ଆମକୁ ଅଗ୍ରସର କରାଇବ ଏ କଥା ଯଦି ଆପଣ ଧୀର ସ୍ଥିର ଭାବରେ ଚିନ୍ତା କରନ୍ତି, ତାହାହେଲେ ଆପଣ ଦେଖିବେ ଯେ ବାସ୍ତବିକ ଏଥିରେ ଆମେ ଭବିଷ୍ୟତ ବିଷୟରେ ଆଶା କରିବାର ପରିସର ଯେତିକି ଅଛି, ନିରାଶ ହେବାର ପରିସର ତହିଁରୁ ଖୁବ୍ ବେଶୀ ଅଛି ବୋଲି ମୋର ମନେ ହୁଏ ।

The SPEAKER : ଏ ବିଲ୍‌ର ପରିସରକୁ ଯଥା ସମ୍ଭବ ବଢ଼ାଇ ଦେବାରେ ବାଧା ନାହିଁ ।

ଶ୍ରୀ ପ୍ରାଣକୃଷ୍ଣ ପରିଜା : ସେ ଆଶାର ପରିସର କଥା କହୁଛନ୍ତି ।

ଶ୍ରୀ ଶ୍ରଦ୍ଧାକର ସୂପକାର : ଅଧ୍ୟକ୍ଷ ମହାଶୟ, ମଧ୍ୟପ୍ରଦେଶରେ ଯେଉଁ ସ୍ଥାନୀୟ ସ୍ୱାୟତ୍ତଶାସନ ଆଇନ ପ୍ରଚଳନ ଅଛି, ସେହିଟାକୁ ଯଦି ଆପଣ ଦେଖିବେ, ସେଠାରେ ଯେଉଁ ଗ୍ରାମସଭା ଏବଂ ଜନପଦ ସଭା ପ୍ରଚଳନ ଅଛି, ତା ସାଙ୍ଗରେ ଯଦି ଏହାକୁ ତୁଳନା କରିବେ, ତାହାହେଲେ ଆପଣ ଦେଖିବେ ଯେ ଏଇଟା ହୁଏତ ସେ ଆଇନର ଏକ କ୍ଷୀଣ ପ୍ରତିଛବି । ତା ପରେ ଆମ ଦେଶରେ ବର୍ତ୍ତମାନ ଯେପରି ଭାବରେ ମ୍ୟୁନିସିପାଲଟି ବା ଜିଲ୍ଲାବୋର୍ଡ ଶାସନର ପ୍ରଚଳନ ଅଛି ଏବଂ ସେଥିରେ ଯେପରି ପ୍ରକୃତ ଗଣତନ୍ତ୍ର ପ୍ରତିଷ୍ଠା ନ ହୋଇ ଗଣତନ୍ତ୍ର ଏବଂ ଏକଛତ୍ରବାଦର ଗୋଟିଏ ସମନ୍ୱୟ କରିବା ଚେଷ୍ଟା କରାଯାଇଛି, ଏ ବିଲ୍‌ରେ ମଧ୍ୟ ସେ ପ୍ରକାର କରିବାକୁ ଚେଷ୍ଟା କରାଯାଇଛି । ଯେଉଁ ମ୍ୟୁନିସିପାଲ ଆଇନ ଆମ ଦେଶରେ ପ୍ରଚଳନ ଅଛି ତାକୁ ultimate analysis ବା ତନ୍ନ ତନ୍ନ କରି ଦେଖିଲେ ଜଣାଯିବ ଯେ ସବୁ ଦାୟିତ୍ୱ ଲୋକପ୍ରତିନିଧିମାନଙ୍କ ହାତରେ ନ୍ୟସ୍ତ ଅଛି । କିନ୍ତୁ ସବୁ କ୍ଷମତା Executive Officerଙ୍କ ହାତରେ ଅଛି । ଜଣକ ହାତରେ କ୍ଷମତା ଏବଂ ଅନ୍ୟ ଜଣକ ଉପରେ ଦାୟିତ୍ୱ । ସରକାରଙ୍କ ଦରମାପ୍ରାପ୍ତ କର୍ମଚାରୀଙ୍କ ହାତରେ କ୍ଷମତା ରହିବା ଫଳରେ ବିଭିନ୍ନ ମ୍ୟୁନିସିପାଲିଟିମାନଙ୍କରେ ଯେଉଁ ବିଭ୍ରାଟ ଦେଖା ଦେଇଛି, ସେ ବିଷୟ ଆପଣ ସ୍ପଷ୍ଟ ଭାବରେ ଅନୁଭବ କରିପାରୁଥିବେ ଏବଂ ଯେଉଁମାନେ ମ୍ୟୁନିସିପାଲିଟି ପରିଚାଳନା ଦାୟିତ୍ୱରେ ଅଛନ୍ତି, ସେମାନେ ମଧ୍ୟ ଅନେକ ସମୟରେ ଏହା ଉପଲବ୍ଧି କରୁଛନ୍ତି । ଏ ସଂପର୍କରେ ସମ୍ବଲପୁର ମ୍ୟୁନିସିପାଲିଟିକୁ ଗୋଟିଏ ଦୃଷ୍ଟାନ୍ତ ଦିଆଯାଇପାରେ । ସେଠାରେ Municipal Councillorମାନଙ୍କୁ କୁଆଡେ ବାଧ୍ୟ କରାଯାଇଥିଲା ଯେ ସେମାନେ ସେମାନଙ୍କର କେତେଗୁଡ଼ିଏ କ୍ଷମତାକୁ Executive Officerଙ୍କ ହାତରେ

ଦେଇ ଦିଅନ୍ତୁ । ଏ ବିଷୟରେ ଯେତେବେଳେ ସମାଲୋଚନା କରଯାଏ ସେତେବେଳେ କୁହାଯାଏ ଯେ ଯେତେଗୁଡ଼ିଏ ପ୍ରିୟ କାର୍ଯ୍ୟ ଅଛି, ସେ ସବୁକୁ Municipal Councillorମାନେ କରିବେ ଏବଂ ଅପ୍ରିୟ କାର୍ଯ୍ୟଗୁଡ଼ିକ Executive Officer କରିବେ । ଏଇଟା ହେଲା ମୂଳ ନୀତି । ଏହା ଫଳରେ ଆମର ଲୋକପ୍ରତିନିଧି Municipal Councillorମାନେ ଅନେକ ଗୁଡ଼ିଏ ଅପ୍ରିୟ କାର୍ଯ୍ୟରୁ ରକ୍ଷା ପାଉଛନ୍ତି । ସେହି ଅପ୍ରିୟ କାର୍ଯ୍ୟଗୁଡ଼ିକ Executive Officerଙ୍କ ମୁଣ୍ଡରେ ଲଦା ଯାଉଛି କିନ୍ତୁ ତା ସଙ୍ଗେ ସଙ୍ଗେ ଏ କଥା ମୁଁ କହିବି ସେ ଏଇଟା ଆମର ଗଣତନ୍ତ୍ର ଶାସନର ଗୋଟିଏ ସବୁଠାରୁ ବଡ଼ anomaly, ଯାହା ଫଳରେ କି ଆମର ଲୋକପ୍ରତିନିଧିମାନଙ୍କର ଯେଉଁ ଦାୟିତ୍ୱ ଏବଂ ଯେଉଁ କର୍ତ୍ତବ୍ୟ ଅଛି ସେ ଦାୟିତ୍ୱ ଏବଂ ସେ କର୍ତ୍ତବ୍ୟ କରିବାରୁ ସେମାନଙ୍କୁ ଯେ ବଞ୍ଚିତ କରାଯାଉଛି, ତାହା ନୁହେଁ । ଏତଦ୍ୱାରା ଆମେ ସମଗ୍ର ଦେଶରେ ଯଦିଓ ଆମେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା କରିବା ମୁଖ୍ୟ ଉଦ୍ଦେଶ୍ୟ ଆମର ଲୋକପ୍ରତିନିଧିମାନଙ୍କ ମଧ୍ୟରେ ଗୋଟିଏ escapist mentality ସୃଷ୍ଟି କରାଯାଉଛି ଏବଂ ସୁପ୍ରତିଷ୍ଠିତ କରିବା ପାଇଁ ଚେଷ୍ଟା କରାଯାଉଛି । ଯେତେବେଳେ ଆମର ଲୋକପ୍ରତିନିଧିମାନଙ୍କୁ ଜନସାଧାରଣ ପଚାରିବେ ଯେ ଏ ଜିନିଷଟା କାହିଁକି ଏପରି ହେଲା ଏବଂ ସେପରି କାହିଁକି ନ ହେଲା, ସେତେବେଳେ ସେମାନେ କହିବେ ଯେ ଆମେ କ'ଣ କରିବୁ । ସବୁ କ୍ଷମତା Executive Officerଙ୍କ ହାତରେ ରହିଲା । ସେଥିରେ ଆମର କହିବାର କ'ଣ ଅଛି । ଠିକ୍ ସେହି ପ୍ରକାର ମନୋବୃତ୍ତି ଆମର ମନ୍ତ୍ରୀମାନେ ଅନେକ ସମୟରେ ଏହି ବ୍ୟବସ୍ଥାପକ ଗୃହ ଭିତରେ ଦେଖାଇଛନ୍ତି ଯେ ଆମର ଯେଉଁ Secretaryମାନେ ଅଛନ୍ତି, ଆମର ଯେଉଁ କର୍ମଚାରୀମାନେ ଅଛନ୍ତି ସେମାନେ କାମ କରି ଯାଉଛନ୍ତି । ଆମେ କେବଳ broad policy ସ୍ଥିର କରିବୁ । ସେମାନେ ଯଦି କୌଣସି କାମ ଖରାପ ବା ଭଲ କରିବେ ସେଟା ସେମାନଙ୍କ ହାତରେ ଛାଡ଼ି ଦେବା ଦରକାର । ଏ ଯେଉଁ ଅଞ୍ଚଳଶାସନ Bill କରାଯାଇଛି ନୀତିଦୃଷ୍ଟିରୁ ମୁଁ ଭାବୁଛି ଏଇଟା ଠିକ୍ ସେହି ରକମ escapist mentality ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଏହା କରାଯାଇଛି । ଅବଶ୍ୟ ଯେଉଁ ଅଞ୍ଚଳଶାସନମାନ ପ୍ରତିଷ୍ଠା ହେବ ସେହି ଅଞ୍ଚଳଶାସନମାନଙ୍କ ଉପରେ ଅନେକ ବିଷୟରେ ଅତି ଗୁରୁତର ବିଷୟମାନ ଦିଆଯିବ, ଯଥା—ଶିକ୍ଷା, ସାଧାରଣ ସ୍ୱାସ୍ଥ୍ୟ, କୃଷିର ଉନ୍ନତି, ରାଜସ୍ୱ ଆଦାୟ ଏବଂ ଜନସାଧାରଣଙ୍କ ସାଧାରଣ ଅବସ୍ଥାର ଉନ୍ନତି ପାଇଁ ଅନେକ ଗୁଡ଼ିଏ ଗୁରୁତର ଦାୟିତ୍ୱ ଏମାନଙ୍କ ଉପରେ ନ୍ୟସ୍ତ କରାଯିବ । କିନ୍ତୁ ତା ସଙ୍ଗେ ସଙ୍ଗେ ପ୍ରତିକ୍ଷେତ୍ରରେ ଏପରି ଗୋଟିଏ officer ରଖାଯିବ, ଯାହା ଫଳରେ କି ବର୍ତ୍ତମାନ ମ୍ୟୁନିସିପାଲିଟିର ଲୋକପ୍ରତିନିଧିମାନେ ବାଙ୍କର କ୍ଷମତାର ସୀମା ମର୍ମେ ମର୍ମେ ଉପଲବ୍ଧି କରୁଛନ୍ତି । ସେହି ପ୍ରକାରେ ଅଞ୍ଚଳଶାସନର ପ୍ରତିନିଧିମାନେ ଯେତେବେଳେ ସଭ୍ୟ ହୋଇ ଆସିବେ ସେମାନଙ୍କର ଦାୟିତ୍ୱ ଓ କ୍ଷମତାର ସୀମା ସ୍ପଷ୍ଟ ଭାବରେ ବୁଝି ପାରିବେ ।

ତାପରେ ଆଉ ଗୋଟିଏ ଗୁରୁତର ବିଷୟ ହେଉଛି ଯେ ଏହି ଅଞ୍ଚଳଶାସନମାନଙ୍କର ଆର୍ଥିକ ଭବିଷ୍ୟତ କଣ ? ଏବଂ ଏମାନଙ୍କର ଆର୍ଥିକ ଭିତ୍ତି କିପରି ଦୃଢ ହେବ ସେ ବିଷୟରେ ମନରେ ଅନେକ ସମୟରେ ସନ୍ଦେହ ହୋଇଥାଏ । ସନ୍ଦେହ ହେବାର କାରଣ ହେଉଛି ଯେ ଆମ ଓଡ଼ିଶାରେ ବର୍ତ୍ତମାନ ଯେଉଁ ଜିଲ୍ଲାବୋର୍ଡମାନ ପରିଚାଳିତ ହେଉଛି ଓ ସେହି ଜିଲ୍ଲାବୋର୍ଡମାନଙ୍କ ପ୍ରତି ସରକାର ଯେପରି ଢୋକେ ପିଇ ଦଣ୍ଡେ ଜୀଇଁ ନୀତି ଅବଲମ୍ବନ କରି ବର୍ଷକୁ ବର୍ଷ ଋଣ ଦେଇ ଚାଲିଛନ୍ତି, ଯାହା ଫଳରେ କି ବିଭିନ୍ନ ଜିଲ୍ଲା ବୋର୍ଡମାନ ଅନେକ ସମୟରେ କିଂକର୍ତ୍ତବ୍ୟବିମୂଢ ହୋଇ ଆର୍ଥିକ ଅନାଟନ ଘଟିଲେ ସରକାରଙ୍କ ଦୟା ଉପରେ ନିର୍ଭର କରନ୍ତି, ସେହି ପ୍ରକାର ଅବସ୍ଥା ଏ ଅଞ୍ଚଳମାନଙ୍କର ନହେବ ତାର କୌଣସି ନିଶ୍ଚୟତା ମୁଁ ଦେଖିପାରୁ ନାହିଁ । ତେଣୁ ଯଦି ଏହି ସବୁ ଅଞ୍ଚଳସଭମାନଙ୍କର ଆର୍ଥିକ ଭିତ୍ତି ଦୃଢ ନହୁଏ ଏବଂ ଯଦି ଏହି ଅଞ୍ଚଳଶାସନମାନ ସରକାରଙ୍କ ସାହାଯ୍ୟ ଓ ଦୟା ଉପରେ ପୂରାପୂରି ନିର୍ଭରଶୀଳ ହେବାକୁ ବାଧ୍ୟ ହୁଅନ୍ତି, ତାହେଲେ ମୁଁ ଭାବୁଛି ଏ ଯେଉଁ ଗଣତନ୍ତ୍ର ପ୍ରତିଷ୍ଠା ଓ ବିକାଶ ପାଇଁ ଏ Bill କରାଯାଇଛି ଏବଂ ଯେଉଁ Local Self-Governmentର Reorientation କରିବା ପାଇଁ ଗୋଟିଏ ନୂତନ ରୂପ ଦେବାପାଇଁ କଳ୍ପନା କରାଯାଇଛି, ସେହି କଳ୍ପନା ହୁଏତ ବ୍ୟର୍ଥ ହୋଇଯିବ । ତାପରେ ଏ ବିଷୟରେ ଯେତେବେଳେ Land Tenure and Land Revenue Committeeର report ପ୍ରଥମେ ବାହାରିଲା ଏବଂ ଠିକ୍ ତାରି ପରେ ଯେତେବେଳେ ଓଡ଼ିଶାର ଜମିଦାରୀ ଉଚ୍ଛେଦ ବିଲ୍‌ଟି ପ୍ରଥମେ ଉପସ୍ଥାପିତ କରାଗଲା, ସେ ସମୟରେ ଆଲୋଚନା ପ୍ରସଙ୍ଗରେ ମୁଁ କେତେକ ମନ୍ତବ୍ୟ ପ୍ରକାଶ କରିଥିଲି । ସେ ମନ୍ତବ୍ୟର ପୁନରାବୃତ୍ତି ଏଠାରେ ବୋଧହୁଏ ଅପ୍ରାସଙ୍ଗିକ ହେବନାହିଁ । ଅଧ୍ୟକ୍ଷ ମହାଶୟ, ଆପଣ ଜାଣିଥିବେ ଯେ 1944 ମସିହାରେ ଓଡ଼ିଶାରେ ଗ୍ରାମ ପଞ୍ଚାୟତ Bill ପାସ ହେଲା ଏବଂ ସେଟା ଆମ ପୁରପଲ୍ଲୀରେ କିପରି କାର୍ଯ୍ୟକାରୀ ହେବ ଏବଂ ଆମର ପୁରପଲ୍ଲୀର ଜନସାଧାରଣ କିପରି ସେମାନଙ୍କ ଗ୍ରାମ୍ୟ ଶାସନ, ସାଧାରଣ ଅନୁଷ୍ଠାନମାନଙ୍କ ଶାସନ କିପରି ନିଜେ ପରିଚାଳନା କରିବେ, କିପରି ଭାବରେ ଗାଁର ମଳିମୁଣ୍ଡିଆ ନିଜେ ନିଜଦ୍ୱାରା ଶାସିତ ହେବେ, ଏହି ଉଦ୍ଦେଶ୍ୟରେ 1950 ମସିହା January ମାସରେ ଆମର Constitution ଭାରତର ଶାସନବିଧାନ ପରିଚାଳନା ହେବା ଠିକ୍ କେତେଦିନ ପୂର୍ବରୁ ଆମର ଜମିଦାରୀ ଉଚ୍ଛେଦ ବିଲ୍ ଆଗତ ହେଲା ଏବଂ ଠିକ୍ ସଙ୍ଗେସଙ୍ଗେ ଆମ ଓଡ଼ିଶା Local Self-Government Act, ଜିଲ୍ଲାବୋର୍ଡ ପରିଚାଳନା ଆଇନ ସେ ବର୍ଷ ପାସ୍ ହେଲା । ସେ ସମୟରେ ମୁଁ କହିଥିଲି ଯେ ଆମେ ଜମିଦାରୀ ଉଚ୍ଛେଦ ସହ ଯଦି ସ୍ୱାୟତ୍ତଶାସନକୁ ଉନ୍ନତ ରୂପରେଖ ଦେବାକୁ ଚାହୁଁ, ପଞ୍ଚାୟତକୁ ଅଧିକ ପ୍ରତିନିଧିମୂଳକ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ହାତରେ ଅଧିକ କ୍ଷମତା ଦେବାକୁ ଚାହୁଁ, ଏହି ସ୍ଥାନୀୟ ସଭମାନଙ୍କୁ ଏହି ଜମିଦାରୀ ବା ରାଜସ୍ୱ ବିଭାଗର ଶାସନର କେତେକାଂଶ ସେମାନଙ୍କ ଉପରେ ନ୍ୟସ୍ତ କରିବାକୁ ଚାହୁଁ, ତା ସଙ୍ଗେସଙ୍ଗେ

ଜିଲ୍ଲାବୋର୍ଡ ବା ମ୍ୟୁନିସିପାଲିଟି କର୍ତ୍ତୃତ୍ୱ ଥିବା ସମସ୍ତ ଦାୟିତ୍ୱ, ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତାଘାଟ, ଜଳସେଚନ ଏବଂ ହାଟ ଇତ୍ୟାଦି control କରିବା ଭାର ଆମେ ସ୍ଥାନୀୟ ପଞ୍ଚାୟତ ଅର୍ଥାତ୍ ଲୋକପ୍ରତିନିଧିମାନଙ୍କ ହାତରେ ଦେବାକୁ ଚାହୁଁ, ତାହାହେଲେ ଆମମାନଙ୍କୁ ଏହିପରି ଅସଂଶ୍ଳିଷ୍ଟ unconnected କେତେଗୁଡ଼ିଏ ଆଇନ କରିଦେଲେ ପରେ ଆମେ କେତେକ ଅସୁବିଧାରେ ପଡ଼ିଯିବାର ସମ୍ଭାବନା ରହିଛି ବୋଲି ମୁଁ କହିଥିଲି । ସେହି ସମୟରେ ଜିଲ୍ଲାବୋର୍ଡ, Local Self-Government Bill ଆଲୋଚନା ହେଉଥିବେଳେ ମଧ୍ୟ ମୁଁ ଏହି ଗୃହରେ ସମାଲୋଚନା କରିଥିଲି ଯେ ଯଦି ଏହାର reorientation କରିବାକୁ ଆମେ ଚାହୁଁ, ଆମର ଗ୍ରାମସଭକୁ ପୁନର୍ଗଠନ କରିବାକୁ ଚାହୁଁ ସେମାନଙ୍କ ହାତରେ ସ୍ଥାନୀୟ ସ୍ୱାୟତ୍ତଶାସନ ପୂର୍ଣ୍ଣ କ୍ଷମତା ଦେବାକୁ ଚାହୁଁ, ଆମେ ଯଦି ଶାସନର ବିକେନ୍ଦ୍ରୀକରଣ ଚାହୁଁ, ଆମେ ଯଦି ଅମଲାତନ୍ତ୍ର ଶାସନ ବା centralised ଶାସନ ଲୋପ କରିବାକୁ ଚାହୁଁ, ତାହାହେଲେ ଆମେ ଏହିପରି ସୁସଂଶ୍ଳିଷ୍ଟ Bill କରିବାକୁ ହେବ ଯଦ୍ୱାରା କି ଗ୍ରାମ ପଞ୍ଚାୟତ ରହିବ, ଜିଲ୍ଲାବୋର୍ଡ ରହିବ, ମ୍ୟୁନିସିପାଲିଟି ରହିବ, ପ୍ରତିନିଧିମୂଳକ ଅଞ୍ଚଳଶାସନ ପରିଚାଳିତ ହେବ । କିନ୍ତୁ ସେ ସମୟରେ ଆମେ ଅନ୍ୟାନ୍ୟ ରାଜ୍ୟମାନଙ୍କରେ ପ୍ରଚଳିତ ଥିବା ଆଇନମାନଙ୍କ ଛାଞ୍ଚରେ Municipality Bill ଓ ଜିଲ୍ଲାବୋର୍ଡ ବିଲ୍ ପାସ୍ କଲୁ । ଆପଣ ଜାଣିଥିବେ ଯେ ଜିଲ୍ଲାବୋର୍ଡ ଆଇନ 1950 ସାଲରେ ପାସ୍ ହେଲା ଏବଂ ଆଜିପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ହୋଇନାହିଁ ଏବଂ ଭବିଷ୍ୟତରେ ମଧ୍ୟ ତାହା କାର୍ଯ୍ୟକାରୀ ହେବ ନାହିଁ, ଏ କଥା ସୁନିଶ୍ଚିତ । କାରଣ ଏ ଯେଉଁ ଅଞ୍ଚଳଶାସନ ବିଲ୍ ହେଉଛି ଏଥିରେ ଜିଲ୍ଲାବୋର୍ଡ ସମସ୍ତ function କୁ ଅଞ୍ଚଳଶାସନ ଅଧୀନରେ ଦେଇ ଦିଆଯିବ । ଯଦି ଏଇଟା କଳ୍ପନାରେ ଥିଲା ତେବେ ଏତେ ପରିଶ୍ରମ କରି Select Committee କରି ଏ ପ୍ରକାର ଗୋଟିଏ Orissa Local Government Act, 1950ରେ ପାସ୍ କରିବାର ଆଦୌ ପ୍ରୟୋଜନୀୟତା ନଥିଲା । ତା'ପରେ ଏ ଯେଉଁ ଜମିଦାରୀ ଉଚ୍ଛେଦ ହେଲା, ଜମିଦାରୀ ସବୁର ପରିଚାଳନା ଭାର ଅଞ୍ଚଳ ଅଧିକାରୀଙ୍କ ହାତରେ ନ୍ୟସ୍ତ ହେଲା ଏବଂ ଯେପରି ପୂର୍ବତନ ଗଡ଼ଜାତ ଅଞ୍ଚଳମାନଙ୍କରେ ରାଜାମାନଙ୍କୁ ତଡ଼ି ଦିଆଯାଇ ତାଙ୍କ ବଦଳରେ ଯେଉଁମାନଙ୍କୁ Administrator ନିଯୁକ୍ତ କରାଗଲା, ସେମାନଙ୍କୁ ଦେଶର ଅପାଠୁଆ ଲୋକେ ନୂଆ ରାଜା ବୋଲି ସମ୍ବୋଧନ କଲେ, ସେହିପରି ଜମିଦାରୀ ଉଚ୍ଛେଦ ପରେ ଯେଉଁ ସବୁ ଅଞ୍ଚଳଅଧିକାରୀମାନଙ୍କୁ ନିଯୁକ୍ତ କରାଗଲା, ସେଠାରେ ଏପରି ଗୋଟିଏ void ସୃଷ୍ଟି କରିଛି ଯେ ଆମେ ଯଦି ସେହି ଅଞ୍ଚଳଅଧିକାରୀମାନଙ୍କୁ ନୂଆ ଜମିଦାର ବୋଲି ସମ୍ବୋଧନ କରୁ ତାହାହେଲେ ସେଇଟା ଅତି appropriate ହେବ ବୋଲି ମୋର ମନେ ହେଉଛି । ସାଧାରଣ ଶାସନ, ରାସ୍ତାଘାଟ, ସ୍କୁଲ, ହାସପାତାଲ, ରାଜସ୍ୱ ଏବଂ ପଞ୍ଚାୟତ ବିଚାର ଇତ୍ୟାଦି ଗୋଟିଏ ସର୍ବାଙ୍ଗୀନ ଏବଂ ସାର୍ବଜନୀନ ଶାସନପ୍ରଣାଳୀର ଯେଉଁ ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ସେଇଟା ଆମେ କିପରି ହାସଲ କରି ପାରିବା

ଭବରେ କହିବାକୁ ଯାଉଥାଇ ସେ ବିଷୟରେ ମୁଁ ବର୍ତ୍ତମାନ କିଛି ଆଲୋଚନା କରିବାକୁ ଚାହୁଁ ନାହିଁ । ଏଇଟା ଯେତେବେଳେ Public Opinionରୁ ଫେରି ଆସିବ ବା Select Committee ଦ୍ୱାରା ସଂଶୋଧିତ ହୋଇ ଫେରି ଆସିବ ସେତେବେଳେ ଏହିସବୁ ଆଇନର ତୁଳନାମୂଳକ ସମାଲୋଚନା କରି ମୁଁ ଏସବୁ ବିଷୟରେ ଆଲୋଚନା କରିବାର ଅବକାଶ ପାଇବି । ତେଣୁ ମୁଁ ଭାବୁଛି ଯେ ସରକାର ପୂର୍ବରୁ ଯେଉଁ ନୀତି ଘୋଷଣା କରିଛନ୍ତି, Public Opinion ପାଇଁ ନ ପଠାଇ କାଳକ୍ଷେପଣ ନୀତିର ଆଶ୍ରୟ ନ ନେଇ ଏଇଟାକୁ ଗୋଟିଏ Select Committeeକୁ ପଠାଇବାର ପ୍ରସ୍ତାବ କଲେ ଭଲ ହୋଇଥାନ୍ତା । ମୁଁ ସରକାରଙ୍କୁ ଅନୁରୋଧ କରୁଛି ସେପରି ଗୋଟିଏ ପ୍ରସ୍ତାବ କରନ୍ତୁ ।

## ଶିଳ୍ପ ଓ ଯୋଗାଣ ଏବଂ ଶିଳ୍ପ ବିକାଶ କ୍ଷେତ୍ରରେ ମୂଳଧନ ବିନିଯୋଗ

ଓଡ଼ିଶା ବିଧାନସଭାରେ 1953 ମାର୍ଚ୍ଚ 19 ତାରିଖରେ ଶିଳ୍ପମନ୍ତ୍ରୀ ଶ୍ରୀ କିଶୋର ଚନ୍ଦ୍ର ଦେଓ ଭଂଜ ପ୍ରାୟ 20 ଲକ୍ଷ ଟଙ୍କାର ଅର୍ଥ ବରାଦକୁ ପାସ କରିବାକୁ ଅନୁରୋଧ କରିଛନ୍ତି । ବାଚସ୍ପତି ମଧ୍ୟ ଏହାକୁ ଅନୁମୋଦନ କରିଛନ୍ତି ଏବଂ ରାଜ୍ୟପାଳ ଏଥିପାଇଁ ସୁପାରିଶ କରିଛନ୍ତି । ଶ୍ରଦ୍ଧାକର ବିରୋଧୀ ଦଳ ନେତା ଭାବରେ କେବଳ ନୁହେଁ ରାଜ୍ୟର ଜଣେ ବୁଦ୍ଧିଜୀବୀ ନାଗରିକ ଭାବରେ ରାଜ୍ୟର ଶିଳ୍ପ ବିକାଶ ପାଇଁ ଖୁବ୍ ଆଗ୍ରହ ପ୍ରକାଶ କରିଛନ୍ତି । କିନ୍ତୁ ସରକାରୀ ସ୍ତରରେ ଯେପରି ଦୁର୍ନୀତି ଓ ଖାମଖିଆଲି ପ୍ରକାଶିତ ହେଉଛି ସେଥିରେ ସେ ନିରାଶ ହୋଇପଡ଼ିଛନ୍ତି ଏବଂ ଏହି ଖର୍ଚ୍ଚ ଦାବୀକୁ ମାତ୍ର ଏକ ଟଙ୍କାକୁ କମାଇ ଦିଆଯାଉ ବୋଲି କାଟ ପ୍ରସ୍ତାବ ଆଣିଛନ୍ତି । ସେ କହିଛନ୍ତି (ମାର୍ଚ୍ଚ 1953), "ଆମ ରାଜ୍ୟର ଏହି ଶିଳ୍ପ ବିଭାଗ ବିଷୟ ଦେଖିଲେ ବୈରାଗ୍ୟ ଜାତ ହୁଏ । କାହିଁକି ନା ପ୍ରଥମରୁ ଆପଣ ଦେଖିବେ ଯେ, ଆମର ଗୋଟିଏ Industrial Policy ନିର୍ଦ୍ଦିଷ୍ଟ ନୀତି ବା ଯୋଜନା ବୋଲି କିଛି ନାହିଁ ଏବଂ ଏ ବିଷୟରେ ଆମେ ଯେଉଁପରି ଭାବରେ ଅଗ୍ରସର ହେଉଥାଇଁ, ସେହିପରି ଭାବରେ ଆମେ ଆମର ଦେଶକୁ ଶିଳ୍ପଦିଗରେ କିପରି ଭାବରେ ଅଗ୍ରସର କରି ପାରିବା ସେ ବିଷୟରେ କୌଣସି ଆଶାର ସୂଚନା ନାହିଁ ।" ବରଂ କ୍ରମେ ଅନ୍ୟ ରାଜ୍ୟଗଡ଼ିକ ତୁଳନାରେ ଆମ ରାଜ୍ୟ ପଶ୍ଚାତଗାମୀ ହେଉଛି ବୋଲି ସେ ଦୁଃଖ ପ୍ରକାଶ କରି ସାଂପ୍ରତିକ ଶିଳ୍ପ କ୍ଷେତ୍ରରେ କିପରି ଦୋଷତ୍ରୁଟି ପରିଲକ୍ଷିତ ହେଉଛି, ସେଗୁଡ଼ିକ ପ୍ରତି ସେ ଅଂଗୁଳି ନିର୍ଦ୍ଦେଶ କରିଛନ୍ତି । Industrial Housing Scheme, Orissa Textile Mills, Cold Storage Plant, Industrial School, Orient Paper Mill ଆଦି ବିଭିନ୍ନ ପ୍ରସଂଗରେ ବହୁ ରୂପକାର ଦୁର୍ନୀତି, ଅପବ୍ୟୟ, ଉଦାସୀନତା, ଅବହେଳା, ନିଷ୍ଠାର ଅଭାବ ଆଦିର ଦୃଷ୍ଟାନ୍ତ ଦେଇଛନ୍ତି । ସେ ଦୂରଦୃଷ୍ଟି ସହିତ ଗୋଟିଏ Steel Plant ଓ ଗୋଟିଏ Ferro Manganese Factory ପ୍ରତିଷ୍ଠିତ ହେବା ଦରକାର ବୋଲି କହି କେନ୍ଦ୍ର ସରକାରଙ୍କଠାରେ ଚାପ ପକାଇବା

ଉଚିତ ବୋଲି ପରାମର୍ଶ ଦେଇଛନ୍ତି । ରାଜ୍ୟରେ Handloom Industry କିପରି ଦିନକୁ ଦିନ ଅକର୍ମଣ୍ୟ ଓ ଅଧୋଗତିର ଶିକାର ହେଉଛି ତାହା ମଧ୍ୟ ସୂତ୍ରଭ ଯଥାର୍ଥରେ କହିଛନ୍ତି, "ଏହାର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ଓ ଯୋଜନା ନଥିବା ଯୋଗୁଁ ପଣ୍ଡିତ ନୀଳକଣ୍ଠ ଦାସଙ୍କ କହିବା ଅନୁସାରେ ଏହା ଗୋଟିଏ ଚରଖା ବିଭାଗ ବୋଲି ଆଖ୍ୟା ଦିଆଯାଇପାରେ ।"

## Industries and Supplies and Capital outlay on Industrial Development

Shri KISHORE CHANDRA DEO BHANJ: Sir, I beg to move that the Assembly do assent to a demand of Rs. 19,20,866 to defray the charges which will come in course of payment during the year ending the 31st of March 1954, in respect of the head "Industries and Supplies and Capital Outlay on Industrial Developments".

This Appropriation has the recommendation of the Governor.

The SPEAKER: Motion moved that the Assembly do assent to a demand of Rs. 19,20,866 to defray the charges which will come in course of payment during the year ending the 31st of March 1954 in respect of the head "Industries and Supplies and Capital Outlay on Industrial Developments."

This appropriation has the recommendation of the Governor.

The SPEAKER: All the cut-motions tabled except cut-motion No. 276 are moved.

Shri SHRADDHAKAR SUPAKAR: ମାନ୍ୟବର ସଭାପତି ମହାଶୟ, ଏ ଖର୍ଚ୍ଚ ଦାବୀରେ ଯେତେ ଟଙ୍କା ଦେବାପାଇଁ ପ୍ରସ୍ତାବ ଆଗତ କରାଯାଇଛି, ତାକୁ ଏକ ଟଙ୍କାକୁ କମାଇ ଦିଆଯାଉ ବୋଲି ମୁଁ ପ୍ରସ୍ତାବ କରୁଛି । ଆମ ରାଜ୍ୟର ଏହି ଶିଳ୍ପ ବିଭାଗ ବିଷୟ ଦେଖିଲେ ମନରେ ଘୋର ବୈରାଗ୍ୟ ଜାତ ହୁଏ କାହିଁକି ନା ପ୍ରଥମରୁ ଆପଣ ଦେଖିବେ ଯେ, ଆମର ଗୋଟିଏ Industrial Policy ନିର୍ଦ୍ଦିଷ୍ଟ ନୀତି ବା ଯୋଜନା ବୋଲି କିଛି ନାହିଁ ଏବଂ ଏ ବିଷୟରେ ଆମେ ଯେଉଁପରି ଭାବରେ ଅଗ୍ରସର ହେଉଥାଇଁ, ସେହିପରି ଭାବରେ ଆମେ ଆମର ଦେଶକୁ ଶିଳ୍ପ ଦିଗରେ କିପରି ଭାବରେ ଅଗ୍ରସର କରିପାରିବା ସେ ବିଷୟରେ କୌଣସି ଆଶାର ସୂଚନା ନାହିଁ । ବରଂ ଦେଖାଯାଉଛି ଦିନୁଦିନ ଅନ୍ୟ ରାଜ୍ୟମାନେ ଯେତିକି ଶିଳ୍ପ ଦିଗରେ ଅଗ୍ରସର ହେଉଛନ୍ତି

ଆମ୍ଭେମାନେ ଯେତିକି ଶିଳ୍ପ ଉନ୍ନତି ବିଷୟରେ ପଛାଉଥାଇ । ତାହା ଫଳରେ ଆମ ରାଜ୍ୟ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ପଛେଇ ଯାଉଛି । ଏହାର ଗୋଟିଏ ସାମାନ୍ୟ ପ୍ରମାଣ ଏହି ଯେ ଆପଣ ଯଦି ଏ ବିଭାଗରେ କେତେ ଖର୍ଚ୍ଚ ହେଉଛି ଏବଂ କେତେ ଆଦାୟ ହେଉଛି, ଗତ 3/4 ବର୍ଷର ଆୟ ଏବଂ ବ୍ୟୟ ତୁଳନା କରିବେ ତାହାହେଲେ ସେଥିରୁ ସ୍ପଷ୍ଟ ବୁଝିପାରିବେ ଏହି ବିଭାଗକୁ, Industrial Departmentକୁ ଅନେକେ ଗୋଟିଏ School of Scandals ବୋଲି ଆଖ୍ୟା ଦେଇଥାନ୍ତି ଏବଂ ଏ କଥା ଯେ ଆଂଶିକ ଭାବରେ ସତ୍ୟ ଏଥିରେ ସନ୍ଦେହ ନାହିଁ । କାହିଁକି ନା ଏହି ବିଭାଗରେ ଅନ୍ୟାନ୍ୟ ବିଭାଗ ତୁଳନାରେ ଅନେକଗୁଡ଼ିଏ Corruption ରହିଥିବାର ଜଣାଯାଉଛି ଏବଂ ଅନେକଗୁଡ଼ିଏ କଥା ଏହି ବିଭାଗ ବିପକ୍ଷରେ ବାରମ୍ବାର ଶୁଣାଯାଏ । ମୁଁ ଏ ବିଷୟରେ ବିସ୍ତୃତ ଭାବରେ କିଛି କହିବାକୁ ଯାଉନାହିଁ । ସାମାନ୍ୟ କେତୋଟି କଥା ପ୍ରତି ଆପଣଙ୍କର ଏବଂ ବିଭାଗୀୟ ମନ୍ତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରିବି ।

ପ୍ରଥମରୁ Industrial Housing Scheme କଥା ଧରଯାଉ । ଆପଣ ଜାଣିଥିବେ ରାଜଗାଙ୍ଗପୁର Cement Factory ଏବଂ Orissa Textile Mills. ଏହି ଦୁଇ କଳ ମାଲିକଙ୍କୁ କେତେକ ଲକ୍ଷ ଟଙ୍କା ଦିଆଯାଇଥିଲା ଏବଂ ଏହି ଟଙ୍କା ବାବଦରେ C.I.D. ଏନକ୍ୱାରୀ ହୋଇଥିଲା ଏବଂ ଆମର ବିଭାଗୀୟ କର୍ତ୍ତୃପକ୍ଷ ଓ ଉକ୍ତ ମିଲ୍ ମାଲିକ ମଧ୍ୟରେ ଆଦାନପ୍ରଦାନ ହୋଇଥିବା କେତେକ ଚିଠିର ଫଟୋ ନିଆ ଯାଇଥିବା ଗୁଜବ ଶୁଣାଯାଉଛି । ଏ ସମ୍ପର୍କରେ ତଥ୍ୟ କ'ଣ କ'ଣ ହୋଇଛି ଏବଂ ଶିଳ୍ପ ବିଭାଗ ପ୍ରକୃତରେ କ'ଣ ଏପରି କାର୍ଯ୍ୟ କରିଛନ୍ତି ଇତ୍ୟାଦି ବିଷୟରେ ସରକାର ଯଦି ଗୋଟିଏ statement ଦିଅନ୍ତେ ତାହାହେଲେ ଲୋକସାଧାରଣ ଉପକୃତ ହେବେ । ଏ Industrial Housing Scheme ବାବଦରେ ଆଉ ଗୋଟିଏ କହିବାର ଅଛି ଯେ ଏଥିରେ ଯେଉଁ ଶିଳ୍ପ ଅନୁଷ୍ଠାନମାନଙ୍କୁ ଋଣ ହିସାବରେ ଟଙ୍କା ଦିଆଯାଏ ତାଙ୍କୁ ସ୍ୱାଚ୍ଛନ୍ଦ୍ୟ ବା ପୂର୍ଣ୍ଣ କର୍ତ୍ତୃତ୍ୱ ଦିଆଯାଏ । ସେଥିରେ ଯେଉଁ କେତେକ ନିର୍ଦ୍ଦିଷ୍ଟ ନିୟମ ଅଛି ତାହା ସେମାନେ ପାଳନ କରୁଛନ୍ତି କି ନାହିଁ ତାହା ଦେଖିବାର ଦାୟିତ୍ୱ ଆମ ଶିଳ୍ପ ବିଭାଗ ଉପରେ ନ୍ୟସ୍ତ ଅଛି । କିନ୍ତୁ ଶୁଣାଯାଉଛି ସରକାର ଟଙ୍କା ଦେଇ ଖଲାସ ଏବଂ ଯେଉଁ ଘରଗୁଡ଼ିକ ତିଆରି ହେଉଛି ତାହା କିପରି ଭାବରେ ହେଉଛି, ତାହାର ଯାହା ପ୍ରଧାନ ଉଦ୍ଦେଶ୍ୟ ଯେ ମଜୁରୀଆମାନଙ୍କର ରହିବାର ଉପଯୋଗୀ ଘର ହେବା ଦରକାର, ସେ ଦିଗରେ ସେ ଶିଳ୍ପ ଅନୁଷ୍ଠାନ ଠିକ୍ ଭାବରେ କାମ କରୁଛନ୍ତି କି ନାହିଁ ସେଥିପ୍ରତି ଦୃଷ୍ଟି ଦିଆଯାଇନାହିଁ । ଶୁଣାଯାଉଛି Orissa Textile Millsରେ ଯେତେ ଘର ତିଆରି ହୋଇଛି କୁଆଡ଼େ କାଳ କାଠରେ କବାଟ ଇତ୍ୟାଦି ତିଆରି ହୋଇଛି ଏବଂ ଯେଉଁ 25 ବର୍ଷ ମଧ୍ୟରେ ଋଣ ପରିଶୋଧ କରି ଦେବାର କଥା ସେ ପର୍ଯ୍ୟନ୍ତ ଏ ଘରଗୁଡ଼ିକ ତିଷ୍ଠିବ କି ନାହିଁ ସେ ବିଷୟରେ ସନ୍ଦେହ ପ୍ରକାଶ କରଯାଉଛି ।

ତାହାପରେ Cold Storage Plant କଥା କହିବି । ଏହା ଯେତେବେଳେ ଅଣାଗଲା, ସେଥିରୁ ଆଶାକରଯାଉଥିଲା ଯେ ଆମ ସରକାର ବିଶେଷ ଭାବରେ ଲାଭ କରିପାରିବେ । ଏଥିରେ ଲାଭ ହେଉଛି କି କ୍ଷତି ହେଉଛି ମୁଁ ଶୁଣୁଛି ଯେ ବିଭାଗୀୟ କର୍ମଚାରୀମାନେ ବରାବର ଚେଷ୍ଟା କଲେ ଯେପରି ବର୍ଷକୁ ବର୍ଷ ଏହାର କ୍ଷତି ଦେଖାଯିବ । ଯାହା ଫଳରେ ସରକାର କହିବେ ଯେ ଏପରି ଗୋଟିଏ କ୍ଷତିଜନକ ଜିନିଷ ଆମ ହାତରେ ରଖିବାର କଥା ନୁହେଁ । କୌଣସି Private ଲୋକଙ୍କ ହାତକୁ ଦିଆଯାଉ । ମୁଁ ଶୁଣି ଖୁସି ହେଲି ଯେ ଏହା ବର୍ତ୍ତମାନ ଶିଳ୍ପ ବିଭାଗ ହାତରୁ କୃଷି ବିଭାଗ ହାତକୁ ଯାଇଛି ଏବଂ ଆଶାକରଯାଉଛି ଏହା ଉପଯୋଗୀ କରାଯାଇପାରିବ । ଏହିପରି ସରକାରୀ ହାତରୁ Private ହାତକୁ ଟାଣିନେବାର ଚେଷ୍ଟା ଓ ବ୍ୟବସ୍ଥା ଯେ କେବଳ ଏହି Cold Storage Plantରେ ହୋଇଛି ତାହା ନୁହେଁ । ଶୁଣାଯାଉଛି ଟିଟିଲାଗଡ଼ Tannery ଏବଂ ସୋନପୁରର Weaving School ସରକାରୀ ହାତରୁ ବେସରକାରୀ ହାତକୁ ଚାଲିଯିବାର ବ୍ୟବସ୍ଥା ହେଉଛି । ଏ ଦୁଇଟି ଦରବାର ସରକାରଙ୍କ କର୍ତ୍ତୃତ୍ୱରେ ଥିଲାବେଳେ ବେଶ ଲାଭ ହେଉଥିଲା ଏବଂ ବର୍ତ୍ତମାନ ଦେଶରେ ଯାହା ଚାହିଦା ସେପରି ଅବସ୍ଥାରେ ଟାନେରି କିମ୍ବା Weaving Factoryକୁ ବଢ଼ାଇ ସେଥିରୁ କ୍ରମେ କ୍ରମେ ଲାଭ କରିବା ପରିବର୍ତ୍ତେ ସରକାର ଯେ ତାକୁ ହରାଇ ଦେବାକୁ ବସିବେ ଏହା କଳ୍ପନା କରିବାକୁ କଷ୍ଟ ହୁଏ । ଆଠମଲ୍ଲିକ ଏବଂ ନୟାଗଡ଼ରେ ଯେଉଁ Industrial School ଅଛି ସେଥିରୁ account, audit ହୋଇଥିଲା । ସେଥିରେ ଯେଉଁ ଅତ୍ୟନ୍ତ ଗୁରୁତର ଅଭିଯୋଗ ଅଛି ବୋଲି ଶୁଣାଯାଉଛି ତାହାର ସମ୍ମୁଖୀନ ହେବାପାଇଁ ସରକାର କୌଣସି ଚେଷ୍ଟା କରୁନାହାନ୍ତି ଏବଂ ସେଥିପାଇଁ ଯେଉଁମାନେ ଦାୟୀ ସେମାନଙ୍କ ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ କରଯାଉନାହିଁ । ଆଜକୁ 2/3 ବର୍ଷ ପୂର୍ବରୁ ଗୋଟିଏ Scandal ହୋଇଥିଲା ଯେ ଆମର Publicity Departmentର audit ହେବା ପରେପରେ Godownଟି ପୋଡ଼ିଯାଇଥିଲା । ସେହିପରି ନୟାଗଡ଼ Industrial School ପୋଡ଼ିଯାଇଛି ବୋଲି ଶୁଣାଯାଉଛି । ଏହି କଥା ସତ କି ମିଛ ସରକାର ଅନୁଗ୍ରହକରି ଜଣାଇବେ । ଏହା ଯେ ପୋଡ଼ିଯାଇଛି ତାହାର କାରଣ ସଙ୍ଗରେ Previous auditର କୌଣସି ସମ୍ପର୍କ ଅଛି କି ନାହିଁ ସେ ବିଷୟ ମଧ୍ୟ ଜଣାଇବେ । ଆମର ଯେଉଁ ବଡ଼ ବଡ଼ ଶିଳ୍ପ ଅନୁଷ୍ଠାନମାନ ଅଛି ସେମାନଙ୍କୁ ନିଜର ଆୟତ୍ତରେ ରଖିବା ଓ ସେମାନେ ଯେପରି ଠିକ୍ ଭାବରେ ପରିଚାଳିତ ହୁଅନ୍ତି ଏବଂ ଦେଶର ଉପକାର ପାଇଁ ପ୍ରଯୁଜ୍ୟ ହୁଅନ୍ତି ସେ ବିଷୟ ଦେଖିବାର ଦାୟିତ୍ୱ ସରକାରଙ୍କର । ସରକାର ସେମାନଙ୍କ ଉପରେ କର୍ତ୍ତୃତ୍ୱ ବିସ୍ତାର କରିବା ବଦଳରେ ଏବଂ ତାହା ଦେଶବାସୀଙ୍କ ଉପକାର ପାଇଁ ନିଜର ଦାୟିତ୍ୱରେ ରଖିବା ପରିବର୍ତ୍ତେ ଶିଳ୍ପ ବିଭାଗ ଯେପରି ଦାୟୀତ୍ୱହୀନ ଭାବରେ ବ୍ୟବହାର କରୁଛନ୍ତି ଏହା ବାସ୍ତବିକ ଦୁଃଖର କଥା ଏବଂ ଏ ବିଷୟ ଦେଶର ସମସ୍ତ ଜନସାଧାରଣ ଉପଲବ୍ଧି କରିପାରିଛନ୍ତି । ଯେଉଁମାନେ Orient Paper

Millର କଳଙ୍କମୟ କାହାଣୀ ଜାଣନ୍ତି ଏବଂ ଯେଉଁମାନେ ସେହି ନଦୀର ପାଣି ଏବଂ କର୍ତ୍ତୃପକ୍ଷଙ୍କ କାଣ୍ଡ ଦେଖୁଛନ୍ତି, ସେମାନେ ସ୍ପଷ୍ଟ ଅନୁମାନ କରି ପାରୁଥିବେ ଏ ବିଷୟରେ ବିଶେଷ ଭାବରେ ବୁଝାଇବା ଦରକାର ନାହିଁ । ଓଡ଼ିଶା ସିମେଣ୍ଟ କର୍ତ୍ତୃପକ୍ଷ ଆମର ଶିଳ୍ପ ବିଭାଗକୁ ସଂପୂର୍ଣ୍ଣ ଆୟତ୍ତରେ ରଖିଛନ୍ତି ବୋଲି ଜଣାପଡୁଛି ।

ଆମର ଯେଉଁ ଶିଳ୍ପ ଅନୁଷ୍ଠାନମାନ ଅଛି ତାହା ଯାଞ୍ଚ କରିବାପାଇଁ ଏବଂ ସେଥିରେ କାମ କରୁଥିବା ଶ୍ରମିକମାନଙ୍କର ଦୁଃଖ ସୁଖ ବୁଝିବାପାଇଁ ଯେଉଁ Inspector of Factories ଦରକାର ଏବଂ ଯେକି ଏହି ଶିଳ୍ପ ବିଭାଗ, ଆମ ଦେଶର ଶିଳ୍ପ ଅନୁଷ୍ଠାନମାନଙ୍କୁ ନିୟନ୍ତ୍ରଣ କରିବାରେ ସାହାଯ୍ୟ କରିବେ, ସେ ବିଷୟରେ ସରକାର ସଂପୂର୍ଣ୍ଣ ଉଦାସୀନ । ଆପଣ ଜାଣିଥିବେ 3/4 ବର୍ଷ ପୂର୍ବରୁ ବି. ନାଏକ ନାମରେ ଜଣେ Inspector of Factories ଥିଲେ । ତାଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ହେବା ଫଳରେ ସେ ଦଣ୍ଡ ପାଇଲେ । ମୁଁ ଶୁଣୁଛି ତାଙ୍କ ଯାଗାରେ ଆଉ କୌଣସି Inspectorଙ୍କୁ ନିଆଯାଇ ନାହିଁ । ଏହି Inspector of Factories ଯେତେ ସଂଖ୍ୟାରେ ରହିବା ଦରକାର ତାହା ନହେବା ଫଳରେ ଶିଳ୍ପ ଅନୁଷ୍ଠାନଗୁଡ଼ିକ ଯଥେଚ୍ଛାଚାର କରୁଛନ୍ତି ଏବଂ ଉପଯୁକ୍ତ ଭାବରେ ପରିଚାଳିତ ହେଉନାହାନ୍ତି । ଶୁଣାଯାଉଛି ଏହି 'ଓଡ଼ିଶାର ସିମେଣ୍ଟ' କାରଖାନାରେ ଆଜି ପର୍ଯ୍ୟନ୍ତ 31ଟା Fatal accident ହୋଇଥିଲେ ମଧ୍ୟ ତହିଁର ଯଥାଯୁକ୍ତ enquiry ହୋଇନାହିଁ ।

ତା ପରେ ଶ୍ରମିକମାନଙ୍କ ସଂଗଠନ ସମ୍ପର୍କରେ ସରକାର ସଂପୂର୍ଣ୍ଣ ଉଦାସୀନ । ଏ ବିଷୟରେ ସରକାରଙ୍କର ଯାହା ଦାୟିତ୍ୱ ଅଛି ତାହା ପୂରଣ କରିପାରୁନାହାନ୍ତି ଏବଂ ଜାଣିଶୁଣି କରୁନାହାନ୍ତି । ଶିଳ୍ପ ଅନୁଷ୍ଠାନମାନଙ୍କରେ କାମକରୁଥିବା ଶ୍ରମିକମାନଙ୍କର ଅବସ୍ଥା, ସୁବିଧା, ଅସୁବିଧା ଏବଂ ସେମାନେ ଯାହା ପାଇବାର କଥା ସେ ସମସ୍ତ ବିଷୟ ପରିଦର୍ଶନ କରିବା ସରକାରଙ୍କ ପୂର୍ଣ୍ଣ ଦାୟିତ୍ୱ ଥିଲେ ସୁଦ୍ଧା କିଛି କରୁନାହାନ୍ତି । ବରଂ ଏପରି ଆମ ଓଡ଼ିଶାର ଦୁର୍ଭାଗ୍ୟ ଯେ ଆମ ଓଡ଼ିଶାର ଶ୍ରମିକ ଅନୁଷ୍ଠାନମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଶିଳ୍ପପତିମାନେ ଟଙ୍କା ପଇସା ସାହାଯ୍ୟ କରୁଛନ୍ତି, ଏପରିକି Labour Unionର fees ମଧ୍ୟ ମିଲ କର୍ତ୍ତୃପକ୍ଷ ଦିଅନ୍ତି । ଏହା ଫଳରେ ଯେଉଁମାନଙ୍କ ସ୍ୱାର୍ଥ ଜଗିବା ସରକାରଙ୍କର ଏବଂ ଲୋକସାଧାରଣଙ୍କର ଦାୟିତ୍ୱ, ସେମାନଙ୍କୁ ଆମେ ସେହି ଶିଳ୍ପପତିମାନଙ୍କ ଦୟା ଉପରେ ଛାଡ଼ି ଦେଉଥାଉଁ । ତଦ୍ୱାରା ହେଉଛି କ'ଣ ନା ଶ୍ରମିକମାନଙ୍କ ମଧ୍ୟରେ ଯେଉଁ ଶକ୍ତି ଏବଂ ସଙ୍ଗଠନ ରହିବା ଦରକାର ସେମାନଙ୍କ ମନରେ ଦେଶପ୍ରତି ଯେଉଁ ଦେଶାତ୍ମବୋଧ ରହିବା ଦରକାର ତାହା ରହିପାରୁନାହିଁ । ସେମାନଙ୍କର moral ଧୀରେ ଭାଙ୍ଗି ଯାଉଛି ।

ତା ପରେ ଓଡ଼ିଶାର ବଡ଼ ବଡ଼ ଶିଳ୍ପ ଅନୁଷ୍ଠାନମାନଙ୍କରେ ଆମର ଓଡ଼ିଆ ଲୋକେ କାହିଁକି ଯଥେଷ୍ଟ ଭାବରେ କାମ ପାଇପାରୁନାହାନ୍ତି ସେ ବିଷୟରେ ଏଠାରେ 2/4 ପଦ

କଥା କହିବା ପ୍ରାସଙ୍ଗିକ ହେବ । ଅବଶ୍ୟ ଆମର ମୁଖ୍ୟମନ୍ତ୍ରୀ ଅନେକଥର କହିଛନ୍ତି ଯେ ବର୍ତ୍ତମାନ କୁଲିମାନଙ୍କର ଜଗତ, ସେମାନେ ହେଲେ ମାଲିକ, ଆମ ଓଡ଼ିଆ ତ ବହୁତ କୁଲିଅଛନ୍ତି । ବୋଧହୁଏ ଆମର ଯେଉଁ ବଡ଼ ବଡ଼ କର୍ମଚାରୀ ଅର୍ଥାତ୍ ଇଞ୍ଜିନିଅର-ମାନେ ପାଶ କରି ଆସୁଛନ୍ତି ସେମାନେ କିପରି ଭାବରେ କାମ ପାଇବେ କି ନ ପାଇବେ ସେଥିପ୍ରତି ସେ ସଂପୂର୍ଣ୍ଣ ଉଦାସୀନ ଅଛନ୍ତି । କୁଲିମାନେ ଯଥେଷ୍ଟ ଭାବରେ ନିଯୁକ୍ତ ହେଉଛନ୍ତି ବୋଲି ଆମ ସରକାରଙ୍କର କର୍ତ୍ତବ୍ୟ ସରିଗଲା, କିନ୍ତୁ ମୁଁ ପଚାରେ ଯଦି କୁଲିମାନେ ବଡ଼ ବଡ଼ କର୍ମଚାରୀଙ୍କପରି ଦରମା ପାଉଥାନ୍ତେ ଏବଂ Engineerମାନେ ଯଦି କୁଲିମାନଙ୍କପରି ଦରମା ପାଉଥାନ୍ତେ ତାହାହେଲେ ଏ ବିଷୟରେ କୌଣସି ଆପତ୍ତି କରିବାର ନଥାନ୍ତା । ଆମ ଓଡ଼ିଶାରେ ଯେତେ ଶିଳ୍ପ ଅନୁଷ୍ଠାନ ଅଛି ସେଥିରେ କାମ କରୁଥିବା କୁଲିମାନଙ୍କର Security of Service ଯଦି ଥାଆନ୍ତା, ଆମର ଆପତ୍ତି କରିବାର ନଥାନ୍ତା । କିନ୍ତୁ ଆମର ସେହି କୁଲିମାନଙ୍କର ସ୍ୱାର୍ଥ ଜଗିବା ପାଇଁ ସରକାର କୌଣସି ବନ୍ଦୋବସ୍ତ କରିନାହାନ୍ତି । କାହିଁକି ମୁଁ ସେ ଶ୍ରମିକ ଅନୁଷ୍ଠାନମାନଙ୍କ ବିଷୟରେ ଯାହା କହିଲି ସରକାର ସେ ବିଷୟରେ ସଂପୂର୍ଣ୍ଣ ଉଦାସୀନ । ହୀରାକୁଦରେ ଆମ ଓଡ଼ିଶାର କୁଲିମାନଙ୍କୁ କିପରି ଭାବରେ ହଇରାଣ କରାଯାଉଛି ତାହାର ଗୋଟିଏ ମାତ୍ର ଉଦାହରଣ ଦେଉଛି । ଅବଶ୍ୟ ମୁଁ ହୀରାକୁଦ ପ୍ରଶ୍ନ କାଲି ବିଶେଷ ଭାବରେ କହିବି । ଏ ମଧ୍ୟରେ କେନ୍ଦ୍ରମନ୍ତ୍ରୀ ଶ୍ରୀ ଗୁଲଜାରୀଲାଲ ନନ୍ଦା ସେଠାକୁ ଆସିଥିଲେ । ସେ ସମୟରେ ଗୋଏଲ ନାମକ ଜଣେ Engineerଙ୍କୁ କାମରୁ ବାହାରକରି ଦିଆଗଲା । କାହିଁକି ତାଙ୍କୁ Union Public Service Commission ଅନୁପଯୁକ୍ତ ବୋଲି ସ୍ଥିର କଲେ । ସେହି ସମ୍ପର୍କରେ ସେହି ସ୍ଥାନର କର୍ମଚାରୀମାନେ କେତେଜଣ ଓଡ଼ିଆ କୁଲିଙ୍କୁ କହିଲେ ଯେ ତୁମେ ଗୁଲଜାରୀଲାଲ ନନ୍ଦାଙ୍କୁ ଯାଇ କହ ଏ ଜଣେ ଭଲ ଅଫିସର । ଏହାଙ୍କୁ ରଖିବା ଦରକାର । ସେ ମଧ୍ୟରୁ ଯେଉଁମାନେ ସେଥିରେ ରାଜି ନହେଲେ ତାଙ୍କୁ କାମରୁ ବରଖାସ୍ତ କରି ଦିଆଯାଇଛି । ଏହିପରି କୁଲିମାନଙ୍କର କୌଣସି Security of Service ନାହିଁ ।

ତାପରେ ମୁଁ ଆମର Five-year Plan ବିଷୟରେ ପଦେ ଅଧେ କହିବି । ଆମର ଯେତିକି ଶିଳ୍ପର ଉନ୍ନତି କରିବା ଦରକାର ସେ ବିଷୟରେ ସରକାରଙ୍କର କୌଣସି ନିର୍ଦ୍ଦିଷ୍ଟ ପରିକଳ୍ପନା ନାହିଁ ଏବଂ ଆମ ବଜେଟରେ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ନାହିଁ । ଯଦିଓ ବର୍ତ୍ତମାନ ଆମେ Five-years Planର ତୃତୀୟ ବର୍ଷରେ ଉପନୀତ ହୋଇଥାଇଁ ଅବଶ୍ୟ କୁହାଯାଇଛି ଯେ ଆମର ଗୋଟିଏ Steel Plant ଏବଂ ଗୋଟିଏ Ferro Manganese Factory ହେବା ଦରକାର । ଏ ବିଷୟରେ କ'ଣ ହେବ ଓ କିପରି ଭାବରେ ହେବ ଆମର ପ୍ରାଦେଶିକ ସରକାର କେନ୍ଦ୍ର ସରକାରଙ୍କଠାରେ କିପରି ଚାପ ଦେଉଛନ୍ତି, ସେଥିରେ କ'ଣ ଆଶା ଅଛି ଇତ୍ୟାଦି ଆମେ କିଛି ଜାଣୁନାହୁଁ ।

କୁଟୀର ଶିଳ୍ପ ବାବଦରେ ମଧ୍ୟ ସେହିପରି କଥା । ସେ ଦିନ ମୁଁ ଆମର Handloom Industry ବିଷୟରେ କହିଥିଲି । ଆପଣ ଦେଖିବେ ଆମ ଓଡ଼ିଶାରେ କୁଟୀର ଶିଳ୍ପ ମଧ୍ୟରେ ହାତ ତନ୍ତର ବୁଣା ଲୁଗା ହେଉଛି ପ୍ରଧାନ । ଏହା କିପରି ଧୀରେ ଧୀରେ ମାନ୍ଦ୍ରାଜର ହାତ ତନ୍ତ ବୁଣା ସଙ୍ଗେ ପ୍ରତିଯୋଗିତାରେ ଲୋପ ପାଇ ଯାଉଛି, ସେ ବିଷୟ ବୋଧହୁଏ ସରକାର ଜାଣିନାହାନ୍ତି । ଏ ବିଷୟରେ ଯଦି ଆଜିଠାରୁ ସଚେତ ନ ହୁଅନ୍ତି ଏବଂ Five-year Planର ସୁଯୋଗ ନେଇ ଆମ ଦେଶର ତନ୍ତୀମାନେ କିପରି ବେଶି ରୋଜଗାର କରିପାରିବେ ସେ ବିଷୟରେ ଯଥେଷ୍ଟ ସତର୍କ ଓ ଉତ୍ସାହର ସହିତ କାମ ନ କରନ୍ତି ତାହାହେଲେ ଆମ ଦେଶର ଆହୁରି ଅଧୋଗତି ହେବ । ଏହି ସବୁ ବିଷୟ ଦେଖିବାକୁ ଗଲେ ମୋଟା ମୋଟି ଭାବରେ ମୋର ଅନୁମାନ ହୁଏ ଆମର Industrial Policy ବୋଲି କିଛି ନାହିଁ ଏବଂ ଅନ୍ୟାନ୍ୟ ବିଭାଗ ତୁଳନାରେ ଏ ବିଭାଗ ଅଧିକରୁ ଅଧିକତର ଅକର୍ମଣ୍ୟ ଏବଂ ଏହାର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ପନ୍ଥା ଓ ଯୋଜନା ନଥିବା ଯୋଗୁଁ ପଣ୍ଡିତ ନିଳକଣ୍ଠ ଦାସଙ୍କ କହିବା ଅନୁସାରେ ଏହା ଗୋଟିଏ ଚରଖା ବିଭାଗ ବୋଲି ଆଖ୍ୟା ଦିଆଯାଇପାରେ ।

## ଓଡ଼ିଶା ନଦୀ ପ୍ରଦୂଷଣ ପ୍ରତିଷେଧକ ବିଲ୍, 1953

ସାଂପ୍ରତିକ ସମାଜରେ ଯେଉଁ ପରିବେଶ ପ୍ରଦୂଷଣ ଆମର ଏକ ଜ୍ୱଳନ୍ତ ସମସ୍ୟା ହୋଇଛି, ତା'ର ସୂଚନା ପାଇବା ସହିତ ତା'ର ପ୍ରତିକାର ପାଇଁ ସୁଦୃଢ଼ ପଦକ୍ଷେପ ନେବାରେ ଡଃ ସୂପକାର ବରଂ ବ୍ୟବସ୍ଥାପକମାନଙ୍କ ମଧ୍ୟରେ ଅନ୍ୟତମ ଅଗ୍ରଦୂତ ବୋଲି ସ୍ୱୀକାର କରିବାକୁ ହେବ । ସେ ପୁଞ୍ଜିପତି ତଥା ଶିଳ୍ପପତିଙ୍କ ବିରୁଦ୍ଧରେ ଏଥିପାଇଁ ସ୍ୱର ଉତ୍ତୋଳନ କରିବାରେ ଅନ୍ୟତମ ଅଗ୍ରଗାମୀ ବ୍ୟବସ୍ଥାପକ । Orient Paper Mills ଯୋଗୁଁ ନଦୀଜଳ କିପରି ପ୍ରଦୂଷିତ ହେଉଛି ସେ ବିଷୟରେ ଡଃ ସୂପକାର ଖୁବ୍ ସଚେତନ ଏବଂ ବ୍ୟବସ୍ଥାପକ ସଭଠାରୁ କୋର୍ଟ କଚେରୀରେ ମଧ୍ୟ ସେ ପ୍ରତିବାଦ କରିଛନ୍ତି ଏବଂ ଲୋକମତ ସୃଷ୍ଟି କରିବା ସହିତ ଏ କ୍ଷେତ୍ରରେ ଜନସାଧାରଣ କିପରି ସ୍ୱାସ୍ଥ୍ୟହାନି ଓ କୃଷିହାନି ଭୋଗୁଛନ୍ତି ତାହା ସ୍ପଷ୍ଟ ଭାବରେ ଦେଖାଇ ଦେଇଛନ୍ତି । ସେ ସର୍ବତ୍ର ନ୍ୟାୟ ବିଗ୍ରହ ପାଇଁ ଦାବି କରି ଜନମଙ୍ଗଳ କ୍ଷେତ୍ରରେ ଦୃଢ଼ତାର ସହିତ ସଂଗ୍ରାମ କରିଛନ୍ତି ।

1953 ମସିହା ଅକ୍ଟୋବର 19 ତାରିଖରେ ସେ ବିଧାନସଭାରେ ଓଡ଼ିଶା ନଦୀ ପ୍ରଦୂଷଣ ପ୍ରତିଷେଧକ ବିଲ୍ ଉପରେ ଭାଷଣ ଦେଇ ଏଥିପାଇଁ ଏକ ପରିଷଦ ଗଠନ କରି କଳକାରଖାନାରୁ ବହିର୍ଗତ ଦୂଷିତ ଓ ବିଷାକ୍ତ ପଦାର୍ଥ ଆମର ନଦୀ ମଧ୍ୟକୁ ଛାଡ଼ି ଦେବାରେ ବାଧାସୃଷ୍ଟି କରିବା ଏବଂ ଶିଳ୍ପପତିମାନଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ଦାବି କରିଛନ୍ତି । ଜେଲ ବା ଜରିମାନା ବା ଉଭୟ ଦଣ୍ଡଦେଇ

ଶିଳ୍ପପତିମାନଙ୍କ ଜନବିରୋଧୀ କାର୍ଯ୍ୟକୁ ବନ୍ଦ କରିବା ପାଇଁ ତାଙ୍କ ଚିନ୍ତା ଓ କାର୍ଯ୍ୟ କିପରି ଦୂରଦୃଷ୍ଟି ସଂପନ୍ନ, ତାହା ଲକ୍ଷ୍ୟ କରିବାର କଥା । ସେଥିପାଇଁ ନିତାନ୍ତ ଅବାଧ୍ୟ ହେଲେ ବା ବୋର୍ଡ (ପରିଷଦ)ର ଆଦେଶକୁ ଅବମାନନା କଲେ ଲାଇସେନସ୍ କାଟିଦେବା ଉଚିତ ହେବ ବୋଲି ଡଃ ସୂପକାର ପରାମର୍ଶ ଦେଇଛନ୍ତି ।

ରାଜ୍ୟରେ ଦୃଢ଼ ଶିଳ୍ପାୟନ, ସେ କାମନା କରୁଥିଲେ । ମାତ୍ର ଜନସାଧାରଣଙ୍କୁ ବିପନ୍ନ ଓ ବ୍ୟାଧିଗ୍ରସ୍ତ ନକରି ସୁସ୍ଥ ଓ ସୁନ୍ଦର ପରିବେଶ ମଧ୍ୟରେ ତାହା ହେଉବୋଲି ସେ ଦାବି କରି ବିଧାନସଭାରେ କହିଛନ୍ତି, "ଶିଳ୍ପକୁ ଯେତେଦୂର ସମୃଦ୍ଧ କରାଯିବାର କଥା ତାହା କରାଯାଉ କିନ୍ତୁ ତା ବୋଲି ଗୋଟିଏ standard of pollution set up ନହୋଉ ଯେପରି standard of purity set up ହୁଏ ଏବଂ ଲୋକମାନେ ପ୍ରବାହିତ ନଦୀ ତଥା କୂପ, ପୁଷ୍କରିଣୀରୁ ଯେପରି ବିଶୁଦ୍ଧତର ଜଳପାଇ ପାରୁଛନ୍ତି, ସେଠାରେ ସେହିପରି ଜଳପା'ନ୍ତି ସେଥିପ୍ରତି ସରକାର ବିଶେଷ ଦୃଷ୍ଟି ଦେବା ଦର୍କାର ।" ଏହା କେବେ ଗୁରୁତ୍ୱପୂର୍ଣ୍ଣ ଆଜି ଆମର ବିଚାର୍ଯ୍ୟ ।

## LEGISLATIVE BUSINESS

### The Orissa River Pollution Prevention Bill, 1953

The SPEAKER: Let clause 4 be taken up now.

Shri SHRADDHAKAR SUPAKAR: ମାନ୍ୟବର ଅଧ୍ୟକ୍ଷ ମହାଶୟ ! I move that in clause 4 of the Bill for the existing proviso substitute "provided that the Board shall abide by and act upon the order, judgment or decree of a court of law declaring the wastes and effluents of a factory to be poisonous, noxious or polluting". ମାନ୍ୟବର ଅଧ୍ୟକ୍ଷ ମହାଶୟ ! ଏହି Billର Select Committee Report ଆସିଛି, ସେଥିରେ ଥିବା ଏହି clauseର proviso ଏବଂ ମୁଁ ଯେଉଁ ସଂଶୋଧନ ପ୍ରସ୍ତାବ ଦେଇଛି, ତାହାକୁ ତୁଳନା କଲେ ଦେଖିପାରିବେ ଯେ ପୂର୍ବ provisoରେ ଅଛି "that the Board shall have due regard". ଏଥିରେ ମନରେ ଅନେକ ସଂଶୟ ଉପୁଜି ପାରେ । ଏଇଟା ମଧ୍ୟ ତା'ର interpretation ହୋଇପାରେ ଯେ କୌଣସି ଆଇନ ଅଦାଲତର ଆଦେଶ ବା ନିଷ୍ପତ୍ତିକୁ ହୁଏତ Board ବିଚାର କରି ତାକୁ ପ୍ରତ୍ୟାଖାନ କରିପାରନ୍ତି । ସେଥିପାଇଁ ଏହାକୁ ଆହୁରି ନିର୍ଦ୍ଦିଷ୍ଟ କରିବା ପାଇଁ ଅର୍ଥାତ୍ Board ଏହାକୁ ଯେପରି କାର୍ଯ୍ୟକାରୀ କରିବ, ସେଥିପାଇଁ ମୁଁ କହିଛି "that the Board shall abide by and act upon the order".

ଦ୍ୱିତୀୟରେ ଆପଣ ଦେଖିବେ ମୂଳ clauseରେ ଅଛି "decree of a court of law passed prior to the commencement of this Act declaring the wastes and effluents of a factory to be poisonous, noxious or polluting". ଏ ଯେଉଁ "Prior to the commencent of this Act" କୋର ସଂଶୋଧନରୁ ଉଠାଇ ଦେଉଛନ୍ତି । ଅର୍ଥାତ୍ ଏହି Board ଗଠନ ହେବା ପୂର୍ବରୁ ଯଦି Courtର କୌଣସି ଆଦେଶ ହୋଇଥିବ ତାହାହେଲେ Board ତାହା ଗ୍ରହଣ କରିବେ ବୋଲି ରଖାଯାଇଛି । କିନ୍ତୁ ଏ ଯେଉଁ ସଂଶୋଧନ ଦିଆଯାଇଛି ଏଥିରେ ବ୍ୟବସ୍ଥା କରଯାଇଛି ଯେ ଆଇନ ଅଦାଲତର ନିଷ୍ପତ୍ତି Board ଗଠନ ହେବା ପୂର୍ବରୁ କିମ୍ବା ପରେ ଯଦି ଦିଆ ହୋଇଥିବ ଏବଂ ସେହି ଅଦାଲତ ଆଦେଶ ବା ନିଷ୍ପତ୍ତି ଏହା ହୁଏ ଯେ କୌଣସି କଳକାରଖାନାରୁ ବାହାରୁଥିବା ମଇଳା ପାଣି ଦୂଷିତ ବା ବିଷାକ୍ତ ତାହାହେଲେ ତା'ର ନିଷ୍ପତ୍ତି Board ମାନିନେବେ । ଏହା କହିବାର ଏତିକି ମାତ୍ର ଉଦ୍ଦେଶ୍ୟ ଅଛି ଯେ ବର୍ତ୍ତମାନ ଯେଉଁ Bill ପାଶ୍ କରୁଯାଇଛି ଏହି Bill ପାଶ୍ କରଗଲା ପରେ ହୁଏତ ଏହାର rules ତିଆରି ହେବ । ସେହି ନିୟମମାନ ତିଆରି ହେଲାପରେ ଏହି Board ବସିବ, ଏହି ଆଇନ ପାଶ୍ ହେବା ପରେ ରାଜ୍ୟପାଳଙ୍କ ସମ୍ମତି ପାଇବା ପାଇଁ ଅନେକ ସମୟ ଯାଇପାରେ । ତାପରେ Board ଗଠନ ହେବା ପାଇଁ ମଧ୍ୟ ଅନେକ ସମୟ ଯାଇପାରେ । ଏହା ମଧ୍ୟରେ ଏ ଯେଉଁ ମକଦ୍ଦମା ବର୍ତ୍ତମାନ High Courtରେ ବିଚାରାଧୀନ ଅଛି, ଏଇଟା ଯଦି ନିଷ୍ପତ୍ତି ହୋଇଯାଏ, ତାହାହେଲେ ଏ ଯେଉଁ provisoର ବ୍ୟବସ୍ଥା କରଯାଇଛି ଏଇଟା ସଂପୂର୍ଣ୍ଣ ଅକର୍ମଣ୍ୟ ହୋଇଯିବ । କାରଣ ଏଥିରେ prior to the commencement of this Act ବୋଲି କୁହାଯାଇଛି । ତେଣୁ ମୁଁ ଭାବୁଛି ଯଦି ଏହି ବ୍ୟବସ୍ଥାକୁ ଆହୁରି ଅଧିକ ଜୋର ଦେବା ଉଦ୍ଦେଶ୍ୟରେ High Courtର ନିଷ୍ପତ୍ତି ପରେ ଏହାର ସୁଫଳ ଫଳିବା ଉଦ୍ଦେଶ୍ୟରେ ଯେଉଁ proviso ରଖାଯାଇଛି ସେହି ସୁଫଳ ଯେପରି ଅକର୍ମଣ୍ୟ ନ ହୁଏ ଏବଂ ତା ଫଳରେ ଆମର ୧୫ ଧାରାରେ ଯେଉଁ ସବୁ ମାରାତ୍ମକ ଅବସ୍ଥା ରଖାଯାଇଛି, ସେଇଟା ଯେପରି କାର୍ଯ୍ୟକାରୀ ହୋଇ ଜନସାଧାରଣଙ୍କୁ ଅସୁବିଧାରେ ପକାଇବା ବାଟକୁ ଆହୁରି ପ୍ରଶସ୍ତ ନ କରେ ସେହି ଦୋଷରୁ ଏ ଆଇନର ବ୍ୟବସ୍ଥାକୁ ମୁକ୍ତ କରିବା ଉଦ୍ଦେଶ୍ୟରେ ଏହି ସଂଶୋଧନ ପ୍ରସ୍ତାବ ଆଗତ କରଯାଇଛି । ତେଣୁ ମୋଟାମୋଟି ଭାବରେ ମୁଁ ଏତିକି ମାତ୍ର କହିଦେବାକୁ ଚାହେଁ ଯେ ଏହିଯେଉଁ ସଂଶୋଧନ ପ୍ରସ୍ତାବ ତାହା ୪ର୍ଥ ଧାରାର provisoର ମର୍ଯ୍ୟାଦାକୁ ଓ କାର୍ଯ୍ୟକୁ ଆହୁରି କାର୍ଯ୍ୟକାରୀ କରିବ । ବର୍ତ୍ତମାନ ଯେପରି ଅବସ୍ଥାରେ ଏହା ଅଛି ଯଦି ସେହିପରୁ ଅବସ୍ଥାରେ ଏହାକୁ ରଖି ଦିଆଯାଏ ଏବଂ High Courtର ନିଷ୍ପତ୍ତି ଯଦି Board ଗଠିତ ହେବା ପୂର୍ବରୁ ହୋଇଯାଏ ତାହାହେଲେ ମୁଁ ଭାବୁଛି ୧୫ ଧାରା ଅନୁସାରେ ନା ତହିଁର ସୁବିଧା Board ପାଇପାରିବ ନା Board ଯେଉଁ ସୁବିଧା ଦେବାର କଥା ସେଇଟା ଜନସାଧାରଣ ପାଇ ପାରିବେ ।

The SPEAKER : Amendment moved.

Shri SHRADDHAKAR SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, ଶ୍ରୀ ମକରଧ୍ୱଜ ପ୍ରଧାନ ଯେଉଁ ସଂଶୋଧନ ପ୍ରସ୍ତାବ ଆଣିଛନ୍ତି ମୁଁ ସେ ପ୍ରସ୍ତାବକୁ ସମର୍ଥନ କରୁଛି । ଏହି ବିଷୟରେ ଗତକାଲି ଯେଉଁ ପ୍ରାଥମିକ ଆଲୋଚନା ହୋଇଥିଲା ସେ ଆଲୋଚନାର ଉତ୍ତର ଦେବାକୁ ଯାଇ ମାନ୍ୟବର ମନ୍ତ୍ରୀ ଏବଂ କଂଗ୍ରେସ ଦଳର କେତେକ ସଭ୍ୟ ଯେଉଁ କେତେକ କଥା ଅବତାରଣ କରିଥିଲେ ସେ ବିଷୟରେ ମୁଁ କେତେକ ଆଲୋଚନା କରିବାକୁ ଚାହେଁ । କୁହାଯାଇଥିଲା ଯେ ଅନ୍ୟ ଯେଉଁଠାରେ ଏହିପରି ସବୁ ଆଇନ ହୋଇଛି ଏବଂ ସେ ଆଇନମାନଙ୍କରେ ଯେଉଁ licence ବ୍ୟବସ୍ଥା ରହିଛି ସେଥିରେ compulsory imprisonmentର ବ୍ୟବସ୍ଥା ନାହିଁ । ଦ୍ୱିତୀୟ ଯୁକ୍ତି କରାଯାଇଥିଲା ଯେ ଏଥିରେ imprisonment and fine ରଖିଲେ ଏଟା ଗୋଟିଏ vindictive ବା ପ୍ରତିଶୋଧମୂଳକ ବ୍ୟବସ୍ଥା ହେବ । ତେଣୁ ଏହା ଗ୍ରହଣୀୟ ନୁହେଁ । ତା ବଦଳରେ imprisonment for three months or fine or both ଏଇଟା ରଖିବା ଉଚିତ୍ । ଏହି ଯେଉଁ ଯୁକ୍ତି କରାଯାଇଛି ସେ ବିଷୟରେ ମୁଁ ଏତିକି କହିବାକୁ ଚାହେଁ ଯେ ଏହି ଯେଉଁ licence ବ୍ୟବସ୍ଥା କରାଯାଇଛି ଏହାର ପ୍ରଧାନ ଉଦ୍ଦେଶ୍ୟ ହେଲା ଆମେ କେବଳ ଜରିମାନା କରି ସନ୍ତୁଷ୍ଟ ହୋଇପାରିବା ନାହିଁ, କାରଣ ଯେଉଁ କଳକାରଖାନା ମାଲିକମାନଙ୍କ ପାଇଁ ଏ licenceର ବ୍ୟବସ୍ଥା କରାଯାଇଛି ସେମାନେ ଖୁବ୍ ଧନୀ ଏବଂ ସେମାନେ ପ୍ରତିଦିନ ଖୁବ୍ ଲାଭ କରୁଛନ୍ତି । ସେମାନେ ଜରିମାନା ହିସାବରେ ତାଙ୍କର ଲାଭାଂଶରୁ କିଛି ଦେଇ ଅର୍ଥାତ ଏହି ରୂପରେ licence ସ୍ୱରୂପ କିଛି ଦେଇ ଗୋଟିଏ ନଦୀର ପାଣିକୁ ମଇଳା କରିବାରେ ସ୍ୱଚ୍ଛନ୍ଦରେ ତାଙ୍କର ଅଧିକାର ରହିବ । ସେଥିପାଇଁ ଗୋଟିଏ ବ୍ୟବସ୍ଥା ହେଲା ଯଦି ଆମେ ପ୍ରକୃତରେ ଗୋଟିଏ ନଦୀର ପାଣିକୁ ଶୁଦ୍ଧ କରିବାକୁ ଚାହୁଁ ଏବଂ ପୁଞ୍ଜିପତି ଅର୍ଥାତ୍ କଳକାରଖାନା ମାଲିକମାନଙ୍କୁ ଅର୍ଥାତ୍ ଯେଉଁମାନେ କଳ ପରିଚାଳନା କରୁଛନ୍ତି ସେମାନଙ୍କ ପାଇଁ ଏଥିରେ ଯଥେଷ୍ଟ ଶାସ୍ତି ବ୍ୟବସ୍ଥା ନ କରୁ ତା'ହେଲେ ଏହି ଯେଉଁ ଆଇନ ବ୍ୟବସ୍ଥା କରାଯାଉଛି ସେମାନେ ହୁଏତ ତାକୁ ଖାତିର କରିବେ ନାହିଁ ଏବଂ ବୋର୍ଡର ଯେଉଁ ଆଦେଶ ତାକୁ ମଧ୍ୟ ସେ ଖାତିର କରିବେ ନାହିଁ । ତେଣୁ ଯଦି କୌଣସି ପ୍ରକାର ଦଣ୍ଡର ବ୍ୟବସ୍ଥା ହୁଏ ତାହାହେଲେ ସେମାନେ ଏଥିପ୍ରତି ଯଥେଷ୍ଟ ସୁଚିନ୍ତିତ ରହିବେ । ତା'ର ଅର୍ଥ ନୁହେଁ ଯେ ଆମେ ହୁଏତ ଏହି ବ୍ୟବସ୍ଥା ପ୍ରୟୋଗ କରିବା ପାଇଁ ସବୁବେଳେ ବାଧ୍ୟହେବା କିନ୍ତୁ କୌଣସି କାରଖାନା licence ନ କରି ତା'ର କଳ ଚଳାଏ ତାହାହେଲେ ସେ ନିଶ୍ଚୟ ଜେଲ ଦଣ୍ଡରେ ଦଣ୍ଡନୀୟ ହେବ । ଏପରି ବ୍ୟବସ୍ଥା ରହିଲେ ସେମାନେ licence ନେବାପାଇଁ ସବୁବେଳେ ଯତ୍ନବାନ ହେବେ । ପାଣି ଶୁଦ୍ଧ କରିବା ବାବଦରେ ବୋର୍ଡ ଯେଉଁ ନିର୍ଦ୍ଦେଶ ଦେବେ ସେ ନିର୍ଦ୍ଦେଶକୁ ପାଳନ ନ କଲେ ସେ କଳକାରଖାନା କର୍ତ୍ତୃପକ୍ଷମାନେ ମୋଟେ licence ପାଇବେ ନାହିଁ ।

ଅବଶ୍ୟ ଏ ବିଷୟରେ ସେମାନେ ସାମାନ୍ୟ ବାଧ୍ୟ ହେବେ । ସେଥିପାଇଁ ଗୋଟିଏ ଜେଲ ଦଣ୍ଡର ବ୍ୟବସ୍ଥା ବାଧ୍ୟତାମୂଳକ ଭବରେ କରଯିବା ପାଇଁ ବ୍ୟବସ୍ଥା କରଯାଇଛି । ତେଣୁ ଯଦି ଏଠି ଗୋଟିଏ alternative arrangement ରୂପେ ରଖାଯାଏ ତାହାହେଲେ licence system ପାଇଁ ଯେଉଁ ୫ଟି ଧାର ରଖାଯାଇଛି ତା'ର ଉଦ୍ଦେଶ୍ୟ ସଂପୂର୍ଣ୍ଣ ପଣ୍ଡ ହେବ । ଜେଲଦଣ୍ଡ ବାଧ୍ୟତାମୂଳକ ଭବରେ ରଖିବା । ଏ ପ୍ରସଙ୍ଗରେ ମାନ୍ୟବର ଆଇନ ମନ୍ତ୍ରୀ ଗୋଟିଏ ଯୁକ୍ତି ବାଢ଼ିଛନ୍ତି, ଆମେ ଯଦି ଜେଲଦଣ୍ଡ ଦେବୁ ତାହାହେଲେ କାହାକୁ ଦେବୁ । ଏଥିପାଇଁ ଯିଏ ଦୋଷୀ ଅର୍ଥାତ ଯେଉଁମାନେ ମିଲର proprietor ଏମାନେ ହୁଏତ ଏ ଦଣ୍ଡରୁ ଖସିଯିବେ କିନ୍ତୁ ଯେଉଁମାନେ ମିଲ୍ ଚଳାଇବାର ଦାୟିତ୍ୱରେ ଅଛନ୍ତି ସେମାନେ ଦଣ୍ଡନୀୟ ହେବେ । ଆପଣ ହୁଏତ ଦେଖିଥିବେ ପଛରେ ଗଢ଼ାଯାଇଥିବା Select Committee ଦ୍ୱାର clause 2, sub-clause (c) ରେ କେତେକ ପରିବର୍ତ୍ତନ କରଯାଇଛି । "Factory"ର definitionରେ କୁହାଯାଇଛି "factory" shall have the meaning assigned to it in the Factories Act, 1948 and "authorities of a factory" shall include the occupier or the manager within the meaning assigned in the said Act and the rules made thereunder "and the rules made thereunder" ଏଇଟା ପଛରେ ଯୋଗ କରଯାଇଛି । ଏଇଟା କାହିଁକି ଯୋଗ କରଯାଇଛି ନା ଆମର ଯେତେବେଳେ କଥା ଉଠିବ ଏ ଯେଉଁ ଜେଲଦଣ୍ଡ ବ୍ୟବସ୍ଥା କରଯାଉଛି ଏ ଜେଲ-ଦଣ୍ଡ ବ୍ୟବସ୍ଥା କାହା ଉପରେ କରଯିବ । ଯେଉଁମାନେ factory rules ଅନୁସାରେ "authorities of factory" ଅର୍ଥାତ୍ ଯେଉଁମାନେ ମିଲ୍ ପରିଚାଳକ ହିସାବରେ ରହିଛନ୍ତି ସେମାନେ ଦଣ୍ଡନୀୟ ହେବେ । ତେଣୁ ଯେଉଁମାନେ ସେ କଳକାରଖାନା ପରିଚାଳନା କରୁଛନ୍ତି ସେମାନେ ଏହି ଦୋଷ କରିଛନ୍ତି ବୋଲି ବିବେଚିତ ହେବ ତାର ଏହି ଅର୍ଥ କରଯିବ । ସେହି ଉଦ୍ଦେଶ୍ୟରେ ଏହି clause 2, sub-clause (c)ର ସଂଶୋଧନ କରଯାଇଛି । ମୁଁ ଭବୁଛି ଯେଉଁମାନେ ସ୍ଥାନୀୟ ପରିଚାଳନା ପାଇଁ ଦାୟୀ ଅର୍ଥାତ୍ ଯେଉଁମାନେ manager ବା ଅନ୍ୟ ଯେଉଁ ନାମରେ ନାମିତ ହୁଅନ୍ତୁ ନା କାହିଁକି ଯଦି ତାଙ୍କର କାର୍ଯ୍ୟପାଇଁ ଦଣ୍ଡ ଦିଆଯାଏ ତାହାହେଲେ ଏ ଯେଉଁ ଦୋଷ ମାଲିକ କରିବେ ସେଟା effectively ପଣ୍ଡ ହୋଇଯିବ । କେବଳ ଜରିମାନା ଦ୍ୱାର ଏହା ବନ୍ଦ ହୋଇ ପାରିବ ନାହିଁ । ତେଣୁ ମୁଁ ଭବୁଛି ଶ୍ରୀ ମକରଧ୍ୱଜ ପ୍ରଧାନ ଯେଉଁ ସଂଶୋଧନ ପ୍ରସ୍ତାବ ଆଣିଛନ୍ତି ଏବଂ ଯେଉଁ ବିଷୟରେ ବିରୋଧୀଦଳର ସମସ୍ତ ସଭ୍ୟ ଏକମତ ହୋଇଛନ୍ତି ଏବଂ କଂଗ୍ରେସ ଦଳର ସଭ୍ୟ ଶ୍ରୀ ଅନିରୁଦ୍ଧ ମିଶ୍ର ଯେକି Select Committeeର ସଭ୍ୟ ଥିଲେ ସେ ମଧ୍ୟ ଏକମତ ହୋଇଛନ୍ତି ତେଣୁ ଏଠି ପ୍ରତିଶୋଧ ବା ପ୍ରତିହିଂସାର କୌଣସି କଥା ନାହିଁ । ଏଇଟା ହେଉଛି ଶେଷ ପନ୍ଥା । ଯଦି କୌଣସି ଉପାୟରେ ଏଟା ବନ୍ଦ କରି ନ ହେଲା,

ଯଦି ମିଲ୍ କର୍ତ୍ତୃପକ୍ଷ ବାରମ୍ବାର ଅବାଧ୍ୟ ହୋଇ Boardର ଆଦେଶକୁ ଅବଜ୍ଞା କଲେ, licence ନ ନେଲେ ତାହାହେଲେ ଏହି ପ୍ରକାର ଦଣ୍ଡରେ ଦଣ୍ଡନୀୟ ହେବେ ।

The SPEAKER : ତାହାହେଲେ ଏଇଟା କ'ଣ ବୁଝାଏ ।

Shri SHRADDHAKAR SUPAKAR : ବୁଝାଏ ବୋଲି କହୁନାହିଁ । ଏଇଟା ହେଉଛି ଶେଷ ଅଂଶ ।

Shri SHRADDHAKAR SUPAKAR—ନା ସେ ବାବଦରେ କୌଣସି Public document ନାହିଁ । ମାନ୍ୟବର ମନ୍ତ୍ରୀ ମଧ୍ୟ ପଚାରିଥିଲେ ଯେ ମାନ୍ୟବର ସଭ୍ୟ 1950 ସାଲ ପର୍ଯ୍ୟନ୍ତ 133 ଧାରା ଅନୁସାରେ କାହିଁକି କାର୍ଯ୍ୟାନୁଷ୍ଠାନ କଲେ ନାହିଁ । ମୁଁ ତାଙ୍କୁ ଆଉଥରେ କେବଳ ଗୋଟିଏ ମାତ୍ର ସୂଚନା ଦେଖାଇବାକୁ ଚାହେଁ ଯେ ଏ ବିଷୟରେ ତାଙ୍କର ଯେଉଁ Magistrate ମାନେ ଅଛନ୍ତି ଏବଂ ଯାହାଙ୍କ ପାଖକୁ ଏ ପ୍ରକାର ମକଦ୍ଦମା 133 ଧାରା ଅନୁସାରେ ବିଚାର ପାଇଁ ଆସିଥାନ୍ତା ତାଙ୍କର ଉଚ୍ଚତମ କର୍ମଚାରୀମାନଙ୍କର କାର୍ଯ୍ୟକଳାପ ବିଷୟରେ ମୁଁ କେବଳ ଗୋଟିଏ ମାତ୍ର ସୂଚନା ଦେବି ଆପଣ ଜାଣିଥିବେ ଏବଂ ମୁଁ ଏ ବିଷୟରେ ପୂର୍ବରୁ ସମାଲୋଚନା କରିଥିଲି ଯେ, ଏ ମକଦ୍ଦମା ହେବା ଦିନଠାରୁ Revenue Boardର ସମ୍ବଲପୁରରେ ଥିବା Member ଶ୍ରୀଯୁକ୍ତ ଶିବରମଣ କିପରି ତାଙ୍କ ପ୍ରଭାବ ପକାଇବାକୁ ଚେଷ୍ଟା କରି ଆସିଛନ୍ତି ସେ ବିଷୟରେ ପୂର୍ବରୁ ଗୋଟିଏ ପ୍ରଶ୍ନ ପଚରାଯାଇ ଥିଲା । ଏହି ବର୍ଷ ମାର୍ଚ୍ଚ ମାସରେ ମୁଁ ଗୋଟିଏ ପ୍ରଶ୍ନ ପଚାରି ଥିଲି ଯେ ଏହି ଯେଉଁ case ଚାଲିଛି ସେ ବାବଦରେ ଶ୍ରୀଯୁକ୍ତ ଶିବରମଣ ବାଦୀ ପକ୍ଷକୁ ଡାକି କୌଣସି ନିଷ୍ପତ୍ତି କରିବାକୁ ଚେଷ୍ଟା କରିଥିଲେ କି ? ସେ ବିଷୟରେ ଉତ୍ତର ଦେବାକୁ ଯାଇ ମାନ୍ୟବର ମୁଖ୍ୟମନ୍ତ୍ରୀ ପ୍ରକାଶ କରିଥିଲେ ଯେ ଶ୍ରୀଯୁକ୍ତ ଶିବରମଣ ଶାନ୍ତିଶୃଙ୍ଖଳା ରକ୍ଷା ଦୃଷ୍ଟିରୁ ଏହା କରିଥିଲେ । ଶ୍ରୀଯୁକ୍ତ ଶିବରମଣଙ୍କୁ କୁହାଯାଇ ଥିଲା ଯେ ଯେହେତୁ ମିଲ କର୍ତ୍ତୃପକ୍ଷଙ୍କୁ Soda Recovery Plant କରିବା ପାଇଁ ଯଥେଷ୍ଟ ସମୟ ଦିଆଯାଇ ନ ଥିଲା ସେମାନେ ପାଣି ସଫା କରିବା ସମୟ ପାଇ ନାହାନ୍ତି । ମିଲ କର୍ତ୍ତୃପକ୍ଷ ଆପତ୍ତି କଲେ ଯେ ଯଦି ଆମକୁ ପାଣି ଛାଡ଼ିବା ପାଇଁ ଅବାଧ କ୍ଷମତା ଦିଆ ନ ଯାଏ, ତାହାହେଲେ ମିଲ ବନ୍ଦ କରିଦେବାକୁ ବାଧ୍ୟ ହେବୁ । ତେଣୁ ଶ୍ରୀଯୁକ୍ତ ଶିବରମଣ ହସ୍ତକ୍ଷେପ କରିଥିଲେ ବୋଲି ଯୁକ୍ତି ଦର୍ଶା ଯାଇ ଥିଲା । ଶ୍ରୀଯୁକ୍ତ ଶିବରମଣ ଜାଣିଥିଲେ ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀ ତାଙ୍କ ତରଫରୁ ଯୁକ୍ତି କଲାବେଳେ ଜାଣିଥିଲେ ଯେ ମିଲ କର୍ତ୍ତୃପକ୍ଷ ଏ ପ୍ରକାର ଜବାବ ଦେବାର କାରଣ ଅଛି କି ନାହିଁ । ଏକଥା ମାନ୍ୟବର ମୁଖ୍ୟମନ୍ତ୍ରୀ ଜାଣିଥିଲେ ଏବଂ ଶ୍ରୀଯୁକ୍ତ ଶିବରମଣ ଜାଣିଥିଲେ ଯେ ମିଲ କର୍ତ୍ତୃପକ୍ଷଙ୍କୁ 1943 ସାଲରୁ Soda Recovery Plant set up କରିବା ପାଇଁ କୁହାଯାଇ ଥିଲା । ଏହି ଯେଉଁ ମକଦ୍ଦମା ଡିଗ୍ରୀ ହେଲା ତାହା 1952 ସାଲରେ ହେଲା । ଅତଏବ ସୁଦୀର୍ଘ 9 ବର୍ଷ ଧରି ମିଲ କର୍ତ୍ତୃପକ୍ଷଙ୍କୁ ସୁବିଧା ଦିଆଯାଇଥିଲା ଏବଂ ସେମାନେ ଏତେ ସମୟ ପାଇଁ ମଧ୍ୟ ସେ ସମୟର ସଦୁପଯୋଗ କରିନଥିଲେ । ସେମାନେ Soda Recovary Plant set up କରି ନ ଥିଲେ । ବରଂ ଯେତେବେଳେ ମକଦ୍ଦମା ହେଲା

ଆମର ସର୍ବୋଚ୍ଚ କର୍ମଚାରୀ ସେଥିରେ ହସ୍ତକ୍ଷେପ କଲେ ଏବଂ ତାଙ୍କର ପକ୍ଷ ସମର୍ଥନ କରିବାକୁ ବିଶେଷ ଆଗ୍ରହାତିଶଯ୍ୟ ପ୍ରକାଶ କରିଥିଲେ । ତେଣୁ ଆମ ଦେଶରେ ଯେଉଁ ଉଚ୍ଚତମ କର୍ମଚାରୀମାନେ ଅଛନ୍ତି ତାଙ୍କ ତଳେ ଯେଉଁ First Class Magistrates ଅଛନ୍ତି ସେହିମାନେ 133 ଧାରା ମକଦ୍ଦମା ବିଚାର କରନ୍ତି । ଏ ପ୍ରକାର ଉଚ୍ଚତମ ହାକିମମାନେ ଥିବା ସମୟରେ ଯଦି କୌଣସି Magistrateଙ୍କୁ 133 ଧାରା ଅନୁସାରେ କାର୍ଯ୍ୟାନୁଷ୍ଠାନ କରିବାକୁ କୁହାଯାଏ, ଏପରି କେଉଁ Magistrateଙ୍କର ଜିଭରେ ହାଡ଼ ଅଛି ଉଚ୍ଚତମ କର୍ମଚାରୀଙ୍କ ମନୋବୃତ୍ତି ବିରୁଦ୍ଧରେ ନ୍ୟାୟ ବିଚାର ଦେବେ ଏବଂ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ କରିପାରିବେ ? ତେଣୁ ଆମେ 133 ଧାରା ଅନୁସାରେ ଫୌଜଦାରୀ ଅଦାଲତର ଆଶ୍ରୟ ନ ନେଇ ଦେଓ୍ୱାନୀ ଅଦାଲତର ଆଶ୍ରୟ ନେଇଥିଲୁ । ତା'ପରେ ମାନ୍ୟବର ମନ୍ତ୍ରୀ ଯୁକ୍ତି କରିଥିଲେ ଯେ ଯଦି Civil Right ର ଅଧିକାର ଉଠିଥାଏ, ତାହାହେଲେ 133 ଧାରା ଅନୁସାରେ କାର୍ଯ୍ୟାନୁଷ୍ଠାନ କରିହେବ ନାହିଁ ଏବଂ Magistrate ବିଚାର କରି ପାରିବେ ନାହିଁ । ମାନ୍ୟବର ଆଇନ ମନ୍ତ୍ରୀ ଜଣେ ଅଭିଜ୍ଞ ଆଇନଜ୍ଞ । ତେଣୁ ମୁଁ ତାଙ୍କୁ ପଚାରିପାରେ କି ଯଦି ଜଣେ ଶିଳ୍ପ କାରଖାନାର ମାଲିକ 1939 ରୁ 1995 51 ବର୍ଷ ପର୍ଯ୍ୟନ୍ତ ନଦୀରେ ମଇଳା ପାଣି ଛାଡ଼େ, ତା'ର କ'ଣ ଅଧିକାର ଅଛି କି to say and claim that he has right to discharge water ? ଅବଶ୍ୟ ଆମର ଗୋଟିଏ ଅସୁବିଧା ହେଉଛି ଅନେକ ମାନ୍ୟବର ସଭ୍ୟ ଆଇନକାନୁନ ବିଷୟରେ ଅନଭିଜ୍ଞ । ତେଣୁ ଏ ପ୍ରକାର ଯୁକ୍ତି ଏ ବ୍ୟବସ୍ଥାପକ ସଭାରେ ଅତି ସହଜରେ କରାଯାଇ ପାରେ । ଯାହାହେଉ ମୁଁ କହୁଛି ଯେତେବେଳେ ବୋର୍ଡକୁ ଆମେ ଯଥେଷ୍ଟ କ୍ଷମତା ଦେଇଦେଉଛୁ ଏବଂ ବୋର୍ଡ ଦ୍ୱାରା ଯେଉଁ ନିଷ୍ପତ୍ତି ହେବ ସେଟା କୌଣସି ଆଇନ ଅଦାଲତ ଦ୍ୱାରା challenge ହୋଇ ପାରିବ ନାହିଁ, ଆମେ ଏ ବ୍ୟବସ୍ଥା କରୁଥାଇଁ ସେତେବେଳେ ସରକାର ଯେଉଁ ବ୍ୟବସ୍ଥା ଚାହୁଁ ଥିଲେ ଆମେ ନିଜ ହାତରେ କ୍ଷମତା ରଖିବୁ, ଆମେ ଗୋଟିଏ positive direction ଦେବୁ , ମିଲ କର୍ତ୍ତୃପକ୍ଷଙ୍କୁ ତୁମେ ଏହା କର, ନ କଲେ ତୁମେ ଦଣ୍ଡନୀୟ ହେବ ଏତଦ୍ୱାରା ଆମେ ସେମାନଙ୍କୁ correct କରିପାରିବା । ଏ କ୍ଷମତା ରହୁ, ସେଥିରେ ମୋର ଆପତ୍ତି ନାହିଁ । ସାଧାରଣ ଲୋକଙ୍କର ନାଗରୀକ ଅଧିକାରକୁ କ୍ଷୁନ୍ନ ନ କରି ଯଦି ଏହି ପ୍ରକାର ଅଧିକାର ରଖାଯାନ୍ତା ଏବଂ ରଖା ଯାଇଛି ମଧ୍ୟ ଯେ ବୋର୍ଡର ଯେ ନିଷ୍ପତ୍ତି ହେବ ସେଥିରେ କୌଣସି କୋର୍ଟ କଚେରୀ ହସ୍ତକ୍ଷେପ କରିପାରିବେ ନାହିଁ । ତାହାହେଲେ ଏଇଟା ଯଥେଷ୍ଟ ହୁଅନ୍ତା । କିନ୍ତୁ ଏ ଯେଉଁ ବ୍ୟବସ୍ଥା ରହିଛି ଏତଦ୍ୱାରା ମିଲ ମାଲିକଙ୍କ ବିପକ୍ଷରେ କୋର୍ଟ କଚେରୀରେ କାର୍ଯ୍ୟାନୁଷ୍ଠାନ କଲେ ବା ପୂର୍ବରୁ ଯେଉଁ ନିଷ୍ପତ୍ତି ହୋଇଛି ସେଟା ଅକାମୀ ହେବ ଏଇଟା ମୁଁ ଭାବୁଛି ଜନସାଧାରଣଙ୍କର ନାଗରୀକ ଅଧିକାରକୁ କ୍ଷୁନ୍ନ କରିବ । ଏ ଦୁଇଟି ବ୍ୟବସ୍ଥାକୁ ଏକ ସଙ୍ଗରେ କଲେ କୌଣସି ଅସାମଞ୍ଜସ୍ୟ ରହିବ ନାହିଁ । ବରଂ ସରକାରଙ୍କ ହାତ ଟାଣ ହୋଇପାରିବ ଏବଂ ସରକାର ବର୍ତ୍ତମାନ ଯେଉଁ କ୍ଷମତା ପ୍ରୟୋଗ କରିବାକୁ ଯାଉଛନ୍ତି ସେ କ୍ଷମତା ପ୍ରୟୋଗରେ ଜନସାଧାରଣଙ୍କର ସାହାଯ୍ୟ କରିପାରିବେ । ତେଣୁ ମୁଁ 15 ଦଫାରେ ଏହି ସଂଶୋଧନ ଆଗତ କରୁଛି ।

The SPEAKER : Motion moved that the Bill, as settled in this house, be passed.

× × × ×

Shri SHRADDHAKAR SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, ଏ ବିଲ୍‌ର 3rd reading ବିଷୟରେ କିଛି କହିବା ପୂର୍ବରୁ ବ୍ୟକ୍ତିଗତ କେତେକ ସମାଲୋଚନା ଯାହା ହୋଇଥିଲା ସେ ବିଷୟରେ କିଛି କହିବାକୁ ଚାହେଁ । ଗତକାଲି ସମାଲୋଚନା ସମୟରେ ମାନ୍ୟବର ସାଲେପୁରର ସଭ୍ୟ କହିଥିଲେ ଯେ ଯେତେବେଳେ କାଗଜ କଳ ବିରୁଦ୍ଧରେ ମକଦ୍ଦମା ହୋଇଥିଲା, ସେ ସମୟରେ ଅନେକ ଚାନ୍ଦା ଆଦାୟ ହୋଇଥିଲା । ମୁଁ ଯେତେବେଳେ ଉତ୍ତର ଦେଇଥିଲି ଚାନ୍ଦା ଆଦାୟ କରାଯାଇନି ସେତେବେଳେ ସାଲେପୁରର ସଭ୍ୟ କହିଲେ ଏହା ପୂର୍ବରୁ ଏ ବିଷୟରେ ଅଭିଯୋଗ ହୋଇଥିଲା ଏବଂ ମାନ୍ୟବର ସଭ୍ୟ ତା'ର ପ୍ରତିବାଦ କରିନାହାନ୍ତି ! ତା'ପରେ ପିପିଲିର ମାନ୍ୟବର ସଭ୍ୟ କହିଥିଲେ ଯଦି ଚାନ୍ଦା ଆଦାୟ କରାଯାଇ ନାହିଁ ତାହେଲେ କଳାହାଣ୍ଡି ମହାରାଜାଙ୍କଠାରୁ ମାନ୍ୟବର ସଭ୍ୟ ଟଙ୍କା ନେଇଥିଲେ କି ? ତା'ପରେ ମୁ ମାନ୍ୟବର ସାଲେପୁର ସଭ୍ୟଙ୍କୁ ଲିଖିତ ଅଭିଯୋଗ ଦେଇଥିଲି । ବାସ୍ତବିକ କ'ଣ ମୋ ବିରୁଦ୍ଧରେ ଏପରି ଅଭିଯୋଗ ହୋଇଥିଲା ମୋର ମନେ ପଡୁନି, ଆପଣ ଦୟାକରି କେବେ ଅଭିଯୋଗ କରାଯାଇଥିଲା ମୋତେ ଜଣାଇ ଦିଅନ୍ତୁ । ସେ ତା'ପରେ ଲେଖିଥିଲେ ବୋଧହୁଏ ଗତ Assemblyରେ ଶ୍ରୀ ବୀରେନ ମିତ୍ର ଏ ବିଷୟରେ ଅଭିଯୋଗ କରିଥିଲେ, ତା'ପରେ ମୁଁ Assembly Officeକୁ ଯାଇ Proceedings ଦେଖିଲି ବୀରେନ ମିତ୍ର ସେ ବିଷୟରେ ମୋ ଉପରେ କୌଣସି ଅଭିଯୋଗ କରି ନ ଥିଲେ । ମାନ୍ୟବର ସାଲେପୁରର ସଭ୍ୟ ମଧ୍ୟ ତାହା ଦେଖିଥିଲେ । ଏକଥା ଶୁଣି ମୋର ମନେ ହେଲା ଏ ବ୍ୟବସ୍ଥା ସଭରେ କ'ଣ ସେ ମେଣ୍ଢାଛୁଆ କଥାର ପୁନରାବୃତ୍ତି ହେବାକୁ ଯାଉଛି ? ଆପଣ ଜାଣିଥିବେ ଗୋଟିଏ ମେଣ୍ଢାଛୁଆ ପାହାଡ଼ ତଳେ ପାଣି ପିଉଥିଲା । ଉପରେ ଗୋଟିଏ ପାଣି ପିଉଥିଲା । ଗଧିଆ ଆସି ମେଣ୍ଢାଛୁଆକୁ ପଚାରିଲା 'ତୁ କାହିଁକି ପାଣି ମଇଳା କରୁଛୁ' ମେଣ୍ଢାଛୁଆ କହିଲା 'ମୁଁ ତ ତଳେ ପାଣି ପିଉଛି, ପାଣି କିପରି ମଇଳା ହେଲା' ଗଧିଆ କହିଲା 'ତୁ ଆରବର୍ଷ ପାଣି ମଇଳା କରିଥିଲୁ' ମେଣ୍ଢାଛୁଆ କହିଲା ମୁଁ ତ ଆରବର୍ଷ ଜନ୍ମ ହୋଇ ନ ଥିଲି' । ତେଣୁ ଗଧିଆ କହିଲା ତାହାହେଲେ ତୋର ବାପ କରିଥିବ । ସେହିପରି ଏ ଯେଉଁ ଅଭିଯୋଗ ମାନ ହେଉଛି, ଏ ଯେଉଁ ମେଣ୍ଢାଛୁଆ ପୁନରାଭିନୟ ବ୍ୟବସ୍ଥା ସଭରେ ହେଉଛି ତାହା ଯେପରି ନ ହେବ ସେ ବିଷୟରେ ଆପଣଙ୍କୁ ଏବଂ ମାନ୍ୟବର ସଭ୍ୟମାନଙ୍କୁ ଅନୁରୋଧ କରୁଛି ।

ଆମ ଦେଶରେ ରାଜନୈତିକ ଚେତନା ଏବଂ ପରିସ୍ଥିତି ଯାହା ସେଥିରେ ଆପଣ ଜାଣିଥିବେ ଯେ ଜଣେଲୋକ ଯେ କି କୌଣସି କାର୍ଯ୍ୟ କରିବାକୁ ଯିବ ତାକୁ ସହଜରେ discredit କରି ଦିଆଯାଇ ପାରେ ଏବଂ କରିବାର ଚେଷ୍ଟା ହୁଏ ମଧ୍ୟ । ତେଣୁ କୁହାଯାଇଛି ଯେ ମୁଁ ହଜାର

ହଜାର, ଲକ୍ଷ ଲକ୍ଷ ଟଙ୍କା ଗ୍ଧା ଆଦାୟ କରି ଆତ୍ମସାତ କରିଛି । ମୁଁ ସାଲେପୁରର ମାନ୍ୟବର ସଭ୍ୟଙ୍କୁ ଏବଂ ପିପିଲିର ମାନ୍ୟବର ସଭ୍ୟଙ୍କୁ ପରିଷ୍କାର ଭାବରେ ଜଣାଇ ଦେବାକୁ ଗ୍ହେଁ ଯେ ଭଗବାନଙ୍କ କୃପାରୁ ମୋର ଆର୍ଥିକ ପରିସ୍ଥିତି ଏପରି କିଛି ନୁହେଁ ଯେ ଗ୍ଧା ଅସୁଲ କରି ସେଟାକୁ ଆତ୍ମସାତ କରିବାକୁ ପଡ଼ିବ । ସେଟା ମୋର ବ୍ୟବସାୟ ନୁହେଁ ଏବଂ ମୁଁ ତାଉପରେ ନିର୍ଭର କରେନା । ଯଦି କେବେ ଭବିଷ୍ୟତରେ ମୋର ସେପରି ଅଭାବ ପଡ଼େ ତାହାହେଲେ ମୁଁ ମାନ୍ୟବର ସଭ୍ୟଙ୍କୁ ନିଶ୍ଚିତ ଭାବରେ ଜବାବ ଦେଉଛି ଯେ, ମୁଁ ମାନ୍ୟବର ପିପିଲିର ସଭ୍ୟଙ୍କର ଦ୍ୱାରସ୍ଥ ହୋଇ କହିବି ମୁଁ ଅଭାବରେ ପଡ଼ିଛି, ଆପଣ ମୋତେ କିଛି ଆର୍ଥିକ ସାହାଯ୍ୟ କରନ୍ତୁ ।

ବିଲ୍‌ର 3ୟ ଧାରା କିପରି କାର୍ଯ୍ୟକାରୀ ହେବ ସେ ବିଷୟରେ ସାମାନ୍ୟ ସୂଚନା ଦେବାକୁ ମୁଁ ଗ୍ହେଁ । ଯେଉଁ ଆଇନମାନ ପାଶ୍ କରିବାକୁ ଯାଉଛୁ, ସେ ଆଇନ ଯେତେବେଳେ କାର୍ଯ୍ୟକାରୀ ହେବ, ସେଇଟା ଯେପରି ପ୍ରକୃତରେ ଗୋଟିଏ River Boardରେ ପରିଣତ ହେବ ଏବଂ ପ୍ରକୃତରେ ନଦୀର ଉଭୟ କୂଳର ଲୋକଙ୍କର ସ୍ୱାର୍ଥ ଏବଂ ସୁବିଧା ପ୍ରତି ଯଥେଷ୍ଟ ସଚେତନ ରହିବ ଏବଂ ଦୃଷ୍ଟିଦେବ ସେଥିପ୍ରତି ମୁଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଏ ବିଷୟରେ ଆପଣ ଜାଣିଥିବେ ଯେ ଏପରି ଗୋଟିଏ dangerous ବା ବିପଦଜନକ clause ଅଛି ଯେଉଁଥିରେ କି ଏଟା ଗୋଟାଏ River Boardରେ ପରିଣତ ନ ହୋଇ ଗୋଟିଏ District Development Boardରେ ପର୍ଯ୍ୟବସିତ ହେବ । ସେ ସମ୍ଭାବନା ପୂର୍ଣ୍ଣମାତ୍ରାରେ ରହିଛି ଏବଂ ଯାହା ଫଳରେ କି କାରଖାନା କର୍ତ୍ତୃପକ୍ଷ ବା ମିଲ୍ ମାଲିକମାନେ ସହଜରେ ଏଥିରେ ପଶିଯାଇ ପାରିବେ, ସେ ଆଶଙ୍କା ଏଥିରେ ଅଛି । ଉଦାହରଣ ସ୍ୱରୂପ ମୁଁ କହିବି, clause 6 (1) (*b*)ରେ ଯେଉଁ provision ରଖାଯାଇଛି ସେଥିରେ କୁହାଯାଇଛି ଯେ ଯଦି କୌଣସି ମିଲ୍ କର୍ତ୍ତୃପକ୍ଷ ଅନ୍ୟ ଉପାୟରେ ପାଣି ଶୋଧନ କରିବାର ରାସ୍ତା ନ ଥାଏ, ତାହେଲେ ସେମାନେ ଅନ୍ୟତ୍ର ପାଣି ଯୋଗାଇବାପାଇଁ ଅନ୍ୟ ବ୍ୟବସ୍ଥା କରିବାପାଇଁ Board ଆଦେଶ ଦେଇପାରନ୍ତି । ଏଇଟା ଯେପରି ପ୍ରୟୋଗ ନ ହୁଏ ଏବଂ ଯଦି ଦରକାର ହୁଏ ଖୁବ୍ rare caseରେ ପ୍ରଯୁଜ୍ୟ ହୁଏ ସେଥିପ୍ରତି ସରକାର ଏବଂ Board ଦୃଷ୍ଟି ଦେବେ ବୋଲି ମୁଁ ଆଶା କରେ । କାରଣ ଆପଣ ଜାଣିଥିବେ ଯେ ଯଦି କୌଣସି Mill ମାଲିକଙ୍କୁ କୁହାଯାଏ Soda Recovery Plant କରନ୍ତୁ ଏବଂ ସେଥିରେ 2 ଲକ୍ଷ ଟଙ୍କା ଖର୍ଚ୍ଚ ହେବ ତାହେଲେ ସେ ମିଲ୍ କର୍ତ୍ତୃପକ୍ଷ 2 ଲକ୍ଷ ଟଙ୍କା ଖର୍ଚ୍ଚ ନ କରି କେତେ ଖଣ୍ଡ ଗାଁରେ କଣ ପୋଖରୀ କରିଦେବେ ଏବଂ ଲୋକଙ୍କର ଯେଉଁ ଅସୁବିଧା ହେଉଥିଲା ତାହା ସାମୟିକ ଭାବରେ କିଞ୍ଚିତ୍ ପରିମାଣରେ ଦୂର କରାଯାଇପାରିବ ।

ଏଇଟା ଯଦି ହୁଏ 16 (a) and (b) କୁ ବାଦ ଦିଆଯାଇ ଏ provision ଏଥିରେ ରଖାଯାଏ ଓ ତଦ୍ୱାରା ମିଲ୍ କର୍ତ୍ତୃପକ୍ଷଙ୍କୁ ବେଶି ସୁବିଧା ଦିଆଯାଏ ତାହାହେଲେ ମୁଁ ଭାବୁଛି ଏଇଟା ଗୋଟିଏ River Board ନ ହୋଇ ଗୋଟିଏ District Development

Committee ଭଳି ହେବ ଯେପରି ବର୍ତ୍ତମାନ ପ୍ରତ୍ୟେକ ଜିଲ୍ଲାରେ ହୋଇଛି ଯେଉଁମାନେ କି ସରକାରଙ୍କଠାରୁ ଟଙ୍କା ନେଇ କେଉଁଠି କେତେ କୂଅ ହେବ କେଉଁଠି କେତେ ପୋଖରୀ ହେବ ସେ ବିଷୟରେ ବିଚାର କରୁଛନ୍ତି । ସେପରି ହେଲେ ମିଲ୍ ମାଲିକମାନେ ଖସିଯିବେ ଏବଂ ବୋର୍ଡ ମଧ୍ୟ ବିଚାର କରି ତାଙ୍କ କର୍ତ୍ତବ୍ୟ ଶେଷ କରିବେ । ଆମର River Board ଗଠନ କରିବାର ପ୍ରଧାନ ଉଦ୍ଦେଶ୍ୟ ହେଲା ଯେଉଁଠି ଲୋକମାନେ ନଦୀ କୂଳରେ ଅବସ୍ଥାନ କରୁଥିବେ, alternative water supply source ଯାହା ଥାଉ ନା କାହିଁକି, ଆମକୁ ଦେଖିବାକୁ ହେବ ଯେ ସେଠାରେ ଆମର ନଦୀଜଳ ଯଥେଷ୍ଟ ପରିମାଣରେ ବିଶୁଦ୍ଧ ରହିଛି ବର୍ତ୍ତମାନ ଶିଳ୍ପର ସମୃଦ୍ଧିପାଇଁ ଏବଂ ଶିଳ୍ପପତିମାନଙ୍କୁ ପ୍ରଶ୍ରୟ ଦେବାପାଇଁ ଆମେ River Boardର କଳ୍ପନା କରିବାପରେ ପୂର୍ବରୁ ଯେଉଁ standard of purity set up କରାଯାଇଥିଲା ତାହା ବଦଳରେ ବର୍ତ୍ତମାନ standard of pollution ଆମେ set up କରିଛୁ । ଶିଳ୍ପକୁ ଯେତେଦୂର ସମୃଦ୍ଧ କରାଯିବାର କଥା ତାହା କରାଯାଉ କିନ୍ତୁ ତା ବୋଲି ଗୋଟିଏ standard of pollution set up ନ ହୋଇ ଯେପରି ଗୋଟିଏ standard of purity set up ହୁଏ ଏବଂ ଲୋକମାନେ ପ୍ରବାହିତ ନଦୀ ତଥା କୂପ ପୁଷ୍କରିଣୀରୁ ଯେପରି ବିଶୁଦ୍ଧତର ଜଳ ପାଇପାରୁଛନ୍ତି ସେଠାରେ ଯେପରି ସେହିପରି ଜଳ ପାଆନ୍ତି ସେଥିପ୍ରତି ସରକାର ବିଶେଷ ଦୃଷ୍ଟିଦେବା ଦର୍କାର ।

## ହୀରାକୁଦ ବୁଡ଼ଅଞ୍ଚଳ ଉପରେ ଅଧଘଣ୍ଟିଆ ଆଲୋଚନା

ଡକ୍ଟର ସୁପକାର : ସେପ୍ଟେମ୍ବର 3, 1954ରେ ହୀରାକୁଦ ଯୋଜନା କ୍ଷତିପୂରଣ ସଂପର୍କରେ ଓଡ଼ିଶା ବିଧାନସଭାରେ ସରକାରଙ୍କୁ କେତେକ ପ୍ରଶ୍ନ ପଚାରିଥିଲେ ଏବଂ ତା'ର ଉତ୍ତର ମୁଖ୍ୟମନ୍ତ୍ରୀ ଯାହା ଦେଲେ ସେଥିରେ ସେ ସନ୍ତୁଷ୍ଟ ହୋଇନଥିଲେ । ତେଣୁ ସେ ଅଧଘଣ୍ଟିଆ ଆଲୋଚନା ପାଇଁ ନୋଟିସ ଦେଇଥିଲେ ଏବଂ ତାଉପରେ ସେ ଆଲୋଚନା ଆରମ୍ଭ କରିଥିଲେ । ବିଧାନସଭା କାର୍ଯ୍ୟ ବିଧିର 57 ଧାରାନୁସାରେ ଜଣେ ସଭ୍ୟ ଚାହିଁଲେ ସର୍ବସାଧାରଣ ଗୁରୁତ୍ୱପୂର୍ଣ୍ଣ କୌଣସି ବିଷୟ ଅଳ୍ପ ଦିନ ତଳେ ପଚରା ଯାଇଥିବା ଏକ ମୌଖିକ ବା ଲିଖିତ ପ୍ରଶ୍ନର ଆଲୋଚ୍ୟବସ୍ତୁ ହୋଇଥିଲେ ଓ ଉକ୍ତ ପ୍ରଶ୍ନ ଅଧିକ ସନ୍ତୁଷ୍ଟ ହେବା ଆବଶ୍ୟକ ହୋଇଥିଲେ ଏହା ଉପରେ ଆଲୋଚନା ଉତ୍ଥାପନ କରିବା ନିମନ୍ତେ ବାଚସ୍ପତି ସପ୍ତାହରେ ଅଧଘଣ୍ଟା ଲେଖାଏ ତିନିଦିନ ସମୟ ଦେବେ । ସେହି ବିଧି ଅନୁସାରେ ଡଃ ସୁପକାର ସେପ୍ଟେମ୍ବର 17, 1954 ଦିନ ଆଲୋଚନା କରି ସରକାରଙ୍କ ଉଦାସୀନତା ଓ ଅବହେଳାକୁ କିପରି କଠୋର ଅଥଚ ଭଦ୍ରଭାବରେ ସମାଲୋଚନା କରିଛନ୍ତି, ଦେଖନ୍ତୁ ।

## HALF-AN-HOUR DISCUSSION

Shri SRADDHAKAR SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, ମୁଁ ଗତ ତା 3-9-1954ରିଖ ଦିନ ସମ୍ବଲପୁରରେ ହୀରାକୁଦ ଯୋଜନା କ୍ଷତିପୂରଣ ଧାର୍ଯ୍ୟ କରିବାପାଇଁ ଯେଉଁ ମଧ୍ୟସ୍ଥ ନିଯୁକ୍ତ ହୋଇଛନ୍ତି ତାଙ୍କ ବିଚାରାଧୀନ ମକଦ୍ଦମା ସଂଖ୍ୟା ବିଷୟରେ କେତେକ

ପ୍ରଶ୍ନ ପଗ୍ଯରିଥିଲି । ପ୍ରଶ୍ନର ନମ୍ବର ହେଉଛି ୨ ଓ 10 । ସେ ବିଷୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଯାହା ଉତ୍ତର ଦେଇଥିଲେ ତାହା ଗୁରୁତ୍ୱ ଦୃଷ୍ଟିରୁ ଏ ବିଷୟରେ ଆଲୋଚନା କରିବା ଦରକାର ବୋଲି ମୁଁ ମନେ କରୁଛି । କୌଣସି ଏକ ରାଜ୍ୟରେ ଶାସନ ଗାଦିରେ ଥିବା ସରକାର ଯଦି କୌଣସି ବ୍ୟକ୍ତିବିଶେଷ ବା ଶ୍ରେଣୀବିଶେଷଙ୍କୁ ହଇରାଣ କରିବାକୁ ଚାହାନ୍ତି ବିଶେଷତଃ ନିଜେ ଗଢିଥିବା ଆଇନ କାନୁନର ଖିଲାପ କରି କିପରି ଭାବରେ ହଇରାଣ କରିପାରନ୍ତି ଏ ବିଷୟରେ ମୁଁ କେତେକ କଥା କହିବି । ଅବଶ୍ୟ ଶାସନ ବିଭାଗର ଉଚ୍ଚ କର୍ମଚାରୀଙ୍କ ସ୍ୱେଚ୍ଛାଚାରିତା ବନ୍ଦ କରିବାପାଇଁ ଆଇନ ଅଦାଲତମାନ ହୋଇଛି, ହାଇକୋର୍ଟ, ସୁପ୍ରିମକୋର୍ଟ ଅଛି କିନ୍ତୁ ଅଦାଲତ-ମାନଙ୍କର କ୍ଷମତା ଆଜି ସୀମାବଦ୍ଧ । ବିଶେଷତଃ ଆଜିକା ଯୁଗରେ ଯେତେବେଳେ ପ୍ରାୟ ପ୍ରତ୍ୟେକ ଆଇନରେ ଲେଖି ଦିଆଯାଉଛି ଯେ ସରକାରୀ ଅଫିସରମାନଙ୍କ କାର୍ଯ୍ୟରେ କୌଣସି ଆଇନ ଅଦାଲତ ହସ୍ତକ୍ଷେପ କରିପାରିବ ନାହିଁ । ଏପରି କ୍ଷେତ୍ରରେ ଯଦି ସରକାର କୌଣସି ବ୍ୟକ୍ତି ବା ଶ୍ରେଣୀ ବିଶେଷଙ୍କୁ ହଇରାଣ କରିବାକୁ ଚାହାଁନ୍ତି ସେଥିରେ କୌଣସି ଆଇନଗତ ବାଧା ନାହିଁ । ସମ୍ବଲପୁର ବୁଡ଼ି ଅଞ୍ଚଳ ଲୋକଙ୍କୁ ଉଦାର କ୍ଷତିପୂରଣ ଦେବା ପ୍ରତିଶ୍ରୁତି ମାତ୍ର ଦେଇ 1946 ସାଲରେ ସମ୍ବଲପୁରରେ ଏକ ବିସ୍ତୀର୍ଣ୍ଣ ଅଞ୍ଚଳକୁ ଚାଷ ପାଇଁ ଅକର୍ମଣ୍ୟ କରିବାର ଉଦ୍ୟମ ଯେତେବେଳେ ଆରମ୍ଭ ହେଲା ସେତେବେଳେ ଅତି କମ୍ ଭାବରେ କ୍ଷତିପୂରଣ ଦିଆଗଲା । ଆଜିକାଲି ଶିବରମଣ ରିପୋର୍ଟରେ ଜମିର ବାର୍ଷିକ ଆଦାୟ ଯେତିକି ହେବାର କଥା ତହିଁର 1/3 ବା 1/4 ସବୁ ଦିନ ପାଇଁ ଜମିର ମୂଲ୍ୟ ସ୍ୱରୂପ ନିରୂପଣ କରାଯାଇ କ୍ଷତିପୂରିଣ ଦିଆଗଲା ଏବଂ ସେ ସମୟରେ ମାନ୍ୟବର ମହତାବ ବ୍ୟବସ୍ଥା ସଭାରେ କହିଥିଲେ ଯେ କ୍ଷତିପୂରଣ ଲୋକଙ୍କର ନାର୍ଯ୍ୟ ପାଉଣାଠାରୁ ଢେର ବେଶି । 13-3-1950 ତାରିଖର 299 ନମ୍ବର ପ୍ରଶ୍ନର ଉତ୍ତରରେ ଯାହା ସେ କହିଥିଲେ ମୁଁ କେବଳ ପ୍ରସଙ୍ଗକ୍ରମେ ସଂକ୍ଷିପ୍ତ ଭାବରେ ତାହା ଉଦ୍ଧାର କରୁଛି । ସେ କହିଥିଲେ ବୈଦେହିର ୨ ଏକର 36 ଡେସିମିଲ ଜମିପାଇଁ ତାକୁ 697 ଟଙ୍କା କ୍ଷତିପୂରଣ ବାବଦରେ ପ୍ରଦତ୍ତ ହୋଇଛି, ବ୍ରଜ ଭୋଇ ନାମକ ଜଣେ ଦରିଦ୍ର ଚାଷୀକୁ 66 ଡେସିମିଲକୁ ଟ 12।⁄, ବିଦ୍ୟାଧର ନାମକ ଆଉ ଜଣକୁ 56 ଡେସିମିଲ ପାଇଁ ଟ 2। ⁄ ଏବଂ 77 ଡେସିମିଲ ପାଇଁ ଟ 13।୶⁄ ଦିଆଯାଇଛି । ଯେତେବେଳେ ପଚରାଗଲା ଏହି କ୍ଷତିପୂରଣ ହାର କମ୍ କି ସେତେବେଳେ ମାନ୍ୟବର ମହତାବ କହିଥିଲେ ଯେ ଅତି ଉଦାର ହିସାବରେ କ୍ଷତିପୂରଣ ଦିଆଯାଇଛି । As it appears this compensation is at the rate of 300 times of the deduced rent that is to say much more than the ordinary rent provided under the law, ଏହି ଯେଉଁ Law କଥା କୁହାଗଲା ସେଇଟା ହେଉଛି 1948ରେ ପାଶ୍ ହୋଇଥିବା ସ୍ୱତନ୍ତ୍ର କ୍ଷତିପୂରଣ ଆଇନ ଯେଉଁଥିରେ କି ଲୋକଙ୍କ କ୍ଷତିପୂରଣ ସ୍ଥିର କରିବାପାଇଁ ଆଇନ ଅଦାଲତକୁ ନେବାକୁ ମନାକରି ଦିଆଯାଇଥିଲା । ସେଥିରେ କୁହାଗଲା ଯେ Arbitration ବା ମଧ୍ୟସ୍ଥ କେବଳ ଯେତିକି କ୍ଷତିପୂରଣ ସବୁ ସ୍ଥିର କରିବେ ବୋଲି ସେ ଆଇନରେ ବ୍ୟବସ୍ଥା କରାଗଲା । କିନ୍ତୁ ଏ ବିଷୟରେ ଲୋକେ ଯେପରି ନ୍ୟାୟ ବିଚାର ନ ପାଇବେ ସେଥିପାଇଁ ସରକାର ନିଜ ପ୍ରଣୀତ ଆଇନକାନୁନ ମଧ୍ୟ ଲଙ୍ଘନ କରି ଚାଲିଲେ

ମଧ୍ୟସ୍ଥ ଯେପରି ଚଞ୍ଚଳ ନିଯୁକ୍ତ ନହେବେ ଏବଂ ତାଙ୍କ ଦ୍ୱାରା ବିଗ୍ଭରକୁ କିପରି ଭାବେ ଯଥାସମ୍ଭବ ଗଡ଼ାଇ ଦିଆଯିବ ସେ ବ୍ୟବସ୍ଥା କରାଗଲା । ୧୨୫୦ ମଇ ମାସରେ ପ୍ରଥମ ଦରଖାସ୍ତ ପଡ଼ିଲା ମଧ୍ୟସ୍ଥଙ୍କ ବିଗ୍ଭର ପାଇଁ କିନ୍ତୁ ସରକାର ନୀରବ ରହିଲେ । ଏ ବିଷୟରେ ବ୍ୟବସ୍ଥା ସଭାରେ ପ୍ରଶ୍ନ ହେବାରୁ ଅସତ୍ୟ ଉତ୍ତର ଦିଆଗଲା । ଶେଷକୁ ଅନନ୍ୟୋପାୟ ହୋଇ ନିତାନ୍ତ ଅନିଚ୍ଛାରେ ୧୨୫୧ ସେପ୍ଟେମ୍ବରରେ ମଧ୍ୟସ୍ଥ ନିଯୁକ୍ତ ହେଲେ କିନ୍ତୁ ମଧ୍ୟସ୍ଥଙ୍କ ବିଗ୍ଭର ଯେପରି ଡେରି ହେବ ସେଥିପାଇଁ ସରକାରଙ୍କ ତରଫରୁ ଚେଷ୍ଟା ହେଲା । ମଧ୍ୟସ୍ଥ ସମ୍ବଲପୁରରେ ବରାବର ରହିବା ଉଚିତ ଥିଲା କିନ୍ତୁ ତାଙ୍କୁ ଅନୁମତି ଦିଆଗଲା, ସମ୍ବଲପୁରରୁ ଦୁଇ ବା ତିନି ମାସରେ ଥରେ ସମ୍ବଲପୁର ଯାଇ, ସେଠି ୨/୪ ଦିନ ରହି ଫେରି ଆସିବାକୁ । ଅବସର ପ୍ରାପ୍ତ ଜଣେ କର୍ମଗ୍ଭରୀଙ୍କୁ ଅବସର ବିନୋଦନ ସ୍ୱରୂପ ଏ ଗୁରୁତର କାର୍ଯ୍ୟ ଦିଆଗଲା । Justice delayed is Justice deserved. ସରକାରଙ୍କର ସ୍ୱାର୍ଥ ହେଲା ଲୋକଙ୍କର ନ୍ୟାୟ ବିଗ୍ଭର ପାଇବାରେ ଯେପରି ବିଳମ୍ବ ହେବ ।

ଏକରକୁ ଟ ୧୪.୨୫ ପଇସା କ୍ଷତିପୂରଣ ଦିଆଯିବାରେ ସମ୍ବଲପୁରରେ ଅନେକ ଲୋକେ ପ୍ରତିବାଦ ସ୍ୱରୂପ ଆର୍ବିଟ୍ରେଟରଙ୍କ ପାଖକୁ ଜମି କ୍ଷତିପୂରଣ ବିଷୟ ବିଗ୍ଭରପାଇଁ ପଠାଇବାକୁ ଦରଖାସ୍ତ ଦେଲେ କିନ୍ତୁ ସମ୍ବଲପୁର ଲୋକଙ୍କ ପକ୍ଷରେ ନ୍ୟାୟ ବିଗ୍ଭର ପାଇବାର ଚେଷ୍ଟା ଘୋର ଧୃଷ୍ଟତା ମନେକରି ସରକାର ଏହା ବିଳମ୍ବ କରାଇବାକୁ ଚେଷ୍ଟାକଲେ ଓ ପ୍ରଗ୍ଭର କଲେ ଯେ ଯଦି ଆର୍ବିଟ୍ରେଟରଙ୍କ ପାଖକୁ କେଶ୍ ଯାଏ ତେବେ ହୀରାକୁଦରେ ଜମି ଜଳମଗ୍ନ ହେବାର ବହୁପରେ ସୁଦ୍ଧା କ୍ଷତିପୂରଣ ମିଳିବ ନାହିଁ । ଲୋକଙ୍କର ଆଗରେ ଦ୍ୱିଧା ବା Dilemma ହେଲା ଏକରକୁ ଟ ୧୪.୨୫ ପଇସା ହିସାବରେ ନେଇ ସବୁ ଅନ୍ୟାୟ ଅତ୍ୟାଗ୍ଭର ସାମନାରେ ମୁଣ୍ଡ ନୁଆଇଁ ଦେବେ ନା ମଧ୍ୟସ୍ଥଙ୍କର ଆଶ୍ରୟ ନେଇ କ୍ଷତିପୂରଣ ଶୀଘ୍ର ପାଇବାର ଆଶା ତ୍ୟାଗ କରିବା । ଅନେକ ଲୋକ କମ୍ କ୍ଷତିପୂରଣ ନେଇ ସନ୍ତୁଷ୍ଟ ରହିଲେ । ସରକାରୀ ଦୃଷ୍ଟିକୋଣର କେତେ ଧୃଷ୍ଟତା ପୂର୍ଣ୍ଣ ଲୋକ ନ୍ୟାୟ ପରୀକ୍ଷା ଗ୍ଭହିଁଲେ । ନ୍ୟାୟ ପରୀକ୍ଷା ଯେତେବେଳେ ହେଲା, କ୍ଷତିପୂରଣ ଦେବାରେ ସରକାରଙ୍କ ଉଦାରତା ପରିବର୍ତ୍ତେ କୃପଣତା ଏବଂ ମାନସିକ ସଂକୀର୍ଣ୍ଣତା ଅତି ଉଲଗ୍ନ ଭାବରେ ପ୍ରକାଶିତ ହେଲା । ଲୋକଙ୍କର ଧୃଷ୍ଟତା ସଙ୍ଗେ ମଧ୍ୟସ୍ଥଙ୍କ ଧୃଷ୍ଟତା ମିଶିଯିବାରୁ, ସରକାର ଆହୁରି କିପରି ବିଳମ୍ବ କରାଯାଇପାରେ ସେଥିପାଇଁ High Court ର ଆଶ୍ରୟ ନେଲେ ଏବଂ ସଙ୍ଗେ ସଙ୍ଗେ ବିଗ୍ଭରାଧୀନ ମୋକଦ୍ଦମା ଯେପରି ବିଗ୍ଭରକୁ ନ ଆସେ ସେଥିପାଇଁ ଦେୱାନି କାର୍ଯ୍ୟବିଧି ଆଇନର ୧୦ ଧାରାର ଆଶ୍ରୟ ନେଲେ । କେବଳ ସେତିକି ନୁହେଁ, ଯେଉଁ ଆଇନ୍‌ରେ ଅଛି ଯେ, With least possible delay ମଧ୍ୟସ୍ଥଙ୍କୁ ବିବାଦ ବିଗ୍ଭରପାଇଁ ପଠାଇବା କଥା ତାହା ମଧ୍ୟ ବର୍ଷ ବର୍ଷ ଧରି ଗଡ଼ାଇଲେ । ଏ ବିଷୟରେ ଅବଶ୍ୟ High Court ବା Supreme Court ରେ ଯଦି mandamus ବା ଅନ୍ୟ କିଛି ବ୍ୟବସ୍ଥା କରାଯାଇପାରେ । ତେବେ ଏ ପ୍ରକାର ଆଇନ୍ ଭଙ୍ଗ କରିବାକୁ ସାହସ କରି ନଥାନ୍ତେ, କିନ୍ତୁ କଂଗ୍ରେସ ସରକାରଙ୍କର ପରମ୍ପରା ଅଛି, ଆଇନ ଭଙ୍ଗ ।

ଯାହା ହେଉ, ଏ ବିଷୟରେ ଅନ୍ୟ ଉପାୟ ନ ଦେଖି ବ୍ୟବସ୍ଥା ସଭରେ ବାରମ୍ବାର ପ୍ରଶ୍ନ କରାଗଲେ ମଧ୍ୟ କୌଣସି ପ୍ରତିକାର ନାହିଁ ବା ହେବାର ଆଶା ମଧ୍ୟ ନାହିଁ । ତେବେ କର୍ତ୍ତବ୍ୟ ହିସାବରେ ଆପଣଙ୍କର ଏବଂ ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ଏ ଆଲୋଚନା କରୁଛି । ମଧ୍ୟସ୍ଥଙ୍କ ନିଷ୍ପତ୍ତି ବିରୁଦ୍ଧରେ High Court କୁ ହୋଇଥିବା ଅପିଲ ନିଷ୍ପତ୍ତି ହେବା ପୂର୍ବରୁ ହୀରାକୁଦ ଜଳଭଣ୍ଡାର ନିର୍ମିତ ହୋଇ ସାରିଥିବ । ଲୋକେ High Court ଓ ମଧ୍ୟସ୍ଥଙ୍କଠାରୁ ନ୍ୟାୟ ବିଚାର ପାଇବେ । ମାତ୍ର ଯେଉଁ ଟଙ୍କା ପାଇବେ, ସେଟା ପୂରାପୂରୀ କାମକୁ ଆସିବ ନାହିଁ । କାରଣ ଏହାର ବହୁପୂର୍ବରୁ ସେମାନଙ୍କର ବସିବାପାଇଁ ସରକାର ବ୍ୟବସ୍ଥା କରିବାର ଉଚିତ ଥିଲା । ଏପରିକି ଯେଉଁମାନଙ୍କର ମୋକଦ୍ଦମା, ମଧ୍ୟସ୍ଥଙ୍କର ବିଚାରାଧୀନ ଅଛି, ସେମାନଙ୍କର ଜମି ବିଷୟରେ ସରକାର ଅନ୍ତତଃ ନ୍ୟୁନତମ ପାଉଣା ଯେତେ ତାହା Advance ସ୍ୱରୂପ ହେଉ ବା ଅନ୍ୟ କୌଣସି ସର୍ତ୍ତରେ ଲୋକଙ୍କୁ ଦିଆଯାଉ ବୋଲି ଲୋକଙ୍କ ତରଫରୁ ଦରଖାସ୍ତ ହୋଇଛି । କିନ୍ତୁ ସେ ପ୍ରକାର ଦିଆଗଲେ, ସରକାରଙ୍କ ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯିବ ବୋଲି ବୋଧହୁଏ ଯେଉଁମାନଙ୍କ ବିଷୟ ମଧ୍ୟସ୍ଥଙ୍କର ବିଚାରାଧୀନ ଅଛି ସେମାନଙ୍କୁ କିଛି ନ ଦେବାପାଇଁ ସ୍ଥିର କରିଛନ୍ତି ।

ସରକାରଙ୍କର ସବୁ ଦୁଷ୍କର୍ମର ପ୍ରତିକାର କୋର୍ଟ କଚେରୀରେ ହେଉଥିବା ଅସମ୍ଭବ । ବିଶେଷତଃ ଅନେକ କ୍ଷେତ୍ରରେ ଯେଉଁଠି ଆଇନଦ୍ୱାରା ନ୍ୟାୟର କଣ୍ଠରୋଧ କରାଯାଉଛି, ସମ୍ବଲପୁରର ହଜାର ହଜାର ଲୋକ ସରକାରଙ୍କର ଏ ପ୍ରତିଶୋଧମୂଳକ ମନୋବୃତ୍ତିର ବିଷମୟ ଫଳ ଭୋଗ କରୁଛନ୍ତି । ଯେଉଁମାନଙ୍କର ଜମି 1946ରୁ ଅକର୍ମଣ୍ୟ ହୋଇଯାଇଛି ଓ ବର୍ତ୍ତମାନ ଯେଉଁମାନଙ୍କର ଜମି ନିକଟ ଭବିଷ୍ୟତରେ ଜଳମଗ୍ନ ହେବ ସେମାନଙ୍କର ଜମି ମଧ୍ୟ ବର୍ତ୍ତମାନ ବିଚାରାଧୀନ ଅଛି । କିନ୍ତୁ ସେମାନେ ଧୈର୍ଯ୍ୟର ସହିତ ଆଶା କରିଛନ୍ତି ଯେ ଭଗବାନଙ୍କ ରାଜ୍ୟରେ ଡେରି ହୋଇପାରେ କିନ୍ତୁ ଅନ୍ୟାୟ ହେବନାହିଁ ।

## ଓଡ଼ିଶା ନଦୀ ପ୍ରଦୂଷଣ ପ୍ରତିକାର ବିଲ୍, 1953

ଡକ୍ଟର ସୂପକାର ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପୂର୍ବେ ପ୍ରଦୂଷଣ ପ୍ରତିକାର ପାଇଁ ଯେମିତି ସଂଗ୍ରାମ କରିଥିଲେ, ତାହା ସମ୍ଭବତଃ ସର୍ବପ୍ରଧାନ ଓ ସର୍ବପ୍ରଥମ । ବିଶେଷତଃ ନଦୀଜଳ ପ୍ରଦୂଷଣର ପ୍ରତିକାର ପାଇଁ ତାଙ୍କର ଦୃଢ଼ ସ୍ୱର ଉତ୍ତୋଳନ ଏହି କ୍ଷେତ୍ରରେ କାର୍ଯ୍ୟକରୁଥିବା ଆଜିର ଅଳ୍ପ କେତେଜଣ ନେତାଙ୍କ ମଧ୍ୟରେ ଅଗ୍ରଗଣ୍ୟ । ଯେଉଁ ଓଡ଼ିଶା ନଦୀ ପ୍ରଦୂଷଣ ପ୍ରତିକାର ବିଲ୍, 1953ରେ ଆଗତ ହୋଇ Select Committee କୁ ଯାଇଥିଲା, ତାପରେ ଆଲୋଚନା ଆରମ୍ଭ କରି ଡଃ. ସୂପକାର କହିଛନ୍ତି (ଅକ୍ଟୋବର 9, 1953) ଯେ ଓଡ଼ିଶା ସରକାର କେନ୍ଦ୍ର ସରକାରଙ୍କ ଉପରେ ଏପରି ଆଇନ କରାଇବାରେ ପଶ୍ଚାତପଦ ହେଉଛନ୍ତି । କିନ୍ତୁ ଜନସାଧାରଣ ଏହି ନଦୀଜଳ ପ୍ରଦୂଷଣ ଯୋଗୁଁ ଯେଉଁ ଦୁଃଖକଷ୍ଟ ଭୋଗୁଛନ୍ତି, ତାହା ଦୂରରେ ଥିବା ବ୍ୟକ୍ତିମାନେ ବୁଝିପାରିବେ ନାହିଁ, ସ୍ୱାସ୍ଥ୍ୟ

ଉପରେ ଏହାର କୁପ୍ରଭାବକୁ ଅନୁଭବ କରିପାରିବେ ନାହିଁ ସେ ଏହାକୁ 'It was a problem between Trade and trouters' ଓ "contest is between Money and men" ବୋଲି କହିଛନ୍ତି । ଯେଉଁ ଶିଳ୍ପ ବା କାରଖାନା ସରକାରଙ୍କ ଆଦେଶକୁ ଅମାନ୍ୟ କରନ୍ତି, ସରକାର ତାକୁ ବନ୍ଦ କରିଦେବା ଉଚିତ । ଯେଉଁ ବନ୍ଧୁମାନେ ଦୂଷିତ ଜଳର ମାରାତ୍ମକତା ବୁଝି ପାରୁନାହାନ୍ତି, ଶ୍ରଦ୍ଧାକର ସେମାନଙ୍କୁ ନିମନ୍ତ୍ରଣ କରିଛନ୍ତି । "ଅକ୍ଷୟ ତୃତୀୟା ପୂର୍ବରୁ ବା ପରେ ଯାଇ ସେମାନେ ଓରିଏଣ୍ଟ କାଗଜକଳରୁ ପାଣି ଯେଉଁ ଜାଗାରେ ଇବ୍ ନଦୀରେ ପଡୁଛି, ସେଠାରୁ ପାଣି ଗ୍ଲାସେ ଗ୍ଲାସେ ଅନୁଗ୍ରହପୂର୍ବକ ପିଇବେ" ।

Pollution Control Boardକୁ ଯଥାର୍ଥ କ୍ଷମତା ଦେଇଥିଲେ ମଧ୍ୟ ଜନସାଧାରଣଙ୍କ ବ୍ୟକ୍ତିଗତ ଅଧିକାର କୋର୍ଟରେ ନ୍ୟାୟ ବିଗ୍ଭର ପାଇଁ ମୋକଦ୍ଦମା କରିପାରିବେ । ସେମାନଙ୍କର "Right to proceed under law of Public nuisance" ସାବ୍ୟସ୍ତ କରିବାରେ କୌଣସି ବାଧା ରହିବା ଅନୁଚିତ । Public health standard ଯେଉଁପରି ରକ୍ଷା କରଯାଇ ପାରିବ ସେଥିପାଇଁ ସରକାର ଆନ୍ତରିକତା ପ୍ରଦର୍ଶନ କରିବା ଦରକାର । ସରକାରଙ୍କ ଅତୀତ କାର୍ଯ୍ୟକଳାପ ଶ୍ରଦ୍ଧାକରଙ୍କ ମନରେ ସନ୍ଦେହ ସୃଷ୍ଟି କରିଛି ଏବଂ କି ଉପାୟରେ ଏହି ଅବସ୍ଥାର ଉନ୍ନତି ହୋଇପାରିବ, ସେ ଦିଗରେ ସେ ପରାମର୍ଶ ଦେଇଛନ୍ତି ।

## 1954-55 ବର୍ଷର ବଜେଟ ଉପରେ ସାଧାରଣ ଆଲୋଚନା

ଓଡ଼ିଶା ବିଧାନସଭା ଗୃହରେ ଡକ୍ଟର ସୂପକାର 1954-55 ବର୍ଷର ବଜେଟ ଉପରେ ସାଧାରଣ ଆଲୋଚନା କରିଛନ୍ତି । ସେ ପ୍ରଥମେ ହୀରାକୁଦ ସମସ୍ୟା ଏବଂ ଏଥିଯୋଗୁ ଖର୍ଚ୍ଚ ବୃଦ୍ଧି ଅପଚୟ ଉପରେ ଆଲୋକପାତ କରିଛନ୍ତି । ତାପରେ ସେ ବିଶେଷଜ୍ଞମାନଙ୍କ ମତାମତ ନଶୁଣି ସବୁ କାର୍ଯ୍ୟ କରାଗଲା ବୋଲି ସରକାରଙ୍କୁ ଦୋଷ ଦେଇଛନ୍ତି । ଶରଣାର୍ଥୀଙ୍କ ସମସ୍ୟା ସୃଷ୍ଟି ହେଉଛି ବୋଲି ସେ ଅଭିଯୋଗ ଆଣିଛନ୍ତି । ଚିକିତ୍ସା, ସାଧାରଣ ସ୍ୱାସ୍ଥ୍ୟ, ରାସ୍ତାଘାଟ, ନଦୀପ୍ରଦୂଷଣ, ଉଚ୍ଚ ପାହ୍ୟାର ସରକାରୀ କର୍ମଚାରୀଙ୍କ ସଂଖ୍ୟା ବୃଦ୍ଧି ଆଦି ବିଷୟରେ ଆଲୋକପାତ କରିଛନ୍ତି । ଅର୍ଥମନ୍ତ୍ରୀଙ୍କ ବଜେଟକୁ ସେ କୁଇନାଇନ ସହିତ ତୁଳନା କରି Chinconismର ଉପସର୍ଗରେ କର୍ଣ୍ଣବଧିରତା ଘଟେ ବୋଲି ସୂଚାଇ ଦେଇଛନ୍ତି । ତେଣୁ ସରକାର ଜନସାଧାରଣଙ୍କ ଦୁର୍ଦ୍ଦଶାର ଖବର କାନରେ ନପୂରାଇ ଅବହେଳା କରୁଛନ୍ତି ବୋଲି ମତ ଦେଇଛନ୍ତି ।

Shri SHRADDHAKAR SUPAKAR: ମାନ୍ୟବର ଅଧ୍ୟକ୍ଷ ମହାଶୟ, ମାନ୍ୟବର ଅର୍ଥମନ୍ତ୍ରୀଙ୍କର ବଜେଟ ଭାଷଣକୁ Sugarcoated କୁଇନାଇନ ସଙ୍ଗେ ତୁଳନା କରାଯାଇପାରେ କିନ୍ତୁ ଏ ଭାଷଣରେ ଚିନି ଏତେ କମ୍ ଏବଂ କୁଇନାଇନର ମାତ୍ରା

ଏତେ ଅଧିକ ଯେ ଗତ ବର୍ଷପରି ଏ ବର୍ଷ ତାଙ୍କୁ ଆଉ ଉଚ୍ଛ୍ୱସିତ ପ୍ରଶଂସା କରି ହେଉନାହିଁ । ଗଲବର୍ଷ ଅଣ୍ଡା ଉପରୁ ଟିକସ ଉଠାଇ ଦେଇ ସେ ଯେପରି ଧନିକ ଓ ମଧ୍ୟବିତ୍ତମାନଙ୍କର ଭିଟାମିନ ସେବନର ପରିସର ବିସ୍ତୃତ କରିଥିଲେ, ଏବର୍ଷ ଶୁଖୁଆ ଉପରୁ ଟିକସ ଉଠାଇ ଦେଇ ଶୁଖୁଆ ଓ ବାସି ପଖାଳଖିଆ ଗରିବମାନଙ୍କ ପାଟିରୁ ଲାଳ ବୁହାଇବା ପାଇଁ ଚେଷ୍ଟା କରିଛନ୍ତି । ଗୋଟିଏ ଜିନିଷରୁ ଟିକସ ଉଠାଇ ବହୁ ନୂତନ ଟିକସର ସୂଚନା ଦେଇଛନ୍ତି । ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେବା ଅପେକ୍ଷା ଆଲୋଚନା କରିବାର ବିଶେଷ ଅବକାଶ ଅଛି । ସେ ଯେଉଁ ବିଶେଷ ବିଷୟମାନ ଉଲ୍ଲେଖ କରିଛନ୍ତି ସେଥିମଧ୍ୟରୁ ପଞ୍ଚବାର୍ଷିକ ଯୋଜନା ଏବଂ ଉନ୍ନତିମୂଳକ ଯୋଜନା ବିଷୟରେ କେନ୍ଦ୍ର ସରକାରଙ୍କଠାରୁ ଆମେ ଯେଉଁ ସାହାଯ୍ୟ ପାଇବାର କଥା ତାହା ପାଇବାରେ କିପରି ବାଧା ଘଟୁଛି ଏବଂ ସେ ବିଷୟରେ ଯେଉଁ ଆଶଙ୍କା ହେଉଛି ତାକୁ ଯେତେବେଳେ ବର୍ଣ୍ଣନା କରିଛନ୍ତି ସେତେବେଳେ ଆମମାନଙ୍କ ମନରେ ନୈରାଶ୍ୟ ଜାତ ହେଉଛି । ଆଶ୍ୱିନ ଓ କାର୍ତ୍ତିକ ମାସରେ ଆଦୌ ବର୍ଷା ନ ହେଲେ ଚାଷୀର ଅବସ୍ଥା ଯେପରି ହୁଏ ଏବଂ ଭଣ୍ଡାରୀ ଯଦି ଆମ ମୁଣ୍ଡକୁ ଅଧା କ୍ଷୌର କରି ଛାଡ଼ିଦିଏ, ଆମର ଅବସ୍ଥା ଯେପରି ହୁଏ ସେହିପରି ଏ ଯେଉଁ ପଞ୍ଚବାର୍ଷିକ ଯୋଜନା ଏବଂ ଦୀର୍ଘ ସମୟ ନେଉଥିବା ଯୋଜନାମାନ ଯଦି ଅଧାଅଧି କରିସାରିଲା ପରେ ଆମକୁ କେନ୍ଦ୍ର ସରକାରଙ୍କଠାରୁ ସାହାଯ୍ୟ ମିଳିବାରେ କୌଣସି ରକମ ବାଧା ପଡ଼ନ୍ତେ ସେଥିରେ ଆମର ଭବିଷ୍ୟତ ଯେ କିପରି ସଙ୍କଟମୟ ହେବ ସେ ବିଷୟରେ ସମସ୍ତେ ଭଲଭାବେ ଅନୁଭବ କରିପାରୁଥିବେ । ମାନ୍ୟବର ଅଧ୍ୟକ୍ଷ ମହାଶୟ, ମାନ୍ୟବର ଅର୍ଥମନ୍ତ୍ରୀ ଆୟରୁ ବ୍ୟୟ ଅଧିକ କରି deficit finance କରିବାର ସୁବିଧା ଓ ଅସୁବିଧା କଥା ଦର୍ଶାଇଛନ୍ତି । 1951 ସାଲର ମଧ୍ୟ ଭାଗରେ ସରକାର ଆୟଠାରୁ ବ୍ୟୟ ବେଶୀ କରୁଥିବାରୁ ରାଜ୍ୟ କିପରି ଅର୍ଥ ସଂଙ୍କଟରେ ପଡ଼ିଥିଲା ସେ ବିଷୟରେ ମୁଁ ତାଙ୍କୁ ସୂଚନା ଦେଉଛି ଏବଂ ସେ ଅବସ୍ଥାର ଯେପରି ପୁନରାବୃତ୍ତି ନ ହୁଏ ସେଥିପ୍ରତି ସତର୍କ ମଧ୍ୟ କରିଦେଉଛି । ମୋର ମନହୁଏ ଏ ବିଷୟରେ ସେ ଯେଉଁ ନୀତି ବ୍ୟାଖ୍ୟାନ କରିଛନ୍ତି ସେ ନୀତିକୁ ଅତି ସତର୍କତାର ସହିତ ପ୍ରୟୋଗ ନ କଲେ ଓଡ଼ିଶା ପରି ସୀମାବଦ୍ଧ ଆର୍ଥିକ ସାମର୍ଥ୍ୟ ବିଶିଷ୍ଟ ଗୋଟିଏ ରାଜ୍ୟ ପକ୍ଷରେ ଏହା ଗୋଟିଏ ଗୁରୁତର ଆର୍ଥିକ ମୁଣ୍ଡବ୍ୟଥା ସୃଷ୍ଟି କରିପାରେ । ଉତ୍ପାଦନ ବୃଦ୍ଧିର ନିଶ୍ଚୟତା ନଥିଲେ ଏହାଦ୍ୱାରା ବିପଦକୁ ବରଣ କରିବାର ସମ୍ଭାବନା ରହିଛି । ହୀରାକୁଦ ଖର୍ଚ୍ଚ ମିଶାଇ ଯେଉଁ ସବୁ ଋଣ କେନ୍ଦ୍ର ସରକାରଙ୍କଠାରୁ ଅଣା ଯାଉଛି ତାହା ଏ ବର୍ଷ ଶେଷରେ ୫୮ କୋଟି ୮୩ ଲକ୍ଷ ହୋଇଯିବ, ଏହା ମଧ୍ୟ ଅତି ଉଦ୍‌ବେଗର କଥା । "ଋଣକର୍ତ୍ତା ମନ୍ତ୍ରୀ ଶତ୍ରୁ" ବୋଲି ଆମର ଭବିଷ୍ୟତ ବଂଶଧରମାନେ ଯେପରି ନ କହନ୍ତି ସେଥିପ୍ରତି ଆମ୍ଭମାନଙ୍କୁ ସାବଧାନ ହେବାକୁ ହେବ ।

ଏ ଋଣ ପରିଶୋଧର ସର୍ତ୍ତ ଅବଶ୍ୟ କୋହଳ କରଯାଉଛି । କିନ୍ତୁ ଏହା ଉପରେ ଯେଉଁ ସୁଧ ଦେବାକୁ ପଡୁଛି, ତାହା ମଧ୍ୟ ଉଦ୍‌ବେଗଜନକ । ଉଦାହରଣ ସ୍ୱରୂପ ହୀରାକୁଦ ଯୋଜନାର ଋଣ ଉପରେ ସୁଧର ପରିମାଣ ଏକକୋଟି ୬୪ ଲକ୍ଷ ହେଲଣି ।

ବର୍ତ୍ତମାନ ଯେଉଁ ପରିମାଣରେ ଯେପରି ଭାବରେ ବିଭିନ୍ନ ଟିକସ ଆଦାୟ କରଯାଉଛି, ସେଥିରେ କେତେକ ଗରିବ ଲୋକ ସର୍ବସ୍ୱାନ୍ତ ହେଉଛନ୍ତି, କେତେ ବ୍ୟବସାୟୀଙ୍କ ବ୍ୟବସାୟ ଧ୍ୱଂସ ହେଉଛି, ବିଶେଷତଃ ବିକ୍ରୟ କର ଦ୍ୱାରା ତାହା ଭାବିବାର କଥା । ତା ଉପରେ ଯଦି ନୂତନ କର ଭାର ଲଦି ଦିଆଯାଏ ତେବେ ତାହା ବୋଝ ଉପରେ ନଳିତା ବିଡ଼ାପରି ହେବ ।

ଅଧିକ ଖାଦ୍ୟ ଉତ୍ପାଦନ ଯୋଜନା ଖାଦ୍ୟ ସମସ୍ୟାକୁ ସମାଧାନ କରିବା ଉଦ୍ଦେଶ୍ୟରେ କରଗଲା ଏବଂ ଏତଦ୍ଦ୍ୱାରା ଦେଶର ଖାଦ୍ୟ ସମସ୍ୟା ଉତ୍କଟତା ହ୍ରାସ କରିବା ଆଶା କରଯାଉଥିଲା । କିନ୍ତୁ ଅତିରିକ୍ତ ମାତ୍ରାରେ କୃଷି ଆୟକର ବିଶେଷତଃ ଅପେକ୍ଷାକୃତ ଅଳ୍ପ ଆୟ କରୁଥିବା କୃଷକମାନଙ୍କର କୃଷି ଆୟକର ବଢାଇବାର କଳ୍ପନାଦ୍ୱାରା ଖାଦ୍ୟ ସମସ୍ୟା ସମାଧାନର ପ୍ରତିକୂଳ ବ୍ୟବସ୍ଥା କରଯାଉଛି । ଖାଦ୍ୟଶସ୍ୟ ସଂଗ୍ରହ ଯୋଜନା ବିଷୟରେ ମାନ୍ୟବର ଅର୍ଥ ମନ୍ତ୍ରୀ ଯାହା କହିଛନ୍ତି ଯେ ଦୁଇବର୍ଷ ମଧ୍ୟରେ ଆମର ଶସ୍ୟ ସଂଗ୍ରହ ଦୁଇଗୁଣ ହୋଇ ବର୍ତ୍ତମାନ ଚଳିତ ବର୍ଷ ତିନି ଲକ୍ଷ ଟନ୍ ଖାଦ୍ୟଶସ୍ୟ ବିଦେଶକୁ ପଠାଯିବା ପାଇଁ ବନ୍ଦୋବସ୍ତ କରଯାଉଛି । ଏହା ମଧ୍ୟ ଅତି ବ୍ୟଗ୍ରତାର କଥା, କାରଣ ଆମେ ସ୍ପଷ୍ଟ ଭାବରେ ଜାଣୁ ଯେ ଗଲ ୨।୩ ବର୍ଷ ମଧ୍ୟରେ ଆମ ରାଜ୍ୟରେ ଖାଦ୍ୟଶସ୍ୟ ଏପରି ଉଲ୍ଲେଖଯୋଗ୍ୟ ଭାବରେ ବଢିନାହିଁ ଯେଉଁଥିରେ କି ଆମେ ୨ ବର୍ଷ ମଧ୍ୟରେ ବାହାରକୁ ପଠାଇବାରେ ଖାଦ୍ୟଶସ୍ୟ ଦୁଇଗୁଣ କରିଦେବା ଆମର ଯୁକ୍ତି ରହିବ । ସେଥିପାଇଁ ଏଇ ବର୍ଷ ଯାହା ବଢିଯାଉଛି ଭବିଷ୍ୟତ୍‌ରେ ମଧ୍ୟ ଯଦି ଏହିପରି ଖାଦ୍ୟଶସ୍ୟ ରପ୍ତାନି ବଢାଇ ଚାଲୁ ତାହେଲେ ଆମ ଦେଶର ଅବସ୍ଥା ବା ଆମ ରାଜ୍ୟର ଅବସ୍ଥା ସୁନା ଡ଼ିମ୍ବ ଦେଉଥିବା ହଂସକୁ ମାରିଲା ଭଳିଆ ଅତ୍ୟଧିକ ମାତ୍ରାରେ ଚାଉଳ ରପ୍ତାନୀ ଏକ ପ୍ରତିକୂଳ ପ୍ରତିକ୍ରିୟା ସୃଷ୍ଟି କରିପାରେ ଏବଂ ଦେଶକୁ ଉନ୍ନତ କରିବା ପରିବର୍ତ୍ତେ ଦେଶକୁ ଦାରିଦ୍ର୍ୟ ଓ ଦୁର୍ଭିକ୍ଷରେ ପ୍ରପୀଡ଼ିତ କରିବାରେ ସମ୍ଭାବନା ରହିଛି ।

ହୀରାକୁଦ ଯୋଜନା ଆରମ୍ଭ ହେବା ପୂର୍ବରୁ ରାଜ୍ୟର ବୈଷୟିକ ଉପକାର କେତେ ହେବ ସେ ବିଷୟରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ହେଉ ବୋଲି ଦାବି କରଯାଉଥିଲା । ବହୁ ବ୍ୟୟସାପେକ୍ଷ ଯୋଜନାମାନ ଆରମ୍ଭ କରିବା ପୂର୍ବରୁ ତହିଁର ଆର୍ଥିକ ପରିଣତି ବିଷୟରେ ତଦନ୍ତ ଓ ସର୍ଭେ କରିବା ବିଜ୍ଞତାର କାର୍ଯ୍ୟ ଏବଂ ପ୍ରତ୍ୟେକ ଦୂରଦର୍ଶୀ ବ୍ୟକ୍ତି ବା ରାଜ୍ୟର କର୍ତ୍ତବ୍ୟ । ଏ ବିଷୟରେ ଭାରତର ଜଣେ ପ୍ରବୀଣ ଇଞ୍ଜିନିୟର ଶ୍ରୀଯୁକ୍ତ ରଙ୍ଗିଆ

ଦାବି କରିଥିଲେ ଯେ ଯୋଜନା ଆରମ୍ଭ ପୂର୍ବରୁ ବିଶେଷଜ୍ଞମାନଙ୍କ ଦ୍ୱାରା ତାହା ଆର୍ଥିକ ଦୃଷ୍ଟିରୁ ପରୀକ୍ଷିତ ହେବା ଉଚିତ । ମାତ୍ର ସେ ସମୟରେ ତାଙ୍କ ମତ ପ୍ରତି ଭୃକ୍ଷେପ ସୁଦ୍ଧା କରାଗଲା ନାହିଁ ଇଂରେଜୀରେ putting the cart before the house ବୋଲି କଥା ଅଛି । ସେଇ କଥା ପରି ଆଜି ହୀରାକୁଦ ବନ୍ଧ ଯୋଜନା ଅନେକଦୂର ଅଗ୍ରସର ହେଲା ପରେ ଗୋଖଲେ ଇନଷ୍ଟିଚ୍ୟୁଟ୍‌ର ବିଶେଷଜ୍ଞଙ୍କ ଦ୍ୱାରା ହୀରାକୁଦ ଅଞ୍ଚଳରେ ଆର୍ଥିକ ସର୍ଭେ କରାଯାଉଛି । ୧୯୪୭ ଓ ୧୯୪୮ରେ ଯେତେବେଳେ ହୀରାକୁଦ ଯୋଜନା ରିପୋର୍ଟ ବାହାରିଲା ସେତେବେଳେ ସେ ରିପୋର୍ଟରେ କବିମାନଙ୍କ ଠାରୁ ଆହୁରି ସ୍ୱପ୍ନିଳ ଭାବରେ ହୀରାକୁଦର ଘିଅ ଓ ମହୁ ବାହାରିବାର କଳ୍ପନା କରାଯାଇଥିଲା । ସେ ସ୍ୱପ୍ନର ପରିସର ବଢାଇ ଦେବା ଫଳରେ ପୂର୍ବେ ହୀରାକୁଦରୁ ଜଳସେଚନ ସୁବିଧା ପାଉଥିବା ଜମିର ପରିମାଣ ଆଠଲକ୍ଷ ଏକରରୁ ବଢି ୨୦ ଲକ୍ଷ ଏକର ହୋଇଛି । ଜଳ କରର କଳ୍ପନା ମଧ୍ୟ ଦୁଇ ଗୁଣରୁ ଅଧିକ ବଢ଼ାଇ ଦିଆଯାଇଛି ।

ହୀରାକୁଦ ବନ୍ଧ ଯୋଜନା ଖର୍ଚ୍ଚ ଯେପରି ମହାନଦୀର ବଢିପରି ଅତି କ୍ଷିପ୍ର ଓ ଦ୍ରୁତ ଗତିରେ ବଢି ଗ୍ଭଲିଛି ସେହି ଦୃଷ୍ଟିରୁ ପ୍ରଫେସର ସୁବାନୀଙ୍କ କଳନା, ଖୋସଲାଙ୍କର କଳନାକୁ ବହୁପରିମାଣରେ ଟପି ନ ଯାଏ ଏବଂ ହୀରାକୁଦ ଯୋଜନାକୁ ଲାଭଜନକ ବୋଲି ଦେଖାଇବାରେ ସମର୍ଥନ ହୁଏ ତେବେ ଆଶଙ୍କାର ଯଥେଷ୍ଟ କାରଣ ରହିଛି । ହୀରାକୁଦ ଅଞ୍ଚଳରୁ କେତେ ପରିମାଣରେ ଜଳକର ଓ ଉନ୍ନୟନ କର ବା betterment levy ଆଦାୟ କରାଯାଇ ପାରିବ । ସେ ବିଷୟରେ ଅନୁସନ୍ଧାନ କରିବା ପାଇଁ ଓଡ଼ିଶା ସରକାର ୪ ଜଣ Special Officer ନିଯୁକ୍ତ କରିଥିଲେ ତାଙ୍କର ରିପୋର୍ଟ ସରକାର କିପରି କାର୍ଯ୍ୟକାରୀ କରିବେ ମୁଁ ଜାଣେ ନାହିଁ । କିନ୍ତୁ ମଜୁମଦାର କମିଟି ରିପୋର୍ଟରେ ପରିକଳ୍ପିତ ହାରରେ ଜଳକର ଓ ଉନ୍ନୟନ କର ସାରା ସମ୍ବଲପୁର ଜିଲ୍ଲାରେ ଏକ ଆତଙ୍କ ସୃଷ୍ଟି କରିଛି ଏବଂ କରିବ ଏକଥା ସୁନିର୍ଣ୍ଣିତ । ହୀରାକୁଦ ଯୋଜନାରୁ ପାଣି ପାଇବା ଫଳରେ ଗୋଟିଏ ଫସଲ ହେଉଥିବା ଯାଗାରେ ୨।୩ଟି ଫସଲ ହୋଇପାରେ କିନ୍ତୁ ଯଦି ଜମିରୁ ଖଜଣା ବା ଜଳକର ବା ଉନ୍ନୟନ କର ବାବଦରେ ପୂର୍ବାପେକ୍ଷା ୧୫।୨୦ ଗୁଣ ଅଧିକ ଦେୟ ଅସୁଲ କରାଯାଏ, ତେବେ ହୀରାକୁଦ ଯୋଜନା ଦ୍ୱାରା ସମ୍ବଲପୁର ଅଞ୍ଚଳ ଚ୍ଷୀମାନଙ୍କ ପକ୍ଷରେ ଏକ ପଥର ବୋଝ ହୋଇ ପଡ଼ିବ । ଏକ ପକ୍ଷରେ ଆମ ସରକାର ସମ୍ବଲପୁରର ଏକ ବିସ୍ତୃତ ଶସ୍ୟ ସମୃଦ୍ଧ ଅଞ୍ଚଳକୁ ଜଳପ୍ଲାବିତ କରି ବଢି ଅଞ୍ଚଳର କ୍ଷତିପୂରଣ ବା ପୁନର୍ବସତିର ବ୍ୟବସ୍ଥା ନ କରିବାଦ୍ୱାରା ପ୍ରାୟ ୧ ଲକ୍ଷ ଲୋକଙ୍କୁ ଶରଣାର୍ଥୀ କରିବାକୁ ଯାଉଛନ୍ତି । ତା ଉପରେ ଯଦି ବୁଡ଼ି ନ ଯାଉଥିବା ଲୋକମାନଙ୍କ ଉପରେ ଜଳକର ନାମରେ ଉନ୍ନୟନ କର ନାମରେ ଉତ୍କଟ କର ପୀଡ଼ାରେ ଜର୍ଜରିତ କରାଯାଏ ତେବେ କୌଣସି ଲୋକ ପକ୍ଷରେ ଜମି ଚ୍ଷ କରି ଚଳିବା ଅସମ୍ଭବ ହେବ । ଏହା ଫଳରେ ଆଉ କେତେ ଲକ୍ଷ ଲୋକ ମଧ୍ୟ ଶରଣାର୍ଥୀ ହୋଇ ପଡ଼ିବେ, ତାହା ଅନୁମାନ କରିବା ବର୍ତ୍ତମାନ କଠିଣ ।

ହୀରାକୁଦ ବିଷୟରେ ବଜେଟ ଭାଷଣରେ ଯେଉଁ ତଥ୍ୟମାନ ଦିଆଯାଇଛି ସେଥିରେ ଗୁରୁତର ଭ୍ରମ ରହିଯାଇଛି ବୋଲି ମୋର ଆଶଙ୍କା ରହିଛି । ଭାଷଣର 33 ପୃଷ୍ଠାରେ 56ଟି ଗାଁକୁ ପୂରାପୂରି କ୍ଷତିପୂରଣ ଦିଆଯାଇଛି ବୋଲି କୁହାଯାଇଛି । କିନ୍ତୁ ହୀରାକୁଦ ପାଇଁ ଯେଉଁ ସ୍ୱତନ୍ତ୍ର ବଜେଟ କରାଯାଇଛି, ସେଥିର 155 ପୃଷ୍ଠାରେ କୁହାଯାଇଛି "Out of these 108 villages, Government sanction for the compensation payable has been received in respect of 56 villages. It is proposed to obtain Government Sanction for the remaining 52 villages, durig the year 1953-54 and complete offer of compensation in at least 80 villages including 49 villages in which compensation has already been offered. In consideration of the fact that the entire amount of compensation payable for the remaining 31 villages may not be disbursed in consequence of disputes over rights and unwillingness of the parties to accept comipensation on the ground of inadequacy, who may subsequently go to arbitration, the entire amounts which may be disbursed during the current year has been estimated at Rs. 57 lakhs", "ଟଙ୍କା ଦିଆଯାଇଛି", "ଯାଗ୍ରଯାଇଛି" ଏବଂ ଟଙ୍କା ପାଇଁ ସରକାରୀ sanction "ଅଣାଯାଇଛି" ଏ ତିନୋଟି କଥା ମଧ୍ୟରେ ସ୍ୱର୍ଗ ମର୍ତ୍ତ୍ୟ ଓ ପାତାଳ ପ୍ରଭେଦ ରହିଛି । ମୁଁ ବ୍ୟକ୍ତିଗତ ଅଭିଜ୍ଞତାରୁ କହି ପାରେ ଯେ, ଏ ବର୍ଷ ଯେଉଁ ଗାଁଗୁଡ଼ିକ ବୁଡ଼ି ଯିବାର କଳ୍ପନା କରାଯାଉଛି ଓ ଯେଉଁ ଗାଆଁଗୁଡ଼ିକର ଜମି 4/5 ବର୍ଷ ହେଲା ଅକର୍ମଣ୍ୟ କରି ଦିଆ ହେଲଣି ସେହି ଗାଁମାନଙ୍କରୁ ଅନେକ ଲୋକଙ୍କୁ କ୍ଷତିପୂରଣ ମିଳି ନାହିଁ ଏବଂ ନିକଟ ଭବିଷ୍ୟତରେ ମିଳିବାର ଆଶା ମଧ୍ୟ ନାହିଁ ।

ହୀରାକୁଦ ଯୋଜନାରେ ବାସଗ୍ରାସ ଲକ୍ଷେ ଲୋକଙ୍କ ମଧ୍ୟରୁ କେବଳ 360ଟି ପରିବାର ପାଇଁ ଏ ବର୍ଷ ବ୍ୟବସ୍ଥା କରାଯାଇଛି । 53,965 ଏକର ଜମି ଏକୁଆର କରାଯାଇଛି, ଏଥି ମଧ୍ୟରୁ ପଟ୍ଟା ଦିଆଯାଇଥିବା 3,457 ଏକର ବାଦ୍ ଦେଲେ ବାକି 50,508 ଏକର ଜମି ନିଆଯାଇଥିଲେ ସୁଦ୍ଧା ପୁନର୍ବସତି ପାଇଁ ଏ ବର୍ଷ କେବଳ 1,37,538 ଏକର ଜମି ଦିଆଯାଇଛି । ହୀରାକୁଦ ବୁଡ଼ି ଅଞ୍ଚଳର ଲୋକଙ୍କୁ ସାହାଯ୍ୟ ଦେବା ଓ ସହାନୁଭୂତି ଦେବା ସତ୍ତ୍ୱେ ଆମ ସରକାର ଅକାରଣ ହଇରାଣ ଓ ନିଃସ୍ୱ କରିବାରେ କିପରି ତତ୍ପରତାର ସହିତ ଲାଗିଛନ୍ତି ସେ ବିଷୟରେ କାଟ ପ୍ରସ୍ତାବରେ ଆଲୋଚନା କରିବି ।

ଚିକିତ୍ସା ଓ ସାଧାରଣ ସ୍ୱାସ୍ଥ୍ୟ ବିଭାଗ ବିଷୟରେ ନୂଆ ଡ଼ାକ୍ତରଖାନା ଓ କବିରାଜୀ ଚିକିତ୍ସାଳୟ ଖୋଲା ଯାଉଥିବା ଆନନ୍ଦର କଥା କିନ୍ତୁ ଅଧିକ ଔଷଧ ଯୋଗାଇବା ବ୍ୟବସ୍ଥା ହେବା ଦରକାର । ନଦୀଜଳ ଦୂଷଣ ନିରୋଧ ପାଇଁ ସରକାର ଯଥାଯଥ ବ୍ୟବସ୍ଥା

6 ମାସ ମଧ୍ୟରେ କରିବାର ପ୍ରତିଶ୍ରୁତି ଦେଲେ । ମାତ୍ର ଏ ବିଷୟରେ ଆଇନ୍ ପାସ୍ କରି ସାରିଲା ପରେ ନାକରେ ସୋରିଷ ତେଲ ଦେଇ ଶୋଇଲେ । ମାଛି ଛେଳି ପୋଷିଲେ ଲୋକେ ଯେପରି ଭାବନ୍ତି ତାର ଆଉ ବର୍ଗଘରେ ଓ ସବୁଭରେ କୌଣସି ସ୍ୱାର୍ଥ ନାହିଁ ସେହିପରି ମୁଁ ଅନୁମାନ କରୁଥିଲି ନଦୀଜଳ ଦୂଷଣ ଆଇନ୍ ପାସ୍ କରି ସରକାର ଜଳ ପରିଷ୍କାର ଦିଗରେ ଚେଷ୍ଟିତ ହେବେ ନାହିଁ । ଆଜି ଏ ବିଷୟରେ ନିଷ୍କ୍ରିୟତାର ସମର୍ଥନ ପାଇଁ ସରକାରଙ୍କ ଯୁକ୍ତିର ଅଭାବ ହେବନାହିଁ କିନ୍ତୁ ଏ ଯୁକ୍ତି ବଳରେ ନଦୀର ଜଳ ସଫା ହେବନାହିଁ ବା ଯେଉଁ ଲକ୍ଷ ଲକ୍ଷ ଲୋକ ଜଳାଭାବରୁ କଷ୍ଟ ପାଉଛନ୍ତି, ସେମାନଙ୍କର ଦୁର୍ଦ୍ଦଶା ଘୁଞ୍ଚିବ ନାହିଁ । ତେଣୁ ଏ ଦୁର୍ଦ୍ଦଶାର ପ୍ରତିକାର ସମ୍ଭବ ନହେଲେ ମଧ୍ୟ ଛବ ନଦୀକୂଳର ଲୋକଙ୍କର କଷ୍ଟ ଦେଖି ଆସିବାପାଇଁ ମୋର ବ୍ୟବସ୍ଥା ସଭାର ପ୍ରତ୍ୟେକ ମନ୍ତ୍ରୀ ଓ ପ୍ରତ୍ୟେକ ସଭ୍ୟଙ୍କୁ ଅନୁରୋଧ ।

ରାସ୍ତାଘାଟ ଅବସ୍ଥାର ଉନ୍ନତି ସନ୍ତୋଷଜନକ ଭାବେ ହୋଇ ପାରୁନାହିଁ । ରାଜ୍ୟର ଅଧିକାଂଶ ରାସ୍ତା ଅସନ୍ତୋଷଜନକ ଓ ଏ ଦିଗରେ ଯେତେ ଖର୍ଚ୍ଚ କରାଯାଉଛି, ତା' ତୁଳନାରେ ରାସ୍ତାମାନ ଶୀଘ୍ର ଖରାପ ହେଉଛି । ବିକାଶ ଯୋଜନାମାନଙ୍କର ପ୍ରଗତି ଯେଉଁ ମାତ୍ରାରେ ଚାଲିଛି, ପଞ୍ଚବାର୍ଷିକ ଯୋଜନାର ଫଳ 5 ବର୍ଷ ପରେ ଉଲ୍ଲେଖଯୋଗ୍ୟ ପରିମାଣରେ ହୋଇ ପାରିବ ବୋଲି ଆଶା କରିବା ବିଡ଼ମ୍ବନା ମାତ୍ର ।

ବୃତ୍ତି ବ୍ୟବସ୍ଥା ନେଇ ମାନ୍ୟବର ଅର୍ଥମନ୍ତ୍ରୀ ଅନେକ ଆଶା ପ୍ରକାଶ କରିଛନ୍ତି କିନ୍ତୁ ଏ ରାଜ୍ୟରେ ଶିଳ୍ପ ବିକାଶର ଅନେକ ଯୋଜନା ହେଉଥିଲେ ସୁଦ୍ଧା ସେଥିରେ ଆମ ରାଜ୍ୟର ଅକର୍ମା ସମସ୍ୟା କେତେ ପରିମାଣରେ ଦୂର ହେବ, ସେ ବିଷୟରେ ସନ୍ଦେହ ଅଛି । ଅତୀତର ଅନେକ ତିକ୍ତ ଅଭିଜ୍ଞତା ଆମର ଭବିଷ୍ୟତ ଆଶାକୁ କ୍ଷୀଣ କରୁଛି । "ଗାଁ ଜନିଆ ସିଙ୍ଘାଣୀ ନାକୀ" "ଆମ ସୁନା ଭେଣ୍ଡି" ଏ ଦୁଇ ପ୍ରବାଦର ଜ୍ୱଳନ୍ତ ନିଦର୍ଶନ ହୀରାକୁଦରେ କାମ କରୁଥିବା ପ୍ରତ୍ୟେକ ଓଡ଼ିଆ କର୍ମଚାରୀ ଓ ଶ୍ରମିକ ଅନୁଭବ କରୁଛନ୍ତି । ହୀରାକୁଦ ଯୋଜନାରେ ନିଯୁକ୍ତି ପାଇଁ ନିୟମ କରାଯାଇଛି ଯେ, ପ୍ରଥମରୁ ହୀରାକୁଦ ବୁଡ଼ି ଅଞ୍ଚଳର ଲୋକଙ୍କର କଥା, ଦ୍ୱିତୀୟରେ ଓଡ଼ିଶା ରାଜ୍ୟ ଲୋକଙ୍କ କଥା ଏବଂ ଶେଷରେ ଓଡ଼ିଶା ବାହାରଲୋକଙ୍କ କଥା ବିଚାରକୁ ନିଆଯିବ । କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଠିକ୍ ଓଲଟା ଦିଗରୁ ବିଚାର କରାଯାଉଛି । ଫଳତଃ ହୀରାକୁଦ ଅଞ୍ଚଳର ଲୋକେ ଏକ ଦିଗରୁ ଜମିବାଡ଼ି ହରାଇଲେ, ଦ୍ୱିତୀୟରେ ହୀରାକୁଦ ହେବା ଫଳରେ ଦୁର୍ମୂଲ୍ୟତାର ସମ୍ମୁଖୀନ ହେଲେ ଏବଂ ବେକାର ହେଲେ, ସେହିପରି ଯଦି ଇସ୍ପାତ କାରଖାନା ବା ଆଲୁମିନିୟମ କାରଖାନାରେ ସେହିପରି ବ୍ୟବସ୍ଥା ହେଲେ, ସ୍ଥାନୀୟ ଦୁରବସ୍ଥା ଦୂର ହେବା ପରିବର୍ତ୍ତେ ଗୁରୁତର ହେବ । ଯଥେଷ୍ଟ ପରିମାଣରେ ଆମର ଓଡ଼ିଆ ଯୁବକ ଯେପରି ବୈଷୟିକ ଶିକ୍ଷା ପାଆନ୍ତି, ତହିଁର ବ୍ୟବସ୍ଥା ମଧ୍ୟ କରିବାକୁ ହେବ ।

ଗତବର୍ଷ ବଜେଟ୍‌ରେ ଯେପରି ମଫସଲ ଅଞ୍ଚଳର ଉନ୍ନତି ଦିଗରେ ଅଧିକ ଖର୍ଚ୍ଚ କରାଯିବାର ସୂଚନା ଦିଆଯାଇ ଥିଲା, ଏ ବର୍ଷ ସେପରି କରା ନ ଯାଇ ସହର ଅଞ୍ଚଳ ପ୍ରତି ଅଧିକ ଦୃଷ୍ଟି ଦିଆଯାଇଛି । ନୂଆ ରେଲ ଲାଇନ୍ ବିଷୟରେ ମାନ୍ୟବର ଅର୍ଥମନ୍ତ୍ରୀ ଉଲ୍ଲେଖ କରିଛନ୍ତି କିନ୍ତୁ କେନ୍ଦ୍ର ରେଲୱେ ବଜେଟ୍‌ରେ ରେଲବାଇ ମନ୍ତ୍ରୀ ଏ ବର୍ଷ ଓଡ଼ିଶାରେ କୌଣସି ନୂଆ ଲାଇନ ଖୋଲିବାର ଉଲ୍ଲେଖ କରି ନାହାନ୍ତି । ଓଡ଼ିଶାର ସମୃଦ୍ଧି ଖଣିଜ ଶିଳ୍ପର ବିକାଶ ଅତ୍ୟାବଶ୍ୟକୀୟତା ଦୃଷ୍ଟିରେ ଓଡ଼ିଶାର ପୂର୍ବତନ ଗଡ଼ଜାତ ଅଞ୍ଚଳରେ ନୂଆ ରେଲ ଲାଇନ୍ ଖୋଲିବା ଦରକାର ।

ଗତ ଦୁଇବର୍ଷ ମଧ୍ୟରେ ଏ ବ୍ୟବସ୍ଥା ସଭା ଭିତରେ ଓ ବାହାରେ ଆମ ସରକାରଙ୍କ କାର୍ଯ୍ୟକଳାପର ଯେଉଁ ସମାଲୋଚନା କରାଯାଉଛି, ତହିର ଫଳାଫଳ କ'ଣ ହୋଇଛି ଓ ତହିଁ ଫଳରେ ଦେଶର ଶାସନ ବ୍ୟବସ୍ଥା କେତେଦୂର ଉନ୍ନତି ହୋଇଛି. ସେ ବିଷୟରେ ଗଭୀର ଭାବରେ ଚିନ୍ତା କରିବାର ସମୟ ଆସିଛି । ଆମେ ଏବେ ପରିଶ୍ରମ କରି ଯେଉଁ ପ୍ରଶ୍ନମାନ ଦେଉଛୁ, ଯେଉଁ ସମାଲୋଚନା କରୁଛୁ, ତାହା ପ୍ରାୟ ଅରଣ୍ୟରୋଦନରେ ପରିଣତ ହୋଇଛି କହିଲେ ଚଳେ । ଯେଉଁ କର୍ମଚାରୀମାନଙ୍କର ଅଯୋଗ୍ୟତା ବିଷୟରେ ଅଭିଯୋଗ ହେଉଛି, ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ତ ଦୂରର କଥା ପ୍ରମୋଶନ ଦିଆଯାଉଛି । ଉଚ୍ଚ ପାହ୍ୟାର କର୍ମଚାରୀ ସଂଖ୍ୟା ବଢ଼ା ଯାଉଛି । ଲୋକଙ୍କର ହିତକର କାର୍ଯ୍ୟ ହେଉନାହିଁ ଅଥଚ କର ଭାର ବଢୁଛି । ଏହାର ଶେଷ ପରିଣତି କେଉଁଠି ।

ମାନ୍ୟବର ଅର୍ଥମନ୍ତ୍ରୀଙ୍କ ବଜେଟ ଭାଷଣକୁ କୁଇନାଇନ ସଙ୍ଗେ ତୁଳନା କରି ଚିକିତ୍ସକ ରୋଗୀକୁ ବେଶୀମାତ୍ରାରେ କୁଇନାଇନ ଦେଲେ ରୋଗୀ ଦେହରେ ଯେଉଁ ପ୍ରତିକ୍ରିୟା ହୁଏ ତାହାକୁ chinconism କହନ୍ତି । ଏହି Chinconism ଫଳରେ ରୋଗୀର କର୍ଣ୍ଣରେ ବଧିରତା ହୁଏ ଓ କାନରେ ଝାଁ ଝାଁ ଶବ୍ଦ ସଙ୍ଗୀତପରି ଶୁଭେ । ଆଜି ଆମ ସରକାର ଚିକିତ୍ସକ ହୋଇ ଯେଉଁ କୁଇନାଇନ୍ ଦେଇଛନ୍ତି ତା' ଫଳରେ ଚିକିତ୍ସିତଙ୍କ ଦେହରେ Chinconismର ଉପସର୍ଗ ଦେଖାଦେଉଛି । ଜନସାଧାରଣଙ୍କର ଦୁଃଖ ଦୁର୍ଦ୍ଦଶାର ଖବର ସରକାରଙ୍କ କାନକୁ ଭେଦୁନାହିଁ । ସେମାନଙ୍କର ଆପତ୍ତି ଓ ଅଭିଯୋଗକୁ ଉପେକ୍ଷା କରଯାଉଛି ।

## ମରୁଡ଼ି ସଂପର୍କୀୟ ମୁଲତବୀ ପ୍ରସ୍ତାବ ଉପରେ ଆଲୋଚନା

1954 ସେପ୍ଟେମ୍ବର 10 ତାରିଖରେ ଡକ୍ଟର ସୂପକାର ଓଡ଼ିଶା ବିଧାନସଭାରେ ମରୁଡ଼ି ସମସ୍ୟା ଉପରେ ଆଗତ ମୁଲତବୀ ପ୍ରସ୍ତାବ ଉପରେ ଓଡ଼ିଶା ପ୍ରଦେଶ ଭିତରେ ଏହା ଗୁରୁତର ସମସ୍ୟା ସୃଷ୍ଟି କରିଛି ବୋଲି କହି ସଭ୍ୟମାନେ ନିଜ ନିଜ ଜିଲ୍ଲାର

ଉକ୍ତ ସମସ୍ୟା ଉପରେ ଦୃଷ୍ଟି ଦେବାକୁ ଚାହାରିବେ ବୋଲି ସୁଗ୍ରଣଛନ୍ତି । କୃଷକ ଓ କୃଷି ଶ୍ରମିକ-ମାନେ ବେକାର ହୋଇ ବସିଛନ୍ତି ଏବଂ ସେମାନଙ୍କର ନିଯୁକ୍ତି ପାଇଁ ଉପାୟ କରିବାକୁ ପରାମର୍ଶ ଦେଇଛନ୍ତି । ଅବଶ୍ୟ ସମ୍ବଲପୁରରେ ଶ୍ରମିକମାନେ (ଗୁତିମାନେ) ବର୍ଷକ ପାଇଁ ପାରିଶ୍ରମିକ ପାଉଥାନ୍ତି ଏବଂ ଫସଲ ଉତ୍ପତ୍ତିରେ କୃଷକମାନେ ଅଧିକ କ୍ଷତିଗ୍ରସ୍ତ ହୁଅନ୍ତି ସେ କହିଛନ୍ତି ଯେ, ସମ୍ବଲପୁର ଏକ ବଳକା ଅଞ୍ଚଳ ହୋଇଥିଲେ ହେଁ 1899 ମସିହାରେ ପଡ଼ିଥିବା ମନ୍ୱନ୍ତର ଠାରୁ ଉକ୍ତବର୍ଷ ଅଧିକ ହୋଇଛି ବୋଲି ବୃଦ୍ଧମାନେ ମତ ଦିଅନ୍ତି । ତେଣୁ ସରକାର ଧାନଗ୍ରଭଙ୍କର ଦରକୁ ନିୟନ୍ତ୍ରଣ କରନ୍ତୁ ଏବଂ ଯଥେଷ୍ଟ ପରିମାଣରେ ଖାଦ୍ୟଶସ୍ୟ ଲୋକମାନଙ୍କ ପାଇଁ ମିଳିବାର ବ୍ୟବସ୍ଥା କରନ୍ତୁ ବୋଲି ଉପଦେଶ ଦେଇଛନ୍ତି । କେନ୍ଦ୍ର ସରକାର ଯେମିତି ଅଧିକ ସାହାଯ୍ୟ ଓ ସବ୍‌ସିଡ୍ ଦେବେ ସେଥି-ପାଇଁ ରାଜ୍ୟସରକାର ଯଥେଷ୍ଟ ସଚେଷ୍ଟ ହୁଅନ୍ତୁ ଏବଂ ଲୋକମାନଙ୍କ ମଧ୍ୟରେ ଖେଳି-ଯାଇଥିବା ଆତଙ୍କ କମାଇବାରେ ପଦକ୍ଷେପ ନିଅନ୍ତୁ । ସେ ତେଣୁ ଯଥାର୍ଥରେ କହିଛନ୍ତି— "ଅବଶ୍ୟ ଯେଉଁ ଆତଙ୍କ ସୃଷ୍ଟି ହେବାଟା ବା alarmist ହେବା ଫଳରେ ଯେପରି ପରିସ୍ଥିତି ଉପୁଜିବାର ସମ୍ଭାବନା ଅଛି, Complacency ବା ବେପରବାୟ ହେବା ମଧ୍ୟ ତା'ଠାରୁ କ୍ଷତି ଯଥେଷ୍ଟ ବେଶୀ ଅଛି । ତେଣୁ ସେଥିପ୍ରତି ସବୁବେଳେ ସଜାଗ ରହିବା ପାଇଁ ସରକାର ସଚେଷ୍ଟ ହେବେ ବୋଲି ମୁଁ ଅନୁରୋଧ କରୁଛି" । ଏହିପରି ଡଃ ସୂପକାର ପ୍ରକୃତ ଅବସ୍ଥା ସଂପର୍କରେ ସଚେତନ ହେବା ସହିତ ସମସ୍ୟାର ସମାଧାନ ପାଇଁ ସଚେଷ୍ଟ ହେବାକୁ ପରାମର୍ଶ ଦେଇଛନ୍ତି ।

**Shri SHRADDHAKAR SUPAKAR** : ମାନ୍ୟବର ଅଧ୍ୟକ୍ଷ ମହାଶୟ, ଆଜି ଏ ଯେଉଁ ପ୍ରସ୍ତାବ ଆଗତ କରି ମାନ୍ୟବର ରାଜସ୍ୱ ମନ୍ତ୍ରୀ ଓଡ଼ିଶା ପ୍ରଦେଶ ଭିତରେ ଯେଉଁ ଗୁରୁତର ସମସ୍ୟା ଉପୁଜିଛି ସେହି ସମସ୍ୟାର ଆଲୋଚନା ପାଇଁ ସେ ଯେଉଁ ସୁଯୋଗ ଦେଉଛନ୍ତି ସେଥିପାଇଁ ତାଙ୍କୁ ମୁଁ ଧନ୍ୟବାଦ ଦେଉଛି । ବିଶେଷତଃ ତାଙ୍କର ବର୍ତ୍ତମାନ ସ୍ୱାସ୍ଥ୍ୟରେ ଯେ କଷ୍ଟ ସ୍ୱୀକାର କରି ଏତେ ଦୀର୍ଘ ବକ୍ତୃତା ଦେଇ-ଥିବାରୁ ତାଙ୍କୁ ମୁଁ ଧନ୍ୟବାଦ ଦେଉଛି । କିନ୍ତୁ ସେ ତାଙ୍କର ବକ୍ତୃତାରେ ବିଭିନ୍ନ ଜିଲ୍ଲାମାନଙ୍କର ଖାଦ୍ୟପରିସ୍ଥିତି ବର୍ଣ୍ଣନା କରି ଯେଉଁ ବିଷୟର ଅବତାରଣା କରିଛନ୍ତି ତାହା ମୋର ମନେହୁଏ ମହୁମାଛିକୁ ପଥର ଫିଙ୍ଗିଲେ ଯେଉଁ ପରିସ୍ଥିତ ଉପୁଜେ ଏହା ସେହିପରି ହୋଇଛି ଏବଂ ତାହା ଫଳରେ ବର୍ତ୍ତମାନ ବ୍ୟବସ୍ଥା ଗୃହରେ ବିଭିନ୍ନ ଜିଲ୍ଲାର ଖାଦ୍ୟପରିସ୍ଥିତି ନେଇ ଆଲୋଚନା କରିବାକୁ ମାନ୍ୟବର ସଭ୍ୟମାନେ ଉତ୍ସାହିତ ଅଛନ୍ତି । ମୁଁ ଆଶାକରୁଛି ଆପଣ ଏଥିପାଇଁ ଆଜିଦିନଟି ଛାଡ଼ି କାଲି ଦିନ ମଧ୍ୟ ଏଇ ଖାଦ୍ୟପରିସ୍ଥିତି ବିଷୟରେ ଆଲୋଚନା କରିବାକୁ ସୁଯୋଗ ଦେବେ । କାଲିଦିନଟି ଯାହା ବେସରକାରୀ ପ୍ରସ୍ତାବ ଆଲୋଚନା ପାଇଁ ଅଛି ତାକୁ ଅନ୍ୟଦିନକୁ ରଖିଦେଲେ ବୋଧହୁଏ ମୁଁ ଆଶାକରୁଛି କାହାର କିଛି ଆପତ୍ତି ହେବ ନାହିଁ । ମାନ୍ୟବର

ରାଜସ୍ୱମନ୍ତ୍ରୀ ଯେଉଁସବୁ ବିଷୟର ଅବତାରଣା କରିଛନ୍ତି ସେ ବିଷୟରେ ଅନ୍ୟ ଅନ୍ୟ ସଭ୍ୟମାନେ ବିଶେଷ ଭାବେ ଆଲୋଚନା କରିବେ । ମୁଁ ସେ ବିଷୟରେ ବିଶେଷ କିଛି କହିବାକୁ ଯାଉ ନାହିଁ । କେବଳ କେତେଗୁଡ଼ିଏ ବିଷୟରେ ସମାଲୋଚନା କରି ଏବଂ କେତେଗୁଡ଼ିଏ ପରାମର୍ଶ ଦେଇ ମୁଁ ମୋର ବକ୍ତବ୍ୟ ଅତି ସଂକ୍ଷେପ ଭାବରେ ଶେଷ କରିବି । ସେ ବିଭିନ୍ନ ଜିଲ୍ଲାମାନଙ୍କର ଖାଦ୍ୟପରିସ୍ଥିତି ନେଇ ଯାହା ଆଲୋଚନା କଲେ ତାହାକୁ ଅନେକ ମାନ୍ୟବର ସଭ୍ୟ ଯେଉଁମାନେ କି ପ୍ରକୃତ ପରିସ୍ଥିତି ଜାଣନ୍ତି ସେମାନେ ସମର୍ଥନ କରି ପାରୁ ନାହାନ୍ତି ତାର ପ୍ରଧାନ କାରଣ ହେଉଛି ଏହିସବୁ ଯେଉଁ Data ବା ଯେଉଁ କାରଣ ଉପରେ ସେ ତାଙ୍କର ସିଦ୍ଧାନ୍ତ ବାହାର କରିଛନ୍ତି ସେଟା ବାସ୍ତବିକ ସେହି କାରଣରୁ ସିଦ୍ଧାନ୍ତ କରଯାଇ ନ ପାରେ । ସେଥିପାଇଁ ଜିଲ୍ଲା ମାଜିଷ୍ଟ୍ରେଟମାନେ ଯେଉଁ ରିପୋର୍ଟ ଦେଇଛନ୍ତି ତାହା ଅନେକ କ୍ଷେତ୍ରରେ underestimate of fact ବୋଲି ଅନେକଙ୍କର ମତ । ଉଦାହରଣ ସ୍ୱରୂପ ମୁଁ କହିବି ମାନ୍ୟବର ରାଜସ୍ୱମନ୍ତ୍ରୀ କହନ୍ତି ଯେ କୃଷି ଶ୍ରମିକ ବା ମୂଲିଆମାନଙ୍କର ବେକାର ସମସ୍ୟା ଉପରେ ସେ ବିଭିନ୍ନ ଜିଲ୍ଲାର ଖାଦ୍ୟପରିସ୍ଥିତି ବିଷୟରେ ସିଦ୍ଧାନ୍ତମାନ କରିଛନ୍ତି । କିନ୍ତୁ ବାସ୍ତବିକ ଯଦି ଦେଖାଯାଏ ତେବେ ଜଣାପଡ଼ିବ ଯେ ଅନେକ ଜାଗାରେ ଏପରି ଅଛି ଯେଉଁଠାରେ କି କୃଷି ଶ୍ରମିକମାନଙ୍କର ନିଯୁକ୍ତି ବା ବେକାର ସମସ୍ୟା ଉପରେ କୌଣସି ସିଦ୍ଧାନ୍ତ କରଯାଇ ନ ପାରେ । ଫସଲର ଅବସ୍ଥା କିପରି ଅଛି ସେ ବିଷୟର ସିଦ୍ଧାନ୍ତ କରଯାଇ ନ ପାରେ । ଉଦାହରଣସ୍ୱରୂପ ମୁଁ କହିବି ସମ୍ବଲପୁର ଜିଲ୍ଲା କଥା । ସମ୍ବଲପୁର ଜିଲ୍ଲାରେ ଏଇ ମୂଲିଆମାନଙ୍କୁ ଗୁତି କୁହାଯାଏ । ଖାଲି ସମ୍ବଲପୁର ନୁହଁ, ବଲାଙ୍ଗିର ଏବଂ ସୁନ୍ଦରଗଡ଼ ଅଞ୍ଚଳରେ ସେହି ଗୁତିକୁ ବର୍ଷକିଆ ହିସାବରେ ରଖାଯାଏ । ସେଇ ଗୁତିମାନେ ।୨ଦିନ ବା ମାସରେ ଥରେ ମୂଲ ବା ମଜୁରୀ ନିଅନ୍ତି । ତେଣୁ ବର୍ଷ ଆରମ୍ଭରେ ଯେଉଁମାନେ ନିଯୁକ୍ତ ହୋଇଥାନ୍ତି ବର୍ଷ ଶେଷ ପର୍ଯ୍ୟନ୍ତ ଜମିର ମାଲିକ ତାଙ୍କୁ ମଜୁରୀ ଦେବାକୁ ବାଧ୍ୟ ହୁଏ । ଏପରି ଅବସ୍ଥାରେ ହୁଏତ ଅନେକ ମୂଲିଆ ବେକାର ହୋଇ ନାହାନ୍ତି । ଅଥଚ ଫସଲ ଖରାପ ହୋଇଯାଇଛି । ଉଦାହରଣ ସ୍ୱରୂପ ମୁଁ କହୁଛି, ମୂଲିଆମାନେ ବେକାର ଅବସ୍ଥାରେ ନାହାନ୍ତି ତେଣୁ ଫସଲ ଅବସ୍ଥା ଭଲ ଅଛି । ଏପରି ସିଦ୍ଧାନ୍ତ କରିବା ଠିକ୍ ନୁହେଁ । ଆମର ଏ ବର୍ଷ ଯଦି ବର୍ଷାର ବିଷୟ ଆଲୋଚନା କରଯାଏ ତାହାହେଲେ ଦେଖାଯିବ ଯେ ଆଷାଢ଼ ଓ ଜ୍ୟେଷ୍ଠ ମାସ ପର୍ଯ୍ୟନ୍ତ ଓଡ଼ିଶାରେ ଭଲ ଅଧିକେ ବର୍ଷା ହୋଇଛି । ଆଷାଢ଼ ଓ ଶ୍ରାବଣରେ ବର୍ଷା ପୁରାପୁରି ଛାଡ଼ି ଯିବାରେ ଫସଲର ଯାହା ଅବସ୍ଥା ତାହା ଅତି ଖରାପ ଆଡ଼କୁ ଗତି କରିଛି ଏବଂ ତାହାଫଳରେ ବେଉଷଣ ଇତ୍ୟାଦି ଅତି ଦରକାରୀ କାର୍ଯ୍ୟମାନ ହୋଇ ପାରି ନାହିଁ । ବର୍ତ୍ତମାନ ଅଳ୍ପଦିନ ତଳେ ଏଇ ସେପ୍ଟେମ୍ବର ମାସ ପ୍ରଥମ ସପ୍ତାହରେ ବର୍ଷା ହେବା ଫଳରେ କ'ଣ ହୋଇଛି ? ମାନ୍ୟବର ରାଜସ୍ୱ ବିଭାଗ ମନ୍ତ୍ରୀ ପ୍ରତ୍ୟେକ ଜିଲ୍ଲାରେ କେତେ ବର୍ଷା ହୋଇଛି ସେ figure ଦେଇଛନ୍ତି ଓ କହିଛନ୍ତି ଯେ ଏହି ବର୍ଷା

ଫଳରେ ଅନେକ ଅବସ୍ଥା ସୁଧୁରିଯିବ କିନ୍ତୁ ୯ଇ 7/୪ ଦିନ ଭିତରେ ଯାହା ବର୍ଷା ହୋଇଛି ସେଥିରେ ଅବସ୍ଥା ଯାହା ସୁଧୁରିବ ବୋଲି କୁହାଯାଉଛି ସେ ସିଦ୍ଧାନ୍ତ ଠିକ୍ ନୁହେଁ ବୋଲି ମୁଁ ଭାବୁଛି । କାରଣ ଅନେକ ଜାଗାରେ ଚାଷର ଅବସ୍ଥା ଯାହା ହୋଇଛି, ଏ ଯେଉଁ ବର୍ଷା ହୋଇଛି ତାହା ଯେ ତାକୁ ସାହାଯ୍ୟ କରିବ ତାହା ହୋଇ ନ ପାରେ । ତେଣୁ ଏ ଯେଉଁ ବର୍ଷା ହୋଇଛି, ଆଜିତ ହେଲା ସେପ୍ଟେମ୍ବର ତା 10 ରିଖ, ଏହାପରେ ଯଦି କ୍ରମାଗତ ବର୍ଷା ଚାଲେ ତେବେ ହୁଏତ ତାହା ଫସଲକୁ ସାହାଯ୍ୟ କରିବାର ସମ୍ଭାବନା ଅଛି କିନ୍ତୁ ମୁଁ ଯେଉଁ ଅଞ୍ଚଳରୁ ଆସିଛି ଅର୍ଥାତ୍ ସମ୍ବଲପୁର ଅଞ୍ଚଳରେ ଦେଖିଛି ଏବଂ ଢେଙ୍କାନାଳ ଜିଲ୍ଲାର ଗଡ଼ଜାତ ଅଞ୍ଚଳମାନ ଦେଖିଛି ଯେଉଁ-ଠାରେ କି ଅନେକ ଜାଗାରେ ଫସଲ ଏପରିଭାବରେ ଖରାପ ହୋଇଛି ଯେ ବାସ୍ତବିକ ଯଦି ଭବିଷ୍ୟତରେ ବର୍ଷା ହୁଏ ମଧ୍ୟ ତାହା ବିଶେଷ କିଛି ସାହାଯ୍ୟକରି ପାରିବ ନାହିଁ ଏବଂ ଅନେକ ଜାଗାରେ ଏପରି ଅବସ୍ଥା ଆରମ୍ଭ ହେଲାଣି ଯେ ଧାନ ଚାଉଳ ଦର ବଢ଼ିବାରେ ଲାଗିଲାଣି ଏବଂ ପୂର୍ବରୁ ଯେଉଁମାନେ ଧାନ ଚାଉଳ ଜମାକରି ରଖି ନାହାନ୍ତି ସେମାନଙ୍କ ମଧ୍ୟରେ ଅଭାବ ଦେଖାଯାଉଛି । ବଜାର ଇତ୍ୟାଦିମାନଙ୍କୁ ଯେଉଁ ସବୁ ଧାନ ଚାଉଳ ଇତ୍ୟାଦି ବିକ୍ରୀ ହେବାକୁ ଆସୁଛି ତାହା ଅତିଶୀଘ୍ର ସରି ଯାଉଥିବାରୁ ଅନେକ ଲୋକ ଚାଉଳ କିଣିବାକୁ ପାଉ ନ ଥିବା ଖବର ଅନେକ ଜାଗାରୁ ଆସୁଛି । ସମ୍ବଲପୁରର, ୟୁନୁମଗ, ଦୁମା ଏପରି ରେଢ଼ାଖୋଲ ପ୍ରଭୃତି ଅଞ୍ଚଳମାନଙ୍କରେ ବିଶେଷ ଅଭାବ ହେଉଥିବା ଖବର ମୁଁ ପାଇଛି ଏବଂ ବରଗଡ଼, ବରପାଲି, ବିଜେପୁର, ହେସେଲ ଇତ୍ୟାଦି ଅଞ୍ଚଳମାନଙ୍କରେ ଅଭାବ ପରିଲକ୍ଷିତ ହେଉଥିବା ଖବର ମୁଁ ପାଇଛି । ବିଶେଷତଃ ସମ୍ବଲପୁର ସବୁଦିନେ ବଳକା ଅଞ୍ଚଳବୋଲି ବିବେଚିତ ହୋଇଛି । କେବଳ 1୫99 ସାଲରେ ଯାହାକୁ କି ଛପନ ସାଲ ବୋଲି କୁହାଯାଇଛି, ସେ ସମୟରେ ଦୁର୍ଭିକ୍ଷ ହୋଇ-ଥିଲା । ବର୍ତ୍ତମାନ ଲୋକେ ଅଛନ୍ତି ଯେଉଁମାନଙ୍କୁ କି ସେ ସମୟର ଅବସ୍ଥା ଜଣା । ସେମାନେ କହୁଛନ୍ତି ଏବର୍ଷ ବର୍ଷାର ଅବସ୍ଥା ଯାହା 1୫99 ସାଲରେ ତା'ଠାରୁ ଭଲଥିଲା । ସେ ଯାହାହେଉ, ବର୍ତ୍ତମାନ ଅବସ୍ଥାରେ ସରକାରଙ୍କର ପ୍ରଧାନ ଏବଂ ପ୍ରଥମ କର୍ତ୍ତବ୍ୟ ହେଉଛି ଯେ ଧାନ ଚାଉଳର ଦରଦାମ ଯେପରି ଆଦୌ ନ ବଢ଼େ ଏବଂ ଧାନ ଚାଉଳ ଯେପରି ଯଥେଷ୍ଟ ପରିମାଣରେ ମିଳେ ସେଥିପ୍ରତି ଦୃଷ୍ଟି ଦେବା । ଏ ବିଷୟରେ ଯାହା କୁହାଯାଇଛି ଆମଦାନୀ ଓ ରପ୍ତାନୀ ବିଷୟରେ କୌଣସି କଟକଣା ଯଦି ଆମେ ନ ରଖୁ ତେବେ କ୍ରମଶଃ ଦରଦାମ ବଢ଼ିବାର ଯେଉଁ tendency ଅଛି ସେ ବିଷୟରେ ସରକାର ଦୃଷ୍ଟିଦେବା କଥା । ଅବଶ୍ୟ ମାନ୍ୟବର ରାଜସ୍ୱ ବିଭାଗ ମନ୍ତ୍ରୀ କହିଛନ୍ତି ଆମେ ଏହିସବୁ ଆତଙ୍କ ସୃଷ୍ଟି କଲେ ଦରଦାମ ବୃଦ୍ଧି ହୋଇପାରେ । ଆତଙ୍କସୃଷ୍ଟି କରିବା ଆଦୌ ଉଚିତ ନୁହେଁ ଏ କଥା ସତ । କିନ୍ତୁ ଅବାଧ ଆମଦାନୀ ଓ ରପ୍ତାନୀ ଫଳରେ ଦରଦାମ ବଢ଼ିବା ଗତିକୁ ବା inflationary tendencyକୁ ପ୍ରତି-ରୋଧ କରିବା ବିଷୟ ଭାବିବା କର୍ତ୍ତବ୍ୟ ।

ତାପରେ ଆଉ ଗୋଟିଏ ବିଷୟ ହେଉଛି Central Subsidy. ସେ ବିଷୟରେ କୁହାଯାଇଛି କେନ୍ଦ୍ର ସରକାର ଅଧା ଦେବେ ଏବଂ ପ୍ରାଦେଶିକ ସରକାର ଅଧା ଦେବେ । ଏପରି ଅବସ୍ଥାରେ ମୁଁ କହେ ଅତୀତରେ ଗତ 10/12 ବର୍ଷ ଧରି ଭାରତର ଯେ କୌଣସି ପ୍ରଦେଶରେ ଯାହା ଅଭାବ ହୋଇଛି ବା ଯେଉଁଠି ଦୁର୍ଭିକ୍ଷ ହୋଇଛି ସେଥିରେ ଓଡ଼ିଆ ନିଜ ସ୍ୱାର୍ଥତ୍ୟାଗ କରି ଭାରତ ସରକାରଙ୍କ କଥା ଅନୁସାରେ ଅନ୍ୟାନ୍ୟ ପ୍ରଦେଶମାନଙ୍କୁ ଧାନ ଚାଉଳ ଯୋଗାଇ ଆସିଛି ।

ଆମ ସରକାର ଅତି ଦୃଢ଼ତାର ସହିତ ଦାବୀ କରିବା ଉଚିତ ଯେ ଆମେ ଯାହା Subsidy ପାଉ ଏବଂ ଯେତିକି ପାଉ ସେଥିରେ ଆମ ଲୋକ ସାଧାରଣ ବା ଓଡ଼ିଶା ସରକାର ବିଶେଷ କ୍ଷତିଗ୍ରସ୍ତ ନ ହୋଇ ଯେପରି କେନ୍ଦ୍ର ସରକାର ପୁରା Subsidy ଦେବେ ସେଥିପ୍ରତି ଆମ ସରକାର ଜୋର ଦେବା ଉଚିତ । ଆଉ ଗୋଟିଏ କଥା ହେଉଛି ଜିଲ୍ଲା ମାଜିଷ୍ଟ୍ରେଟ୍‌ମାନେ ଯେଉଁ ହିସାବରେ ଖବର ସଂଗ୍ରହ କରନ୍ତି ବା କରୁଛନ୍ତି ତାହା ଅନେକ ସମୟରେ ହୁଏତ ଆଂଶିକ ବା ଭୁଲ ଖବର ସଂଗ୍ରହ କରଯାଉଛି । ଏଇଟାକୁ ପ୍ରତିରୋଧ କରିବା ପାଇଁ ମୁଁ ଭାବୁଛି ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଲେଖାଏଁ ଖାଦ୍ୟ କମିଟି ହେବା ଉଚିତ ଏବଂ ଆସେମ୍ବ୍ଲି ତରଫରୁ ସମଗ୍ର ପ୍ରଦେଶ ପାଇଁ ଗୋଟିଏ କମିଟି ହେବା ଉଚିତ ଯେଉଁମାନେ କି ମଝି ମଝିରେ ଅବସ୍ଥା କିପରି ଭାବରେ ଚାଲିଛି, ଅବସ୍ଥା ଉନ୍ନତ ହେଲେ ତ କଥା ନାହିଁ— ଖରାପ ଆଡକୁ ଗତି କଲେ ତା'ର ପ୍ରତିରୋଧ କରିବା ପାଇଁ ସେମାନେ ଯେପରି ଜିଲ୍ଲା ମାଜିଷ୍ଟ୍ରେଟ୍ ବା ସରକାରଙ୍କୁ ପରାମର୍ଶ ଦେଇ ପାରିବେ ସେଥିପ୍ରତି ଆମେ ଯଥେଷ୍ଟ ସାବଧାନତାର ସହିତ ଦୃଷ୍ଟି ଦେବା ଉଚିତ । ଅବଶ୍ୟ ଏଯେଉଁ ଆତଙ୍କ ସୃଷ୍ଟି ହେବାଟା ବା alarmist ହେବା ଫଳରେ ଯେପରି ପରିସ୍ଥିତି ଉପୁଜିବାର ସମ୍ଭାବନା ଅଛି, Complacency ବା ବେପରବାୟ ହେବା ମଧ୍ୟ ତାଠାରୁ କ୍ଷତି ଯଥେଷ୍ଟ ବେଶି ଅଛି ତେଣୁ ସେଥିପ୍ରତି ସବୁବେଳେ ସଜାଗ ରହିବା ପାଇଁ ସରକାର ସଚେଷ୍ଟ ହେବେ ବୋଲି ମୁଁ ଅନୁରୋଧ କରୁଛି ।

Shri SADASIVA TRIPATHY (Minister) : ଏ ଯେଉଁ ପ୍ରାଦେଶିକ କମିଟି କରିବା କଥା କହିଲେ ମୁଁ ବୁଝିଲି, କିନ୍ତୁ ଜିଲ୍ଲାମାନଙ୍କରେ ଯେଉଁ Development Board ଅଛି ତା ବାହାରେ ଆଉ ଗୋଟିଏ କମିଟି ରହିବାକୁ ହେବ ନା ସେଇ ବୋର୍ଡ ବିଚାର କରିବେ ?

Shri SHRADDHAKAR SUPAKAR : ବର୍ତ୍ତମାନ ଯେଉଁ Development Board ଅଛି ତାହା 3 ମାସରେ ଥରେ ବସୁଛି । ତାହା ଯଦି ମଝି ମଝିରେ ଖାଦ୍ୟ ପରିସ୍ଥିତି ଆଲୋଚନା କରିବା ପାଇଁ ସ୍ୱତନ୍ତ୍ର ଭାବେ ବସେ ତାହେଲେ ସେଥିରେ କାମ ଚଳିବ ।

Shri GODAVARIS MISRA : ବାଚସ୍ପତି ମହାଶୟ, ବିରୋଧୀଦଳର ନେତା ଯାହା କହିଲେ ଯେ ଆଜି ଓ କାଲି ଦୁଇଦିନ ଆଲୋଚନା ଚାଲିବ ସେ ବିଷୟରେ ଆପଣଙ୍କର ମତାମତ ଜାଣିଲେ ସୁବିଧା ହେବ ।

The SPEAKER : ଆଜି ଦେଢ଼ଘଣ୍ଟା ବେଶୀ ସମୟ ବସିଲେ ମଧ୍ୟ ଆଲୋଚନା ପାଇଁ ଯଥେଷ୍ଟ ସମୟ ହେବ ନାହିଁ । ବିରୋଧୀଦଳର ନେତା ଯାହା ସୂଚନା ଦେଇଛନ୍ତି ମାନ୍ୟବର ସଭ୍ୟମାନେ ତାକୁ ଗ୍ରହଣ କଲେ । ଆଜି ଓ କାଲି ଦୁଇଦିନ ଆଲୋଚନା ଚାଲିବ । କାଲି ବେସରକାରୀ ପ୍ରସ୍ତାବ ଆଲୋଚନା ହେବାର ଥିଲା ଏବଂ ତା 18ତାରିଖକୁ ମଧ୍ୟ ଅଛି । ମାନ୍ୟବର ସଭ୍ୟମାନେ ତା 18 ରିଖର ସକାଳେ 3 ଘଣ୍ଟା ଓ ଉପରଓଳି 3 ଘଣ୍ଟା ବସିଲେ ଉଭୟ ଦିନର କାର୍ଯ୍ୟ ଆଲୋଚନା ହୋଇପାରିବ କାହିଁକି ନା ତା 23 ରିଖରୁ ଆଉ ଅଧିକ ଦିନ ବସିବାକୁ ଅସୁବିଧା ହୋଇପାରେ ।

Shri SHRADDHAKAR SUPAKAR : ମୁଁ ଆଉ ଗୋଟିଏ ପରାମର୍ଶ ଦେବାକୁ ଚାହେଁ ଯେ ମାନ୍ୟବର ରାଜସ୍ୱ ମନ୍ତ୍ରୀ ବିଭିନ୍ନ ଜିଲ୍ଲାର ପରିସ୍ଥିତି ବିଷୟରେ ଯାହା ଭାଷଣ ଦେଲେ ତାର ଗୋଟିଏ synopsis reneo କରି ସଭ୍ୟମାନଙ୍କ ମଧ୍ୟରେ ବାଣ୍ଟିବାରେ କିଛି ଆପତ୍ତି ଅଛି କି ?

## ଓଡ଼ିଶା ହିନ୍ଦୁ ଧର୍ମ ଦେବୋତ୍ତର (ସଂଶୋଧନ) ବିଲ୍, 1954

ହିନ୍ଦୁ ଦେବୋତ୍ତର ସଂଶୋଧନ ବିଲ୍ ଓଡ଼ିଶା ବିଧାନସଭାରେ ଆଗତ ହୋଇ ଯାଞ୍ଚ କମିଟିକୁ ଯିବା ପାଇଁ ପ୍ରସ୍ତାବ ହେଲା ଏବଂ 1954 ସେପ୍ଟେମ୍ବର 22 ତାରିଖରେ ଶ୍ରୀ ସୁପକାର ଏହି ବିଲ୍ ସଂପର୍କରେ କିପରି ଉଭୟ ଆଶା ଓ ଆଶଂକା ସମସ୍ତଙ୍କ ମନରେ ଖେଳିଯାଇଛି, ବୁଝାଇଛନ୍ତି । ଏହି ଆଇନର ପୃଷ୍ଠଭୂମି ସଂପର୍କରେ ଆଲୋକପାତ କରି ସେ ଦେବୋତ୍ତର ସଂସ୍ଥାର ଦୋଷତ୍ରୁଟିକୁ କିପରି ନିୟନ୍ତ୍ରଣ କରାଯାଇ ପାରିବ, ସୂଚାଇଛନ୍ତି । ମଠ ମନ୍ଦିରଗୁଡ଼ିକର ସୁପରିଚାଳନା ପାଇଁ ସେ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ସେମାନଙ୍କଠାରୁ ଚାନ୍ଦା (Contribution) ଆଦାୟ କରିବାରେ କିପରି ଅସୁବିଧା ଓ ଅତ୍ୟାଚାର ନହେବ ବାଟ ବତାଇଛନ୍ତି । ବଡ ବଡ ମଠ ଯଥା ପୁରୀର ରାଧାକାନ୍ତ ମଠ, ଏମାର ମଠର ବିପୁଳ ସଂପତ୍ତି ଓ ସେମାନଙ୍କର ଦୁର୍ନୀତିକୁ ନିୟନ୍ତ୍ରଣ କରିବାକୁ ଯାଇ ପୁରପଲ୍ଲୀରେ ଥିବା ସାନ ସାନ ମଠ ମନ୍ଦିର ଯେମିତି ହଇରାଣ ନ ହେବେ ସେଥିପାଇଁ ପଦକ୍ଷେପ ନେବାକୁ ସେ ସରକାରଙ୍କୁ ସାବଧାନ କରାଇଛନ୍ତି ।

The SPEAKER : ସଂଶୋଧନ ପ୍ରସ୍ତାବ ଆଗତ ହେଲ ଯେ, 1954 ମସିହା ହିନ୍ଦୁ ଦେବୋତ୍ତର ସଂଶୋଧନ ଚିଠା ଆଇନ୍ ନିମ୍ନଲିଖିତ ମତେ ଯାଞ୍ଚ କମିଟିକୁ ଯାଉ । ଯାଞ୍ଚ କମିଟିର ସଭ୍ୟ ହେଲେ ;—

ଶ୍ରୀ ଜୟକୃଷ୍ଣ ମହାନ୍ତି

ଶ୍ରୀ ଭି. ସୀତାରାମାୟା

ଶ୍ରୀ ଅନିରୁଦ୍ଧ ମିଶ୍ର

ଶ୍ରୀ ଶ୍ରଦ୍ଧାକର ସୁପକାର

ଶ୍ରୀ ନୀଳକଣ୍ଠ ଦାସ

ଶ୍ରୀ ନିଶାମଣୀ ଖୁଣ୍ଟିଆ, and the mover of tbe Bill.

ମୂଳ ପ୍ରସ୍ତାବ ଥିଲ, ବିଚାରକୁ ନିଆଯାଉ ।

Shri SHRADDHAKAR SUPAKAR : ଯେଉଁ ହିନ୍ଦୁ ଦେବୋତ୍ତର ସଂଶୋଧନ ବିଲ୍‌ଟି ଆଗତ କରଯାଇଛି, ଏ ବିଷୟରେ ଏ ବ୍ୟବସ୍ଥାପକ ସଭରେ ଦୁଇ ଗୋଟି ଭବ ପ୍ରକାଶ ପାଉଛି । ଗୋଟିଏ ହେଉଛି ଆଶା, ଆଉ ଗୋଟିଏ ହେଉଛି ଆଶଙ୍କା । ଆଶା ହେଉଛି ଏ ବିଲ୍‌ଟି ଶୀଘ୍ର ଶୀଘ୍ର ପାସ୍ ହୋଇ ମଠ-ମନ୍ଦିରମାନଙ୍କରେ ଯେଉଁ ସବୁ କୁପରିଚାଳନା ହେଉଛି, ଏବଂ ଯେଉଁ କୁପରିଚାଳନା ଫଳରେ ଅନେକ ସମ୍ପତ୍ତି ଅପବ୍ୟୟ ହେଉଛି, ନଷ୍ଟ ହେଉଛି, ସେ ସବୁ କିପରି ଆଇନ ଅନୁସାରେ ନିୟନ୍ତ୍ରିତ ହେବ । ଏ ପ୍ରକାର ସୁବିଧା ଏ ବିଲ୍ ଦ୍ୱାରା ହେବ ବୋଲି ଆଶା କରଯାଉଛି । ଅନ୍ୟ ପକ୍ଷରେ ଆଶଙ୍କା କରଯାଉଛି—ଏହି ବିଲ୍‌ରେ ହୁଏତ କେତେକ ଭୁଲ ଥାଇପାରେ, ଯାହା ଫଳରେ କି High Court ଏବଂ Supreme Court ଏହାକୁ ରଦ୍ କରିଦେଇପାରନ୍ତି । ଏ'ଟା ରଦ୍ କରିଦେବା ଫଳରେ ହିନ୍ଦୁ ଦେବୋତ୍ତର ଆଇନ୍ ଦ୍ୱାରା ମଠ ଏବଂ ମନ୍ଦିରମାନଙ୍କର ପରିଚାଳନାର ଯେ ଦାୟିତ୍ୱ, ଆମର ଏ ବ୍ୟବସ୍ଥାପକ ସଭର ଯେଉଁ କ୍ଷମତା ଏବଂ ଦାୟିତ୍ୱ ଅଛି—ସେ କ୍ଷମତା ଏବଂ ଦାୟିତ୍ୱରେ ଆଞ୍ଚ ଆସିପାରେ, ଏହି ଆଶଙ୍କା ରହିଛି । ଅନେକ ସଭ୍ୟ ହୁଏତ High Court ଏବଂ Supreme Courtକୁ କୋକୁଆ ଭୟ ପରି ଭୟ କରି ପାରନ୍ତି, କିନ୍ତୁ ବାସ୍ତବିକ ଯଦି ଆମେ ତନେଇ କରି ଦେଖିବା, ତା'ହେଲେ ଆମେ ଦେଖିବାକୁ ପାଇବା ଯେ ଆମେ ଯେଉଁ ଦୃଷ୍ଟିକୋଣରୁ ବିଷୟଟିକୁ ବିଚାର କରୁଥାଉଁ, High Court ବା Suprime Court ହୁଏତ ସେହି ଦୃଷ୍ଟିକୋଣରୁ ବିଚାର କରୁନଥନ୍ତି, କିନ୍ତୁ ଅନନ୍ୟୋପାୟ ହୋଇ ଏହି ପ୍ରକାର ରାୟ ଦେବାକୁ ବାଧ୍ୟ ହେଉଛନ୍ତି । ସେଥିପାଇଁ ଆମର ସଂବିଧାନକୁ ହୁଏତ ଦାୟୀ କରିବାକୁ ହେବ ଏବଂ ବିଶେଷ ପରିମାଣରେ ଦାୟୀ କରିବାକୁ ହେବ—ଆମର ଏ ବିଧାନ ସଭକୁ, କାରଣ ବିଚାର ନ କରି ହୁଏତ ଭୁଲଥାଇ ଏ ପ୍ରକାର

ଆଇନ୍ ପାସ୍ କରିଛନ୍ତି । ହୁଏତ ଆମର ଅଜ୍ଞାତସାରରେ ବା ଆମର ଅଜ୍ଞତାରୁ ଏହି ପ୍ରକାର ହୋଇଯାଇଛି । ଏ ବିଷୟରେ ଯେଉଁସବୁ ଆଲୋଚନା ହୋଇଛି, ସେ ବିଷୟରେ କେତେକ କଥା କହିବା ପୂର୍ବରୁ, ଏ ଯେଉଁ ଦେବୋତ୍ତର ଆଇନ୍ ଅଛି ତାହାର ଇତିହାସ ଅତି ସଂକ୍ଷିପ୍ତ ଭାବରେ ମୁଁ ଟିକିଏ କହିବାକୁ ଚାହେଁ । 1939ରେ ଏ ହିନ୍ଦୁ ଦେବୋତ୍ତର ଆଇନ୍ ପାସ୍ ହେଲା । ସେ ସମୟରେ ମାନ୍ଦ୍ରାଜର ତତ୍କାଳୀନ ହିନ୍ଦୁ ଦେବୋତ୍ତର ଆଇନ୍ ସଂପୂର୍ଣ୍ଣ ଅନୁକରଣସ୍ୱରୂପ ପାସ୍ ହେଲା ବୋଲି ଧରଯାଇପାରେ ଏବଂ ସେଥିପାଇଁ ସେଥିରେ ଛାୟା ଅଛି । Fossilରୁ ଯେପରି କୌଣସି ପଥରର ଯୁଗ ନିଶ୍ଚୟ କରଯାଇପାରେ, ସେହିପରି ଏହି ଆଇନରେ ମଧ୍ୟ ଯେଉଁ ଛାୟା ପଡ଼ିଛି 1939 ଏବଂ 1951 ସାଲର ଆଇନ ଉପରେ ଏପରି ଛାପାମାନ, ଯାହା ଦ୍ୱାରା କି ଜଣାଯିବ ଯେ, ଏସବୁ ମାନ୍ଦ୍ରାଜର ହିନ୍ଦୁ ଦେବୋତ୍ତର ଆଇନ ଅନୁସାରେ କରଯାଇଛି ଏବଂ ଏ ଆଇନ କରିବା ସମୟରେ ଆମର ଓଡ଼ିଶାର ଯେଉଁ ଦେବୋତ୍ତର ଅନୁଷ୍ଠାନମାନ ବା ମନ୍ଦିରମାନ ଅଛି ତା ଉପରେ ବିଶେଷଭାବରେ ଦୃଷ୍ଟି ଦିଆଯାଇ ନାହିଁ ଏବଂ ସେ ଦେବୋତ୍ତର ଅନୁଷ୍ଠାନମାନଙ୍କୁ କିପରି ଭାବରେ ନିୟନ୍ତ୍ରଣ କରଯିବ ସେ ବିଷୟରେ ଯେପରି ପୁଙ୍ଖାନୁପୁଙ୍ଖ ଭାବରେ ଅନୁସନ୍ଧାନ କରଯିବା କଥା, ସେପରି ହୋଇନାହିଁ । 1939ରେ ହିନ୍ଦୁ ଦେବୋତ୍ତର ଆଇନ୍ ଯେତେବେଳେ ପାସ୍ ହେଲା, ଆପଣ ଜାଣିଥିବେ ସେ 64 ଧାରା ଅନୁସାରେ କେତେକ ମକଦ୍ଦମା ଅଦାଲତରେ ହେଲା ଏବଂ ସେ ମକଦ୍ଦମାଗୁଡ଼ିକୁ ସ୍ଥଗିତ ରଖିବାପାଇଁ ଏ ବ୍ୟବସ୍ଥା ସଭାରେ ଆମମାନଙ୍କୁ ବର୍ଷକୁ ବର୍ଷ ଆଇନ୍ ବ୍ୟବସ୍ଥା କରିବାକୁ ପଡୁଛି—କେବଳ ସେହି stay ବିଷୟରେ ଆଇନ୍ କରିବାକୁ । ତାପରେ ଯେତେବେଳେ 1951 ସାଲରେ ଆଇନ୍ ପାସ୍ ହେଲା, ସେ ଆଇନ୍ ମଧ୍ୟ ଆଜି ପର୍ଯ୍ୟନ୍ତ କାର୍ଯ୍ୟକାରୀ ନ ହେବାର କାରଣ ସ୍ୱରୂପ ତଦାନୀନ୍ତନ ଆଇନ୍ ମନ୍ତ୍ରୀ କହିଥିଲେ ଯେ 1951ର ଆଇନ୍ ଯେଉଁ ଆଇନ୍‌ରୁ ଅଣା ଯାଇଥିଲା, ସେହି Madras ହିନ୍ଦୁ ଦେବୋତ୍ତର ଆଇନ୍ Madras High Courtର ବିଚାରାଧୀନ ଥିଲା ଏବଂ ତହିଁରୁ କେତେକ ଦଫା ଅସିଦ୍ଧ ବୋଲି ଘୋଷିତ ହେଲା ଏବଂ ଶେଷରେ ସେହି କେତେକ ଦଫା Madras High Court ଯାହାକୁ ଅବୈଧ ବୋଲି କହିଥିଲେ, ତାହାକୁ ଅବୈଧ ବୋଲି ଘୋଷଣା କରିଦେଲେ । ତାଛଡ଼ା ଆମ ଓଡ଼ିଶାର ଯେଉଁ ଆଇନ୍‌ଟି High Court ଏବଂ Supreme Courtର ବିଚାରାଧୀନ ଥିଲା, ସେଥିରୁ ମଧ୍ୟ କେତେକ ଦଫା ଅବୈଧ ବୋଲି ଘୋଷିତ ହୋଇଛି । ଆମର ସଂବିଧାନରେ ଯେଉଁ ବ୍ୟବସ୍ଥା ଅଛି ସେଥିରେ ମାନ୍ଦ୍ରାଜ ବା ଓଡ଼ିଶାରେ ଯେଉଁ ଆଇନ୍ ହୋଇଛି ତାହା ଯେ, ସଂବିଧାନରେ ଯେଉଁ କଟକଣା ଅଛି, ସେ କଟକଣାକୁ ସଂପୂର୍ଣ୍ଣଭାବରେ ଦୃଷ୍ଟି ଦିଆଯାଇ କରଯାଇ ନ ଥିବାରୁ ଏପରି ଭୁଲ ହୋଇଛି, ତାହା ଜଣା ପଡୁଛି । ଆପଣ ଦେଖିବେ ସଂବିଧାନ ହେବା ପୂର୍ବରୁ ଏ ପ୍ରକାର ଆଇନ୍ ଉପରେ ବିଶେଷ ଭାବରେ କଟକଣା ନ ଥିଲା । କେବଳ ଇଂରେଜ ସରକାରଙ୍କ ନୀତି ଥିଲା ଯେ ଧର୍ମ ସଂକ୍ରାନ୍ତୀୟ କୌଣସି ବିଷୟରେ ସେମାନେ ହସ୍ତକ୍ଷେପ କରିବେ ନାହିଁ । ତା ଛଡ଼ା ଆଉ କୌଣସି ବାଧା ବା ପ୍ରତିବନ୍ଧକ ଆଇନ୍ କରିବାରେ ନ ଥିଲା,

କିନ୍ତୁ ଆମର ନୂତନ ସଂବିଧାନ ଅନୁସାରେ ଏ ଯେଉଁ Right to Freedom of Religion, fundamental rightsରେ ଅଛି, ଅର୍ଥାତ୍ ମୌଳିକ ଅଧିକାର ବିଷୟରେ ଯେଉଁସବୁ ଧାରାମାନ ଖଞ୍ଜି ଦିଆହେଲା, ତା'ଫଳରେ ହିନ୍ଦୁ ଦେବୋତ୍ତର ନିୟନ୍ତ୍ରଣ କରିବା ପାଇଁ ବିଧାନ ସଭାର କ୍ଷମତା ଅନେକ ପରିମାଣରେ ସଙ୍କୁଚିତ କରି ଦିଆଗଲା । ଆପଣ ଦେଖିବେ ଯେ Article 26ରେ ଅଛି—

"Subject to public order, morality and health, every religious denomination or any section thereof shall have the right to establish and maintain institutions for religious and charitable purposes, to manage its owd affairs in matters of religion, to own and acquire movable and immovable property and to administer such property in accordance with law."

ସୁପ୍ରିମକୋର୍ଟ ଆଇନ୍‌ର ଯେଉଁସବୁ ଧାରାକୁ ଅବୈଧ ବୋଲି ଘୋଷଣାକରି ଦେଇଛନ୍ତି, ସେ ମକଦ୍ଦମାଟି Commissioner of Hindu Religious Endowment, Madras *versus* Shri L. Tirthaswami ହୋଇଥିଲା । ଏଥିରୁ ଆପଣ ଦେଖିବେ ଯେ, ମାନ୍ଦ୍ରାଜର ଯେଉଁ ଆଇନ୍ ସେଥିର ଅନେକଗୁଡ଼ିଏ ଦଫା ଅବୈଧ ଘୋଷଣା କରାଯାଇଛି, ବିଶେଷଭାବରେ ଏହି କାରଣରୁ ଯେ, ଏହି ଆଇନ୍‌ରେ ଯେଉଁ ମନାକରି ଦିଆଯାଇଛି ଯେ, ମଠ ବା ମନ୍ଦିର, ଯେଉଁସବୁ ଧାର୍ମିକ କ୍ଷମତା ଅଛି ବା religious rights ଅଛି, ସେଥିରେ ଆଇନ୍ ଅଦାଲତ ହସ୍ତକ୍ଷେପ କରିପାରିବେ ନାହିଁ । କେବଳ ବୈଷୟିକ ବିଷୟମାନ ବା secular affairs of the endowmentରେ କେବଳ ହସ୍ତକ୍ଷେପ କରିପାରିବେ । ଏ ଯେଉଁ ସୀମାରେଖା, ସେ ସୀମାରେଖାକୁ ଆଇନ୍ ଅତିକ୍ରମକରି, ଧାର୍ମିକ ଅଧିକାରରେ ମଧ୍ୟ ଅନେକ ସମୟରେ ହସ୍ତକ୍ଷେପ କରୁଛି ଏବଂ ଅନଧିକାର ପ୍ରବେଶ କରୁଛି ବୋଲି ଏଇସବୁ ଧାରାମାନ ଅବୈଧ ବୋଲି ଘୋଷିତ ହୋଇଛି । ଆପଣ ଦେଖିବେ ଯେ Madras Hindu Religious Endowment Actର (21) ଦଫା 30(2), 31, 55, 56, 63, 69 ଏବଂ 76 (*a*) ଏ ସବୁ ଅବୈଧ ବୋଲି ଘୋଷଣା କରାଯାଇଛି ।

ଏହା ବାହାରେ ଆମ ଓଡ଼ିଶାରୁ ଯେଉଁ case ହାଇକୋର୍ଟ ଏବଂ Supreme Courtରେ ଥିଲା ତା' ଫଳରେ ଆମର ବ୍ୟବସ୍ଥା କରାଯାଉଛି ଯେ ଏହି ମୂଳ ଆଇନ୍‌ର 38, 39 ଏବଂ 40 ଧାରାରେ ଏଇଟ ଦିଆଯାଇଛି । ଏସବୁ କାହିଁକି ଅବୈଧ ବୋଲି ଘୋଷଣା କରାଯାଇଛି ସେ ବିଷୟରେ ଯଦି ଆମେ ଚିନ୍ତା କରିବା ତା' ହେଲେ ଆମେ ସଂପୂର୍ଣ୍ଣଭାବରେ ବୁଝିବାକୁ ପାଇବା ଯେ ଅନେକ ସମୟରେ ଆମେ ଭାବୁଥାଉଁ

ଯେ ବ୍ୟବସ୍ଥାପକ ସଭରେ ଲୋକଙ୍କ ପ୍ରତିନିଧି ହିସାବରେ ଆମେ ଯାହା ଇଚ୍ଛା ତାହା କରିପାରିବା । ଏହି ଭବ ଯୋଗୁଁ ଏପରି ଘଟୁଛି । ଆମ କ୍ଷମତାର ସୀମାରେଖା ବିଷୟରେ ଆମର ସ୍ପଷ୍ଟ ଧାରଣା ନାହିଁ । ୩୮ ଧାରାରେ ବ୍ୟବସ୍ଥା କରାଯାଇଛି ଯେ—

"38 (1)—For the administration of the secular affairs of a math, the trustee of the math shall, when so required by the Commissioner, appoint a competent person as manager and report the name of person so appointed to the Commissioner and in default of such apointment the Commissioner may himself make the appointment."

ତା'ର ଅର୍ଥ ଯଦି କମିଶନର ବିଚାର କରିବେ ଯେ କୌଣସି ମଠର ବୈଷୟିକ ନିୟନ୍ତ୍ରଣ ପାଇଁ ସେ କୌଣସି ଟ୍ରଷ୍ଟିଙ୍କୁ ବାଦ୍ କରି ମ୍ୟାନେଜର ନିଯୁକ୍ତି କରିପାରିବେ । ଯଦିଓ ଏଠି କେବଳ secular affairs ବିଷୟରେ କୁହାଯାଇଛି, religious କାର୍ଯ୍ୟାବଳୀରେ ହସ୍ତକ୍ଷେପ କରିବା ବିଷୟରେ କୌଣସି କାର୍ଯ୍ୟାବଳୀ କରାଯାଏ ନାହିଁ; ତଥାପି ସୁପ୍ରିମ କୋର୍ଟ କହୁଛନ୍ତି ଯଦି କୌଣସି ମଠ ବା ଦେବୋତ୍ତର ଅନୁଷ୍ଠାନ ତାଙ୍କ ଅନୁଷ୍ଠାନର ପରିଚାଳନାରେ ଅବହେଳା ବା କୁପରିଚାଳନା କରନ୍ତି ତା'ହେଲେ ଏହି ପ୍ରକାର ବ୍ୟବସ୍ଥା ଉପୁଜିବାର ସମ୍ଭାବନା ରହିଛି । ଏହା drastic step ହୋଇଯାଇ-ଥିବାରୁ ଏହିସବୁକୁ ଅବୈଧ ଘୋଷଣା କରାଯାଇଛି । ଏହି ପ୍ରକାର ଯେଉଁସବୁ ବିଷୟ ଅବୈଧ ଘୋଷଣା କରାଯାଇଛି ସେଥିରୁ ଅନେକ ବିଷୟ ଏହି ସଂଶୋଧନ ଚିଠାରୁ ଉଠାଇ ଦିଆଯାଇଛି ଏବଂ ଅନ୍ୟ ବ୍ୟବସ୍ଥା କରାଯାଇଛି କିନ୍ତୁ ଆମେ ଦେଖିବାକୁ ପାଇବା ଯେ ସେସବୁ ବିଷୟମାନ ଉଠାଇ ଦେଇ ବାକିସବୁ ବିଷୟମାନ ରଖିବାଦ୍ୱାରା ସେ'ଟା କେତେଦୂର ମୂଳ ଆଇନ୍‌କୁ ବିକଳାଙ୍ଗ କରି ଦେଉଛି ସେ ବିଷୟ ଅନୁଧ୍ୟାନ କରିବା କଥା । ଏପରି ଅନେକ ନୂଆ ବ୍ୟବସ୍ଥା କରାଯାଇଛି ଯାହା ଫଳରେ କି ଯେଉଁସବୁ ଭୁଲ ଯୋଗୁଁ କିମ୍ବା ଯେଉଁସବୁ କ୍ଷମତା ବହିର୍ଭୂତ ହୋଇଥିବା ଯୋଗୁଁ ମୂଳ ଆଇନ୍‌ର କେତେକ ଦଫା ଅବୈଧ ବୋଲି ଘୋଷିତ ହେଲା, ସେ ଯେଉଁ ଦୋଷ ସେ ଦୋଷର ସଂଶୋଧନ ଏହି ସଂଶୋଧନ ଆଇନ୍ ଚିଠାରେ କରାଯାଇ ନାହିଁ । ମୁଁ ଉଦାହରଣ ସ୍ୱରୂପ ଏହି contribution କଥା କହି ସେ ବିଷୟରେ ଟିକିଏ ଆଲୋଚନା କରିବି । ଆମର contribution ଧାରା ଯାହା ଅଛି ସେଥିରୁ ଜଣାଯାଉଛି ଯେ ପ୍ରତ୍ୟେକ ମଠ ତାଙ୍କ ଆୟରୁ ଶତକଡା କେତେ ଅଂଶ ଦେବେ, ସେଟା ମାନ୍ଦ୍ରାଜ ଆଇନ୍‌ର 76 ଦଫାରେ ରଖାଯାଇଛି । ଆମ ଓଡ଼ିଶା ଆଇନ୍ ତା'ର ଅନୁକରଣ ବା ଛାୟା ବୋଲି ଯାହା କୁହାଯାଉଛି ତା'ର 63 ଦଫାରେ ସେହି କଥା ରହିଛି । ସେଥିରେ ଅଛି ଯେ—63 (1)—in respect of the service rendered by the State Government and their

officers, every religious institution having an income exceeding two hundred and fifty rupees shall, from the income derived by it, pay to the State Government annually such contribution not exceeding seven percentum of its income as may be prescribed. ଅର୍ଥାତ୍ ବିଭିନ୍ନ ପ୍ରକାର ଆୟ ଥିବା ଦେବୋତ୍ତର ଅନୁଷ୍ଠାନମାନେ ଶତକଡା କେତେ ହିସାବରେ ତାଙ୍କର contribution ଦେବେ ସେ ବିଷୟରେ ବ୍ୟବସ୍ଥା କରାଯାଇଛି । ଏହି ମାନ୍ଦ୍ରାଜ ହିନ୍ଦୁ ଦେବୋତ୍ତର ଆଇନ୍‌ର 76 ଦଫା ଯେତେବେଳେ Supreme Courtରେ ଆଲୋଚନା ହେଉଥିଲା ସେ ବିଷୟରେ ଯୁକ୍ତିତର୍କ ହେଉଥିଲା । ସେତେବେଳେ ସେଥିରେ ବ୍ୟବସ୍ଥା ଥିଲା ଯେଉଁ ସବୁ ଟଙ୍କା contribution ହିସାବରେ ଯିବ, ସେ'ଟା Consolidated Fundକୁ ଯିବ ଏବଂ Consolidated Fundରୁ ଏହି ହିନ୍ଦୁ ଦେବୋତ୍ତର ପରିଚାଳନା ସକାଶେ ଯିବ । ଏହି ଦଫା ଆଲୋଚନା ସମୟରେ ଦେବୋତ୍ତର ଅନୁଷ୍ଠାନ ତରଫରୁ ସୁପ୍ରିମ୍ କୋର୍ଟରେ ଦୁଇଟି ଯୁକ୍ତି ଦେଖାଯାଇଥିଲା । ପ୍ରଥମେ ହେଉଛି—ହିନ୍ଦୁ ଦେବୋତ୍ତର ଅନୁଷ୍ଠାନପାଇଁ ଯେଉଁ contribution ଯିବ ସେ'ଟା ଯଦି consolidated fundରୁ ଯାଏ ଏବଂ ସେଥିରୁ ଯଦି ଟଙ୍କା ହିନ୍ଦୁ ଦେବୋତ୍ତର ଅନୁଷ୍ଠାନମାନଙ୍କର ଉଦ୍ଦେଶ୍ୟରେ ଖର୍ଚ୍ଚ ହୁଏ ତା'ହେଲେ ସେ'ଟା ସଂବିଧାନର 27 ଦଫାରେ ଯାହା ଅଛି ସେ ଅନୁସାରେ ପଡୁଛି । Article 27 of the constitutionରେ ଅଛି । "No person shall be compelled to pay any taxes, the proceeds of which are specially appropriated in payment of expenses for the promotion or maintenance of any particular religion or religious denomination". ଟଙ୍କା ଯେତେବେଳେ ଦେବୋତ୍ତର ଅନୁଷ୍ଠାନମାନଙ୍କ ପାଇଁ consolidated fund of the Stateକୁ ଗଲା ସେତେବେଳେ ଆପତ୍ତି କରିବାର କଥା ନୁହେଁ । ଯେତେବେଳେ Consolidated fund of the State ବା ସରକାରୀ ଖଜଣାଖାନାରୁ ହିନ୍ଦୁ ଦେବୋତ୍ତର ପରିଚାଳନା ପାଇଁ ଟଙ୍କା ଆସିବ, ସେତେବେଳେ ତାହା 27 ଧାରା ଅନୁସାରେ ପଡୁଛି । ଏଇଟା ହେଲା ପ୍ରଥମ ଯୁକ୍ତି । ଦ୍ୱିତୀୟ ଯୁକ୍ତି ହେଉଛି ଏହି contribution ପାଇଁ ଆଇନ କରିବା ସକାଶେ କ୍ଷମତା ରାଜ୍ୟ ସରକାରଙ୍କର ଅଛି ନା କେବଳ କେନ୍ଦ୍ର ସରକାରଙ୍କର ଅଛି । ଅନେକ ଯୁକ୍ତିତର୍କ ପରେ Supreme Court ରାୟ ଦେଲେ ଯେ ଏହି ପ୍ରକାର contribution ଗୋଟାଏ Tax.

Shri V. SITARAMAYYA : Where the Supreme Court has stated that the contribution is a tax.

Shri SHRADDHAKAR SUPAKAR : I may refer the ruling of the Supreme Court which is reported in a A. I. R. 1954, page 282.

ସେମାନେ ନିର୍ଦ୍ଦିଷ୍ଟ ଭାବରେ କହିଛନ୍ତି ଯେ ଏ contribution ଆଦାୟ କରିବାର କ୍ଷମତା କେବଳ କେନ୍ଦ୍ର ସରକାରଙ୍କର ଅଛି । ସେ ଦୁଇଟି କାରଣ ଯୋଗୁଁ 76-(1) ଦଫାକୁ ଅବୈଧ ବୋଲି ଘୋଷଣା କରିଛନ୍ତି ।

Shri V. SITARAMAYYA : In a subsequent ruling in June, 1954 the Supreme Court have declared that this contribution is a fee but not a tax.

Shri SHRADDHAKAR SUPAKAR : ମାନ୍ଦ୍ରାଜରେ ଯେଉଁ case ହୋଇଥିଲା ତାହା Supreme Courtକୁ ଯାଇଥିଲା । ସେଥିରେ ସେ କହିଛନ୍ତି 'The imposition of a tax is not a fee and it is beyond the competency of the Madras Legislature.' ସେ ଏ କଥା କହି ମାନ୍ଦ୍ରାଜ ଆଇନ୍‌ର 76 (1) ଦଫାକୁ ଅବୈଧ ଘୋଷଣା କରିଛନ୍ତି ।

Shri SATYAPRIYA MOHANTY (Minister) : "The amount of fee levied is supposed to be based on the expenses incurred by the Government in rending the service though in many cases the costs are arbitrarily assessed. Ordinarily, the fees are uniform and no account is taken of the varying abilities of different recipients to pay.

* * *

As regards the distinction between a tax and a fee, it is argued in the first place on behalf of the respondent that a fee is something voluntary which a person has got to pay if he wants certain services from the Government; but there is no obligation on his part to seek such services and if he does not want the services, he can avoid the obligation. The example given is of a licence fee. If a man wants a licence that is entirely his own choice and then only he has to pay the fees, but not otherwise. We think that a careful examination will reveal that the element of compulsion or coerciveness is present in all kinds of imposition, though in different degrees and that it is not totally absent in fees. This therefore, cannot be made the sole or even a material criterion for distinguishing a tax from fees".

Shri SHRADDHAKAR SUPAKAR : ଏସବୁ ଯାହା ବିଷୟ ଅଛି ଏ ସଂଶୋଧନ ବିଲ କଲବେଳେ ସେସବୁ ବିଷୟ ପ୍ରତି ଦୃଷ୍ଟି ଦିଆଯାଇ ନାହିଁ । ସେଥିପାଇଁ ମୁଁ ଭାବୁଛି ଏଇଟା Select Committeeକୁ ଯାଉ । Madras Hindu Religious Actର ଯେଉଁ ଦଫା ଏବଂ ତା'ର ଯେଉଁ corresponding ଦଫା ଆମ Orissa Hindu Religious Endowment Actରେ ଅଛି, ସେସବୁ ଦଫାମାନଙ୍କରେ ତୁଳନାମୂଳକ ଆଲୋଚନା ହୋଇ ଏଇଟାକୁ କିପରି ଭାବରେ କଲେ ସଂଶୋଧନ ହୋଇ ପାରିବ ସେ ବିଷୟପ୍ରତି ବିଶେଷ ଦୃଷ୍ଟି ଦିଆଯାଇ ନାହିଁ ବୋଲି ମୋର ଧାରଣା । ଏ ବିଷୟରେ ଆଉ ଗୋଟିଏ କଥା ତିର୍ତ୍ତୋଲର ମାନ୍ୟବର ସଭ୍ୟ କହିଛନ୍ତି ଯେ ଅଦାଲତର ଆଶ୍ରୟ ନିଆଯାଇ ପାରିବ ନାହିଁ ବୋଲି ଯେଉଁ ବ୍ୟବସ୍ଥା ଥିଲା ଏ ସଂଶୋଧନ ଫଳରେ ତାକୁ ଉଠାଇ ଦିଆଯାଇଛି ଏବଂ Supreme Courtର ruling ଅନୁସାରେ କୁହାଯାଇଛି ଯେ ଅଦାଲତର ଆଶ୍ରୟ ନିଆଯାଇପାରିବ । କିନ୍ତୁ High Court ବା Supreme Courtର କ୍ଷମତା stay ଦେବାରେ ବା କୌଣସି ବିଧାନକୁ ସ୍ଥଗିତ ରଖିବାରେ ଯେପରି ନ ରହିବ, ତା'ର ବ୍ୟବସ୍ଥା କରାଯାଉ । ଏହି ମର୍ମରେ ସେ ଗୋଟିଏ ବିଲ୍ ଦେଇଥିଲେ । କାହିଁକି ନା ଯଦି High Court ବା Supreme Courtର କ୍ଷମତା ରହେ ତା'ହେଲେ ତାହାର ବିଚାର ପାଇଁ ଯେଉଁ ସବୁ ଆନୁଷଙ୍ଗିକ ବ୍ୟବସ୍ଥା ଦରକାର ସେ ସବୁ ବ୍ୟବସ୍ଥା ଯଦି ନ କରାଯାଏ, ତା'ହେଲେ ସେ ସବୁ ବ୍ୟବସ୍ଥା କରିବାର କିଛି ଫଳ ନାହିଁ । ତେଣୁ ଏ ବିଷୟଟି ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚିତ ହେବା ଉଚିତ । କେବଳ ଏହି amendment Bill ନୁହେଁ, ମୂଳ ଆଇନ୍‌ଟି ଯେପରି ନିର୍ଦ୍ଦୋଷ ହେବ ସେଥିପ୍ରତି ନଜର ରଖିବା ଉଚିତ୍ । ଓଡ଼ିଶାରେ ଯେଉଁ ମଠ ଓ ମନ୍ଦିର ଅଛି ତା ସହିତ ଯେପରି ଏ ଆଇନ୍ ଖାପ ଖାଇବ ତା'ର ବ୍ୟବସ୍ଥା ହେବା ଉଚିତ୍ । ଆମ ଓଡ଼ିଶାରେ ଯେଉଁ ସବୁ ଛୋଟ ଛୋଟ ଦେବୋତ୍ତର ଅନୁଷ୍ଠାନମାନ ଅଛି ଏବଂ ସେମାନଙ୍କଠାରୁ ଯେଉଁ ସବୁ contribution ଆଦାୟ କରିବାର ବ୍ୟବସ୍ଥା କରାଯାଇଛି ଏବଂ ସେଥିପାଇ ଯେଉଁ ଅସୁବିଧା ଘଟୁଛି ସେ ବିଷୟରେ କେତେକ କଥା କହି ମୋର ବକ୍ତବ୍ୟ ଶେଷ କରିବି ।

ଆମେ ଯେତେବେଳେ ମଠ ବା ମନ୍ଦିର କଥା ଆଲୋଚନାକରୁ ଭୁବନେଶ୍ୱର ମନ୍ଦିର ଆମର ଅତି ନିକଟରେ ଥିବାରୁ ଏଇ ଭୁବନେଶ୍ୱର ମନ୍ଦିର ପରି ବଡ଼ ବଡ଼ ଅନୁଷ୍ଠାନ ଆମର ମନେ ପଡ଼େ । ପୁରୀ ଜିଲ୍ଲା ଭିତରେ Assembly ଅଛି ବୋଲି ପୁରୀ ଜିଲ୍ଲାରେ ପୁରୀର ଜଗନ୍ନାଥ ମନ୍ଦିର ଓ ରାଧାକାନ୍ତ ମଠ, ଏମାର ମଠ ଏହିସବୁ ବଡ଼ ବଡ଼ ମଠ କଥା ମନେ ପଡେ । ସେଥିପାଇଁ ଆମେ ଭାବୁ ଯେ ଏହିପରି ଯେଉଁ ବଡ଼ ବଡ଼ ମଠ ବା ମନ୍ଦିର ରହିଛି ସେଥିରେ ଯେଉଁ ପ୍ରକାର ଦୁର୍ନୀତି ଚାଲିଛି ତାକୁ ବନ୍ଦ କରିବାକୁ ହେଲେ ଆମେ ପୁରାପୁରି ତାକୁ ନିୟନ୍ତ୍ରଣ କରିବା । ଏସବୁ କଥା

ଭବିଲ ବେଳେ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ଯେଉଁସବୁ ଛୋଟ ଛୋଟ ଅନୁଷ୍ଠାନମାନ ଅଛି, ଯାହାଙ୍କର କି ଆୟ ଖୁବ୍ କମ୍ ସେସବୁ ଅନୁଷ୍ଠାନମାନଙ୍କର କଥା ଆମେ ଆଦୌ ବିଗ୍ଭରକୁ ଆଣୁ ନାହୁଁ । Sales tax ଆଇନ୍‌ରେ ଯେପରି ଅନେକ ଲୋକ ଉତ୍ପୀଡ଼ିତ ହେଉଛନ୍ତି, ଅନେକ କଷ୍ଟ ପାଉଛନ୍ତି, ଯେଉଁ ବିଷୟରେ କି ଏ ବ୍ୟବସ୍ଥା ସଭାରେ ଅନେକଥର ଆଲୋଚନା ହୋଇ ଯାଇଛି, ସେହିପରି ଯେଉଁସବୁ ଛୋଟ ଛୋଟ ମଠ ମନ୍ଦିର ରହିଛି, ଯାହାଙ୍କର କି ଆୟ ଖୁବ୍ କମ୍ ତାଙ୍କ ଆୟ ତୁଳନାରେ ତାଙ୍କୁ ଅନେକ contribution ଦେବାକୁ ପଡୁଛି ଏତଦ୍ୱାରା, ସେମାନେ ନାନା ପ୍ରକାର ହଇରାଣ ହେଉଛନ୍ତି । ଏ ବିଷୟରେ ଅନୁସନ୍ଧାନ କଲେ ବହୁତ ଦୃଷ୍ଟାନ୍ତ ମିଳିବ ।

## ଓଡ଼ିଶା ବିକ୍ରି କର (ସଂଶୋଧନ) ବିଲ୍, 1954

ଓଡ଼ିଶା ବିକ୍ରି କର (ସଂଶୋଧନ) ବିଲ୍ ଓଡ଼ିଶା ବିଧାନ ସଭାରେ ଆଗତ ହେବା ପରେ ଏହି ଚିଠା ଆଇନ୍‌କୁ 1954 ନଭେମ୍ବର 20 ତାରିଖ ପର୍ଯ୍ୟନ୍ତ ଲୋକମତ ସଂଗ୍ରହ ପାଇଁ ପଠାଇବାକୁ ପ୍ରସ୍ତାବ ଆସିଛି । ତା ଉପରେ ବିଗ୍ଭର ବିମର୍ଶ କରିବାକୁ ବାଚସ୍ପତି ଗ୍ଭହିଁଲ୍ ବେଳେ ବିଲ୍‌ଟିକୁ ଯାଞ୍ଚ କମିଟିକୁ ବା ଲୋକମତ ସଂଗ୍ରହ ପାଇଁ ପଠାଇବାକୁ ପ୍ରସ୍ତାବ ଦିଆଯାଇଛି । ଡଃ ସୂପକାର ସଂଶୋଧନ ବିଲ୍‌ଟିକୁ ଯାଞ୍ଚ କମିଟିକୁ ପଠାଇବା ପାଇଁ ଆସିଥିବା ପ୍ରସ୍ତାବକୁ ସମର୍ଥନ କରିଛନ୍ତି । ମାତ୍ର ଏହା ଉପରେ ବିସ୍ତୃତ ଆଲୋଚନା ହେବା ଉଚିତ ବୋଲି ମତ ଦେବା ସଙ୍ଗେ ସଙ୍ଗେ କହିଛନ୍ତି ଯେ "ମଜୁରିବାବଦରେ ଯାହା ବିକ୍ରି କରି ଦେବାକୁ ପଡୁଥିଲା, ତାହା ପୂରାପୁରି ଅବ୍ୟାହତି ଦିଆଯିବ । ଏ ଯେଉଁ ବ୍ୟବସ୍ଥା କରାଯାଇଛି, ତାହା ଗୋଟିଏ ଭଲ ବ୍ୟବସ୍ଥା", ଏହା ଫଳରେ ଛୋଟ ଛୋଟ ବ୍ୟବସାୟୀ ଓ କାରିଗରମାନେ ବିଭିନ୍ନ ଅସୁବିଧାରୁ ରକ୍ଷା ପାଇବେ ବୋଲି ମତ ଦେଇଛନ୍ତି ।

Shri SHRADDHAKAR SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, Sales tax ସଂଶୋଧନ ବିଲ୍ ଯାଞ୍ଚ କମିଟିକୁ ଯାଉ ବୋଲି ଯେଉଁ ପ୍ରସ୍ତାବ ଆଗତ କରାଯାଇଛି ମୁଁ ତାକୁ ସମର୍ଥନ କରୁଛି । ଏହି ସଂଶୋଧନ ବିଲ୍‌ରେ କେତେକ ଦଫା ଅଛି ଯାହା ଉପରେ କି ବିସ୍ତୃତ ଆଲୋଚନା ଏହି ସମୟରେ ହେବା ଦରକାର । ଏହି ସଂଶୋଧନ ବିଲ୍‌ର ଦୁଇ ଦଫା explanation ରେ କୁହାଯାଇଛି ଯେ ମଜୁରି ବାବଦରେ ଯାହା ବିକ୍ରି କର ଦେବାକୁ ପଡୁଥିଲା, ତାକୁ ପୂରାପୂରୀ ଅବ୍ୟାହତି ଦିଆଯିବ । ଏ ଯେଉଁ ବ୍ୟବସ୍ଥା କରାଯାଇଛି ଏହା ଗୋଟିଏ ଖୁବ୍ ଭଲ ବ୍ୟବସ୍ଥା । ମୁଁ ଆଶା କରୁଛି ଏହା ଫଳରେ ଅନେକ ଛୋଟିଆ ଛୋଟିଆ ବ୍ୟବସାୟୀ ଉପକୃତ ହେବେ, ଉଦାହରଣ ସ୍ୱରୂପ ମୁଁ କହିପାରେ ଅନେକ ଅଞ୍ଚଳରେ ସୁନାରୀ ଅଛନ୍ତି ଯେଉଁମାନେ କି ସୁନାରୁପା ବ୍ୟବସାୟ ନିଜେ ନ କରି ସୁନା କିମ୍ବା ଅଳଙ୍କାର ଲୋକଙ୍କଠାରୁ ଆଣି ତାକୁ ଗଢ଼ନ୍ତି ଓ ତାଙ୍କର ଯାହା ମଜୁରି ହେଲା ସେମାନେ ତାହା ପାଆନ୍ତି । ସେହିପରି କେତେକ କଂସାରି ଅଛନ୍ତି ଯେଉଁମାନେ

କି ସୁନାରୀମାନଙ୍କ ପରି ନିଜେ କୌଣସି ମୂଳଧନ ନ ଖଟାଇ କେବଳ ଅନ୍ୟ ବ୍ୟବସାୟୀ ବା ଅନ୍ୟ ସାଧାରଣ ଲୋକଙ୍କଠାରୁ କଞ୍ଚା ମାଲ ବା ସବୁ ଜିନିଷପତ୍ର ଆଣନ୍ତି । ନିଜର କାରୁକାର୍ଯ୍ୟ ବା ଶ୍ରମ ଦ୍ୱାରା ଜିନିଷପତ୍ର ତିଆର କରି ମୂଲ ପରି କିଛି ପଇସା ଉପାର୍ଜନ କରୁଥିଲେ । କିନ୍ତୁ ହେଉଥିଲ କ'ଣ ନା ସେମାନେ ଯେଉଁ ଜିନିଷ ତିଆର କରୁଥିଲେ ଧରନ୍ତୁ ଗୋଟିଏ ଅଳଙ୍କାର ହେଲ ବା ଅନ୍ୟ ଗୋଟିଏ ସୁନାର ଜିନିଷ ହେଲ ବା ରୁପାର ଜିନିଷ ହେଲ ସେ ଜିନିଷଟି ଛୋଟିଆ ହେଲେ ମଧ୍ୟ ହୁଏତ ତା'ର ଦାମ ବେଶୀ, ସେହିପରି କଂସା ପିତଳ ଇତ୍ୟାଦି ବାସନର ମୋଟା ମୋଟି ଦାମ ଉପରେ Sales tax ପଡୁଥିଲ ଏବଂ ତା'ର କେତେକ ଅଂଶ reduction ଦିଆଯାଉଥିଲ । ବର୍ତ୍ତମାନ ଏହାକୁ ପୂରାପୂରୀ ଉଠାଇ ଦେବା ଫଳରେ ଯେଉଁମାନେ ତାଙ୍କ ନିଜର କାରୁକାର୍ଯ୍ୟ ବା ଶ୍ରମଦ୍ୱାର ଦୁଇ ପଇସା ଉପାର୍ଜନ କରୁଥିଲେ, ସେମାନେ ବହୁତ ଉପକୃତ ହେବେ, ଏଠାରେ ମୁଁ ସମ୍ବଲପୁର ଜିଲ୍ଲାର କେତେକ ଛୋଟ ବ୍ୟବସାୟୀଙ୍କ କଥା କହିପାରେ ଯେଉଁମାନେ କି ଏହି Sales tax ବା ବିକ୍ରି କର ଫଳରେ ଉତ୍ପୀଡ଼ିତ ହେଉଥିଲେ । ଉଦାହରଣ ସ୍ୱରୂପ ମୁଁ କହିବି ଆମର ସମ୍ବଲପୁର ଜିଲ୍ଲାର କଟାପାଲି ଓ ଟୁକୁରା ଇତ୍ୟାଦି ଅଞ୍ଚଳର ଅନେକ କଂସାରି ତାଙ୍କର ବ୍ୟବସାୟ ଛାଡ଼ି ଦେବାକୁ ବାଧ୍ୟ ହେଉଥିଲେ । ଅନେକ ଯାଗାରେ ଏପରି ହୋଇଛି ଯେ ଅତ୍ୟଧିକ ଟ୍ୟାକ୍ସ ସେମାନେ ଦେଇ ନ ପାରି ଅତି ହଇରାଣରେ ପଡ଼ିଛନ୍ତି ବା ସିଭିଲ ଜେଲ ମଧ୍ୟ ପାଇଛନ୍ତି । ମୁଁ ଆଶାକରୁଛି ଏହି clause ଦ୍ୱାରା ସେମାନେ ଉପକୃତ ହେବେ । ତା ପରେ କମିଶନର ଓ Tribunal କଥା ଏଥିରେ କୁହାଯାଇଛି । ସରକାରଙ୍କ ତରଫରୁ କୁହାଯାଇଛି ଯେ ଏହା ଫଳରେ ଦୁଇଟି କାମ ହେବ । କମିଶନର ନିଯୁକ୍ତ ଫଳରେ ବିଭାଗୀୟ କଟକଣା ବେଶୀ ହେବ ଓ ସେ ବେଶୀ ଶୃଙ୍ଖଳା ରକ୍ଷା କରିବା ଦିଗରେ ସାହାଯ୍ୟ କରିବେ । ତିନିଜଣ ମେମ୍ବର ବିଶିଷ୍ଟ Tribunal ହେବା ଫଳରେ ନିରପେକ୍ଷ ବିଗ୍ଭର ହେବ ଏବଂ ଶେଷରେ କୁହାଯାଇଛି ଯେ Tribunal ହେବା ପୂର୍ବରୁ ଯେପରି ଗ୍ଭରି ଥର ଅଦାଲତର ଆଶ୍ରୟ ନେବାକୁ ପଡୁଥିଲ ବର୍ତ୍ତମାନ ତାହା ନେବାକୁ ପଡ଼ିବ ନାହିଁ ଓ ସେ ବିଗ୍ଭରସ୍ତର କମିଯିବ କିନ୍ତୁ ମୁଁ ଭାବୁଛି ଏଯେଉଁ ତିନୋଟି ଉଦ୍ଦେଶ୍ୟରେ ଏହା କରାଯାଇଛି ସେଥିରୁ କୌଣସି ଗୋଟାଏ ସଫଳ ହୋଇପାରିବ ନାହିଁ । ଏ ଯେଉଁ ସମାଲୋଚନା କରାଯାଇଛି ଏହା ଫଳରେ ବିଶୃଙ୍ଖଳା ବଢିବାର ସମ୍ଭାବନା ରହିଛି ଏବଂ ଯେଉଁ ନିରପେକ୍ଷ ବିଗ୍ଭର ସୃଷ୍ଟି କରିବା ପାଇଁ ଏଟା କରାଯାଉଛି ବୋଲି କୁହାଯାଉଛି ସେ ନିରପେକ୍ଷତାର ସମ୍ଭାବନା ପୂର୍ବ ଅପେକ୍ଷା କମ୍ ହେବ । କମିନଶର ନିଯୁକ୍ତି ବିଷୟରେ ଯାହା କୁହାଯାଇଛି ସେ ବିଷୟରେ କହିବି ଯେ ଆମର Assistant Sales Tax Officer, Sales Tax Officer, Assistant Collector, Commercial ax Collector ତାପରେ Board of Revenue, ତାପରେ High Court ଏହି ୨ଟି ସ୍ତର ଅଛି । ପ୍ରଥମରେ Sales tax ଅଫିସର ତାଙ୍କର return ଇତ୍ୟାଦି ମଗାଇ ତାଙ୍କର ବିବେଚନା ଅନୁସାରେ assessment କରୁଥିଲେ । ସେଥିରେ କିଏ ଯଦି ଅସନ୍ତୁଷ୍ଟ ହେଲ ସେ Assistant Collectorଙ୍କ ନିକଟରେ

appeal କରୁଥିଲ । Assistant Collectorଙ୍କ ନିଷ୍ପତ୍ତିରେ ଅସନ୍ତୁଷ୍ଟ ହୋଇ Collectorଙ୍କ ପାଖକୁ ନିଷ୍ପତ୍ତି ପାଇଁ ଯାଉଥିଲ ଓ Collectorଙ୍କ ନିଷ୍ପତ୍ତିରେ ଅସନ୍ତୋଷ ହେଲେ Member, Board of Revenue ଯେ କି ସମ୍ବଲପୁରଠାରେ ଅଛନ୍ତି ତାଙ୍କ ପାଖକୁ ଯାଉଥିଲେ, ଏଥିରେ ଅସନ୍ତୁଷ୍ଟ ହେଲେ High Courtକୁ reference କରିବାର ବ୍ୟବସ୍ଥା ଥିଲ । ଆଇନ୍‌ର 24 ଦଫା ଅନୁସାରେ ସିଧା High Courtକୁ ଯିବାର ସୁବିଧା ଥିଲ । ଏ ଯେଉଁ 5ଟି stage ଥିଲ ଏଇ ନୂତନ ବ୍ୟବସ୍ଥା ଫଳରେ ଏହା କିଛି କମ୍ ହୋଇଛି କି ନାହିଁ ଦେଖିବାର କଥା । ତାପରେ ସଂଶୋଧନ ବିଲ୍‌ର 9 ଦଫା ହେଉଛି ମୂଳ ବିଲ୍‌ର (3), (4), (5) ର ପରିବର୍ତ୍ତନ ଏବଂ ମୂଳ ବିଲ୍ 23 ଦଫାର ପ୍ରଥମ ଓ ଦ୍ୱିତୀୟ ଧାରାରେ କୌଣସି ପରିବର୍ତ୍ତନ ହୋଇନାହିଁ । ଅର୍ଥାତ୍ ଯେଉଁ Sales tax ଅଫିସରଙ୍କ ନିଷ୍ପତ୍ତିରେ ଯେଉଁ assessee ଅସନ୍ତୁଷ୍ଟ ହେବ ସେ 30 ଦିନ ମଧ୍ୟରେ Assistant Collectorଙ୍କ ପାଖକୁ appeal କରିବେ । ଏଇଟା ହେଲ ପ୍ରଥମ ସୋପାନ । ତାପରେ ଏଥିରେ ଯେ ଅସନ୍ତୁଷ୍ଟ ହେବେ ସେ ତାପରେ ଏ ଯେଉଁ ସଂଶୋଧନର 9 ଦଫା ଅଛି ସେଥିରେ କୁହାଯାଇଛି--

"(3) (a) Any dealer dissatisfied with an order made under sub-section (2), or the Commissioner, as the case may be, may, within thirty days from the date of receipt of such order prefer an appeal in the prescribed manner to the Tribunal, against such order :

Assistant Collector ofCommercial Taxesଙ୍କ ନିଷ୍ପତ୍ତିରେ ଅସନ୍ତୁଷ୍ଟ ହେବା dealer ମଧ୍ୟ appeal କରିପାରିବ । Dealer ଯଦି ଚୁପ୍ ରହେ ତାହାହେଲେ ସରକାରଙ୍କ ତରଫରୁ 30 ଦିନ ମଧ୍ୟରେ Tribunalକୁ କମିଶନର appeal କରିପାରନ୍ତି । କିନ୍ତୁ ଏହା ସଙ୍ଗରେ ଆମକୁ ମନେ ରଖିବାକୁ ହେବ ଯେ ସାଧାରଣତଃ ଯେଉଁ dealer appeal କରିବାକୁ ଚାହିଁବେ ସେମାନେ ତାଙ୍କର ଯେଉଁ tax ତାକୁ stay କରିବା ପାଇଁ ସେ ବିଭାଗୀୟ Collectorଙ୍କ ପାଖକୁ ଦରଖାସ୍ତ କରିବାକୁ ହେବ । Tribunalରେ appeal କରିବା ପୂର୍ବରୁ ସେମାନେ Collectorଙ୍କ ଠାରୁ assessment stay ରଖିବା ପାଇଁ ଗୋଟିଏ order ଆଣିବାକୁ ହେବ । Clause 9ର provisionରେ ଅଛି--

Provided further that unless the Collector in his discretion has stayed the collection of the tax or penalty due, in full or part no such appeal by a dealer shall be entertained by the Tribunal unless the same is accompanied by satisfactory proof of the payment of the tax and penalty or a part thereof as the case may be ; in respect of which the appeal has ben preferred.

ଏଥିରୁ ଜଣାଯାଉଛି Assistant Collectorଙ୍କର ବା Tribunalର ଯେଉଁମାନେକି appellate authorityଙ୍କର stay order ଦେବାର ଅଧିକାର ନାହିଁ । ଆମର ଯେପରି ଅନ୍ୟାନ୍ୟ Criminal caseରେ ବା Civil caseରେ trying court କିମ୍ବା ଆପିଲେଟ୍ କୋର୍ଟର stay ଦେବାର ଅଛି କିନ୍ତୁ ଏଠି ସେ ବ୍ୟବସ୍ଥା ନାହିଁ । ଏଠି Collectorଙ୍କ ହାତରେ କ୍ଷମତା ଦିଆଯାଇଛି । Tribunalକୁ appeal ହେବ । କିନ୍ତୁ ତାପୂର୍ବରୁ କୁହାଯାଉଛି ଯେ dealer, Collectorଙ୍କ ଠାରୁ stay order ଆଣିବା ଦରକାର ଏଥିରେ କିପରି କୁହାଯାଉଛି ମଝିରେ ଗୋଟିଏ ପାହାଚ କମାଇ ଦିଆଗଲା । ସେଇଟା ବାସ୍ତବିକ dealerମାନଙ୍କର କୌଣସି ସୁବିଧାକୁ ପାଇଲା ନାହିଁ sub-clause (4) of clause 9 ରେ ଆପଣ ଦେଖିବେ ।

4. (a) Subject to such rules as may be made and for reasons to be recorded in writing, the Collector may, upon application by a dealer or of his own motion, revise any order made under this Act or the rules made thereunder not being an order under sub-section (3), made by any person appointed under sub-section (1) of section 3 to assist him ; ଏହାର scope ମଧ୍ୟ ଅଛି ଯଦ୍ଵାରା ଡ଼ିଲରମାନେ କଲେକ୍ଟରଙ୍କ ପାଖକୁ ଯାଇ ତାଙ୍କର revision କରିପାରିବେ । କଲେକ୍ଟର ଓ ବୋର୍ଡ ଏ ଦୁଇଟି stage ଯାହାଥିଲା ତାକୁ ଉଠାଇଦେଇ କେବଳ Tribunal ହେଲା ଏବଂ ଗୋଟିଏ stage କମ୍ କରିଦିଆଗଲା ବୋଲି ଯାହା କୁହାଯାଇଛି ସେଇଟା କାର୍ଯ୍ୟ କ୍ଷେତ୍ରରେ ହେବ ନାହିଁ ବରଂ ଏଇଟା ଯାହାଟିକିଏ ସରଳ ଥିଲା । Tribunal ଏବଂ କଲେକ୍ଟରଙ୍କୁ ଯେପରି ବିଭିନ୍ନ କ୍ଷମତାମାନ ଦିଆଯାଇଛି ଜଣକୁ ବିଗ୍ରର କରିପାରିବ, ଜଣକୁ stay କରିପାରିବ ପୁଣି revise କରି ପାରିବାର କ୍ଷମତା କଲେକ୍ଟରଙ୍କୁ ଦିଆଯାଇଛି; ଏଥିରେ ଡ଼ିଲର ଓ କମିଶନର ଉଭୟଙ୍କର ବିଶେଷତଃ ଡ଼ିଲରମାନଙ୍କ ପକ୍ଷରେ ଅସୁବିଧା କମ୍ ହେବା ପରିବର୍ତ୍ତେ ବଢ଼ିଯିବାର ସମ୍ଭାବନା ରହିଛି । ତାପରେ ହାଇକୋର୍ଟର ଯାହା କ୍ଷମତା ଥିଲା ବର୍ତ୍ତମାନ୍ ମଧ୍ୟ ତାହା ରହିଛି । ମୂଳ ଆଇନର 24 ଧାରରେ ହାଇକୋର୍ଟକୁ refer କରିବାର ଅଧିକାର ଥିଲା । ବର୍ତ୍ତମାନ୍ ସୁଦ୍ଧା ତହିଁର କିଛି ପରିବର୍ତ୍ତନ ହୋଇନାହିଁ । ତେଣୁ ମାନ୍ୟବର ଅର୍ଥମନ୍ତ୍ରୀ ଯାହା କହିଲେ ଆଉ ଗୋଟିଏ step କମ୍କରି ଦିଆଯାଇଛି ଏବଂ ହାଇକୋର୍ଟକୁ କେବଳ on question of law refer କରିବା ପାଇଁ ବ୍ୟବସ୍ଥା ରହିଛି ଏବଂ ମାଲି-ମକଦ୍ଦମାରେ ଲୋକଙ୍କର ଟିକିଏ ସୁବିଧା ହେଲା ସେଇଟା ଠିକ୍ ନୁହେଁ । ଡ଼ିଲରମାନଙ୍କ ଖର୍ଚ୍ଚ ଦୃଷ୍ଟିରୁ ହାଇକୋର୍ଟ reference ବିଷୟରେ ବେଶି କିଛି ସୁବିଧା ହେଉନାହିଁ । ତାପରେ Tribunal ହେବା ଫଳରେ ଲୋକମାନଙ୍କ ମନରେ ଯେଉଁ ଧାରଣା ଥିଲା ଯେ ଯେଉଁମାନେ ବିଗ୍ରରକ ସେମାନେହିଁ tax କେମିତି ବେଶି ଆଦାୟ ହେବ ସେଥିପାଇଁ ସେ ଧାରଣା ଦୂର ହେବ ବୋଲି କୁହାଯାଇଛି । ଏ ନୂଆ ସିମରୁ ଦେଖିବେ

ଏ ଯେଉଁ କମିଶନର ନିଯୁକ୍ତ ହେଲେ ସେ ହେଉଛନ୍ତି କଲେକ୍ଟରଙ୍କ ଉପରିସ୍ଥ କର୍ମଚାରୀ । କଲେକ୍ଟର ହେଉଛନ୍ତି ସେଲ୍‌ସ୍ ଟେକ୍‌ସ ଅଫିସର ଓ ଆସିଷ୍ଟାଣ୍ଟ କଲେକ୍ଟର ଉଭୟଙ୍କ ଉପରିସ୍ଥ କର୍ମଚାରୀ । ପ୍ରଥମ ଦୁଇଟି stageରେ Sales Tax Officer ଏବଂ Assistant Collector of Commercial Taxes ଯେତେବେଳେ Collectorଙ୍କ ଅଧୀନରେ ରହୁଛନ୍ତି ସେତେବେଳେ ସେମାନେ ନିଶ୍ଚୟ ଏ କମିଶନରଙ୍କ ଅଧୀନରେ ରହିବେ । Both administratively and indirectly judicially also. ବର୍ତ୍ତମାନ ଯେପରି ବ୍ୟବସ୍ଥା ଅଛି ଯେ ମାଜିଷ୍ଟ୍ରେଟମାନେ ସରକାରଙ୍କର ଶାସନ ବିଭାଗ ଅଧୀନରେ ଅଛନ୍ତି ହୁଏତ ତାଙ୍କର ଯେଉଁ appeal ପ୍ରଥମେ District Magistrate ଏବଂ ଦ୍ୱିତୀୟ stageରେ District Judge ବା High Courtକୁ ଯାଉଛି, ବର୍ତ୍ତମାନ ସେମାନେ ଶାସନ ବିଭାଗ କ୍ଷମତା ଅଧୀନକୁ ଗଲ ପରେ ସେମାନଙ୍କଦ୍ୱାରା ପରୋକ୍ଷ ଭାବରେ ପ୍ରଭାବିତ ହେବାର ସମ୍ଭାବନା ରହିଛି । ସେହିପରି ଭାବରେ ଯଦିଓ Sales Tax Officer ବା Assistant Collectorଙ୍କର Appeal Tribunalକୁ ଯିବ ତଥାପି କମିଶନର ସେମାନଙ୍କର ଉପରିସ୍ଥ Adiministrative Officer ରହିଛନ୍ତି କେବଳ ସେତିକି ନୁହେଁ । ଏ ସଂଶୋଧନ ଆଇନରେ ବ୍ୟବସ୍ଥା କରାଯାଇଛି Assistant Collector ବା Commercial Tax Officer ଯେତେବେଳେ ନିଷ୍ପତ୍ତି ଦେଇ ସାରିବେ ତା'ର ପରେ ଯେଉଁ stage ଆସିବ Tribunal stage ବା High Court stage ସେଥିରେ ଏହି କମିଶନର ଗୋଟିଏପକ୍ଷ ହୋଇ ରହିବେ । ଯେତେବେଳେ କମିଶନର ଗୋଟିଏ ପକ୍ଷ ହୋଇ ରହିବେ ଏବଂ Assistant Collector ଓ Commercial Tax Officer ଙ୍କ ନିଷ୍ପତ୍ତି ଉପରେ appealର ଅଧିକାର ତାଙ୍କ ଉପରେ ରହିବ ସେତେବେଳେ ସେମାନେ ଯେପରି ନିରପେକ୍ଷ ନିଷ୍ପତ୍ତି ଦେବାର କଥା ତାହା ଦେଇ ପାରିବେ ନାହିଁ । ବର୍ତ୍ତମାନ ଥିବା ବ୍ୟବସ୍ଥାରେ original stageରେ ବା appellate stageରେ ଯେଉଁସବୁ assessment ହୋଇଛି ସେଥିରେ ସରକାର ଯଦି ଅସନ୍ତୁଷ୍ଟ ହୁଅନ୍ତି ତାହାହେଲେ ସରକାରଙ୍କ ତରଫରୁ କୌଣସି ବ୍ୟକ୍ତିବିଶେଷ ବା କର୍ମଚାରୀ ବିଶେଷ ପକ୍ଷ ହୋଇ ସେ ନିଷ୍ପତ୍ତିରେ appeal କରିବାର ବ୍ୟବସ୍ଥା ନାହିଁ । ସରକାରଙ୍କ ତରଫରୁ appeal କରିବାର ବର୍ତ୍ତମାନ ଯେଉଁ ବ୍ୟବସ୍ଥା କରାଯାଉଛି ତାହା ହେବା ଫଳରେ ଏହି Tribunalରେ ନିରପେକ୍ଷ ବିଚାର ହେବ ବୋଲି ଯେଉଁ positive ସମ୍ଭାବନା ରହିଛି ତାକୁ counter act କରିବା ପାଇଁ କମିଶନରଙ୍କ ପକ୍ଷପାତିତା କରିବାଦ୍ୱାରା ସେଇ ସୁବିଧା ଓ ଅସୁବିଧା ପରସ୍ପରକୁ neutralise କରି ଦେବାର ସମ୍ଭାବନା ରହିଛି ।

ତା' ପରେ ଏ ବିଷୟରେ ଯେଉଁ ବ୍ୟବସ୍ଥାମାନ ପ୍ରଚଳିତ ଅଛି court କଚେରୀ ଦୃଷ୍ଟିରୁ ଏବଂ ଅପିଲ ଇତ୍ୟାଦି ଦୃଷ୍ଟିରୁ ଏହି ସବୁ ବ୍ୟବସ୍ଥାର ସଂଶୋଧନ ପାଇଁ ଅନେକ ସମୟରେ ଯେଉଁ ସବୁ ଆପତ୍ତି ହେଉଛି ଅନ୍ୟାନ୍ୟ ବିଷୟ ଆଲୋଚନା କରିବା ପୂର୍ବରୁ, ସେ ସମ୍ପର୍କରେ କେତେକ କଥା ଏହି ପ୍ରସଙ୍ଗରେ କହିଦେବାକୁ ଚାହେଁ । ଧରନ୍ତୁ ଜଣେ dealerର ଟ 30,000ଙ୍କା

ଉପରେ assessment ହେଲା ଏବଂ ସେ କହିବାକୁ ଗ୍ହାଁନ୍ତି ଯେ ଟ 20,000 ଙ୍କା ଉପରେ ତାଙ୍କର assessment ହୋଇଥାନ୍ତା । ଏବଂ ଟ 30,000 ଙ୍କା ଉପରେ ଏ ଯେଉଁ assessment ହେଲା ଏଇଟା ଅତି ଅନ୍ୟାୟ । କିନ୍ତୁ ସେ ବିଷୟରେ ଆପତ୍ତି କରି ଯେତେବେଳେ ସେ ଅପିଲ କରିବାକୁ ଯିବେ ସେତେବେଳେ ତାଙ୍କୁ କେବଳ ଯେ ଟ 30,000 ଙ୍କା ଉପରେ Court fees ଦେବାକୁ ପଡ଼ିବ ତାହା ନୁହେଁ, ସେହି ଅନୁସାରେ ଓକିଲ ଇତ୍ୟାଦି ବନ୍ଦୋବସ୍ତ କରିବାକୁ ହେବ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ କରିବାକୁ ପଡ଼ିବ । ଯଦି ସେ appellate authority, dealerର ଆପତ୍ତି ବିଷୟରେ ଏକମତ ହୁଅନ୍ତି ଓ ତାଙ୍କ appeal ନ୍ୟାୟସଙ୍ଗତ ବୋଲି ବିଗ୍ୱର କରନ୍ତି ତାହା ସେ dealer ଯେଉଁ court fees ଦେଇଥାନ୍ତି ସେଥିରୁ ତାଙ୍କୁ ଆଂଶିକ ବା ପୂର୍ଣ୍ଣ ଅବ୍ୟାହତି ମିଳେ ନାହିଁ, କିମ୍ବା ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ଯାହା ସେ କରିଥାନ୍ତି ସେଥିରୁ ମଧ୍ୟ କୌଣସି ରକମ ଅବ୍ୟାହତି ମିଳେ ନାହିଁ । ଫଳରେ ଯଦିଓ ଟ 20,000 ଙ୍କା ଉପରେ assessment ହେବ ବୋଲି ଉପରେ ସବୁ ଅଦାଲତ ଓ ହାଇକୋର୍ଟ ନିଷ୍ପତ୍ତି କରନ୍ତି ତଥାପି ପ୍ରଥମ ବା ମୂଳ ଅଫିସର ଭୁଲରେ ଟ 30,000 ଙ୍କା ଉପରେ ତାଙ୍କର assessment କରିଥିବା ଯୋଗୁଁ ଯେଉଁ Officerଙ୍କ ଦୋଷ ଯୋଗୁଁ dealerକୁ ଟ 30,000 ଙ୍କା ଉପରେ court fees ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ କରିବାକୁ ପଡ଼େ ଅର୍ଥାତ୍ ଗୋଟିଏ additional tax ଦେବାକୁ ପଡ଼େ । ଆମ ଓଡ଼ିଶାରେ ଏହି court fees ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ଟ୍ୟାକ୍ସ ତୁଳନାରେ କିଛି କମ୍ ନୁହେଁ ଏବଂ ଟ୍ୟାକ୍ସ, court fees, ଓକିଲ ଖର୍ଚ୍ଚ ଏସବୁ ଏକାଠି ମିଶାଇ ଦେଲେ ଏହା ଖୁବ୍ ବେଶୀ ହୋଇଯାଏ ଏବଂ ସେ dealerର ନ୍ୟାୟସଙ୍ଗତ କାରଣ ଥିଲେ ମଧ୍ୟ ନ୍ୟାୟସଙ୍ଗତ ଭବରେ ତାଙ୍କୁ ଲଢ଼ିବା ପାଇଁ ଅକାରଣରେ ବା ବିନା କାରଣରେ ତାଙ୍କୁ ଏହି ଅଧିକ ଖର୍ଚ୍ଚ ବହନ କରିବାକୁ ପଡ଼େ । ଏ ବିଷୟରେ ଅନେକ ଆପତ୍ତି ହୋଇଥିଲେ ସୁଦ୍ଧା ଏପର୍ଯ୍ୟନ୍ତ କୌଣସି ରକମ ପ୍ରତିକାରର ବ୍ୟବସ୍ଥା ହୋଇନାହିଁ । ଫଳତଃ ଅନେକ ବ୍ୟବସାୟୀ ଏହାଦ୍ୱାରା ଅତି ମାତ୍ରାରେ ଉତ୍ପୀଡ଼ିତ ହେଉଛନ୍ତି ଏବଂ ଛୋଟ ଛୋଟ ଦୋକାନିମାନେ appeal କରି ପାରୁନାହାଁନ୍ତି କିମ୍ବା ସର୍ବସ୍ୱାନ୍ତ ହେଉଛନ୍ତି । ଆଉ ମଧ୍ୟ 36 ମାସ ବା 3 ବର୍ଷର assessment ଏକ ସଙ୍ଗରେ ବିଗ୍ୱର ହେବା ଫଳରେ 12ଟି quarter ପାଇଁ 12ଟି ଅପିଲ, 12ଟି କୋର୍ଟ ଫି ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ଏକ ସଙ୍ଗରେ ଦେବାକୁ ପଡୁଛି । ଫଳରେ ମୂଳ ଅଫିସର ଯଦି କାହା ଉପରେ ଅତ୍ୟଧିକ ପରିମାଣରେ ଟ୍ୟାକ୍ସ ଧାର୍ଯ୍ୟ କରିଦେଉଛନ୍ତି ଅର୍ଥାଭବରୁ ସେ ଆଉ କୌଣସି relief ପାଇ ପାରୁନାହାନ୍ତି ଏବଂ ନାୟସଙ୍ଗତ କାରଣ ଥାଇ ମଧ୍ୟ ସେମାନେ ଅନ୍ୟାୟ ଭବରେ ଉତ୍ପୀଡ଼ିତ ହୁଅନ୍ତି । ଯଦି ବ୍ୟବସ୍ଥା ହେଲା ଯେ ସରକାର କୌଣସି ନିଷ୍ପତ୍ତିରେ ଅସନ୍ତୁଷ୍ଟ ହେଲେ ତାଙ୍କ ତରଫରୁ ଲଢ଼ିବା ପାଇଁ କମିଶନର ପକ୍ଷ ହେବେ ଓ ଓକିଲ ନିଯୁକ୍ତି ପ୍ରଭୃତି ସମସ୍ତ ଆନୁଷଙ୍ଗିକ ବ୍ୟବସ୍ଥା କରିବେ । ତାହାହେଲେ କୌଣସି dealerର ନ୍ୟାୟସଙ୍ଗତ କାରଣ ଥାଇ ମଧ୍ୟ କୌଣସି ଅଦାଲତ

ବା କୋର୍ଟଙ୍କ ସୁବିଚାର ପାଇବାପାଇଁ ଯେଉଁ ଅତ୍ୟଧିକ ଖର୍ଚ୍ଚ ବହନ କରିବାକୁ ବାଧ୍ୟ ହେଉଛି ସେଥିରୁ ସେ କେମିତି ଅବ୍ୟାହତି ପାଇବ ତା'ର ଗୋଟାଏ କିଛି ସୁବନ୍ଦୋବସ୍ତ ହେଲେ ଏହା ଗୋଟାଏ reciprocal arrangement ବୋଲି ଧରାଯିବ । ତା ନ ହୋଇ ଯଦି ସରକାରଙ୍କର ସୁବିଧା କରି ଦିଆଯାଏ ଏବଂ dealerମାନଙ୍କୁ ଅନ୍ୟାୟ ଭାବରେ ଅସୁବିଧାରେ ପକାଇ ଦିଆଯାଏ ତାହାହେଲେ ମୁଁ ଭାବୁଛି ଏଇଟା ନ୍ୟାୟସଙ୍ଗତ ହେବ ନାହିଁ । 12 ଦଫାରେ ଯେଉଁ ବ୍ୟବସ୍ଥା କରାଯାଇଛି, ସେଥିରେ ମାନ୍ୟବର ତିର୍ତ୍ତୋଲର ସଭ୍ୟ ଯେଉଁ ସମାଲୋଚନା କଲେ, ମୁଁ ସେ ସମାଲୋଚନାରେ ତାଙ୍କ ସହିତ ସମ୍ପୂର୍ଣ୍ଣ ଏକମତ । ସେ ଯେଉଁ ଯୁକ୍ତି କରିଯାଇଛନ୍ତି ମୁଁ ତା'ର ପୁନରୁକ୍ତି କରିବାକୁ ଚାହୁଁନାହିଁ ।

## ସମ୍ବଲପୁର ଜିଲ୍ଲାବୋର୍ଡ ଅଧୀନସ୍ଥ ପ୍ରାଥମିକ ବିଦ୍ୟାଳୟ ସମ୍ପର୍କରେ ଅଧଘଣ୍ଟିଆ ଆଲୋଚନା

ସମ୍ବଲପୁର ଜିଲ୍ଲାବୋର୍ଡ ଅଧୀନରେ ଯେଉଁ ପ୍ରାଥମିକ ବିଦ୍ୟାଳୟମାନ କାର୍ଯ୍ୟ କରୁଥିଲା, ସେମାନେ ସ୍ୱତନ୍ତ୍ର ଅଧିକାରୀ (Special Officer) ଙ୍କ ଠାରୁ 1954 ଏପ୍ରିଲ ପହିଲା ଦିନ ଗୋଟିଏ ନୋଟିସ ପାଇଥିଲେ । ଉକ୍ତ ମାସ 10 ଓ 11 ତାରିଖରେ ତା ସମ୍ପର୍କରେ ପ୍ରଶ୍ନ ପଚାରି ଡଃ ସୂପକାର ଆଶାନୁରୂପ ଉତ୍ତର ପାଇ ନଥିଲେ । ସେ ତା'ଉପରେ ବିସ୍ତୃତ ଆଲୋଚନା କରିବା ପାଇଁ ଚାହିଁଛନ୍ତି । ପ୍ରାଥମିକ ବିଦ୍ୟାଳୟର ଦୁର୍ଦ୍ଦଶାମାନ ଦୂର କରିବା ପାଇଁ ସେ ବଡ଼ ବଡ଼ ଶିଳ୍ପପତିଙ୍କଠାରୁ ଚାନ୍ଦା ଆଦାୟ କରିବାକୁ ପ୍ରସ୍ତାବ ଦେଇଛନ୍ତି । ସେ କହିଛନ୍ତି, ସମ୍ବଲପୁର କୋଇଲା ଅଞ୍ଚଳରୁ ଶତକଡ଼ା 1 ଟଙ୍କା ହିସାବରେ Licence fees ଆଦାୟ କରାଗଲେ ଜିଲ୍ଲାବୋର୍ଡର 36 ହଜାର ଟଙ୍କା ଆୟ ହୋଇଥାନ୍ତା । ଶିଳ୍ପପତିମାନଙ୍କଠାରୁ ଆଦାୟ କରି ଶିକ୍ଷାର ବିକାଶରେ ବିନିଯୋଗ କରିବା ଡଃ ସୂପକାରଙ୍କ ପ୍ରସ୍ତାବ ଖୁବ୍ ସ୍ୱାଗତଯୋଗ୍ୟ ।

## HALF-AN-HOUR DISCUSSION

The SPEAKER : ବର୍ତ୍ତମାନ ଅଧଘଣ୍ଟିଆ ଆଲୋଚନା ହେବ ।

Shri SHRADDHAKAR SUPAKAR : ମାନ୍ୟବର ଅଧ୍ୟକ୍ଷ ମହାଶୟ, ସମ୍ବଲପୁର ଜିଲ୍ଲାବୋର୍ଡ ଅଧୀନରେ ଯେଉଁ ପ୍ରାଇମେରୀ ସ୍କୁଲଗୁଡ଼ିକ ଅଛି ସେ ସ୍କୁଲମାନଙ୍କର ହେଡ୍‌ପଣ୍ଡିତମାନଙ୍କୁ ଗତ ତା 1-4-1954 ରିଖରେ ଗୋଟିଏ ନୋଟିସ ଜିଲ୍ଲାବୋର୍ଡ Special Officerଙ୍କ ଠାରୁ ଯାଇଥିଲା । ସେ ନୋଟିସ ବା Circular ବିଷୟରେ ତା 10 ରିଖରେ ଦୁଇଟି ପ୍ରଶ୍ନ ଏବଂ ତା 11 ରିଖ ଦିନ ମୁଁ ଦୁଇଟି ପ୍ରଶ୍ନ ଦେଇଥିଲି । ସେ ସମୟରେ ମାନ୍ୟବର ଅର୍ଥମନ୍ତ୍ରୀ ବା ଶିକ୍ଷା ମନ୍ତ୍ରୀ ତା 10 ରିଖ ଦିନ ଯୋଡ଼ିଏ ପ୍ରଶ୍ନର କେତେକ ତଥ୍ୟ ପ୍ରକାଶ କଲେ ଏବଂ ତା 11 ରିଖ ଦିନ ସ୍ୱାୟତଶାସନ ବିଭାଗର ଉପମନ୍ତ୍ରୀ ଅନୁପସ୍ଥିତ ଥିବାରୁ ପ୍ରଧାନମନ୍ତ୍ରୀ ତାଙ୍କ ତରଫରୁ କେତେକ ପ୍ରଶ୍ନର ଉତ୍ତର ଦେଇଥିଲେ । ସେ ବିଷୟରେ ମୁଁ ଆଉ କେତେକ ତଥ୍ୟ ସରକାରଙ୍କଠାରୁ ଜାଣିବାକୁ ଚାହେଁ ଏବଂ ସେଥିପାଇଁ ମୁଁ ଏହି

ଆଲୋଚନା କରିବା ପାଇଁ ପ୍ରସ୍ତାବ ଦେଇଛି । ମୁଁ ପଚାରିଥିଲି କେଉଁ କେଉଁ ବିଷୟରେ ଏହି license fees ନିଆଯାଉଛି । ଏ ବିଷୟରେ ଆପଣ ଦେଖିବେ ଯେ 1947 ସାଲରେ Sambalpur Local Government (Third Amendment) Act, 1947 ନାମରେ ଗୋଟିଏ ଆଇନ୍ ପାସ୍ ହୋଇଥିଲା । ସେଥିରେ 152 (2) ବୋଲି ଗୋଟିଏ ଦଫା ସୃଷ୍ଟି କରାଗଲା । ଯେଉଁଥିରେ କି କେତେକ ନିର୍ଦ୍ଦିଷ୍ଟ ବିଷୟପାଇଁ ଜିଲ୍ଲାବୋର୍ଡ licence ଧାର୍ଯ୍ୟ କରିପାରିବେ ବୋଲି ବ୍ୟବସ୍ଥା ହେଲା । ଏହି ବିଷୟ କେବଳ ଯେ ସମ୍ବଲପୁର ସ୍ୱାୟତଶାସନ୍ ଆଇନ୍ ପାଇଁ କରାଗଲା ତା ନୁହେଁ । Bihar and Orissa Local Self-Government Act ରେ ମଧ୍ୟ ବ୍ୟବସ୍ଥା ହେଲା ଏବଂ ସେଇଟା କଟକ, ପୁରୀ ଏବଂ ବାଲେଶ୍ୱର ଜିଲ୍ଲାବୋର୍ଡ ପାଇଁ ସେ ସମୟରେ ଉଦ୍ଦିଷ୍ଟ ଥିଲା । ତା'ପରେ କଟକ, ପୁରୀ ବାଲେଶ୍ୱର ଏବଂ ଗଞ୍ଜାମ, କୋରାପୁଟର ଜିଲ୍ଲାବୋର୍ଡ ପରି ସମ୍ବଲପୁର ଜିଲ୍ଲା ବୋର୍ଡକୁ କରି ଦିଆଗଲା ଏବଂ ଜଣେ Special Officer ଦ୍ୱାରା ତାହା ପରିଚାଳିତ ହେଲା । ଏ ବିଷୟରେ ମୁଁ ପ୍ରଥମେ ଜାଣିବାକୁ ଚାହେଁ ଯେ ସମ୍ବଲପୁର ଜିଲ୍ଲା ବୋର୍ଡ ପାଇଁ ଏ ଯେଉଁ Licence ବ୍ୟବସ୍ଥା କରାଯାଇଛି ଏହା କେବଳ ସମ୍ବଲପୁରପାଇଁ କରାଯାଇଛି ନା ଅନ୍ୟାନ୍ୟ ଯେଉଁ ତିନୋଟି Bihar and Orissa Local Self-Government Act ଦ୍ୱାରା ପରିଚାଳିତ ସେଥିରେ ମଧ୍ୟ ଏ ବ୍ୟବସ୍ଥା କରାଯାଇଛି ଏ ପ୍ରଶ୍ନଟି ହେଉଛି ମୋର ପ୍ରଥମ ପ୍ରଶ୍ନ ।

ତା'ପରେ ଆପଣ ଜାଣିବେ ଯେ ଏ ଯେଉଁ ବ୍ୟବସ୍ଥା କରାଯାଇଛି ତଦ୍ୱାରା ଲୋକ ବିଶେଷଭାବେ ହଇରାଣ ହେଉଛନ୍ତି । ଯଦି ଏ ଦିଗରେ ସରକାର ଉପଯୁକ୍ତ ବ୍ୟବସ୍ଥା କରିଥାନ୍ତେ ତାହାହେଲେ ଅତି ଗରିବ ଶ୍ରେଣୀର ଲୋକମାନେ, ଯଥା—କେଉଟ, କୁମ୍ଭାର ବା ଚମାର, ଛୋଟ ଛୋଟ ମିଠାଇ ଦୋକାନ କରିଥିବା ଲୋକେ ବା ଛୋଟ ଛୋଟ ଦୋକାନ କରିଥିବା ଲୋକଙ୍କୁ ହଇରାଣରେ ନ ପକାଇ ଧନୀ ଲୋକମାନଙ୍କୁ Taxation କରି କିପରି ସମ୍ବଲପୁର ଜିଲ୍ଲା ବୋର୍ଡର ଆୟ ବହୁ ପରିମାଣରେ ବଢିଥାନ୍ତା ସେ ବିଷୟରେ ମୁଁ କେତେକ କଥା କହିଦେବାକୁ ଚାହେଁ । ବିଜ୍ଞାପନରେ କୁହାଯାଇଛି ଯେ ପଶୁଦ୍ୱାରା ତେଲ ପେଡ଼ା ପାଇଁ ବାର୍ଷିକ ଲାଇସେନ୍ସ ଟ ୫୨, ଚମଡ଼ାର ଜିନିଷ ତିଆରି ପାଇଁ ଟ ୫୨,' ମାଛ ଓ ଶୁଖୁଆ ବ୍ୟବସାୟ ପାଇଁ ଟ ୫୨, ଘି ଦୋକାନ ପାଇଁ ଭାତ ହୋଟେଲ ପାଇଁ ଟ ୫୨ ମିଠାଇ ଦୋକାନ ପାଇଁ ଟ ୧୧, ଟ ୫୨ ଓ ଟ୨୨ ଏପରି ତିନି ପ୍ରକାର ରେଟ ଅଛି, ଯେଉଁମାନେ ଲୁହା ବ୍ୟବସାୟ କରିବେ ସେମାନେ ଦେବେ ଟ ୨୨ । ସେଥିରେ ଆହୁରି ମଧ୍ୟ କୁହାଯାଇଛି ଯେ "ଉପରୋକ୍ତ ବାଣିଜ୍ୟ ବ୍ୟବସାୟର ତାଲିକା ସମ୍ପୂର୍ଣ୍ଣ ବୋଲି ଧରା ଯାଇ ନପାରେ କେବଳ ସାଧାରଣ ଭାବେ ଯେଉଁ ବାଣିଜ୍ୟ ଓ ବ୍ୟବସାୟ କରାଯାଉଛି ତାହା ଉଲ୍ଲିଖିତ ଅଛି । ବିନା ଲାଇସେନ୍ସରେ ତାଲିକାଭୁକ୍ତ ବାଣିଜ୍ୟ ଓ ବ୍ୟବସାୟ କରୁଥିବା ବ୍ୟକ୍ତିଙ୍କ ପାଇଁ ଟ୧୦୦ ଅର୍ଥଦଣ୍ଡର ବ୍ୟବସ୍ଥା ଅଛି ଏବଂ ଅର୍ଥଦଣ୍ଡ ଭୋଗ କରି ସାରିଲା ପରେ ଅପରାଧ କ୍ରମାନ୍ୱୟେ ଚଳାଉଥିବା ବ୍ୟକ୍ତିଙ୍କ ପାଇଁ ଅର୍ଥଦଣ୍ଡର ପ୍ରଥମ

ଦିନଠାରୁ ଅପରାଧ ନ ଛାଡ଼ିବା ଦିନ ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ପାଇଁ ଟ ୧୦୦ ଅର୍ଥ ଦଣ୍ଡର ବ୍ୟବସ୍ଥା ମଧ୍ୟ ଆଇନ୍‌ରେ ଅଛି ।"

ଏ Circular ଯେତେବେଳେ Head Panditମାନେ ପାଇଲେ ସେତେବେଳେ ସମ୍ବଲପୁରର ମଫସଲ ଅଞ୍ଚଳରେ ସେମାନେ ଗୋଟିଏ ଆତଙ୍କ ସୃଷ୍ଟି କଲେ ଆମର ମୂଳ ଉଦ୍ଦେଶ୍ୟ ହେଲା ଯେ ଯେଉଁସବୁ ବାଣିଜ୍ୟ ବ୍ୟବସାୟ ବା ରୋଜଗାରରେ କୌଣସି ରକମର nuisance ଉପୁଜୁଥିବ ସେଇ ପ୍ରକାର ବାଣିଜ୍ୟ ବ୍ୟବସାରେ ଉପରେ licence fees ଦିଆଯିବ, କିନ୍ତୁ ଏ ଯେଉଁ circular ବିଭଗ ସେଥିରେ ସେମାନେ ଯେକୌଣସି ବ୍ୟବସାୟ ଉପରେ ଯଥା—ବେଢ଼ରା, ସୁନାରୀ, କଂସାରୀ ମୁଡ଼ିଭଜିବା ବ୍ୟବସାୟ ଇତ୍ୟାଦିଙ୍କ ଉପରେ ଏ ପ୍ରକାର ବ୍ୟବସ୍ଥା କରାଯାଇଛି, ତାଙ୍କୁ କୁହାଗଲା ଦେଖ ତୁମେ ନିଜ ମନକୁ licence fees ଦେବ ତ ଦିଅ ନହେଲେ ତୁମକୁ ପ୍ରଥମରୁ ଟ ୧୦୦ ଏବଂ ଏ ଅର୍ଥଦଣ୍ଡ ଭୋଗକରି ସାରିଲା ପରେ ଅପରାଧ କ୍ରମାନ୍ୱୟେ ହେଲେ ପ୍ରଥମ ଦିନଠାରୁ ଅପରାଧ ନ ଛାଡ଼ିବା ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ପାଇଁ ଟ୧୦୦ ଅର୍ଥଦଣ୍ଡ ଦିଆଯିବ । ଲୋକମାନେ ଏଥିରେ ଏତେଦୂର ଆତଙ୍କିତ ହେଲେ ଯେ ଅନେକ ସ୍ଥଳରେ ମଧ୍ୟ ଲୁଗ୍ନୁଘୋରା ଭବରେ ଟଙ୍କା ଏଇ licence fees ସ୍ୱରୂପ ଆଦାୟ କରାଯାଇଛି ।

ତା'ପରେ କମିଶନ ବାବଦରେ କୁହାଯାଇଛି ଯେ licence fee ଟ୧୦ କିମ୍ବା ଟ୧୦ରୁ କମ୍ ପାଇଁ ଟ ୦୪ ଦିଆଯିବ, ଟ୧୧ରୁ ଟ ୨୧ ମଧ୍ୟରେ ଟ ୧ ଦିଆଯିବ, ଟ ୨୨ ବା ତଦୂର୍ଦ୍ଧ୍ୱ ପାଇଁ ଟ ୨ ଦିଆଯିବ । ତେଣୁ ଏଥିରେ Head Panditମାନେ କମିଶନ ସ୍ୱରୂପ କିପରି ବହୁତ ଟଙ୍କା ପାଇବେ ତା'ର ବ୍ୟବସ୍ଥା କରାଗଲା । ଅଥଚ ୧୯୪୭ ଆଇନ ଯାହାକି ୧୯୪୮ରେ ସଂଶୋଧନ ହେଲା ସେଥିରେ ବ୍ୟବସ୍ଥା ଅଛି ଯେ ଜିଲାବୋର୍ଡ ସରକାରଙ୍କ ଅନୁମତି ନ ନେଇ କୌଣସି ପ୍ରକାର ମାସୁଲ ବା taxation କରି ପାରିବେ ନାହିଁ । ଯେତେବେଳେ ବ୍ୟବସ୍ଥା ସଭରେ ଏ ସଂକ୍ରାନ୍ତରେ ପ୍ରଶ୍ନ ହୋଇଛି, ସେତେବେଳେ କୁହାଯାଇଛି ଏପ୍ରକାର notification କରିବା ବିଷୟ ସରକାରଙ୍କ ଦୃଷ୍ଟିକୁ ଅଣାଯାଇ ନାହିଁ । ମୁଁ ସ୍ପଷ୍ଟ ଭବରେ ଜାଣେ ଯେ ଏଇ circular ଯେତେବେଳେ ବାହାରିଲା, ସେତେବେଳେ ଏ ବିଷୟରେ ସରକାରଙ୍କ ଅନୁମତି ନିଆଯାଇ ନାହିଁ । ମୁଁ ଯେତେଦୂର ଖବର ରଖିଛି, ମୁଁ ପ୍ରଶ୍ନ ପଗ୍ଚରିବା ପର୍ଯ୍ୟନ୍ତ ଏପ୍ରକାର ଗୋଟିଏ circular ଯେ କରାଯାଇଛି ଏବଂ ସମସ୍ତଙ୍କଠୁ licence fees ଅସୁଲ କରାଯାଉଛି ଏ ବିଷୟରେ କୌଣସି ଖବର ସରକାରଙ୍କୁ ଦିଆ ଯାଇ ନାହିଁ । ମୁଁ କହିଦେବାକୁ ଯାଉଥିଲି ଯେ ସରକାର ଚେଷ୍ଟା କରିଥିଲେ ଅତି ସହଜରେ ଏହି ଗରିବ ବ୍ୟବସାୟୀମାନଙ୍କୁ ଯାହାଙ୍କୁକି ସୁଖବାସୀ କହନ୍ତି ସେମାନଙ୍କଠୁ ଏହି fees ଆଦାୟ ନକରି ଅନ୍ୟ ଉପାୟରେ ସମ୍ବଲପୁର ଜିଲାବୋର୍ଡର ଆର୍ଥିକ ଦୂରାବସ୍ଥା ଦୂର କରି ପାରିଥାନ୍ତେ । ଉଦାହରଣସ୍ୱରୂପ ମୁଁ କହିଦେବାକୁ ଚାହେଁ ଯେ ଏଥିରେ ବ୍ୟବସ୍ଥା ଅଛି ଯିଏ କାଠ ବା କୋଇଲା ଜମାକରି ରଖିବ ସେ ସେଥିପାଇଁ licence ଦେବ ।

ଏ ବିଷୟରେ 152 *(a) (1)*, sub-section *(q)* ପ୍ରତି ମୁଁ ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି । ସମ୍ବଲପୁର ଜିଲ୍ଲାର ଡ଼ିଷ୍ଟ୍ରିକ୍ଟ ବୋର୍ଡ ଇଲାକାରେ ଅନେକ ସ୍ଥାନରେ କେତେକ colliory ଅଛି । ଏହି colliery ମାନଙ୍କରେ କୋଇଲା ବ୍ୟବସାୟ କରିବାପାଇଁ ଧନୀ ଲୋକମାନେ କୋଇଲା ଜମାକରି ରଖିଛନ୍ତି । ଏଥିରେ ନିର୍ଦ୍ଦେଶ ଅଛି ଯେ ପ୍ରତି ଟ୧୦୦ଙ୍କାରେ ଟ୧ଙ୍କା କରି ସେମାନେ licence fee ଦେବେ । ଯେତେବେଳେ ଜିଲ୍ଲାବୋର୍ଡ ଥିଲା ସେମାନେ ଏହି ରେଟରେ ଆଦାୟ ହେବା ପାଇଁ recommendation କରିଥିଲେ । ସେଠାରେ ବଡ଼ ବଡ଼ କୋଇଲା ଖଣି ଅଛି ଯଦି ଏଇ ଟ୧ଙ୍କା ହିସାବରେ ଆଦାୟ କରାଯାଇ ଥାନ୍ତା, ତାହାହେଲେ ସମ୍ବଲପୁର ଜିଲ୍ଲାବୋର୍ଡରେ ଯେଉଁ ଆର୍ଥିକ ଦୁରବସ୍ଥା ତାହା ଅତି ସହଜରେ ଦୂରହୋଇ ପାରିଥାନ୍ତା । ଏହି ହିସାବରେ ଆଦାୟ କରିଥିଲେ ତାଙ୍କଠାରୁ ୩୬,୦୦୦ ଟଙ୍କା ମିଳିବବୋଲି ଜିଲ୍ଲାବୋର୍ଡ ଆଶା କରିଥିଲେ । ମାତ୍ର ତାଙ୍କର ସେ ଆଶା ପୂର୍ଣ୍ଣ ହୋଇ ପାରିଲା ନାହିଁ । ସରକାର ତାଙ୍କ ଠାରୁ ନାମକୁ ମାତ୍ର ଟ ୨୦୦ (ଦୁଇଶହ ଟଙ୍କା) ପର୍ଯ୍ୟନ୍ତ ପାଇଲେ । ମୁଁ ଆଶାକରୁଛି ଏ ବିଷୟରେ ସରକାର ପ୍ରକୃତ ତଥ୍ୟ ପ୍ରକାଶ କରିବେ । ତା'ପରେ ଆଇନ୍‌ରେ ଅଛି ଯେ, ଯେଉଁମାନେ nuisance କରୁଥିବେ ତାଙ୍କଠାରୁ ମଧ୍ୟ ଜିଲ୍ଲାବୋର୍ଡ licence fees ଆଦାୟ କରି ପାରିବେ । କୌଣସି ବ୍ୟବସାୟୀ କୌଣସି କଳ ବସାଇ ଯଦି କୌଣସି ବ୍ୟବସାୟ କରନ୍ତି ଓ ତଦ୍ୱାରା nuisance ଉପୁଜୁଥାଏ ତାଙ୍କଠାରୁ ମଧ୍ୟ licence fee ଆଦାୟ କରାଯିବ । ଆପଣ ଜାଣିଥିବେ Orient କାଗଜ କଳ ବୋଲି ଗୋଟିଏ କଳ ଅଛି । ଅବଶ୍ୟ ଏଇ ସରକାର କେବେ ସ୍ୱୀକାର କରିବେ ନାହିଁ ଏ କଳ ହେବା ଫଳରେ କିଛି nuisance ହୋଇଛି । ମାତ୍ର ପ୍ରତ୍ୟେକ ଲୋକ ଯେଉଁମାନେ ଭୁକ୍ତଭୋଗୀ ସେମାନେ nuisance କରୁଛନ୍ତି କି ନାହିଁ ତାହା ଭଲଭାବରେ ଜାଣନ୍ତି । ସମ୍ବଲପୁର ଜିଲ୍ଲାବୋର୍ଡ ମଧ୍ୟ ଏହା ହୃଦୟଙ୍ଗମ କରି ସରକାରଙ୍କୁ ସୁପାରିଶ କରିଛନ୍ତି ଯେ ଏଇ କଳ ବସାଇବା ଦ୍ୱାରା ପାଣି ମଇଳା ହେଉଛି ତାଙ୍କଠାରୁ ୧,୫୦୦ ଟଙ୍କା licence fee ଆଦାୟ କରାଯାଉ କିନ୍ତୁ ସରକାର ତାକୁ କମାଇ ଦେଇ ଟ୨୦୦ କି ଟ୩୦୦ କରି ଦେଇଛନ୍ତି । ଏ ବିଷୟ ସରକାର ଯଥାର୍ଥ ତାଙ୍କ ଉତ୍ତରରେ କହିବେ ତା'ପରେ notificationରେ ଅଛି ଯେ ଯେଉଁ ହେଡ଼ପଣ୍ଡିତମାନେ ଏଇ licence fee ଆଦାୟ କରିବାକଥା ସେମାନଙ୍କୁ କୁହାଯାଇଛି ଯେ ଆସନ୍ତା ଜୁନ ମାସ ପ୍ରାରମ୍ଭରେ ହେଡ୍ ପଣ୍ଡିତ୍‌ମାନେ ଦୁଇଟି ଲିଷ୍ଟ ସେମାନଙ୍କ ଜୁନ ମାସର ବିଲ୍‌ସହ ଦେବେ । ଗୋଟିଏ ଲିଷ୍ଟ ହେଉଛି ଯେଉଁ ବ୍ୟବସାୟୀମାନେ licence ଦେଇ ସାରିଥିବେ କିମ୍ବା licence fee ମନିଅର୍ଡର ଯୋଗେ ପଠାଇ ଦେଇଥିବେ, ସେମାନଙ୍କର ନାମ ଓ ବ୍ୟବସାୟର ନାମ ଏବଂ ଅନ୍ୟଟି ଯେଉଁମାନେ ଲାଇସେନ୍‌ସ ନେଇ ନ ଥିବେ କିମ୍ବା ଲାଇସେନ୍‌ସ ଫି ମନିଅର୍ଡର ଯୋଗେ ପଠାଇ ନ ଥିବେ ସେମାନଙ୍କର ନାମ ଓ ବ୍ୟବସାୟର ନାମ ଏହି ଉଭୟ ଲିଷ୍ଟ ଜୁନ ମାସର ଦରମା ବିଲ୍‌ସହ ନ ପଠାଇଲେ ଦରମା ବିଲ ପାଶ୍ କରାଯିବ ନାହିଁ । ଯେଉଁମାନେ ଲାଇସେନ୍‌ସ ନେଇ ନଥିବେ, ୨ୟ ଲିଷ୍ଟଟି ପାଇଲା ମାତ୍ରେ ସେମାନଙ୍କ ନାମରେ

ଫୌଜଦାରୀ ମକଦ୍ଦମା କରାଯିବ । ସବ୍‌ଇନ୍‌ସପେକ୍‌ଟରମାନେ ଆସନ୍ତା ଜୁନ୍ ମାସର ବେତନ ବିଲ୍ ସହ ଉପରୋକ୍ତ ଲିଷ୍ଟ ପଠାଇବେ । ଜୁଲାଇ ମାସରେ ହେଡ୍ ପଣ୍ଡିତମାନଙ୍କ ଏହି କାର୍ଯ୍ୟ ପର୍ଯ୍ୟାଲୋଚନା କରାଯାଇ ଭଲ କାର୍ଯ୍ୟ କରିଥିବା ହେଡ୍‌ପଣ୍ଡିତମାନଙ୍କୁ କମିଶନ ବାଦ୍ ପୁରସ୍କାର ମଧ୍ୟ ଦିଆଯିବ, ମନେରଖିବାକୁ ହେବ ଯେ ଏହି କାମ କରିବାଦ୍ୱାରା ଯେପରିକି ଶିକ୍ଷା ପ୍ରଦାନ କାର୍ଯ୍ୟରେ ଆଘାତ ଘଟିବ ନାହିଁ । ଏ ବିଷୟରେ ଶିକ୍ଷା ବିଭାଗକୁ consult କରାଯାଇ ନାହିଁ । ଏ ପ୍ରଶ୍ନର ଉତ୍ତର ଦେବେ ବୋଲି ସରକାର, ମୁଁ ଆଶା କରୁଛି ।

ତା'ପରେ ଝିଣ୍ଟିକା ମାରି ବଣି ପୋଷିବା ବିଷୟରେ ପଦେ ଦି ପଦ କଥା ମୁଁ କହିଦେବାକୁ ଚାହେଁ । କାହାଠୁ ଟ ୫୍ୟ ଅନ୍ୟ କାହାଠୁ ଟ ୫୍ୟ ଏହିପରି ବିଭିନ୍ନ ବ୍ୟବସାୟୀମାନଙ୍କଠୁ ଆଦାୟ କରିବା ପାଇଁ ନିର୍ଦ୍ଦିଷ୍ଟ rate ରହିଛି ତଥାପି ମଧ୍ୟ ଜୋର ବଜାର ହେବାର ଖବର ମିଳିଛି । ମୁଁ ଗୋଟିଏ ନିର୍ଦ୍ଦିଷ୍ଟ ଖବର ଦେଉଛି, ପଦପୁର ବୋଡ଼ାସମ୍ବରର ଜଣେ କୁମ୍ଭାର ଯେକି ହାଣ୍ଡି, ମାଠିଆ, ଖପରା ଏସବୁ ଗଢେ ତା'ଠାରୁ ଟ ୫୫ licence fee ହିସାବରେ ଆଦାୟ କରାଯାଇଛି । ଯେଉଁଦିନଠାରୁ ଏହା ଅସୁଲ ହେଲ ସେଇଦିନଠୁ ସେ ବ୍ୟବସାୟ ଛାଡ଼ି ଦେଇଛି ବୋଲି ମୁଁ ଖବର ପାଇଛି । ଏ ପ୍ରକାର ଘଟଣା ଯେ ଅନ୍ୟ ଯାଗାରେ ନ ହୋଇଥିବ ତାହା ମୁଁ କହି ପାରିବି ନାହିଁ । ସ୍କୁଲ ଶିକ୍ଷକମାନଙ୍କ ଦ୍ୱାରା ଏ ପ୍ରକାର licence fees ଆଦାୟ ହେବା ଫଳରେ ଆଉ ଗୋଟିଏ ଅସୁବିଧା ହୋଇଛି । ସେ ବିଷୟ ପ୍ରତି ମୁଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ । ସେ ସମସ୍ୟା ସେ କିପରି ସମାଧାନ କରାଯିବ ସେ ବିଷୟରେ ମୁଁ ପ୍ରଶ୍ନ କରିବି । ସମ୍ବଲପୁର ଜିଲାରେ ଯେତେ ସ୍କୁଲ ଅଛି, ସେସବୁ ଜିଲା ବୋର୍ଡ ଅଧିନରେ ନାହିଁ । ସମ୍ବଲପୁର ଅଞ୍ଚଳରେ ଯେତେ ସ୍କୁଲଅଛି ସବୁସ୍କୁଲ ଯେ ଜିଲାବୋର୍ଡ ଦ୍ୱାରା ପରିଚାଳିତ ତାହା ନୁହେଁ । ଏପରି ଅନେକ ଜାଗାରେ ଆଶ୍ରମ, ସେବାଶ୍ରମ ସ୍କୁଲ ଅଛି ଯେଉଁଠିକି ଜିଲାବୋର୍ଡର କୌଣସି କର୍ତ୍ତୃତ୍ୱ ନାହିଁ । ଯେଉଁ ଅଞ୍ଚଳରେ ଆଶ୍ରମ ଓ ସେବାଶ୍ରମ ସ୍କୁଲ ଅଛି ସେ ଅଞ୍ଚଳର ଲୋକେ ଏହି ପ୍ରକାର licence feesରୁ ଅବ୍ୟାହତି ପାଇଛନ୍ତି । ଏହା ଫଳରେ ଯେଉଁ ଅଞ୍ଚଳରେ ଜିଲାବୋର୍ଡ ଶିକ୍ଷକ ଅଛନ୍ତି ସେ ଅଞ୍ଚଳରେ ବ୍ୟବସାୟୀମାନେ licence fees ଦେବାକୁ ବାଧ୍ୟ ହେଉଛନ୍ତି ଓ ଆଉ ଅନ୍ୟ ଅଞ୍ଚଳରେ ବ୍ୟବସାୟୀମାନେ ଅବ୍ୟାହତି ପାଉଛନ୍ତି । ଏ ବିଷୟରେ କିପରି ସମତା ଆଣିବା ସରକାର ଭାବୁଛନ୍ତି ।

ଏ ମଧ୍ୟରେ ମୁଁ ଗୋଟିଏ ଖବର ପାଇଛି ଯେ ଏସବୁ ବ୍ୟବସାୟ ବିଷୟରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ସମ୍ବଲପୁରର କଂଗ୍ରେସ ଦଳର ମାନ୍ୟବର ମନ୍ତ୍ରୀଙ୍କୁ ଦେଖା କରିଥିଲେ ଓ ତା' ଫଳରେ କେତେକ ନିର୍ଦ୍ଦିଷ୍ଟ ବ୍ୟବସାୟୀ ଯଥା ବେତ୍ରାକଂସାରି ଇତ୍ୟାଦିଙ୍କ ଠାରୁ licence fees ଆଉ ନିଆଯିବ ନାହିଁ ବୋଲି ନିର୍ଦ୍ଦେଶ ଦିଆଯାଇଛି ।

ଏହା ଫଳରେ ଯେଉଁମାନଙ୍କୁ ଛାଡ଼ି ନ ଦିଆଗଲା ଯେଉଁ ନିରିହ ଗରୀବ ବ୍ୟବସାୟୀମାନେ ଅତ୍ୟାଚ୍ଚରିତ ହେଉଛନ୍ତି ସେ ବିଷୟରେ ସରକାର କ'ଣ ବନ୍ଦୋବସ୍ତ କରୁଛନ୍ତି । ଯେଉଁମାନଙ୍କର ବେଶୀ tax ଦେବାର ଶକ୍ତିଅଛି ଓ ସେମାନଙ୍କଠୁ ଆଦାୟ କଲେ ବେଶୀ ଟଙ୍କା ଆଦାୟ ହୁଅନ୍ତା । ସେଦି ଓରିଏଣ୍ଟ ପେପର ମିଲ୍ ଓ ହେମଗିରୀ-ରାମପୁର କୋଲିଆରି କ'ଣ ଗରିବ ହୋଇଗଲେ ଯେ ତାଙ୍କଠାରୁ କମ୍ ରେଟ୍‌ରେ ଆଦାୟ ହେଉଛି ଓ ତାଙ୍କୁ ଅବ୍ୟାହତି ଦିଆଯାଇଛି ।

Shri SATYAPRIYA MOHANTY (Minister) : ଓରିଏଣ୍ଟ ପେପର ମିଲ ଓ ହେମଗିରୀ-ରାମପୁର କଥା କ'ଣ କହିଲେ ମୁଁ ବୁଝିପାରିଲି ନାହିଁ ?

Shri SHRADDHAKAR SUPAKAR : ସମ୍ବଲପୁରର କୋଇଲା ଅଞ୍ଚଳରୁ ଶତକଡ଼ା ୧ ଟଙ୍କା ହିସାବରେ licence fees ନିଆଯିବାପାଇଁ District Board recommendation କରିଥିଲେ । ଏହା ହୋଇଥିଲେ ସମ୍ବଲପୁର ଜିଲା ବୋର୍ଡର ଆମଦାନୀ ୩୬ ହଜାର ହୋଇଥାନ୍ତା । ଏହା ନକରି ସରକାର କେବଳ ଟ୫୦୦ଙ୍କା ଧାର୍ଯ୍ୟକଲେ । ଏହା ସତ୍ୟ କି ମିଥ୍ୟା ଏ ବିଷୟରେ ଉତ୍ତର ଦେବାପାଇଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଛି । ସେଥିପାଇଁ ମୁଁ କହୁଛି ଏହି ଓରିଏଣ୍ଟ ପେପର ମିଲ୍ ଓ ହେମଗିରୀ-ରାମପୁର କୋଲିଆରି ଦରିଦ୍ର ହୋଇଗଲେ ଯେ ସେମାନଙ୍କଠାରୁ ଏହି କର ଛାଡ଼ି ଦେଲେ କି ?

## ଜେଲ ଓ ଅପରାଧୀମାନଙ୍କ ପୁନର୍ବାସ ସମ୍ପର୍କରେ ଖେଚଦାବି

ତତ୍କାଳୀନ ଉପମନ୍ତ୍ରୀ ଶ୍ରୀ ନୀଳମଣୀ ରାଉତରାୟ 1955 ମାର୍ଚ୍ଚ 31 ତାରିଖ ପୁର୍ଯ୍ୟନ୍ତା ଜେଲ ଓ ଅପରାଧୀମାନଙ୍କର ପୁନର୍ବାସ ନିମନ୍ତେ ମୋଟ ଟ 17,365ଙ୍କାର ଏକ ଅତିରିକ୍ତ ଖର୍ଚ୍ଚ ଦାବିର ଅନୁମୋଦନ ଗ୍ରହିଁଛନ୍ତି । ମାତ୍ର ବିରୋଧୀଦଳ ନେତା ଭାବରେ ଡଃ. ସୁପକାର ସେଥିରୁ ଟ. 100ଙ୍କା କାଟି ଦେବାକୁ ପ୍ରସ୍ତାବ କରିଛନ୍ତି । ଏହି ପ୍ରସ୍ତାବ ମାଧ୍ୟମରେ ସେ ବର୍ଷ ମଝିରେ Inspector-General of Prisons ପଦବୀ ସୃଷ୍ଟି କରିବା ଓ ଜଣେ ଉଚ୍ଚ ପଦାଧିକାରୀଙ୍କୁ ନିଯୁକ୍ତି ଦେବା ବିରୁଦ୍ଧରେ ନିଜର ମତ ପ୍ରକାଶ କରିଛନ୍ତି । ସେ ବରଂ କହିଛନ୍ତି ବର୍ଷ ଆରମ୍ଭରେ ବାର୍ଷିକ ବଜେଟ ଆଗତକରି ସେ ସମୟରେ ଏହିପରି ବ୍ୟବସ୍ଥା ଆଣିବା ଅଧିକ ସମୀଚୀନ ହେବ । ବର୍ଷ ମଝିରେ ଏହି ଖର୍ଚ୍ଚ ଦାବି ଆଗତ କରି ଅନୁଚିତ ଓ Irregular ବୋଲି କହି ଜେଲ ସଂସ୍କାର ପାଇଁ ଯେଉଁ କମିଟି ବସିଛି, ସେଥିରେ ଏ ସମ୍ପର୍କରେ କ'ଣ ସୁପାରିଶ ଆସିବ ଦେଖିବାକୁ ନିଜର ପ୍ରସ୍ତାବ ଦେଇଛନ୍ତି ।

## JAILS AND CONVICT SETTLEMENTS

### Demand No. 2

The SPEAKER : Motion moved that the Assembly do assent to as supplementary grant of Rs. 17,365 to defray the charges which will come in course of payment during the year ending the 31st March 1955 in respect of "Jails and Convict Settlements".

This appropriation has the recommendation of the Governor.

Shri SHRADDHAKAR SUPAKAR: ମାନ୍ୟବର ଅଧ୍ୟକ୍ଷ ମହାଶୟ, ମୁଁ ପ୍ରସ୍ତାବ କରୁଛି ଯେ ଏ ଯେଉଁ ଖର୍ଚ୍ଚର ଦାବି ଆସିଛି, ସେଥିରୁ ଟ ୧୦୦ଙ୍କା କାଟି ଦିଆଯାଉ । ଏ ବିଷୟରେ ପ୍ରସ୍ତାବ କରାଯାଇଛି ଯେ ଆମର Director of Health ଏବଂ Inspector-General of Prisons କାର୍ଯ୍ୟ ଜଣେ ଲୋକ ପରିଚାଳନା କରୁଥିଲେ । ବର୍ତ୍ତମାନ Inspector-General of Prisons ଜଣେ ନୂତନ ନିଯୁକ୍ତ ହେବେ ଏବଂ ସେଥିପାଇଁ ବର୍ଷ ମଝିରୁ ଯାହା ଖର୍ଚ୍ଚ ହେବ ସେଥିପାଇଁ ଟ ୧୭,୩୬୫ଙ୍କାର ଦାବି ଆରମ୍ଭ କରାଯାଇଛି । ଏ ବିଷୟରେ ମୁଁ ଅନ୍ୟ ଆଲୋଚନା କରିବା ପୂର୍ବରୁ କହିବି ଯେ ଏଇଟା ବର୍ଷ ମଝିରେ ଗୋଟାଏ ନୂତନ ଉଚ୍ଚ ପଦ ସୃଷ୍ଟି କରି ସେଥିପାଇଁ supplementary demand ଆଗତ କରିବା ଉଚିତ ହୋଇ ନାହିଁ, ଯେଉଁଥିରେ କି କୌଣସି ନୀତିଗତ ନିର୍ଦ୍ଧାରଣ, ଯାହାକୁ କହନ୍ତି decision of policy ଦରକାର ପଡ଼େ, ସେଟା ଅବଶ୍ୟ supplementary demandରେ ଆଗତ କରାଯାଇ ପାରେ । ବୈଧାନିକ ଦୃଷ୍ଟିରୁ ସେ ବିଷୟରେ କୌଣସି ବାଧା ନାହିଁ । ତଥାପି ଏଇଟା ସାଧାରଣତଃ ବର୍ଷ ଆରମ୍ଭରେ ଯେଉଁ ସମୟରେ କି ବାର୍ଷିକ ବଜେଟ ଆଗତ କରଯାଏ ସେଇ ସମୟରେ ଆଗତ କରିବା ସମୀଚୀନ ହୋଇଥାନ୍ତା ଏବଂ ଏ ବର୍ଷ ମଝିରେ ଏଇ ଖର୍ଚ୍ଚ ଦାବି ଆଗତ କରିବା ଉଚିତ ହୋଇ ନାହିଁ । ଏ ବିଷୟରେ May's Parliamentary practiceରେ କୁହାଯାଇଛି ଯେ ଏ ସବୁ ବିଷୟଗୁଡ଼ିକ ଆଲୋଚନା ନ ହୋଇ ଭୋଟକୁ ଯିବା ଉଚିତ୍ ନୁହେଁ । ଆପଣ ଜାଣିଥିବେ ଯେ, ଯେତେବେଳେ Annual Budget ବା ବାର୍ଷିକ ମୂଳ ବଜେଟ ଆମ ସମ୍ମୁଖରେ ଉପସ୍ଥାପିତ ହୁଏ, ସେ ସମୟରେ ଆମେ ସବୁ ବିଷୟରେ ଏବଂ ସବୁ ବିଭାଗର ନୀତିଗତ ପ୍ରଶ୍ନମାନ ଆଲୋଚନା କରିବାର ସୁଯୋଗ ପାଇଥାଉଁ । ପ୍ରଥମରେ ଆମକୁ ୩।୪ ଦିନ ସମୟ ମିଳେ, ଯେଉଁ ସମୟରେ କି ଆମେ ରାଜ୍ୟର ବିଭିନ୍ନ ଖର୍ଚ୍ଚର ଦାବି ସମ୍ପର୍କରେ ବିଭିନ୍ନ ବିଷୟର ନୀତି ଦୃଷ୍ଟିରୁ, ମୋଟାମୋଟି ଭବରେ ଆଲୋଚନା କରିବାର ସୁବିଧା ପାଉ, ଯେତେବେଳେ voting of demands ସମୟ ଉପସ୍ଥିତ ହୁଏ ସେ ସମୟରେ ଆମର ଯେଉଁ ୭୦।୮୦ଟା demand ଥାଏ ସେଥିରୁ କେବଳ କେତୋଟି ଆମେ ଆଲୋଚନା କରିବାର ସୁଯୋଗ ପାଉ ଏବଂ ଅବଶିଷ୍ଟ

ବିଷୟଗୁଡ଼ିକ ଗିଲ୍ଲୋଟିନ ହୋଇଥାଏ ଏବଂ ସେ ସବୁ ଆଲୋଚନା କରିବାର ସୁଯୋଗ ଆମ୍ଭମାନଙ୍କୁ ମିଳେନାହିଁ । ଯେଉଁ ସବୁ ବିଷୟ voting of demands ସମୟରେ ଆଲୋଚନା କରିବାର ସୁଯୋଗ ମିଳେ ନାହିଁ, ସେ ସବୁ ବିଷୟ ସାଧାରଣ ଆଲୋଚନାରେ ନୀତି ଦୃଷ୍ଟିରୁ ଆଲୋଚନା କରିବା ପାଇଁ ସମୟ ମିଳିଥାଏ । କିନ୍ତୁ supplementary budgetର ଆଲୋଚନା ପ୍ରସଙ୍ଗ ସମ୍ପୂର୍ଣ୍ଣ ଭିନ୍ନ । ଏଥିରେ କେବଳ details ଆଲୋଚନା ହେବାର କଥା ଅର୍ଥାତ ଯେଉଁଠି ଟିକି ନିଖି ଖର୍ଚ୍ଚ ଥିବ ସେ ବିଷୟରେ ଆଲୋଚନା ହେବା କଥା, ଏବଂ ନୀତିଦୃଷ୍ଟିରୁ ଆମକୁ general discussion ପାଇଁ Supplementary budget ରେ ସୁବିଧା ମିଳେ ନାହିଁ, ଖାଲି ଯେ ସୁବିଧା ମିଳେ ନାହିଁ ତା ନୁହେଁ ଆପଣ ଦେଖୁଥିବେ ଯେ, ଆମ ସମ୍ମୁଖରେ ପ୍ରାୟ ସର୍ବମୋଟ ୧୮୪ଟି ଖର୍ଚ୍ଚର ଦାବି ଅଛି, ଯାହାକୁ କି ଆମକୁ ପାଶ୍ କରିବାକୁ ହେବ, ଏବଂ ସେଥିମଧ୍ୟରୁ ଆମେ ଆଜି ସୁଦ୍ଧା ଏଇଟା ମିଶାଇ କରି କେବଳ ୫ଟି ମାତ୍ର ଖର୍ଚ୍ଚ ଦାବି ଆଲୋଚନା କରିବାର ସୁଯୋଗ ପାଇଛୁ । ଏଇଟା କେବଳ ବିରୁଦ୍ଧ ଦଳରେ ଯେତେ ଦଳମାନ ଅଛନ୍ତି ଓ ଏ ଗୃହର ଉଭୟ ପକ୍ଷ ମିଳିମିଶି ପରାମର୍ଶ କରି ରାଜି ହେବାରୁ ଏଇଟା ଆଲୋଚନା ହୋଇ ପାରିଲା । ତା'ନହେଲେ ଏହାଠାରୁ ବଡ଼ ଅନେକ ବିଷୟ ଆଲୋଚନା ହେବାର ଥିଲା । ଏଇଟା ଭାଗ୍ୟକ୍ରମେ ଏବଂ ପ୍ରସଙ୍ଗକ୍ରମେ କେବଳ ଆଲୋଚନା ହେବାର ସୁଯୋଗ ମିଳିଛି ମୁଁ ଭାବୁଛି ଯେଉଁଥିରେ କୌଣସି ନୀତିଗତ ପ୍ରଶ୍ନ ଉଠିବାର ସମ୍ଭାବନା ଅଛି, ଏବଂ ଯେଉଁଥିରେ କି ଏ ନୂତନ ପଦ ସୃଷ୍ଟି କରିବା ପାଇଁ ଟ ୧୭,୦୦୦ଙ୍କା ଦରକାର ପଡୁଛି, ସେ ବିଷୟରେ ପୁଙ୍ଖାନୁପୁଙ୍ଖଭାବେ ଏବଂ ନୀତିଗତ ଭାବରେ ଆଲୋଚନା କରିବାର ସୁଯୋଗ ହୁଏତ ଆମକୁ ଯେତେ ମିଳିବାର କଥା ସେତକ ମିଳି ପାରିଲା ନାହିଁ । ବିଶେଷତଃ ଆପଣ ଦେଖିବେ ଯେ ମୂଳ ବଜେଟର voting of demands ଆଲୋଚନା ପାଇଁ ଆମକୁ ପ୍ରାୟ ୧୦ରୁ ୧୫ଦିନ ମଧ୍ୟରେ ସମୟ ମିଳିଥାଏ । ଏ ଯେଉଁ supplementary budget ଆସିଛି, ଏଥିରେ ଥିବା ୧୮୪ଟି demand ଉପରେ ଆଲୋଚନା କରିବା ପାଇଁ ଆମକୁ ମୋଟେ ୩ଦିନ ସମୟ ମିଳିଛି । ଏଥିରୁ ଆମେ କେବଳ ୫।୬ demand ଉପରେ ଆଲୋଚନା କରିବାର ସୁଯୋଗ ପାଇଛୁ । ୫ଟା ସୁଦ୍ଧା ଯେଉଁ ସବୁ demand ଆଲୋଚିତ ହୋଇ ପାରିବ ନାହିଁ ସେ ସବୁ ଆମ ଅନିଚ୍ଛା ସତ୍ତ୍ୱେ ଆସେମ୍ବ୍ଲି ନିୟମ ଅନୁଯାୟୀ ଗିଲ୍ଲୋଟିନ୍ ପ୍ରୟୋଗ କରି Eyes, Nose କରି କେବଳ ଆଖିକାନକୁ ବିଚାର କରି ସେ ସବୁ ପାସ୍ ହୋଇଯିବ, ଏହାଦ୍ୱାରା ଟିକିଏ ଅବିଚାର କରାଯାଉଛି ବୋଲି ମୁଁ କହିବି । ଏହି Inspector-General of Prisons ଗୋଟିଏ ନୂତନ ପଦର ସୃଷ୍ଟି କି ନୁହେଁ ସେ ବିଷୟରେ ମୁଁ କେବଳ ଏତିକି କହିବି ଯେ ଯେପରି ଅବସ୍ଥାରେ ଏଟା କରାଯାଉଛି ସେଟା ଉଚିତ ନୁହେଁ । ଆପଣ ଦେଖିବେ ଆମର ଗୋଟିଏ Jails Reforms Committee ବସିଛି । ଏମାନେ ୧୯ ବର୍ଷ ହେଲା ବସିଲେଣି । ଏମାନେ ପୁଙ୍ଖାନୁପୁଙ୍ଖ

ଆଲୋଚନା କରୁଛନ୍ତି । ସେମାନେ ଯେଉଁ interim ରିପୋର୍ଟ ଦେଇଛନ୍ତି, ସେଟା ଆମର ହସ୍ତଗତ ହୋଇ ହୋଇନାହିଁ ଏବଂ ଯେଉଁ final ରିପୋର୍ଟ ଦେବେ ସେଟା ମଧ୍ୟ ଭବିଷ୍ୟତର ଅନିଶ୍ଚିତ ଗର୍ଭରେ ନିହିତ ଅଛି । ସେମାନେ କଣ ରିପୋର୍ଟ ଦେବେ ଆମେ ଜାଣି ନାହୁଁ । ସେଟା ଜାଣିଲା ପରେ ଏବଂ ସେ ବିଷୟରେ ଆମେ ନିଜ ନିଜର ମତାମତ ସ୍ଥିର କରି ସାରିଲାପରେ ଏ ବିଷୟରେ ଆଗତ ହୋଇଥିଲେ ଭଲ ହୋଇଥାନ୍ତା । ବର୍ତ୍ତମାନ ଅବଶ୍ୟ ଯୁକ୍ତିସ୍ୱରୂପ କୁହାଯାଇ ପାରେ ଅନ୍ୟାନ୍ୟ ପ୍ରଦେଶର ଏହି Inspector-General of Prisons ପଦ ସୃଷ୍ଟି କରଯାଇଛି ଏବଂ ସେହି ଦୃଷ୍ଟିରୁ ଏଟା କରଯାଉଛି । ତାହା ଯଦି ହୁଏ, ମୁଁ ତ କହିବି ଏଟା ବାସ୍ତବିକ ଇଂରଜୀରେ ଯାହାକୁ କହନ୍ତି pre-judging the issue । ଗୋଟିଏ କମିଟି ବସିଛି । ସେମାନେ କୌଣସି ରିପୋର୍ଟ ଦେବା ପୂର୍ବରୁ ସରକାର ଏପରି ଗୋଟିଏ ନିଷ୍ପତ୍ତି କରିଦେବା ଉଚିତ ହେଉନାହିଁ । ଏ ବିଷୟଟି within the full scope of the Jail reforms ଭିତରେ ଆସୁଛି । ସେ କମିଟି ତାଙ୍କର ମତାମତ ଦେବାପରେ ଏ ଖର୍ଚ୍ଚର ଦାବି ଆଗତ କରଯାଇଥିଲେ ଏଟା regular ହୋଇଥାନ୍ତା, କିମ୍ବା ମୂଳ ବଜେଟ ସମୟରେ ଏ ଖର୍ଚ୍ଚର ଦାବି ଆଗତ କରଯାଇ ଥିଲେ regular ହୋଇଥାନ୍ତା । କିନ୍ତୁ ଏପରି କରିବା ଦ୍ୱାର ଏଟା irregular ହୋଇଛି ।

## ମନ୍ତ୍ରୀ, ସଚିବାଳୟ ଓ ଅନ୍ୟାନ୍ୟ ବ୍ୟୟ ଦାବି ଉପରେ ଭାଷଣ

ତତ୍କାଳୀନ ଅର୍ଥମନ୍ତ୍ରୀ ଶ୍ରୀ ରାଧାନାଥ ରଥ 1955 ମାର୍ଚ୍ଚ ସୁଦ୍ଧା ଅର୍ଥବିଭାଗର ବ୍ୟୟଦାବି ଉପସ୍ଥାପନ କଲାପରେ ଡକ୍ଟର ସୂପକାର ସରକାରଙ୍କ ନୀତିରେ ବାରମ୍ବାର ପରିବର୍ତ୍ତନ, ପ୍ରଶାସନିକ ଅବହେଳା ଓ ଅପବ୍ୟୟ ସଂପର୍କରେ ସୂଚନା ଦେଇଛନ୍ତି । ପ୍ରଶାସନରେ ଶିଥିଳତା ଓ କାର୍ଯ୍ୟଦକ୍ଷତାର ଅଭାବ (ineffciienty)କୁ କଟୁ ସମାଲୋଚନା କରି ରାଜ୍ୟର P.S.C., Public Accounts Committee ଆଦିର ରିପୋର୍ଟରୁ ଉଦାହରଣ ଦେଇଛନ୍ତି । ପ୍ରଶ୍ନପଗ୍ଋରିଲେ ସଂପୃକ୍ତ ବିଭାଗରୁ ଉତ୍ତର ମିଳୁନାହିଁ, Proceeding ଯଥା ସମୟରେ ଛପା ଯାଉନାହିଁ, Estimates Committee, Standing Committees ପ୍ରଭୃତି ରିପୋର୍ଟ ଉପରେ ସରକାର କୌଣସି ପଦକ୍ଷେପ ନେଇଛନ୍ତି ବୋଲି ଜଣାପଡୁନାହିଁ । P.S.C.କୁ ନପଗ୍ଋରି Post Creation ଓ filled up ହେଉଛି, ଅନେକଙ୍କୁ reappointment ଦିଆଯାଉଛି । ବିଭିନ୍ନ ପୁସ୍ତକ, ଶାସ୍ତ୍ର, ଦେଶ ବିଦେଶର ଅଗ୍ରଗତି-ବିବରଣୀରୁ ଉଦାହରଣ ଦେଇ ଡକ୍ଟର ସୂପକାର ସ୍ୱାଣୁ ସରକାରଙ୍କୁ ସଜାଗ କରିବାକୁ ଉଦ୍ୟମ କରିଛନ୍ତି (1954 ମାର୍ଚ୍ଚ 22, ବିଧାନସଭା ବିବରଣୀ) ।

# BUDGET

## VOTING ON DEMANDS FOR GRANTS

### Minister, Civil Secretariat and other Expenditure relating to the Finance Department

This appropriation has the recommendation of the Governor.

Mr. SPEAKER: Cut-motion No. 77 of Dr. Pranakrushna Parija is taken to be moved to discuss the problem of top-heavy administration.

**ଶ୍ରୀ ଶ୍ରଦ୍ଧାକର ସୁପକାର:** ମାନନୀୟ ଅଧ୍ୟକ୍ଷ ମହାଶୟ, ଏହି ବିଭଗ ଉପରେ ଦିଆଯାଇଥିବା କାଟ ପ୍ରସ୍ତାବକୁ ସମର୍ଥନ କରି ମୁଁ ଏ ବିଷୟରେ କେତେକ ଆଲୋଚନା କରିବାକୁ ଯାଉଛି । ପୋଲିସ ବିଭଗ ଖର୍ଚ୍ଚ ଦାବି ସମ୍ପର୍କରେ ଉତ୍ତର ଦେବାକୁ ଯାଇ ମାନ୍ୟବର ଘରୋଇ ବିଭଗର ଉପମନ୍ତ୍ରୀ ପୋଲିସ ବିଭଗକୁ ଗୋଟିଏ Development Department ବା ବିକାଶ ବିଭଗ ବୋଲି କହିଥିଲେ ।

**ଶ୍ରୀ ଦୀନବନ୍ଧୁ ସାହୁ** (ମନ୍ତ୍ରୀ): ସେ Welfare ବିଭଗ ବୋଲି କହିଥିଲେ ।

**ଶ୍ରୀ ଶ୍ରଦ୍ଧାକର ସୁପକାର:** ସେ ମୋର ଯେତେ ଦୂର ମନେ ପଡୁଛି ସେ ବିକାଶ ବିଭଗ ବୋଲି କହିଛନ୍ତି । ଏହା କହିବାର କାରଣ ବୋଧହୁଏ ହେଉଛି ଲଠି ମାଡ଼ରେ ମନୁଷ୍ୟର ଜୀବନ ବିପନ୍ନ ହେଉଥିବା, ବିକାଶ ହେଉଥିବାରୁ ଓ ସେଥିଯୋଗୁ ଅଧିକ ବ୍ୟୟ ହେଉଥିବାରୁ ବୋଧହୁଏ ଏହାକୁ ବିକାଶ ବିଭଗ ବୋଲି କହିଛନ୍ତି । ଏହିପରି ଦେଖିବାକୁ ଗଲେ ଆପଣ ବୁଝିବେ ଯେ ୫ ବର୍ଷ ପୂର୍ବେ ଯେଉଁ ବିଭଗକୁ ବିକାଶ ବିଭଗ ବୋଲି କୁହାଯାଇଥିଲ, ଆଜି ସେଗୁଡ଼ିକ ବିକାଶ ବିଭଗ ବୋଲି କୁହା ଯାଇପାରିବ ନାହିଁ ।

ପୂର୍ବେ ଆମେ ଯେଉଁଗୁଡ଼ିକୁ ଶାସନ ବିଭଗ ବୋଲି କହୁଥିଲୁଁ ବର୍ତ୍ତମାନ ସେଗୁଡ଼ିକ ବିକାଷ ବିଭଗ ଆଖ୍ୟାରେ ପରିଚିତ ହେଲଣି । ବ୫ର୍ଷ ପୂର୍ବରୁ ବ୍ୟବସ୍ଥାପକ ସଭର ତଦାନୀନ୍ତନ ଅର୍ଥମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀ ମାନ୍ୟବର ହରେକୃଷ୍ଣ ମହତାବ ବିଭିନ୍ନ ବିଭଗକୁ ଶ୍ରେଣୀ ବିଭଗ କରି Administrative Department ଭିତରେ General Administration of Justice, Jails and Police ରଖିଥିଲେ ଏବଂ Nation-Building ବା ଜାତି ଗଠନ ବିଭଗ ମଧ୍ୟରେ ଜଙ୍ଗଲ, ଶିକ୍ଷା, ସ୍ୱାସ୍ଥ୍ୟ, ଡାକ୍ତରୀ, କୃଷି, ପଶୁପାଳନ, ସମବାୟ ଏବଂ ଶିଳ୍ପ ବିଭଗ ରଖିଥିଲେ । ସେହି ମାପକାଠିରେ ଯଦି ଆମେ ଆଲୋଚନା କରିବା ତାହାହେଲେ ଆମେ ଦେଖିବା ଗତବର୍ଷ ତୁଳନାରେ ଏବର୍ଷ ଯେପରି ଭବରେ

ବ୍ୟୟବୃଦ୍ଧି କରଯାଇଛି ସେଥିରେ ଗୌରବାନ୍ୱିତ ହେବାର କିଛି ନାହିଁ । ଆପଣ ଦେଖିବେ ଗତବର୍ଷଠାରୁ ଏବର୍ଷ ଆମର ରାଜସ୍ୱ ୫୫ ଲକ୍ଷ ୫୩ ହଜାର ବୃଦ୍ଧି ପାଇଛି । କିନ୍ତୁ ସେଥିମଧ୍ୟରୁ କେବଳ General Administration ବିଭାଗରେ ୪୧,୨୮,୮୬୮ ଟଙ୍କା ବୃଦ୍ଧି ପାଉଛି । General Budgetର ୮ମ ପୃଷ୍ଠାରେ 25—General Administration Head ଦେଖିଲେ ଆପଣ ଜାଣି ପାରିବେ ଯେ ଏଇଟା ଆମ ରାଜ୍ୟର General Revenueର ଶତକଡ଼ା ୧୨ । ସେହିପରି Administration of justice ରେ ଗତବର୍ଷଠାରୁ ଏ ବର୍ଷ ୧ଲକ୍ଷ ୪ହଜାର ୪୫୫ ଟଙ୍କା ବୃଦ୍ଧି ପାଇଛି ଏବଂ ଏଇଟା ସମଗ୍ର ଆୟର ଶତକଡ଼ା ୧·୮ । Jail ବିଭାଗରେ ବ୍ୟୟ ୪,୯୭୩ ଟଙ୍କା । ଏହା ଜମି-ଯାଉଥିଲେ ସୁଦ୍ଧା ଶତକଡ଼ା ୧·୮ ଭାଗ ପଡୁଛି । Police ବିଭାଗରେ ଗତବର୍ଷ ଠାରୁ ୮୧,୧୨,୫୦୫ଙ୍କା ଖର୍ଚ୍ଚ ବୃଦ୍ଧି ପାଇଛି ଏବଂ ଏହା ଶତକଡ଼ା ୧୦·୯ ଭାଗ । ଅନ୍ୟ ପକ୍ଷରେ ଲୋକମଙ୍ଗଳକର ବିଭାଗରେ ଖର୍ଚ୍ଚ ଯେତେଦୂର ବୃଦ୍ଧି ପାଇଛି ତାକୁ ତୁଳନା କଲେ ଦେଖିବେ ଯେ ଜଙ୍ଗଲ ବିଭାଗରେ ୪,୨୫,୫୫୭ ଟଙ୍କା ବୃଦ୍ଧି ପାଇଛି ଏବଂ ଏ ବିଭାଗରେ ଯେତେ ଖର୍ଚ୍ଚ କରିବାର ବ୍ୟବସ୍ଥା କରଯାଇଛି ତାହା ସମଗ୍ର ଆୟର ଶତକଡ଼ା ୩·୨ ଭାଗ । ସେହିପରି ଶିକ୍ଷା ବିଭାଗରେ ୧,୦୩,୭୧୪ ଟଙ୍କା ଅଧିକ ଖର୍ଚ୍ଚ ହୋଇଛି ଏବଂ ସମଗ୍ର ଆୟର ଶତକଡ଼ା ୧୩·୩ ଭାଗ । ମେଡ଼ିକାଲ ବିଭାଗରେ ବୃଦ୍ଧି ପାଇଛି ୮,୬୪,୩୨୬ ଟଙ୍କା ଏବଂ ସମଗ୍ର ଆୟର ଏହା ହେଉଛି ଶତକଡ଼ା ୪·୫ ଭାଗ । Public Health ବା ସାଧାରଣ ସ୍ୱାସ୍ଥ୍ୟ ବିଭାଗରେ ବୃଦ୍ଧି ପାଇଛି ୪୫,୬୦୧ ଟଙ୍କା । ସମଗ୍ର ଆୟର ଏହା ହେଉଛି ଶତକଡ଼ା ୨·୨ ଭାଗ । ପଶୁପାଳନ ବିଭାଗରେ ୨,୨୮,୮୯୭ ଟଙ୍କା ବୃଦ୍ଧି ପାଇଛି ଏବଂ ଏହା ହେଉଛି ସମଗ୍ର ଆୟର ଶତକଡ଼ା ୧·୮ ଭାଗ । ସମବାୟ ବିଭାଗରେ ୨,୯୧,୧୨୪ ଟଙ୍କା ବୃଦ୍ଧି ପାଇଛି ଏବଂ ଏହା ହେଉଛି ଶତକଡ଼ା ·୯ ଭାଗ ଏବଂ ଶିଳ୍ପ ବିଭାଗରେ ୭,୦୦,୩୫୫ ଟଙ୍କା ବୃଦ୍ଧି ପାଇଛି ଏବଂ ସମଗ୍ର ଆୟର ଏହା ହେଉଛି ·୮ ଭାଗ । କୃଷି ବିଭାଗରେ ୩୩,୦୧,୩୮୨ ଟଙ୍କା ବୃଦ୍ଧି ପାଇଛି ଏବଂ ସମଗ୍ର ଆୟର ଏହା ହେଉଛି ୫·୬ ଭାଗ । କେବଳ ଏଇଟା ହେଉଛି ଉଲ୍ଲେଖଯୋଗ୍ୟ ଘଟଣା । ଅବଶ୍ୟ ଏହି ଖର୍ଚ୍ଚ ବୃଦ୍ଧି ମଧ୍ୟରେ National Extension Service ପାଇଁ ଯେଉଁ ୧୨ଟି Block ଗଢ଼ାଯାଇଛି ତାର ଖର୍ଚ୍ଚ ଅନ୍ତର୍ଭୁକ୍ତ ହୋଇଛି, କିନ୍ତୁ ଆପଣ ଦେଖିବେ ଗତବର୍ଷଠାରୁ କୃଷି ବିଭାଗକୁ ଛାଡ଼ିଦେଲେ କେବଳ ସାଧାରଣ ଶାସନ ବିଭାଗ ଯଥା—General Administration, Administration of Justice and Jails and Police ଏହି ୪ଟି ବିଭାଗରେ ଯେତିକି ଖର୍ଚ୍ଚ ବୃଦ୍ଧି ପାଇଛି ତାହା Nation-Building Departmentରେ ବୃଦ୍ଧି ପାଇଥିବା ଖର୍ଚ୍ଚ ଅପେକ୍ଷା ବେଶୀ । ଏଇଟା ମୁଁ ଭାବୁଛି ଗୋଟିଏ ଜନମଙ୍ଗଳ ରାଜ୍ୟ ପକ୍ଷରେ ଗୌରବର କଥା ନୁହେଁ । ଆମକୁ ଦେଖିବାକୁ ହେବ ଗୋଟିଏ ବିଭାଗରେ ଏ ଯେଉଁ ୪୧ ଲକ୍ଷ ଟଙ୍କା ଖର୍ଚ୍ଚ କରଯାଇଛି ତାହା ତୁଳନାରେ ଦେଶର ଶାସନରେ ଉନ୍ନତି ହୋଇଛି ନା ଅବନତି

ହୋଇଛି । ମନୁଷ୍ୟର ବାହ୍ୟ ସୌନ୍ଦର୍ଯ୍ୟ ବୃଦ୍ଧି କରିବା ପାଇଁ ଯଦି ଚେଷ୍ଟା କରଯାଏ, ତାର ପୋଷାକ ପରିଛେଦ ଭଲ କରିବାରେ ଚେଷ୍ଟା କରଯାଏ ଏବଂ ଏକାଧିକ ଅଙ୍ଗରସ ପ୍ରୟୋଗ କରଯାଏ କିନ୍ତୁ ତାର ହୃତପିଣ୍ଡ ଯଦି ଦୁର୍ବଳ ଥାଏ ତାହାହେଲେ ଏହିସବୁ ଉପସ୍କରର କୌଣସି ମୂଲ୍ୟ ନାହିଁ । ସେହିପରି ମୁଁ ଭାବୁଛି ଏ ବିଭାଗରେ ଏତେ ବେଶୀ ଖର୍ଚ୍ଚ ହୋଇ ଥିଲେ ସୁଦ୍ଧା ଆମ ସରକାରଙ୍କର ଯେଉଁ ହୃତପିଣ୍ଡ— ମନ୍ତ୍ରୀମଣ୍ଡଳ ବା ସେକ୍ରେଟାରୀଏଟ୍—ଏଇଟା ଧୀରେ ଧୀରେ ଦୁର୍ବଳତର ହୋଇ ଯାଉଛି । ଦେଶର ଶାସନରେ ଯେପରି ଭାବରେ ଶିଥିଳତା ବଢ଼ି ଯାଉଛି ଦକ୍ଷତା ବା inefficiency ବଢ଼ି ଯାଉଛି ସେ ବିଷୟରେ ଜନସାଧାରଣ ପ୍ରତି ପଦେ ପଦେ ବୁଝି ପାରୁଛନ୍ତି । ସେହି ବିଷୟ ବ୍ୟବସ୍ଥାପକ ପରିଷଦ ଆଲୋଚନା କରିବାକୁ ଗଲେ ହୁଏତ ଘଣ୍ଟା ଘଣ୍ଟା ଯାଇ ପାରେ । ସେଥିପାଇଁ ମୁଁ ସାମାନ୍ୟ କେତୋଟି ବିଷୟ ପ୍ରତି ଏ ବ୍ୟବସ୍ଥା ସଭାର ଦୃଷ୍ଟି ଆକର୍ଷଣ କରୁଛି ।

ପ୍ରଥମେ Public Service Commission ବିଷୟରେ ଦେଖାଯାଉ । ଆପଣ ଦେଖିବେ ସଂବିଧାନର ୩୨୩ (୨)ରେ ଅଛି । It shall be the duty of a STATE COMMISION to present annually to the Governor or Rajpramukh of the State a report as to the work done by the Commission, and it shall be the duty of a joint Commission, to present annually to the Governor or Rajpramukh of each of the States the needs of which are served by the Joint Commission a report as to the work done by the Commission in relation to that State, and in either case the Governor or Rajpramukh, as the case may be, shall, on receipt, of such a report, cause a copy thereof together with a memorandum explaining, as respects the cases, if any, where the advice of the Commission was not accepted, the reason for such non-acceptance to be laid before the Legislature of the State ଏଇଟା ଗୋଟିଏ Mandatory provision ଏବଂ ଆମ ସଂବିଧାନରେ କୁହାଯାଇଛି ଯେ ପ୍ରତିବର୍ଷ ବ୍ୟବସ୍ଥାପକ ସଭ୍ୟମାନଙ୍କ ଆଗରେ Public Service Commissionଙ୍କ report ପେଶ୍ କରିବାକୁ ହେବ । ଏହି ବର୍ଷ ମଧ୍ୟ ଆମେ ଆଶା କରିଥିଲୁ ଯେ ଆମର ମୁଖ୍ୟମନ୍ତ୍ରୀ ଏହି ବ୍ୟବସ୍ଥା ସଭାରେ ସେ report ପେଶ୍ କରିବେ । କିନ୍ତୁ ତା’ ବଦଳରେ He placed on the table a plate of rotten fish. Public Service Commissionଙ୍କ report ବଦଳରେ ଆମ ସାମନାରେ ପଚାସଢ଼ା ମାଛର ଗୋଟିଏ plate ବଢ଼ାଗଲା । ପଚା ମାଛ ବୋଲି କହୁଛି କାହିଁକି ନା ଏ ଯେଉଁ Public Service Commissionଙ୍କ report ବୋଲି କହି ଦିଆଯାଇଛି ତାହା ୧୩-୧୦-୧୯୫୨ ତାରିଖରେ କଟକରେ ଛପା ହୋଇଛି । ଏହା ପୂର୍ବ ବର୍ଷର report ଅର୍ଥାତ୍ ୧୯୫୦-୫୧ ତାହା ୫-୧-୧୯୫୨ରେ ଛପା ହୋଇଥିଲା ଏବଂ was placed on

our table on ୨୯-୫-୧୯୫୨ । ୧୯୫୩ ସାଲରେ କୌଣସି report ଦିଆଯାଇ ନାହିଁ । ଯେଉଁ report ୧୩-୧୦-୧୯୫୨ରେ ଛପା ହୋଇଥିଲ ଏବଂ ଯେଉଁଥିରେ କି କୌଣସି କମା ବା ପୂର୍ଣ୍ଣଚ୍ଛେଦ ପରିବର୍ତ୍ତନ କରଯାଇ ନାହିଁ ଏବଂ ଯାହା ଉପରେ କି ଏହି ବ୍ୟବସ୍ଥା ସଭର ବା ସରକାରଙ୍କର କିଛି ଟୀକାଟିପ୍ପଣୀ ଦିଆଯାଇ ନାହିଁ, ତାକୁ ପେଶ୍ କରଯାଇଛି ୧୭ ମାସ ପରେ ଅର୍ଥାତ୍ ୧-୩-୧୯୫୪ରେ । କଟକରୁ ଭୁବନେଶ୍ୱର ହେଉଛି ୧୭ ମାଇଲ ଏବଂ ଏହି ୧୭ ମାଇଲ ଆସିବାକୁ ଏହି reportକୁ ୧୭ ମାସ ଲଗିଲ । ମୁଁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ପଚ୍ଚରେ ଗତବର୍ଷ report କାହିଁକି ଦିଆଯାଇ ନାହିଁ । ମୁଁ ତାଙ୍କୁ ପଚ୍ଚରିବାକୁ ଚ୍ଚହେଁ ଯେ ୧୯୫୨-୫୩ ସାଲର report ଏପର୍ଯ୍ୟନ୍ତ ଏ ବ୍ୟବସ୍ଥାପକ ସଭରେ ଉପସ୍ଥାପିତ କରଯାଇ ନାହିଁ କାହିଁକି ? ମୁଁ ମୁଖ୍ୟମନ୍ତ୍ରୀଙ୍କୁ ପଚ୍ଚରେ ଆମର ସଂବିଧାନଗତ ଅଧିକାରରୁ ଆମକୁ ବଞ୍ଚିତ କରଯାଇଛି କାହିଁକି ? ମୁଁ ତାଙ୍କୁ ପଚ୍ଚରେ ଏ ଯେଉଁ ବଜେଟ ରିପୋଟ ପେଶ୍ କରଯାଇଛି is it not a violation of the Constitution ? ମୁଁ ତାଙ୍କୁ ପଚ୍ଚରେ is it not a contempt of the House ? ମୁଁ ତାଙ୍କୁ ପଚ୍ଚରେ ସେ କ'ଣ ଆମର Common sense ପରୀକ୍ଷା କରୁଥିଲେ ? or was he trying to pull our legs ? ମୁଁ ପଚ୍ଚରେ ଏହି ଶିଥିଳତା ଦୂର କରିବା ପାଇଁ ଏବଂ Public Service Commissionଙ୍କ ବିଷୟରେ ସଂବିଧାନରେ ଯାହା ବ୍ୟବସ୍ଥା ଅଛି ତାକୁ ପୂର୍ଣ୍ଣ କରିବା ପାଇଁ ଆମର କ'ଣ ଆହୁରି ଅଧିକ ମନ୍ତ୍ରୀ ଦରକାର, ସେକ୍ରେଟାରୀ ଦରକାର ? ସେହି ପ୍ରଶ୍ନଗୁଡ଼ିକର ଉତ୍ତର ମୁଁ ଚ୍ଚହୁଁଛି । I think, Sir, that the Chief Minister deserves severe censure of the house.

ଏ ତ ଗଲ Public Service Commission report ଉପସ୍ଥାପିତ କରିବା ବିଷୟରେ । ଯେଉଁ ବିଷୟରେ କି ସଂବିଧାନରେ ଏକ ସ୍ପଷ୍ଟ ନିୟମ ଅଛି ଏବଂ ଯେଉଁ ବିଷୟରେ ସରକାରଙ୍କୁ ମୋଟେ ପରିଶ୍ରମ କରିବାକୁ ପଡୁନାହିଁ । କେବଳ Government Pressରୁ ଛପାଇ କରି ୧୭ ମାଇଲ ଦୂରବର୍ତ୍ତୀ ବ୍ୟବସ୍ଥାପକ ସଭ ଆଗରେ ଉପସ୍ଥାପିତ କରିବାରେ କର୍ତ୍ତବ୍ୟ ଶେଷ ହେଉଛି । ସେଥିରେ ଯେତେବେଳେ ଏପରି ହେଉଛି ତାହାହେଲେ ଲେକେ କିପରି ଆଶା କରିବେ ଯେଉଁ ବିଷୟରେ ସରକାରଙ୍କର ଚିନ୍ତା ଦରକାର, ପରିଶ୍ରମ ଦରକାର, ବୁଦ୍ଧି ଦରକାର, ଯେଉଁ ବିଷୟରେ ହଜାର ହଜାର ଲକ୍ଷ ଲକ୍ଷ ଲେକଙ୍କର ଜୀବନ ମରଣ ସମସ୍ୟା ଜଡ଼ିତ, ଖାଦ୍ୟପେୟ ସମସ୍ୟା ଜଡ଼ିତ, ସେଥିରେ ତାଙ୍କର କର୍ତ୍ତବ୍ୟ ହାନି ଘଟୁ ନ ଥିବ, ଶିଥିଳତା ଆସୁ ନ ଥିବ । ଏ ବିଷୟରେ ଆପଣ ଚିନ୍ତା କରନ୍ତୁ, କଳ୍ପନା କରନ୍ତୁ । ଏ ହେଲ ଗୋଟିଏ ମାତ୍ର ଦୃଷ୍ଟାନ୍ତ । ପ୍ରତିଦିନ ପ୍ରତିବର୍ଷ ଏହିପରି ହଜାର ହଜାର ଦୃଷ୍ଟାନ୍ତ ଦେଖାଯାଉଛି । ଏ ବିଷୟରେ ପ୍ରଶ୍ନଛଳରେ, ସମାଲେଚନା ଛଳରେ ଅନେକ ପ୍ରଶ୍ନ ପଚରଯାଇଛି । କିନ୍ତୁ ତା'ର

ଉତ୍ତର ମିଳୁ ନାହିଁ । ଯେଉଁମାନେ pension ପାଇବାର ଆଶା କରିଥିଲେ ସେମାନେ ହୁଏତ ମରି ଯାଉଛନ୍ତି । ତାଙ୍କର ପିଲାପିଲିଙ୍କୁ ସେ ବିଷୟରେ ନିଷ୍ପତ୍ତି ଜଣାଇ ଦିଆ ଯାଉନାହିଁ । ଏ କେବଳ ଗୋଟିଏ ଦୁଇଟି ଉଦାହରଣ । ଏପରି ଆଉ ଗୋଟିଏ ଉଦାହରଣ ଦେଉଛି ଯାହାକୁ ବି ମୁଁ ଅଗେ ଲିଖଇଛି ସେ ହେଉଛି Public Accounts Committeeର କାର୍ଯ୍ୟ ଭାର । କିନ୍ତୁ ଉକ୍ତ Committeeର Chairmanଙ୍କ report ଯଦି ଦେଖିବା, ଏ ସବୁରେ ଆମେ Secretariatର inner working ବିଷୟରେ ସେଥିରୁ ସାମାନ୍ୟ ପରିମାଣରେ ଆଭାସ ପାଇବା । ମୁଁ ଯାହା ଦେଖିଛି ସେଥିରୁ ମୋର ଧାରଣା ହୋଇଛି ସେଠି ଆମର ଯେତେ ବିଶୃଙ୍ଖଳା ଅଛି, ଯେତେ ଦାୟିତ୍ୱହୀନତା ଅଛି ସେଥିପ୍ରତି ଯଦି ମାନ୍ୟବର ମନ୍ତ୍ରୀମାନଙ୍କର ଆଖି ନ ଖୋଲେ ତାହାହେଲେ ଆମର ଭବିଷ୍ୟତ ଘୋର ଅନ୍ଧକାର । କେବଳ ଗୋଟିଏ ଦୁଇଗୋଟି ଘଟଣା ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛୁ ।

Public Accounts Committeeର ବୈଠକ ଯେତେବେଳେ ପଡ଼ିଥିଲା ଏବଂ ଯେଉଁଥିରେ କି ପ୍ରତ୍ୟେକ Secretariat Head ମାନଙ୍କର ଉପସ୍ଥିତ ରହିବା ପାଇଁ କୁହାଯାଇ ଥାଏ ସେଥିରେ ଜଣେ Secretary ସେ ଯେପରି ଭାବରେ ଉତ୍ତର ଦେଇଥିଲେ ସେ ଉତ୍ତର ବ୍ୟବସ୍ଥା ସଭାରେ ଆଲୋଚନା କରିବାର ଯୋଗ୍ୟ ନୁହେଁ, ସେ ଉତ୍ତର ପ୍ରତି ମାନ୍ୟବର ବିଭାଗୀୟ ମନ୍ତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରୁଛି, ସେଟା ଦେଖିଲେ ସେ ବାସ୍ତବିକ ଦୁଃଖିତ ଏବଂ ଲଜ୍ଜିତ ହେବେ । ତା'ପରେ ଆଉ ଜଣେ Secretary ସେ ତହିଁରେ ଉପସ୍ଥିତ ଥିଲେ କିନ୍ତୁ ଅନ୍ୟଥର ତାଙ୍କୁ ଅନ୍ୟ ବିଷୟରେ ଯେତେବେଳେ explain କରିବା ପାଇଁ ଆବଶ୍ୟକ ପଡ଼ିଲା ସେ ନିଜେ ଉପସ୍ଥିତ ନ ହୋଇ ତାଙ୍କର 2 ଜଣ Assistantଙ୍କୁ ପଠାଇ ଦେଲେ ଏବଂ ସେମାନେ ତାଙ୍କ ମୁଣ୍ଡ ଏପରି ଭାବରେ କୁଣ୍ଡାଇଲେ ଯେ scratching of their hair was more eloquent than any possible explanation. ମୁଁ ଅବଶ୍ୟ Secreteriate ବା Departmental officer ମାନଙ୍କୁ condemn କରୁନାହିଁ । ମୁଁ କେବଳ ଦେଖାଇବାକୁ ଯାଉଛି ଏହି ଯେଉଁ laxity ଦେଖାଯାଉଛି ଏବଂ ଯାହା କି ବଢ଼ି ଚାଲିଛି ତାକୁ କିପରି ଭାବରେ tolerate କରାଯାଉଛି ଏବଂ ତାକୁ କିପରି ଭାବରେ ପ୍ରଶ୍ରୟ ଦିଆଯାଉଛି ଏହି ମନ୍ତ୍ରୀମଣ୍ଡଳଙ୍କଦ୍ୱାରା ।

ଅଧ୍ୟକ୍ଷ ମହାଶୟ, ପୂଜାରି ଯେତେବେଳେ ଦେବତାଙ୍କୁ ଭୋଗ ଦିଏ ସେ ଜାଣେଯେ ପଥରର ଦେବତା କେବେ କିଛି ଖାଆନ୍ତି ନାହିଁ ଏବଂ ସେଥିପାଇଁ ସେ ଦେବତାଙ୍କ ଆଗରେ ନାନାପ୍ରକାର ଭୋଗ ନୈବେଦ୍ୟ ସ୍ୱରୂପ ଦିଏ । ଯଦି ପୂଜାରି କେବେ ଜାଣନ୍ତା ଯେ ପଥରର ଦେବତା ମଧ୍ୟ ଖାଇବାକୁ ସକ୍ଷମ, ସେହି ଦିନଠାରୁ ପୂଜା, ଆରାଧନା ଭୋଗ ସବୁ ବନ୍ଦ ହୁଅନ୍ତା । ସେହିପରି ଆଜି ଏହି ବ୍ୟବସ୍ଥାପକ ସଭାର କାର୍ଯ୍ୟାବଳି ଦେଖି ମୋର ମନ ହେଉଛି ମୁଁ ଯଦି ଜଣେ Cartoonist ହୋଇଥାନ୍ତି, ମୁଁ ଗଣଦେବତାର

ପ୍ରତିନିଧି ସ୍ୱରୂପ ଏହି ବ୍ୟବସ୍ଥାପକ ସଭାକୁ ପ୍ରସ୍ତର ମୂର୍ତ୍ତି ସ୍ୱରୂପ ଚିତ୍ର କରନ୍ତି ଏବଂ ଏହି ମନ୍ତ୍ରୀମଣ୍ଡଳ ସେହି ଗଣଦେବତାକୁ ପୂଜାରି ରୂପରେ ନୁହେ କିପରି Grand Mogul ରୂପରେ ବ୍ୟବହାର କରୁଛନ୍ତି ସେହି ଚିତ୍ର ଅଙ୍କନ କରନ୍ତି ।

ଅଧ୍ୟକ୍ଷ ମହାଶୟ, ଏହି ବ୍ୟବସ୍ଥାପକ ସଭା ବିଷୟ ଟିକିଏ ଆଲୋଚନା କରିବାର କଥା । 1,47 ଲକ୍ଷ ଲୋକଙ୍କ ପ୍ରତିନିଧି ସ୍ୱରୂପ ଆମେ ଯେଉଁ 140 ଜଣ ପ୍ରତିନିଧି ଏ ଗୃହରେ ସମବେତ ହୋଇଛୁ ଆମରି ନାଁରେ ଆଜି ରାଜ୍ୟରେ ଶାସନ ଚାଲିଛି, କିନ୍ତୁ ମୁଁ ପଚାରେ ଏହି ବ୍ୟବସ୍ଥାପକ ସଭାରେ ଯେଉଁ ମତାମତ ପ୍ରକାଶିତ ହେଉଛି ତାକୁ କି ମୂଲ୍ୟ ଦିଆଯାଉଛି ? ଆପଣ ଦେଖିବେ ରାଜ୍ୟପାଳଙ୍କ ଭାଷଣ ଆଲୋଚନା ବେଳେ, ବଜେଟର ସାଧାରଣ ଆଲୋଚନା ବେଳେ ଏବଂ ଅନ୍ୟାନ୍ୟ Voting on demands for grantsର ଆଲୋଚନା ବେଳେ କେବଳ ଜଣେ ମାତ୍ର ବିଭାଗୀୟ ମନ୍ତ୍ରୀଙ୍କ ଛଡ଼ା ଅନ୍ୟ ମନ୍ତ୍ରୀମାନେ ଉପସ୍ଥିତ ରହୁ ନ ଥାନ୍ତି ଏବଂ ସେହି ଜଣେ ମନ୍ତ୍ରୀ ଯେ ଉପସ୍ଥିତ ରହନ୍ତି ତାହା କେବଳ ଶିଷ୍ଟାଚାର ଖାତିରିରେ, କେବଳ ଗୋଟିଏ ନିୟମ ଥିବା ଯୋଗୁ as they cannot place reliance on the report of our reporters. ସେତେବେଳେ ମୋ ମନରେ ଏହି ଭାବନା ଜନ୍ମେ, why should we not change our rules in order to enable our ministers to enjoy their mid-day siesta while the debate in this House is being carried on. ପ୍ରଶ୍ନ ଉତ୍ତର ବେଳେ କିପରି evasive reply ଦିଆଯାଉଛି ଏବଂ କିପରି ଦକ୍ଷତା ସହିତ ସତ୍ୟର ଅପଳାପ କରାଯାଉଛି, ପ୍ରଶ୍ନର ଉତ୍ତର କିପରି ଦିଆଯାଉ ନାହିଁ ଏବଂ କିପରି ମନ୍ତ୍ରୀମାନେ frankly refuse to answer a question ତା'ର ଉଦାହରଣ ମୁଁ ଆପଣଙ୍କୁ ଦେବାକୁ ଚାହୁଁ ନାହିଁ, କାରଣ ବ୍ୟବସ୍ଥାପକ ସଭାର ପ୍ରତ୍ୟେକ ମାନ୍ୟବର ସଭ୍ୟଙ୍କର ଏ ବିଷୟରେ ଭଲଭାବେ ଅନୁଭୂତି ଥିବ । ମୁଁ କେବଳ ଗୋଟିଏ ଘଟଣା ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ ଯାହାକି ଏହାର ଏକ ଜ୍ୱଳନ୍ତ ନିଦର୍ଶନ । ଗତ ମାର୍ଚ୍ଚ ୧୨ତାରିଖ, ୧୯୫୪ ଦିନ ଟିଟିଲାଗଡ଼ ମାନ୍ୟବର ସଭ୍ୟ ଶ୍ରୀ ରମେଶଚନ୍ଦ୍ର ଭୋଇ 741 ନମ୍ବର ପ୍ରଶ୍ନରେ ପଚାରିଥିଲେ, ବଲାଙ୍ଗିର ଜିଲ୍ଲା ଟିଟିଲାଗଡ଼ରୁ କଣ୍ଟାବାଞ୍ଜୀ ଭାୟା ସିନ୍ଧେକେଲା ଓ ବଙ୍ଗୋମୁଣ୍ଡା ରାସ୍ତାର ଅବସ୍ଥା ଭଲ କରିବାକୁ ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟରଙ୍କୁ ସରକାର ଆଦେଶ ଦେଇଥିଲେ କି ଓ କେବେ ଦେଇଥିଲେ ଏବଂ (ଖ) ଉପରୋକ୍ତ ପ୍ରଶ୍ନର ପ୍ରଥମାଂଶର ଉତ୍ତର ହଁ ହେଲେ ସୁପରିଣ୍ଟେଣ୍ଡିଂ-ଇଞ୍ଜିନିୟର ଏ ପର୍ଯ୍ୟନ୍ତ ଉକ୍ତ ରାସ୍ତା ସୁଧାରିବା ପାଇଁ କି କି ବ୍ୟବସ୍ଥା କରିଛନ୍ତି ?

ପ୍ରଥମ ପ୍ରଶ୍ନର ଉତ୍ତର ହେଲା ନାଁ ଏବଂ ଦ୍ୱିତୀୟ ପ୍ରଶ୍ନର ଉତ୍ତର ହେଲା ଏ ପ୍ରଶ୍ନ ଉଠୁନାହିଁ । ସେତେବେଳେ ଜଣେ ମାନ୍ୟବର ସଭ୍ୟ, ସେହି ମାନ୍ୟବର ସଭ୍ୟଙ୍କର ପୂର୍ବତନ ପ୍ରଶ୍ନର ଉତ୍ତର ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ ସେତେବେଳେ ମାନ୍ୟବର ବିଭାଗୀୟ ମନ୍ତ୍ରୀ କହିଲେ ନାଁ ଏ

ଗେଟ ସେ ଗେଟ ଏକା ନୁହେଁ । ତା'ପରେ ଯେତେବେଳେ ଏ ଗେଟ ଏବଂ ସେ ଗେଟର identity ବିଷୟରେ କୌଣସି ସନ୍ଦେହର ଅବକାଶ ଏ ଗୃହରେ ରହିଲନାହିଁ ସେତେବେଳେ କୁହାଗଲ ଯେ ଏ ଯେଉଁ ପ୍ରଶ୍ନ ହୋଇଛି ଏଇଟା improvement ସଂପର୍କରେ ଏବଂ ପୂର୍ବରୁ ଯେଉଁ ପ୍ରଶ୍ନ ପଗ୍ଭରିଥିଲେ ସେଇଟା ଥିଲ repair ସଂପର୍କରେ । ମୁଁ ମାନ୍ୟବର ମନ୍ତ୍ରୀମାନଙ୍କୁ, ଆପଣଙ୍କୁ ଏହି ବ୍ୟବସ୍ଥାପକ ସଭକୁ ଏବଂ Highest officers in the Department ସମସ୍ତଙ୍କୁ ପଗ୍ଭରିବାକୁ ଗ୍ଭହେଁ ଯେ ମାନ୍ୟବର ମନ୍ତ୍ରୀମାନେ କ'ଣ ଆଶା କରନ୍ତି ବ୍ୟବସ୍ଥାପକ ସଭର ପ୍ରତ୍ୟେକ ମାନ୍ୟବର ସଭ୍ୟ ଆଇନଷ୍ଟାଇନଙ୍କ ପରି ବୁଦ୍ଧିମାନ, ବିଦ୍ୱାନ ଏବଂ ସବୁ ବିଷୟରେ ପାରଙ୍ଗମ ହୋଇଥିବେ ଏବଂ ଏହିସବୁ improvement ଓ repair ମଧ୍ୟରେ ଯାହା distinction ସେଇଟ ସେମାନେ ଜାଣିବାକୁ ବାଧ୍ୟ ଏବଂ ସେ distioction ସେମାନେ ଯଦି ନ ଜାଣନ୍ତି ତାହାହେଲେ ସେମାନଙ୍କୁ ଉତ୍ତର ଦିଆଯିବ ନାହିଁ ? ଏ ସବୁ ଯାହା ହେଉଛି, it is a disgrace to this House ସେଥିପାଇଁ ମୁଁ ଆପଣଙ୍କୁ ଅନୁରୋଧ କରିବି ଯେ ଏହିଭଳି ଭ୍ରମାତ୍ମକ ଉତ୍ତର ଦେବା ଯେପରି ଭବିଷ୍ୟତରେ ବନ୍ଦ ହୁଏ । ଯଦି ଆମ ପକ୍ଷର ସଭ୍ୟମାନଙ୍କୁ ପ୍ରଶ୍ନ ପଗ୍ଭରିବାରୁ ବିରତ କରିବାର ଇଚ୍ଛାଥାଏ ତାହାହେଲେ ମୋ ମତରେ ସବୁଠାରୁ ଭଲ ଉପାୟ ହେଉଛି ଏହି ବ୍ୟବସ୍ଥାପକ ସଭ ବାହାରେ ଗୋଟିଏ noti e ମରାଯାଉ, Ask no question. You will be told no lies. ମୋର ପ୍ରଥମେ ଧାରଣା ଥିଲ ଯେ ମନ୍ତ୍ରୀମାନଙ୍କଠାରୁ ଉତ୍ତର ପାଇବା ବ୍ୟବସ୍ଥାପକ ସଭର ସଭ୍ୟ ହିସାବରେ ଆମର ଗୋଟିଏ ଅଧିକାର । କିନ୍ତୁ ମୋର ସେ ଧାରଣା ବଦଳି ଯାଇଛି । ବର୍ତ୍ତମାନ ମୋର ଧାରଣା ହେଉଛି ଯେ ଆମେ ଯେଉଁ ଉତ୍ତର ପାଉଛୁ ସେଟା ମନ୍ତ୍ରୀମାନଙ୍କ ଅନୁଗ୍ରହ । ବ୍ୟବସ୍ଥାପକ ସଭର ବିବରଣୀ ପ୍ରକାଶ ବିଷୟରେ ଏ ଗୃହରେ ବାରମ୍ବାର ଆଲୋଚନା ହୋଇଛି ଏବଂ ସେ ବିଷୟରେ ଯେତେ ବେଶୀ ଆଲୋଚନା ହେଉଛି ବିବରଣୀ ପ୍ରକାଶରେ ସେତିକି ବିଳମ୍ବ ଘଟୁଛି । କୌଣସି ପ୍ରଶ୍ନର ଉତ୍ତର ବା କୌଣସି ସଭ୍ୟଙ୍କର ବକ୍ତୃତା ଖୋଜିଲେ ଆମକୁ ଛପା ବିବରଣୀ ମିଳୁନାହିଁ । ଯାହାହେଉ ଆମ ବ୍ୟବହାରରେ ଆସି ନ ପାରିଲେ ମଧ୍ୟ ଆମର ଭବୀ ବଂଶଧରମାନଙ୍କ ବ୍ୟବହାରରେ ଯେପରି ଆସି ପାରିବ ଏବଂ ସେମାନେ ଯେପରି ଜାଣି ପାରିବେ, ସେଇ ଦୃଷ୍ଟିରୁ ମୁଁ ଆପଣଙ୍କୁ ଅନୁରୋଧ କରିବି ଯେ ଆମର ଯାହା Proceeding ସବୁ ଛପା ହେଉଛି ତା'ର କେତେଗୁଡ଼ିଏ କପି ଆମର State Archeological Sectionକୁ ପଠାଇଦେବା ଦରକାର । 50/100 ବର୍ଷ ପରେ ଆମର ଭବୀ ବଂଶଧରମାନଙ୍କ ମଧ୍ୟରୁ ଯେଉଁମାନେ ରାଜନୀତିକ ହିସାବରେ ଜନ୍ମ ଗ୍ରହଣ କରିବେ ସେମାନେ ଏହି ବ୍ୟବସ୍ଥା ସଭର ଯେଉଁ ବିବରଣୀ ହେଉଛି ତାକୁ ସେମାନେ ଅଧ୍ୟୟନ କରିବେ । କବି ରବିନ୍ଦ୍ରନାଥ ଯେପରି ତାଙ୍କ କବିତା 100 ବର୍ଷ ପରେ କିଏ ପଢ଼ିବେ ତାକୁ ଲକ୍ଷ୍ୟକରି କବିତା ଲେଖିଥିଲେ "ଆଜ ହତେ ଶତ ବର୍ଷ ପରେ" ମୁଁ ଯଦି କବି ହୋଇଥାନ୍ତି ମୁଁ ଆଜକୁ 100 ବର୍ଷ ପରେ ଯେଉଁ ରାଜନୀତିଜ୍ଞମାନେ ଏ ଦେଶରେ ଜନ୍ମ ଗ୍ରହଣ କରିବେ ସେମାନଙ୍କୁ

ଲକ୍ଷ୍ୟକରି ଏବଂ ଆମର ଏହି ବିବରଣୀ ପଢ଼ିବା ପାଇଁ ସେମାନଙ୍କୁ ଅନୁରୋଧ କରି ମୁଁ ଗୋଟିଏ କବିତା ଲେଖନ୍ତି ।

ତାପରେ ଆମର Estimates Committee, Standing Committee ପ୍ରଭୃତି ବିଭିନ୍ନ Committee ସବୁ ହେଉଛି, ଆପଣ ଦେଖିବେ either these Committees do not meet or if at all they meet their recommendations are ignored and placed in cold storage. ତାପରେ ଆଉ ଏକ ଆଶ୍ଚର୍ଯ୍ୟର କଥା ଯାହାକୁ କି ଆମେ ଗଣତନ୍ତ୍ର ରାଷ୍ଟ୍ରରେ ଲୋକପ୍ରତିନିଧି ଭାବରେ ସରକାର ଗଢୁଛୁ ବୋଲି ଗର୍ବ କରୁଥିଲେ ସୁଦ୍ଧା ଆମେ ଅନୁଭବ କରିପାରୁ ନାହୁଁ ବା ଯାହା ଆମେ ଉପଲବ୍ଧି କରିପାରୁ ନାହୁଁ ସେଇଟା ହେଉଛି ଏହିସବୁ ordinances ଗଣତାନ୍ତ୍ରିକ ଶାସନ ପଦ୍ଧତି ଯେଉଁଠାରେ ପ୍ରଚଳିତ ଅଛି ସେଠାରେ କି ପ୍ରକାର ବ୍ୟବସ୍ଥା ଅଛି ତାହା ଦେଖିବାକୁ ଗଲେ ଆମେ ଦେଖୁ ଯେ ଯଦି କୌଣସି emergency situation arise କରେ ଯାହା ଫଳରେ କି କୌଣସି ordinance କରିବା ଜରୁରୀ ଦରକାର ପଡେ ତାହାହେଲେ ବିଲାତରେ ସେଠାରେ ସରକାର 7 ଦିନ ଭିତରେ ତାଙ୍କ Parliament ଡାକିବାକୁ ବାଧ୍ୟ ଏବଂ ଫ୍ରାନ୍ସରେ ordinance ଜାରି କରିବାର 2 ଦିନ ମଧ୍ୟରେ Parliament ଡାକିବାକୁ ବାଧ୍ୟ, କିନ୍ତୁ ଆମ ଏଠାରେ ordinance ଜାରି କରିବାକୁ ହେବ ବୋଲି ବ୍ୟବସ୍ଥାପକ ସଭାକୁ Prorogue କରାଯାଉଛି ଏବଂ ସେଇଟାକୁ ଗୋଟାଏ ground ସ୍ୱରୂପ ଦିଆଯାଇ କୁହାଯାଉଛି ଯେ ଯେହେତୁ ଗୋଟିଏ ordinance ଜାରି କରିବା ଦରକାର ପଡ଼ିଲା ସେଥିପାଇଁ ବ୍ୟବସ୍ଥାପକ ସଭାକୁ Prorogue କରିବାକୁ ପଡ଼ିଲା ।

ତାପରେ ଏ ସଭରେ ଆଲୋଚନାର ସ୍ତର ବିଷୟରେ ମୁଁ ବିଶେଷ କିଛି କହିବି ନାହିଁ । କେବଳ ଗୋଟିଏ ବିଷୟ ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବି ଯେ ଆମର ଏଠି ଯେତେବେଳେ ପୋଲିସ ବଜେଟରେ ଆଲୋଚନା ଚାଲିଥିଲା ସେତେବେଳେ ବାଣପୁରର ମାନ୍ୟବର ସଭ୍ୟ ଯେ କେତେକ ବିଷୟ ଆଲୋଚନା କରିଥିଲେ ତନ୍ମଧ୍ୟରୁ ଗୋଟିଏ ବିଷୟ ହେଉଛି ଯେ ଏହି ପୋଲିସ କର୍ମଚାରୀମାନେ ଦୋଅକ୍ଷରି ଭାଷା ଏତେ ବହୁଳ ପରିମାଣରେ ବ୍ୟବହାର କରୁଛନ୍ତି କାହିଁକି ଏବଂ ଦେଶର ଜନସାଧାରଣଙ୍କ ସହିତ ବ୍ୟବହାରରେ ସେମାନେ ଶିଷ୍ଟତା ରକ୍ଷା କରୁନାହାନ୍ତି କାହିଁକି । ଘରୋଇ ବିଭାଗର (ଉପମନ୍ତ୍ରୀ) ଯେତେବେଳେ ତା'ର ଉତ୍ତର ଦେଲେ ସେ ଗୋଟିଏ ନମୁନା ଆଣି ଆମ ଆଗରେ ଥୋଇଲେ ଯେ ପୋଲିସବାଲାମାନେ ଦୋଅକ୍ଷରି ଶବ୍ଦ ବ୍ୟବହାର ନ କରି ମଧ୍ୟ କିପରି ଅସାଧୁତାର ଚରମ ସୀମାକୁ ଯାଇ ପାରନ୍ତି ଏବଂ ବ୍ୟବସ୍ଥା ସଭାର ବିରୁଦ୍ଧଦଳର ସଭ୍ୟମାନେ ଯେ କେବଳ ଏହା ଉପଲବ୍ଧି କରିଥିଲେ ତାହାନୁହେଁ ଟ୍ରେଜେରି ବେଞ୍ଚର ଅନେକ ସଭ୍ୟ ମଧ୍ୟ ଏଥିରେ କ୍ଷୁବ୍ଧ ହୋଇଥିଲେ । ତାହେଲେ ଏହାର ଉନ୍ନତି କ'ଣ

ଆମେ ଆଶା କରିବା ନାହିଁ, ଏବଂ ଏହିପରି ଭାବରେ ଆଉ କେତେଦିନ ଆମର standard of administration ଧୀରେ ଧୀରେ ତଳକୁ ଯିବାକୁ ଆମେ ଦେଉଥିବା ?

ତାପରେ ପବ୍ଲିକ୍ ସର୍ଭିସ କମିଶନର report ଏ ଗୃହରେ ଆଲୋଚିତ ହେବାର କଥା, କିନ୍ତୁ ସେ ବିଷୟରେ ଆଲୋଚନା କରି ମୁଁ ଏଗୃହର ବହୁମୂଲ୍ୟ ସମୟ ନଷ୍ଟ କରିବାକୁ ଚାହୁଁନାହିଁ । କାହିଁକିନା ଯେଉଁ report ପେଶ୍ କରାଯାଇଛି ସେଇଟା ଆମର କୌଣସି କାର୍ଯ୍ୟରେ ଆସିବ ନାହିଁ, ଯେହେତୁ ତାହା ଅତି ପୁରୁଣା । ପବ୍ଲିକ ସର୍ଭିସ କମିଶନ ଗୋଟିଏ consulting body ବା ପରାମର୍ଶଦାତା କମିଟି ତେଣୁ ସେ କମିଶନର ପରାମର୍ଶ ଗ୍ରହଣ ନ କଲେ କାହିଁକି ତାହା ଗ୍ରହଣ କରା ନ ଗଲା ତା'ର ଗୋଟିଏ କୈଫିୟତ ସରକାରଙ୍କୁ ଦେବାକୁ ହେବ । ତେଣୁ ମୁଁ ଭାବୁଛି ସରକାର ଗୋଟିଏ ନୀତି ଧରିଛନ୍ତି ପଙ୍କରେ ପଶିବା କାହିଁକି ଗୋଡ ଧୋଇବା କାହିଁକି ଏବଂ ସେଥିପାଇଁ without reference to the P. S. C. କେତେକ post create କରାଯାଉଛି fill up ମଧ୍ୟ କରାଯାଉଛି ଏବଂ ଏହି ବ୍ୟବସ୍ଥାପକ ସଭାରେ ଏ ବିଷୟରେ ବାରମ୍ବାର ଆଲୋଚନା ହେଲେ ସୁଦ୍ଧା କାହିଁକି ଯେ ବିହୀତ ବନ୍ଦୋବସ୍ତ କରାଯାଉ ନାହିଁ ତାହା ଆପଣ ବୁଝି ପାରୁଥିବେ । ଏହି ବ୍ୟବସ୍ଥାପକ ସଭାରେ କୁହାଯାଇଛି ଯେ କେତେକ ଯୋଗ୍ୟତାହୀନ ବ୍ୟକ୍ତିଙ୍କୁ ଉଚ୍ଚ ପଦବୀରେ ସମାସୀନ କରାଯାଇଛି ସେମାନଙ୍କୁ ଚାକିରିରୁ ତଡ଼ି ଦିଆଯିବ ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ): ଶେଷରେ P. S. C. ବିଷୟରେ କ'ଣ କହିଲେ କିଛି ବୁଝା ପଡ଼ିଲା ନାହିଁ ।

ଶ୍ରୀ ଶଦ୍ଧାକର ସୂପକାର: ମୁଁ କହିଥିଲି without reference to the P. S. C. କେତେଗୁଡ଼ିଏ Post create କରାଯାଇଛି ଏବଂ fill up ମଧ୍ୟ କରାଯାଇଛି । ତାପରେ କୌଣସି ଦୁର୍ନିତି ଅଭିଯୋଗରେ ଯେଉଁମାନଙ୍କୁ suspend କରି ରଖାଯାଇଛି ସେମାନଙ୍କ ବିଷୟ ଶୀଘ୍ର ନିଷତ୍ତି ନ ହେବା ଫଳରେ ସେମାନଙ୍କୁ ବେକାର କରି ରଖାଯାଇଛି । ସେମାନଙ୍କ ବିଷୟ ଯଦି ଶୀଘ୍ର ନିଷତି ହୁଅନ୍ତା ତାହାହେଲେ ହୁଏତ ସେମାନଙ୍କୁ ଚାକିରିରୁ ତଡ଼ି ଦିଆଯାନ୍ତା କିମ୍ବା reappoint କରାଯାନ୍ତା । କିନ୍ତୁ ଦୀର୍ଘ କାଳ ଧରି ସେମାନଙ୍କୁ ବେକାର କରି ରଖାଯାଇ ତାପରେ reappoint କରାଯାଉଛି । ଏଥିରେ କେବଳ ଯେ ସରକାରଙ୍କର ଅର୍ଥ ଶ୍ରାଦ୍ଧ ହେଉଛି ତାହା ନୁହେଁ ସେଇ ପ୍ରକାର ଅଫିସରମାନେ ପୁଣି ଚାକିରି ପାଉଥିବାରୁ ଆମର ଏ ରାଜ୍ୟ ସେମାନଙ୍କଠାରୁ କୌଣସି ଲାଭ ପାଇ ପାରୁନାହିଁ । ଆଉ ଗୋଟିଏ କଥା ମୁଁ ଉଦାହରଣ ସ୍ୱରୂପ କହୁଛି । ଆମର ଜଙ୍ଗଲ ବିଭାଗର 6 ଜଣ ଉଚ୍ଚପଦସ୍ଥ କର୍ମଚାରୀଙ୍କୁ ଜମିଦାରୀ ଉଚ୍ଛେଦ ସଂକ୍ରାନ୍ତୀୟ କ୍ଷତିପୂରଣ ଧାର୍ଯ୍ୟ କରିବାପାଇଁ ସ୍ୱତନ୍ତ୍ର ଅଫିସର ରୂପେ ନିଯୁକ୍ତ କରାଯାଇଛି । କିନ୍ତୁ ସେ 6 ଜଣଙ୍କୁ 6 ମାସ ହେଲା କୌଣସି କାମ ଦିଆଯାଇ ନାହିଁ କିମ୍ବା ଦରମା ଦିଆଯାଇ ନାହିଁ । ଜମିଦାରୀ ସିରସ୍ତାରେ

ଯେପରି କାମ ନ ଥାଏ ଏବଂ ଦରମା ନ ଥାଏ ସେହିପରି ସେମାନଙ୍କୁ ବ୍ୟବହାର କରାଯାଉଛି । ମୁଁ ଭାବୁଛି ଜମିଦାରୀ ସିରସ୍ତା ବାତାବରଣ ପ୍ରତି ସେମାନଙ୍କୁ ଅଭ୍ୟାସ କରିବାପାଇଁ ଏଟା ଗୋଟିଏ ପ୍ରାଥମିକ ସୋପାନ । Post ପାଇଁ ଅଫିସର ସୃଷ୍ଟି ନ କରି, ଅଫିସରଙ୍କ ପାଇଁ Post ସୃଷ୍ଟି କରିବା ଅଭିଯୋଗ ଅନେକ ଦେଖାଯାଉଛି । ସେଥିରେ ଅନ୍ୟତମ ଉଦାହରଣ ହେଉଛି The Principal of Police Training College of Angul. ଏଇଟା ଆବଶ୍ୟକ ଥିଲା କିନ୍ତୁ ବର୍ତ୍ତମାନ ଆମର M. A. Khan ଯେ କି D. I. G. ରୂପେ କାର୍ଯ୍ୟ କରୁଥିଲେ ପୁଣି ତାଙ୍କୁ ନେଇ ପୁଲିସ Training Collegeର Principal କରାଯାଇଛି । Mr. Khan ବର୍ତ୍ତମାନ D. I. G. ହେବା ଦ୍ୱାରା Mr. Ghose ହୁଏତ revert ହେବାର କଥା । କିନ୍ତୁ Mr. Ghoseଙ୍କୁ ସେ D. I. G. Postରେ ରଖି ଚତୁର୍ଥ D I. G.circle ସୃଷ୍ଟି କରିବାର ଜନରବ ଶୁଣାଯାଉଛି । ଏ ବିଷୟରେ ସତ୍ୟା ସତ୍ୟ ମନ୍ତ୍ରୀମାନେ କହିବେ । Estimate କମିଟି ରିପୋର୍ଟ ଏପର୍ଯ୍ୟନ୍ତ ଗ୍ରହଣ କରାଯାଇ ନାହିଁ । ମାନ୍ୟବର ପୁଲିସ ବିଭାଗର ଉପମନ୍ତ୍ରୀ ଯାହା କହିଲେ ସେଇଟା କେବଳ statistical ଦୃଷ୍ଟିକୋଣରୁ, ସଂଖ୍ୟାଧିକ ଦୃଷ୍ଟିକୋଣରୁ ଯଥାଯଥ ହୋଇ ପାରେ । ମୁଁ ଭାବୁଛି ଆମ ରାଜ୍ୟରେ ଶାନ୍ତିପୂର୍ଣ୍ଣ ବାତାବରଣ ଦୃଷ୍ଟିକୋଣରୁ ଏ କଥା କଦାପି ସମର୍ଥନ ହୋଇ ନ ପାରେ । ୟାକିରି ବାକିରି ପ୍ରସଙ୍ଗରେ ଅନେକ ଥର ଆଲୋଚନା ହୋଇଛି ଏବଂ ତାର ଉତ୍ତରରେ ମନ୍ତ୍ରୀ ଅନେକ ସମୟରେ କହିଛନ୍ତି ଯେ "I am Indian first and I am Indian last" ସେ ବିଷୟରେ ଯେତେବେଳେ ବକ୍ତୃତା ଦିଅନ୍ତି ସେତେବେଳେ ମୋର ମନେ ହୁଏ ଯେ ମୁଁ କରତାଳି ଦିଅନ୍ତି କିନ୍ତୁ ଅନ୍ତରରୁ କରତାଳି ଦେବାକୁ ଇଚ୍ଛା ହୁଏ ନାହିଁ, ସେଥିପାଇଁ ହାତ ବନ୍ଦ ହୋଇଥାଏ । ସେତେବେଳେ ମୁଁ ଭାବେ ଏହି ଯେଉଁ ଭାବନା ଏଟା ଗୋଟାଏ ଆତ୍ମ ପ୍ରତାରଣାର ନାମାନ୍ତର ନୁହେଁ କି ? ଆମେ ଯଦି ଆମର ଶିକ୍ଷିତ ସମାଜର ଭବିଷ୍ୟତ ପ୍ରତି ଦୃଷ୍ଟିପାତ କରୁ ତାହାହେଲେ ଦେଖିବା ଯେ ଆମର ସାମନାରେ କେତେ କ୍ଳେଶ କେତେ ନିର୍ଯ୍ୟାତନା ଅଛି, ସେ ବିଷୟରେ ହୁଏତ ମାନ୍ୟବର ମନ୍ତ୍ରୀମାନେ ବାଟ ପାଇ ନ ଥିବେ । କିନ୍ତୁ ଦେଶର ଜନସାଧାରଣ ବୁଝୁଛନ୍ତି ଏପରି କି Higher Technical College ମାନଙ୍କରେ ଆମର ଯେଉଁ ବହୁ ଛାତ୍ର ପାଠ ପଢୁଛନ୍ତି, ସେମାନଙ୍କୁ ଯଦି ପଚରାଯାଏ ତୁମର ଭବିଷ୍ୟତ ବିଷୟରେ ତୁମେ କ'ଣ ଆଶା କରୁଛ ; ସେମାନେ ହୁଏତ ସନ୍ତୋଷଜନକ ଉତ୍ତର ଦେଇ ପାରୁନାହାନ୍ତି । ତାପରେ ଆମର ଏ ବିଷୟରେ Planning for Employment କ'ଣ ସେ ବିଷୟରେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ମୁଁ ଦେବାକୁ ଚାହେଁ । କାରଣ ବେଶୀ ଦେଲେ ସମୟର ଅସଦ୍ ବ୍ୟବହାର ହେବ । କେବଳ ଉଦାହରଣ ସ୍ୱରୂପ ମୁଁ ଆପଣଙ୍କୁ କହୁଛି ଯେଉଁ Architectଙ୍କୁ ଆମ ରାଜ୍ୟରେ ରଖାଯାଇଛି ତାଙ୍କୁ ପ୍ରଥମରୁ contract basisରେ 5 ବର୍ଷ ପାଇଁ ଅଣାଗଲା । ଏ ମଧ୍ୟରେ ମୁଁ ମନ୍ତ୍ରୀ ମହାଶୟଙ୍କୁ ପଚାରିବାକୁ ଚାହେଁ, ସରକାର ଆମ ଏ ରାଜ୍ୟର graduates ମାନଙ୍କଦ୍ୱାରା

ସେ ସ୍ଥାନ ପରିପୂର୍ଣ୍ଣ କରିବା ପାଇଁ କୌଣସି ଚେଷ୍ଟା କରିଛନ୍ତି କି ? ଏବଂ ଚେଷ୍ଟା କରି ବିଫଳ ମନୋରଥ ହୋଇଛନ୍ତି କି ? ଯଦି ହୋଇଥାନ୍ତି ତାହାହେଲେ କ'ଣ ଏଇ କଥା ଆମକୁ ମାନି ନେବାକୁ ହେବ ଯେ ଓଡ଼ିଶାରେ ଏପରି କୌଣସି Engineer ନାହାନ୍ତି ଯାହାଙ୍କୁ କି ଏଥିପାଇଁ ଟ୍ରେନିଂକୁ ପଠାଇବା ଲାଗି ଯୋଗ୍ୟ ବୋଲି ବିବେଚିତ କରଯାଇ ପାରେ ।

ଶ୍ରୀ ଦୀନବନ୍ଧୁ ସାହୁ (ମନ୍ତ୍ରୀ) : ସେଇଟା Engineering କାମ ନୁହେଁ ।

ଶ୍ରୀ ଶ୍ରଦ୍ଧାକର ସୁପକାର : ମୁଁ କହୁଛି କୌଣସି ଲୋକ ବା ବ୍ୟକ୍ତି, ମୁଁ ଶୁଣିଲି ଏବଂ ଏଇ ବର୍ଷ Supplementary Budgetରେ ଦେଖିବାକୁ ପାଇଲି ଆମର ପଶ୍ଚିମବଙ୍ଗ ସରକାରଙ୍କଠାରୁ Mr. Vaj ଗୋଟିଏ Higher grade offer ପାଇଛନ୍ତି । ସେଥିପାଇଁ ତାଙ୍କୁ permanent କରଯାଇଛି । ସେହିପରି ଶୁଣାଯାଉଛି ଆମର Present Director of Industries, ସେ କୌଣସି ସରକାରଙ୍କଠାରୁ ମଧ୍ୟ Higher grade offer ପାଇଛନ୍ତି । ମୁଁ ଭାବୁଛି ଆମ ଦେଶ ବାହାରରୁ ଯେଉଁମାନେ ଚାକିରି offer ପାଉଛନ୍ତି, It shoud be treated as a steping-stone to Promotion in the State. ଆମେ ଯେ ବିଲ୍‌ଟି ପାସ କରିଦେଲେ ବ୍ୟବସ୍ଥାସଭର ସଦସ୍ୟମାନଙ୍କ କର୍ତ୍ତବ୍ୟ ଶେଷ ହେଲା ଧରଯାଇ ନ ପାରେ । ସେଇଟା ଆମର ଅତି ଗୌଣ ଦାୟିତ୍ୱ ମାତ୍ର । ଆମର ଅସଲ ଦାୟିତ୍ୱ ହେଉଛି ଯେ ଆମ ଦେଶକୁ କିପରି ଗଠନ କରିବା । ଆମର ଯେଉଁମାନେ ଭବିଷ୍ୟତ ବଂଶଧର ଅଛନ୍ତି, ଭବିଷ୍ୟତ ଛାତ୍ର ସମାଜ ଅଛନ୍ତି, ସେମାନେ କିପରି ଆମର ଦେଶ ସେବାରେ, ଆମର ଚାକିରୀ ବାକିରୀରେ ସେମାନଙ୍କର ସ୍ଥାନ କେଉଁଠି ଜାଣି ପାରିବେ । ସେ ସ୍ଥାନକୁ ପୂରଣ କରିବା ପାଇଁ ସେ ସ୍ଥାନ ଲାଗି ସେମାନଙ୍କୁ ପ୍ରସ୍ତୁତ କରିବା ଆମର ପ୍ରଧାନ ଏବଂ ପ୍ରଥମ ଦାୟିତ୍ୱ ଏବଂ ସେ ଦିଗରେ ଆମେ କ'ଣ କରିଛୁ ? ମୁଁ ଆଜି ମାନ୍ୟବର ମନ୍ତ୍ରୀମାନଙ୍କୁ ଜଣାଇ ଦେବାକୁ ଚାହେଁ ଯେ If we have done nothing to ensure a happy future for our future young men and if we have done nothing to ensure a happy future for the future generation to come what is the good of safeguarding our Present and what is the good of shaping our schemes. ଶାସନ ବିଭାଗର ଶିଥିଳତା ଦେଖା ଦେଇଥିବା ବିଷୟ ମୁଁ କେତୋଟି ମାତ୍ର ଉଦାହରଣ ଦେବି, କାରଣ ସମୟ ଅଭାବରୁ ଏଠାରେ ସବୁ ଉଦାହରଣ ଦେବା ସମ୍ଭବପର ନୁହେଁ । ଖଜୁରୀ ଗଛର ମୂଳରୁ ପ୍ରାହ୍ଲାଚ ପାହାଚ ବୋଲି ଯାହା କହନ୍ତି ସେ କଥା ଆଜି ଏଠାରେ ମୋର ମନେ ପଡୁଛି । ଆଜି ଆମର ଏଇ ଅବସ୍ଥା ସଙ୍ଗେ 5 ବର୍ଷ ତଳର ଅବସ୍ଥା ତୁଳନା କଲେ ଦେଖାଯିବ ପୂର୍ବେ ଆମର General Administration ବା ସାଧାରଣ ଶାସନର ଅବସ୍ଥା ଯାହା ଥିଲା ବର୍ତ୍ତମାନ ସେ ତୁଳନାରେ ଉନ୍ନତ ହୋଇନାହିଁ ବରଂ ଅଧୋଗତି ହୋଇଛି ।

ସେ ଅଧୋଗତିକୁ କିପରି ଭବରେ ବଦଳା ଯାଇ ପାରିବ ସେ ବିଷୟରେ ମନ୍ତ୍ରୀମାନେ ଯଦି ଚିନ୍ତା କରନ୍ତେ ତାହାହେଲେ ସେମାନେ ବୁଝି ପାରନ୍ତେ । ଆମର ଉପମନ୍ତ୍ରୀମାନଙ୍କ ଦରମା ଆଲୋଚନା ହେଉଥିବେଳେ ଆମର ମନ୍ତ୍ରୀ ମହାଶୟ ଯେଉଁ କଥା କହିଥିଲେ ଆଜି ସେ କଥାକୁ ମୁଁ ମନ୍ତ୍ରୀମାନଙ୍କୁ ମନେ ପକାଇ ଦେବାକୁ ଚାହେଁ ଯେ ଶାସନର ଉନ୍ନତି କରିବାକୁ ହେଲେ ଏବଂ ଦେଶକୁ ଅଗ୍ରସର କରିବାକୁ ହେଲେ ଯେଉଁ ପରିମାଣରେ ସାଧନା ଏବଂ ଯେଉଁ ପରିମାଣରେ କର୍ତ୍ତୃତ୍ୱ ଦରକାର ସେ ପରିମାଣ ସାଧନା ଏବଂ ସେ ପରିମାଣ କର୍ତ୍ତୃତ୍ୱ ଆମ ସରକାରଙ୍କର ଏବଂ ଆମର ମନ୍ତ୍ରୀଙ୍କର ଅଛି କି ? ହ୍ୟାମଲେଟ ଯେତେବେଳେ ଡେନମାର୍କ ଶାସନ କରୁଥିଲେ ସେ ଭବୁଥିଲେ to be or not to be ଏ କଥା ଆପଣ ଜାଣିଥିବେ । ସେତେବେଳର ଡେନ୍‌ମାର୍କର ଲୋକସାଧାରଣ କହୁଥିଲେ There is something rotton in the State of Denmark. ଆଜି ଆମ ରାଜ୍ୟରେ ମଧ୍ୟ ସେଇ to be not to be ଦ୍ୱନ୍ଦ୍ୱ ଏବଂ ଅନିଶ୍ଚିତ ଅବସ୍ଥା ସୃଷ୍ଟି ହୋଇଛି । ଏ ଅବସ୍ଥା ସୃଷ୍ଟି ହେବାରେ ସରକାରଙ୍କର କେତେଦୂର ଦାୟିତ୍ୱ ଅଛି ସେ ବିଷୟରେ ସରକାରଙ୍କର ଦୃଷ୍ଟି ଦେବା ଦରକାର ।

ତାପରେ ଶେଷରେ କହିବି ଆମର ମନ୍ତ୍ରୀମାନେ ଯେଉଁ ଅନ୍ୟାନ୍ୟ Stateମାନଙ୍କ ସଙ୍ଗରେ ଆମର ବଡ ବଡ ତୁଳନା ଦିଅନ୍ତି ସେ ବିଷୟରେ ମୁଁ କେବଳ ଏତିକି ମାତ୍ର କହି ଦେବାକୁ ଚାହେଁ ପ୍ରାଚୀନ ନିତିକାରମାନେ କହିଛନ୍ତି "ଅଧୋଽଧ୍ୟ ପଶ୍ୟତଃ କସ୍ୟ ମହିମା ନୋପଚୀୟତେ, ଉପର୍ଯ୍ୟୁପରି ପଶ୍ୟତଃ ସର୍ବା ଏବ ଦରିଦ୍ରତା" ଆମେ ଯଦି ତଳକୁ ଦେଖିବା ତାହାହେଲେ ଆମ ମନରେ ଗର୍ବ ବୃଦ୍ଧି ହେବ, ଅଭିମାନ ବୃଦ୍ଧି ହେବ । ଯଦି ଆମେ ଆମର ଉପରକୁ ଦେଖିବା ଯେଉଁମାନେ କି ଆମଠାରୁ ଆଗକୁ ଚାଲି ଯାଇଛନ୍ତି ଏବଂ ଯେଉଁମାନେ ଯୋଗ୍ୟ, ଉଦାର ଏବଂ ଯେଉଁ ରାଜ୍ୟରେ ଲୋକସାଧାରଣ ପାଇଁ ସାଧାରଣ ଶାସନ ପାଇଁ କ୍ଷିପ୍ର ଗତିରେ ଏବଂ ଅତି ମାତ୍ରାରେ ବଢି ଚାଲିଛି ସେ ଆଡକୁ ଦୃଷ୍ଟି ଫେରାଇଲେ ମୁଁ ବିଶ୍ୱାସ କରେ ଆମ ଦେଶ ଏବଂ ଆମ ରାଜ୍ୟ ମଧ୍ୟ ସେହିପରି ଅଗ୍ରସର ହେବ ।

## 1954-55 ବଜେଟ--ହୀରାକୁଦ ବନ୍ଧ ପ୍ରକଳ୍ପ ଖର୍ଚ୍ଚ ଦାବୀ

ଡକ୍‌ଟର ଶ୍ରଦ୍ଧାକର ସୁପକାର ହୀରାକୁଦ ବନ୍ଧ ଯୋଗୁଁ ଦୁର୍ଗତ ଓ ବାସ୍ତୁହରା ହୋଇଥିବା ବ୍ୟକ୍ତିମାନଙ୍କର ସମସ୍ୟା ସଂପର୍କରେ ତାଙ୍କ ଚିନ୍ତାଶୀଳ ଏବଂ କର୍ମମୟ ଜୀବନ ମଧ୍ୟରେ ଏହିଗୁଡ଼ିକର ସମାଧାନ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ସମଗ୍ର ବ୍ୟବସ୍ଥାପକ ଜୀବନ ଓ କାର୍ଯ୍ୟରେ ଏହି ସମସ୍ୟାଗୁଡ଼ିକ ବିଷୟରେ ସେ ସର୍ବଦା ନିଜର ଚିନ୍ତା ପ୍ରକାଶ କରିଛନ୍ତି ଏବଂ ସ୍ପଷ୍ଟ ଭବରେ ନିଜର ପରାମର୍ଶ ପ୍ରଦାନ କରିଛନ୍ତି । ସେ ତେଣୁ 1954 ମାର୍ଚ୍ଚ 24 ତାରିଖରେ ବିଧାନସଭରେ କହିଥିଲେ ଯେ ସବୁବର୍ଷ ପରି ସେ ଆଲୋଚନା

କରିବେ, ମାତ୍ର ତାର କିଛି ମୂଲ୍ୟ ରହୁନାହିଁ । ସୁତରାଂ ସେ ଆଉ ଆଲୋଚନା କରିବାରେ ଅଗ୍ରାହୀ ହୋଇନଥିଲେ "ଯେଉଁ ଆଲୋଚନା ହୋଇଛି ତାର କୌଣସି ଫଳ ହୋଇନାହିଁ ବୋଲି ମୁଁ ଉପଲବ୍ଧ କରୁଛି" । ସରକାର ବାରମ୍ବାର ପ୍ରତିଶ୍ରୁତି ଦେଇ ମଧ୍ୟ ଲୋକମାନଙ୍କର ଦୁଃଖ ଦୂର କରିବାରେ ଆନ୍ତରିକତା ପ୍ରକାଶ ପାଉନାହିଁ ବୋଲି ତାଙ୍କର ଦୁଃଖ । ତେବେ ସେ ଧୈର୍ଯ୍ୟର ସହିତ ବାରମ୍ବାର ଏ ବିଷୟ ବିଧାନସଭାରେ ଉତ୍‌ଥାପନ କରିଛନ୍ତି । କାରଣ " ସେମାନଙ୍କ ଜୀବନର କରୁଣ କାହାଣୀ ବିଷୟ ଆଜି ଏ ବ୍ୟବସ୍ଥା ସଭାରେ ଆଲୋଚନା କରିବା ପାଇଁ ମୋର ଇଚ୍ଛା । ମୁଁ ଦେଖାଇବାକୁ ଚେଷ୍ଟା କରିବି ଯେ ଆମର ଜନପ୍ରିୟ ସରକାର କିପରି ଏକ ବିସ୍ତୀର୍ଣ୍ଣ ଅଞ୍ଚଳର ଲୋକଙ୍କୁ ବଞ୍ଚିତ କରୁଛନ୍ତି ଏବଂ ପ୍ରବଞ୍ଚିତ ମଧ୍ୟ କରୁଛନ୍ତି " (ତା 24-3-1954 ) ।

"1954 ଏପ୍ରିଲ ପହିଲାରେ ମଧ୍ୟ ସେ କହିଛନ୍ତି ଯେ ସମ୍ବଲପୁରର ବହୁ ଜନସାଧାରଣ ମିଥ୍ୟା ପ୍ରବଞ୍ଚନାର ଶିକାର ହୋଇଛନ୍ତି । ପୃଥିବୀର ଆଦିମାନବ ଓ ମାନବୀ ପରି ସେମାନେ ଜ୍ଞାନ ବୃକ୍ଷର ଫଳ ଖାଇ ସ୍ୱର୍ଗରୁ ପତିତ ହୋଇଛନ୍ତି ହୀରାକୁଦ ବନ୍ଧର ଦୀର୍ଘ ଇତିହାସ ଉପରେ ସେ ଆଲୋକପାତ କରି କହିଛନ୍ତି । ସାର୍ବଜନୀନ ଦୃଷ୍ଟି କୋଣରୁ ସେ ସବୁ ବିଷୟ ପ୍ରତି ଆମର ମାନ୍ୟବର ମୁଖ୍ୟମନ୍ତ୍ରୀ ଏବଂ ସେଠାରେ ଯେଉଁ କର୍ମକର୍ତ୍ତା ଅଛନ୍ତି, ସେମାନେ ସଚେତନ ହେବେ ବୋଲି ମୁଁ ଆଶା କରୁଛି " ।

ଜୀବନସାରା ଏହି ଜ୍ୱଳନ୍ତ ସମସ୍ୟାରେ ସେ ଜର୍ଜରିତ ହୋଇଛନ୍ତି । ଏପର୍ଯ୍ୟନ୍ତ ମଧ୍ୟ ଏହି ସମସ୍ୟାର ସମାଧାନ ହୋଇନାହିଁ । ତେଣୁ ଚଳିତ ବର୍ଷ ତାଙ୍କର ଶ୍ରାଦ୍ଧ ଦିବସରେ କୁହାଯାଇଛି ସେ ହୀରାକୁଦ ସମସ୍ୟାର ସମାଧାନ ହୋଇପାରିଲେ ତାଙ୍କ ସ୍ମୃତି ପ୍ରତି ଯଥାର୍ଥ ସମ୍ମାନ ଦିଆଯାଇ ପାରିବ ।

Shri SHRADDHAKAR SUPAKAR :— ଅଧ୍ୟକ୍ଷ ମହାଶୟ, ଏହା ପୂର୍ବରୁ ବିଗତ ବର୍ଷମାନଙ୍କରେ ପ୍ରତିବର୍ଷ ଗତାନୁଗତିକ ଭାବରେ ହୀରାକୁଦ ବଜେଟର ଆଲୋଚନା ହୋଇ ଆସୁଛି ଏବଂ ଭବିଷ୍ୟତରେ ମଧ୍ୟ ହେବ । ବିଗତ ବର୍ଷମାନଙ୍କପରି ଏବର୍ଷ ମଧ୍ୟ ବକ୍ତୃତା ହେବ, ଆଲୋଚନା ହେବ, ପ୍ରଧାନମନ୍ତ୍ରୀ ମଧ୍ୟ ଉତ୍ତର ଦେବେ ଏବଂ ତାପରେ ହୀରାକୁଦ ବିଷୟରେ ଯାହାକିଛି କଥା ସମସ୍ତେ ଭୁଲିଯିବେ । କିନ୍ତୁ ଗତବର୍ଷମାନଙ୍କପରି ଏବର୍ଷ ଏଇ ବିଷୟରେ ଆଲୋଚନା କରିବାପାଇଁ ମୋର ଉତ୍ସାହ ହେଉ ନାହିଁ ଏବଂ ବକ୍ତୃତା ଦେବାପାଇଁ ମଧ୍ୟ ମୋର ଉତ୍ସାହ ହେଉ ନାହିଁ କାହିଁକି ନା ବର୍ଷ ବର୍ଷ ଧରି ଯେଉଁ ବକ୍ତୃତା ଏ ବିଷୟରେ ହୋଇଛି, ଯେଉଁ ଆଲୋଚନା ହେଉଛି ତାର କୌଣସି ଫଳ ହୋଇନାହିଁ ବୋଲି ମୁଁ ଉପଲବ୍ଧି କରୁଛି । ତଥାପି ଏହି ଆଲୋଚନାର କୌଣସି ଫଳ ନ ହେଲ ହୀରାକୁଦ ବିଷୟରେ, କ୍ଷତିପୂରଣ ବିଷୟରେ, ପୁନର୍ବସତି ବିଷୟରେ ସରକାରଙ୍କ ତରଫରୁ ଯେଉଁ ଅସତ୍ୟ ପ୍ରଚାର କରାଯାଇଛି ଏବଂ କରାଯାଉଛି ତହିଁର ପ୍ରତିବାଦସ୍ୱରୂପ କେତେକ କଥା ନ କହିଲେ ଚଳୁନାହିଁ । ଆସନ୍ତା ବର୍ଷ ଯେତେବେଳେ ହୀରାକୁଦ ବଜେଟ ଏହି ଗୃହରେ ଆଲୋଚନା ହେବ ସେ ସମୟରେ ପୂର୍ବ

ସମ୍ବଲପୁର ଜିଲ୍ଲାର ଏକ ସମୃଦ୍ଧିଶାଳୀ ଅଞ୍ଚଳରେ ଥିବା 14 ଖଣ୍ଡ ଗ୍ରାମ ହୀରାକୁଦରେ ବୁଡ଼ିଯିବ ଏବଂ ସେ ଅଞ୍ଚଳର ଲୋକମାନେ ନିଃସହାୟ, ନିରତିଶୟ ହେବେ ଏବଂ ସେମାନେ ବାସ ଗ୍ରାମଶୂନ୍ୟ ହେବାକୁ ପଡ଼ିବ । ଭଗବାନ ନ କରନ୍ତୁ ସେ ଅଞ୍ଚଳ ଦୁର୍ଦ୍ଦଶା ଏ ରାଜ୍ୟର ଅନ୍ୟ କୌଣସି ଅଞ୍ଚଳର ଲୋକଙ୍କୁ ଗ୍ରାସ ନ କରୁ । ସେମାନଙ୍କ ଜୀବନର କରୁଣ କାହାଣୀ ବିଷୟ ଆଜି ଏ ବ୍ୟବସ୍ଥା ସଭରେ ଆଲୋଚନା କରିବାପାଇଁ ମୋର ଇଚ୍ଛା । ମୁଁ ଦେଖାଇବାକୁ ଚେଷ୍ଟା କରିବି ଯେ, ଆମର ଜନପ୍ରିୟ ସରକାର କିପରି ଏକ ବିସ୍ତୀର୍ଣ୍ଣ ଅଞ୍ଚଳର ଲୋକଙ୍କୁ ବଞ୍ଚିତ କରୁଛନ୍ତି ଏବଂ ପ୍ରବଞ୍ଚିତ ମଧ୍ୟ କରୁଛନ୍ତି । କିନ୍ତୁ ତା ପୂର୍ବରୁ ହୀରାକୁଦ କାର୍ଯ୍ୟକ୍ରମ ବିଷୟରେ କେତେକ କଥା ମୁଁ କହିବାକୁ ଚାହେଁ ।

ହୀରାକୁଦ ଯୋଜନା ଭିତ୍ତି ଯେତେବେଳେ 1946 ସାଲ ମାର୍ଚ୍ଚ 15 ତାରିଖରେ ସ୍ଥାପନ ହେଲା ସେତେବେଳେ ଆମ୍ଭମାନଙ୍କୁ କୁହାଯାଇଥିଲା ଯେ 1951 ସାଲ ମଧ୍ୟରେ ଏହା ଶେଷ ହୋଇଯିବ ଏବଂ ଏଥିରେ 47 କୋଟି 81 ଲକ୍ଷ ଟଙ୍କା ଖର୍ଚ୍ଚ ହେବ । କିନ୍ତୁ ତା'ର କାର୍ଯ୍ୟକାରୀ କରିବା ସଙ୍ଗେ ସଙ୍ଗେ ଟଙ୍କା ଏବଂ ସମୟ ଯଥେଷ୍ଟ ନୁହେଁ ବୋଲି କୁହାଗଲା । ତା'ପରେ ଏ ଉଭୟକୁ ଏପରି ଅନିର୍ଦ୍ଦିଷ୍ଟ ଭାବରେ ବଢ଼ାଇ ଦିଆଯାଉଛି ଯେ ମହାନଦୀର ବଢ଼ିପରି ଏହା ବଢୁଛି । 1952 ମାର୍ଚ୍ଚରେ ଏହା 47 କୋଟି 81 ଲକ୍ଷ ହେବା ବଦଳରେ 92 କୋଟି 8 ଲକ୍ଷକୁ ଉଠିଲା । ଏଇ ସମୟରୁ ଏଇ ଅଟକଳ ଆହୁରି ବଢ଼ିବାର ସମ୍ଭାବନା ଥିବାରୁ ଏଇ ସଂଖ୍ୟା ଯେପରି ଲୋକଙ୍କ ମନରେ ଆତଙ୍କ ସୃଷ୍ଟି ନ କରେ ସେଥିପାଇଁ ଅଟକଳକୁ ମୋଟରେ 2/3 ଭାଗରେ ବିଭକ୍ତ କରାଗଲା । ପ୍ରଥମ Stageରେ 61 କୋଟି 24 ଲକ୍ଷ କରାଗଲା । ବର୍ତ୍ତମାନ ଆମ ସମ୍ମୁଖରେ ଏ First stage ବିଷୟରେ ଗୋଟିଏ ରିପୋର୍ଟ ପେଶ୍ କରାଯାଇଛି, ଯେଉଁ ବିଷୟରେକି ହୁଏତ ଆମ୍ଭେମାନେ ପ୍ରଥମ ଏପ୍ରିଲ 1954 ଦିନ ଆଲୋଚନା କରିପାରିବା ବୋଲି ଜଣା ପଡୁଛି । ସେଥିରୁ ଜଣା ପଡୁଛି ଏହି First Stage ରେ ମୋଟ 70 କୋଟି ହେବ । ଖର୍ଚ୍ଚ ଛଡ଼ା ସମୟ ଦୃଷ୍ଟିରୁ ଯଦି ଦେଖାଯାଏ, ତାହାହେଲେ ଦେଖା ଯିବ ଯେ 1952 ରେ କୁହାଯାଇଥିଲା ଯେ 1955 ଜୁନ ମଧ୍ୟରେ ଶେଷ ହେବ । ଠିକ୍ ବର୍ଷକ ପରେ ମଧ୍ୟ କୁହାହୋଇଥିଲା ଯେ 1954 ଜୁନ୍ ମଧ୍ୟରେ ଶେଷ ହେବ କିନ୍ତୁ ଏବର୍ଷ କୁହାଯାଉଛି ଯେ 1956 ଜୁନ୍‌ରେ ଶେଷ ହେବ । ମୁଁ ଆପଣଙ୍କୁ କହିଥିଲି ମରୁଭୂମିରେ ମରିଚିକା ଭ୍ରାନ୍ତ ପଥିକ ଯେପରି ଯେତେଦୂର ଅଗ୍ରସର ହେଲେ ମଧ୍ୟ ପୁଷ୍କରିଣୀ ତାକୁ ଠିକ୍ ସମାନ ଦୂରରେ ଦେଖାଯାଏ, ସେହିପରି ଆମେ ଯେତେଦୂର ଅଗ୍ରସର ହେଲେ ମଧ୍ୟ ପଦ୍ମ ସେତିକି ଘୁଞ୍ଚି ଘୁଞ୍ଚି ଯାଉଛି ଏବଂ ହୀରାକୁଦ ଯୋଜନା ଶେଷ ହେବା ଦିନ ଆମଠାରୁ ସେତିକି ଦୂରରୁ ଦୂରକୁ ଚାଲି ଯାଉଛି । ଏ ବିଷୟରେ ସମୟପାଇଁ ଆମେ ଏତେ ବ୍ୟସ୍ତ ହେବା କାହିଁକି ବୋଲି କୁହାଯାଇପାରେ କିନ୍ତୁ ଟିକିଏ ଲକ୍ଷ୍ୟ କରିବାର କଥା । ଆମର ସମୟ ଯେମିତି ଗଡ଼ି ଯାଉଛି ଆମର Establishment ଖର୍ଚ୍ଚ ମଧ୍ୟ ସେହିପରି ବଢ଼ି ଚାଲିଛି । ଆମର ଏଇବର୍ଷ ବଜେଟରେ ଦେଖିବେ 1652-53 ଶେଷସୁଦ୍ଧା ଆମର ସର୍ବମୋଟ ଖର୍ଚ୍ଚ ହୋଇଥିଲା 22 କୋଟି 29 ଲକ୍ଷ 61 ହଜାର 213 ଏବଂ ସୁଧ ସ୍ୱରୂପ

1,47,18,963 ଟଙ୍କା ପରି ସର୍ବମୋଟ 23,76, 81,176 ଟଙ୍କା ଖର୍ଚ୍ଚ ହୋଇଛି । ଏଥିମଧ୍ୟରୁ Establishment ଖର୍ଚ୍ଚ ବାବଦକୁ ୮,13,93,168ଙ୍କା ଖର୍ଚ୍ଚ ହୋଇଛି । ପ୍ରତିବର୍ଷ ଏପରି ପ୍ରାୟ 40 ଲକ୍ଷ ଟଙ୍କା Establishment ଖର୍ଚ୍ଚ ବାବଦକୁ ଯାଉଛି । ତେଣୁ ଗତବର୍ଷ ମୂଳ ସୁଦ୍ଧା 1953 ଏପ୍ରିଲ ପର୍ଯ୍ୟନ୍ତ ମୂଳ ଅଟକଳ ଅର୍ଥାତ୍ 1947 Estimate ଅଧାଅଧି ଦିଆହୋଇ ସାରିଲେ ମଧ୍ୟ ଏବଂ କାମ ଖୁବ୍ କମ୍ ହୋଇଛି ଏହା କରିବା ବାହୁଲ୍ୟ ମାତ୍ର । ଯେତେବେଳେ କାମ ଆରମ୍ଭ ହୋଇଥିଲା ସେତେବେଳେ ଆମକୁ କୁହା ଯାଇଥିଲା ଯେ ଆମର ଯେତେବେଳେ ପର୍ଯ୍ୟନ୍ତ Production ନ ହୋଇଛି ଏବଂ ଯେତେବେଳ ପର୍ଯ୍ୟନ୍ତ ଆମେ ଏଥିରୁ ଲାଭ ନ ପାଇଛୁ ସେତେବେଳ ପର୍ଯ୍ୟନ୍ତ ଆମକୁ ଏହା ଉପରେ କୌଣସି ପରିଶୋଧ କରିବାପାଇଁ ହେବ ନାହିଁ ଏବଂ ଏ ବିଷୟରେ କୌଣସି ଚିନ୍ତା କରିବାର ଦରକାର ନାହିଁ । ସେ ସମୟରେ ବ୍ୟଙ୍ଗ କରି କୁହା ଯାଇଥିଲା ଯଦି ଆମେ ଟଙ୍କା ଦେବାପାଇଁ ଅସମର୍ଥ ହେଉ ତାହାହେଲେ କେନ୍ଦ୍ର ସରକାର କ'ଣ ଆମ ଓଡ଼ିଶାକୁ ନିଲାମ କରି ନେବେ ? କିନ୍ତୁ ବର୍ତ୍ତମାନ ଆମର ପ୍ରକୃତ ପରିସ୍ଥିତି ବିଷୟରେ ସଚେତନ ହେବାକୁ ହେଲେ, ଆମେ ବୁଝିପାରୁଛୁ ଏହା ଯେତେବେଳେ ସରିବ ଏ ବିଷୟରେ ଯେତେଦୂର କମ୍ ଖର୍ଚ୍ଚ ହୋଇପାରେ ସେତିକି ଖର୍ଚ୍ଚ କରିବାରେ ପ୍ରୟୋଜନୀୟତା ବେଡେ ବେଶୀ । ଏ ସବୁ Technical ବିଷୟ; Betterment levy, Water rate ଇତ୍ୟାଦି ବିଷୟରେ ଆଲୋଚନା କରିବାର ଅବକାଶ ଆଉ ଦିନେ ସୁଯୋଗ ମିଳିବ, ତେଣୁ ଏ ବିଷୟରେ ଆଉ ବିଶେଷ କିଛି କହୁନାହିଁ । ହୀରାକୁଦ ଯୋଜନା ବିଷୟରେ ଗୋଟିଏ ବିଶେଷ ଉଲ୍ଲେଖଯୋଗ୍ୟ କଥା ହେଉଛି ଯଦିଓ ଏହା ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ବା କଟକଠାରୁ ପ୍ରାୟ 200 ମାଇଲ ଦୂରରେ ହେଉଛି, ତଥାପି ଏହାର ପ୍ରାଦେଶିକ କର୍ତ୍ତୃତ୍ୱ ହେଉଛି River Valley Development Department ଯାହାର ଅଫିସ୍ କି କଟକରେ । ଏହାର Secretariat ଓ ବିଭାଗୀୟ ମନ୍ତ୍ରୀ ରହିଛନ୍ତି କଟକରେ ବା ଭୁବନେଶ୍ୱରରେ, କାମ ହେଉଛି ହୀରାକୁଦରେ, ଦୂର ପର୍ବତ ସୁନ୍ଦର ଦିଶେ ବୋଲି ଗୋଟିଏ କଥା ଅଛି । ସେହି କଥାକୁ ଲକ୍ଷ୍ୟକରି ବୋଧହୁଏ ଏହି ଡିପାର୍ଟମେଣ୍ଟ କଟକରେ ରଖାଯାଇଛି, ଯେପରିକି ହୀରାକୁଦରେ ଯାହାଯାହା ଘଟୁଛି, ତା'ର ଦୋଷ ତ୍ରୁଟି ଯାହା ଅଛି ତାହା ଦେଖାଯିବ ନାହିଁ, କେବଳ ତା'ର ସୌନ୍ଦର୍ଯ୍ୟ ଆମ୍ଭେମାନେ ଦେଖିପାରିବା । ଅବଶ୍ୟ ଏ ବିଷୟରେ କୁହାଯାଇପାରେ ଯେ ସେଠି ଆମର ଜଣେ ସ୍ଥାନୀୟ ଉଚ୍ଚତମ କର୍ମଚାରୀ—Mr. Sivaraman ଅଛନ୍ତି ଏବଂ ଏହା ମଧ୍ୟ କୁହାଯାଇପାରେ ଯେ ଯେଉଁ Control Board ଗୋଟିଏ ସେଠି କରାଯାଇଛି ତା'ର Chairman ହେଉଛନ୍ତି ଆମର ମୁଖ୍ୟମନ୍ତ୍ରୀ, କିନ୍ତୁ ଏହି ଯେଉଁ Control Board ହୋଇଛି ତା'ର ଉପାଦେୟତା ଏବଂ କାର୍ଯ୍ୟକାରୀତା ବିଷୟରେ ଟିକିଏ ଆତ୍ମପରୀକ୍ଷା କରିବା ଦରକାର ବିଶେଷତଃ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କଦ୍ୱାରା ଏ ବିଷୟରେ Control Board ନେଇ ବିଶେଷ କିଛି ଆଲୋଚନା କରିବାକୁ ମୁଁ ଯାଉନାହିଁ । କେବଳ ଭାତହାଣ୍ଡିରୁ ଗୋଟିଏ ଭାତ ଚିପିଲାପରି ଗୋଟିଏ ବିଷୟପ୍ରତି ମୁଁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ଏବଂ ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି । ହୀରାକୁଦ ବନ୍ଧ ଯୋଜନାପାଇଁ ଜଣେ Labour Welfare Officer

ଦରକାର ପଡ଼ିଲେ ଏବଂ Control Board ପ୍ରାର୍ଥୀମାନଙ୍କୁ interview କରି ଜଣେ Candidate କୁ ବାଛିଲେ । ତାଙ୍କ ନାମ ହେଉଛି ସୋମନାଥ ସାହୁ, ସେ ଜଣେ Commerce Graduate. Labour Welfare ବିଷୟରେ Tata Institute of Social Sceince ରେ ସେ ଅଢେଇ ବର୍ଷକାଳ ଟ୍ରେନିଂ ପାଇଥିଲେ । ତାଙ୍କର ଅନ୍ୟାନ୍ୟ ସବୁ ଯୋଗ୍ୟତା ଥିଲା କିନ୍ତୁ ତାଙ୍କର ଗୋଟିଏ ପ୍ରଧାନ ଅଯୋଗ୍ୟତା ହେଉଛି ଯେ ସେ ଜଣେ ଓଡ଼ିଆ, ସେ ଓଡ଼ିଶାର ଲୋକ ଏବଂ ସେ ସମ୍ବଲପୁରର ଅଧିବାସୀ, Control Board ତାଙ୍କ ନାମ ସୁପାରିସ୍ କରିଥିଲେ ଏବଂ ତାଙ୍କୁ appointment କରିବାପାଇଁ reccmmendation ଦେଇଥିଲେ । ତଥାପି ସୁଦ୍ଧା Central Water and Power Commission ସେହି recommendation କୁ ଅବଜ୍ଞାକରି ଶ୍ରୀ ଜୟମଙ୍ଗଳ ସିଂହ ନାମକ ଜଣେ ବ୍ୟକ୍ତିଙ୍କୁ Labour Welfare Officer ଭାବେ ନିଯୁକ୍ତ କଲେ ଯେକି ହୀରାକୁଦରେ ପ୍ରଚଳିତ ମୁଖ୍ୟ ଭାଷା ତେଲୁଗୁ, ତାମିଲ ବା ଓଡ଼ିଆ ଏ ତିନି ଭାଷାରୁ କୌଣସି ଭାଷା ଜାଣନ୍ତି ନାହିଁ । ଏଇ ଅଫିସର ନିଯୁକ୍ତି ଯଦି କେନ୍ଦ୍ର ସରକାରଙ୍କ ଅଧୀନରେ ହେବାର କଥା ତାହାହେଲେ ସେଟା Union Public Service Commission କରିଥାନ୍ତେ । ତାହା ନ ହେଲେ Central Government ଙ୍କ Labour Department କରିଥାନ୍ତେ, କିନ୍ତୁ ଏ ବିଷୟରେ Union Public Service Commission ଙ୍କ refer ନକରି କିମ୍ବା Central Government ଙ୍କ Labour Department କୁ refer ନ କରି Central Water and Power Commission ଶ୍ରୀ ଜୟମଙ୍ଗଳ ସିଂହଙ୍କୁ ନିଯୁକ୍ତ କଲେ ଏବଂ Control Board ଯାହାଙ୍କୁ recommend କରିଥିଲେ ତାଙ୍କ recommendation କୁ ଅବଜ୍ଞା କରାଗଲା । Control Board ନାମରେ ଯେ ଏହିପରି କେତେ କଥା ଉଠୁଛି, ଭଣ୍ଡାରି ମୁଣ୍ଡରେ ଅଠା ବୋଳିଦେଇ କେତେ କାମ ହୋଇଯାଉଛି ତା'ର କୌଣସି ଠିକଣା ନାହିଁ । ଆମର ମୁଖ୍ୟମନ୍ତ୍ରୀ Control Board ର Chairman, ସେ ଅଞ୍ଚଳ ଶାସନଠାରୁ ଆରମ୍ଭକରି ପୁଲିସ-ଶାସନ ପର୍ଯ୍ୟନ୍ତ ରାଜ୍ୟର ସମସ୍ତ ଦାୟିତ୍ୱ ମୁଣ୍ଡାଇଛନ୍ତି ଯେପରି କି ଏଟ୍‌ଲାସ (Atlas) ଅସୁର ପୃଥିବୀ ଯାକର ସମଗ୍ର ଭାର ତାଙ୍କ ମୁଣ୍ଡରେ ମୁଣ୍ଡାଇଥିଲେ । ତେଣୁ ସେଠାରେ ଯାହା ହେଉଛି ସେସବୁ ବିଷୟରେ ବୁଝିବା ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ପକ୍ଷରେ ସମ୍ଭବନୁହେଁ । ଗତବର୍ଷ ଏହି ଗୃହର ଯେଉଁ M. L. A. ମାନେ ହୀରାକୁଦ ଦେଖିବାପାଇଁ ଯାଇଥିଲେ ସେମାନେ ଗୋଟିଏ reccmmendation କରିଥିଲେ ଯେ ଜଣେ ମନ୍ତ୍ରୀ ହୀରାକୁଦରେ posted ହେବା ଦରକାର ; କିନ୍ତୁ ତାଙ୍କର recommendation ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇନାହିଁ । ମୁଁ ଭାବୁଛି ତା'ର କାରଣ ହେଉଛି ଆମର ଯଥେଷ୍ଟ ସଂଖ୍ୟାରେ ମନ୍ତ୍ରୀ ନାହାନ୍ତି । ବର୍ତ୍ତମାନ ହୀରାକୁଦ ବୁଡ଼ି ଅଞ୍ଚଳ ଲୋକଙ୍କ କରୁଣ କାହାଣୀ ବିଷୟରେ କହିବି ।

ପ୍ରାଚୀନକାଳରେ ଯେଉଁ ରାଜାମାନେ ଯେଉଁ ଶାସକମାନେ ଥିଲେ ସେମାନେ କୌଣସି ଲୋକଙ୍କୁ ଦଣ୍ଡ ଦେବା ପାଇଁ ଇଚ୍ଛା କରୁଥିଲେ ସେ ଲୋକମାନେ ଜୀଇଥିବା ଅବସ୍ଥାରେ ତାଙ୍କଠାରୁ ଚମଡ଼ା ଉତାରି ନେଉଥିଲେ ।

ବର୍ତ୍ତମାନ ସଭ୍ୟତାର ପ୍ରଗତି ଏତେଦୂର ଆଗେଇଛି ଯେ ଏ ପ୍ରକାର ବ୍ୟବହାର ବର୍ତ୍ତମାନ ଯଦି କରୁଛନ୍ତି ତାହାହେଲେ ତାକୁ ବର୍ବରତା ବୋଲି କହୁଛନ୍ତି । ବର୍ତ୍ତମାନ ସଭ୍ୟନୀତି ହେଉଛି ହାତରେ ନ ମାରି ଭାତରେ ମାରିବା । ଏଇଟା ହେଉଛି ବର୍ତ୍ତମାନ ଯୁଗର ପ୍ରତିଷ୍ଠିତ ନୀତି । କାହିଁକିନା ବର୍ତ୍ତମାନ ସାମାନ୍ୟ ଲଠିମାଡ଼ ହେଲେ, ସାମାନ୍ୟ ଗୁଳିକାଣ୍ଡ ହେଲେ, ତାହା ଘରିଆଡ଼େ ଖବର କାଗଜରେ ପ୍ରକାଶିତ ହେଉଛି ଏବଂ ଲୋକମାନଙ୍କ ମନରେ ଗୃଞ୍ଚଲ୍ୟ ସୃଷ୍ଟି କରୁଛି, ଉତ୍ତେଜନା ସୃଷ୍ଟି କରୁଛି । କିନ୍ତୁ ଲୋକଙ୍କୁ ମାସେଖଣ୍ଡେ ଖାଇବାକୁ ନ ଦିଆଯାଏ ଏବଂ ସେଥିରେ ତା'ର ଜୀବନ ବାହାରିଯାଏ ତାହାହେଲେ କେହି ଜାଣିପାରିବେ ନାହିଁ । ଲୋକେ ଭାବନ୍ତି ଭାରତବର୍ଷ ଗରିବ ଦେଶ, ଏତେ ଜନ ସଂଖ୍ୟା ବେଶୀ ହୋଇଛି ଯେ ସେହି ଜନସଂଖ୍ୟା ସମସ୍ୟାର ସମାଧାନ କରିବା ପାଇଁ ଏହା କରାଯାଇଛି । ଆଜି ସମ୍ବଲପୁରରେ ହଜାର ହଜାର ଲୋକଙ୍କୁ ବାସହୀନ, ନିରାଶ୍ରୟ କରିଛନ୍ତି, ତାହା ଗୁରୁତ୍ୱରେ, ବର୍ବରତାରେ ଏବଂ ନିର୍ମମତାରେ--ଲଠିମାଡ଼, ଗୁଳିମାଡ଼ ଏବଂ ଯେଉଁ ଚମଡ଼ା ଉତାରିବାଠୁଁ କୌଣସି ଗୁଣରେ କମ୍ ନୁହେଁ । କିନ୍ତୁ ଲୋକେ ବୁଝିପାରୁ ନାହାନ୍ତି, ଜାଣିପାରୁ ନାହାନ୍ତି ଏପରିକି ଯେଉଁମାନେ କଷ୍ଟ ପାଉଛନ୍ତି, ଯେଉଁମାନେ ଏହି ଜିନିଷକୁ ଅଙ୍ଗେ ଲିଭଉଛନ୍ତି ସେମାନେ ମଧ୍ୟ ବୁଝିପାରୁ ନାହାଁନ୍ତି । ହୀରାକୁଦ ବନ୍ଧ ଯୋଜନା ଯେତେବେଳେ ପ୍ରଥମରେ ଆରମ୍ଭ କରାଗଲା, ସେତେବେଳେ କେତେ ବଡ଼ ନେତା, କେତେ ଛୋଟ ନେତା ସମ୍ବଲପୁର ଜନସାଧାରଣଙ୍କୁ ପ୍ରବୋଧନା ଦେବା ପାଇଁ, ଆଶ୍ୱସନା ଦେବା ପାଇଁ ଯାଇଥିଲେ ଏବଂ ସେଥିମଧ୍ୟରୁ ସବୁଠାରୁ ବଡ଼ ନେତା ହେଉଛନ୍ତି ଆମର ପୂଜ୍ୟ ନେତା ତଦାନୀନ୍ତନ ପ୍ରଧାନ ମନ୍ତ୍ରୀ ଏବଂ କଂଗ୍ରେସ ସଭାପତି ପଣ୍ଡିତ ଜବାହରଲାଲ ନେହେରୁ, ମୋର ମନେ ଅଛି 1948 ସାଲ ଏପ୍ରିଲ ତା 13ରିଖ ଦିନ ସମ୍ବଲପୁର କଲେଜରେ ଗୋଟିଏ ବଡ଼ ଜନସଭାରେ ସେ ଆମ୍ଭମାନଙ୍କୁ ଯେଉଁ ଆଶ୍ୱସନା ଦେଇଥିଲେ, ଯେଉଁ ଉତ୍ସାହବାଣୀ ଶୁଣାଇଥିଲେ ତାହା ଆଜି ମଧ୍ୟ ମୋର କର୍ଣ୍ଣରେ ପ୍ରତିଧ୍ୱନୀତ ହେଉଛି ଏବଂ ସମ୍ବଲପୁରର ସହସ୍ର ସହସ୍ର ନିରୀହ ଜନସାଧାରଣଙ୍କ କର୍ଣ୍ଣରେ ପ୍ରତିଧ୍ୱନୀତ ହେଉଛି । ସେ ଆମ୍ଭମାନଙ୍କୁ ଆଶାର ବାଣୀ ଶୁଣାଇଥିଲେ "ତୁମେ ଯେପରି ଘରେ ରହିଛ ତାହାଠାରୁ ଆହୁରି ଭଲ ଘର ତୁମ୍ଭଙ୍କୁ ଦିଆଯିବ । ଖୁବ୍ ଭଲ କ୍ଷତିପୂରଣ ଦିଆଯିବ ଏବଂ ଯେପରି ଜମି ତୁମ୍ଭମାନଙ୍କର ଅଛି, ତାଠାରୁ ଆହୁରି ଭଲ ଜମି ଦିଆଯିବ । ସେ ସମୟରେ ଆମେ ଭାବି ନଥିଲୁ ଯେ it was a mere election promise, ସେହି ପ୍ରତିଶ୍ରୁତି ପରେ ତାହା ଯେପରି ଅତିଶୀଘ୍ର ବିନା ବିଳମ୍ବରେ ଭଙ୍ଗ କରାଯାଏ ସେଥିପାଇଁ ଓଡ଼ିଶା ସରକାର ଏତେ ତତ୍ପରତାର ସହିତ କାର୍ଯ୍ୟାନୁଷ୍ଠାନ କରିଥିଲେ ଯେ ଠିକ୍ ତା'ର 8 ମାସ ପରେ ଡ଼ିସେମ୍ବର ତା 11ରିଖ 1948 ସାଲରେ ଏହି ବ୍ୟବସ୍ଥା ସଭାରେ ଏପରି ଗୋଟିଏ ବିଲ୍ ଅଣା ଯାଇଥିଲା ଯଦ୍ୱାରା କି ସେହି ପ୍ରତିଶ୍ରୁତି ଭଙ୍ଗ କରିବାର ରାସ୍ତା ସୁଗମ କରାଗଲା । ସେହି ବିଲ୍ ପରେ ଓଡ଼ିଶା Act VIII of 1948 ହେଲା । ସେହି ବିଲ୍ ହେଲେ

କାଳେ ଲୋକେ ଭାବିବେ ଯେ ଏଇଟା ଦ୍ୱାରା ପ୍ରତିଶ୍ରୁତି ଭଙ୍ଗା ଯାଉଛି ଏବଂ ସମ୍ବଲପୁର ଲୋକଙ୍କୁ ହଇରାଣ କରିବା ପାଇଁ ଏହି ବିଲ୍ ଆଗତ କରାଯାଇଛି, ଲୋକଙ୍କର ଏହି ଧାରଣା କାଳେ ହେବ, ସେଥିପାଇଁ ଏହି ବ୍ୟବସ୍ଥାସଭା ଗୃହରେ ମାନ୍ୟବର ତଦାନନ୍ତନ ପ୍ରଧାନ ମନ୍ତ୍ରୀ ଏବଂ ମାନ୍ୟବର ରାଜସ୍ୱ ମନ୍ତ୍ରୀ ଆହୁରି କେତେକ ଅଧିକ ପ୍ରତିଶ୍ରୁତି ଆମକୁ ଦେଇଥିଲେ । ସେଥିମଧ୍ୟରୁ ଗୋଟିଏ ଲାଇନ ପ୍ରତି ମୁଁ ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି ।

So far as the Hirakud project is concerned I can give an assurance in this House that Government will stand by the promise which had already been made in this regard, not only in words, but in various publications and writings also Promises have been made. We are not going to go back upon those promises and I am sure we will be able to manage that thing under clause 7 (1) (*a*), that is to say by negotiation we are going to keep up the promises which we have made."

ବ୍ୟବସ୍ଥା ସଭାରେ ଯେଉଁ ପ୍ରତିଶ୍ରୁତି ଦିଆଯାଇଥିଲା ସେଥିରେ ମଧ୍ୟ ମୋର ବିଶ୍ୱାସ ଥିଲା ଯେ ଏହା merely election stunt ନୁହେଁ । ନିର୍ବାଚନ ପ୍ରତିଶ୍ରୁତି ନୁହେଁ । ବ୍ୟବସ୍ଥାସଭା ଗୃହରେ ଯେଉଁ ଦାୟିତ୍ୱଶୀଳତା ମନ୍ତ୍ରୀମାନେ ରକ୍ଷା କରିବାର କଥା, ସେହି ଦାୟିତ୍ୱଶୀଳତା ସହିତ ସେହି ପ୍ରତିଶ୍ରୁତି ଦିଆଯାଇଛି ବୋଲି ଆମେ ବିଶ୍ୱାସ କରିଥିଲୁ । କିନ୍ତୁ ସେହି ବିଶ୍ୱାସ ମଧ୍ୟ ବୃଥା ହେଲା ଏବଂ ସେହି ପ୍ରତିଶ୍ରୁତି ପଣ୍ଡ ହେଲା । ଓଡ଼ିଶା ସରକାରଙ୍କଠାରୁ ହୀରାକୁଦରେ ଥିବା ଅଫିସରଙ୍କୁ instruction ଗଲା । 500 ଗୁଣ କ୍ଷତିପୂରଣ ଯାହା ଦିଆଯିବାର କଥା ଅଛି ତାହା ନୁହେଁ । ତୁମେ 288ରୁ 500 ପର୍ଯ୍ୟନ୍ତ offer କର ଏବଂ ସେହି ଅନୁସାରେ ଲୋକଙ୍କୁ ଅଫିସରମାନେ 288 times offer କରେ । Land Acquisition Officerଙ୍କ ହାତରେ ଏହି କଡ଼ା ଆଇନ ରହିବା ଫଳରେ ଏକ ଅବାଧ କ୍ଷମତା ଦିଆଗଲା, ଅର୍ଥାତ୍ decrimination କରିବା, ପାତର ଅନ୍ତର କରିବା ଅବାଧ କ୍ଷମତା ମିଳିଲା । ଏହି ଅବାଧ କ୍ଷମତା ସେହି ବିଭାଗ ଅଫିସରମାନେ ପାଇବା ଫଳରେ ଲୋକଙ୍କୁ ହଇରାଣ କରିବାପାଇଁ, ଲୋକଙ୍କୁ ପ୍ରବଞ୍ଚିତ କରିବାପାଇଁ ସୁବିଧା ପାଇଲେ । ଏହା ଫଳରେ ଜଣଙ୍କୁ 288 ଗୁଣ, ଅନ୍ୟ ଜଣକୁ 300 ଗୁଣ, ଆଉ ଜଣଙ୍କୁ 400 ଗୁଣ, ଆଉ ଜଣକୁ 500 ଗୁଣ, ମନୁଷ୍ୟର ଭାଗ୍ୟ ଅନୁସାରେ ଅଫିସରଙ୍କୁ ସନ୍ତୁଷ୍ଟ କରିବା ଦକ୍ଷତା ଅନୁସାରେ କ୍ଷତିପୂରଣ ଧାର୍ଯ୍ୟ କରାଗଲା । ସେହି କର୍ମଚାରୀମାନେ ଆମର ଘର ପୋଡ଼ି ଦେଇଥାନ୍ତେ, ଆମର ସର୍ବସ୍ୱ ଲୁଣ୍ଠନ କରିଥାନ୍ତେ, ସେଥିରେ ଲୋକମାନଙ୍କ ମନରେ ଯେଉଁ ଚହଲ ପଡ଼ିଥାନ୍ତା, ତାଠାରୁ ଆହୁରି ଅଧିକ ବିପଦଜନକ, ମାରାତ୍ମକ କାର୍ଯ୍ୟ ସେମାନେ କଲେ । ଚାଣକ୍ୟ ମାକିଆଭେଲି ଓ ଶୟତାନଙ୍କର ଯେତେ

ଅସ୍ତ ଯେତେ କୌଶଳ ଥିଲ, ପ୍ରାୟ ସମସ୍ତ ଅସ୍ତ, ସମସ୍ତ କୌଶଳ ନିରୀହ ଜନସାଧାରଣଙ୍କ ପ୍ରତି ପ୍ରୟୋଗ କରଯାଇଛି ଏବଂ ସବୁ ଅସ୍ତ୍ରର ପ୍ରୟୋଗରେ ସରକାର ସଫଳ ହୋଇଛନ୍ତି । ସେମାନଙ୍କୁ ସର୍ବସ୍ୱାନ୍ତ କରିବାପାଇଁ 284ଗୁଣ ଏବଂ ଗୋଟିଏ ଆମ୍ବଗଛକୁ ଟ 5.00 ଙ୍କା ଯଗ୍ୱଗଲ ଏବଂ ଏହାକୁ କୁହାଗଲ this is ample compensation ଏବଂ this is liberal compensation. ଯେଉଁ ସମ୍ବଲପୁରରେ ଶାଗ ସେରକୁ ତିନି ଅଣା ବିକ୍ରି ହୁଏ ଏବଂ ହେଉଥିଲ ସେହି ସମ୍ବଲପୁରରେ ଜମି ଡ଼େସ୍‌ମିଲ ପ୍ରତି ତିନି ଅଣା ଯତିପୂରଣ ଦିଆଗଲ । ଜଣଜଣଙ୍କର ସମଗ୍ର ଜମି ଲୁଣ୍ଠନକରି acquire କରି ଟ 40.00 ଙ୍କା, କାହାକୁ ଟ 50.00ଙ୍କା, କାହାକୁ ଟ55.00ଙ୍କା କ୍ଷତିପୂରଣ ଦିଆଯାଇଛି । ଏକଥା ମାନ୍ୟବର ପ୍ରଧାନ ମନ୍ତ୍ରୀ, ମାନ୍ୟବର ରାଜସ୍ୱ ମନ୍ତ୍ରୀ ଏବଂ ମାନ୍ୟବର ଅନ୍ୟ କୌଣସି ସଭ୍ୟ ଅବିଶ୍ୱାସ କରନ୍ତି ତାହାହେଲେ ହୀରାକୁଦ ରେକର୍ଡ ଅଛି ଦେଖନ୍ତୁ । ହୀରାକୁଦ ଗାଁର ଯେଉଁ ଜମି acquire କରାଯାଇଛି, ସେହି ବହିର ପ୍ରତ୍ୟେକ ପୃଷ୍ଠାରେ ତାହାର ଜ୍ୱଳନ୍ତ ଉଦାହରଣ ପାଇବେ, ଏହାର ଅର୍ଥ କଅଣ ? It is not robbing the people? ଏଇଟା କ'ଣ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ପ୍ରତିଶ୍ରୁତି ରକ୍ଷା ? ଏଇଟା କଣ ପଣ୍ଡିତ ଜବାହରଲଲ ନେହେରୁ ଯେଉଁ ପ୍ରତିଶ୍ରୁତି ଆମକୁ ଦେଇଥିଲେ ତାହା ରକ୍ଷା କରାଯାଇଛି ? ଯେତେବେଳେ ଏହିପରି କ୍ଷତିପୂରଣ ଦିଆଗଲ ଏବଂ ଲେକେ ସେହି କ୍ଷତିପୂରଣ ନେବାକୁ ଇତସ୍ତତଃ ହେଲେ ସେମାନଙ୍କୁ କୁହାଗଲ ତୁମକୁ ଏହି କ୍ଷତିପୂରଣ ଦିଆଗଲ । ତୁମେ ଏହା ନେବତ ନିଅ, ନଚେତ୍ ଏହାକୁ treasuryରେ deposit କରିଦିଆଯିବ ଏବଂ ଏହି ଟଙ୍କା ମିଳିବାକୁ ତୁମକୁ 5/6 ବର୍ଷ ଲଗିଯିବ । ଏ ଯେଉଁ ଧମକ ଅଫିସରମାନଙ୍କଦ୍ୱାରା ଦିଆଯାଇଥିଲ, ସେହି ଧମକ କାର୍ଯ୍ୟକାରୀ କରାଗଲ ଏବଂ ତାହା କାର୍ଯ୍ୟକାରୀ କରିବାପାଇଁ officerମାନେ ଯଥାଶକ୍ତି ଚେଷ୍ଟା କରିଛନ୍ତି ଏବଂ ଆଜି ପର୍ଯ୍ୟନ୍ତ ମଧ୍ୟ ଚେଷ୍ଟା ଚ୍ଚଲିଛି । ଯେଉଁମାନେ officerମାନଙ୍କ ହଁ ରେ ହଁ ମିଳାଇ ପାରୁନାହାନ୍ତି, ଯେଉଁମାନେ ତାଙ୍କର କଥା ସ୍ୱୀକାର କରିପାରୁ ନାହାନ୍ତି, 1946 ସାଲରୁ ଜମିବାଡ଼ି ସର୍ବସ୍ୱ ହରାଇଥିଲେ ସୁଦ୍ଧା, ସେମାନେ କ୍ଷତିପୂରଣ କିପରି ନ ପାଇବେ ସେଥିପ୍ରତି ସରକାରୀ ଅଫିସରମାନେ ଅତି ତତ୍ପର ଅଛନ୍ତି, ଅତି ଦକ୍ଷତାର ସହିତ କାର୍ଯ୍ୟ କରୁଛନ୍ତି । ଏ ବିଷୟରେ ଯେତେବେଳେ ପ୍ରଶ୍ନ ହୋଇଛି, ଯେତେବେଳେ କୁହାଯାଇଛି ଆମେ ମନ୍ତ୍ରୀମାନେ କ'ଣ କରିବୁଁ । ଏଇଟା competent authority ଏବଂ ଲେକସାଧାରଣଙ୍କ agreementରେ କରାଯାଇଛି । ଏଥିରେ ମାନ୍ୟବର ସଭ୍ୟଙ୍କ ଆପତ୍ତି କରିବାର, ଆଲେଚନା କରିବାର କ'ଣ ଅଧିକାର ଅଛି । ମୁଁ ଆପଣଙ୍କୁ ପଚ୍ଚରେ—ଯଦି କୌଣସି ଲେକ ଗୋଟିଏ ପିସ୍ତଲ ଧରି ମୋ ମୁଣ୍ଡ ଉପରେ ଲକ୍ଷ୍ୟକରି କହେ ଯେ ତୋ ପାଖରେ ଯେତେ ଟଙ୍କା ଅଛି ଦେଇଦେ ଏବଂ ସେହି ଟଙ୍କା ଦେବାରେ ମୁଁ ସମ୍ମତ ହୁଏ. ଏବା କ'ଣ କୁହାଯିବ ଯେ ମୁଁ ମୋର ନିଜ ସମ୍ମତିରେ ସେହି ଟଙ୍କା ଦେଇଛି ? ସେହିପରି ବ୍ୟବହାର କରାଯାଇଛି,

ନିର୍ବାହ ସମ୍ବଲପୁର ଜନସାଧାରଣଙ୍କ ପ୍ରତି ଏବଂ ସେହି ସରକାରୀ ଡ଼କାଏତଙ୍କ କବଳରେ ପଡ଼ି ଆଜି ଲକ୍ଷ ଲକ୍ଷ ଲୋକ ଏହିପରି କ୍ଷତିପୂରଣ ନେଇ ସର୍ବସ୍ୱାନ୍ତ ହୋଇଛନ୍ତି, ଉଚ୍ଛନ୍ନ ହୋଇଛନ୍ତି। ସେମାନେ ହାହାକାର କରୁଛନ୍ତି ଏବଂ ଏହି କଂଗ୍ରେସ ସରକାରଙ୍କୁ ଅଭିଶାପ ଦେଉଛନ୍ତି। ଆଜି ଯେତେବେଳେ ସେହି ଗାଁମାନଙ୍କୁ ଯିବେ ଶୁଣିବାକୁ ପାଇବେ "ରାଜା ହରତି ସର୍ବସ୍ୱଂ ଶରଣଂ କସ୍ୟ ଗମ୍ୟତେ"। ଆମ ଧନ ସମ୍ପଦ ଯଦି ଜଣେ ଡକାଏତ ଲୁଟ କରିନେଲା ଆମେ ସରକାରଙ୍କ ଶରଣାପନ୍ନ ହେଉ। ଯଦି ସରକାର ଆମର ସର୍ବସ୍ୱ ଲୁଣ୍ଠନ କରନ୍ତି ତାହାହେଲେ ଭଗବାନଙ୍କଦ୍ୱାରେ ହେଲେ ମଧ୍ୟ ଭଗବାନ ଶୁଣିବେ ନାହିଁ ଏବଂ ସେହି ଅବସ୍ଥା, ସମ୍ବଲପୁରରେ ଘଟିଛି। ଆପଣ ବିହାର ଭୂମିକମ୍ପ ପରବର୍ତ୍ତୀ ଘଟଣା ମନେ ପକାନ୍ତୁ। ଯେତେବେଳେ କି ନାଦିରସାହ, ତୈମୁରଲଙ୍ଗ ଦିଲ୍ଲୀ ଲୁଣ୍ଠନ କରନ୍ତି; ସେସମୟରେ ଦିଲ୍ଲୀର ଅବସ୍ଥା ମନେ ପକାନ୍ତୁ। ଆଜି ହୀରାକୁଦ ପରି ସମୃଦ୍ଧି ଅଞ୍ଚଳରେ ଯେଉଁଠାରେ କି ଆମେ ସୁଖସ୍ୱପ୍ନର ନଗରୀ ଗଠନ କରିବାକୁ ଯାଉଛୁଁ ସେଠି ଲୋକଙ୍କର ଅବସ୍ଥା ନାଦିରସାହ, ତୈମୁରଲଙ୍ଗ ଦିଲ୍ଲୀ ଲୁଣ୍ଠନ କଲାପରେ ଯେଉଁ ଅବସ୍ଥା ହୋଇଥିଲା, ସେହି ଅବସ୍ଥା ଦେଖିବାକୁ ପାଇବେ। ଏହି ବିଷୟନେଇ ବ୍ୟବସ୍ଥା ସଭାରେ ଯେତେ ଆପତ୍ତି ଅଭିଯୋଗ ହୋଇଛି ଯେତେ ଆଲୋଚନା ହୋଇଛି ତାହା ମନ୍ତ୍ରୀମାନଙ୍କର, ଅଫିସରମାନଙ୍କର waste paper basketକୁ ଯାଇଛି। ଯେଉଁ କର୍ମଚାରୀମାନେ ଏତେ କମ ଖର୍ଚ୍ଚରେ ଏତେ ଜମି acquire କରି ପାରିଛନ୍ତି, ସେମାନଙ୍କୁ ପ୍ରଶଂସା କରାଯାଇଛି ଓ ସେମାନଙ୍କର service extension କରାଯାଇଛି। ପୂର୍ବ ଗଡ଼ଜାତ ଶାସନ ଥିଲାବେଳେ, ସେତେବେଳେ କେତେକ ରାଜ୍ୟରେ ଅତି ଉଚ୍ଚ କର୍ମଚାରୀମାନ ମାସିକ ଟ 5.00, ଟ 10.00 ଦରମା ଦିଆଯାଉଥିଲା ଏବଂ ଦେଖାଯାଉଥିଲା, ସେମାନେ ଶେଷରେ ଦୋମହଲା କୋଠା ଗଢ଼ି ପାରୁଥିଲେ ଏବଂ ମାସିକ ଟ 30.00 ଟ 40.00 ଖର୍ଚ୍ଚ କରି ନିଜ ପିଲାପିଲିଙ୍କୁ କଲେଜରେ ପଢ଼ାଇ ପାରୁଥିଲେ। କିନ୍ତୁ ଶାସକମାନେ ନିଶ୍ଚିନ୍ତ ଥିଲେ ଯେ, ଆମ ରାଜକୋଷରୁ କିଛି ଖର୍ଚ୍ଚ ହେଉ ନାହିଁ। ମାସକୁ 10/15 ଟଙ୍କାରେ ଆମେ ଏତେ efficient officer ପାଇପାଉଛୁଁ। ସେହିପରି ଯେଉଁ କର୍ମଚାରୀମାନେ 2୪୪ଗୁଣରେ ଆମ୍ବଗଛ ଗୋଟାକୁ ଟ 5.00ରେ ଜମି ଡେସମିଲକୁ ତିନିଅଣା ଦେଇ 50/60 ଟଙ୍କା compensation ଦେଇ ଜଣଙ୍କୁ ସର୍ବସ୍ୱାନ୍ତ କରିପାରୁଛନ୍ତି, ସେହି ଅଫିସରଙ୍କୁ ଆମ ସରକାର ପ୍ରଶଂସା ନ କରିବେ ତ ଆଉ କରିବେ କାହାକୁ ? Sir Samial Hore ଆମକୁ କହିଥିଲେ "Let the dogs bark, but the caravan go on" (Voice .......... ସେ ଯାହା ହେଉ, ଯାହେବ ତ), ଆଜି ଯେପରି ସାହେବମାନେ ଏଠି ପୁନର୍ଜନ୍ମ ଗ୍ରହଣ କରିଛନ୍ତି। ସେମାନେ ଯେ ପୁନର୍ଜନ୍ମ ଗ୍ରହଣ କରିଛନ୍ତି ତା ନୁହେଁ। ସେମାନେ ଗର୍ବ ଅନୁଭବ କରୁଛନ୍ତି ଯେ ସମ୍ବଲପୁରର ଲୋକଙ୍କୁ ଆମେ କେତେ ସହଜରେ ବୋକା ବନେଇ ପାରୁଛୁ। ଠିକାଦାର କର୍ମଚାରୀମାନଙ୍କର ଯୋଗ୍ୟତା ମାପକାଠି ହେଉଛି ଯେ

କେତେ କମ୍ କ୍ଷତିପୂରଣରେ କେତେ ବେଶୀ ଲୋକଙ୍କୁ ସନ୍ତୁଷ୍ଟ କରାଯାଇପାରୁଛି ଏବଂ କେତେ ବେଶି ଜମି acquire କରାଯାଇପାରୁଛି । ଆମର ଜନପ୍ରିୟ ଲୋକମଙ୍ଗଳକର ସରକାରଙ୍କର ସର୍ବୋଚ୍ଚ କର୍ମଚାରୀମାନେ ସେଠି କହୁଛନ୍ତି every pie that is saved from the compensation of these people goes to build a better and greater Hirakud Dam and is going to contribute to the greater prosperity of Orissa. ତେଣୁ ଆଜି ଯେତେବେଳେ ହୀରାକୁଦରୁ ଘିଅ ଓ ମହୁ ବାହାରିବ ବୋଲି କୁହାଯାଉଛି ସେତେବେଳେ ସେହି ହତଭାଗ୍ୟ ଅଞ୍ଚଳର ଲୋକେ କହୁଛନ୍ତି ଏ ଘିଅ ଓ ମହୁ କାହାପାଇଁ—ଘିଅ କ'ଣ ପିମ୍ପୁଡ଼ିଙ୍କ ପାଇଁ ଏବଂ ମହୁ କ'ଣ ମହୁମାଛିଙ୍କପାଇଁ, ଆମ ପାଇଁ ନୁହେଁ ? ଦେବତା ଓ ଅସୁରମାନେ ମିଶି ଯେତେବେଳେ ସମୁଦ୍ର ମନ୍ଥନ କରିଥିଲେ, ସେତେବେଳେ ବିଷ୍ଣୁ ଓ ଲକ୍ଷ୍ମୀ କୌସ୍ତୁଭମଣି ଲାଭ କଲେ, ଇନ୍ଦ୍ର ଉଚ୍ଚୈଃଶ୍ରବା ଓ ଐରାବତ ପାଇଲେ; ଏବଂ ଦେବତାମାନେ ଅମୃତ ପାଇଥିଲେ । କିନ୍ତୁ ସମୁଦ୍ରରୁ ଯେଉଁ ହଳାହଳ ବାହାରିଲା ସବୁ ମହାଦେବଙ୍କୁ ଦିଆଗଲା । ଆଜି ସେହିପରି ହୀରାକୁଦ ବୁଡ଼ି ଅଞ୍ଚଳର ଜନତା ହେଉଛନ୍ତି ନୀଳକଣ୍ଠ । ତାଙ୍କ ଭାଗ୍ୟରେ ଅଛି ହଳାହଳ ।

ଇଂଲଣ୍ଡ ପ୍ରଭୃତି ଗଣତାନ୍ତ୍ରିକ ଦେଶମାନଙ୍କରେ ବିଗତ ମହାଯୁଦ୍ଧରେ ଦେଖାଯାଉଛି ଯେ ଲୋକଙ୍କ overnight evacuate କରାଯାଇ ଅନ୍ୟସ୍ଥାନକୁ ନିଆଯାଇଛି ଏବଂ ସେମାନଙ୍କୁ କେତେ ଯତ୍ନ, ସହାନୁଭୂତି, କେତେ ଧୈର୍ଯ୍ୟର ସହିତ ନିଆଯାଇଛି ତାହା ଶବନ୍ତୁ, ତାହା ସଙ୍ଗେ ସଙ୍ଗେ ଆମ ରାଜ୍ୟ ସରକାରଙ୍କର ଏବଂ ଅଫିସରଙ୍କର ଯାହାକି କାଣ୍ଡକାରଖାନା ତାହା ତୁଳନା କରନ୍ତୁ । ଏ ଦୁଇ ଭିତରେ ଆକାଶ ପାତାଳ ପ୍ରଭେଦ । ସେଠି ଲୋକଙ୍କୁ ସହାନୁଭୂତି ଦେଖାଉଥିବା ବେଳେ ଏଠାରେ ସରକାରୀ ଅଫିସରମାନେ ଲୋକଙ୍କୁ out wit କରିପାରୁଛନ୍ତି ବୋଲି ଗର୍ବ କରୁଛନ୍ତି । ଏଠାରେ କର୍ମଚାରୀମାନେ ଆତ୍ମତୃପ୍ତି ଲାଭ କରୁଛନ୍ତି, କମ୍ ଦରରେ କ୍ଷତିପୂରଣ ଦେଇ ଏମାନେ ଜମି ବଦଳରେ ଜମି, ଘର ବଦଳରେ ଘର ଦେବେ ବୋଲି ପ୍ରତିଶ୍ରୁତି ଦିଅନ୍ତି, କିନ୍ତୁ ସେ ଅନୁସାରେ କାର୍ଯ୍ୟ କରନ୍ତି ନାହିଁ । ଏହି ପ୍ରକାର କେବଳ ଏହି ଅଭିଶପ୍ତ ରାଜ୍ୟରେ ସମ୍ଭବ । ଯେଉଁ ଅଭିଶପ୍ତ ରାଜ୍ୟରେ 1,200 ବଢେଇ ଜଣେ ପ୍ରତିଭଶାଳୀ ଶିଳ୍ପୀ ଧର୍ମପଦକୁ ହତ୍ୟା କରିଥିଲେ, ନିଜର ସମ୍ମାନ ବଜାୟ ରଖିବାପାଇଁ ସେହି ଇତିହାସ ଆଜି ପୁନରାବୃତ୍ତି ହେଉଛି । ହଜାର ହଜାର ଲୋକଙ୍କୁ ଜବରଦସ୍ତ ବାସ ଗ୍ରାମଶୂନ୍ୟ କରାଯାଉଛି । ପରେ ହୁଏତ ସେମାନଙ୍କ ପ୍ରଶଂସା କରାଯିବ । ସରକାର ସେମାନଙ୍କୁ ଜୀବନ୍ତସମାଧି ଦେବେ ଏବଂ ଜୀବନ୍ତସମାଧି ଦେବାପରେ ସେମାନଙ୍କ ସମାଧି ଉପରେ ପୁଷ୍ପାଞ୍ଜଳି ଅର୍ପଣ କରିବେ । ଜାତୀୟ ସରକାର ଥିଲେ ଏପରି ହୁଅନ୍ତା ନାହିଁ । ଆମର କଂଗ୍ରେସ ସରକାର ଏକ ଜାତୀୟ ସରକାର ହୋଇଥିବାରୁ ବୋଧହୁଏ ଏପରି ହେଉଛି ।

ଲୋକଙ୍କୁ ନିଜର ପାଉଣାରୁ ବଞ୍ଚିତ କରିବାପାଇଁ ସରକାର କେତେ ଛୋଟ ନଜରରେ କାମ କରୁଛନ୍ତି ଏଇଟା ଦେଖନ୍ତୁ । ତାହାର ଇତିହାସ ଦେଖିବାକୁ ହେଲେ Orissa Act of XVIII of 1948—ଓଡ଼ିଶା ଜମିଦଖଲ ଆଇନର କେତେକ ବିଷୟ ଆଲୋଚନା କରିବାକୁ ହେବ । ଏହି ଆଇନ 1948 ଡିସେମ୍ବରରେ ପାସ୍ ହେଲା, ତା ବହୁପୂର୍ବରୁ ଅର୍ଥାତ 1946 ସାଲରେ ଲୋକଙ୍କଠାରୁ ବହୁତ ଜମି ନିଆ ଯାଇଥିଲା ଅଥଚ, ସେମାନଙ୍କୁ କ୍ଷତିପୂରଣ ଦିଆଯାଇ ନ ଥିଲା । ଏ ଆଇନ୍ ପାସ୍ ହେବା ପରେ ପୁଣି acquire notice ଦିଆଗଲା । ଉଦ୍ଦେଶ୍ୟ ହେଲା ନୂଆ ଆଇନ୍ ଅନୁସାରେ ଆହୁରି କେତେ କମ୍ କ୍ଷତିପୂରଣ ଦିଆଯାଇପାରେ । ଅଥଚ ଆଇନ୍କୁ ଅଧିକୃତ ରାସ୍ତାକୁ ସମ୍ପୂର୍ଣ୍ଣ ଭାବରେ ରୋଧ କରିଦିଆଗଲା । ଏହି ଆଇନ ଅନୁସାରେ ତିନି ଥର ନୋଟିସ୍ ଦିଆଯାଏ । ଦ୍ୱିତୀୟ ନୋଟିସ୍‌ରେ ଜମିର କ୍ଷତିପୂରଣ ଦେବାକୁ ଦିଆଯାଏ । ଏହି ନୋଟିସ୍ ପାଇଲା ପରେ ସରକାରଙ୍କ ଧାର୍ଯ୍ୟ କରାଯାଇଥିବା କ୍ଷତିପୂରଣ ଯଦିଯାଏ, ଯେଉଁ ଲୋକ ନ' ନେବ ସେ ସାତ ଦିନ ମଧ୍ୟରେ ଆପତ୍ତି ଜଣାଇବ ଯେ ମୋର ଏଥିରେ ମଞ୍ଜୁର ନାହିଁ, ଏ ବିଷୟରେ Arbitrator ନିଯୁକ୍ତ ହୋଇ ବିଚାର ହେଉ । ସେଥିରେ ମଧ୍ୟ ସରକାର ନିୟମ କରିଛନ୍ତି ଏହି ଆପତ୍ତି ପାଇଲା ପରେ ସରକାର with the lest possible delay ଜଣେ Arbitrator ନିଯୁକ୍ତ କରିବେ, କିନ୍ତୁ ଆପଣ ଜାଣନ୍ତି ଆମ ସରକାର ଯାହା ନିୟମ କରନ୍ତି ବା ଆଇନ୍ କରନ୍ତି ତାହା ଖାଲି ଲୋକଙ୍କପାଇଁ, ଜନସାଧାରଣଙ୍କପାଇଁ କିନ୍ତୁ ସରକାରଙ୍କ ନିଜପାଇଁ ନୁହେଁ — What is sance for the gander is not sance for the goose, ସରକାର ଯେ ତାଙ୍କରିଦ୍ୱାରା ତିଆରି ହୋଇଥିବା ଆଇନ୍ ମାନି ଚାଲିବେ ଏପରି କୌଣସି ନିୟମ କରି ନାହାନ୍ତି । ସେଥିପାଇଁ ଆଜି ଯେତେବେଳେ ସଂବିଧାନରେ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଅଛି ଯେ Public Service Commission Report ପ୍ରତିବର୍ଷ ବ୍ୟବସ୍ଥାପକସଭାରେ ପେଶ କରିବାକୁ ପଡ଼ିବ । ଯେଉଁ reportରେ କୌଣସି ଚିନ୍ତା, ପରିଶ୍ରମ ବା ବିଚାର ଦରକାର ନାହିଁ ଏବଂ ଯେଉଁ ରିପୋର୍ଟ ପେଶ୍ କରିବାରେ କୌଣସି ଲୋକର କିଛି କ୍ଷତି ହେବନାହିଁ, ଏପରି ଅବସ୍ଥାରେ ଆପଣ ଜାଣିଥିବେ ସେହି ରିପୋର୍ଟ ପେଶ୍ କରିବାକୁ ସରକାରଙ୍କୁ 17 ମାସ ଲାଗିଛି, ତେବେ ଯେଉଁଠି ସଂବିଧାନର ମୋଟେ କଟକଣା ନାହିଁ, ଯେଉଁଠି ସରକାରଙ୍କୁ କିଛି ଚିନ୍ତା, ପରିଶ୍ରମ ଓ ବିଚାର କରିବାକୁ ପଡୁନାହିଁ ଏବଂ ଯେଉଁଠିକି ହଜାର ହଜାର ଲୋକଙ୍କର ଜୀବନ ମରଣ ସମସ୍ୟା ଓତଃପ୍ରୋତ ଭାବରେ ଜଡ଼ିତ ଅଛି ସେଠାରେ କଣ ଆପଣ ଆଶା କରିବେ with the lest possible delayର interpretation ନ ହେବ 17 ମାସ ଏବଂ ସେହି interpretation ଏଠାରେ ମଧ୍ୟ କରାଯାଇଛି । With the lest possible delay means 17 months. ଆମର ଇଂରାଜୀ ଭାଷାରେ ଯୋଡ଼ିଏ ସଂଖ୍ୟା ଅଛି they have association of ideas. 13 ବୋଲି ଗୋଟିଏ ସଂଖ୍ୟା ଅଛି ତାକୁ ill-luck ସଙ୍ଗେ ଯୋଡା ଯାଉଛି ଏବଂ 17 ବୋଲି ଗୋଟିଏ

ସଂଖ୍ୟା ଅଛି ତାହି sweetness ସଙ୍ଗେ ଧରା ଯାଉଛି । ଆମ ସରକାରଙ୍କର ଗୋଟିଏ peculiar fascination ଅଛି for sweet seventeen ଏବଂ ସେଥିପାଇଁ after sleeping for sweet seventeen months they woke up and appointed an Arbitrator on the 31st October 1951. 17 months after the petition for arbitration was filed କିନ୍ତୁ ଏହି 17 ମାସ ହୀରାକୁଦ ବନ୍ଧ ଯୋଜନା ସ୍ଥଗିତ ରହିନାହିଁ, ପ୍ରତିଦିନ, ପ୍ରତିମାସ ଏବଂ ପ୍ରତିମୁହୂର୍ତ୍ତରେ ହୀରାକୁଦ ବନ୍ଧ ଯୋଜନାର ଅଗ୍ରଗତି ଚାଲିଥିଲା । ଏହି ଅଞ୍ଚଳକୁ କିପରି ଜଳପ୍ଲାବିତ କରାଯିବ ସେ ଦିଗରେ କାର୍ଯ୍ୟ ଅଗ୍ରସର ହୋଇ ଚାଲିଥିଲା । ସରକାର ଏହି 17 ମାସ ଅନନ୍ତଶୟନରେ ଶୋଇଥିବାବେଳେ ତାଙ୍କର କର୍ମଚାରୀଙ୍କୁ ଆଦେଶ ଦେଇଥିଲେ ଯେ ହୀରାକୁଦ ବନ୍ଧ complete ହେବାକୁ ଯାଉଛି, ଏଥିମଧ୍ୟରେ ତମେ ଯେତେ ଜମି acquire କରିପାରିବ କରି ନିଅ । ସେହି ଅଫିସରମାନେ ଜମି acquire କରି ଚାଲିଲେ ଏବଂ ଲୋକଙ୍କୁ ଧମକ ଦେଇ କହିଲେ ଯେ ଦେଖ ହୀରାକୁଦ ବନ୍ଧର ଅଗ୍ରଗତି ଏହିପରି ଭାବରେ ଚାଲିଛି, ଆମେ ଯାହା କହୁଛୁ ତାହା ମାନି ନିଅ ଏବଂ ଯେତିକି କ୍ଷତିପୂରଣ ଦେଉଛୁ ତାକୁ ଗ୍ରହଣ କରିନିଅ, ସେଥିପାଇଁ ଲୋକଙ୍କ ମନରେ ଯେଉଁ ଅଧୈର୍ଯ୍ୟଭାବ ଆସିଲା ସେଥିରୁ ସେମାନେ ଘରପୋଡ଼ିରୁ କୁଟାଖଣ୍ଡିଏ ନେଲେ ଏବଂ ନେଇ ସମୟରେ 13-4-1948ରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଦେଇଥିବା ପ୍ରତିଶ୍ରୁତିକୁ ସ୍ମରଣକରି କ୍ଷତିପୂରଣ ନେଇଛନ୍ତି । ସେତେବେଳେ ସେମାନେ ଯାହା ଭାବିଲେ ସେ ବିଷୟ ଅପ୍ରକାଶ୍ୟ, କାହିଁକି ନା ତାହା ପ୍ରକାଶ କଲେ most unparliamentary ବିବେଚିତ ହେବ, ସେମାନେ 288 ଗୁଣ, 300 ଗୁଣ କ୍ଷତିପୂରଣ ନେଇ ଜମି ଆଦରିଲେ ଏବଂ ଏହି କମ୍ କ୍ଷତିପୂରଣ ନେବାକୁ ସେମାନଙ୍କୁ ବାଧ୍ୟ କରାଗଲା । ତା 31-10-1951 ରିଖରେ Arbitrator ନିଯୁକ୍ତ ହେଲେ, କିନ୍ତୁ ସେତିକିରେ ସନ୍ତୁଷ୍ଟ ନ ହୋଇ ତାଙ୍କ ବିଗ୍ଭରରେ କିପରି ଡେରି ହେବ ଯଥାସାଧ୍ୟ ଚେଷ୍ଟା କରାଗଲା । Arbitrator ହେଉଛନ୍ତି ଜଣେ retired District Judge, ତାଙ୍କ ଘର କଟକରେ, ତାଙ୍କୁ ଏପରି ଅନ୍ୟାନ୍ୟ କାର୍ଯ୍ୟ ଦିଆଗଲା ଯେଉଁଥିରେ କି ସେ ମା'ସକରୁ ୫ ଦିନ ସମ୍ବଲପୁରରେ ରହିଲେ ତ ୨୫ ଦିନ କଟକରେ ରହିଲେ । ଏହି ୫ ଦିନ ସମୟରେ ମଧ୍ୟ ସରକାର ଯେପରି ଥରକୁଥର ସମୟ ଗଡାଇବାକୁ ଚେଷ୍ଟା କଲେ, ତାଙ୍କର ଜବାବ ଦେବାପାଇଁ ସେ ଯେତେଥର ସମୟ ନେଇଛନ୍ତି ସେ ବିଷୟ ଯଦି ସରକାର ଦେଖନ୍ତି ତା ହେଲେ ବୁଝିପାରିବେ ତାଙ୍କର ଯେଉଁ ପଲିସି to delay the matter ତାହା ଅନେକାଂଶରେ ସଫଳ ହୋଇଛି, ସେଥିପାଇଁ Arbitrator ୩୧-୧୦-୧୯୫୧ ତାରିଖରେ ନିଯୁକ୍ତ ହେଲେ ସୁଦ୍ଧା ତାଙ୍କର 1st set of cases dispose of ହେବାପାଇଁ ୧୯୫୩ ମାର୍ଚ୍ଚ ପର୍ଯ୍ୟନ୍ତ ଚାଲିଗଲା । ୧୯୫୩ ରେ ହୀରାକୁଦ ବନ୍ଧ ଯୋଜନା ୭ ବର୍ଷ ପୂରିଯାଇଥିଲା, ସେହି ସମୟରେ ଲୋକେ ଆଶା କରିଥିଲେ ଯେ ଏ Arbitrator ଯେଉଁ ନିଷ୍ପତ୍ତି ଦେଉଛନ୍ତି ସେଥିରେ ସରକାରଙ୍କର ଚୈତନ୍ୟ ଉଦୟ ହେବ । ସେ ଜଣେ ସରକାରୀ

କର୍ମଚାରୀ ହୋଇ ସୁଦ୍ଧା ଆମର ମନ୍ତ୍ରୀମାନଙ୍କ ପ୍ରବଞ୍ଚନା ପଟୁତା ବିଷୟରେ ଯେଉଁ ସାର୍ଟିଫିକେଟ୍ ଦେଇଛନ୍ତି ମୁଁ ଗତବର୍ଷ ବଜେଟ୍ ଆଲୋଚନାରେ ସେ ବିଷୟ ଆଲୋଚନା କରିଥିଲି, ଆଉ କହିବା ପ୍ରୟୋଜନ ନାହିଁ । ଆପଣ ଜାଣିଥିବେ ଏପରି ଗୋଟିଏ ଗୁଣ ଅଛି ଯେଉଁ ଗୁଣ ଥିଲେ ତିନିଭୁବନକୁ ମଧ୍ୟ ଜୟ କରାଯାଇପାରେ । ଯେଉଁ ଗୁଣ ଥିଲେ ତିନିଭୁବନ ଜୟ କରାଯାଇପାରେ ସେହି ଗୁଣ ଥିଲେ କ'ଣ କେତେ ହଜାର ବା ସାମାନ୍ୟ କେତେ ଲୋକଙ୍କର ସର୍ବନାଶ କରାଯାଇ ପାରିବ ନାହିଁ ? ସେଥିରେ ମଧ୍ୟ ସରକାର କୃତକାର୍ଯ୍ୟ ହେବେ ବୋଲି ମୁଁ ଆଶା କରୁଛି । Arbitratorଙ୍କ ନିଷ୍ପତ୍ତି ଉପରେ ସରକାରଙ୍କର ପାଷାଣ ହୃଦୟ କିଛି ତରଳିବ, ସରକାର ନିଜର ଭୁଲ୍ ବୁଝିବେ ଏବଂ ସେ ନିଷ୍ପତ୍ତିକୁ ସମ୍ମାନ ଦେବେ ବୋଲି ଆମେ ଆଶା କରିଥିଲୁ । କିନ୍ତୁ ଏ କଂଗ୍ରେସ ସରକାର ଅସତ୍ୟ ଓ ହିଂସାର ସୁଦୃଢ଼ ଭିତ୍ତିଉପରେ ପ୍ରତିଷ୍ଠିତ । କଂଗ୍ରେସ ସରକାରଙ୍କଠାରୁ ନ୍ୟାୟ ବା ଜଷ୍ଟିସ୍ ପାଇବା କିମ୍ବା ଦାବୀ କରିବା ସମ୍ବଲପୁର ଲୋକଙ୍କ ପକ୍ଷରେ କେତେଦୂର ବିଚିତ୍ର କଥା ସେଇଟା ସରକାର ଲୋକଙ୍କୁ ବୁଝାଇ ଦେବାକୁ ଚେଷ୍ଟାକଲେ ଏବଂ ସେମାନଙ୍କୁ ଉଚିତ୍ ଶିକ୍ଷା ଦେବାପାଇଁ ଦୃଢ଼ପ୍ରତିଜ୍ଞ ହେଲେ । ଆଉ କୌଣସି ଉପାୟରେ ଏହି ନ୍ୟାୟ ଜାରିକଲେ ଲୋକେ ଆଉ ନ୍ୟାୟ ଓ ବିଚାରର ନାମ ଧରିବାକୁ ସାହସ କରିବେ ନାହିଁ ବୋଲି ଭାବି ଏହି ନିଷ୍ପତ୍ତି ବିରୁଦ୍ଧରେ ହାଇକୋର୍ଟରେ ଅପିଲ କରିବାକୁ ସରକାର ସ୍ଥିର କଲେ । ସେ ସମୟରେ କୁହାଗଲା ଯେ ହାଇକୋର୍ଟ ଏବଂ ସୁପ୍ରିମ୍ କୋର୍ଟ ଅପିଲପାଇଁ ବହୁବର୍ଷ ଗଡ଼ିଯାଇପାରେ । ସେଥିପାଇଁ ଇତି ମଧ୍ୟରେ ହୀରାକୁଦ ବନ୍ଧ ହୋଇସାରି ବହୁବର୍ଷ ବିତିଯାଇଥିବ । ଏହା ମଧ୍ୟରେ ଲୋକେ ଖାଇବେ କ'ଣ, କରିବେ କ'ଣ ସେଥିପାଇଁ ଲୋକଙ୍କ ତରଫରୁ କୁହାଗଲା ଯେ ସରକାର ଯେଉଁ minimum compensation ଦେବାପାଇଁ ପ୍ରସ୍ତୁତଥିଲେ ତାକୁ ଦେଇଦିଆଯାଉ ଏବଂ ବାକୀ ଯାହା ବଳିଲା ସେଇଟା ହାଇକୋର୍ଟ ବା ସୁପ୍ରିମ୍‌କୋର୍ଟକୁ ଯାଉ ସେଥିରେ ଲୋକଙ୍କର କୌଣସି ଆପତ୍ତି ନାହିଁ । କିନ୍ତୁ ତାହା ହୋଇଥିଲେ ସରକାରଙ୍କ ଉଦ୍ଦେଶ୍ୟ ପଣ୍ଡ ହୋଇଥାନ୍ତା ଏବଂ ଲୋକଙ୍କୁ ସାମାନ୍ୟ କିଛିହେଲେ ଆଶ୍ରୟପାଇଁ ସୁବିଧା ଦେବା ନିମିତ୍ତ ସୁଯୋଗ ମିଳିଥାନ୍ତା । ସେ ସୁବିଧାରୁ ସରକାର ଲୋକଙ୍କୁ ବଞ୍ଚିତ କଲେ, କେବଳ ଯେ ମକଦ୍ଦମା ବିଷୟରେ ବଞ୍ଚିତ କଲେ ତାହାନୁହେଁ । ଯେଉଁସବୁ କେସ୍ pending ଅଛି ବା ଯେଉଁସବୁ କେସ୍ Arbitrationକୁ refer ହୋଇନାହିଁ ତାକୁ ମଧ୍ୟ ଅନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ ଗଡ଼ାଇ ଚାଲିଲେ । ହୀରାକୁଦ ବନ୍ଧ ଶେଷହେବା ପର୍ଯ୍ୟନ୍ତ ସେସବୁ ଯେପରି ନିଷ୍ପତ୍ତି ନ ହେବ ସେଥିପାଇଁ ଷ୍ଟେ କରି ଦିଆଗଲା ଏବଂ ସେଠାରେ petition ଦିଆଗଲା ଯେ Arbitration ବିଚାର ବନ୍ଦ କରାଯାଉ । ଯେଉଁଟା Arbitratorପାଇଁ refer କରାଯାଇ ନ ଥିଲା ସେଇଟା ମଧ୍ୟ ବନ୍ଦକରି ଦିଆଯାଇଛି । ଆପଣ ଦେଖିବେ ଏ ବିଷୟରେ ଗୋଟିଏ ପ୍ରଶ୍ନ ଦିଆଯାଇଥିଲା ଯେ କେତୋଟି କେସ୍ ଦୁଇବର୍ଷ ବା ବର୍ଷେରୁ ଅଧିକ Arbitratorଙ୍କୁ refer ନ କରି ରଖାଯାଇଛି ଏବଂ ଏ

ବିଷୟରେ ସରକାର ଯେଉଁ କୈଫିୟତ ଦେଲେ ତାକୁ ଦେଖି ଘୁଞ୍ଚଜନେ ନାଟଦେଖି କାବା ହେବାଭଳି ଯାହା କୁହାଯାଇଛି ସେଇଟା ବଡ଼ ଆଶ୍ଚର୍ଯ୍ୟର କଥା । ଯେତେବେଳେ ଲୋକଙ୍କର ଜମି ନିଆଯାଏ ସେତେବେଳେ ସେ ବିଷୟରେ ପୁଙ୍ଖାନୁପୁଙ୍ଖ ବିଚାର କରାଯାଏ ଏବଂ ସରକାର ଜମି acquire କଲାପରେ ଏବଂ ଜମି ଦଖଲ କଲାପରେ ତିନି ଚାରି ବର୍ଷ ଧରି ତାଙ୍କ ବିଚାରପାଇଁ ଏବଂ ତାଙ୍କ calculation ପାଇଁ ସମୟ ନେଇଥାନ୍ତି ଏବଂ ତାପରେ notice ଦେଇଥାନ୍ତି । Noticeରେ 5 ଧାରାର ଜବାବ ଦେବାପାଇଁ ଲୋକଙ୍କୁ କେବଳ ମାତ୍ର 7 ଦିନ ସମୟ ଦିଆଯାଇଛି ଏବଂ ଏହି 7 ଦିନ ମଧ୍ୟରେ ସେମାନେ ଜବାବ ଦେଇ ନ ପାରିଲେ ତାଙ୍କ କେସ୍ file ହେଲା । ସରକାର ସେ notice ଦେବା ପୂର୍ବରୁ ତିନି ଚାରି ବର୍ଷ ଧରି ସେ ବିଷୟରେ ବିଚାର କରୁଥିଲେ, ଆଲୋଚନା କରୁଥିଲେ ଏବଂ ତଦନ୍ତ କରୁଥିଲେ । ତାହା ମଧ୍ୟ Arbitratorଙ୍କୁ refer କରିବାପାଇଁ ଆପତ୍ତି ହେଲା-ବେଳେ ବର୍ଷ ବର୍ଷ ଧରି ସମୟ ଗଡ଼ାଉଛନ୍ତି । ଏହାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଯେ people shall not have any justice. ଏହାର ଉଦ୍ଦେଶ୍ୟ ହେଉଛି ନ୍ୟାୟ ଏବଂ ସତ୍ୟକୁ sabotage କରିବା । ତେଣୁ ସରକାରଙ୍କ ତରଫରୁ ନ୍ୟାୟ, ସତ୍ୟ ଏବଂ ଧର୍ମକୁ sabotage କରିବା ଯେଉଁପ୍ରକାର ଧୁରନ୍ଧର ଚେଷ୍ଟା କରାଯାଉଛି ଏହାର ପ୍ରତି-କାର କ'ଣ ? ଯେଉଁ ସରକାର ସମ୍ବିଧାନ ମାନନ୍ତି ନାହିଁ, ଯେଉଁ ସରକାର ନିଜର ନିୟମ ମାନନ୍ତି ନାହିଁ—ତାଙ୍କପାଇଁ ଅସ୍ତ୍ର କ'ଣ ? ସେ ବିଷୟରେ ଭଗବାନଙ୍କୁ ଡାକିଲେ ମଧ୍ୟ ଭଗବାନ ଶୁଣୁନାହାନ୍ତି । ସେଥିପାଇଁ ସମ୍ବଲପୁର ଲୋକଙ୍କ ପକ୍ଷରେ ଯୋଡ଼ିଏ ବାଟ ଅଛି, ଗୋଟିଏ ହେଉଛି annihilation ଏବଂ ଅନ୍ୟଟି ହେଉଛି anarchy. ଯେହେତୁ ସେଠାକାର ଲୋକଙ୍କର anarchy ପାଇଁ ଶକ୍ତି ନାହିଁ, ସେଥିପାଇଁ ଆଜି ହଜାର ହଜାର ଲୋକ ନିଶ୍ଚିହ୍ନ ହେବାକୁ ବସିଛନ୍ତି । ଏ ଆଲୋଚନାର ସରକାର ଯେତେବେଳେ ଉତ୍ତର ଦେବେ ସେତେବେଳେ କହିବେ ଯେ ଯେତେକୋଟି ଟଙ୍କା କ୍ଷତିପୂରଣପାଇଁ ବନ୍ଦୋବସ୍ତ କରାଯାଇଥିଲା, ବର୍ତ୍ତମାନ କେନ୍ଦ୍ର ସରକାର ତାଠାରୁ ଢେର ବେଶୀ ଟଙ୍କା ଦେବାପାଇଁ ପ୍ରସ୍ତୁତ ଅଛନ୍ତି । ଅବଶ୍ୟ ଏଇଟା କହିବେନାହିଁ ଯେ ପୂର୍ବେ ଯେତେ ଜମି acquire କରାଯାଇଥିଲା ବର୍ତ୍ତମାନ ତାଠାରୁ ଢେର ବେଶୀ ଜମି acquire କରା-ଯାଉଛି । ମୁଁ କିନ୍ତୁ ସରକାରଙ୍କୁ ପଚାରେ ଯେ ଏ ଯେଉଁ ବେଶୀ ଟଙ୍କା ଅଣାଯାଇଛି ଏ ଟଙ୍କା ଯାଉଛି କୁଆଡ଼େ ? ଏଇଟା କ'ଣ ଭବିଷ୍ୟତରେ savings ହେବ ଏବଂ ସେ savings to complete a bigger damରେ ଖର୍ଚ୍ଚହେବ । ଏ ଯେଉଁ statistical jugglery ସୃଷ୍ଟି କରାଯାଉଛି, ଏହା କ'ଣ ultimate savingsପାଇଁ ବା ଅନ୍ୟ କୌଣସି ଉଦ୍ଦେଶ୍ୟପାଇଁ ? ଲୋକେ କେତେ କ୍ଷତିପୂରଣ ପାଉଛନ୍ତି ସେଇଟା ହେଲା ପ୍ରକୃତ ମାନଦଣ୍ଡ । ଏ ଟଙ୍କା ବଢ଼ାଇଦେବା ଫଳରେ ଲୋକଙ୍କୁ ବେଶୀ କ୍ଷତି-ପୂରଣ ଦିଆଯାଉଛି କି ? ପୂର୍ବେ ଯେପରି ପାତର ଅନ୍ତର କରାଯାଉଥିଲା ବର୍ତ୍ତମାନ ମଧ୍ୟ ତାହା ନିର୍ବିବାଦରେ ଏବଂ ବିନା ବିଚାରରେ କରାଯାଉଛି ।

ପୁନର୍ବସତି ବିଷୟରେ ଯେତେବେଳେ ଏ ସଭରେ ଆଲୋଚନା ହୁଏ, ସେତେବେଳେ ମାନ୍ୟବର ଉପମନ୍ତ୍ରୀ କହିଥାନ୍ତି ଯେ ତଥାକଥିତ ନେତାଙ୍କ ଯୋଗୁ ଲୋକେ ପୁନର୍ବସତି କେନ୍ଦ୍ରକୁ ଯାଉନାହାନ୍ତି । ଆମ ସମ୍ବଲପୁର ଲୋକେ କିପରି ନେତାମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରିଥାନ୍ତି—ଯଥାର୍ଥ ନେତା ଏବଂ ତଥାକଥିତ ନେତା । ଏ ବିଷୟରେ ମୁଁ ଗତଥର କହିଥିଲି । ଅସଲକଥା ହେଉଛି ଯଦି ଲୋକଙ୍କୁ ଭଲ ଜମି ଦିଆଯାଏ ତାହାହେଲେ ଯଥାର୍ଥ ନେତା ହୁଅନ୍ତୁ ବା ତଥାକଥିତ ନେତା ହୁଅନ୍ତୁ ସେମାନେ କାହାରି କଥା ନ ଶୁଣି ପୁନର୍ବସତି କେନ୍ଦ୍ରକୁ ଯିବେ । ଯଦି ଭଲ ଜମି ଦିଆ ନ ଯାଏ ଯଥାର୍ଥ ନେତା ଯେତେ ବୁଝାଇଲେ ମଧ୍ୟ ଲୋକେ ଯିବାକୁ ଇଚ୍ଛୁକ ହେବେନାହିଁ ।

The SPEAKER : ମୋର ମନେହୁଏ ତଥାକଥିତ ନେତା ଶବ୍ଦ ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ଦୁଃଖପ୍ରକାଶ କରିଥିଲେ ।

Shri SHRADDHAKAR SUPKAR : I am sorry, for having used that expression.

ଗତ ତା 22-2-1954ରିଖର 52ନମ୍ବର ପ୍ରଶ୍ନର ଉତ୍ତରରେ ସରକାର କହିଛନ୍ତି ଯେ 1953 ସାଲରେ ମୋଟ 350ଟି କୁଟୁମ୍ବଙ୍କ ପାଇଁ ବ୍ୟବସ୍ଥା କରଯାଇଛି ଓ 1385 ଏକର ଜମି ଦିଆଯାଇଛି । ଏକ ଲକ୍ଷ ଲୋକ ଗୃହଦ୍ୱାର ଶୂନ୍ୟ ହେବେ ଏବଂ ଏକ ଲକ୍ଷ ଏକର ଜମି ସେମାନେ ହରଇବେ ଏବଂ ଏବର୍ଷ ବର୍ଷା ପୂର୍ବରୁ 14 ଖଣ୍ଡ ଗାଁ ଜଳମଗ୍ନ ହେବ । ମୁଁ ପଗ୍ଚରେ ଏହି ଯେଉଁ 14 ଖଣ୍ଡ ଗାଁ ଜଳମଗ୍ନ ହେବ ତା'ର ପ୍ରୟୋଜନୀୟତା ତୁଳନାରେ ଏହି ପୁନର୍ବସତି ବ୍ୟବସ୍ଥା ଯଥେଷ୍ଟ କି ? ସରକାର ପ୍ରଶ୍ନୋତ୍ତରରେ କହିଛନ୍ତି ଯେ ଏହି 14 ଖଣ୍ଡ ଗାଁର ଲୋକଙ୍କୁ କ୍ଷତିପୂରଣ ଯଗ୍ଚ ଯାଇଛି ଏବଂ ସେମାନଙ୍କୁ ପୁନର୍ବସତି ପାଇଁ କୁହାଯାଇଛି କିନ୍ତୁ ସେମାନଙ୍କର ଯାହା ପ୍ରୟୋଜନ ଏବଂ ସେମାନଙ୍କ ପାଇଁ ଯାହା କରଯାଇଛି ଏ ଦୁଇଟିର ତୁଳନା କଲେ ଆପଣ ଜାଣିପାରିବେ ଦକ୍ଷତାର ସହିତ କିପରି ସତ୍ୟର ଅପଳାପ କରଯାଇଛି ଏବଂ ଏହି ଉତ୍ତର ତହିଁର ଏକ ଜ୍ୱଳନ୍ତ ନିଦର୍ଶନ । କବି କାଳିଦାସଙ୍କ ଭଷାରେ "ସନ୍ଧଂ ନଂ ବାଧତେ ଗଜନ, ତବ ବାଧତି ବାଧତେ" ଭଳି ଲୋକେ ଯେଉଁ ଘର ହରଉଛନ୍ତି ଓ ଯେଉଁ ଜମି ହରଉଛନ୍ତି ସେଇଟା ସେମାନଙ୍କୁ ଯେତେ ବାଧୁନାହିଁ ଏହିଭଳି ପ୍ରଶ୍ନର ଯେଉଁ ଉତ୍ତର ଦିଆଯାଇଛି ତାହା ବେଶି ବାଧୁଛି । ବାହା ସମୟରେ ବାଇଗଣ ରେପିଲାପରି ସରକାର ବୁଡ଼ି ଅଞ୍ଚଳର ଲୋକମାନଙ୍କୁ ପୁନର୍ବସତି କେନ୍ଦ୍ରକୁ ନେବାପାଇଁ ଦୁଇଟି ବସ୍ ଡିଆରିକରି ପୁନର୍ବସତି ସମ୍ପର୍କରେ ଯେଉଁ ଦୂରଦୃଷ୍ଟିର ପରିଚୟ ଦେଇଛନ୍ତି ସେଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ ଦେଉଛି । ବାସ୍ତବିକ ଏହା ଗୋଟିଏ ବଡ଼ କଥା । ଏହାପୂର୍ବରୁ ମୁଁ କହିଥିଲି ଲଠିରେ ମାରିବା, ଗୁଳିରେ ମାରିବା ଠାରୁ ପେଟରେ ମାରିବା କେତେ କାରୁଣ୍ୟ ଓ କଷ୍ଟକର । ଆମ ସରକାର ପିଠିରେତ ମାରିଲେ, ପେଟରେ କିପରି ମାରିଛନ୍ତି ଓ

ମାରୁଛନ୍ତି ସେ ବିଷୟରେ କେତେକ ଆଲୋଚନା କରିବା ଦର୍କାର । ଗତବର୍ଷ ଏଠାରୁ କେତେଜଣ M. L. A. ହୀରାକୁଦ ଗଲେ, ଶ୍ରମିକମାନଙ୍କର ଅବସ୍ଥା ଦେଖିଲେ ଏବଂ ସେହି ଅନୁସାରେ କେତେକ ପରାମର୍ଶ ଦେଲେ । ସେ ପରାମର୍ଶ ବିଚାର ପାଇଁ 17ମାସ ଗଲା କିନ୍ତୁ ଶ୍ରମିକମାନେ ନବୁଝି ବର୍ଷେ ନ ଯାଉଣୁ go slow strike ଆରମ୍ଭ କଲେ ; ସେମାନେ କେତେକ ଦାବୀ କଲେ, ତହିଁରୁ କେତେକ ପୂରଣ ହେଲା, କେତେକ ପୂରଣ ହେଲନାହିଁ । ସେ ବିଷୟରେ ବ୍ୟବସ୍ଥା ସଭାରେ ବହୁ ଆଲୋଚନା ହୋଇଯାଇଛି ଏବଂ ଏ ବିଷୟରେ ମୁଖ୍ୟମନ୍ତ୍ରୀ ଥରେ ଉତ୍ତର ଦେଇଛନ୍ତି ଓ ବିଭାଗୀୟ ଉପମନ୍ତ୍ରୀ ଆଉ ଥରେ ଉତ୍ତର ଦେଇଛନ୍ତି । ସେଥିରେ ସରକାରଙ୍କର ପ୍ରଶଂସା କରାଯାଇଛି, Communist ମାନଙ୍କର ନିନ୍ଦା କରାଯାଇଛି ଏବଂ ପୋଲିସଙ୍କୁ ପଦକ ଦିଆ ଯାଇଛି କିନ୍ତୁ ଏସବୁ କୈଫିୟତ ଶୁଣି ମୋର ମନେହେଉଛି ଷଣ୍ଢ ଯିନା ନାଲି କନା ଦେଖିଲେ ତା'ର ମୁଣ୍ଡ ବିଗିଡ଼ି ଯିବାରୁ ସେ ପାଗଳ ହୋଇ ଏଣେ ତେଣେ ଦୌଡ଼େ; କିନ୍ତୁ ଆମ ସରକାର ନାଲି ପତାକା ଦେଖିଲାମାତ୍ରେ ଏପରି ବିବ୍ରତ ହେଉଛନ୍ତି କାହିଁକି ? ଏପରି ନିଷ୍ଠୁର ଆଚରଣ କରିବାର କାରଣ କ'ଣ ? ଯଦି Communistମାନେ ଗୋଳମାଳ କରୁଛନ୍ତି ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରନଗଲା କାହିଁକି ? Argument adhominem ବୋଲି logicରେ ଗୋଟିଏ କଥା ଅଛି ଅର୍ଥାତ୍ ବ୍ୟକ୍ତିଗତ ଦୋଷ ଦେଖାଇ ଯୁକ୍ତିକଲେ ତାହା ଅନ୍ୟପକ୍ଷର ଯୁକ୍ତିର ଯଥେଷ୍ଟ ଉତ୍ତର ହୋଇଥାଏ । ସେହି ପ୍ରକାର ଯୁକ୍ତିର ଆଶ୍ରୟ ଏଥିରେ ନିଆଯାଇଛି ଏବଂ ତାହା ନିଆଗଲେ ମଧ୍ୟ ମୁଁ ପଚାରିବାକୁ ଚାହେଁ ଯେ ପୋଲିସ ଯାହା କରିଛନ୍ତି ସେଇଟା କ'ଣ ବର୍ବରୋଚିତ ନୁହେଁ ? ଦୁଇ-ଜଣ ଲୋକ ମଲେ, ଅନେକ ଲୋକ ଗୁରୁତର ଆଘାତ ପାଇଲେ । ଆପଣ ଶୁଣି ବିସ୍ମିତ ହେବେ 29ଜଣ ଲୋକଙ୍କଠାରୁ dying declaration ନିଆଯାଇଛି; ଯେତେ ଆଘାତ ସବୁ ମୁଣ୍ଡରେ ବା ଦେହର ଉପରି ଭାଗରେ ଲାଗିଛି; ଅନେକ ଲୋକଙ୍କୁ prosecute କରାଯାଇଛି, ଯେଉଁମାନଙ୍କ ଦେହରେ ସାମାନ୍ୟ ଜଖମ ଥିଲା ସେମାନଙ୍କୁ କାମରୁ ବାହାର କରି ଦିଆଯାଇଛି ଏବଂ ସେମାନେ ଯେଉଁ ଘରେ ଥିଲେ ସେମାନଙ୍କୁ ସେ ଘରୁ ତଡ଼ି ଦିଆଯାଇଛି ଓ ସେମାନଙ୍କ ନାମରେ ମକଦ୍ଦମା କରାଯାଇଛି, ଜେଲରେ ରଖାଯାଇଛି । କାକୁଡ଼ି ଚୋରକୁ ମୁଣ୍ଡକାଟ ଶାସ୍ତି ଦିଆଯାଇଛି । ସରକାରଙ୍କର ଓ ପୁଲିସଙ୍କର କମ୍ୟୁନିଷ୍ଟଙ୍କ ଉପରେ ଯେଉଁ ରାଗ ତାହା ଯାଇଁ ପଡ଼ିଛି ନିରୀହ ଶ୍ରମିକ ଉପରେ । ଯେଉଁମାନେ ମଲେ ସେମାନେ ଗଲେ କିନ୍ତୁ ଯେଉଁମାନେ ରହିଲେ ସେମାନଙ୍କୁ ଉଚ୍ଛନ୍ନ କରିବା ପାଇଁ ଏ ବ୍ୟାପକ ଚେଷ୍ଟା କାହିଁକି ? ନିରପେକ୍ଷ ତଦନ୍ତ ପାଇଁ କହିଲେ ସରକାର ଏ ବିଷୟରେ ମନା କରିଦେଇ ପାରନ୍ତି ; ତାଙ୍କର ସେ କ୍ଷମତା ଅଛି । ଏ ବିଷୟରେ ଯଦି ତଦନ୍ତ ହୁଏ ପୂର୍ବେ ଆମର ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଓକିଲମାନେ ଓକିଲାତି କରିବାର ସୁଯୋଗ ନେବେ ଏବଂ ସେଠି ଗୋଟିଏ ଆନ୍ଦୋଳନ କରିବାର ସୁଯୋଗ ନେବେ, ଓକିଲମାନଙ୍କୁ ମନାକରି ଦିଆଯାଇ କଣ ଏପ୍ରକାର ତଦନ୍ତ

ହୋଇ ନପାରେ ? ଓକିଲମାନଙ୍କ ପ୍ରତି ସରକାରଙ୍କର ଏତେ ଅଂଟ୍ଙ୍କ କାହିଁକି ? ମୁଁ ପଗ୍ଭରିବାକୁ ଗୃହେଁ ହୀରକୁଦ କାମ ବର୍ତ୍ତମାନ ଗ୍ଭଲିଛି ତେଣୁ ସେଥିରେ ଗଣ୍ଡଗୋଳ ହେବ ବୋଲି ଯାହା କୁହାଯାଇଛି ଶ୍ରମିକମାନଙ୍କୁ ରବିବାର ଦିନ ଛୁଟି ଦିଆଯାଇ ସେ ବିଷୟରେ କ'ଣ ନିରପେକ୍ଷ ତଦନ୍ତ କରଯାଇ ପାରନ୍ତାନାହିଁ ? ଅସଲ କଥା ହେଉଛି they are trying to avoid the issue and they are trying to avoid facing public opinion. ଏ ବିଷୟରେ ମୁଁ ଆଉ ଯାହା କହିବାର କଥା ତାହା ମୁଁ ଆପଣଙ୍କୁ କହିଛି । ଭବିଷ୍ୟତରେ ଆଲୋଚନା କରିବାର ସୁଯୋଗ ପାଇବି । ସରକାର କ୍ଷତିପୂରଣ ଦିଗରେ ଏବଂ ଇଠିମାଡ଼ ଦିଗରେ ଯେଉଁ କଠୋରତା ଦେଖାଇ-ଛନ୍ତି ଏବଂ ଦେଖାଇ ଆସିଛନ୍ତି ତା'ର ପ୍ରତିକାର ପାଇଁ ମୁଁ ଏ ଆଲୋଚନା କରୁନାହିଁ, ତା'ର ପ୍ରତିବାଦ ପାଇଁ ଆଲୋଚନା କରୁଛି ।

## ତୃତୀୟ ଅଧ୍ୟାୟ

### ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କ ବ୍ୟକ୍ତିତ୍ୱ ଓ ତାଙ୍କର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ଶୈକ୍ଷିକ ଚିନ୍ତାଧାରା ସମ୍ପର୍କରେ ନିବନ୍ଧ ଓ ଆଲୋଚନା

ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କ ବ୍ୟକ୍ତିତ୍ୱ ବହୁମୁଖୀ । ରାଜ୍ୟ ତଥା ଦେଶର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ଶୈକ୍ଷିକ ଚିନ୍ତାଧାରା ପ୍ରସଙ୍ଗରେ ତାଙ୍କର ସ୍ୱକୀୟ ସାଧନା ଓ ସିଦ୍ଧି ଚିନ୍ତନ ଓ କୃତିତ୍ୱ ଖୁବ୍ ବ୍ୟାପକ । ଏ ସମ୍ପର୍କରେ ପ୍ରଥମ ଅଧ୍ୟାୟରେ ପ୍ରଦତ୍ତ ଓ ଆଲୋଚିତ ହୋଇଛି । ଏହି ଅଧ୍ୟାୟରେ ଡକ୍ଟର ସୂପକାରଙ୍କ ଜୀବନ ପରିସର ମଧ୍ୟରେ ଆସି ଛାତ୍ର, ଶିକ୍ଷକ, ବନ୍ଧୁ ଓ ପରିଜନ ଭାବରେ ଯେଉଁମାନଙ୍କର ସ୍ମୃତି ଓ ଅନୁଭୂତି ରହିଛି ସେସବୁର ପରିପ୍ରକାଶ ଘଟିଛି ନିମ୍ନଲିଖିତ ପନ୍ଦରଟି ଆଲୋଚନା ଓ ନିବନ୍ଧ ମାଧ୍ୟମରେ । ସେଗୁଡ଼ିକର ଅଭିବ୍ୟକ୍ତ ହୋଇଛି ତାଙ୍କ ଜୀବନର ବିଭିନ୍ନ ଘଟଣା ଓ ବ୍ୟକ୍ତିତ୍ୱର ବହୁବିଧ ବିଭାବ । ତାଙ୍କର ବିଭିନ୍ନ ସଦ୍‌ଗୁଣ ଓ ସଦାଗ୍ଭର, ସଦଭ୍ୟାସ ଓ ସଦ୍‌ଭାବନା ଯାହାକୁ ଏହା ସମସ୍ତ ଲେଖକଗଣ ଅଙ୍ଗେ ଅଙ୍ଗେ ଅନୁଭବ କରିଛନ୍ତି ଓ ଗଭୀର ଭାବରେ ଉପଲବ୍ଧ କରିଛନ୍ତି, ସେସବୁ ସ୍ପଷ୍ଟ ଓ ସରସ ଭାବରେ ଏଗୁଡ଼ିକରେ ଆତ୍ମପ୍ରକାଶ କରିଛି । ଡକ୍ଟର ସୂପକାରଙ୍କ ବ୍ୟକ୍ତିତ୍ୱର ବିକଚ ଶତଦଳ ସଂଶିତ ଲେଖକଗଣଙ୍କ ଦ୍ୱାରା ବିଭିନ୍ନ ବର୍ଣ୍ଣରେ ରେଖାଙ୍କିତ ହୋଇଛି ।

| | |
|---|---|
| 1. ଡକ୍ଟର ପ୍ରଫୁଲ୍ଲ କୁମାର ପତି | ସୁପୁରୁଷ ଶ୍ରଦ୍ଧାକର |
| 2. ଡକ୍ଟର କୃତ୍ତିବାସ ନାୟକ | ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କ ଇତିହାସର ପରିହାସ : ଏକ ଆଲୋଚନା । |
| 3. ଶ୍ରୀ ବାଳକୃଷ୍ଣ କର | ଏକ ଅସାଧାରଣ ବ୍ୟକ୍ତିତ୍ୱ |

| | |
|---|---|
| 4. ଡକ୍ଟର ଜଗନ୍ନାଥ ମହାନ୍ତି | ସ୍ୱଭାବ ଶିକ୍ଷକ ଶ୍ରଦ୍ଧାକର ଜୀବନ ସଂଦେଶ |
| 5. ଡକ୍ଟର ବ୍ରଜକିଶୋର ସ୍ୱାଇଁ | ସଂସ୍କୃତ ବିଶ୍ୱବିଦ୍ୟାଳୟ ଓ ଡକଟର ସୂପକାର । |
| 6. ଶ୍ରୀ ପ୍ରହଲ୍ଲାଦ ଦାଶ | ଶ୍ରଦ୍ଧା ତାଙ୍କର, ପଣ୍ଡି ମୋର |
| 7. ଶ୍ରୀ ତ୍ରିବିକ୍ରମ ତ୍ରିପାଠୀ | ଶ୍ରଦ୍ଧେୟ ଶ୍ରଦ୍ଧାକର |
| 8. ଶ୍ରୀ ପରେଶ ଚନ୍ଦ୍ର ଦାନୀ | ସମୟାନୁବର୍ତ୍ତିତାର ପ୍ରତୀକ ଡଃ ସୂପକାର |
| ୨. ଜଷ୍ଟିସ କୃଷ୍ଣପ୍ରସାଦ ମହାପାତ୍ର | ଆଇନଜ୍ଞ ଶ୍ରଦ୍ଧାକର |
| 10. ଶ୍ରୀ ଶରତ ନାରାୟଣ ବେହେରା | ମୋ ଦୃଷ୍ଟିରେ ଡକ୍ଟର ସୂପକାର |
| 11. ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ | ଡକ୍ଟର ଶ୍ରଦ୍ଧାକର ସୂପକାର |
| 12. ଶ୍ରୀ ବାମାପଦ ତ୍ରିପାଠୀ | ଅଠସ୍ତରୀ ବର୍ଷର ଶିଶୁ |
| 13. ଶ୍ରୀ ଅନ୍ନଦା ପ୍ରସାଦ ରାୟ | ସେ ଏକ ତୁଳନାହୀନ ପ୍ରତିଭା |
| 14. ଶ୍ରୀ ଭାଗବତ ପ୍ରସାଦ ନନ୍ଦ | ମୋର ଜାଣିବାରେ ଡଃ ସୂପକାର |
| 15. ଶ୍ରୀ ଦୁର୍ଗାମାଧବ ମିଶ୍ର | ସେଦିନର ସ୍ମୃତି |

# ସୁପୁରୁଷ ଶ୍ରଦ୍ଧାକର

ଡକ୍ଟର ପ୍ରଫୁଲ୍ଲ କୁମାର ପଣ୍ଡ

ଡକ୍ଟର ଶ୍ରଦ୍ଧାକର ସୁପକାର ଥିଲେ ମୋର ବଡ଼ଭାଇ । ଅବଶ୍ୟ ରକ୍ତର ସମ୍ପର୍କ ନ ଥିଲା । କିନ୍ତୁ ଆମର ସମ୍ପର୍କ ଥିଲା ତା' ଅପେକ୍ଷା ଗାଢ଼ତର–ହୃଦୟର ସମ୍ପର୍କ । ତାଙ୍କ ପ୍ରତି ମୋର ଯେତିକି ଭକ୍ତି ଓ ଶ୍ରଦ୍ଧା ଥିଲା, ସେତିକି ଭକ୍ତି ଓ ଶ୍ରଦ୍ଧା ମୋର ଖୁବ୍ ଅଳ୍ପ ଲୋକଙ୍କ ପ୍ରତି ରହିଛି । ଆମ ଉଭୟ ପରିବାର ମଧ୍ୟରେ ଘନିଷ୍ଠ ସମ୍ପର୍କ ନ ଥିଲେ ବି ଆତ୍ମୀୟତା ଥିଲା; କିନ୍ତୁ ମୋର ସ୍ତ୍ରୀଙ୍କର ପରିବାର ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ମୋର ଶ୍ୱଶୁର ତ ଏକଶତ ବର୍ଷର ଊର୍ଦ୍ଧ୍ୱକୁ ଯାଇଥିଲେ । ତାଙ୍କର ଜୀବନର ଶେଷ ଭାଗରେ ସେ ରୋଗଗ୍ରସ୍ତ ଓ ଶଯ୍ୟାଶାୟୀ ହୋଇଗଲେ । ଶ୍ରଦ୍ଧାକର ବାବୁ ମଝିରେ ମଝିରେ ବରାବର ତାଙ୍କୁ ଦେଖିବାକୁ ଆସୁଥିଲେ । ଜଙ୍ଘା-ପୁତୁରାଙ୍କର ନିବିଡ଼ ଆଳାପ ଏବେ ବି ଆମର ମନେପଡ଼େ । ମୋର ସ୍ତ୍ରୀଙ୍କୁ ସେ ନିଜର ସାନ ଭଉଣୀ ମନେ କରୁଥିଲେ ଏବଂ ତାଙ୍କୁ ବୁଇ ବୋଲି ସମ୍ବୋଧନ କରୁଥିଲେ । ତାର କାରଣ ଥିଲା, ଡକ୍ଟର ପରଶୁରାମ ମିଶ୍ର ଶ୍ରଦ୍ଧାକର ବାବୁଙ୍କର ଅଧ୍ୟାପକ ଥିଲେ ଏବଂ ପରଶୁରାମ ବାବୁଙ୍କ ପୁଅ ରତିକୃଷ୍ଣ ମିଶ୍ର, ଜିଲ୍ଲା ଜଜ୍ (ମୋର ବଡ଼ ଶଳା), ଶ୍ରଦ୍ଧାକର ବାବୁଙ୍କର ବନ୍ଧୁ ଥିଲେ । ପଶ୍ଚିମ ଓଡ଼ିଶା ଅଞ୍ଚଳର ସଂସ୍କୃତିର ମହତ୍ତ୍ୱ ଓ ବିଶେଷତ୍ୱ ହେଉଛି ଯେ ଆମର ସମ୍ପର୍କ କେବେ ନିଜର ପରିବାର ମଧ୍ୟରେ ସୀମିତ ନ ଥାଏ । ଆମେ ନିଜ ଗାଁ ବା ସହରରେ ରହୁଥିଲେ ନିଜର ପଡ଼ାର ସମସ୍ତଙ୍କୁ ନିଜ ପରିବାର ସଦସ୍ୟ ଭାବରେ ନେଇ-ଥାଉଁ । ମୋର ବାଲ୍ୟକାଳ କଥା । ସମ୍ବଲପୁର ଗୋଟିଏ ଛୋଟ ସହର ଥିଲା, ଗୋଟିଏ ବଡ଼ ଗାଁ କହିଲେ ଚଳେ । ସେତେବେଳେ ସମସ୍ତ ବୟସ୍କ ଲୋକ ପିଲାମାନଙ୍କର ବବା, ଜକା, ମାମୁଁ ବୋଲି ଡକା ଯାଉଥିଲେ । ଅନ୍ୟ ପ୍ରଦେଶ ତ ଦୂରର କଥା । ଓଡ଼ିଶାର ଅନ୍ୟ ପ୍ରାନ୍ତରେ ବି ଏ ପ୍ରକାର ସଂସ୍କୃତିର ପ୍ରଚଳନ ନାହିଁ । ଅବଶ୍ୟ ସେମାନେ ବୟସ୍କ ଲୋକଙ୍କୁ ମଉସା ଓ ବୟସ୍କା ସ୍ତ୍ରୀମାନଙ୍କୁ ମାଉସୀ ବୋଲି ଡାକନ୍ତି; କିନ୍ତୁ ଏହି ସମ୍ବୋଧନ କେବଳ ଗତାନୁଗତିକ ଢଙ୍ଗରେ କରାଯାଇଥାଏ । ସମ୍ବଲପୁର ଅଞ୍ଚଳର ସ୍ନେହ, ସୌହାର୍ଦ୍ଦ୍ୟ ଓ ଆନ୍ତରିକତା ଅନ୍ୟ ପ୍ରାନ୍ତରେ ବିରଳ । ଏହି ସଂସ୍କୃତି ଓ ପରମ୍ପରା ଏବେ ମଧ୍ୟ ରହିଛି; କିନ୍ତୁ ଆସ୍ତେ ଆସ୍ତେ ତାହାର ଅବକ୍ଷୟ ହେଉଛି । ତଥାପି ଏହି ପରମ୍ପରାକୁ ଜୀବିତ ରଖିବାକୁ ପଡ଼ିବ ।

କିନ୍ତୁ ଏ'ତ ଗଲା ଶ୍ରଦ୍ଧାକର ବାବୁଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କର କଥା । ଏହି ସ୍ମୃତି ମୋ ପକ୍ଷରେ ଏକ ଅମୂଲ୍ୟ ସମ୍ପଦ; କିନ୍ତୁ ସ୍ମରଣୀକାର ଉଦ୍ଦେଶ୍ୟ

ହେଉଛି, ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କ ମହାନ୍ ବ୍ୟକ୍ତିତ୍ୱର ପ୍ରତିଫଳନ । ସେ ଭଲ ଛାତ୍ର ଥିଲେ ମଧ୍ୟ ତାଙ୍କର ସରକାରୀ ଚାକିରୀ ପ୍ରତି ମୋହ ନ ଥିଲା । ସେ ବାଲ୍ୟବସ୍ଥାରୁ ସ୍ୱାଧୀନତା ସଂଗ୍ରାମୀ ଥିଲେ । ତାଙ୍କର ଜୀବନର ପ୍ରତ୍ୟେକ ଛତ୍ରରେ– ଭାବନା, କଥାବାର୍ତ୍ତା, କାର୍ଯ୍ୟ ଏପରିକି ପୋଷାକ ପରିଚ୍ଛେଦରେ ବି ଗାନ୍ଧିଜୀଙ୍କ ଆଦର୍ଶ ପରିସ୍ଫୁଟ ହେଉଥିଲା । ସେ ରାଜନୀତିରେ ଓତଃପ୍ରୋତ ଭାବରେ ଜଡ଼ିତ ହୋଇଥିଲେ ବି ରାଜନୀତିର କର୍ଦ୍ଦମ ତାଙ୍କ ପଦସ୍ପର୍ଶ କରି ପାରି ନ ଥିଲା । ବ୍ରଜରାଜନଗର କାଗଜକଳ ବିରୁଦ୍ଧରେ ମକଦ୍ଦମା ଲଢି ଏବଂ ବିଭାର ସମସ୍ତ ପ୍ରଲୋଭନକୁ ଅସ୍ୱୀକାର କରି ସେ ମୁକ୍ତରୁ ପ୍ରମାଣ କରିଦେଲେ ଯେ ତାଙ୍କର ଚରିତ୍ର ଥିଲା ନିର୍ମଳ ଏବଂ ଉଚ୍ଚକୋଟୀର । ସେ ଓଡ଼ିଶାର ପୂଜ୍ୟ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ ହୋଇଥିଲେ କାରଣ ତାଙ୍କର ବଳିଷ୍ଠ ଚରିତ୍ରବତ୍ତା ଥିଲା ଏବଂ ତାଙ୍କର ବ୍ୟବହାର ଥିଲା ଅତୀବ ମଧୁର । ଜ୍ଞାନ ଆହରଣ ପାଇଁ ତାଙ୍କର ଅସୀମ ଆଗହ ଥିଲା । ଆଇ.ଏସ୍.ସି. ପରେ ସେ ଗଣିତ ଶାସ୍ତ୍ରରେ ଅନର୍ସ ନେଇ ବି.ଏ. ପାସ୍ କଲେ ଏବଂ ତାପରେ ଇଂରାଜୀ ସାହିତ୍ୟରେ ଏମ୍.ଏ. ପାସ୍ କଲେ । ମହାନଦୀରେ ଆଗେ ଯେପରି ଦୁଇଟି ଧାର ରହୁଥିଲା ଗ୍ରୀଷ୍ମ କାଳରେ, ସେହିପରି ପାଶ୍ଚାତ୍ୟ ଶିକ୍ଷାର ଏହି ଧାର ସହିତ ତାଙ୍କର ସଂସ୍କୃତ ଶିକ୍ଷା ମଧ୍ୟ ଅନବରତ ଚାଲିଥିଲା । ସେ ଥିଲେ କାବ୍ୟତୀର୍ଥ । ତାଙ୍କର ସାହିତ୍ୟ ଚର୍ଚ୍ଚା ଓ ସାହିତ୍ୟ ସାଧନା ତାଙ୍କର ହୃଦୟର ଆର୍ଦ୍ରତା ଓ କୋମଳତାକୁ ବଜାୟ ରଖିଥିଲା । ଯାହା ଫଳରେ ରାଜନୀତିର କର୍କଶତା ଓ ଆବିଳତା ତାଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରି ନ ଥିଲା । ତାଙ୍କର ସଚ୍ଚୋଟତା ପାଇଁ ସେ ଯଥେଷ୍ଟ ମୂଲ୍ୟ ଦେଇଛନ୍ତି । ଏତେବର୍ଷ ରାଜନୀତିରେ ଥାଇ ମଧ୍ୟ ସେ କେବେ ମନ୍ତ୍ରୀ ହୋଇନାହାନ୍ତି । କିନ୍ତୁ ବିରୋଧୀ ଦଳର ନେତା ଥିବାବେଳେ ସେ ତାଙ୍କର ପରାକାଷ୍ଠାର ପ୍ରମାଣ ଦେଇଛନ୍ତି । ଥରେ ସେ ଓଡ଼ିଶା ବିଧାନସଭାରେ କହିଥିଲେ, "ମୁଁ ସୂପକାର । ଭାତ ହାଣ୍ଡିରୁ ଗୋଟିଏ ଚାଉଳ ଚିପିଲେ ମୁଁ ସରକାରଙ୍କ ନୀତି ବିଷୟରେ ସବୁ କଥା ଜାଣିପାରିବି ।" ଏବଂ ତା'ପରେ ସେ ସରକାରଙ୍କ ଗୋଟିଏ ନିଷ୍ପତ୍ତିକୁ ବିଶଦ ଭାବରେ ସମାଲୋଚନା କରି ସରକାରଙ୍କ ଅପାରଗତାର ପ୍ରମାଣ ସମସ୍ତଙ୍କ ସମ୍ମୁଖରେ ଉପସ୍ଥାପନ କରି ପାରିଥିଲେ । ହଁ, ତାଙ୍କର ଜ୍ଞାନ ଆହରଣରେ ଏପରି ଆଗ୍ରହ ଥିଲା ଯେ, ସେ ଆଇନ୍ ଅଧ୍ୟାୟନକୁ ଏକ ବ୍ୟବସାୟ ଭାବରେ ନ ନେଇ ଆଇନ୍‌ରେ ଏଲ୍.ଏଲ୍.ଏମ୍. ଓ ପି.ଏଚ୍.ଡ଼ି. ଡ଼ିଗ୍ରୀ ହାସଲ କଲେ । ବିଶ୍ୱବିଦ୍ୟାଳୟରେ ସିନେଟ୍ ଓ ସିଣ୍ଡିକେଟ୍ ସଭ୍ୟ ହୋଇ (ଉଭୟ ଉତ୍କଳ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ) ଏବଂ ଶେଷରେ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ସେ ଜଣେ ଶିକ୍ଷାବିତ ଭାବରେ ଯଥେଷ୍ଟ ସୁନାମ ଅର୍ଜନ କରିପାରିଥିଲେ । ସେ ସମ୍ବଲପୁର ଅଞ୍ଚଳକୁ ପ୍ରଗାଢ଼ ଭାବରେ ସ୍ନେହ କରୁଥିଲେ । କିନ୍ତୁ ଏତଦ୍ୱାରା ତାଙ୍କର ଓଡ଼ିଶା ପ୍ରୀତି ବା ଭାରତ ପ୍ରୀତି ଆଦୌ ବାଧାପ୍ରାପ୍ତ ହେଉ ନ ଥିଲା ।

ଏହି ସୁପୁରୁଷଙ୍କ ସ୍ମୃତି ଜୀବନ୍ତ ରଖିବାରେ ଏହି ସ୍ମରଣିକା ସାହାଯ୍ୟ କରୁ । ଏଥି ସହିତ ଛନ୍ଦାକର ବାବୁଙ୍କର ଉଭୟ ପ୍ରକାଶିତ ଓ ଅପ୍ରକାଶିତ ସାହିତ୍ୟକୃତିର ବହୁଳ ପ୍ରଚାର ଓ ପ୍ରସାର ହେଉ ।

ପୂର୍ବତନ କୁଳପତି
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ସମ୍ବଲପୁର

# ଡକ୍ଟର ଶ୍ରଦ୍ଧାକର ସୁପକାରଙ୍କ 'ଇତିହାସର ପରିହାସ' ଏକ ଆଲୋଚନା

**ଡକ୍ଟର କୃତ୍ତିବାସ ନାୟକ**

'ଇତିହାସର ପରିହାସ' ପୁସ୍ତକଟି ଡକ୍ଟର ଶ୍ରଦ୍ଧାକର ସୁପକାରଙ୍କର କେତେକ ଅବ୍ୟକ୍ତ ଭାବନାର ଏକ ସଂକଳନ । ଆଦ୍ୟ କଥନରେ ହିଁ ଲେଖକ ସ୍ପଷ୍ଟ କରି ଦେଇଛନ୍ତି— "ଏ' କାହାଣୀ ନୁହେଁ, ସରକାରୀ ତଥ୍ୟ ଉପରେ ପ୍ରତିଷ୍ଠିତ ତଥା ନଥିପତ୍ରରୁ ସଂଗୃହିତ ରିପୋର୍ଟ ଉପରେ ଆଧାରିତ ଇତିହାସ" ।

ବିଂଶ ଶତାବ୍ଦୀର କୋଣାର୍କ—'ହୀରାକୁଦ ବନ୍ଧ' ନିର୍ମାଣକାଳୀନ ଘଟଣାବଳୀ, ସରକାରୀ କଳର ଉଦାସୀନତା ତଥା ବୁଡ଼ି ଅଞ୍ଚଳର ଦୁଃଖୀ ଲୋକଙ୍କ ପୁନଃ ଥଇଥାନ ସମ୍ପର୍କୀୟ ବିଭିନ୍ନ ତଥ୍ୟକୁ ଆଧାର କରି ଡକ୍ଟର ସୁପକାର 'ଇତିହାସର ପରିହାସ' ପୁସ୍ତକଟିକୁ ପାଠକମାନଙ୍କ ଆଗରେ ଉପସ୍ଥାପିତ କରିଛନ୍ତି ।

କୁହାଯାଏ—ଇତିହାସ ବଡ଼ ନିଷ୍ଠୁର । ପ୍ରତାରଣା, ପ୍ରବଞ୍ଚନା, ଅସତ୍ୟ, ଅନ୍ୟାୟକୁ ସେ ଉଜ୍ଜ୍ୱଳ ଆଲୋକକୁ ନେଇଆସେ । ଆଉରଙ୍ଗଜେବ ହୋଇପାରନ୍ତି ସମ୍ରାଟ, ତାଙ୍କର ଧର୍ମାନ୍ଧତାର ମୁଖାକୁ ଇତିହାସ କାଢ଼ି ସମସ୍ତଙ୍କ ଆଗରେ ଥୋଇଦିଏ । ହଜାର ହଜାର ବର୍ଷପରେ ବି ତାଙ୍କୁ ଇତିହାସ ନିନ୍ଦାକରି ଚାଲିଥିବ ଆଉ ଆକବରଙ୍କର ଜୟଗାନ କରୁଥିବ । ଠିକ୍ ସେହିପରି, ହୀରାକୁଦ ବନ୍ଧ ନିର୍ମାଣ କାଳରେ ଯେଉଁମାନେ ନିରୀହ ଜନତାଙ୍କ ପ୍ରତି ପ୍ରତାରଣା କରିଛନ୍ତି, ଘିଅ, ମହୁର ବନ୍ୟା ନାମରେ ତାଙ୍କୁ ମିଥ୍ୟା ପ୍ରତିଶ୍ରୁତି ଦେଇ ଠକି ଦେଇଛନ୍ତି, ସେମାନଙ୍କୁ ଇତିହାସ କଦାପି କ୍ଷମା ଦେଇ ନପାରେ । ସେହିପରି ହୀରାକୁଦ ବନ୍ଧ ପାଇଁ ଯେଉଁ ଶହ ଶହ ଜନତା ଧରମା ପରି ନିଜକୁ ହୀରାକୁଦ ଅତଳ ଜଳରେ ଜଳାଞ୍ଜଳି ଦେଇଛନ୍ତି, ଦିନେ ନା' ଦିନେ ଇତିହାସ ତାଙ୍କୁ ପ୍ରଶଂସା କରିବ ନିଶ୍ଚୟ ।

'ଇତିହାସର ପରିହାସ' ବିଷୟବସ୍ତୁ ଡକ୍ଟର ସୁପକାରଙ୍କର ଅନ୍ୟାନ୍ୟ ଗଳ୍ପ ପରି ରାଜନୈତିକ ପୃଷ୍ଠଭୂମି ଉପରେ ଦଣ୍ଡାୟମାନ ହୋଇଥିବାରୁ ତତ୍କାଳୀନ ରାଜନୈତିକ ନେତା ତଥା କାର୍ଯ୍ୟରତ ଉଚ୍ଚପଦାଧିକାରୀ ପ୍ରତ୍ୟେକ ପୃଷ୍ଠାକୁ ଆସି ଯାଆନ୍ତି । ବିଧାନସଭାର ବିରୋଧୀଦଳର ନେତା ଭାବେ ଡକ୍ଟର ସୁପକାର ସରକାରଙ୍କୁ ହୀରାକୁଦ ବନ୍ଧ ନିର୍ମାଣ-ଜନିତ କ୍ଷତିପୂରଣ ସମ୍ପର୍କୀୟ ବିଭିନ୍ନ ପ୍ରଶ୍ନ ପଚାରି ଗଠନମୂଳକ ମତାମତ ଦେଇଛନ୍ତି । ସେଗୁଡ଼ିକ ପାଦଟୀକାରେ ସ୍ଥାନ ପାଇବା ସଙ୍ଗେ ସଙ୍ଗେ ବିଭିନ୍ନ ସମୟରେ ମନ୍ତ୍ରୀ ଓ ଉଚ୍ଚପଦାଧିକାରୀ ମାନଙ୍କର ପ୍ରତିଶ୍ରୁତି ଓ ରିପୋର୍ଟ ମଧ୍ୟ ସ୍ଥାନ ପାଇଛି । ଯାହାକି ପ୍ରାମାଣିକ ତଥ୍ୟ ଯୋଗାଇ ଦେବାରେ ସମର୍ଥ ହୋଇପାରୁଛି ।

ତଥ୍ୟଭିତ୍ତିକ ପୁସ୍ତକଟିକୁ ଲେଖକ ଛଅଟି ପରିଚ୍ଛେଦରେ ବିଭକ୍ତ କରି ପାଠକଙ୍କୁ ଭରାକ୍ରାନ୍ତ କରିବା ଭଳି ପରିସ୍ଥିତିରୁ ରକ୍ଷା କରିଛନ୍ତି । ଜଣେ ମୁଗ୍ଧ ପାଠକ ଭାବେ ପରିଚିତ ଲେଖକ ଡକ୍‌ଟର ସୂପକାର ପାଠକ ହୃଦୟକୁ ଆକୃଷ୍ଟ କଲାଭଳି ପରିଚ୍ଛେଦର ନାମକରଣ କରିଛନ୍ତି । ଯଥା—ପ୍ରଥମ ପରିଚ୍ଛେଦ—ଗୀତଗୋବିନ୍ଦକୁ ଗୁରିଅଣା, ଦ୍ୱିତୀୟ ପରିଚ୍ଛେଦ—ଆଶ୍ଚର୍ଯ୍ୟ ପ୍ରଦୀପ ଓ ଯାଦୁଗର, ତୃତୀୟ ପରିଚ୍ଛେଦ—ଅମାବାସ୍ୟାରେ ଅର୍ଦ୍ଧଚନ୍ଦ୍ର ଏବଂ ଚତୁର୍ଥ ପରିଚ୍ଛେଦ—ଯାତ୍ରା ନା ମହାଯାତ୍ରା । ଶେଷରେ ଉପସଂହାର, ପଞ୍ଚମ ପରିଚ୍ଛେଦରେ ଘାନୀତ ।

ପ୍ରଥମ ପରିଚ୍ଛେଦର ପ୍ରାରମ୍ଭରେ ଲେଖକ ଶୁଣିଥିବା ଗପଟିକୁ କହିଛନ୍ତି—"ପଣ୍ଡିତ ଜଣେ ଗୀତଗୋବିନ୍ଦକୁ ଓଡ଼ିଆ ଗୀତିକାବ୍ୟରେ ଅନୁବାଦ କରି କିଛି ଅର୍ଥ ଆଶାରେ ଗୁଣଗ୍ରାହୀ ରାଜାଙ୍କୁ ଭେଟି ଦେବାକୁ ଯାଇଛନ୍ତି । ଥରକୁ ଥର ସେ ରାଜଦ୍ୱାରକୁ ଯାଇ ସଫଳ ହୋଇ ପାରିନାହାନ୍ତି । ଏତିକି ବେଳେ କାବୁଲି ପଠାଣଠାରୁ ରାଜା ଦୁଇଟି ବିଲୁଟି କୁକୁର ପାଇ ତା'ର ପ୍ରତିଦାନରେ ଦୁଇଟି ଦୁଧିଆଳୀ ମଇଁଷି ଉପହାର ଦେଇଛନ୍ତି । ସେତେବେଳେକୁ ପଣ୍ଡିତେ ଉଚ୍ଚସ୍ୱରରେ ପରିଚିତ ସଂସ୍କୃତ କବିତାରେ ରାଜାଙ୍କର ପ୍ରଶସ୍ତି ଗାନ କରୁଥିଲେ । ସେ ରାଜାଙ୍କର ବଦାନ୍ୟତାରେ ମୁଗ୍ଧ ହେଲେ । ସତେ ଯେପରି ବାଞ୍ଛା କଳ୍ପତରୁ । ଯାଚିତ ଦାନରେ ମୁକ୍ତହସ୍ତ । ପଣ୍ଡିତଙ୍କର ଅଗାଧ ପାଣ୍ଡିତ୍ୟ ତଥା ସରଳ ତରଳ କାବ୍ୟ ପ୍ରତିଭା ବିଷୟ ଜାଣିବାକୁ ରାଜାଙ୍କର ଆଉ ଧୈର୍ଯ୍ୟ ନ ଥିଲା । ସେ ନିଜ ଅଙ୍ଗାବରଣରୁ ଗୁରିଅଣା ପଇସା କାଢି ପଣ୍ଡିତ ମହାଶୟଙ୍କୁ ସହାସ୍ୟ ବଦନରେ ଉପଢୌକନ ଦେଲେ । ପଣ୍ଡିତେ ସ୍ତବ୍ଧ ହୋଇ ଯାଇଥିଲେ । ତାଙ୍କର ତଣ୍ଟି ଶୁଖି ଯାଇଥିଲା । ସେ ଏ ଅପମାନ ସହ୍ୟକରି ନ ପାରି ରାଜ୍ୟ ଛାଡ଼ି ଗ୍ଲଲିଗଲେ" ।

ଏହି ଗଳ୍ପଟିକୁ ଶ୍ଳେଷକରି ଡକ୍‌ଟର ସୂପକାର ହୀରାକୁଦ ବନ୍ଧ ନିର୍ମାଣ କାଳୀନ ରାଜାଙ୍କ ନ୍ୟାୟ କଥାକୁ ସ୍ମରଣ କରାଇ ଦେଇଛନ୍ତି । କ୍ଷତିପୂରଣ ବାବଦକୁ ସରକାରଙ୍କ ତରଫରୁ ଯେଉଁ ଉଦାର ନୀତି କାର୍ଯ୍ୟକାରୀ ହେଇଥିଲା, ତାହା ଅତି ନଗଣ୍ୟ ଥିଲା ବୋଲି ଲେଖକ ଏକ ସମ୍ବଲପୁରୀ ଢଗରେ ଅବଗତ କରାଇଛନ୍ତି—"ଅଦିଆ ଦିଅଇ ଦାନ, ମୂଷାଲେଣ୍ଡି ପରମାଣ" । (ପୃଷ୍ଠା-୧୩) ଯେଉଁମାନେ ଜମିବାଡ଼ି, ଘରଦ୍ୱାର ହରେଇ ଅନୁଦାନ ପାଇଥିଲେ, ସେମାନଙ୍କ ତୁଳନାରେ ପଞ୍ଜାବରୁ ଅଣା ଯାଇଥିବା ବଳଦ ଭଡ଼ା ଥିଲା ଯଥେଷ୍ଟ ଅଧିକ । ଏଭଳି ଅନ୍ୟାୟର କିଭଳି ପ୍ରତିବାଦ କରାଯାଇଥିଲା, ସେ କଥାକୁ ସ୍ପଷ୍ଟଭାବେ ଲେଖକ ଉଲ୍ଲେଖ କରିଛନ୍ତି । ଶେଷରେ ନିରୀହ, ମୂକ, ମଣିଷ ମାନଙ୍କର ଅନିଚ୍ଛାକୃତ ଓ ବାଧ୍ୟତାମୂଳକ ତ୍ୟାଗ ଉପରେ ନିର୍ମିତ ହୋଇଛି, ଏଇ ବିଂଶ ଶତାବ୍ଦୀର ଆଧୁନିକ କୋଣାର୍କ ।

ଦ୍ୱିତୀୟ ପରିଚ୍ଛେଦରେ 'ଯାଦୁଗର ଓ ଆଲ୍ଲାଉଦ୍ଦୀନଙ୍କର ଆଶ୍ଚର୍ଯ୍ୟ ପ୍ରଦୀପ' ଗଳ୍ପକୁ ଅବଲମ୍ବନ କରି ଡକ୍‌ଟର ସୂପକାର ସରକାରଙ୍କର ପ୍ରତିଶ୍ରୁତି ଏବଂ ଉଜ୍ଜ୍ୱଳ ଭବିଷ୍ୟତର

ସ୍ୱପ୍ନ ବିଷୟରେ ଆଲୋକପାତ କରିଛନ୍ତି । ୧୯୪୬ ମସିହାରେ ହୀରାକୁଦ ବନ୍ଧ ଯୋଜନାର ଶୁଭ ଦିଆଯାଇଥିବା ସତ୍ତ୍ୱେ, ତିନିବର୍ଷ ପରେ ଯାଇ ଲୋକଙ୍କ ପାଇଁ ସରକାର ଜମି ପ୍ରସ୍ତୁତି କରିବାର ବ୍ୟବସ୍ଥା କଲେ । ଏହାଦ୍ୱାରା ଲୋକଙ୍କର ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଥିବା ବିଷୟକୁ ସେ 'ଘରେ ନ ପଶୁଣୁ ଘୁଙ୍କ ବାଜିଲା ଓ ଘର ବଦଳରେ ଘର' ନାମକ ଉପଶୀର୍ଷକରେ ବର୍ଣ୍ଣନା କରିଛନ୍ତି ।

'ଅମାବାସ୍ୟାର ଅର୍ଦ୍ଧଚନ୍ଦ୍ର' ଶୀର୍ଷକ ତୃତୀୟ ପରିଚ୍ଛେଦରେ ସମୁଦ୍ରମନ୍ଥନରୁ ହଳାହଳ ଓ ଅର୍ଦ୍ଧଚନ୍ଦ୍ର ବାହାରି ଯେଉଁଭଳି ଭୋଳା ମହେଶ୍ୱରଙ୍କ ଭାଗରେ ପଡ଼ିଥିଲା, ଠିକ୍ ସେହିଭଳି ହୀରାକୁଦ ବନ୍ଧ ଖନନ କାଳରେ ପଞ୍ଜାବୀ ଠିକାଦାରମାନଙ୍କ ହାତକୁ ସବୁ ଐରାବତ । ଉଚ୍ଚୈଶ୍ରବା ଚାଲିଗଲା । 'ହଳାହଳ ଓ ଅର୍ଦ୍ଧଚନ୍ଦ୍ର' ହୀରାକୁଦ ବୁଡ଼ି ଅଞ୍ଚଳର ଲୋକଙ୍କ ଭାଗରେ ପଡ଼ିଲା । ସେ ବିଷୟଟିକୁ ବିଭିନ୍ନ ତଥ୍ୟ ତଥା ବୈଧାନିକ ପ୍ରଶ୍ନ ଉତ୍ତର ମାଧ୍ୟମରେ ଲୋକଲୋଚନକୁ ଆଣିବାର ପ୍ରୟାସ କରିଛନ୍ତି ।

ଚତୁର୍ଥ ପରିଚ୍ଛେଦରେ ୧୯୫୫ ମସିହା ପରବର୍ତ୍ତୀ ଘଟଣା, ବୁଡ଼ି ଅଞ୍ଚଳରେ ସଶସ୍ତ୍ର ପୋଲିସର ମାର୍ଚ୍ଚ, ଉପକୂଳ ଅଞ୍ଚଳର ଦଳେଇ ଘାଇ ଏବଂ ପୁନର୍ବସତି ପରାମର୍ଶଦାତା କମିଟି ଗଠନ ସମ୍ପର୍କରେ, ଲେଖକ ଆଲୋଚନା କରି ହୀରାକୁଦ ଅଞ୍ଚଳର ବାସଚ୍ୟୁତ ହୋଇଥିବା ଲୋକଙ୍କ ପୁନର୍ବସତି କାର୍ଯ୍ୟର ଅବହେଳାକୁ ସମାଲୋଚନା କରିଛନ୍ତି । ଶେଷରେ ଉପସଂହାରରେ ୧୯୫୬ ମସିହାରୁ ୧୯୮୮ ମଧ୍ୟରେ ଘଟି ଯାଇଥିବା କେତେକ ଘଟଣା, ଯାହା ହୀରାକୁଦ ବନ୍ଧ ଓ ରେଙ୍ଗାଲୀ ବନ୍ଧ ଯୋଜନା ବାସଚ୍ୟୁତ ଲୋକମାନଙ୍କ ସହିତ ସଂପୃକ୍ତ, ଭବିଷ୍ୟତ ପାଇଁ ତାକୁ ସବୁ ସ୍ମରଣ କରାଇ ଦେଇଛନ୍ତି । ୧୯୬୩ ମସିହାରେ ସନ୍ଥ ବିନୋବା ଭାବେ ତାଙ୍କର ସମ୍ବଲପୁର ଗସ୍ତ କାଳରେ ବୁଡ଼ି ଅଞ୍ଚଳରେ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା କଥା ଶୁଣିଥିଲେ ।

ଗାଁ ମଜଲିସ୍‌ରେ କିଭଳି ତାର ପ୍ରତିଧ୍ୱନି ହୋଇଥିଲା, ସେ କଥାକୁ ଲେଖକ ନିଜ ପୁସ୍ତକରେ ସ୍ଥାନ ଦେଇଛନ୍ତି । ଲେଖକ ବିଶ୍ୱାସ କରନ୍ତି—ଆମର ଭାବୀ ବଂଶଧରମାନଙ୍କୁ ଅବଗତ କରାଇବା ନିଜକ ଇତିହାସ ରଚିତ ହେବା ଉଚିତ୍ । ତେଣୁ ସେ ଲେଖିଛନ୍ତି—ଏ' ପୁସ୍ତିକାଟି ଭାବୀ ବଂଶଧରମାନଙ୍କ ପାଇଁ ଲିଖିତ । (ପୃ-୫୯) କଟୁ ହେଲେ ବି ଯାହା ସତ୍ୟ, ତା' ଦିନେ ନା ଦିନେ ପ୍ରକାଶ ପାଇବ । ମିଥ୍ୟାର ଆବରଣ ତଳେ ସତ୍ୟକୁ ଲୁଚାଇ ରଖାଯାଇ ପାରେନା । ହୀରାକୁଦ ଜଳଭଣ୍ଡାର ପୂର୍ଣ୍ଣ ହେବାର ୩୨ ବର୍ଷପରେ ଜଣା ପଡ଼ିଛି—ଅଦ୍ୟାବଧି ପ୍ରାୟ ସାଢ଼େ ପନ୍ଦର ଲକ୍ଷ ଟଙ୍କା କ୍ଷତି ପୂରଣ ବାବଦକୁ ରାଜସ୍ୱ ଜମା ଆକାରରେ ପଡ଼ି ରହିଛି ।

ସୂଚନାଧର୍ମୀ ଏହି ପୁସ୍ତକରେ ଡକ୍ଟର ସୂପକାର କ୍ଷୋଭ ପ୍ରକାଶ କରି ହୀରାକୁଦ ବନ୍ଧ ଯୋଜନାର ଇତିହାସକୁ 'ଇତିହାସର ଉପହାସ' ବା ବୁଦ୍ଧି ଅନ୍ଧଙ୍କର ଲେଖକଙ୍କ ପ୍ରତି ଉପହାସ ଭାବରେ ଗ୍ରହଣ କରି ନେଇଛନ୍ତି । ଆଶାବାଦୀ ଲେଖକ ତଥାପି ଆଶା ରଖିଛନ୍ତି—ଦିନେ ସମୟ ଆସିବ । ଇତିହାସର ପୃଷ୍ଠା ଓଲଟାଇ ଭାବୀ ବଂଶଧରମାନେ ପୂର୍ବଜମାନଙ୍କର କୃତି ତ୍ରୁଟିକୁ ସଂଶୋଧନ କରିବେ । ଯେଉଁମାନେ ତାଙ୍କ ନ୍ୟାର୍ଯ୍ୟ ପ୍ରାପ୍ୟରୁ ବଞ୍ଚିତ ସେମାନଙ୍କୁ ତାଙ୍କର ପ୍ରାପ୍ୟ ଉପଯୁକ୍ତ ମର୍ଯ୍ୟାଦା ସହିତ ପ୍ରଦାନ କରିବେ ।

୧ମ ସଂସ୍କରଣ-୧।୯।୧୯୮୮

ପୃଷ୍ଠା-୬୨ । ମୂଲ୍ୟ-୫ ଟଙ୍କା । ମୁଦ୍ରଣ: ତ୍ରିମୂର୍ତ୍ତି କମ୍ପୋଜର୍ସ, ସମ୍ବଲପୁର ।

କାର୍ଯ୍ୟକ୍ରମ ନିଷ୍ପାଦକ

ଆକାଶବାଣୀ, ସମ୍ବଲପୁର

# ଏକ ଅସାଧାରଣ ବ୍ୟକ୍ତିତ୍ୱ

ଶ୍ରୀ ବାଳକୃଷ୍ଣ କର

ଅତି ଶାନ୍ତ, ସରଳ ମଣିଷଟିଏ । ବେଶଭୂଷଣରେ ସେପରି କିଛି ଆଡ଼ମ୍ବର ନ ଥିଲା । ସ୍ୱାଧୀନତା ଆନ୍ଦୋଳନର ଛାପ ପଡ଼ିଥିବାରୁ ଖଦଡ଼ ପିନ୍ଧିବା ପାଇଁ ବହୁତ ସଉକ । ମାପିଚୁପି କଥା କହନ୍ତି । ଏବେକାର ନେତାଙ୍କ ପରି ଅଯଥା ଗୁଡ଼ିଏ କଥା କହିବା ଅଭ୍ୟାସ ନଥିଲା । କାମ ହାସଲ ପାଇଁ ତୋଷାମଦ କରିବା ତ ଶିଖି ନ ଥିଲେ । ଚାଟୁକଥା କହି ନଜାଣି ପିଲଙ୍କ ଠାରୁ ନାନାପ୍ରକାର ଭର୍ତ୍ସନା ଶୁଣନ୍ତି, ତଥାପି ସେ ଅଟଳ ମହାମେରୁ । ନଇଁ ଯାଆନ୍ତି ପଛେ, କେବେ ଭାଙ୍ଗିଯିବାର ଦେଖାଯାଇନାହିଁ । ସାରାଜୀବନ ତାଙ୍କର ଦୁଃଖରେ କଟିଛି । ଦୁଃଖ ତାଙ୍କ ମନକୁ ମଜଭୁତ କରିଛି, କେବେ ଦୁର୍ବଳ କରିନାହିଁ । ମଣିଷକୁ ଦୁଃଖରେ ହିଁ ବିଭୁଙ୍କ ଆଶୀର୍ବାଦ ମିଳେ, ସୁଖରେ ନୁହେଁ । ସେଇ କଥା ବିଶ୍ୱକବି ରବିନ୍ଦ୍ରନାଥ କହିଛନ୍ତି, "ଯଦି ଦେଖାଦିଏ ମୋରେ ଭଲେ ବେସେ, ଏସୋ ଗହନ ତିମିର ଘନ ଦୁଃଖେର ବେଶେ" । ଦୁଃଖୀ ମଣିଷ ହିଁ ଭଗବାନଙ୍କ ନିକଟତର ହୁଏ । ତାହାହିଁ— ଘଟିଥିଲା, ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କ ଜୀବନରେ ।

ଗୋଟିଏ ପରେ ଗୋଟିଏ ଦୁଃଖ ଆସିଛି, ଶ୍ରଦ୍ଧାକରଙ୍କ ଜୀବନରେ । ଦଶ ବର୍ଷ ବୟସରେ ମାତୃ ବିୟୋଗ । ସେଥିରୁ ଟିକିଏ ଆଶ୍ୱସ୍ତି ଲାଭ କଲାବେଳକୁ ବତିଶ ବର୍ଷ ବୟସରେ ପତ୍ନୀ ବିୟୋଗ । ନିଜେ ତ ମା' ଛେଉଣ୍ଡ । ପୁଣି ମା' ଛେଉଣ୍ଡ ପିଲାଙ୍କ ଲାଳନ ପାଳନ ତାଙ୍କରି ଉପରେ । ସମୟ ହିଁ ବଳବାନ । ସମୟ ଆଖିରୁ ଲୁହ ପୋଛିଦିଏ । ପାରିବାରିକ ବନ୍ଧନ ଆଗରେ ସମାଜର ବୃହତ୍ତର ସ୍ୱାର୍ଥକୁ ସେ ଅଧିକ ପ୍ରାଧାନ୍ୟ ଦେଉଥିଲେ । ସ୍ତ୍ରୀଙ୍କ ମୃତ୍ୟୁ ପରେ ପରେ ହୀରାକୁଦ ବନ୍ଧ ବନ୍ଦ ଆନ୍ଦୋଳନରେ ନେତୃତ୍ୱ ନେଇ ଗିରଫ ହୋଇ ଜେଲରେ ରହିଲେ ବିଚାରାଧୀନ ବନ୍ଦୀଭାବେ । ଭାରତର ମୁକ୍ତି ଦିବସ ଦିନ ମୁକ୍ତ ହେଲେ ଶ୍ରଦ୍ଧାକର । ତା' ପରେ ଆରମ୍ଭ ହେଲା ସାଧାରଣ ଜୀବନ ।

ଆଜି 'ପ୍ରଦୂଷଣ' ନେଇ କେତେ ସଭାସମିତି, ଆଲୋଚନା ଚାଲିଛି । ଏ କଥା ୧୯୫୦ ବେଳକୁ କହିଲେ, କେହି ଗୁରୁତ୍ୱ ଦେଉ ନ ଥିଲେ । ମହାନଦୀ ଜଳ ପ୍ରଦୂଷଣ ନେଇ କୋଟିପତି ବିରଳା ବିରୁଦ୍ଧରେ ମୋକଦ୍ଦମା ଦାଏର କରିଥିଲେ, ଶ୍ରଦ୍ଧାକର ୧୯୫୦ ସାଲରେ । ତିନି ବର୍ଷର ପରିଶ୍ରମ ବ୍ୟର୍ଥ ହେଲେବି ମନରେ ଶାନ୍ତି ପାଇଲେ ।

ମୁଁ ଶ୍ରଦ୍ଧାକର ବାବୁଙ୍କ ପ୍ରଥମ ପରିଚୟ ପାଏ, ୧୯୫୨ ସାଲରେ । ସେତେବେଳେ ମୁଁ ଗଙ୍ଗାଧର ମେହେର କଲେଜର ଛାତ୍ର ଏବଂ ସେ ସମ୍ବଲପୁର ବିଧାନମଣ୍ଡଳରୁ ଗଣତନ୍ତ୍ର ପରିଷଦ ରାଜନୈତିକ ଦଳରୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ପ୍ରତିନିଧି । ଭାରତରେ

ଗଣତନ୍ତ୍ରର ଶୈଶବାବସ୍ଥା । ଶ୍ରଦ୍ଧାକର ବାବୁ ପ୍ରଥମ ବିଧାନସଭାରେ ଜଣେ ସକ୍ରିୟ ସଭ୍ୟଭାବେ ଭଲନାମ କରିଥିଲେ । କଲେଜର ଅଧ୍ୟକ୍ଷ ଡ଼କ୍ଟର ମାୟାଧର ମାନସିଂହ । ଏକ ଶୀତ ସନ୍ଧ୍ୟାରେ କଲେଜର Mock Parliamentର ବାଚସ୍ପତି ପଦ ଅଳଂକୃତ କରିବା ପାଇଁ ନିମନ୍ତ୍ରିତ ହୋଇଥିଲେ ଶ୍ରଦ୍ଧାକର ବାବୁ । Mock Parliamentର ଆଲୋଚନା ବେଶ୍ ଉପଭୋଗ୍ୟ ହୋଇଥିଲା । ସେଇଦିନଠାରୁ ତାଙ୍କୁ ଦେଖିଆସିଛି । ପରେ ଚାକିରୀ ଜୀବନର ବ୍ୟକ୍ତିଗତ ପରିଚୟ ବି ଥିଲା । ଯେକୌଣସି ସଭାସମିତିରେ ଶ୍ରଦ୍ଧାକରବାବୁ ନିଶ୍ଚୟ ଉପସ୍ଥିତ ଥିବେ । କେତେବେଳେ ମୁଖ୍ୟ ଅତିଥି ତ କେତେବେଳେ ସଭାପତି ଆଉ କେତେବେଳେ ଶ୍ରୋତାଙ୍କ ଆସନରେ । ମୁଖ୍ୟ ଅତିଥି ବା ସଭାପତିଙ୍କ ଅନୁପସ୍ଥିତି ହେଲେ, ଖୋଜାପଡ଼େ ଶ୍ରଦ୍ଧାକରବାବୁଙ୍କୁ । ସେ କେବେହେଲେ ନାସ୍ତିବାଣୀ ଶୁଣାନ୍ତି ନାହିଁ । ପୂର୍ବରୁ ନିମନ୍ତ୍ରଣ କରାଯାଇ ନାହିଁ ବୋଲି କେବେହେଲେ ଅନିଚ୍ଛା ବା ଅପମାନ ଭାବ ପ୍ରକାଶ କରନ୍ତି ନାହିଁ । ଏ ଥିଲା ସବୁଠାରୁ ତାଙ୍କର ମହତ୍ ଗୁଣ । ତେଣୁ ସମ୍ବଲପୁରବାସୀ ତାଙ୍କୁ ମୁରବୀ ପରି ମନେ କରୁଥିଲେ ।

ସେ ବା କ'ଣ ନ ଥିଲେ ! ବିଧାନସଭା ତଥା ଲୋକସଭା ସଦସ୍ୟ । ଭାଷା କମିଶନର ସଦସ୍ୟ, ପୁଣି ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି । ଯେତେବେଳେ ଭେଟ ହେଲେ ଶିକ୍ଷା ସମ୍ବନ୍ଧୀୟ ଆଲୋଚନା ହୁଏ । ୧୯୯୧ ସାଲ ନଭେମ୍ବର ମାସରେ ଅହମଦାବାଦର ସାବରମତୀ ଆଶ୍ରମ ନିକଟରେ ଥାଏ । ହଠାତ୍ ଶ୍ରଦ୍ଧାକରବାବୁଙ୍କ ହସ୍ତଲିଖିତ ଖଣ୍ଡିଏ କାର୍ଡ ପାଇଲି । ଲେଖା ଥିଲା, "ଆମେ ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲର ୧୨୫ ତମ ବାର୍ଷିକୀ ପାଳନ କରୁଛୁ, ଆପଣ ଏଥିରେ ନିଶ୍ଚୟ ଯୋଗଦେବେ" । ସେ ଚିଠିଟି ପାଇ ସ୍ତମ୍ଭୀଭୂତ ହେଲି । ସତେ ଯେପରି ସେ ସେଇ ସ୍କୁଲର ବର୍ତ୍ତମାନ ବି ଛାତ୍ର ଆଉ ମୁଁ ଶିକ୍ଷକ । ସେ ଯେ ସାମାଜିକ ସେବାରେ କେତେ ଉଚ୍ଚରେ ସେ ଅହମିକା ମନରେ କେବେ ନ ଥାଇ । ଜିଲ୍ଲା ସ୍କୁଲର ୧୨୫ତମ ଉତ୍ସବର ସମସ୍ତ ଯୋଗାଡ଼ କରି ନିଜେ ଯୋଗଦେଇ ପାରିଲେ ନାହିଁ । ଆମେ ତାଙ୍କଦ୍ୱାରା ସମ୍ମାନିତ ହୋଇଥିଲେ କେତେ ଯେ ଗୌରବାନ୍ୱିତ ହୋଇଥାନ୍ତୁ ତାହା ଭାଷାରେ ପ୍ରକାଶ କରାଯାଇ ନ ପାରେ ।

'ନମନ୍ତି ଫଳିନୋ ବୃକ୍ଷାଃ, ନମନ୍ତି ଗୁଣିନୋ ଜନାଃ' । ତାଙ୍କ ପରି ଗୁଣଗ୍ରାହୀ ବ୍ୟକ୍ତି ଏ ଯୁଗରେ ବିରଳ । ଆଗାମୀ ପିଢ଼ି ତାଙ୍କର 'ସରଳ ଜୀବନ ଓ ଉଚ୍ଚ ଚିନ୍ତାଧାରା'ର ଆଦର୍ଶ ଅନୁସରଣ କଲେ, ତାଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ହେବ ।

ଆସିଆନା,
ପଣ୍ଡିତ ଲକ୍ଷ୍ମୀନାରାୟଣ ଲେନ୍,
ସମ୍ବଲପୁର–୧ ।

"ମୁଁ ଓକିଲ ହେବାକୁ ନିଜର ଜୀବିକାର ଆଦର୍ଶ ବାଛି ନେଇଥିଲି । ତହିଁର ପ୍ରସ୍ତୁତ ସ୍ୱରୂପ ମୁଁ କଲେଜର ସବୁ ତର୍କ ସଭରେ ଯୋଗ ଦେଉଥିଲି" ।

× × × ×

"ଉତ୍ତମ ପୁରୁଷ ଓ ପୁରୁଷୋତ୍ତମଙ୍କ ମଧ୍ୟରେ ଯେଉଁମାନେ ରହିଲେ ସେମାନେ ହେଲେ ମଧ୍ୟମ ପୁରୁଷ । ଇତିହାସ ପୃଷ୍ଠାରେ ସେହି ମଧ୍ୟମ ପୁରୁଷମାନଙ୍କର ସ୍ଥାନ ନାହିଁ । ସେମାନେ କାଳସାଗରର ବେଳାଭୂମିରେ ଚିରସ୍ଥାୟୀ ପଦଚିହ୍ନ ରଖିବାକୁ ଆଗ୍ରହ ପ୍ରକାଶ କରି ନାହାନ୍ତି । ସେହି ମଧ୍ୟମ ପୁରୁଷମାନଙ୍କ ମଧ୍ୟରୁ ମୁଁ ଜଣେ" ।

—ଡକ୍‌ଟର ସୁପକାର

# ସ୍ୱଭାବ ଶିକ୍ଷକ ଶ୍ରଦ୍ଧାକରଙ୍କ ଜୀବନ ସନ୍ଦେଶ

**ଡକ୍ଟର ଜଗନ୍ନାଥ ମହାନ୍ତି**

ଆମ ରାଜ୍ୟର ଅନ୍ୟତମ ବରପୁତ୍ର ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କ ବ୍ୟକ୍ତିତ୍ୱ ବହୁମୁଖୀ, ତାଙ୍କୁ ଆମେ ଜଣେ ସୁଦକ୍ଷ ଜନନାୟକ, ସୁସାହିତ୍ୟିକ, ବିଶିଷ୍ଟ ଆଇନଜ୍ଞ ଓ ନିପୁଣ ବିଧାୟକ ଭାବରେ ଯେତେ ଜାଣୁ, ଜଣେ ଶିକ୍ଷକ ତଥା ଶିକ୍ଷା ପ୍ରଶାସକ ଭାବରେ ସେତେ ଜାଣିପାରିନାହୁଁ । ମାତ୍ର ତାଙ୍କର ବ୍ୟକ୍ତିତ୍ୱର କେତୋଟି ବିଭବ ଓ କେତୋଟି ସଦ୍‌ଗୁଣ ତାଙ୍କୁ ଜଣେ ଆଦର୍ଶ ଶିକ୍ଷକ ଭାବରେ ଆମ ସମ୍ମୁଖରେ ପ୍ରତିଭାତ କରିଥାଏ । ତାଙ୍କର ଜ୍ଞାନନିଷ୍ଠା, ସଦାଗ୍ରହ, ସାଧୁତା, ସାରଲ୍ୟ, ସଦ୍‌ଭାବନା, ଚରିତ୍ରବତ୍ତା ସର୍ବୋପରି ହାସ୍ୟ ରସିକତା ତାଙ୍କୁ ଜଣେ ସଫଳ ଓ ସାର୍ଥକ ଶିକ୍ଷକର ଆସନ ପ୍ରଦାନ କରିଥାଏ । ସମ୍ବଲପୁର ଅଞ୍ଚଳର ହାଇସ୍କୁଲଠାରୁ ଟ୍ରେନିଂ କଲେଜ ପର୍ଯ୍ୟନ୍ତ ବହୁ ଶିକ୍ଷାନୁଷ୍ଠାନର ଉପଦେଷ୍ଟା ତଥା କାର୍ଯ୍ୟନିର୍ବାହୀ ସମିତିର ସଭ୍ୟ, ଉତ୍କଳ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟ ସଭ୍ୟ, ଲକ୍ଷପତ୍‌ରାୟ ଲ' କଲେଜ, ସମ୍ବଲପୁରର ଅଧ୍ୟାପକ ଓ ପୁରୀ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ସେ ଓଡ଼ିଶାର ଶିକ୍ଷା-ବିଦ୍ୟାଳୟ ଶିକ୍ଷାଠାରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ଘନିଷ୍ଠ ଭାବରେ ସଂପୃକ୍ତ ହୋଇଥିଲେ । ଶିକ୍ଷାପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ସମ୍ମାନ ଥିଲା ଏବଂ ଶିକ୍ଷାର ବିକାଶ କ୍ଷେତ୍ରରେ ତାଙ୍କର ଅବଦାନ ଥିଲା ଅତୁଳନୀୟ ଓ ଅବିସ୍ମରଣୀୟ ।

ଶ୍ରଦ୍ଧାକର ଥିଲେ ଜଣେ ମେଧାବୀ ଛାତ୍ର । ସମ୍ବଲପୁର ଜିଲ୍ଲା ସ୍କୁଲ (ଆଜିର ଚନ୍ଦ୍ରଶେଖର ବେହେରା ଜିଲ୍ଲାସ୍କୁଲ) ରୁ ସମଗ୍ର ବିହାର ଓ ଓଡ଼ିଶାରେ ଦ୍ୱିତୀୟ ସ୍ଥାନ ଅଧିକାର କରି ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ରେଭେନ୍‌ସା କଲେଜରୁ ପ୍ରଥମ ଶ୍ରେଣୀରେ ଆଇ.ଏସ୍‌ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ଗଣିତ ଶାସ୍ତ୍ରରେ ସମ୍ମାନ (Hons.) ସହିତ ପ୍ରଥମ ଶ୍ରେଣୀରେ ବି. ଏ. ପାସ କରିଥିଲେ । ସଂସ୍କୃତ ଭାଷା ଓ ସାହିତ୍ୟରେ ବିସ୍ତୃତ ଜ୍ଞାନଲାଭକରି ସାହିତ୍ୟାଚାର୍ଯ୍ୟ ଉପାଧି ପ୍ରାପ୍ତ ହୋଇଥିଲେ । ତାଙ୍କର ଜ୍ଞାନପିପାସା ଥିଲା ଚିରଅତୃପ୍ତ । ବିହାରର ପାଟଣା ବିଶ୍ୱବିଦ୍ୟାଳୟରୁ ଇଂରେଜୀ ଭାଷା ଓ ସାହିତ୍ୟରେ ଏମ.ଏ. ଓ ପୁଣି ଆଇନ୍‌ରେ ବି. ଏଲ. ଡ଼ିଗ୍ରୀ ପ୍ରାପ୍ତ ହୋଇଥିଲେ । ପରେ ସେ ଆଇନ୍‌ରେ ସ୍ନାତକୋତ୍ତର ଡ଼ିଗ୍ରୀ ଲାଭକରି ଶେଷରେ ହିନ୍ଦୁ ଆଇନ୍‌ରେ ଏକ ତୁଳନାତ୍ମକ ପ୍ରବନ୍ଧ ରଚନାକରି ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡ଼ିଗ୍ରୀ ପି. ଏଇଚଡ଼ି. ଉପାଧି ଲାଭ କରିଥିଲେ । ଏପରି ଅତୃପ୍ତ ଜ୍ଞାନ ପିପାସା କେବଳ ଜଣେ ସ୍ୱଭାବ ଶିକ୍ଷକ ବ୍ୟକ୍ତିଠାରୁହିଁ ଆଶା କରାଯାଏ । ଯେ ଆଦର୍ଶ ଶିକ୍ଷକ, ସେ ନିରନ୍ତର ଛାତ୍ର ଭାବରେ ଜ୍ଞାନଲିପ୍‌ସୁ ଏହି ଉକ୍ତିର ସତ୍ୟତା ଶ୍ରଦ୍ଧାକର ନିଜ ଜୀବନରେ ପ୍ରତିପାଦନ କରିଥିଲେ ।

ନିଜର ଯୋଗ୍ୟତା ବଳରେ ଶ୍ରଦ୍ଧାକର ଅନାୟାସରେ ଉଚ୍ଚ ସରକାରୀ ପଦବୀ ଲାଭକରି ପାରିଥାନ୍ତେ । ମାତ୍ର ସେ ସ୍ୱାଧୀନଚେତା ହୋଇଥିବାରୁ ଆଇନଜୀବୀ ଭାବରେ କାର୍ଯ୍ୟ କରିଥିଲେ । ସମାଜସେବା ଥିଲା ତାଙ୍କ ଜୀବନର ବ୍ରତ । ସେଥିପାଇଁ ସେ ମଧ୍ୟ ଲୋକ ପ୍ରତିନିଧି ଭାବରେ ସମ୍ବଲପୁର ଅଞ୍ଚଳରୁ ବିଧାନସଭା ଓ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ଦେଶବାସୀ ତଥା ଜନସାଧାରଣଙ୍କ ଦାବିକୁ ସେ ଦୃଢ଼ଭାବରେ ସେସବୁ ସ୍ଥାନରେ ଉପସ୍ଥାପନ କରି ପ୍ରବୀଣ ବିଧାୟକ ଭାବରେ ସୁପରିଚିତ ହୋଇଥିଲେ । ଓଡ଼ିଶା ବିଧାନସଭାରେ ବିରୋଧୀଦଳର ନେତା ଭାବରେ ସେ ଅପୂର୍ବ ଦକ୍ଷତା ଓ ସାଧୁତାର ପ୍ରମାଣ ଦେଇ ଖୁବ୍ ପ୍ରତିଷ୍ଠା ଲାଭ କରିଥିଲେ । ଆଇନ୍ ବ୍ୟବସାୟରେ ମଧ୍ୟ ସେ କେବେ ମିଥ୍ୟାକୁ ପ୍ରଶ୍ରୟ ଦେଇନାହାନ୍ତି । ସତ୍ୟ ଓ ନ୍ୟାୟ ପାଇଁ ସେ ସଂଗ୍ରାମ କରୁଥିବାରୁ ଓକିଲ ଓ ବିଚାରପତିଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ । ଜ୍ଞାନ-ନିଷ୍ଠା ପରି ସତ୍ୟନିଷ୍ଠା ମଧ୍ୟ ଶିକ୍ଷକଙ୍କର ଏକ ମହାନ୍ ସଦ୍‌ଗୁଣ ।

ଧନର ଅଭାବ ନଥିଲେ ସୁଦ୍ଧା ସରଳତା ଓ ମିତବ୍ୟୟିତା ତାଙ୍କ ଜୀବନର ଥିଲା ବିଶେଷତ୍ୱ । ସେ ଥିଲେ ଅଜସ୍ର ସମ୍ପତ୍ତିର ସ୍ୱତ୍ତାଧିକାରୀ । ମାତ୍ର ସେ ମୋଟା ଖଦଡ଼ ପୋଷାକ ପରିଧାନ କରୁଥିଲେ । ଏପରିକି ଆଇନଜୀବୀ ଭାବରେ କୋର୍ଟ କଚେରୀରେ ଯେଉଁ କଳା କୋର୍ଟ ପିନ୍ଧୁଥିଲେ ତାହା ମଧ୍ୟ ଖଦଡ଼ ପ୍ରସ୍ତୁତ । ଚାଲି ଚାଲି ସେ ବିଭିନ୍ନ ସ୍ଥାନକୁ ଯାଉଥିଲେ ଏବଂ ଦରକାର ପଡ଼ିଲେ ସାଇକଲ ଚଲାଉଥିଲେ । ତାଙ୍କର ଭଦ୍ର ଓ ଅମାୟିକ ବ୍ୟବହାରରେ ସମସ୍ତେ ମୁଗ୍ଧ ହେଉଥିଲେ । ହୀରାକୁଦ ବୁଡ଼ି ଅଞ୍ଚଳରେ ଗାଁକୁ ଗାଁ ବୁଲି ସେ ବାସଚ୍ୟୁତ ଓ ଦୁର୍ଗତ ଜନସାଧାରଣଙ୍କୁ ସାନ୍ତ୍ୱନା ଓ ସାହାଯ୍ୟ ପ୍ରଦାନ କରୁଥିଲେ । ତାଙ୍କ ଦୃଷ୍ଟିରେ ସାନବଡ଼, ଉଚ୍ଚନୀଚର ଭେଦଭାବ ନ ଥିଲା । ଜଣେ ଆଦର୍ଶ ଶିକ୍ଷକସୁଲଭ ଏସବୁ ସଦ୍‌ଗୁଣର ଅଧିକାରୀ ହୋଇଥିଲେ ଶ୍ରଦ୍ଧାକର ।

୧୯୮୧ ମସିହାରେ ସେ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ସମୟରୁ ଏହାର ବିକାଶ ସହିତ ଏକନିଷ୍ଠ ଭାବରେ ସଂପୃକ୍ତ ଥିଲେ । ଉକ୍ତ ବିଶ୍ୱବିଦ୍ୟାଳୟର ପ୍ରଥମ ସିନେଟରେ ସେ ଥିଲେ ଜଣେ ବରିଷ୍ଠ ସଦସ୍ୟ । ପୁରୀ ରାଜଭବନ ପରିସର ମଧ୍ୟସ୍ଥ ବାଲୁକା ଶଯ୍ୟାରେ ଅନୁଷ୍ଠିତ ପ୍ରଥମ ବୈଠକରେ ଜଣେ ସଭ୍ୟଙ୍କର ଅବାଞ୍ଛିତ ମତକୁ ଅତି ଦୃଢ଼ତାର ସହିତ ଖଣ୍ଡନ କରି କହିଥିଲେ, ନିଜର ମାତା ବୃଦ୍ଧା ହୋଇଗଲେ ତାଙ୍କର ଆବଶ୍ୟକତା ନାହିଁ ବୋଲି କହିବା ଯାହା, ସଂପ୍ରତି ସଂସ୍କୃତ ବିଶ୍ୱବିଦ୍ୟାଳୟ ଅନାବଶ୍ୟକ ବୋଲି କହିବା ତାହା । ଅଧ୍ୟାପକ ନିର୍ବାଚନରେ ଉପଯୁକ୍ତ ଯୋଗ୍ୟତା ଉପରେ ସେ ବିଶେଷ ଗୁରୁତ୍ୱ ଦେଉଥିଲେ ଏବଂ ବିଶ୍ୱବିଦ୍ୟାଳୟର ପ୍ରଶାସନରେ ସାଧୁତା ପ୍ରତି ତୀବ୍ର ଦୃଷ୍ଟି ଦେଇଥିଲେ । ଏହାର କୁଳପତି ଭାବରେ ସେ କାର୍ଯ୍ୟକରି ନିଜର ଦକ୍ଷତା ଓ ଜ୍ଞାନ-ନିଷ୍ଠା ପ୍ରଦର୍ଶନ କରିଥିଲେ । ଛାତ୍ର ଓ ଶିକ୍ଷକ ତଥା କର୍ମଚାରୀମାନଙ୍କର ଅହେତୁକ ଓ ଅନ୍ୟାୟ ଦାବିକୁ ସେ ଗ୍ରହଣ କରୁ ନ ଥିଲେ ଏବଂ ବିଭିନ୍ନ ଚାପ ନିକଟରେ ସେ

ମୁଣ୍ଡ ନୁଆଁଉ ନଥିଲେ । କୌଣସି ଅଧ୍ୟାପକ, ଅଧିକାରୀ ଓ ପର୍ଯ୍ୟବେକ୍ଷକଙ୍କ ପ୍ରତି କେହି ଅସୌଜନ୍ୟ ପ୍ରଦର୍ଶନ କଲେ, ସେ କଠିନ ପଦକ୍ଷେପ ନେଉଥିଲେ । ବିଶ୍ୱବିଦ୍ୟାଳୟର ବିଭିନ୍ନ ବିଭାଗର ସୃଷ୍ଟି ଓ ବିକାଶରେ ତାଙ୍କର ଅବଦାନ କମ୍ ନଥିଲା । ଶିକ୍ଷା ପ୍ରଶାସନରେ ସେ ଦକ୍ଷତା ଓ ନିର୍ମଳତା ରକ୍ଷା କରିଥିଲେ ।

୧୯୭୧ ମସିହାରେ ଶ୍ରଦ୍ଧାକର ଲଜପତରାୟ ଆଇନ୍ ମହାବିଦ୍ୟାଳୟରେ ଜଣେ ଅସ୍ଥାୟୀ ଅଧ୍ୟାପକ ଭାବରେ ଯୋଗଦାନ କରିଥିଲେ । ସେତେବେଳେ ତାହା ସମ୍ବଲପୁର ଟାଉନ ହାଇସ୍କୁଲରେ ସ୍ଥାପିତ ହୋଇଥିଲା । ସନ୍ଧ୍ୟାରେ ଶିକ୍ଷାଦାନ କାର୍ଯ୍ୟ ସମ୍ପାଦିତ ହେଉଥିଲା । ମାତ୍ର ସେ ସାମୟିକ ଭାବରେ ଏହି କାର୍ଯ୍ୟରେ ଯୋଗଦାନ କଲାମାତ୍ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳସଚିବଙ୍କଠାରୁ ପତ୍ର ପାଇଥିଲେ ଯେ ସେ ସିଣ୍ଡିକେଟର ସଭ୍ୟପଦରୁ ବଂଚିତ ହେଲେ । କାରଣ ସେ ରେଜିଷ୍ଟ୍ରଡ ଗ୍ରାଜୁଏଟ୍ ଭାବରେ ନିର୍ବାଚିତ ହୋଇ ଏସବୁର ସଭ୍ୟ ହୋଇଥିଲେ । ତେଣୁ ଏବେ ଶିକ୍ଷକ ହେବା ପରେ ସେ ସେହି ପଦରୁ ବାସନ୍ଦ ହୋଇଥିଲେ । ଶ୍ରଦ୍ଧାକର ଲେଖିଛନ୍ତି, ଏହା ମୋର ଏକ ପଦୋନ୍ନତି ନା ପଦଚ୍ୟୁତି; ସମ୍ଭବତଃ କୌଣସିଟି ନୁହେଁ । ମୁଁ ଏଥିରେ ଚିନ୍ତିତ ହୋଇ ନ ଥିଲି (Was it a promotion or degradation of my status ? Probabaly neither. I did not mind.) ଶିକ୍ଷକତା ପ୍ରତି ତାଙ୍କର ଅତୁଟ ଶ୍ରଦ୍ଧା ଯୋଗୁଁ ସେ ଏହି ପରିସ୍ଥିତି ପ୍ରତି ଭ୍ରୂକ୍ଷେପ କରି ନଥିଲେ ।

୧୯୩୯ ମସିହାରୁ ଆଇନଜୀବୀ ଭାବରେ କାର୍ଯ୍ୟ କରିବାଠାରୁ ଆଇନ୍‌ରେ ଉଚ୍ଚତର ଶିକ୍ଷାପ୍ରତି ସୂପକାରଙ୍କର ଖୁବ୍ ଆଗ୍ରହ ଥିଲା ଏବଂ ଏହି ଶିକ୍ଷକତାକୁ ସେ ଏକ ସୁଯୋଗ ବୋଲି ଗ୍ରହଣ କରିଥିଲେ । ପୂର୍ବରୁ ସେ ପ୍ରାଚୀନ ଭାରତର ଆଇନ୍, ମନୁସ୍ମୃତି, ଯାଜ୍ଞବଲ୍କ୍ୟ ସ୍ମୃତି ଆଦି ଅଧ୍ୟୟନ କରିଥିଲେ । ବିଧାୟକ ଭାବରେ ସେ ଭାରତୀୟ ସମ୍ବିଧାନ ଓ ଆଇନ୍ ପ୍ରଣୟନ ପ୍ରଣାଳୀ ସହିତ ଦୀର୍ଘକାଳ ଧରି ଓତଃପ୍ରୋତ ଭାବରେ ଜଡ଼ିତ ହୋଇଥିଲେ ତେଣୁ ତାଙ୍କୁ ଯେତେବେଳେ ଆଇନ୍ କଲେଜରେ ସାମ୍ବିଧାନିକ୍ ଆଇନ୍ ସମ୍ପର୍କରେ ଅଧ୍ୟାପନା କରିବାକୁ ଦିଆଗଲା, ସେ ଖୁବ୍ ସ୍ୱଚ୍ଛନ୍ଦ ଓ ଆତ୍ମବିଶ୍ୱାସର ସହିତ ନିଜର କର୍ତ୍ତବ୍ୟ ସମ୍ପାଦନ କରିଥିଲେ । ସେ ୬୯ ବର୍ଷ ବୟସରେ ସ୍ନାତକୋତ୍ତର ଆଇନ୍ ପରୀକ୍ଷା ଘରୋଇ ଭାବରେ ଦେଇ ଗୋଟିଏ ଥରରେ ଉତ୍ତୀର୍ଣ୍ଣ ହେବା ତାଙ୍କ ପାଇଁ ଆନନ୍ଦର ବିଷୟ ହୋଇଥିଲା । ଏବଂ ତାଙ୍କର ଅଧ୍ୟାବସାୟ ଓ ବିଜ୍ଞତାର ପରିଚୟ ଦେଇଥିଲେ । ସେ ହିନ୍ଦୁ ଓ ମୁସଲମାନ ଆଇନ୍‌ରେ ମଧ୍ୟ ସଫଳତାର ସହିତ ଶିକ୍ଷାଦାନ କରିଥିଲେ ।

ଶ୍ରଦ୍ଧାକର ଏଲ.ଏଲ.ଏମ୍ ପାସ୍ କଲାପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପି. ଏଇଚଡ଼ି. ଡ଼ିଗ୍ରୀ ପାଇଁ ଡକ୍ଟର ନବୀନ କୁମାର ସାହୁଙ୍କ ତତ୍ତ୍ୱାବଧାନରେ ଉଚ୍ଚ ଗବେଷଣା ଆରମ୍ଭ କରିଥିଲେ । ତାଙ୍କର ଗବେଷଣା ପ୍ରବନ୍ଧର ନାମଥିଲା "ପ୍ରାଚୀନ ଭାରତର ଆଇନ ପ୍ରଣାଳୀ" ।

ଏଥିପାଇଁ ସେ ଆନୁସର୍ଗିକ ବହିପତ୍ର କ୍ରୟ କରିଥିଲେ । ୧୯୭୪ ମସିହାରେ ଭାରତ ସରକାରଙ୍କ ଦ୍ୱାରା ସରକାରୀ ଭାଷା ଆୟୋଗରେ ଓଡ଼ିଆ ପ୍ରତିନିଧି ଭାବରେ ମନୋନୀତ ହୋଇଥିଲେ । ଦିଲ୍ଲୀରେ ଅବସ୍ଥାପିତ ହୋଇ ଭାରତୀୟ ଆଇନ ପ୍ରତିଷ୍ଠାନରେ ତାଙ୍କ ଅଫିସ କାର୍ଯ୍ୟରେ ଯୋଗଦାନ କରିଥିଲେ ଏବଂ ସେଠାରେ ସେ ଏଠାର ଏକ ସମୃଦ୍ଧ ଗ୍ରନ୍ଥାଗାରକୁ ଆଗ୍ରହ ଓ ନିଷ୍ଠାର ସହିତ ନିଜର ଗବେଷଣା କାର୍ଯ୍ୟ ପାଇଁ ଉପଯୋଗ କରି ପାରିଥିଲେ । ସେ ଲେଖିଛନ୍ତି, "ଭାରତୀୟ ଆଇନ ପ୍ରତିଷ୍ଠାନର ଗ୍ରନ୍ଥାଗାର ମୋ ପାଇଁ ଏକ ସ୍ୱର୍ଣ୍ଣଭଣ୍ଡାର ପରି ହୋଇଥିଲା" । ମୁଁ ଆଲ୍ଲିବାବା ପରି ସେଠାରେ ସ୍ୱଚ୍ଛନ୍ଦରେ ଜ୍ଞାନାର୍ଜନ କରିବାରେ ଲାଗିଥିଲି । ସରକାରୀ କାର୍ଯ୍ୟ ମଧ୍ୟ ବେଶୀ ନଥିଲା ଏବଂ ମୋର ସମସ୍ତ ଅବସରକୁ ଆଇନ ପ୍ରତିଷ୍ଠାନରୁ ପୁସ୍ତକ ଧାର ନେଇ ମୋର ନିବନ୍ଧ ରଚନାରେ ଉତ୍ସର୍ଗ କଲି । (The library of the Indian Law Institute was like a gold mine to me. I felt like Ali Baba in the robber's cavern with the knowledge of Open Sesame. The official duty was not heavy and all my spare time was devoted to the preparation of my thesis with the help of books borrowed from the Indian Law Institute) ଦୀର୍ଘ ୬୦ ବର୍ଷ ବୟସରେ ତାଙ୍କର ଜ୍ଞାନପିପାସା କେତେ ଗଭୀର ଥିଲା, ଏଥିରୁ ସ୍ପଷ୍ଟ ହୋଇଥାଏ !

୧୯୭୬ ମସିହାରେ ତାଙ୍କୁ ଯେତେବେଳେ ୬୨ ବର୍ଷ ସେ ସେତେବେଳେ ଲଜପତ ରାୟ ଆଇନ କଲେଜରେ ଅଧ୍ୟକ୍ଷ ଭାବରେ ଯୋଗଦାନ କରିଥିଲେ । ସନ୍ଧ୍ୟାରେ ବହୁଥର ବିଜୁଳି ଲାଇନ କଟୁଥିବାରୁ ଓ ଅନ୍ୟାନ୍ୟ ଗଣ୍ଡଗୋଳ ଯୋଗୁଁ ସେ ବିଶ୍ୱବିଦ୍ୟାଳୟକୁ ପ୍ରସ୍ତାବ ଦେଇଥିଲେ ଯେ ପ୍ରାତଃ କାଳରେ ଅଧ୍ୟାପନା କାର୍ଯ୍ୟ ପରିଚାଳିତ ହେଉ ଏବଂ ଏପ୍ରିଲ ମଇ ମାସରେ ପ୍ରାତଃ କାଳରେ କଚେରୀ କାର୍ଯ୍ୟ ଚାଲିଲାବେଳେ କେତେ ସପ୍ତାହ ପାଇଁ ସନ୍ଧ୍ୟାରେ ଶିକ୍ଷାଦାନ କରଯାଉ । ତତ୍କାଳୀନ କୁଳପତି ପ୍ରଫେସର ଭୁବନେଶ୍ୱର ବେହେରା ଏହାକୁ ମଞ୍ଜୁର କରିଥିଲେ ହେଁ କେତେକ ଛାତ୍ର ସରକାରୀ ଅଫିସରେ ଚାକିରୀ କରୁଥିବାରୁ ତାର ବିରୋଧ କରିଥିଲେ । ଜିଲ୍ଲା କଲେକ୍ଟର ମଧ୍ୟ ଏଥିରେ ହସ୍ତକ୍ଷେପ କରି ସନ୍ଧ୍ୟାରେ ଶ୍ରେଣୀକାର୍ଯ୍ୟ ପରିଚାଳନା କରିବାକୁ ତାଙ୍କୁ ଉପଦେଶ ଦେଇଥିଲେ । ମାତ୍ର ଶ୍ରଦ୍ଧାକର କୁଳପତିଙ୍କ ଆଦେଶ କ୍ରମେ ଏହା କରିଛନ୍ତି ଏବଂ ତାଙ୍କ ସହିତ ଆଲୋଚନା କରି ଯାହା କରିବେ ବୋଲି କହିଥିଲେ । ସେ ବିଶ୍ୱବିଦ୍ୟାଳୟକୁ ଏହା ଜଣାଇବାରୁ ସମ୍ଭବତଃ କୁଳପତି ସନ୍ଧ୍ୟାକାଳୀନ ଶିକ୍ଷାଦାନ ବିରୁଦ୍ଧରେ ମତଦେଇ କଲେକ୍ଟରଙ୍କୁ ଲେଖିଥିଲେ ଏବଂ ଏତିକିରେ ଏହି ଘଟଣାର ପରିସମାପ୍ତି ଘଟିଥିଲା ।

ଶିକ୍ଷା ପ୍ରକାଶକ ଭାବରେ ସେ ଏହିଁପରି ବହୁ ସମସ୍ୟାର ସମ୍ମୁଖୀନ ହୋଇଥିଲେ । କିନ୍ତୁ ନିଜର ସଦୁଦ୍ଦେଶ୍ୟ ଓ ଦୃଢ଼ ମନୋବଳ ଯୋଗୁଁ ସେ ସବୁକୁ ସାଫଲ୍ୟର ସହିତ ସମ୍ମୁଖୀନ ହୋଇଥିଲେ ଶେଷରେ ସେ ଥରେ କେତେକ ଉତ୍ତର ଖାତାରେ ଜଡ଼ିତ ହୋଇଥିବାର

ପ୍ରମାଣ ପାଇ ବିଶ୍ୱବିଦ୍ୟାଳୟକୁ ଜଣାଇ ଦେଇଥିଲେ । ମାତ୍ର ସେଇ ଖାତା ମଧ୍ୟରୁ ଗୋଟିଏ ଜଣେ ସିଣ୍ଡିକେଟ୍ ସଭ୍ୟଙ୍କର ପୁତ୍ରମଣିଙ୍କର ହୋଇଥିବାରୁ ତାଙ୍କର ଶିକ୍ଷକତା ତଥା ଅଧ୍ୟକ୍ଷତାରେ ଅକାଳ ସମାପ୍ତି ଘଟିଥିଲା । ତତ୍କାଳୀନ କୁଳପତି ଡଃ ଦେବେନ୍ଦ୍ର ଚନ୍ଦ୍ର ମିଶ୍ରଙ୍କୁ ସେ ଇସ୍ତଫାପତ୍ର ପ୍ରଦାନ କରିଥିଲେ, ଏବଂ ଏହାକୁ ଗ୍ରହଣ କରିନେବାକୁ ସିଣ୍ଡିକେଟ ବୈଠକରେ ତାଙ୍କୁ ବାଧ୍ୟ କରାଯାଇଥିଲା । ଯେଉଁ ସିଣ୍ଡିକେଟ ବୈଠକରେ ତାଙ୍କ ପି. ଏଇଚଡ଼ି ଡିଗ୍ରୀ ପାଇଁ ଥେସିସ୍‌ଟି ଅନୁମୋଦିତ ହୋଇଥିଲା, ସେହି ବୈଠକ ତାଙ୍କ ଇସ୍ତଫା ଗ୍ରହଣ କରିଥିଲେ । ଏହା ହେଉଛି ଜଣେ ଶିକ୍ଷକ ବିଶେଷ ଭାବରେ ଜଣେ ଶିକ୍ଷାପ୍ରଶାସକଙ୍କ ଭାଗ୍ୟର ବିଡ଼ମ୍ବନା ।

ଡକ୍‌ଟର ସୂପକାରଙ୍କ ଜ୍ଞାନପିପାସାର ଅନ୍ତ ନଥିଲା । ସେ ପୁଣି 1943 ମସିହାରେ 'ପ୍ରାଚୀନ ଭାରତରେ ଆଇନ ବିଧି' ଶୀର୍ଷକ ଏକ ଗବେଷଣା ନିବନ୍ଧ ଏଲ ଏଲଡ଼ି. ଡିଗ୍ରୀ ପାଇଁ ଦାଖଲ କରିଥିଲେ । ଦିର୍ଘ 5 ବର୍ଷ ପରେ ତାହା ଗୃହୀତ ହେଇନାହିଁ ବୋଲି ତାଙ୍କୁ ଜଣାଇ ଦିଆଗଲା । ମାତ୍ର ତାଙ୍କର ଉଭୟ ଗବେଷଣା-ନିବନ୍ଧ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା ଯଥାକ୍ରମେ 1986 ଓ 1990 ମସିହାରେ । ଏହିସବୁ ପ୍ରତିକୂଳ ପରିସ୍ଥିତିରେ ସେ ହତାଶ ହୋଇ ନଥିଲେ । ବରଂ ସେ ଲେଖିଛନ୍ତି, ବୌଦ୍ଧିକ ଗୋଷ୍ଠୀ କିମ୍ବା ଆଇନଜୀବୀ ଗୋଷ୍ଠୀ ଅନ୍ୟୁନ ଆଗାମୀ ତିନି ଦଶକ ମଧ୍ୟରେ ମୋର ଏହି ଗବେଷଣା କାର୍ଯ୍ୟର ଗୁରୁତ୍ୱ ଉପଲବ୍ଧି କରିବେ, ଏହା ମୁଁ ଆଶା କରୁନାହିଁ । (I do not expect either the academic community or the legel huminaries to appreciate the merits of my work for at least three decades to come.) ଶତ୍ାବ୍ଦୀକାରଙ୍କର ଶିକ୍ଷକସୁଲଭ ଜ୍ଞାନନିଷ୍ଠା, ସାଧୁତା, ସମୟାନୁବର୍ତ୍ତିତା, ସଚ୍ଚରିତ୍ରତା ଓ ଦୃଢ଼ ମନୋବଳ ଉପରୋକ୍ତ ଆଲୋଚନାରୁ ପ୍ରତିପାଦିତ ହୋଇଛି । ତାଙ୍କର ଏହି ଜୀବନ ସଂଗ୍ରାମ ଶିକ୍ଷକ ଓ ଶିକ୍ଷାପ୍ରଶାସକମାନଙ୍କୁ ମହାର୍ଘ ସନ୍ଦେଶ ପ୍ରଦାନ କରିଥାଏ ।

ଅଧ୍ୟକ୍ଷ, ଡକ୍‌ଟର ପର୍ଶୁରାମ ମିଶ୍ର
ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ, ସମ୍ବଲପୁର

# ସଂସ୍କୃତ ବିଶ୍ୱବିଦ୍ୟାଳୟ ଓ ଡଃ ସୂପକାର

ଡକ୍ଟର ବ୍ରଜକିଶୋର ସ୍ୱାଇଁ

1981 ମସିହା ଜୁଲାଇ ମାସ 7 ତାରିଖରେ ପୁରୀରେ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବା ଦିନୁ ଡକ୍ଟର ଶ୍ରଦ୍ଧାକର ସୂପକାର ଜୀବନର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ଉକ୍ତ ବିଶ୍ୱବିଦ୍ୟାଳୟ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ । ତତ୍‌କାଳୀନ କୁଳାଧିପତି ତଥା ରାଜ୍ୟପାଳ ଶ୍ରୀଯୁକ୍ତ ସି. ଏମ୍. ପୁନାଗ୍ଚ ଏବଂ କୁଳପତି ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କର ସେ ଅନ୍ତରଙ୍ଗ ବନ୍ଧୁ ଥିଲେ । ବିଶ୍ୱବିଦ୍ୟାଳୟର ପ୍ରଥମ ଅଧିଷଦରେ ସେ ବରିଷ୍ଠ ସଦସ୍ୟ ଥିଲେ । ତତ୍‌କାଳୀନ କୁଳସଚିବ ତଥା ପରବର୍ତ୍ତୀ କୁଳପତି ପ୍ରଫେସର ତ୍ରିଲୋଚନ ମିଶ୍ରଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟାଳୟ ପରିଚାଳନା କ୍ଷେତ୍ରରେ ସେ ଜଣେ ସବୁଜ ପତାକାଧିକାରୀ ଥିଲେ । ବିଶ୍ୱବିଦ୍ୟାଳୟର ପ୍ରଥମ ସିନେଟର ପ୍ରଥମ ଅଧିବେଶନ ପୁରୀ ରାଜଭବନ ପରିସରର ବାଲୁକା ପ୍ରାନ୍ତରରେ ଯେତେବେଳେ ଅନୁଷ୍ଠିତ ହୁଏ, ସେତେବେଳେ ଜନୈକ ସିନେଟ ସଦସ୍ୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ଅନାବଶ୍ୟକତା ସମ୍ପର୍କରେ କେତେକ ଯୁକ୍ତି ଉପସ୍ଥାପିତ କଲାବେଳେ ବୟୋଜ୍ୟେଷ୍ଠ ସଦସ୍ୟ ତଥା ପ୍ରାକ୍ତନ ଅଧ୍ୟକ୍ଷ କିଶୋରୀ ମୋହନ ଦ୍ୱିବେଦୀ ଏବଂ ଡକ୍ଟର ଶ୍ରଦ୍ଧାକର ସୂପକାର ତାଙ୍କ ଯୁକ୍ତିର ଦୃଢ଼ ମୁକାବିଲା କରିଥିଲେ । ଡକ୍ଟର ସୂପକାର କହିଲେ ନିଜର ମା' ବୃଦ୍ଧା ହୋଇଗଲେ ତାଙ୍କର ଆବଶ୍ୟକତା ନାହିଁ ବୋଲି ଯଦି ପୁତ୍ର ଯୁକ୍ତି ଉପସ୍ଥାପନ କରେ, ତେବେ ସେହି କ୍ଷେତ୍ରରେ ଉକ୍ତ ପୁତ୍ରର ପରିସ୍ଥିତି ଯାହା, ଏଠାରେ ମାନ୍ୟବର ସଦସ୍ୟଙ୍କର ଅବସ୍ଥା ସେଇଆ । ଏହି ଯୁକ୍ତିକୁ କୁଳପତି ପ୍ରଧାନ ତର୍ଜମା କରି ବୁଝାଇବା ପରେ ଉକ୍ତ ସିନେଟ ସଦସ୍ୟଙ୍କ ବକ୍ତବ୍ୟକୁ ସିନେଟ ଅଧିବେଶନ ବିବରଣୀରୁ ବାଦ ଦେବାପାଇଁ ପ୍ରସ୍ତାବ ଗୃହୀତ ହେଲା ।

ଡଃ ସୂପକାର ପ୍ରାୟ ଅଧିଷଦର ସମସ୍ତ ଅଧିବେଶନରେ ନିୟମିତ ଭାବରେ ଯୋଗଦାନ କରୁଥିଲେ । ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗରେ ଅଧ୍ୟାପକ ନିଯୁକ୍ତି ନିମନ୍ତେ ଗଠିତ ହୋଇଥିବା ଅଭିଜ୍ଞ ମଣ୍ଡଳୀର ଯୋଗ୍ୟତା ଉପରେ ସେ ଗୁରୁତ୍ୱ ଆରୋପ କରୁଥିଲେ । ସ୍ନାତକୋତ୍ତର ଧର୍ମଶାସ୍ତ୍ର ବିଭାଗର ଅଧ୍ୟାପକ ନିଯୁକ୍ତି ନିମନ୍ତେ ସାକ୍ଷାତକାରବେଳେ ସେ ଅଧିଷଦ ପକ୍ଷରୁ ପର୍ଯ୍ୟବେକ୍ଷକ ଭାବରେ ଦୁଇଥର ଯୋଗଦେଇ କେତେକ କଠିନ ଓ ତାର୍କିକ ପ୍ରଶ୍ନମାନ ପଚାରି ଅଭିଜ୍ଞ ପ୍ରଫେସରମାନଙ୍କୁ ଅବାକ କରିଦେଉଥିଲେ ମଧ୍ୟ ତାଙ୍କର ମର୍ଯ୍ୟାଦାବୋଧ ଯୋଗୁ ସମସ୍ତେ ତାଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଡଃ ସୂପକାର ଧର୍ମଶାସ୍ତ୍ର ଓ ହିନ୍ଦୁ ଆଇନର–ଜଣେ ପ୍ରଖ୍ୟାତ ବିଦ୍ୱାନ ହୋଇଥିବାରୁ ଅଧିଷଦ ହିଁ ତାଙ୍କୁ ଧର୍ମଶାସ୍ତ୍ର ବିଭାଗର ସାକ୍ଷାତକାରରେ ପର୍ଯ୍ୟବେକ୍ଷକ ଭାବରେ ଯୋଗଦେବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ ପ୍ରାର୍ଥୀ ଚୟନ ସମ୍ବନ୍ଧରେ ତାଙ୍କର

ମତାମତ ନେଉଥିବାରେ ସେ ନିଜର ମତ ଦେବାକୁ ସ୍ପଷ୍ଟ ମନା କରିଦେଇ କହିଲେ ମୁଁ ପର୍ଯ୍ୟବେକ୍ଷକ, ଅଭିଜ୍ଞ ନୁହେଁ—ଅଭିଜ୍ଞଙ୍କର ମତାମତ ଏଠାରେ ଗ୍ରହଣୀୟ । ଏହା ତାଙ୍କର ବୈଧାନିକ କାର୍ଯ୍ୟାକଳାପର ଏକ ନିଖୁଣ ପ୍ରତିଚ୍ଛବି ।

ଡଃ ସୂପକାରଙ୍କୁ ସ୍ନାତକୋତ୍ତର ଧର୍ମଶାସ୍ତ୍ର ବିଭାଗର ପ୍ରଥମ ପାଠ୍ୟ ସମିତିର ଅଧ୍ୟକ୍ଷ ଭାବେ ସ୍ୱର୍ଗତ ପଣ୍ଡିତ କୁଳମଣି ମିଶ୍ରଙ୍କ ଭଳି ଧର୍ମଶାସ୍ତ୍ର ବିଦ୍ୱାନମାନେ ବାଛିଥିଲେ । ବହୁଦିନ ପର୍ଯ୍ୟନ୍ତ ସେ ଏହି ଦାୟିତ୍ୱ ସମ୍ଭାଳି ଥିଲେ । ତାଙ୍କ ଯୋଗୁଁ ଧର୍ମଶାସ୍ତ୍ର ପାଠ୍ୟକ୍ରମର ତୁଳନାତ୍ମକ ଧର୍ମବିଜ୍ଞାନ ଏବଂ ଆଧୁନିକ ହିନ୍ଦୁ ବିଧି ସ୍ନାତକୋତ୍ତର ଶିକ୍ଷାରେ ବାଧ୍ୟତାମୂଳକ ପାଠ୍ୟ ଭାବରେ ସ୍ଥାନ ପାଇଲା । ଉଲ୍ଲେଖଯୋଗ୍ୟ ଯେ 1981 ମସିହା ନଭେମ୍ବର ମାସ 16 ତାରିଖରେ ଯେତେବେଳେ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗରେ ଆନୁଷ୍ଠାନିକ ଅଧ୍ୟାପନା ଆରମ୍ଭ ହେଲା, ସେତେବେଳେ ଡଃ ସୂପକାର ସର୍ବପ୍ରଥମେ ଧର୍ମଶାସ୍ତ୍ର ବିଭାଗରେ ଅଧ୍ୟାପନା ଉଦ୍‌ଘାଟନ କରିଥିଲେ । ସେହିଦିନୁ ସେ ସ୍ନାତକୋତ୍ତର ବିଭାଗର ସମସ୍ତ ସଦସ୍ୟଙ୍କ ସହିତ ଖୁବ୍ ଘନିଷ୍ଠତାର ସହ ମିଶି ଯାଇଥିଲେ ।

1983 ମସିହାର ତତ୍‌କାଳୀନ କୁଳପତି ଡ: ସତ୍ୟବ୍ରତ ଶାସ୍ତ୍ରୀ କିଛିଦିନ ପାଇଁ ଜର୍ମାନୀ ଗସ୍ତରେ ଚାଲିଯିବାରୁ ଡଃ: ସୂପକାର ସଂସ୍କୃତ ବିଶ୍ୱବିଦ୍ୟାଳୟର ଚତୁର୍ଥ କୁଳପତି ଭାବରେ ଦାୟିତ୍ୱ ଗ୍ରହଣ କଲେ । ତାଙ୍କର ପ୍ରଥମ ମାସର କାର୍ଯ୍ୟ କାଳ ମଧ୍ୟରେ ସ୍ୱର୍ଗତ କୁଳପତି ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀ ପଡୁଥିବାରୁ ସେ ପ୍ରଥମ ମାସର ଦରମାଟି ପ୍ରଫେସର ପ୍ରଧାନଙ୍କର ଶ୍ରାଦ୍ଧବାସରୀୟ ଅନୁଷ୍ଠିତ କାର୍ଯ୍ୟକ୍ରମରେ ବ୍ୟୟ କରିଥିଲେ । ତାଙ୍କର କାର୍ଯ୍ୟକାଳ ମଧ୍ୟରେ ଅନେକ ଉଲ୍ଲେଖଯୋଗ୍ୟ ପୁସ୍ତକ ବିଶ୍ୱବିଦ୍ୟାଳୟର କେନ୍ଦ୍ରୀୟ ପାଠାଗାରକୁ ବଛାଯାଇ କିଣାଯାଇଥିଲା । ସେ ସେତେବେଳେ ପୁରୀ ରାଜଭବନ ମଧ୍ୟରେ ଥିବା କୁଳପତିଙ୍କ ଆବାସରେ ରହୁଥିଲେ । ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ଜଗନ୍ନାଥ ଦର୍ଶନ କରି ମରିଚକୋଟ ଲେନରେ ଥିବା ସ୍ନାତକୋତ୍ତର ବିଭାଗ ବାଟ ଦେଇ ତାଙ୍କର ବିଜନବେଳ, ପୁରୀ କାର୍ଯ୍ୟାଳୟକୁ ଆସୁଥିଲେ । ଆସିବାବେଳେ 10 ରୁ 20 ଖଣ୍ଡ ବହି ଦୈନିକ ପଢ଼ିବା ପାଇଁ ସେ ଲାଇବ୍ରେରୀରୁ ଆଣି 4 ଟା ବେଳେ ଫେରସ୍ତ ଦେଉଥିଲେ । ଇତିମଧ୍ୟରେ ପୁରୀର କେନ୍ଦ୍ରୀୟ ସଂସ୍କୃତ ବିଦ୍ୟାପୀଠ ପରିସରରେ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗର ଅଧ୍ୟାପନା କାର୍ଯ୍ୟ ହେବା ପାଇଁ ନିଷ୍ପତ୍ତି ନିଆଯାଇ କାର୍ଯ୍ୟାରମ୍ଭ ହୋଇଥିଲେ ମଧ୍ୟ ସେ ତାହାକୁ ନାପସନ୍ଦ କରୁଥିଲେ । ଏଥିରେ କେତେକ ଅସୁବିଧା ହୋଇ ବିଶ୍ୱବିଦ୍ୟାଳୟର ଛାତ୍ର ଓ ଅଧ୍ୟାପକମାନଙ୍କର ସମ୍ମାନରେ ଆଞ୍ଚ ଆସିବା ଭଳି କାର୍ଯ୍ୟ ସୃଷ୍ଟି ହେବାରୁ ଡ: ସୁପକାର କୁଳପତି ଦୃଷ୍ଟିରୁ କୁଳାଧିପତି ତଥା ରାଜ୍ୟପାଳଙ୍କ ଦୃଷ୍ଟିକୁ ସେ କଥା ଆଣି ନିଜେ ସେଥିପାଇଁ ଦୁଃଖ ପ୍ରକାଶ କରିଥିଲେ । ଏହା ତାଙ୍କର ଶିକ୍ଷାନୁଷ୍ଠାନର ସ୍ୱାତନ୍ତ୍ର୍ୟ ପ୍ରତି ସମ୍ମାନବୋଧ ସୂଚକ ପଦକ୍ଷେପ । ସେ ନିୟମିତ ଭାବେ ସପ୍ତାହରେ ଥରେ ଛାତ୍ରାବାସ ପରିଦର୍ଶନ କରୁଥିଲେ । ତାଙ୍କ ସମୟରେ ପରୀକ୍ଷା ଦେବା

ନିମନ୍ତେ ଶ୍ରେଣୀରେ ଅତ୍ୟାବଶ୍ୟକ ଉପସ୍ଥାନ ନ ଥିବାରୁ କେତେକ ଛାତ୍ର ଧର୍ମଘଟ କରି ତାଙ୍କ କାର୍ଯ୍ୟାଳୟ ସମ୍ମୁଖରେ ଧାରଣା ଦେଇ ଦାବୀ କଲେ ଯେ କୁଳପତି ଅଧ୍ୟାପକ-ମାନଙ୍କ ଉପରେ ଚାପ ପକାଇ ଅଧିକ ଉପସ୍ଥାନ କରାଇ ଦିଅନ୍ତୁ । ଛାତ୍ରମାନଙ୍କର ଏତାଦୃଶ ଦାବୀକୁ ସମର୍ଥନ କରି କେତେକ ଓକିଲ ତାଙ୍କ ଉପରେ ଚାପ ପକାଇବାକୁ ଚେଷ୍ଟା କରିବାରୁ ସେ ନିଜ ସିଦ୍ଧାନ୍ତରେ ଅଟଳ ରହି ଅଧ୍ୟାପକମାନଙ୍କର ମର୍ଯ୍ୟାଦା ଏବଂ ସ୍ୱାତନ୍ତ୍ର୍ୟକୁ କ୍ଷୁର୍ଣ୍ଣ କରିବାକୁ ଦେବିନାହିଁ ବୋଲି କହିବାରୁ ଛାତ୍ରମାନେ ବାଧ୍ୟ ହୋଇ ଧାରଣା ପ୍ରତ୍ୟାହାର କଲେ ।

ତାଙ୍କ ସମୟରେ ବିଶ୍ୱବିଦ୍ୟାଳୟର ଏକ ପରୀକ୍ଷା କେନ୍ଦ୍ରରେ ଅସ୍ୱାଭାବିକ ଅବସ୍ଥା ସୃଷ୍ଟି ହେବାରୁ ଏବଂ ପରୀକ୍ଷା ପର୍ଯ୍ୟବେକ୍ଷକଙ୍କ ପ୍ରତି ଅସୌଜନ୍ୟ ବ୍ୟବହାର ପ୍ରଦର୍ଶନ କରାଯାଇ-ଥିବାରୁ ସେ ଉକ୍ତ କେନ୍ଦ୍ରର ପରୀକ୍ଷା ବାତିଲ କରି ଅଧିଷଦରେ ପରୀକ୍ଷା ପର୍ଯ୍ୟବେକ୍ଷକଙ୍କ ପ୍ରତି ସମବେଦନା ଜ୍ଞାପନ କରି ପ୍ରସ୍ତାବ ଗ୍ରହଣ କରାଇଥିଲେ । ଉକ୍ତ କେନ୍ଦ୍ରରେ ପରେ ଆଉ ପରୀକ୍ଷା ହେବନାହିଁବୋଲି ନିଷ୍ପତ୍ତି ନିଆଯିବାରୁ ଏବଂ ଉକ୍ତ ନିଷ୍ପତ୍ତିକୁ ବଦଳାଇବା ପାଇଁ ନାନା ଚାପ ପଡ଼ିଥିଲେ ମଧ୍ୟ ସେ ନିଷ୍ପତ୍ତି ବଦଳାଇ ନଥିଲେ । ସବୁଠାରୁ ମର୍ଯ୍ୟାଦାର କଥା ହେଉଛି ଯେ, ଯେଉଁଦିନ କୁଳପତି ଭାବରେ ତାଙ୍କର କାର୍ଯ୍ୟକାଳ ସମାପ୍ତ ହେଲା, ସେହିଦିନ ସନ୍ଧ୍ୟା ବେଳେ ସେ ତାଙ୍କ ଅଫିସରୁ ବିଦାୟ ନେଇ ସିଧା ସମ୍ବଲପୁର ନିଜ ବାସସ୍ଥାନ ପ୍ରତ୍ୟାବର୍ତ୍ତନ କଲେ । ଏହା ତାଙ୍କର କ୍ଷମତା ଓ ପଦବୀ ପ୍ରତି ନିର୍ଲୋଭତାର ଅନ୍ୟ ଏକ ପରିଚୟ ।

ସେ ବିଧାୟକ ଥିବାବେଳେ ଓଡ଼ିଶା ବିଧାନସଭା ପକ୍ଷରୁ ବିଶ୍ୱବିଦ୍ୟାଳୟର ସିନେଟ ସଦସ୍ୟ ଥିଲେ । ବିଧାନସଭାରେ ଯେତେବେଳେ ସଂସ୍କୃତ ଏବଂ ସଂସ୍କୃତ ବିଶ୍ୱବିଦ୍ୟାଳୟ କଥା ପଡ଼େ, ସେତେବେଳେ ତାଙ୍କ ମନ୍ତବ୍ୟକୁ ଗୁରୁତ୍ୱ ଦିଆଯାଇଥାଏ । ବିଶ୍ୱବିଦ୍ୟାଳୟ ଗବେଷଣା ପରିଷଦରେ ସେ 4 ଥର ସଦସ୍ୟ ଥିଲେ । ସଂସ୍କୃତ ବିଶ୍ୱବିଦ୍ୟାଳୟର ପ୍ରତ୍ୟେକ ସଦସ୍ୟ ତାଙ୍କୁ କେବଳ ଜଣେ ଅଧିକାରୀ ଭାବରେ ମଣୁ ନଥିଲେ । ନିଜର ଖୋଦ୍ ଅତି ଆପଣାର ଭାବି ତାଙ୍କ ପ୍ରତି ନିଷ୍କପଟ ଶ୍ରଦ୍ଧା, ସମ୍ମାନ ଓ ଭକ୍ତି ନିବେଦନ କରୁଥିଲେ । ସଂସ୍କୃତ ବିଶ୍ୱବିଦ୍ୟାଳୟ ସହିତ ତାଙ୍କର ଏତାଦୃଶ ଅତୁଟ ସମ୍ବନ୍ଧ ଯାବଚ୍ଚନ୍ଦ୍ର ଏବଂ ସମସ୍ତଙ୍କ ମାନସପଟରେ ଅଲିଭା ସ୍ମୃତି ଭାବରେ ରହିବ ହିଁ ରହିବ ।

ଉପାଚାର୍ଯ୍ୟ, ସ୍ନାତକୋତ୍ତର ଧର୍ମଶାସ୍ତ୍ର ବିଭାଗ
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ
ଶ୍ରୀବିହାର, ପୁରୀ

# ଶ୍ରଦ୍ଧା ତାଙ୍କର, ପୁଞ୍ଜି ମୋର

**✻ ଶ୍ରୀ ପ୍ରହ୍ଲାଦ ଦାଶ**

ସାହିତ୍ୟ–ଜଗତରେ ପାଦଦେଇ ମୁଁ କିଛି ଲେଖାଲେଖି କରିବା ଦିନରୁ ଯେଉଁମାନେ ମୋତେ ଉତ୍ସାହ ଓ ପ୍ରେରଣା ଯୋଗାଇ ଆସୁଥିଲେ, ସେମାନଙ୍କ ମଧ୍ୟରେ ଡକ୍ଟର ଶ୍ରଦ୍ଧାକର ସୁପକାର ଥିଲେ ଅନ୍ୟତମ । ତାଙ୍କ ଦିଗଦର୍ଶନ ମୋ ପାଇଁ ଥିଲା ପ୍ରେରଣାର ଗନ୍ତାଘର । ତାଙ୍କ ସହ ମୋର ସାରସ୍ୱତ–ସମ୍ପର୍କ କେବେ ସ୍ଥାପିତ ହୋଇଥିଲା–କହିଲେ ଠିକ୍‌ଭାବେ କହି ହେବନାହିଁ, ତଥାପି ମୋ ପ୍ରତି ତାଙ୍କର ସ୍ନେହ ଓ ବ୍ୟବହାରକୁ ଦୃଷ୍ଟିରେ ରଖି ଯେ କେହି ଅନୁମାନ କରିନେବ ଏହା ଦୀର୍ଘଦିନର ସମ୍ପର୍କ ବୋଲି ।

ଡ: ସୁପକାର ସାହିତ୍ୟ ଜଗତରେ ବେଶ୍ ଜଣାଶୁଣା ଥିଲେ । ତାଙ୍କ ଲେଖାସବୁ ଓଡ଼ିଶାର ସମସ୍ତ ପତ୍ରପତ୍ରିକାରେ ସ୍ଥାନ ପାଉଥିଲା । କେବଳ ସମ୍ବଲପୁର ଅଞ୍ଚଳର ସାହିତ୍ୟିକମାନଙ୍କ ଦୃଷ୍ଟିରେ ନୁହେଁ ଅପିତୁ ସମଗ୍ର ଓଡ଼ିଶାର ସାହିତ୍ୟପ୍ରେମୀଙ୍କ ଦୃଷ୍ଟିରେ ସେ ଥିଲେ ପିତୃପ୍ରତିମ । ସମସ୍ତଙ୍କ ସହିତ ତାଙ୍କର ବେଶ୍ ଭାବ ବିନିମୟ ହେଉଥିଲା । ଓଡ଼ିଶାର କୌଣସି ସ୍ଥାନରେ ସାରସ୍ୱତ ସଭା ସମ୍ମିଳନୀ ଚାଲିଥିଲେ ତାଙ୍କ ନାଆଁ ଆଗ ପଡୁଥିଲା ।

ନୂତନ ପ୍ରତିଭା ତଥା ତରୁଣ ଲେଖକଙ୍କ ପ୍ରତି ଡ: ସୁପକାରଙ୍କ ଗଭୀର ଶ୍ରଦ୍ଧା ଥିଲା । ସେ ସାରସ୍ୱତ ସଭାମାନଙ୍କରେ ନିର୍ଦ୍ଧାରିତ ସମୟ ପୂର୍ବରୁ ଉପସ୍ଥିତ ହୋଇ ଯାଉଥିଲେ । ନୂତନ ଲେଖକ/ଲେଖିକାମାନଙ୍କ ସଂସ୍ପର୍ଶରେ ଆସି ସେମାନଙ୍କ ମନକଥା ଜାଣିବାକୁ ସେ ସବୁବେଳେ ଚେଷ୍ଟିତ ଥିଲେ । ସରସ ହେଉ ବା ନିରସ ହେଉ–କବିତା ପାଠୋତ୍ସବମାନଙ୍କରେ ଶେଷ ପର୍ଯ୍ୟନ୍ତ ଉପସ୍ଥିତ ରହି ନବାଗତ ପ୍ରତିଭାଙ୍କ ସୃଷ୍ଟି ଆସ୍ୱାଦନ କରୁଥିଲେ । ଅନେକ ସ୍ଥଳରେ ତାଳି ମାରି ସେମାନଙ୍କୁ ଡ: ସୁପକାର ଉତ୍ସାହିତ କରୁଥିଲେ ।

ନୂତନ ଲେଖକମାନେ ପ୍ରାୟତଃ ଡ: ସୁପକାରଙ୍କୁ ବିଭିନ୍ନ ପାଣ୍ଡୁଲିପି ଦେଖାଇ ମତାମତ ନେଉଥିଲେ । ଏପରିକି ମୁଁ ମଧ୍ୟ ମୋର ଅନେକ ପାଣ୍ଡୁଲିପି ପ୍ରକାଶନ ସମୟରେ ମତାମତ ଦେବାପାଇଁ ତାଙ୍କୁ ଅନୁରୋଧ କରିଥିଲି । ମୋର ସମ୍ବଲପୁରୀ ଉପନ୍ୟାସ ଅନ୍‌ମୁନ୍‌ଷିଆ ଓ ଅଇତାଗାର୍ ରକତ୍‌ଧାର୍ ଏବଂ ଶିଶୁକବିତା ପୁସ୍ତକ ଚାଗଫୁଲ ପାଇଁ ସେ ନିଜର ବହୁମୂଲ୍ୟ ସମୟ ନଷ୍ଟ କରି ଯେଉଁ ମତାମତ ଦେଇ ଯାଇଛନ୍ତି, ତାହା ମୋ ପାଇଁ କେତେ ପ୍ରେରଣାଦାୟକ–ଜଣେ ଲେଖକ ହିଁ କଳ୍ପନା କରିପାରିବ । ମୋର ପ୍ରଥମ ସମ୍ବଲପୁରୀ ଉପନ୍ୟାସ 'ଅନ୍‌ମୁନ୍‌ଷିଆ' ପାଠକରି ସେ ମନ୍ତ୍ରମୁଗ୍ଧ ହୋଇ ଯାଇଥିଲେ । ସମ୍ବଲପୁରୀ ଭାଷାରେ ବି ଏପରି ଉଚ୍ଚକୋଟୀର ଭାବ ବ୍ୟକ୍ତ କରିହୁଏ

ଜାଣି ତାଙ୍କର ଆନନ୍ଦର ସୀମା ରହି ନ ଥିଲା । ପାଣ୍ଡୁଲିପି ପାଠକରି ମୋର କେତେ ଯେ ପ୍ରଶଂସା କରିଥିଲେ କହି ହେବନାହିଁ । ତାହା ଯଦି ଏଠାରେ ଉଲ୍ଲେଖ କରଯାଏ, ତେବେ ନିଶ୍ଚିତ ଭବେ ଅତିରଞ୍ଜିତ ମନେହେବ । ତେଣୁ ତାଙ୍କ ହ୍ରଦର ମତାମତ ହିଁ ପାଠକମାନଙ୍କ ଗୋଚରର୍ଥେ ଏଠି ଉଲ୍ଲେଖ କରୁଛି—

"ଶ୍ରୀ ପ୍ରହଲ୍ଲାଦ ଦାଶଙ୍କର ଲେଖା ବଡ୍ ଗପ ବା ଛୋଟ ଉପନ୍ୟାସ 'ଅନ୍ମୁନ୍ଷିଆ' ପଢ଼ିକରି ଖୋବ୍ ଖୁସି ହେଲି । ସମ୍ବଲପୁରୀ ଭଷାଥି ବହୁତ୍ ଗୀତ୍ ଲେଖା ହେଉଛେ, ସମସ୍ତେ ପଢି କରି ଆଉର୍ ଶୁନିକରି ଖୁସି ହେଉଛନ । ନାଟକ୍ ଭି ଭଲ ଭଲ୍ଟା ବାହାରୁଛେ । ଉଡ଼ିଶା ଭିତ୍ରେ ଆଉର୍ ବାହାରେ ବହୁତ୍ ଲୁକ ସମ୍ବଲପୁରୀ ନାଟକ୍ ଦେଖିକରି ଖୁସ୍ ହେଉଛନ୍ । ମେଡାଲ୍ ଆଉର୍ ପ୍ରଶଂସା ପତ୍ର ଭି ମିଳୁଛେ । ନିର୍ବଲ ସମ୍ବଲପୁରୀ ଭଷଥି ଗପ କି ଉପନ୍ୟାସ୍ ବହୁତ୍ କମ୍ ଲେଖା ହେଉଛେ । ସେଥିର୍ ଲଗି ପ୍ରହଲ୍ଲାଦ ବାବୁଙ୍କୁ ତାଙ୍କର୍ ଇ ବହିର୍ ଲଗି ଧନ୍ୟବାଦ ଦେଉଛେଁ । ସମ୍ବଲପୁରର ଗାଉଁଲୀ ଗାଆଁର ଲୁକମାନଙ୍କର୍ ଜୀବନ୍ ବିଷୟରେ ସେଇ ବହିଟା ଲେଖିଛନ୍ । ସମ୍ବଲ୍ପୁରୀ ଭଷା ଲେଖାଥି ତାଙ୍କର୍ ଭଲ୍ ଦଖଲ ଅଛେ । ଲେଖାପଢ଼ା କମ ଜାନିଥିବାର୍ ଲୁକମାନେ ଭି ଇ'ଟା ପଢ଼ିକରି ସହଜରେ ବୁଝି ପାର୍ବେ । ସେଥିର୍ ଲଗି ମୁଇଁ ତାଙ୍କୁ ଧନ୍ୟବାଦ୍ ଦେଉଛେଁ । ଆହୁରି ଏନ୍ତା ବହୁତ୍ ବହି ସେ ଲେଖିକରି ସାହିତ୍ୟର ଉନ୍ନତି କରୁନ୍ ।"

ତା 25-12-1986 ଶ୍ରଦ୍ଧାକର ସୂପକାର

'ଅନ୍ମୁନ୍ଷିଆ' ପ୍ରକାଶ ପାଇବା ପରେ ମୁଁ ଯେତିକି ଖୁସି ହୋଇ ନ ଥିଲି, ଡକ୍ଟର ସୂପକାର ତାଠାରୁ ଅଧିକ ଖୁସି ହୋଇଥିଲେ । ତାଙ୍କର ଆନନ୍ଦ ବ୍ୟକ୍ତ କରିବାକୁ ଯାଇ ବନ୍ଧୁମହଲ ଓ ବିଭିନ୍ନ ସଭସମିତିରେ 'ଅନ୍ମୁନ୍ଷିଆ' ଉପରେ ଟୀପ୍ପଣୀମାନ ଦେଉଥିଲେ । କ୍ରମେ ତାଙ୍କ ସହ ମୋର ସାରସ୍ୱତସମ୍ପର୍କ ଘନିଷ୍ଠ ହୋଇ ପଡ଼ିଥିଲା । 1987ରେ ମୋର ଦ୍ୱିତୀୟ ସମ୍ବଲପୁରୀ ଉପନ୍ୟାସ 'ଅଲ୍ତାଗାର୍ ରକତ୍‌ଧାର' ପ୍ରକାଶ ପାଉଥିବା କଥା ଶୁଣି ସେ ଅବାକ୍ ହୋଇ ଯାଇଥିଲେ । ସେଦିନ ମୁଁ ତାଙ୍କ ଘରକୁ ଏକ ପରାମର୍ଶ ପାଇଁ ଯାଇଥାଏ । ସେ ଘରୁ ଆସି ମୋତେ ଅଫିସ ଗୃହରେ ବସି-ବାକୁ କହି ପୁଣି ଘର ଭିତରକୁ ଚାଲିଗଲେ । କିଛି ସମୟ ପରେ ଡକ୍ଟର ସୂପକାର ହସ ହସ ମୁହଁରେ ଘରୁ ବାହାରି ଆସି ମୋ ପକେଟରେ କିଛି ନୋଟ୍ ଗୁଞ୍ଜିଦେଲେ । ମୁଁ କିଛି କହିବା ପୂର୍ବରୁ ସେ କହିଲେ, "ବୁଝିଲ ପ୍ରହଲ୍ଲାଦ, ଏ ଯୁଗରେ ପୁସ୍ତକ ପ୍ରକାଶନ ଆମମାନଙ୍କ ପକ୍ଷରେ ଏକ କାଠିକର ପାଠ । ପୁସ୍ତକ ବିକ୍ରିରୁ ମୁଦ୍ରଣ ଖର୍ଚ୍ଚ ମଧ୍ୟ ବାହାରେ ନାହିଁ । ତୁମପରି ଜଣେ ସାଧାରଣ ଯୁବକ ଏପରି ଦୁଃସାହସିକ ପଦକ୍ଷେପ ନେଉଥିବା ଆନନ୍ଦର ବିଷୟ । ତୁମେ ମୋ ତରଫରୁ ଏ ସାମାନ୍ୟ ସାହାଯ୍ୟ ଗ୍ରହଣ ନ କଲେ ମୁଁ ଅପରାଧୀ ହୋଇଯିବି "।

ସେଦିନ ଡକ୍ଟର ସୂପକାରଙ୍କ ଆଗ୍ରହ ଓ ଆଶୀର୍ବାଦ ଆଗରେ ମୁଁ କିଛି କହି-ପାରି ନ ଥିଲି । ତିନୋଟି ଶହେଟଙ୍କିଆ ନୋଟ୍ ଦେଇ ସେ ମୋର କେତେ ଯେ ଉତ୍ସାହ ବଢ଼ାଇଥିଲେ ମୁଁ ଜାଣେ । ମୋର ଦ୍ୱିତୀୟ ସମ୍ବଲପୁରୀ ଉପନ୍ୟାସ 'ଅଲ୍‌ତାଗାର୍ ରକତ୍‌ଧାର୍'ରେ ତାଙ୍କର ଅଭିମତ ଆବଶ୍ୟକ କରିଥିଲି । ତା' ଉପରେ ସେ ନିମ୍ନୋକ୍ତ ମତାମତ ଦେଇଥିଲେ—

"ଅଲ୍‌ତାଗାର୍ ରକତ୍‌ଧାର୍ ଗୁଟେ ଛୋଟ ଉପନ୍ୟାସ ନାଇଁ ହେଲେ ଗୁଟେ ବଡ଼୍ ଗପ । ସମ୍ବଲପୁରର ଗାଉଁଲି ଗାଆଁର ଭଲ ଛାପା ଇ ବହିଥି ଲେଖା ହେଇଛେ । ସମ୍ବଲପୁରୀ ଭଷାଥି ବନେ ଗ୍ୟୀତ୍‌ମାନ୍ ଲେଖା ହେଇଛେ । ନାଟକ, ରେଡ଼ିଓ, ଟିଭିଥି ସେସବୁ ।

କଥାରେ ଅଛି— 'ମର୍ତ୍ତ୍ୟମଣ୍ଡଳେ ଦେହବହି, ଦେବତା ହୋଇଲେ ମରଇ' ।, ମଣିଷ ସମାଜ ପାଖରେ ନିଜେ ବସବାସ କରି ରହୁଥିବା ପୃଥିବୀ ଓ ଆକାଶ ତଥା ଆକାଶର ସୂର୍ଯ୍ୟ ଚନ୍ଦ୍ର ଯେଭଳି ସତ୍ୟ ସେହିଭଳି ପ୍ରତ୍ୟେକ ମଣିଷ ନିକଟରେ ଜନ୍ମ ଓ ମୃତ୍ୟୁ ଏକମାତ୍ର ସତ୍ୟ ବୋଲି କୁହାଯାଇପାରେ ।

# ଶ୍ରଦ୍ଧେୟ ଶ୍ରଦ୍ଧାକର

✻ ଶ୍ରୀ ତ୍ରିବିକ୍ରମ ତ୍ରିପାଠୀ

କାଳର କରାଳ ଗତିରେ ବହୁ କାଳପୁରୁଷ ଏହି ଧରାଧାମରେ ଅବତାର ଗ୍ରହଣ କରିଛନ୍ତି ଏବଂ ଲୀଳା ସମାପ୍ତ ପରେ ଇହଲୀଳା ସମ୍ବରଣ କରିଛନ୍ତି । ପୃଥିବୀବାସୀଙ୍କ ନିକଟରେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଉଦୟ ଅସ୍ତର ଯେପରି ଅନ୍ତ ନାହିଁ ସେହିପରି ଯୁଗସ୍ରଷ୍ଟାମାନଙ୍କର ସ୍ମୃତି ମଧ୍ୟ ବିଲୋପ ଘଟେନାହିଁ । ସମୟର ସ୍ରୋତରେ ଆମ ଦେଶରେ ବା ଆମ ପ୍ରଦେଶରେ ପ୍ରତିଦିନ ବହୁ ଶିଶୁ ଜନ୍ମଲାଭ କରୁଛନ୍ତି ଓ ସେହିପରି ବହୁ ବ୍ୟକ୍ତିଙ୍କର ବିୟୋଗ ମଧ୍ୟ ଘଟୁଛି । କିନ୍ତୁ ସେମାନଙ୍କର ସ୍ମୃତି ହୁଏତ ସେମାନଙ୍କ ନିଜ ନିଜ ପରିବାର ପରିସୀମା ମଧ୍ୟରେ ବା ବନ୍ଧୁ ସ୍ୱଜନମାନଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହୁଛି । କିନ୍ତୁ ଏଭଳି କେତେକ ବ୍ୟକ୍ତି ଆମ ଗ୍ରହଣରେ ଜନ୍ମଲାଭ କରି ନିଜ ଗୁଣ, ବ୍ୟକ୍ତିତ୍ୱ, କାର୍ଯ୍ୟକଳାପ ବଳରେ ଜନସାଧାରଣଙ୍କ ନିକଟରେ, ସମାଜରେ ଓ ସାଧାରଣ କ୍ଷେତ୍ରରେ ନିଜ ଅବଦାନ ସକାଶେ କେବଳ ନିଜର ପରିବାର ପରିଜନଙ୍କ ପାଖରେ ନୁହେଁ ଅଥଚ ସମଗ୍ର ରାଜ୍ୟବାସୀ, ଅଞ୍ଚଳବାସୀ ଏପରିକି ବିଶ୍ୱବ୍ୟାପୀ ଜାତି, ଧର୍ମ ଓ କାଳ ନିର୍ବିଶେଷରେ ସ୍ମରଣୀୟ ହୋଇ ରହନ୍ତି ; ଯେଉଁମାନଙ୍କୁ ଆମେ ଯୁଗଜନ୍ମା ବା ପ୍ରାତଃସ୍ମରଣୀୟ ବ୍ୟକ୍ତିତ୍ୱ ଭାବେ ସମ୍ମାନ ଜଣାଇଥାଉଁ କାରଣ ସେମାନଙ୍କ ଜୀବନ-କାର୍ଯ୍ୟ ଓ ଆଦର୍ଶ ସମସ୍ତଙ୍କୁ ପ୍ରେରଣା ଯୋଗାଇଥାଏ । ଏହିଭଳି ଯୁଗଜନ୍ମା ସନ୍ତାନମାନଙ୍କ ମଧ୍ୟରେ ୰ପଣ୍ଡିତ ଶ୍ରଦ୍ଧାକର ସୂପକାର ଥିଲେ ଅନ୍ୟତମ ଯାହାଙ୍କ ବିୟୋଗରେ ଆଜି କେବଳ ସୂପକାର ପରିବାର ନୁହନ୍ତି ଅଥଚ ସମ୍ବଲପୁରବାସୀ ବା ପଶ୍ଚିମ ଓଡ଼ିଶାବାସୀଙ୍କ ସମେତ ସମଗ୍ର ଓଡ଼ିଶାବାସୀ ଗଭୀର ଶୋକପ୍ରକାଶ କରିବା ସହିତ ଉକ୍ତ ଅମରଆତ୍ମା ପ୍ରତି ନିଜ ନିଜ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି ।

ଡକ୍ଟର ଶ୍ରଦ୍ଧାକର ସୂପକାର କେବଳ ଜଣେ ରାଜନୀତିଜ୍ଞ, ଲେଖକ, ଶିକ୍ଷାବିତ୍ ଅଥବା ବିଜ୍ଞ ପଣ୍ଡିତ ନଥିଲେ । ଏକାଧାରରେ ବହୁମୁଖୀ ପ୍ରତିଭାର ସେ ଥିଲେ ଉଜ୍ଜ୍ୱଳ ପ୍ରତୀକ । ମଣିଷ ଜୀବନର ସମସ୍ତ ଝଞ୍ଜାଳ ଓ ସମସ୍ୟାର ସମ୍ମୁଖୀନ ହେବା ସହିତ ସାଧାରଣ ଜୀବନର କର୍ମବ୍ୟସ୍ତତା, ଆଇନଜୀବି, ଶିକ୍ଷକ, ବିଧାୟକ, ସାଂସଦ,ସାହିତ୍ୟିକ, ଶିକ୍ଷାବିତ୍, ବକ୍ତା, ସମ୍ପାଦକ ତଥା ଜଣେ ସମ୍ମାନିତ ଜନ-ନେତା ଭାବେ ତାଙ୍କର ପ୍ରତିଷ୍ଠା ଓ ସମ୍ମାନ ରହିଥିଲେ ସୁଦ୍ଧା ନିଜ ବ୍ୟକ୍ତି- ଗତ ଜୀବନ ଯାପନ ପ୍ରଣାଳୀ, ସାମାଜିକ ଚଳଣି, ନୀତିନିଷ୍ଠତା, କର୍ତ୍ତବ୍ୟ ପରାୟଣତା, ମାନବବାଦୀ ଚିନ୍ତାଧାରା, ଗଠନମୂଳକ ଭୂମିକା, ସାଧୁପ୍ରକୃତି ଓ ସୁମିଷ୍ଟ ବ୍ୟବହାର ସହିତ ସରଳ ଜୀବନଯାପନର ଯେଉଁ ପରାକାଷ୍ଠା ଶ୍ରଦ୍ଧାକର ବାବୁ ପ୍ରଦର୍ଶନ କରିଯାଇଛନ୍ତି ସେଭଳି ବ୍ୟକ୍ତିତ୍ୱର ଉଦାହରଣ ଖୁବ୍ ଅଳ୍ପ ଲୋକଙ୍କ ନିକଟରେ ଦେଖିବାକୁ ମିଳେ ।

ତାଙ୍କର ସରଳତା ଓ ନିଷ୍କପଟତା ତଥା ନିରହଙ୍କାର ସ୍ୱଭାବ ଯୋଗୁଁ ତକଟର ସୂପକାର ସାଧାରଣ ମଲିମୁଣ୍ଡିଆଠାରୁ ଆରମ୍ଭ କରି ସର୍ବୋଚ୍ଚ ପଦାଧିକାରୀ ବ୍ୟକ୍ତିମାନଙ୍କ ସହ ସମତାଳରେ ଓ ନିଃସଙ୍କୋଚରେ ମିଶି ପାରୁଥିଲେ । ଯେଉଁ କ୍ଷେତ୍ରକୁ ସେ ହାତ ବଢ଼ାଇଛନ୍ତି ସେହି କ୍ଷେତ୍ରକୁ ନିଜ ଜୀବନର ସାଧନାର ପୀଠରେ ପରିଣତ କରିଛନ୍ତି ଓ ଅକୁଣ୍ଠ ଉଦ୍ୟମ ତଥା ସାଧନା ତାଙ୍କୁ ସେହିସବୁ କ୍ଷେତ୍ରରେ ସଫଳତା ଆଣି ଦେଇଛି । ସେ ଥିଲେ ଏକାଧାରରେ ଜଣେ ଛାତ୍ର ଓ ଶିକ୍ଷକ । ସାଧନା ବିନା ସିଦ୍ଧି ସହଜଲଭ୍ୟ ନୁହେଁ ଓ ଏଥିପାଇଁ ସମୟାନୁବର୍ତ୍ତିତା ଓ କଠୋର ଅଧ୍ୟବସାୟ ଆବଶ୍ୟକ ହେଲେ ମଧ୍ୟ ଜଣେ ଖୋଲାମନରେ ନିରଳସ ଭାବେ ଯଦି ନିଜ କର୍ତ୍ତବ୍ୟ ସୁଷ୍ଠୁ ରୂପେ କରିଯାଏ ତେବେ ସଫଳପ୍ରାପ୍ତି ସୁନିଶ୍ଚିତ ବୋଲି ତାଙ୍କ ମତକୁ ସେ ନିଜ ଜୀବନରେହିଁ ପ୍ରତିପାଦିତ କରିଥିଲେ ।

ରାଜନୈତିକ କ୍ଷେତ୍ରରେ ସେ ଯେଉଁ ପ୍ରତିଷ୍ଠାର ଅଧିକାରୀ ଥିଲେ ସେହି ପ୍ରତିଷ୍ଠା ସାଧାରଣ ଜୀବନର ବିଭିନ୍ନ କ୍ଷେତ୍ରରେ ମଧ୍ୟ ଡକ୍ଟର ସୂପକାର ଅର୍ଜନ କରିଥିଲେ । କିନ୍ତୁ ନୀତିଚ୍ୟୁତ ହୋଇ କୌଣସି କାର୍ଯ୍ୟ କରିବା ବା ନିଜର ପ୍ରତିଷ୍ଠାର ପ୍ରଭାବ ପକାଇ କିଛି ସ୍ୱାର୍ଥ ହାସଲ କରିବା ପାଇଁ ସେ ନିଜେ ତ କେବେ ଆଗ୍ରହ ପ୍ରକାଶ କରି ନ ଥିଲେ ଅଧିକନ୍ତୁ ସୁବିଧାବାଦୀ ନୀତିହୀନ କାର୍ଯ୍ୟକୁ ସେ ଆଦୌ ପ୍ରଶ୍ରୟ ମଧ୍ୟ ଦେଉ ନ ଥିଲେ । ଭାଷା ସାହିତ୍ୟ ବିଦ୍ୱତ୍ତା ଏବଂ ଅଭିଜ୍ଞତା ସତ୍ତ୍ୱେ ତାଙ୍କର ଜ୍ଞାନପିପାସା କେବେହେଲେ ଶାନ୍ତ ହୋଇ ନ ଥିଲା । ସେ ଥିଲେ ଜଣେ ଆଜୀବନ ସାଧକ ଜିଜ୍ଞାସୁ ଓ ସାହିତ୍ୟକସିଦ୍ଧ ପୁରୁଷ ନବ ଓଡ଼ିଶାର ନିର୍ମାଣ ଦିଗରେ, ଜାତୀୟ ମୁକ୍ତି ଆନ୍ଦୋଳନରେ, ଅହରହ ଲେଖନୀ ଚାଳନା ସମେତ ଅନବଦ୍ୟ ଓ ସମୃଦ୍ଧ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ତଥା ସର୍ବୋପରି ନୀତିନିଷ୍ଠ ନାଗରିକ ଓ ସମ୍ବେଦନଶୀଳ ସମାଜ ସୃଷ୍ଟି ସକାଶେ ତାଙ୍କର ବଦାନ ଓଡ଼ିଶା ଇତିହାସରେ ତାଙ୍କୁ ସ୍ମରଣୀୟ କରି ରଖିବ ।

# ସମୟାନୁବର୍ତ୍ତିତାର ପ୍ରତୀକ ଡ଼. ସୂପକାର

ଶ୍ରୀ ପରେଶ ଚନ୍ଦ୍ର ଦାନୀ

ଡ଼କ୍ଟର ଶ୍ରଦ୍ଧାକର ସୂପକାରଙ୍କ ବିୟୋଗରେ ଦେଶ ଜଣେ ସଚ୍ଚୋଟ ରାଜନୀତିଜ୍ଞ, ବିଶିଷ୍ଟ ସାହିତ୍ୟିକ, ଶିକ୍ଷାବିତ୍, ଗବେଷକ ଏବଂ ସମାଜସେବିକୁ ହରାଇଲା । ସାହିତ୍ୟ କ୍ଷେତ୍ରରେ ଅନବରତ ସାଧନା କରି ସେ ବହୁ ମୂଲ୍ୟବାନ ସାହିତ୍ୟ ସୃଷ୍ଟିକରି ଯାଇଛନ୍ତି । ଦେଶର ବିଭିନ୍ନ ସମସ୍ୟା ଉପରେ ଗବେଷଣାତ୍ମକ ପ୍ରବନ୍ଧମାନ ରଚନା କରି ଜନମତ ସୃଷ୍ଟି କରିଯାଇଛନ୍ତି ଏବଂ ବୃଦ୍ଧାବସ୍ଥାରେ ମଧ୍ୟ ନିଜକୁ ଅବିରତ ଅଧ୍ୟାପନା ଓ ଗବେଷଣା କାର୍ଯ୍ୟରେ ନିୟୋଜିତ କରି ମନୁଷ୍ୟ ଜୀବନ ଯେ ଏକ ଛାତ୍ରଜୀବନ ତାହା ଆମ୍ଭମାନଙ୍କୁ ଦେଖାଇ ଯାଇଛନ୍ତି । କିନ୍ତୁ ତାଙ୍କର ଯେଉଁ ମହାନ ଗୁଣ ଆମ୍ଭମାନଙ୍କୁ ବେଶୀ ଅନୁପ୍ରାଣିତ କରିଥିଲା ତାହା ହେଉଛି ତାଙ୍କର ସମୟାନୁବର୍ତ୍ତିତା ।

ଆଜିକାର ଭାରତୀୟ ସମାଜରେ ଆମ୍ଭମାନଙ୍କ ସମୟ ଜ୍ଞାନର ଅଧୋଗତି ଘଟିବାରେ ଲାଗିଛି । ସମୟର ସଦୁପଯୋଗ ତଥା ସମୟାନୁବର୍ତ୍ତିତାର ମହତ୍ୱ ଉପରେ ଜନନେତାମାନେ ଉପଯୁକ୍ତ ଦିଗଦର୍ଶନ ଦେଇପାରୁନାହାନ୍ତି । ସବୁ ସମିତିକୁ ବିଳମ୍ବରେ ପହଞ୍ଚିବା ଏକ ସାଧାରଣ ଘଟଣା ହୋଇଗଲାଣି । ବିଶେଷକରି ରାଜନୀତିଜ୍ଞମାନେ ଏହି କ୍ଷେତ୍ରରେ ନେତୃତ୍ୱ ନେଉଛନ୍ତି । ଯଦି ସନ୍ଧ୍ୟା ଛଅଟାରେ ସଭା ଆରମ୍ଭ ହେବାକୁ ଥିବ, ତା'ହେଲେ ସେମାନେ ସାତଟାରେ ପହଞ୍ଚିବେ । ଜନ ସାଧାରଣ ମଧ୍ୟ ଏହାକୁ ଇଣ୍ଡିଆନ୍ ଟାଇମ୍ ବୋଲି କହି ଏହା ଏକ ଗତାନୁଗତିକ ବିଷୟ ବୋଲି ଧରିନେଲେଣି ଏବଂ ସେହି ଅନୁସାରେ ନିଜକୁ ଖାପ ଖୁଆଇ ଚଳିଲେଣି । କିନ୍ତୁ ଡ: ସୂପକାର ଏ ସବୁର ଊର୍ଦ୍ଧ୍ୱରେ ଥିଲେ । ରାଜନୀତି ସଭା ହେଉ, ସାହିତ୍ୟ ସଭା ହେଉ କିମ୍ବା ଅନ୍ୟାନ୍ୟ ଯେ କୌଣସି ସଭାସମିତି ହେଉ, ସେ ସମସ୍ତ ସଭାସମିତି-ମାନଙ୍କରେ ଠିକ୍ ସମୟରେ ଯାଇ ଯୋଗ ଦେଉଥିଲେ । କୌଣସି ସଭାକୁ ମୁଖ୍ୟଅତିଥି, ମୁଖ୍ୟବକ୍ତା କିମ୍ବା ସାଧାରଣ ଶ୍ରୋତା ଭାବରେ ମଧ୍ୟ ଠିକ୍ ସମୟରେ ପହଞ୍ଚିବାକୁ ସେ ନିଜର ପରମ କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ସଭାର ସମୟ ଯଦି ସନ୍ଧ୍ୟା ଛଅଟାରେ ଥାଏ ତାହାହେଲେ ସେ ଠିକ୍ ଛଅଟାରେ ପହଞ୍ଚି ଯାଉଥିଲେ । ଅନେକ ସଭାକୁ ତାଙ୍କୁ ମୁଖ୍ୟବକ୍ତା କିମ୍ବା ମୁଖ୍ୟଅତିଥି ଭାବରେ ନିମନ୍ତ୍ରଣ କରାଯାଉଥିଲା । କିନ୍ତୁ ଶ୍ରୋତାମାନେ ପହଞ୍ଚି ନଥିଲେ ମଧ୍ୟ ସେ ଠିକ୍ ସମୟରେ ସଭାକୁ ପହଞ୍ଚି ଯାଉଥିଲେ । ତେଣୁ ସଂପୃକ୍ତ ଅନୁଷ୍ଠାନର କର୍ମକର୍ତ୍ତାମାନେ ବ୍ୟତିବ୍ୟସ୍ତ ହୋଇ ପଡୁଥିଲେ । କେବଳ ଅନ୍ୟମାନଙ୍କ ବିଳମ୍ବ ହେତୁ ଡ: ସୂପକାରଙ୍କ ପରି ଜଣେ କର୍ମସାଧକଙ୍କ ବହୁମୂଲ୍ୟ ସମୟ ଯେ ଅପଚୟ ହେଉଛି, ତାହାକୁ ଉପଲବ୍ଧି କରି ଆୟୋଜକମାନେ ସଙ୍କୋଚବୋଧ କରୁଥିଲେ । କିନ୍ତୁ ଡ: ସୂପକାର ଥିଲେ ଶାନ୍ତ, ନିର୍ବିକାର । କୌଣସି ପ୍ରକାର ବିରକ୍ତି କିମ୍ବା ଅଭିଯୋଗ ପ୍ରକାଶ କରନ୍ତି ନାହିଁ ଯେ ସଭାକାର୍ଯ୍ୟ କାହିଁକି ବିଳମ୍ବ ହେଉଛି । ଏପରି କି ଘଟିଛି—ତାଙ୍କୁ ଯେତେବେଳେ ଅତିଥି କିମ୍ବା

ବକ୍ତା ଭବରେ ନିମନ୍ତ୍ରଣ କରୁଥିଲୁ ସେତେବେଳେ ଯଦି ସଭା ଛଅଟାରେ ଆରମ୍ଭ ହେବାକୁ ଥିବ, ତା'ହେଲେ ତାଙ୍କ ଚିଠିରେ ଆମେ ସଭାର ସମୟ ଛଅଟା ତିରିଶ ବୋଲି ଲେଖୁଥିଲୁ । ତାଙ୍କ ସମୟାନୁବର୍ତ୍ତିତା ଆମ୍ଭମାନଙ୍କପାଇଁ ପ୍ରେରଣାଦାୟକ ଥିଲା ।

ସଭାସମିତିମାନଙ୍କରେ ଡକ୍ଟର ସୂପକାର ଯେପରି ସମୟାନୁବର୍ତ୍ତିତାର ପଥପ୍ରଦର୍ଶକ ଥିଲେ, ଅଧ୍ୟାପକ ଭବରେ ସେହିପରି ଛାତ୍ରଛାତ୍ରୀମାନଙ୍କୁ ସମୟାନୁବର୍ତ୍ତିତାର ଦିଗ ଦର୍ଶନ ଦେଉଥିଲେ । ଗୋଟିଏ ଦିନର ଘଟଣା ଆଜି ମଧ୍ୟ ମୋର ମନେ ପଡୁଛି । ସେତେବେଳେ ସେ ଲଜପତ୍ ରାଏ ଆଇନ କଲେଜର ଅଧ୍ୟାପକ ଥିଲେ ଏବଂ ମୁଁ ସେହି କଲେଜର ଛାତ୍ର । ବର୍ଷାଦିନ । ବର୍ଷାମାସର ପ୍ରବଳ ବର୍ଷା ସହ ଝଡ଼ତୋଫାନ ମଧ୍ୟ ହେଉଥାଏ । କଲେଜର ପ୍ରଥମ କ୍ଲାସ୍ ସକାଳ 7·30ରେ ଆରମ୍ଭ ହେଉଥିଲା । ମୁଁ ପ୍ରାୟ 7·45ରେ କଲେଜରେ ପହଞ୍ଚିଲି । ସେଦିନ ପ୍ରଥମ କ୍ଲାସ ଡ: ସୂପକାରଙ୍କ ଥାଏ । ଦୁଇ ଚାରିଜଣ ଛାତ୍ର କଲେଜ ବାରଣ୍ଡାରେ ଠିଆ ହୋଇଛନ୍ତି ଓ ଅନ୍ୟ ସବୁଆଡେ ଶୁନ୍‌ଶାନ୍ । ଆଇନ କଲେଜର ଛାତ୍ରମାନଙ୍କ ପାଇଁ ପଢ଼ା ଯେତେ ଗୁରୁତ୍ୱ ନୁହେଁ ପରୀକ୍ଷା ଦେବାପାଇଁ ଏଟେଣ୍ଡେନ୍‌ସ ତାଠାରୁ ବେଶି ଗୁରୁତ୍ୱପୂର୍ଣ୍ଣ । ତେଣୁ ବେଶି ଛାତ୍ର ପ୍ରଥମ କ୍ଲାସର ଶେଷଭାଗରେ ପହଞ୍ଚୁଥିଲେ କେବଳ ଏଟେଣ୍ଡେନ୍‌ସ ପକାଇବାପାଇଁ । କୌଣସି କାରଣରୁ କ୍ଲାସ ସସପେଣ୍ଡ ହୋଇଗଲେ ଛାତ୍ରମାନେ ବେଶି ଖୁସି । ତେଣୁ ମନେ ମନେ ଭାବିଲି ବୋଧହୁଏ ଝଡତୋଫାନ ସହ ପ୍ରବଳ ବର୍ଷା ହେଉଥିବାରୁ କ୍ଲାସଗୁଡ଼ିକ ହେଉ ନ ଥିବ । ଅନ୍ୟ କ୍ଲାସମାନ ମଧ୍ୟ ଖାଲି ପଡ଼ିଥିଲା । କିନ୍ତୁ ଆମ କ୍ଲାସକୁ ଯାଇ ଯେତେବେଳେ ଦେଖିଲି, ଡ: ସୂପକାର ଏକାକୀ ଚୌକିରେ ବସି ବହି ଖଣ୍ଡିଏ ପଢୁଛନ୍ତି । କ୍ଲାସରେ ଆଉ କୌଣସ ଛାତ୍ର ନାହାନ୍ତି । ସବୁଦିନପରି ଖଣ୍ଡପ୍ରଳୟର ମୂଷଳଧାର ବର୍ଷାରେ ମଧ୍ୟ ଡ: ସୂପକାର ଠିକ୍ ସମୟରେ ଆସି କ୍ଲାସରେ ପହଞ୍ଚି ଯାଇଛନ୍ତି । ମୁଁ ଯେମିତି କ୍ଲାସରେ ପ୍ରବେଶ କରିଛି ସେହିକ୍ଷଣି ସେ ଚଉକିରୁ ଉଠି ପଢାଇବା ଆରମ୍ଭ କରିଦେଲେ । ସେ ପଢାଉଥିବା ସମୟରେ ମୁଁ ଏକାକୀ କ୍ଲାସରେ ବସି ଭାବୁଥିଲି—ଧନ୍ୟ ଡ: ସୂପକାରଙ୍କ ସମୟାନୁବର୍ତ୍ତିତା ।

# ଆଇନଜ୍ଞ ଶ୍ରଦ୍ଧାକର

ଜଷ୍ଟିସ କୃଷ୍ଣ ପ୍ରସାଦ ମହାପାତ୍ର

ଶ୍ରଦ୍ଧାକର ସୂପକାରଙ୍କ କର୍ମମୟ ଜୀବନ ବିଷୟରେ ବହୁ ବ୍ୟକ୍ତି ଆଲୋକପାତ କରିଛନ୍ତି । ମୁଁ ମଧ୍ୟ ଅତୀତରେ ତାଙ୍କ ବହୁମୁଖୀ ପ୍ରତିଭା ଉପରେ ସବିଶେଷ ଆଲୋଚନା କରିଛି । କିନ୍ତୁ ତାଙ୍କ କଥା ଚିନ୍ତାକଲେ ମନକୁ ଆସେ, ସତେ ଯେପରି କୌଣସି ଏକ ବିଶେଷ ପ୍ରସଙ୍ଗ ଉପରେ ଚର୍ଚ୍ଚା କରା ହୋଇନାହିଁ । ତେଣୁ ଏଥର ଆଇନଜ୍ଞ ଭାବେ ଶ୍ରଦ୍ଧାକରଙ୍କୁ ଏକ ଝରକା ମାଧ୍ୟମରେ ଦେଖିବାକୁ ଏବଂ ଦେଖାଇବାକୁ ପ୍ରୟାସ କରୁଛି ।

ଶ୍ରଦ୍ଧାକର ପାଟଣା ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ପରେ ବି. ଏଲ୍. ଡ଼ିଗ୍ରୀ ହାସଲ କରିଥିଲେ । ତାଙ୍କ ଏକାଡେମିକ କେରିଅର, ଜ୍ଞାନ ଏବଂ ବୁନିଆଦି ଏପରି ଉଚ୍ଚ ଧରଣରଥିଲା ଯେ, ସେ ଅନାୟାସରେ କୌଣସି ବଡ଼ ସରକାରୀ ଚାକିରୀ ପାଇ ପାରିଥାନ୍ତେ । କିନ୍ତୁ ସେ ଗାନ୍ଧୀବାଦୀ ସ୍ୱାଧୀନତା ସଂଗ୍ରାମୀ ତଥା ସ୍ୱାଧୀନଚେତା ହୋଇଥିବାରୁ ସରକାରୀ ଚାକିରୀ କରିବା କଥା କେବେ ମାତ୍ର କଳ୍ପନା କରି ନଥିବେ । ତେଣୁ ତିରିଶ ଦଶକର ଶେଷ ଭାଗରେ ସମ୍ବଲପୁର ଜିଲ୍ଲା ବାର୍‌ର ସଦସ୍ୟ ଭବେ ଆଇନ ବ୍ୟବସାୟ ଆରମ୍ଭ କଲେ । ତାଙ୍କର ସମସାମୟିକ ଥିଲେ ଶଶୀ ଭୂଷଣ ଶତପଥୀ, ମାନଭଞ୍ଜନ ବହିଦାର, ରାଜାରାମ ଦୁବେ, ଚିନ୍ତାମଣି ମହାପାତ୍ର, ଶଶୀ ଭୂଷଣ ପଣ୍ଡା ଓ ସତ୍ୟ ଗୋପାଳ ନାୟକ । ସମ୍ବଲପୁରର ଦୁର୍ଭାଗ୍ୟ ଯେ ଏହି କର୍ତ୍ତବ୍ୟକର୍ମୀ ବ୍ୟକ୍ତିମାନେ ସମୟ ହେବା ପୂର୍ବରୁ ଆଖି ପାଖରେ ନାହାନ୍ତି । କହିବା ବାହୁଲ୍ୟମାତ୍ର, ପ୍ରତ୍ୟେକ ଉଚ୍ଚ ଜ୍ଞାନ ସଂପନ୍ନ ଓକିଲ ଥାଇ ସମ୍ବଲପୁର ଜିଲ୍ଲାବାରପାଇଁ ସାରା ଓଡ଼ିଶାରେ ସୁନାମ ଆଣିବାପାଇଁ ସମର୍ଥ ହୋଇଥିଲେ । ଓଡ଼ିଶା ହାଇକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଜଷ୍ଟିସ ଶ୍ରୀ ଗତିକୃଷ୍ଣ ମିଶ୍ର, ଯେ ଏକଦା ସମ୍ବଲପୁର ମୁନସିଫ ପଦରେ ଅଧିଷ୍ଠିତ ଥିଲେ ଏବଂ ତାଙ୍କ ଅଗ୍ରଜ ପୂର୍ବତନ ହାଇକୋର୍ଟ ବିଚାରପତି ଜଷ୍ଟିସ୍ ଜୟକୃଷ୍ଣ ମିଶ୍ର ଯେ କି ଦୁଇଥର ସମ୍ବଲପୁରଠାରେ ଜିଲ୍ଲା ଜଜ୍‌ଥିଲେ, ମୁକ୍ତ କଣ୍ଠରେ ସମ୍ବଲପୁର ବାର୍‌ର ଉଚ୍ଚ ପ୍ରଶଂସା କରିବା ମୁଁ ନିଜେ ବହୁବାର ଶୁଣିଛି ।

ବ୍ରହ୍ମପୁରା ମନ୍ଦିର ନିକଟ ବଡସଡ଼କ କଡ଼ରେ ଗୋଟିଏ ପୁରାତନ କୋଠରୀ ଥିଲା ଶ୍ରଦ୍ଧାକରଙ୍କ ଚେମ୍ବର । ସେହି କୋଠରୀର ସାଜ ସଜା ଅତ୍ୟନ୍ତ ସରଳ । ତାଙ୍କ ମୋହରର ଥିଲେ ଦାମୋଦର ପାଢୀ । ଉଲ୍ଲେଖ ଯୋଗ୍ୟ ଯେ ସେ ମଧ୍ୟ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ ଏବଂ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ସେ କାରାବରଣ କରିଥିଲେ ଏବଂ ଆଜୀବନ ଖଦଡ଼ ବସ୍ତ୍ର ପରିଧାନ କରୁଥିଲେ । ଶ୍ରଦ୍ଧାକର ଓ ଦାମୋଦରଙ୍କ ସଂଯୋଗ ଅପୂର୍ବ ଧରଣର । ଓକିଲ ଏବଂ ମୋହରର ଦୁହେଁ ସରଳ ପ୍ରାଣ, ଅକପଟ, ସ୍ନେହୀ, ମିଷ୍ଟଭାଷୀ ଏବଂ କର୍ତ୍ତବ୍ୟ ପରାୟଣ ଥିଲେ ।

ମହକିଲମାନଙ୍କ ସ୍ୱାର୍ଥ ତାଙ୍କ ପାଖରେ ସୁରକ୍ଷିତ ଥିଲା । ମୁଁ ଏବଂ ମୋର ବିଶ୍ୱାସ ଅନ୍ୟମାନେ ମଧ୍ୟ କେବେହେଁ ଶୁଣି ନାହୁଁ ଯେ ସେମାନେ ନିଜ ମହକିଲ ପ୍ରତି ଅନ୍ୟାୟ କରିଛନ୍ତି ବା ଶଠତା ଆଚରଣ କରିଛନ୍ତି । ଅନ୍ୟ ପକ୍ଷରେ ସାଧାରଣ ଅଥବା ବିନା ପାରିଶ୍ରମିକରେ ମହକିଲମାନଙ୍କ ପାଇଁ ମୋକଦ୍ଦମା ଲଢିଛନ୍ତି । ତେଣୁ, ସେ ସମୟର ଜଣେ ବିଶିଷ୍ଟ ଆଇନଜୀବୀ ହିସାବରେ ଶ୍ରଦ୍ଧାକରଙ୍କ ଆୟ ଅନ୍ୟ ବିଶିଷ୍ଟ ଓକିଲଙ୍କ ଆୟ ତୁଳନାରେ ସ୍ୱଳ୍ପ ଥିଲା ।

ସ୍କୁଲ ଏବଂ କଲେଜରେ ପଢିବା ସମୟରେ ମୁଁ ଶ୍ରଦ୍ଧାକରଙ୍କୁ ଦୂରରୁ ଚିହ୍ନିଥିଲି, କିନ୍ତୁ ଉଭୟଙ୍କ ମଧ୍ୟେ ପରିଚୟ ନଥିଲା । କିନ୍ତୁ ମୋର ପିତାଙ୍କ ସହ ତାଙ୍କର ବହୁ ପୂର୍ବରୁ ପରିଚୟ ଥିଲା । ତେଣୁ ଯେତେବେଳେ 1949 ମସିହାର ଶେଷ ଭାଗରେ ମୁଁ ସମ୍ବଲପୁର ଜିଲ୍ଲା ବାର୍‌ର ସଦସ୍ୟ ଭାବେ ଆଇନ ବ୍ୟବସାୟ ଆରମ୍ଭ କଲି, ଶ୍ରଦ୍ଧାକରଙ୍କ ସହ ପରିଚୟ ଅତି ସହଜ ହୋଇଥିଲା । ସେ ଖଦଡର ଧଳା ଫୁଲପେଣ୍ଟ, କାମିଜ ଓ କଳାକୋଟ ପିନ୍ଧି ସାଇକଲରେ କଚେରୀ ଯିବା ଆସିବା କରୁଥିଲେ । ବାର ଏସୋସି-ଏସନହଲରେ ବସି ସେ ଅଯଥା ସମୟ ନଷ୍ଟ ନକରି ଆଇନ ପୁସ୍ତକ ପଢୁଥିଲେ, ଯଦିଓ ମଧ୍ୟେ ମଧ୍ୟେ ମାନଭଞ୍ଜନ ବାବୁ, ଶଶିବାବୁ, ଛୁଟକୁ ବାବୁ ଇତ୍ୟାଦିଙ୍କ ସହ ରହସ୍ୟ ପୂର୍ଣ୍ଣ କଥାରେ ଭାଗ ନେଉଥିଲେ ।

ସମ୍ବଲପୁର ସହରର ଅନେକ ପୁରୁଖା ବାସିନ୍ଦା ଆଜି ସୁଦ୍ଧା ମନେ ରଖିଥିବେ, ମହାନଦୀର ସ୍ୱଚ୍ଛ ନୀଳ ଜଳ ଲାଲରଙ୍ଗ ଧାରଣ କରିଥିଲା 1952 ମସିହାରେ । ସେହି ଦୂଷିତ ଜଳରେ ସ୍ନାନ କରି ଓ ତାହା ପାନ କରି ଅଗଣିତ ବ୍ୟକ୍ତି, ବୃଦ୍ଧ, ଶିଶୁ ଓ ପଶୁ ବିଭିନ୍ନ ରୋଗରେ ଆକ୍ରାନ୍ତ ହେଉଥିଲେ । ଇବନଦୀ ଜଳରେ ମିଶୁଥିଲା ବ୍ରଜରାଜନଗର କାଗଜ କଳରୁ ନିର୍ଗତ ଦୂଷିତ ଜଳ । ଇବନଦୀର ଲାଲ ରଙ୍ଗର ଜଳ ମିଶୁଥିଲା ମହାନଦୀର ଜଳରେ । ତେଣୁ ଉଭୟ ନଦୀ ତଟରେ ଥିବା ଗ୍ରାମ ଓ ସହର ବାସୀ ଆତଙ୍କିତ ଅବସ୍ଥାରେ ଥିଲେ । ଜନସାଧାରଣଙ୍କ ଅସୁବିଧା ଓ ପ୍ରତିବାଦକୁ କାରଖାନା କର୍ତ୍ତୃପକ୍ଷ ଭ୍ରୂକ୍ଷେପ କଲେ ନାହିଁ । ତତ୍କାଳୀନ ସରକାର ମଧ୍ୟ ଏହି ଅସୁବିଧା ଦୂରୀକରଣ ନିମିତ୍ତ କୌଣସି ପଦକ୍ଷେପ ନେଲେ ନାହିଁ । ତେଣୁ ଯଥା ସମୟରେ ଶ୍ରଦ୍ଧାକର ଜନସାଧାରଣଙ୍କ ପ୍ରତିନିଧି ରୂପେ କାଗଜ କଳ କର୍ତ୍ତୃପକ୍ଷଙ୍କ ବିରୋଧରେ ସର୍ବସାଧାରଣ ସ୍ୱାର୍ଥ ଜନିତ ନିଷେଧାଜ୍ଞା ମୋକଦ୍ଦମା ସମ୍ବଲପୁର ମୁନସିଫ ଅଦାଲତରେ ଆଗତ କଲେ । ମୋକଦ୍ଦମା ଆଗତର ପୂର୍ବବର୍ତ୍ତୀ କାଳରେ ତତ୍କାଳୀନ ଏଡଭୋକେଟ ଜେନେରେଲ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ସମ୍ମତି ଆଣିବା ଆଇନତଃ ଆବଶ୍ୟକ ଥିଲା ଏବଂ ସେଥିପାଇଁ ସମ୍ବଲପୁରର ସୁନାମଧନ୍ୟ ଜନନାୟକ ଏବଂ ପ୍ରବୀଣ ଆଇନଜ୍ଞ ବୋଧରାମ ଦୁବେଙ୍କ ଭୂମିକା ଉଲ୍ଲେଖ ଯୋଗ୍ୟ ।

ଶ୍ରୀ ଖଗେଶ୍ୱର ମହାନ୍ତି ସେତେବେଳେ ସମ୍ବଲପୁର ମୁନ୍‌ସିଫ ଥାନ୍ତି । ସେ ମହାନଦୀ ତଟବର୍ତ୍ତୀ ସହର ବୌଦ ନିବାସୀ । ସେ ସମ୍ବଲପୁର ପଟ୍ଟନାୟକ ପଡାରେ ବିବାହ କରିଥାନ୍ତି ଏବଂ ସେହି ପଡାରେ ବାସ କରୁଥାନ୍ତି । ପ୍ରତିଦିନ ବାଲିବନ୍ଧା ଘାଟରେ ସେ ମହାନଦୀର ଘୋଲ ରଙ୍ଗର ଜଳରେ ସ୍ନାନ କରୁଥାନ୍ତି । ଯେତେବେଳେ ନିଷେଧାଜ୍ଞା ମୋକଦ୍ଦମାଟି ତାଙ୍କ ଅଦାଲତରେ ଆଗତ ହେଲା, ସେ ଆଇନତଃ କାଗଜ କଳ କର୍ତ୍ତୃପକ୍ଷଙ୍କ ବିରୋଧରେ ଇବ୍‌ନଦୀରେ ଦୂଷିତ ନିର୍ଗତ ଜଳ ନ ପକାଇବାକୁ ଏକ ତରଫା ନିଷେଧାଜ୍ଞା ହୁକୁମ ଜାରୀ କରିବାରୁ ବସ୍ତୁତଃ କିଛିଦିନ ପାଇଁ କାଗଜ କଳ ବନ୍ଦ ହୋଇଗଲା । ଇବ ଓ ମହାନଦୀର ଜଳ ପୂର୍ବବତ୍ ନିର୍ମଳ ଧାରରେ ପ୍ରବାହିତ ହେଲା । ଏହି ମୋକଦ୍ଦମା ଚଳାଇବା ପାଇଁ ବୋଧରାମ ଦୂବେ, ମାନଭଞ୍ଜନ ବହିଦାର ଓ ଶଶୀଭୂଷଣ ଶତପଥି ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ଏହି ଜନସ୍ୱାର୍ଥ ସମ୍ବଳିତ ମୋକଦ୍ଦମା ଓଡ଼ିଶା ହାଇକୋର୍ଟରେ ବିଗ୍ରରାଧୀନ ଥିବାବେଳେ ଶ୍ରୀ ଗତିକୃଷ୍ଣ ମିଶ୍ର ଯେତେବେଳେ ଓଡ଼ିଶାର ଜଣେ ବିଶିଷ୍ଟ ଆଇନଜ୍ଞ, ଜନସାଧାରଣଙ୍କ ତରଫରୁ ଲଢୁଥିଲେ । କିନ୍ତୁ ତତ୍କାଳୀନ କଂଗ୍ରେସ ସରକାର ବିର୍ଲା ଗୋଷ୍ଠୀ କୋଟିପତି ଶିଳ୍ପପତିଙ୍କ କର କବଳିତ ହୋଇ ଗୋଟିଏ କଳା ଜନସ୍ୱାର୍ଥ ବିରୋଧି ଆଇନ ପ୍ରଣୟନ କଲେ, ଯଦ୍ୱାରା ମୋକଦ୍ଦମାଟି ଅକାମୀ ହୋଇଗଲା । ସେ ସମୟରେ ଶିଳ୍ପ ଓ ଆଇନ ବିଭାଗ ମନ୍ତ୍ରୀ ଥିଲେ ଦୀନବନ୍ଧୁ ସାହୁ । ଏହି ବିପର୍ଯ୍ୟୟ ସତ୍ତ୍ୱେ ଏହା ପ୍ରମାଣିତ ଯେ ଶ୍ରଦ୍ଧାକର ଜଣେ ବିଶିଷ୍ଟ ଆଇନଜ୍ଞ ଓ ଲୋକ ପ୍ରତିନିଧି ହିସାବରେ କେତେ ଓଜନର ଭାର ନିଜ ମୁଣ୍ଡ ଉପରେ ବହନ କରିଥିଲେ ।

ଓଡ଼ିଶା ବିଧାନ ସଭାର ସଭ୍ୟ ତଥା ଲୋକସଭା ଓ ରାଜ୍ୟ ସଭାର ସଦସ୍ୟ ଥାଇ ମଧ୍ୟ ଯେତେବେଳେ ଶ୍ରଦ୍ଧାକର ସମ୍ବଲପୁରରେ ଅବସ୍ଥାନ କରୁଥିଲେ, ସେ ନିୟମିତ ଆଇନ ବ୍ୟବସାୟ କରୁଥିବା ଦୃଷ୍ଟାନ୍ତ ବିରଳ, କାରଣ ଅନେକ କ୍ଷେତ୍ରରେ ଦେଖା ଯାଇଛି ଯେ ଅନେକ ବ୍ୟକ୍ତି ଓକିଲ ଥିବା ସମୟରେ ବିଧାନ ସଭା ସଦସ୍ୟ, ମନ୍ତ୍ରୀ, ଲୋକସଭା ବା ରାଜ୍ୟସଭା ସଦସ୍ୟ ରହିବା ପରେ ଆଇନ ବ୍ୟବସାୟକୁ ଗୌଣ ମନେ କରି ତାହା ପରିତ୍ୟାଗ କରି ରାଜନୈତିକ ଜୀବନ ଯାପନ କରନ୍ତି । କିନ୍ତୁ ଶ୍ରଦ୍ଧାକର କେବେହେଁ ଆଇନ ବ୍ୟବସାୟକୁ ଗୌଣ ମନେ କରିନାହାନ୍ତି ।

ଶ୍ରଦ୍ଧାକର ଲାଲ ଲଜପତ୍ ଆଇନ କଲେଜରେ ଅଧ୍ୟାପକ ଏବଂ ଅଧ୍ୟକ୍ଷ ଥିବା ସର୍ବଜନ ବିଦିତ । ମୁଁ ଦୃଢ ଭାବେ କହିପାରେ ଯେ ତାଙ୍କ ପରି ଅନ୍ୟ କୌଣସି ବ୍ୟକ୍ତି କଦାଚ ଉକ୍ତ ପଦ ପଦବୀ ଗ୍ରହଣ କରିବାକୁ କୁଣ୍ଠାବୋଧ କରିଥାନ୍ତେ । କିନ୍ତୁ ଅଗାଧ ସମୁଦ୍ର ସଦୃଶ ଆଇନ ଶାସ୍ତ୍ରର ଅଧ୍ୟୟନ ପିପାସା ଏବଂ ଅଧ୍ୟାପକ ଜୀବନର ଅନୁଭୂତିର ସ୍ୱାଦ ପାଇଁ ଶ୍ରଦ୍ଧାକର ବୋଧହୁଏ ତିଳେମାତ୍ର କୁଣ୍ଠାବୋଧ ନକରି ଉକ୍ତ ପଦବୀମାନ ଅଳଙ୍କୃତ କରି ଆଇନ କଲେଜର ମର୍ଯ୍ୟାଦା ବୃଦ୍ଧି କରିବାରେ ସହାୟକ ହୋଇଥିଲେ । ସେଥିପାଇଁ ସେ ହୋଇଥିଲେ ଜଣେ ପୂର୍ଣ୍ଣାଙ୍ଗ ପୁରୁଷ ।

ଲୋକ ସଭାର ସଦସ୍ୟ ଓ ଭାରତୀୟ ଭାଷା କମିଶନର ସଭ୍ୟ ଭାବେ ଶ୍ରଦ୍ଧାକର ଦିଲ୍ଲୀରେ କିଛି ବର୍ଷ ଅବସ୍ଥାନ କରୁଥିବା ସମୟରେ ପରିଣତ ବୟସରେ ମହୋମଡେନ ଆଇନରେ ପି. ଏଚ୍. ଡ଼ି. ଡ଼ିଗ୍ରୀ ହାସଲ କରିବା ଗୌରବ ଅର୍ଜନ କରିଥିଲେ। ବୋଧହୁଏ 1987 ମସିହା ଅଗଷ୍ଟ ପନ୍ଦର ତାରିଖ ସନ୍ଧ୍ୟା ସମୟ। ଶ୍ରଦ୍ଧାକର ଶେଷଥର ପାଇଁ ଓଡ଼ିଶା ବିଧାନ ସଭାର ସଦସ୍ୟ ଥାନ୍ତି ଓ ମୁଁ ହାଇକୋର୍ଟ ଜଜ୍ ଭାବେ କଟକରେ ଅବସ୍ଥାପିତ ହୋଇଥାଏ। ରାଜଭବନ ବନ୍ଧୁମିଳନ ଅବସରରେ ଶ୍ରଦ୍ଧାକରଙ୍କ ସହ ଦେଖା ହେଲା। ଶ୍ରଦ୍ଧାକର ମୋତେ ପଗ୍ଭରିଲେ, କୃଷ୍ଣ କେତେବେଳେ କଟକ ଫେରିବ। ମୁଁ କହିଲି ବନ୍ଧୁମିଳନ ଶେଷ ହେଲେ ପ୍ରାୟ ଛଅଟା ସମୟରେ ଫେରିବି। ଗଲାବେଳେ ଚିନ୍ତାମଣି ମହାପାତ୍ରଙ୍କ (ପୂର୍ବତନ ଜିଲ୍ଲା ଜଜ୍ ଓ ପବ୍ଲିକ ସର୍ଭିସ କମିଶନ ଅଧ୍ୟକ୍ଷ) ଘର ବାଟ ଦେଇଯିବି। ମୋ ସଙ୍ଗେ ପୂର୍ବତନ ଜଷ୍ଟିସ ଶ୍ରୀ ସଚ୍ଚିଦାନନ୍ଦ ଆଗ୍ଭର୍ଯ୍ୟ ମଧ୍ୟ ଆସିଛନ୍ତି। ଶ୍ରଦ୍ଧାକର କହିଲେ, ତେବେ ମୁଁ ତମ ସଙ୍ଗେ କଟକ ଯିବି। ସେହି ସନ୍ଧ୍ୟାରେ ଥାଏ ସ୍ୱର୍ଗତ ଜଷ୍ଟିସ ଯଜ୍ଞେଶ୍ୱର ଦାଶଙ୍କ ପିତାଙ୍କ ଶ୍ରାଦ୍ଧ ଭୋଜି। ଆମେ ତିନି ଜଣ ରାଜଭବନରୁ କଟକ ଫେରିଲୁ। ବାଟରେ ଶ୍ରଦ୍ଧାକର ଶ୍ରୀ ଆଗ୍ଭର୍ଯ୍ୟଙ୍କୁ କହୁଥିଲେ ସେ କିପରି ଭାବେ ଓ କେଉଁ ପରିସ୍ଥିତିରେ ପି. ଏଚ. ଡ଼ି, କଲେ ଏବଂ ମୁସଲିମ ଆଇନ ଉପରେ ଗବେଷଣା କଲେ। ଶ୍ରୀ ଆଗ୍ଭର୍ଯ୍ୟଙ୍କ ପିତା ସମ୍ବଲପୁରରେ ମାଜିଷ୍ଟ୍ରେଟ ଥିଲେ ଏବଂ ସେ ନିଜେ ସମ୍ବଲପୁର ଜିଲ୍ଲା ସ୍କୁଲର ଛାତ୍ର ଥିଲେ। ତେଣୁ ଦୁଇଜଣଙ୍କ ସମ୍ବଲପୁରୀ ଭାଷାରେ କଥୋପକଥନ ଶୁଣି ମନରେ ଆନନ୍ଦ ଆସୁଥାଏ।

ପରିଶେଷରେ ଏହି ମହାନ ଦିବସରେ ଶ୍ରଦ୍ଧାକରଙ୍କ ପ୍ରତି ମୋର ବିନମ୍ର ଶ୍ରଦ୍ଧାଞ୍ଜଳୀ।

61-ଫରେଷ୍ଟ ପାର୍କ
ଭୁବନେଶ୍ୱର-୨

# ମୋ ଦୃଷ୍ଟିରେ ଡକ୍ଟର ସୂପକାର

ଶ୍ରୀ ଶରତ ନାରାୟଣ ବେହେରା

ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କ ଯେଉଁ ଖ୍ୟାତି ଓ ପ୍ରତିଷ୍ଠା ଓଡ଼ିଶା ଓ ଓଡ଼ିଶା ବାହାରେ ଥିଲା, ସେ ଚାହିଁଥିଲେ ଅତି ସହଜରେ ଉଚ୍ଚ ପଦ ପଦବୀରେ ଅଧିଷ୍ଠିତ ହୋଇ ପାରିଥାନ୍ତେ । ସେ ଯେତେଦିନ ବିଧାୟକ ଓ ସାଂସଦ ଥିଲେ ଖୁସିରେ ରାଜ୍ୟରେ, କେନ୍ଦ୍ରରେ ମନ୍ତ୍ରୀପଦଟିଏ ଘିଚି ପାରିଥାଆନ୍ତେ; କିନ୍ତୁ ସେ ଗଢ଼ା ହୋଇଥିଲେ ଅନ୍ୟ ପ୍ରକାରେ, ମନ୍ତ୍ରୀର ପ୍ରତିଷ୍ଠା ଓ ପ୍ରତିପତ୍ତି ସହିତ ଯେଉଁ ବିଡ଼ମ୍ବନା ତାହା ବୋଧେ ତାଙ୍କୁ ସେହି ମୋହରୁ ଦୂରେଇ ରଖିଥିଲା ।

ମୋର ଜାଣିବାରେ ଡକ୍ଟର ସୂପକାର ହେଉଛନ୍ତି ଜଣେ ରାଜନୀତିଜ୍ଞ ଯେକି ପଦେ ହେଲେ ମିଛ ନକହି, ପଇସାଟିଏ ଉପୁରି ନକରି ଗୋଟିଏ ହେଲେ ଫମ୍ପା ପ୍ରତିଶ୍ରୁତି ନଦେଇ ରାଜନୀତି କରୁଥିଲେ, ନିର୍ବାଚନ ଜିତୁଥିଲେ ।

ମୁଁ ଡକ୍ଟର ସୂପକାରଙ୍କୁ ପ୍ରଥମେ ଯେତେବେଳେ ଜାଣିଲି ସେ ସେତେବେଳେ ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନର ହୀରୋ । ଆମେମାନେ ପିଲା ଥିଲୁଁ । କୌତୁହଳି ହୋଇ ସଭାସମିତି, ଶୋଭାଯାତ୍ରାମାନଙ୍କରେ ଯୋଗ ଦେଉଥିଲୁଁ । ଶ୍ରଦ୍ଧାକର ବାବୁଙ୍କର, ଡକ୍ଟର ଜନାର୍ଦ୍ଦନ ପୂଜାରୀଙ୍କ ଭାଷଣ ଶୁଣିବା ଲାଗି ହଜାର ହଜାର ଲୋକ ଭିଡ଼ କରୁଥିଲେ । ସେଥର ଯେତିକି ଲମ୍ବା ଶୋଭାଯାତ୍ରା ବାହାରିଥିଲା ତା'ର ପୁନରାବୃତ୍ତି ହୋଇପାରି ନାହିଁ ଏଯାଏ ।

ଏତେ ବଡ଼ ସମ୍ଭ୍ରାନ୍ତ ପରିବାରର ଉଚ୍ଚ ଶିକ୍ଷିତ ବ୍ୟକ୍ତି ଯେ ଏତେ ସାଦାସିଧା ହୋଇ ପାରନ୍ତି ଜୀବନରେ ଆଉ ଦ୍ୱିତୀୟ ଜଣକୁ ଦେଖି ନାହିଁ । ସବୁବେଳେ ମୋଟା ଖଦଡ଼ ଧୋତି ଏବଂ କୁର୍ତ୍ତା । କେବଳ କଚେରୀ ଗଲାବେଳେ ଖଦଡ଼ ପେଣ୍ଟ କୋଟ । ପିନ୍ଧା ଭିଡ଼ା ଢଙ୍ଗ ଦେଖିଲେ ମନେ ହେବ ନିହାତି ଗାଉଁଲିଆ, ଅପାଠୁଆ । ଶୁଣିଛି ଶ୍ରଦ୍ଧାକର ବାବୁଙ୍କର ବାପା ଶ୍ରୀ ଜନାର୍ଦ୍ଦନ ସୂପକାର ପୁଅ ଏମ୍. ପି. ହେବା ଯାକେ ନିଜେ ଖଦୀ ଭଣ୍ଡାର ଯାଇ ଲୁଗା କିଣି ଆଣି ଦେଉଥିଲେ ପୁଅ ପିନ୍ଧିବ ବୋଲି ।

ଓଡ଼ିଶାରେ ବଲାଙ୍ଗିର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଗଣତନ୍ତ୍ର ପରିଷଦ ପ୍ରତିଷ୍ଠା କଲାପରେ ଅନ୍ତରରେ ଖାଣ୍ଟି ଗାନ୍ଧିବାଦୀ ହୋଇ ମଧ୍ୟ ଶ୍ରଦ୍ଧାକର ବାବୁ କଂଗ୍ରେସ କୁଶାସନ ବିରୁଦ୍ଧରେ ଲଢ଼ିବା ଲାଗି ଗଣତନ୍ତ୍ର ପରିଷଦରେ ଯୋଗ ଦେଇଥିଲେ ଏବଂ ଗଣତନ୍ତ୍ର ପରିଷଦ ଟିକଟରେ ଯେ କେହି ସମ୍ବଲପୁର ଜିଲ୍ଲାରୁ ଠିଆ ହେଲେ ସମସ୍ତେ ଜିତିଲେ ଶ୍ରଦ୍ଧାକର ବାବୁଙ୍କ ନାଁରେ ଏବଂ ବିଧାନସଭାରେ ଡକ୍ଟର ଶ୍ରଦ୍ଧାକର ସୂପକାର

ବିରୋଧୀ ଦଳ ନେତା ହେଲେ । ତା ପରଠୁ ସାରା ଓଡ଼ିଶାରେ ତାଙ୍କର ସୁନାମ ଛାଇଗଲା । ତାଙ୍କର ବ୍ୟକ୍ତିତ୍ୱରେ କ'ଣ ଯାଦୁଥିଲା କେଜାଣି ତାଙ୍କର ପ୍ରତିଦ୍ୱନ୍ଦ୍ୱୀ କଣ୍ଠରେ ମଧ୍ୟ ତାଙ୍କର ପ୍ରଶଂସା ଶୁଣିବାକୁ ମିଳୁଥିଲା ।

ମୋର ବ୍ୟକ୍ତିଗତ ସମ୍ପର୍କ ମୁଖ୍ୟତଃ ଡ଼କ୍ଟର ଶ୍ରଦ୍ଧାକର ସୂପକାରଙ୍କ ଲେଖା ପାଇଁ । ରାଜନୀତି କରି ମଧ୍ୟ ସେ ଥିଲେ ସୁଲେଖକ । ପ୍ରଚୁର ପରିମାଣରେ ଲେଖୁଥିଲେ । ତାଙ୍କ ପରି ପାଠକ ମଧ୍ୟ ବହୁତ କମ୍ ଥିଲେ । ସଂସ୍କୃତରୁ ଆରମ୍ଭ କରି ଗଣିତ ପର୍ଯ୍ୟନ୍ତ ସବୁ ପଢୁଥିଲେ ।

ଥରେ କଥା ପ୍ରସଙ୍ଗରେ ମୁଁ କହିଲି, ଆପଣ ରାଜନୀତି ଛାଡ଼ି ଖାଲି ସାହିତ୍ୟ କଲେ ଓଡ଼ିଆ ସାହିତ୍ୟ ଅଧିକ ଉପକୃତ ହୁଅନ୍ତା । ହସିଦେଇ ଡକ୍ଟର ସୂପକାର ଉତ୍ତର ଦେଇଥିଲେ, ରାଜନୀତି ନିଶା ଛାଡ଼ି ପାରିଲେ ତ !

ହାସ୍ୟରସ ଉପରେ ଡକ୍ଟର ସୂପକାରଙ୍କ ଯଥେଷ୍ଟ ଦଖଲ ଥିଲା । ତାଙ୍କର ଲେଖା ଯେଉଁମାନେ ପଢିଛନ୍ତି ଅନୁଭବ କରିଥିବେ ଅନ୍ତଃସଲିଳା ଫଲଗୁ ପରି ତାଙ୍କର ପ୍ରତ୍ୟେକ ଲେଖାରେ ହାସ୍ୟରସ ଲୁଚି ରହିଛି । କୁତକୁତେଇ ଦେଉଛି । ଅନେକ ହୁଏତ ଜାଣନ୍ତି ନାହିଁ ଯେ ଡକ୍ଟର ସୂପକାର ଶଙ୍କରସ ଉଇକ୍ଲିର ଜଣେ ନିୟମିତ ଲେଖକ ଥିଲେ ।

ଦୂରରୁ ଦେଖିଲେ ଯେ କେହି ଭାବିବ ଡ଼କଟର ଶ୍ରଦ୍ଧାକର ସୂପକାର ଜଣେ ଅତି ଗମ୍ଭୀର ପ୍ରକୃତିର ଲୋକ କିନ୍ତୁ ଯେ ଥରେ ତାଙ୍କ ସହିତ ଅନ୍ତରଙ୍ଗ ଆଳାପର ସୁଯୋଗ ପାଇଛି ଅନୁଭବ କରିଛି ସେ କେଡ଼େ ମଜାକିଆ ପ୍ରକୃତିର ଲୋକ ଥିଲେ । ତେବେ ଅନେକ ସମୟରେ ତାଙ୍କର ହାସ୍ୟରସ ଟିକେ ଇଣ୍ଟେଲେକଚୁଏଲ ହୋଇ ଯାଉଥିବାରୁ ଅନେକେ ତାକୁ ଧରି ପାରୁ ନଥିଲେ । ଉପଭୋଗ କରି ପାରୁ ନଥିଲେ ।

୧୯୮୫ ମସିହାର ବିଧାନସଭା ନିର୍ବାଚନ ବେଳର କଥା । ଅନେକ କଳ୍ପନା ଭିତରେ ଏକଥା ଏକ ବିଶିଷ୍ଟ ଦୈନିକ କାଗଜରେ ପ୍ରକାଶିତ ହେଲା ଯେ କଂଗ୍ରେସ ହାଇକମାଣ୍ଡ ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କୁ ମୁଖ୍ୟମନ୍ତ୍ରୀ ପାଇଁ ଠିକ୍ କରିଛନ୍ତି । ଏହି ସମ୍ବାଦ ପଢି ଓଡ଼ିଶାର ଲୋକେ ବିଶ୍ୱାସ କଲେ । କାରଣ ଡ଼କ୍ଟର ସୂପକାରଙ୍କଠୁ ବଳି ଆଉ ଯୋଗ୍ୟ କିଏ ଅଛି କଂଗ୍ରେସ ଦଳରେ ମୁଖ୍ୟମନ୍ତ୍ରୀ ହେବା ପାଇଁ !!

ନିର୍ବାଚନ ସରିଲା । କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠ ହେଲା । ଡ଼ାକରା ପାଇ ଶ୍ରଦ୍ଧାକର ବାବୁ ଭୁବନେଶ୍ୱର ଧାଇଁଲେ । କିନ୍ତୁ ପ୍ରୋଟେମ ସ୍ପିକର ହୋଇ ବିଧାୟକମାନଙ୍କୁ ଶପଥ ପାଠ କରେଇ ସୁନାପୁଅ ପରି ସେ କିଛିଦିନ ପରେ ଘରକୁ ଫେରି ଆସିଲେ ।

ସେଦିନ ଅନ୍ୟମାନଙ୍କ ସହିତ ମୁଁ ମଧ୍ୟ ଶ୍ରଦ୍ଧାକର ବାବୁଙ୍କୁ ଭେଟିବାକୁ ଯାଇଥିଲି । ମୁଁ ପହଞ୍ଚିଲା ବେଳକୁ ନୀଳ ପ୍ରଧାନ ବାଟଘରେ ବସିଥିଲେ । କଥା ପ୍ରସଙ୍ଗରେ ନୀଳ ବାବୁ ପଚାରିଲେ, ଦାଦା ଖବର କାଗଜରେ ତ ବାହାରି ଥିଲା ତୁମେ ମୁଖ୍ୟମନ୍ତ୍ରୀ ହେବ । କାଇଁକେ ହେଲ ? ମନ୍ତ୍ରୀଟାଏବି ହେଲ ନାହିଁ ।

ଅନ୍ୟ ଯେ କେହି ହୋଇଥିଲେ ତାଙ୍କୁ ମନ୍ତ୍ରୀ ପଦ ଯଣ୍ଟ ଯାଇ ଶେଷକୁ କିପରି ପ୍ରୋଟେମ ସ୍ପିକର କରି ଠକି ଦିଆଗଲା ସେଥିପାଇଁ କ୍ରୋଧ ନ ହେଲେବି ଅନ୍ତତଃ କ୍ଷୋଭ ପ୍ରକାଶ କରି ଥାଆନ୍ତେ ।

କିନ୍ତୁ ଶ୍ରଦ୍ଧାକର ବାବୁ ହସିଦେଇ କହିଲେ, ଖବରକାଗଜ ବାଲେ ବି ଥରେ ଥରେ ମଜା କରି ଦିଅନ୍ତି । ଏହାର କିଛିଦିନ ପରର କଥା ।

ରେକର୍ଡ଼ିଂ ପାଇଁ ଶ୍ରଦ୍ଧାକର ବାବୁ ଆକାଶବାଣୀକୁ ଆସି ଥାଆନ୍ତି । ସେହି ସମୟରେ ଜଣେ ଅଧ୍ୟାପକ ମଧ୍ୟ ଜ୍ୟୋତିବିହାରରୁ ଆସି ଥାଆନ୍ତି ରେକର୍ଡ଼ିଂ ପାଇଁ । ରେକର୍ଡ଼ିଂ ପରେ ଡ୍ୟୁଟି ରୁମରେ ବସି ଗପ କଲାବେଳେ ଡକ୍ଟର ସୂପକାର ଅଧ୍ୟାପକଙ୍କୁ କହିଲେ, ରାଜଭବନରେ ରାଜ୍ୟପାଳଙ୍କ ଉପସ୍ଥିତିରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପାଇଁ କୁଳପତି ନିଯୁକ୍ତି ପାଇଁ ପ୍ରସ୍ତାବ ଦେଲି ଯେ ମୁଖ୍ୟମନ୍ତ୍ରୀ ମନା କରିଦେଲେ ।

ଟିକେ କ୍ଷୁବ୍ଧ ହୋଇ ଅଧ୍ୟାପକ କହି ପକାଇଲେ, ସାର୍ କହିଲେ ନାହିଁ ଏହି ଇସୁରେ ମୁଁ ବିଧାନସଭାରୁ ଇସ୍ତଫା ଦେବି ।

ଶ୍ରଦ୍ଧାକର ବାବୁ କିନ୍ତୁ ହସି ଦେଇ ଉତ୍ତର ଦେଲେ, ମୁଁ ରିଜାଇନ କଲେ ମୁଖ୍ୟମନ୍ତ୍ରୀ ତ ଖୁସି ହେବେ । ଉପନିର୍ବାଚନରେ ତାଙ୍କର ଜଣେ ଲୋକଙ୍କୁ ଟିକେଟ ଦେଇ ପାରିବେ ।

ମୁଁ ମୁଖ୍ୟମନ୍ତ୍ରୀଙ୍କର ସ୍ତାବକ ଦଳରେ ନାହିଁ, ଏ କଥା ନ କହି ମଜା କରି ସେହି କଥାକୁ ବୁଲେଇ କରି କହିଲେ ।

ଶ୍ରଦ୍ଧାକର ବାବୁଙ୍କ ପାଖରୁ ଏପରି ଅନେକ ମଜାକଥା ଶୁଣିବାର ସୌଭଗ୍ୟ ମୋର ହୋଇଛି । ତାଙ୍କ ବିଷୟରେ ଲେଖି ବସିଲା ବେଳକୁ ଗୋଟି ଗୋଟି ମନେ ପଡ଼ି ଯାଉଛି । ସବୁ ଲେଖି ବସିଲେ ଗ୍ରନ୍ଥଟିଏ ହେବ ।

ପୂର୍ବତନ ସହକାରୀ କେନ୍ଦ୍ର ନିର୍ଦ୍ଦେଶକ
ଆକାଶବାଣୀ, ସମ୍ବଲପୁର

# ଡକ୍‌ଟର ଶ୍ରଦ୍ଧାକର ସୂପକାର

ଡକ୍‌ଟର ଶ୍ରୀରାମଚନ୍ଦ୍ର ଦାଶ

ଶ୍ରଦ୍ଧାକର ବାବୁ ଜଣେ ଅଦ୍ୱିତୀୟ ବ୍ୟକ୍ତି ଥିଲେ । ସେ ଏକାଧାରରେ ଜଣେ ରାଜନୀତି, ଅଧ୍ୟାପକ ଓ ଛାତ୍ର ଥିଲେ । ଓଡ଼ିଶାର ଦୁର୍ଭାଗ୍ୟ ଯେ ସେ ନେତୃତ୍ୱ ପାଇ ନଥିଲେ । ସେତକ ମିଳିଥିଲେ ତାଙ୍କ ଜୀବନ କେବଳ ପରିପୂର୍ଣ୍ଣ ହୋଇ ନଥାନ୍ତା, ଗାନ୍ଧିଯୁଗ ପରେ ଜଣେ ସରଳ, ନିରାଡ଼ମ୍ବର ଓ ଦୁର୍ନୀତିମୁକ୍ତ ମନ୍ତ୍ରୀ ଓଡ଼ିଶା ପାଇଥାନ୍ତା ।

ମୁଁ ପାଟଣା କଲେଜର ମହେନ୍ଦ୍ରଠାରେ ଥିବା ସ୍ନାତକୋତ୍ତର ଛାତ୍ରାବାସରେ ନାମ ଲେଖାଇବା ପରେ ଶ୍ରଦ୍ଧାକର ବାବୁଙ୍କ ନାମ ପ୍ରଥମେ ଶୁଣିଲି । ମୁଁ ସେଠାରେ ସାଧାରଣ ପ୍ରକୋଷ୍ଠର ସମ୍ପାଦକ ରୂପେ ପତ୍ରିକା ଓ ସମ୍ବାଦପତ୍ର ଦାୟିତ୍ୱରେ ରହିଲି । ଏହି ଦାୟିତ୍ୱ ନେବାପରେ ପ୍ରକୋଷ୍ଠର ଚତୁର୍ଥ ଶ୍ରେଣୀ କର୍ମଚାରୀ ରାମଶରଣଠାରୁ ଜାଣିବାକୁ ପାଇଲି ଯେ ମୋ ଆଗରୁ ଆଉ ଜଣେ ଓଡ଼ିଆ ଛାତ୍ର ସେହି ଦାୟିତ୍ୱରେ ଥିଲେ । ତାଙ୍କ ନାମଥିଲା ଶ୍ରଦ୍ଧାକର ସୂପକାର । ତାଙ୍କ ନାମର ଆଗପଛ ସମାନ ଥିବାରୁ ମୁଁ ସେହି ନାମ ପ୍ରତି ଆକୃଷ୍ଟ ହୋଇଥିଲି । ବ୍ୟକ୍ତିଗତ ଭାବରେ ତାଙ୍କ ସହିତ ପରିଚିତ ହେବାକୁ ଆଗ୍ରହୀ ଥିଲି ।

ତାଙ୍କ ଯୋଗ୍ୟତା ଯୋଗୁ ସେ ଚାହିଁଥିଲେ ଅଧ୍ୟାପକ ହୋଇ ପାରିଥାନ୍ତେ । ସେତେବେଳେ ରେଭେନ୍‌ସା କଲେଜ ଓଡ଼ିଶାର ଏକମାତ୍ର କଲେଜ ଥିଲା; ତେଣୁ ଅଧ୍ୟାପକ ପଦ ସୁଲଭ୍ୟ ନଥିଲା । ଡକ୍‌ଟର ସଦାଶିବ ମିଶ୍ରଙ୍କ ପରି ମେଧାବୀ ଛାତ୍ର ଏମ.ଏ. ପରୀକ୍ଷାରେ ୧୯୩୩ରେ ଉତ୍ତୀର୍ଣ୍ଣ ହୋଇ ଅଧ୍ୟାପକ ପଦ ପାଇବା ଲାଗି ଦୀର୍ଘ ପାଞ୍ଚବର୍ଷ ଅପେକ୍ଷା କରିଥିଲେ । ସେତେବେଳେ ଅଧ୍ୟାପକ ପଦ କାଳେ ମିଳିବ ନାହିଁ, ଏହି ଆଶଙ୍କାରେ ସେ ବି.ଏଡ. ଉପାଧି ପାଇଥିଲେ ଓ ଓକିଲ ହେବା ଉଦ୍ଦେଶ୍ୟରେ ଓକିଲାତିର ପ୍ରଥମ ଭାଗ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ୧୯୩୮ରେ ଅଧ୍ୟାପକ ନିଯୁକ୍ତ ହୋଇ ନ ଥିଲେ, ସେ ହୁଏତ ଓକିଲାତି କରିଥାନ୍ତେ । ଶ୍ରଦ୍ଧାକର ବାବୁ ସ୍ନାତକୋତ୍ତର ଉପାଧି ପାଇବା ସାଙ୍ଗେ ସାଙ୍ଗେ ଓକିଲାତି ପରୀକ୍ଷାରେ ମଧ୍ୟ ଉତ୍ତୀର୍ଣ୍ଣ ହୋଇଥିଲେ । ତେଣୁ ସେ ଅଧ୍ୟାପକ ପଦ ପାଇଁ ଅପେକ୍ଷା ନ କରି ସିଧା ସଳଖ ଓକିଲ ହୋଇଥିଲେ । ଅଳ୍ପଦିନ ମଧ୍ୟରେ ବ୍ୟବସାୟରେ ସୁଖ୍ୟାତି ଅର୍ଜନ କରିଥିଲେ । ଆଇନ ଶାସ୍ତ୍ର ପ୍ରତି ତାଙ୍କର ଦୁର୍ବଳତା ଥିଲା । ସେ ରାଜନୀତି କରିବା ମଧ୍ୟରେ ଲକ୍ଷପତ ରାୟ ଆଇନ କଲେଜର ଅଧ୍ୟକ୍ଷ ହୋଇଥିଲେ । ସେତିକି ବେଳେ ଆଇନ୍‌ରେ ଡକ୍‌ଟରେଟ ଉପାଧି ପାଇଥିଲେ । ଏହି ଉପାଧି ସମ୍ମାନସୂଚକ ନଥିଲା । ସେ ନିବନ୍ଧ ଲେଖି ଡକ୍‌ଟରେଟ ଲାଭ କରିଥିଲେ । ରାଜନୀତି ମଧ୍ୟରେ ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା ଅସାଧାରଣ କୃତିତ୍ୱ । ଏହା ଡକ୍‌ଟର ସୂପକାରଙ୍କ ପକ୍ଷରେ ସମ୍ଭବପର ହୋଇଥିଲା ।-

ଭାରତ ଗୋଟିଏ ସାଧାରଣତନ୍ତ୍ରରେ ରୂପାନ୍ତରିତ ହେବା ଦୁଇ ବର୍ଷ ପୂର୍ବରୁ ଗଡ଼ଜାତ ମିଶ୍ରଣ ହୋଇସାରିଥିଲା । ପଶ୍ଚିମ ଓଡ଼ିଶାର ଗଡ଼ଜାତ ରାଜା ଓ ପ୍ରଜା ଏକତ୍ର ମିଶି ଗଣତନ୍ତ୍ର ପରିଷଦ ଗଢ଼ିଥିଲେ । ୧୯୫୨ର ପ୍ରଥମ ସାଧାରଣ ନିର୍ବାଚନରେ ସେମାନେ ଅବତୀର୍ଣ୍ଣ ହୋଇଥିଲେ । ଡକ୍ଟର ସୂପକାର ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ଗଣତନ୍ତ୍ର ପରିଷଦର ନେତା ନିର୍ବାଚିତ ହୋଇ ବିରୋଧୀ ଦଳର ନେତୃତ୍ୱ ନେଇଥିଲେ । ବଲାଙ୍ଗିର ମହାରାଜ ରାଜେନ୍ଦ୍ର ନାରାୟଣ ସିଂହଦେଓ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୭ର ଦ୍ୱିତୀୟ ନିର୍ବାଚନ ବେଳକୁ ମହାରାଜା ଓ ଡକ୍ଟର ସୂପକାର ନିଜ ସ୍ଥାନ ଅଦଳ ବଦଳ କରିଥିଲେ । ମହାରାଜା ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ଗଣତନ୍ତ୍ର ପରିଷଦ ତଥା ବୀରୋଧୀ ଦଳର ନେତା ହୋଇଥିଲେ ଏବଂ ଡକ୍ଟର ସୂପକାର ଲୋକସଭାକୁ ଯାଇଥିଲେ । ସେହି ନିର୍ବାଚନରେ ଇତିହାସ ଅଧ୍ୟାପକ ଘନଶ୍ୟାମ ଦାସ କଂଗ୍ରେସ ପ୍ରାର୍ଥୀ ଭାବରେ ଡକ୍ଟର ସୂପକାରଙ୍କ ସହିତ ଲଢ଼ିଥିଲେ । ସେତେବେଳେ ଘନଶ୍ୟାମ ବାବୁ କଟକ ଝୋଲସାହିରେ ମୋ ପଡ଼ୋଶୀ ଥିଲେ । ରାଜନୀତି କ୍ଷେତ୍ରରେ ନୂତନ ହୋଇଥିବାରୁ ଯେ ମୋତେ ପଚାରିଲେ "କିଏ ଜିଣିବ କହିଲ, ମୁଁ ନା ଶ୍ରଦ୍ଧାକର ?" ମୁଁ କହିଲି "ବିରୋଧୀ ଦଳ ନେତା ଭାବରେ ମୁଁ ତାଙ୍କ ଭୂମିକା ଦେଖିଛି, ତେଣୁ ମୋ ବିଶ୍ୱାସ ସୂପକାର ବାବୁ ଜିଣିବେ ।" ଘନଶ୍ୟାମ ବାବୁ କହିଲେ 'ଶ୍ରଦ୍ଧାକର ମୋର ଜଣେ ପ୍ରିୟ ଛାତ୍ର । ତେଣୁ ସେ ମୋ ବିରୁଦ୍ଧରେ ପ୍ରଚାର ନ କରି ମୋତେ ଛାଡ଼ିଦେବ ।" ଶେଷରେ ଶ୍ରଦ୍ଧାକର ବାବୁ ଜିଣିଲେ ଓ ଅଧ୍ୟାପକ ଦାସ ପରାସ୍ତ ହୋଇ ଏଣେ ଚାକିରୀ ହରାଇଲେ. ତେଣୁ ନୈରାଶ୍ୟ ଜର୍ଜରିତ ହୋଇ ହୃଦଯନ୍ତ୍ର କ୍ରିୟା ବନ୍ଦହୋଇ ପ୍ରାଣତ୍ୟାଗ କଲେ ।

୧୯୫୭ ନିର୍ବାଚନରେ ଓଡ଼ିଶା ବିଧାନସଭାରେ ଗଣତନ୍ତ୍ର ପରିଷଦ କଂଗ୍ରେସ ସଭ୍ୟ ସଂଖ୍ୟାର ପାଖାପାଖି ଥିଲା । କଂଗ୍ରେସର ସଖ୍ୟା ଗରିଷ୍ଠତା ନଥିଲା । ତେଣୁ ଝାଡ଼ଖଣ୍ଡ ଦଳର ସାହାଯ୍ୟ ନେଇ ଡକ୍ଟର ମହତାବ ଶାସନ ଚଳାଇ ଥିଲେ । ଝାଡ଼ଖଣ୍ଡ ନେତା ବଜେଟ ଅଧିବେଶନ ବେଳେ କଂଗ୍ରେସକୁ ଡରାଇ ପ୍ରଚୁର ଅର୍ଥ ନେଉଥିଲେ । ୧୯୫୮ରେ ଡକ୍ଟର ମହତାବ ଟଙ୍କା ନଦେବାରୁ ଝାଡ଼ଖଣ୍ଡ ଦଳର ବିଶ୍ୱାସଘାତକତା ଯୋଗୁଁ ବିଧାନସଭରେ ପରାସ୍ତ ହୋଇଗଲେ । ଫଳରେ ସେ ଗଣତନ୍ତ୍ର ଦଳ ଉପରେ ଆକ୍ରମଣ କରି କେତେଜଣ ରାଜାଙ୍କୁ ଦାନ୍ଧା କଲେ । ପ୍ରଧାନମନ୍ତ୍ରୀ ନେହେରୁ ବିରକ୍ତ ହେବାରୁ ଡକ୍ଟର ମହତାବ ଇସ୍ତଫା ଦେଇଦେଲେ । ରାଜ୍ୟପାଳ ସୁକ୍ତଙ୍କରଙ୍କ ମଧ୍ୟସ୍ଥତା ଯୋଗୁ କଂଗ୍ରେସ ସରକାର ପ୍ରାୟ ଦଶମାସ ପର୍ଯ୍ୟନ୍ତ ଚାଲିଲା ଓ ସରକାରଙ୍କୁ ସ୍ଥାୟିତ୍ୱ ଦେବାଲାଗି ୧୯୫୯ ମଇ ୨୦ ତାରିଖ ଦିନ କଂଗ୍ରେସ-ଗଣତନ୍ତ୍ର ପରିଷଦ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଗଣତନ୍ତ୍ର ପରିଷଦ ତରଫରୁ ମହାରାଜା, ରାଜବଲ୍ଲଭ ମିଶ୍ର, ହରିହର ପଟେଲ ଓ ଅନନ୍ତ ସାହୁ ମନ୍ତ୍ରୀ ହେଲେ । ଶ୍ରଦ୍ଧାକର ବାବୁ ବିଧାନସଭାର ଥିଲେ ନିଶ୍ଚିତ ଭାବରେ ମନ୍ତ୍ରୀ ହୋଇଥାନ୍ତେ । ତା'ପରେ ଗଣତନ୍ତ୍ର ପରିଷଦ ନାମ ରଖିଥିବା ସ୍ୱତନ୍ତ୍ର ଦଳରେ

ନ ରହି ସେ କଂଗ୍ରେସରେ ଯୋଗଦେଲେ । ସେ ଓ ପଣ୍ଡିତ ରଘୁନାଥ ମିଶ୍ର ଦୁହେଁ ଗଣତନ୍ତ୍ର ପରିଷଦରେ ଥିଲେ । ୧୯୫୯ ଓ ୧୯୬୭ରେ ସେହି ଦଳ ଶାସନ କ୍ଷମତା ହାସଲ କରିବା ବେଳକୁ ଉଭୟ କଂଗ୍ରେସରେ ଯୋଗ ଦେଇଥିଲେ ।

ତା'ପରେ ଶ୍ରଦ୍ଧାକର ବାବୁ ଶିକ୍ଷାବିତ୍ ହିସାବରେ କାର୍ଯ୍ୟକଲେ । ୧୯୬୪ରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟର ସଭ୍ୟ ଥିଲେ । ତାଙ୍କ ଉଦ୍ୟମରେ ସମ୍ବଲପୁର ଆଇନ୍ କଲେଜ ପ୍ରତିଷ୍ଠିତ ହେଲା ଏବଂ ମାନ୍ୟବର ଜଷ୍ଟିସ ଜୟକୃଷ୍ଣ ମିଶ୍ର, ଅଶୋକ ଦାସ ଓ ମୁଁ ପର୍ଯ୍ୟବେକ୍ଷଣ ଲାଗି ସମ୍ବଲପୁର ଯାଇ କଲେଜ ପ୍ରତିଷ୍ଠା କରାଇଲୁ । ତାହା ହିଁ ଏବେ ବିଶ୍ୱବିଦ୍ୟାଳୟର ଲାଜପତ ରାୟ ଆଇନ୍ କଲେଜ । ଡକ୍‌ଟର ସୂପକାର ସେଠାରେ ଅଧ୍ୟାପନା କଲେ ଏବଂ ନିବନ୍ଧ ଲେଖି ଡକ୍‌ଟରେଟ ପାଇଲେ । ତାଙ୍କ ଶିକ୍ଷାନୁରାଗ ଯୋଗୁ ସେ ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନଙ୍କ ପରେ ଚାରିମାସ କାଳ ପୁରୀ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ଅସ୍ଥାୟୀ କୁଳପତି ଦାୟିତ୍ୱ ବହନ କରିଥିଲେ ।

ଡକ୍‌ଟର ଶ୍ରଦ୍ଧାକର ସୂପକାର ତାଙ୍କ ଜୀବଦ୍ଦଶାରେ ନିଜ ବହୁମୁଖୀ ପ୍ରତିଭାର ପରିଚୟ ଦେଇଯାଇଛନ୍ତି । ସେ ବିଭିନ୍ନ କାର୍ଯ୍ୟରେ ନିଜ ଶକ୍ତି ବିନିଯୋଗ ନ କରି କେବଳ ଶିକ୍ଷାବିତ୍ ବା କେବଳ ରାଜନୀତିଜ୍ଞ ହୋଇଥିଲେ ସେ ଶୀର୍ଷସ୍ଥାନରେ ଉପନୀତ ହୋଇଥାନ୍ତେ ।

କଟକ

# ଅଠସ୍ତରୀ ବର୍ଷର ଶିଶୁ

ଶ୍ରୀ ବାମାପଦ ତ୍ରିପାଠୀ

ଶୈଶବ ସମୟର ହୃଦୟକୁ ପରବର୍ତ୍ତୀ ଅବସ୍ଥାରେ ଯିଏ ହଜାଇ ଦେଇ ନ ଥାଏ; ବାସ୍ତବରେ ସେ ହିଁ ବଡ଼ମଣିଷ—ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରୁ ହିଁ ମେନ୍‌ସିଅସ ନାମକ ମନୀଷୀ ଏହା କହିଛନ୍ତି । ଜଣଙ୍କୁ ବଡମଣିଷର ଆଖ୍ୟା ଦେବାକୁ ହେଲେ ଜ୍ଞାନର ପରିପକ୍ୱତା ସଙ୍ଗେ ସଙ୍ଗେ ହୃଦୟର ଶୁଦ୍ଧତାକୁ ଦେଖାଯାଏ । ସ୍ୱର୍ଗତ ଶ୍ରଦ୍ଧାକର ସୂପକାରଙ୍କ କ୍ଷେତ୍ରରେ ଉଭୟର ସମୁଚିତ ସମନ୍ୱୟ ଘଟିଥିଲା । ସେ ନିଜର ଜ୍ଞାନ ଓ ଗାରିମା ଦ୍ୱାରା ଜନ ମାନସକୁ ଆଲୋକିତ କରୁଥିଲେ । ନିଷ୍କପଟ ହୃଦୟରେ ଶ୍ରଦ୍ଧାର ସାଗର ବାଡିଦେଇ ଚହିଁରେ ସମସ୍ତଙ୍କୁ ପ୍ଲାବିତ କରୁଥିଲେ । ଅକୃତ୍ରିମ ସ୍ନେହ ବଳରେ ଆପଣାର କରି ନିଜର ନାମକୁ ସାର୍ଥକ କରି ଦେଇଥିଲେ । ତାଙ୍କର ଆଭଦୀପ୍ତ ମୁଖମଣ୍ଡଳର ସ୍ମିତ ହାସ୍ୟ ତାଙ୍କରି ସଂସ୍ପର୍ଶରେ ଆସିଥିବା ଯେକୌଣସି ବ୍ୟକ୍ତି ବିଶେଷଙ୍କ ନିମନ୍ତେ ସ୍ମରଣୀୟ । ସେ ଛୋଟ ଅଝଟ ଶିଶୁଟିଏ ଭଳି ବେଳେ ବେଳେ ଅଭିମାନ ମଧ୍ୟ କରୁଥିଲେ । ତନ୍ମଧ୍ୟରେ ଲୁଚି ରହିଥିଲା ତାଙ୍କର ମହାନତା, ଜାଜ୍ୱଲ୍ୟ ହୋଇ ରହିଥିଲା ଏକ ଶିଶୁ ସୁଲଭ ହୃଦୟ ।

ଜଣେ ସାହିତ୍ୟିକ, ଆଇନଜ୍ଞ, ଶିକ୍ଷାବିତ୍, ସାମାଜିକ ତଥା ରାଜନୈତିକ ନେତା ଭାବରେ ତାଙ୍କର ଜୀବନୀ ପର୍ଯ୍ୟାଲୋଚନା କରିବା କିମ୍ବା ତାଙ୍କର ସଫଳତା ବା ବିଫଳତାର ତର୍ଜମା କରିବା ଏହି ଲେଖାର ଉଦ୍ଦେଶ୍ୟ ନୁହେଁ । ଡକ୍‌ଟର ସୂପକାରଙ୍କ ସଂସ୍ପର୍ଶରେ ବହୁବାର ଆସିବାର ସୌଭାଗ୍ୟ ଅର୍ଜନ କରିଥିବା ଏହି ଲେଖକ କେବଳ ପ୍ରଥମ ଓ ଅନ୍ତିମ ସାକ୍ଷାତ ସମ୍ପର୍କରେ ସଂକ୍ଷିପ୍ତ ବର୍ଣ୍ଣନା କରିବା ସମୀଚୀନ ହେବ । ତହିଁରୁ ତାଙ୍କର ହୃଦୟର ବିଶାଳତା ଉପଲବ୍ଧି ଘଟିଛି ।

ଯେ କୌଣସି ବ୍ୟକ୍ତି ସହିତ ପ୍ରଥମ ଓ ଶେଷ ସାକ୍ଷାତ ସ୍ମରଣୀୟ ହୋଇ ରହେ । ସ୍ୱର୍ଗତ ସୂପକାର ମୋର ପିତାମହ ସ୍ୱର୍ଗତ ଆଡଭୋକେଟ ଧ୍ରୁବରାଜ ତ୍ରିପାଠୀଙ୍କର କେବଳ ବାଲ୍ୟବନ୍ଧୁ ନ ଥିଲେ, ଜୀବନର ପରବର୍ତ୍ତୀ ସୋପାନରେ ବହୁ କ୍ଷେତ୍ରରେ ସହକର୍ମୀ ମଧ୍ୟ ଥିଲେ । ବନ୍ଧୁତା ପାଶରେ ଆବଦ୍ଧ ଉଭୟ ସଙ୍ଗୀ ସୁଯୋଗ ପାଇବା ମାତ୍ରେ ପରସ୍ପର ଘରକୁ ଯିବା ଆସିବା କରୁଥିଲେ । ତେଣୁ ପିଲଦିନରୁ ଯଦିଓ ତାଙ୍କୁ ମୁଁ ଜାଣିଥିଲି, ପ୍ରଥମ ଥର ପାଇଁ 1977ରେ ତାଙ୍କ ସହିତ ଅନ୍ତରଙ୍ଗ ମୁହୂର୍ତ୍ତ କଟାଇବାର ସୁଯୋଗ ଲାଭ କରିଥିଲି । ଆମ ଗାଁ ବରପାଲି ନିକଟସ୍ଥ ତୁଲଣ୍ଡି ଗ୍ରାମରେ ପ୍ରତିବର୍ଷ ଅନୁଷ୍ଠିତ ହେଉଥିବା ଶ୍ରୀଗୋବର୍ଦ୍ଧନ ପୂଜା ଅବସରରେ ଏକ ବନ୍ଧୁ ମିଳନ ତଥା ସମାବେଶର ଆୟୋଜନ ହେଉଥାଏ । ଡକ୍‌ଟର ସୂପକାର ତହିଁରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେବାର ଥାଏ । ବରପାଲି ପର୍ଯ୍ୟନ୍ତ ବସ୍‌ରେ ଆସିବା ପରେ ତାଙ୍କୁ ରିକ୍‌ସା

ଯୋଗେ ଗ୍ରାମକୁ ଅଣାଯିବା କଥା । ଡକ୍ଟର ସୂପକାର କୌଣସି କାରଣ ବଶତଃ ନିର୍ଦ୍ଧାରିତ ସମୟରୁ ବିଳମ୍ବରେ ପହଞ୍ଚିଥିଲେ । ତାଙ୍କୁ ପାଛୋଟି ଆଣିବା ପାଇଁ ଅପେକ୍ଷାରତ ଗ୍ରାମବାସୀମାନେ ଫେରି ଆସିଥିଲେ । କିଛି ସମୟ ପରେ ଦେଖାଗଲା ଜଣେ ନିରଡମ୍ବର ସମ୍ଭ୍ରାନ୍ତ ବ୍ୟକ୍ତି ଗାଁ ଦାଣ୍ଡରେ ଚାଲି ଚାଲି ଆସୁଛନ୍ତି । ଜଣେ ଶିକ୍ଷକ, ଯିଏକି ପୂର୍ବରୁ ତାଙ୍କୁ ଦେଖିଥିଲେ, ହଠାତ୍ ପାଟିକରି ଉଠିଲେ, "ଆଜି ଆମ ଗାଁର ସୌଭାଗ୍ୟ ଦେଖ, ଦେଖ, ବହୁତ ବଡ଼ ଲୋକଟିଏ—ଶ୍ରଦ୍ଧାକର ସୂପକାର ଆସିଲେଣି ।" ଆମେ ଖବର ପାଇ ପଛେ ପଛେ ଆମ ବାସଭବନକୁ ଗଲୁ । ଶ୍ରଦ୍ଧାକର ବାବୁଙ୍କ ପକ୍ଷରେ ସେତେବେଳେ ବସ୍ତୁତଃ ଏକ କ୍ଷୁଦ୍ର ପଟୁଆର । ପରେ ବୁଝିଲୁ, ବସ୍ ଖରାପ ହେବାରୁ ତାଙ୍କର ବିଳମ୍ବ ହେଲା । ବରପାଲିରେ ପହଞ୍ଚି ଆମ ଗାଁକୁ ଆସିବା ପାଇଁ ସେ ପ୍ରଥମେ ବରପାଲିର ଉତ୍ସାହୀ ରାଜନୈତିକ କର୍ମୀ ଶ୍ରୀ ସିଂହନାଦ ପ୍ରଧାନଙ୍କୁ ଭେଟି କହିଥିଲେ, "ମୋ ପାଇଁ ରିକ୍ସାଟିଏ ହେଲେ ଭଲ ହୁଅନ୍ତା । ଦୟାକରି ଠିକ୍ କରିଦିଅ । ମୋ ପାଖରେ କିନ୍ତୁ ରିକ୍ସାଭଡା ନାହିଁ ।" ଠିକ୍ ଶିଶୁ ଶୁଲଭ ସ୍ୱଚ୍ଛତା ଓ ନିଷ୍କପଟତା ତହିଁରେ ପରିସ୍ଫୁଟ । ସିଂହନାଦ ବାବୁ ଏହାପରେ ବରପାଲିରେ ମୋର ପିତା ଶ୍ରୀ ଯତୀନ୍ଦ୍ର ମୋହନ ତ୍ରିପାଠୀଙ୍କ ସହ ଯୋଗା ଯୋଗ କରିଥିଲେ । ଗାଁ ମୁଣ୍ଡ ନଈ ପର୍ଯ୍ୟନ୍ତ ରିକ୍ସାରେ ଆସି ସେଠାରୁ ଚାଲି ଚାଲି ସେ ଆସିଥିଲେ । ସେ ଦିନର ବିଶାଳ ସମାବେଶରେ ଦୁର୍ଯ୍ୟୋଗକୁ ମାଇକ ଖରାପ ହୋଇଗଲା । ତେଣୁ ସେହି ଅସୁବିଧା ମଧ୍ୟରେ କାର୍ଯ୍ୟକ୍ରମ ଚଳାଇ ଦେବାକୁ ହେଲା । ସେତେବେଳେ ମୁଁ ମାତ୍ର ସତର ବର୍ଷର ତରୁଣ । ମୋତେ ଧନ୍ୟବାଦ ଅର୍ପଣର ଦାୟିତ୍ୱ ପ୍ରଦାନ କରଯାଇଥିଲା । ବିଭିନ୍ନ ବକ୍ତୃତା ପ୍ରତିଯୋଗିତାରେ ବାରମ୍ବାର ଚମ୍ପିଆନ୍ ଆଖ୍ୟା ଅର୍ଜନ କରିଥିବା ଏହି ଲେଖକ ସେଦିନ ତାଙ୍କୁ କୃତଜ୍ଞତା ଜ୍ଞାପନ କରିବା ନିମନ୍ତେ ଭାଷା ଖୋଜିବାକୁ ପଡ଼ିଥିଲା । ଆୟୋଜନରେ ଅନିଚ୍ଛାକୃତ ବିଭ୍ରାଟ ସତ୍ତ୍ୱେ ସେ ଆଦୌ ବିରକ୍ତି ପ୍ରକାଶ କରି ନ ଥିଲେ ।

ସଭା ସରିବା ବେଳକୁ ପ୍ରାୟ ରାତି । ପରବର୍ତ୍ତୀ ଦିନ ସକାଳୁ ଡକ୍ଟର ସୂପକାରଙ୍କର ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଥାଏ । ତେଣୁ ଫେରିଯିବା ଅତ୍ୟନ୍ତ ଜରୁରୀ ବୋଲି କହିଲେ । ସେତେବେଳେ ମୋଟର ବା ସ୍କୁଟର ନ ଥାଏ । ସମସ୍ତଙ୍କର ଅନୁରୋଧ ସେ ରଖିପାରିଲେ ନାହିଁ । ରାତିଟା ଆମ ଘରେ ସେ ନ କଟାଇ ମାନ୍ଦ୍ରାଜ-ବୋମ୍ବାଇରେ ଏକ୍ସପ୍ରେସ ଟ୍ରେନ ଯୋଗେ ଫେରିବା କଥା କହିଲେ । ତେଣୁ ମୋର ବାଲ୍ୟବନ୍ଧୁ ସଦାନନ୍ଦ ଓ ମୁଁ ଦୁଇଟି ସାଇକେଲ ଧରି ପାଞ୍ଚ କିଲୋମିଟର ଦୁର୍ଗମ କଚାରାସ୍ତା ଆସିଲୁ । ଡକ୍ଟର ସୂପକାର ସାଇକେଲ ପଛପଟ କ୍ୟାରିଅରରେ ବସି ଆସିଥିଲେ । ବରପାଲି ରେଳ ଷ୍ଟେସନରେ ପହଞ୍ଚିବା ବେଳକୁ ଜଣାପଡ଼ିଲା ଟ୍ରେନ୍ ବିଳମ୍ବ ଅଛି । ତେଣୁ ସେଠାରେ ପୁଣି କେଇଘଣ୍ଟା ତାଙ୍କ ସହିତ ଅତିବାହିତ କରିବାର ସୁଯୋଗ ମିଳିଲା । ପରସ୍ପର ଅନ୍ତରଙ୍ଗ ସେ ବାର୍ତ୍ତାଳାପ ଆଜି ମଧ୍ୟ ପ୍ରେରଣାଦାୟକ । ପୂର୍ବରୁ ତାଙ୍କର ଲିଖିତ ଦୁଇ ତିନି ଖଣ୍ଡ ପୁସ୍ତକ ପଢ଼ିଥିଲି । ସେଥର ତାଙ୍କୁ ଅନ୍ତରଙ୍ଗ ଭାବେ ଜାଣିଲି ।

ପରବର୍ତ୍ତୀ ଅବସ୍ଥାରେ ମୁଁ ପ୍ରଜାତନ୍ତ୍ର ପ୍ରଗ୍ରର ସମିତିରେ ଯୋଗ ଦେବା ପରେ ତାଙ୍କ ସଂସ୍ପର୍ଶରେ ଆସିବାକୁ ଅଧିକ ସୁଯୋଗ ପାଇଲି । ତାଙ୍କୁ ଅତି ନିକଟରୁ ଦେଖି ପାରିଲି । 1984ରେ ହଠାତ୍ ଦିନେ ସ୍ୱର୍ଗତ ହରେକୃଷ୍ଣ ମହତାବ କହିଲେ, ଶ୍ରଦ୍ଧାକର ବାବୁ ପୀଡ଼ିତ ବୋଲି ତୁମେ ସବୁ କହୁଛ । ତାଙ୍କ ମଧ୍ୟରେ ଏବେ ବି ଯୌବନର ଉଦ୍ଦାମତା ଭରି ରହିଛି । ସେ ସକ୍ରିୟ ରାଜନୀତିକୁ ଶୀଘ୍ର ଫେରୁଛନ୍ତି । ସେତେବେଳେ ଡକ୍ଟର ସୂପକାର କର୍କଟ ରୋଗର ଚିକିତ୍ସା କରି ବହୁ ବଡ ବଡ ସହରରୁ ଫେରିଥାନ୍ତି । ସକ୍ରିୟ ଭାବେ ସେ କିଛି କାର୍ଯ୍ୟ କରିବା ଭଳି ଜଣା ପଡୁନଥାଏ । ତେଣୁ ମହତାବଜୀଙ୍କର ମନ୍ତବ୍ୟ ଶୁଣି ବିସ୍ମିତ ହୋଇଥିଲି । 1985 ବିଧାନସଭା ନିର୍ବାଚନରେ ସୂପକାର ବାବୁ ଲଢୁଥିବା ବିଷୟ କଂଗ୍ରେସ ଦଳର ପ୍ରାର୍ଥୀ ତାଲିକାରୁ ଜଣା ପଡ଼ିବା ପରେ ସେ କୌତୁହଳ ଦୂର ହେଲା ।

ବାସ୍ତବରେ ଶେଷ ଜୀବନରେ ଶେଷ ନିଃଶ୍ୱାସ ତ୍ୟାଗ କରିବା ଯାଏ ସେ ସକ୍ରିୟ ଥିଲେ । 1992 ଡ଼ିସେମ୍ବର ମାସରେ ମୃତ୍ୟୁର କିଛି ଦିନ ପୂର୍ବରୁ ତାଙ୍କ ସହିତ ଶେଷ ଦେଖା । ବୁର୍ଲା ଡ଼ାକ୍ତରଖାନାରେ ହୃଦ୍‌ରୋଗ ବିଶେଷଜ୍ଞ ପ୍ରଫେସର ଡାକ୍ତର ଶ୍ରୀ ନବକିଶୋର ମହାପାତ୍ର ମୋତେ କହିଲେ ଯେ ଶ୍ରଦ୍ଧାକର ବାବୁ ଏକ କ୍ୟାବିନ୍‌ରେ ଅଛନ୍ତି । କେଥେଟ୍ରାଇ ଦିଆଯିବା ପରେ ଘରକୁ ଫେରିଯିବେ । ଖୁବ୍ କଷ୍ଟ ପାଉଛନ୍ତି । ସମ୍ଭବତଃ ସେ ଆମ ଗହଣରେ ଆଉ ବେଶି ଦିନ ରହିବେ ନାହିଁ । ଶ୍ରଦ୍ଧାକର ବାବୁଙ୍କ ଦର୍ଶନ ନିମନ୍ତେ ମୁଁ ଡାକ୍ତର ମହାପାତ୍ରଙ୍କ ସହ ଗଲି । ତାଙ୍କର ଧୋତି ଇତ୍ୟାଦି ଝାଳରେ ଭିଜି ଯାଇଥାଏ । ଏହା ସତ୍ତ୍ୱେ ତାଙ୍କର ହସ ହସ ମୁହଁ । ନିଷ୍କପଟ ବାର୍ତ୍ତାଳାପ । ଆମେ ଜାଣିଲୁ ଯେ ସେହି କ୍ୟାବିନରେ ଦୀର୍ଘ ଦିନ ହେଲା ପଙ୍ଖାଟିଏ ମଧ୍ୟ ନାହିଁ । ସମ୍ପ୍ରତି ବୁର୍ଲାର ଉପ-ନଗରପାଳ ବନ୍ଧୁ ଶ୍ରୀ ନାରାୟଣ ପତି ଓ ମୁଁ ଡାକ୍ତର ମହାପାତ୍ରଙ୍କ ସହ ଯତ୍ ସାମାନ୍ୟ ଉଦ୍ୟମ କରି ସମ୍ପୃକ୍ତ ବିଭାଗ ପକ୍ଷରୁ ସେହିଦିନ କ୍ୟାବିନରେ ପଙ୍ଖାଟିଏ ଲଗାଇବାର ବନ୍ଦୋବସ୍ତ କଲୁ । ଏହା ହିଁ ଥିଲା ଡକ୍ଟର ସୂପକାରଙ୍କ ନାମର ମହିମା । ଯେଉଁ କାର୍ଯ୍ୟ ବର୍ଷ ବର୍ଷ ଧରି ହୋଇ ପାରୁନଥିଲା ଡକ୍ଟର ସୂପକାରଙ୍କ ନାମ ଶୁଣିବା ମାତ୍ରେ ବିଭାଗୀୟ କର୍ମକର୍ତ୍ତାମାନେ ତାହା ପୂରଣ କରିଦେଲେ । ସୂପାକର ବାବୁ ସେହି ଦିନ ନିଜ ଘରକୁ ଫେରି ଆସିଲେ, କିନ୍ତୁ ରୋଗୀଙ୍କ ବ୍ୟବହାରରେ ପଙ୍ଖାଟି ଆସି-ପାରିଲା । ସେଦିନ ଥିଲା ତାଙ୍କ ସହିତ ମୋର ଶେଷ ସାକ୍ଷାତ । ତାଙ୍କ ସମ୍ମୁଖରେ ଡାକ୍ତର ମହାପାତ୍ର ମୋତେ ଥଟ୍ଟାରେ କହିଲେ, ଆପଣମାନଙ୍କ ଲେଖନୀ 'ବୃଥା' (ଥୁଣ୍ଟା) ହୋଇ ଯାଉଛି କାହିଁକି ? ଏତିକିରେ ସେ ନିଜେ କଥାର ଖିଅ ଧରି କହିଲେ, "ଆମ ସମୟ ସରି ସରି ଆସୁଛି । ଏବେବି ମୁଁ ପ୍ରତ୍ୟେହ ପ୍ରତ୍ୟୁଷରୁ ଲେଖାପଢା କରୁଛି । ଜ୍ଞାନାର୍ଜନ ନକଲେ ମଣିଷ ନିଜର ମର୍ଯ୍ୟାଦା ହରାଇ ବସେ । ଲେଖାଲେଖି କଲେ ନିଜର ମର୍ଯ୍ୟାଦା ବୃଦ୍ଧିପାଏ । ଏହାପରେ କିଛି ସମୟ ଗପ ସପ ହୋଇଥିଲା । ତାଙ୍କ ସହ ଅନ୍ତିମ ଦେଖା ଯେପରି ସ୍ମରଣୀୟ; ସେପରି ପ୍ରେରଣା ଦାୟକ ।

୧୯୯୩, ଜାନୁୟାରୀ ୫ ତାରିଖ ସକାଳୁ ଶ୍ରୀ କର ବାବୁ ଟେଲିଫୋନରେ ମ୍ରିୟମାଣ ହୋଇ କେବଳ ଏତିକି କହିଲେ, ଆପଣ ଯେଉଁ ଅବସ୍ଥାରେ ଅଛନ୍ତି ଶୀଘ୍ର ଆସନ୍ତୁ । ସେତେବେଳେ ନାନା ଆଶଙ୍କା ମୋତେ ଛୁଇଁଲା । ଯାଇ ଦେଖିଲି, ଶ୍ରଦ୍ଧାକର ବାବୁ ଶୋଇଛନ୍ତି ମହାନିଦ୍ରାରେ । ଶ୍ରଦ୍ଧାର୍ଘ୍ୟ ପୁଷ୍ପମାଲ୍ୟ ଅର୍ପଣ କଲୁ ଅଶ୍ରୁଳ ନୟନରେ । ସେ ଅଠସ୍ତରୀ ବର୍ଷ ବୟସରେ ବିଦାୟ ନେଲେ । ଦେଖୁ ଦେଖୁ ଆଜି ବର୍ଷଟିଏ ପୂରିଗଲା । ସମାଜର ପ୍ରତ୍ୟେକ କ୍ଷେତ୍ରରେ ଜଟିଳତା ଚରମ ପର୍ଯ୍ୟାୟରେ ଉପନୀତ । ତାଙ୍କ ଭଳି ସରଳ ମଣିଷଟିଏ ଆଜି ଦୁର୍ଲଭ । ଈଶ୍ୱରଙ୍କ ପାଖରେ ମୋର ଏତିକି ମାଗୁଣି—ପ୍ରଭୁ; ଆମ ସମସ୍ତଙ୍କୁ ଶ୍ରଦ୍ଧାକର ସୂପକାରଙ୍କ ଭଳି ଶିଶୁଟିଏ କରି ଦିଅ ।

ପ୍ରଜାତନ୍ତ୍ର ଭବନ, ସମ୍ବଲପୁର-୧

# ସେ ଏକ ତୁଳନାହୀନ ପ୍ରତଭା

**ଶ୍ରୀ ଅନ୍ନଦା ପ୍ରସାଦ ବସୁ**

ଶଙ୍କାକର ସୂପକାର ଆଜୀବନ ଜ୍ଞାନପିପାସୁ, ଅଧ୍ୟବସାୟଶୀଳ, ମାର୍ଗଦର୍ଶୀ, ମହାମନା ବ୍ୟକ୍ତି ଭାବରେ ଦଳ ମତ ନିର୍ବିଶେଷରେ ସ୍ୱୀକୃତ ଏବଂ ସମ୍ମାନିତ । ସମ୍ବଲପୁରଠାରେ ଜନ୍ମଗ୍ରହଣ କରି ୧୯୯୩ ଜାନୁଆରୀ ୫ ତାରିଖରେ ସେଇ ସମ୍ବଲପୁର ସୁରେନ୍ଦ୍ର ସାଏ ମେଡ଼ିକାଲ କଲେଜ ହସପିଟାଲରେ ମୃତ୍ୟୁବରଣ କରିବା ପର୍ଯ୍ୟନ୍ତ ଯେଉଁ ଜୀବନ ଗ୍ରନ୍ଥଟି ଛାଡ଼ିଗଲେ, ତାହା ଆମ ପାଇଁ ପ୍ରଣିଧାନଯୋଗ୍ୟ । ୧୯୩୧ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟର ବିଜ୍ଞାନ ଛାତ୍ର ଭାବେ ଆଇ. ଏସ. ସି. ପାଶ୍ କରି ୧୯୩୫ ମସିହାରେ ସଂସ୍କୃତରେ ସେ 'ସାହିତ୍ୟାଗ୍ରର୍ଯ୍ୟ', ୧୯୩୭ ମସିହାରେ ଇଂରାଜୀରେ ସ୍ନାତକୋତ୍ତର ଉପାଧି ଲାଭ କରି ୧୯୩୮ ମସିହାରେ ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୯୬୩ ମସିହାରେ ଆଇନ୍‌ର ସର୍ବୋଚ୍ଚ ଉପାଧି ଏଲ. ଏଲ. ଏମ୍. ଲାଭ କରିଥିଲେ । ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପି. ଏଚ. ଡ଼ି. ପାଇଥିଲେ । ହାରାହାରି ପଚାଶ ବର୍ଷରୁ ଊର୍ଦ୍ଧ୍ୱକାଳ ସେ ଅଧ୍ୟୟନ ଓ ଅଧ୍ୟାପନା ସହିତ ସମତାଳରେ ସମାଜସେବା, ସାହିତ୍ୟ ସାଧନା ଏବଂ ବ୍ୟବସ୍ଥାପନା କାର୍ଯ୍ୟ ଅତି ଚମତ୍କାର ଭାବରେ ସମ୍ପାଦନା କରି ଏକ ଦୃଷ୍ଟାନ୍ତଯୋଗ୍ୟ ସ୍ଥାନ ମଣ୍ଡନ କରିଥିଲେ । ବିଜ୍ଞାନର ଛାତ୍ର ହୋଇ ସଂସ୍କୃତ, ଇଂରାଜୀ ଓ ଆଇନ୍‌ର ପରିସର ଭିତରକୁ ଜଣେ ସଫଳ ଛାତ୍ର ଭାବରେ ପ୍ରବେଶ କରି ସେ ଏକ ଅଦ୍‌ଭୁତ ପ୍ରତିଭା ତଥା ମେଧାସମ୍ପନ୍ନ ବ୍ୟକ୍ତିଭାବରେ ନିଜକୁ ପ୍ରମାଣିତ କରିଛନ୍ତି । ଏକଦା ସେ ରେଭେନ୍‌ସା କଲେଜର ଇଷ୍ଟ ହଷ୍ଟେଲରେ ରହୁଥିଲେ ଏବଂ ଡ଼ିଗ୍ରୀ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ବହୁଳାଂଶରେ ସେ ନିଜକୁ ଜଣେ ଛାତ୍ର ଭାବରେ ବିଭିନ୍ନ ବିଷୟରେ ଜ୍ଞାନଆହରଣ କରିବା ସଙ୍ଗେ ସଙ୍ଗେ ସେ ସବୁକୁ ବ୍ୟବହାରିକ ଜୀବନରେ ପ୍ରୟୋଗ କରିବାର କୌଶଳ ମଧ୍ୟ ହାସଲ କରିଥିଲେ । ଜ୍ଞାନାର୍ଜନ ସହିତ ସେ ଜନଜୀବନକୁ ମଧ୍ୟ ସଂଯୋଗ କରିଥିଲେ । ୧୯୪୦ ମସିହାରେ ସମ୍ବଲପୁର ଜିଲ୍ଲାବୋର୍ଡକୁ ନିର୍ବାଚିତ ହୋଇ ସେ ସ୍ଥାନୀୟ ସମସ୍ୟା ସମାଧାନରେ, ଉନ୍ନୟନ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଏଥିପାଇଁ ତାଙ୍କର ଆଇନ୍ ବ୍ୟବସାୟ ଗୌଣ ହୋଇଯାଇଥିଲା ସତ୍ୟ, କିନ୍ତୁ ଆଇନର ସର୍ବୋଚ୍ଚ ଲକ୍ଷ୍ୟ ପ୍ରତି ତାଙ୍କର ପ୍ରଗାଢ଼ ନିଷ୍ଠା ଓ ଆନ୍ତରିକତା ପ୍ରକାଶ କରିଥିଲେ ।

ଡକ୍ଟର ସୂପକାର ଜଣେ ଗମ୍ଭୀର, ନିର୍ଭୀକ ଓ ନୀତିନିଷ୍ଠ ପଣ୍ଡିତ ବ୍ୟକ୍ତି ଭାବରେ ଓଡ଼ିଶାରେ ସାଧାରଣ କ୍ଷେତ୍ରରେ ପ୍ରବେଶ କରି ନିଜର ମନୀଷାର ପ୍ରକୃଷ୍ଟ ପ୍ରୟୋଗାତ୍ମକ କ୍ଷେତ୍ର ଭାବରେ ସେ ଶିକ୍ଷା ବିଭାଗକୁ ମଧ୍ୟ ପ୍ରବେଶ କରିଥିଲେ । ୧୯୬୩ ମସିହାରୁ ୧୯୬୬ ମସିହା ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ ଓ ସିଣ୍ଡିକେଟ୍ ସଭ୍ୟ ଭାବରେ ସେ ବହୁ ଉଲ୍ଲେଖଯୋଗ୍ୟ ଶିକ୍ଷା ସଂକ୍ରାନ୍ତ କାର୍ଯ୍ୟକାରୀ କରିଛନ୍ତି । ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା

ଏବଂ ପୁରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ ତାଙ୍କର ଅବଦାନ ସ୍ମରଣଯୋଗ୍ୟ । ଏବଂ ସେଇ ଦୁଇଟି ବିଶ୍ୱବିଦ୍ୟାଳୟର କୁଳପତିଭବେ ସେ ମଧ୍ୟ ଦାୟିତ୍ୱ ନେଇ ଉଲ୍ଲେଖଯୋଗ୍ୟ ଉନ୍ନତି କରିଯାଇଛନ୍ତି । ରାଜନୈତିକ କାର୍ଯ୍ୟକ୍ରମ ଭିତରେ ବି ସାହିତ୍ୟ ଓ ସାଂସ୍କୃତିକ କାର୍ଯ୍ୟରେ ବେଶି ସମୟ ବିନିଯୋଗ କରିପାରୁଥିଲେ । ଓଡ଼ିଶାରେ ଗଣତନ୍ତ୍ର ପରିଷଦ ସୃଷ୍ଟି ହେବା କାଳରେ ସେ ନିଜର ରାଜନୈତିକ ଜୀବନ ଆରମ୍ଭ କରିଥିଲେ । ୧୯୮୦ ମସିହାରେ ସେ କଂଗ୍ରେସ ପ୍ରାର୍ଥୀ ଭବେ ସମ୍ବଲପୁରରୁ ଓଡ଼ିଶା ବିଧାନସଭକୁ ନିର୍ବାଚିତ ହୋଇ ୧୯୮୫ ମସିହା ପର୍ଯ୍ୟନ୍ତ ସଭ୍ୟ ଭବରେ ରହିଥିଲେ । ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରୀମଣ୍ଡଳରେ ସେ ଗଣତନ୍ତ୍ର ପରିଷଦର ନେତା ଓ ବିରୋଧୀଦଳ ନେତା ଭବେ ନିଜର ରାଜନୈତିକ ବିଚକ୍ଷଣତାର ପରିଚୟ ଦେଇଥିଲେ । ସେ ଜ୍ଞାନଆହରଣ କ୍ଷେତ୍ରରେ ଯେପରି ବୈଚିତ୍ର୍ୟ ଓ ବିସ୍ମୟ ପ୍ରଦର୍ଶନ କରିଥିଲେ, ସେହିପରି ରାଜନୈତିକ କ୍ଷେତ୍ରରେ ମଧ୍ୟ ଆକର୍ଷଣୀୟ ବ୍ୟକ୍ତିଭବରେ ସମ୍ମାନ ଲଭ କରିଥିଲେ । ବିଭିନ୍ନ ସମୟରେ ବିଧାନସଭ, ଲୋକସଭା ଓ ରାଜ୍ୟସଭା ସଦସ୍ୟ ଭାବରେ ରହିଥିଲେ ଏବଂ ବହୁ ତଥ୍ୟମୂଳକ ତାର୍କିକ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । 1949 ରୁ 1952 ପର୍ଯ୍ୟନ୍ତ ଓଡ଼ିଶା ବିଧାନସଭ, 1952 ରୁ 1957 ପର୍ଯ୍ୟନ୍ତ ଓଡ଼ିଶା ବିଧାନସଭର ବିରୋଧୀ ଦଳର ନେତା, 1957 ରୁ 1962 ପର୍ଯ୍ୟନ୍ତ ଲୋକସଭ ସଭ୍ୟ, 1965 ରୁ 1967 ପର୍ଯ୍ୟନ୍ତ ରାଜ୍ୟସଭ ସଭ୍ୟ, 1967 ରୁ 1970 ପର୍ଯ୍ୟନ୍ତ ଲୋକସଭ ସଭ୍ୟ, 1975 ରୁ 1976 ପର୍ଯ୍ୟନ୍ତ ସରକାରୀ ଭଷା କମିଶନର ସଭ୍ୟ ଭବରେ ସେ କାର୍ଯ୍ୟ କରି ରାଜନୈତିକ କ୍ଷେତ୍ରରେ ଜଣେ ଅପରିହାର୍ଯ୍ୟ ବ୍ୟକ୍ତି ହିସାବରେ ପରିଗଣିତ ହେଉଥିଲେ । ଶିକ୍ଷା କ୍ଷେତ୍ରରେ ଲାଲା ଲଜପତ୍ ରାୟ ଆଇନ୍ କଲେଜରେ 1971 ରୁ 1975 ପର୍ଯ୍ୟନ୍ତ ଅଧ୍ୟାପକ ଏବଂ 1978 ରୁ 1970 ପର୍ଯ୍ୟନ୍ତ ଅଧ୍ୟକ୍ଷତା କରିଥିରେ । 1978 ରୁ 1979 ପର୍ଯ୍ୟନ୍ତ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଭିଜିଟିଙ୍ଗ୍ ପ୍ରଫେସର ହେଲେ । ଏହାଛଡ଼ା ସାହିତ୍ୟ କ୍ଷେତ୍ରରେ ସେ ତାଙ୍କର କୃତିତ୍ୱପୂର୍ଣ୍ଣ ସ୍ୱାକ୍ଷର ରଖିଯାଇଛନ୍ତି । ଅନ୍ୟୁନ 20 ଖଣ୍ଡ ବହି ସେ ଲେଖିଛନ୍ତି । ସେ ସମସ୍ତ ପ୍ରକାଶିତ । ଓଡ଼ିଶା ସାହିତ୍ୟ ଏକାଡେମୀର ଜଣେ ସକ୍ରିୟ ସଭ୍ୟ ଭବରେ ସେ 6 ବର୍ଷ କାଳ ରହିଥିଲେ । ଓଡ଼ିଶା ଲଳିତ କଳା ଏକାଡେମୀର ସଭ୍ୟ ଭବରେ 1 ବର୍ଷ ରହିଥିଲେ । ଓଡ଼ିଶା ସାଂସ୍କୃତିକ ସମାଜ, କୋଶଳ ସମାଜ, 'ଫାଇଗୁନୀ' ଅନୁଷ୍ଠାନ ମାନଙ୍କର ସେ ସଭପତି ଭବରେ କାର୍ଯ୍ୟ କରିଥିରେ । ତା'ଛଡ଼ା ସାମ୍ବାଦିକ କ୍ଷେତ୍ରରେ ସେ ଜଣେ ମୁକ୍ତ ସାମ୍ବାଦିକ ଭବରେ ଓଡ଼ିଶାର ପ୍ରତିଷ୍ଠିତ ସାହିତ୍ୟ ଓ ସମ୍ବାଦପତ୍ରରେ ତତ୍କାଳୀନ ସମସ୍ୟା ଓ ବିଶେଷ ପ୍ରସଙ୍ଗ ଲେଖି ଲୋକପ୍ରିୟ ହୋଇଥିଲେ । 'ପୂର୍ବାଶା' ସହକାର ପତ୍ରିକାରେ ସେ ଲେଖିଥିଲେ । 1981 ଏପ୍ରିଲରୁ 1982 ମଇ ମାସ ପର୍ଯ୍ୟନ୍ତ ସମ୍ବଲପୁରରୁ ପ୍ରକାଶ ପାଉଥିବା ଦୈନିକ 'ହୀରାଖଣ୍ଡ'ର ସଂପାଦନା କରୁଥିଲେ । ଡଃ ସୂପକାର ଲୋକସଭର ସଭ୍ୟ ଥିବା ଅବସ୍ଥାରେ ତତ୍କାଳୀନ କମ୍ୟୁନିଷ୍ଟ ରାଷ୍ଟ୍ର ସୋଭିଏତ୍ ଋଷିଆ, ହଙ୍ଗେରୀ, ଲଣ୍ଡନ ଓ ପ୍ୟାରିସ୍ ପ୍ରଭୃତି ପରିଦର୍ଶନ

କରିଥିଲେ । ଏହିଭଳି ଜଣେ ବିରଳ ବ୍ୟକ୍ତିତ୍ୱଙ୍କ ଜୀବନ ଅଧ୍ୟୟନ ଅନୁଶୀଳନ କରିବା ପାଇଁ ସୁଯୋଗ ସୃଷ୍ଟି ହୋଇଗଲା । ତାଙ୍କର ଜୀବଦଶାରେ ସେ ନିଜେ ଯେଉଁ ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ସମାଜକୁ ସେ ଦିଗରେ ପ୍ରଭାବିତ କରୁଥିଲେ, ତାହା ତାଙ୍କ ମୃତ୍ୟୁ ପରେ ଯେ ପୂରାପୂରି ଲୋପ ପାଇଯିବ, ଏ ଆଶଙ୍କାକୁ ଦୂର କରିବା ପାଇଁ ଆମେ ଯଦି କିଛି କିଛି ସେଥିରୁ ନିଜ ଜୀବନରେ କାର୍ଯ୍ୟକାରୀ କରୁ, ତେବେ ତାହା ତାଙ୍କ ପ୍ରତି ଆମର ଯଥାର୍ଥ ଶ୍ରଦ୍ଧାଞ୍ଜଳି ହେବ । ଶ୍ରଦ୍ଧାକର ସୂପକାର ଜଣେ ଶ୍ରଦ୍ଧାସ୍ପଦ ବ୍ୟକ୍ତି ଥିଲେ ଏବଂ ଶ୍ରଦ୍ଧା ସମ୍ବର୍ଦ୍ଧନା, ସ୍ନେହ, ସହାନୁଭୂତି ଓ ସଦ୍‌ଭାବନାର ଏକ ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ସେ ଆମ ଭିତରେ ବଞ୍ଚି ରହିବେ । ତାଙ୍କର ବ୍ୟକ୍ତିତ୍ୱ ସର୍ବଗ୍ରାସୀ ଓ ବହୁମୁଖୀ ଥିଲା । ଆଞ୍ଚଳିକତାର ଗନ୍ଧ ନଥିଲା ! ଆଜି ଯେପରି ପଶ୍ଚିମାଞ୍ଚଳ, କେନ୍ଦ୍ରାଞ୍ଚଳ ଇତ୍ୟାଦି ସ୍ୱର ଉଠାଯାଇ ବିଦ୍ୱେଷର ବାତାବରଣ ସୃଷ୍ଟି କରାଯାଉଛି, ସେପରି ସଂକୀର୍ଣ୍ଣତା ମତାନ୍ଧତା ତାଙ୍କର ରାଜନୈତିକ ଓ ସାଂସ୍କୃତିକ ଆଭିମୁଖ୍ୟରେ ପ୍ରତିଫଳିତ ହୋଇ ନଥିଲା । ସେ ସମ୍ବଲପୁରଠାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଯେତିକି ଆଗ୍ରହୀ ଥିଲେ ସ୍ଥାନୀୟ ଭିତ୍ତିରେ ଜନସେବାର ସଂଦେଶକୁ ସୀମିତ ନ ରଖି ମାନବିକତାର ପ୍ରଶସ୍ତ କ୍ଷେତ୍ର ପାଇଁ ସେ ତାଙ୍କର ଦୃଷ୍ଟିକୋଣକୁ ସଂପ୍ରସାରିତ କରିଦେଇଥିଲେ ।

ଏହି ପରିପ୍ରେକ୍ଷୀରେ ବିଗ୍ଭର କଲେ ଆମେ ନିଶ୍ଚିତ ଭାବରେ ଏହି ସିଦ୍ଧାନ୍ତରେ ଉପନୀତ ହୋଇପାରିବା ଯେ ଡକ୍ଟର ଶ୍ରଦ୍ଧାକର ସୂପକାର ଜଣେ ତୁଳନାହୀନ ପ୍ରତିଭାଧର ବ୍ୟକ୍ତି ଭାବରେ ଇତିହାସ ହୋଇ ରହିବା ପାଇଁ ଯଥେଷ୍ଟ ଯୋଗ୍ୟତା ଓ ଅବଦାନ ରଖିଯାଇଛନ୍ତି ଏବଂ ସେଇ ଇତିହାସ ଆମପାଇଁ ପ୍ରେରଣାର ସାହିତ୍ୟ ଓ ସମ୍ବାଦ ହୋଇ ରହିବ ।

ଡକ୍ଟର ସୂପକାରଙ୍କର ଗ୍ଭରିତ୍ରିକ ବୈଶିଷ୍ଟ୍ୟ ଭିତରେ ଅନେକ ସଦ୍‌ଗୁଣ ସହିତ ଗଭୀର ଜାତୀୟତାବୋଧ ରହିଥିଲା । ସମ୍ବଲପୁରରୁ ସେ ରାଜନୈତିକ ଜୀବନ ଆରମ୍ଭ କରିଥିଲେ ମଧ୍ୟ ସାରା ଓଡ଼ିଶାର ରାଜନୈତିକ ଜୀବନରେ ଜଣେ ଦିଗ୍‌ଦର୍ଶକ, ବ୍ୟବସ୍ଥାପକ ହେବାର ସମ୍ମାନ ଲାଭ କରିଥିଲେ । ଗଣତନ୍ତ୍ର ପରିଷଦର ସଭ୍ୟ ଭାବରେ ସେ ଓଡ଼ିଶା ବିଧାନସଭାରେ ସଦସ୍ୟ ରହିବା ସମୟରେ ତତ୍‌କାଳୀନ ଜାତୀୟଦଳ, ସ୍ୱତନ୍ତ୍ରଦଳ ସହିତ ଗଣତନ୍ତ୍ର ପରିଷଦର ମିଶ୍ରଣ ପାଇଁ ସେ ଉଦ୍ୟମ କରିଥିଲେ । ଏଥିରୁ ତାଙ୍କର ଜାତୀୟ ମୁଖ୍ୟସ୍ରୋତ ସହିତ ଓଡ଼ିଶାକୁ ସାମିଲ କରିବାର ଉଦ୍ଦେଶ୍ୟ ସ୍ପଷ୍ଟ ହୋଇଥିଲା । ଏପରିକି ଢେଙ୍କାନାଳ ରାଜା ଜଣେ ଅନ୍ୟତମ ଗଣତନ୍ତ୍ର ପରିଷଦ ନେତା ଭାବରେ ଯେତେବେଳେ ଗଣତନ୍ତ୍ର ପରିଷଦର ସ୍ୱତନ୍ତ୍ରଦଳ ସହିତ ମିଶ୍ରଣକୁ ବିରୋଧ କରି, ସ୍ୱତନ୍ତ୍ର ଦଳ ଗଣତନ୍ତ୍ର ପରିଷଦରେ ମିଶିଯାଉ ବୋଲି କହିଥିଲେ, ସେତେବେଳେ ଡଃ ସୂପକାର ଦୃଢ଼ ଭାବେ ପ୍ରତିଯୁକ୍ତି ଉପସ୍ଥାପନ କରିଥିଲେ । ଗଣତନ୍ତ୍ର ପରିଷଦ ଗୋଟିଏ ଆଞ୍ଚଳିକ ଦଳ, ସ୍ୱତନ୍ତ୍ର ଦଳ ଗୋଟିଏ ଜାତୀୟ ଦଳ, ଜାତୀୟ ଦଳ ଆଞ୍ଚଳିକ ଦଳରେ ମିଶିବା

ଏକାବେଳକେ ଅପ୍ରାସଙ୍ଗିକ, ଅସଂଗତ ମଧ୍ୟ । ଢେଙ୍କାନାଳ ରାଜାଙ୍କୁ ସେ ପରିହାସ ଛଳରେ ଏକଥା କହିଥିଲେ । ତେବେ ଢେଙ୍କାନାଳ ସହିତ ଭାରତ ମିଶିବା ଉଚିତ ହେବ । ଭାରତ ସହିତ ଢେଙ୍କାନାଳ ମିଶିବାର ଯୌକ୍ତିକତା ଓ ସ୍ୱାଭାବିକତା ରହିଛି । ଏଥିରୁ ତାଙ୍କର ବୁଦ୍ଧିମତା ଏବଂ ଜାତୀୟତାବୋଧର ପ୍ରମାଣ ମିଳେ । ଗଣତନ୍ତ୍ର ପରିଷଦ ଭଳି ଗୋଟିଏ ପ୍ରାଦେଶିକ ଦଳସହ ସ୍ୱତନ୍ତ୍ର ଦଳ ଭଳି ଗୋଟିଏ ଜାତୀୟ ଦଳ ସହିତ ମିଶିବାର ପ୍ରବୃତ୍ତି ତାଙ୍କୁ କଂଗ୍ରେସ ଦଳ ଭଳି ଗୋଟିଏ ଜାତୀୟଦଳ ସହିତ ମିଶିବା ପାଇଁ ଅନୁପ୍ରେରିତ କରିଥିଲା । ଓଡ଼ିଶାରେ ସ୍ୱତନ୍ତ୍ର ଦଳର ମିଳିତ ମନ୍ତ୍ରିମଣ୍ଡଳ ସମୟରେ ସେ ଜଣେ ଟାଣୁଆ ପ୍ରଭାବଶାଳୀ ଜନନେତା ହୋଇ ପାରିଥିଲେ । ପାଟଣା ମହାରାଜା ସିଂହଦେଓଙ୍କୁ ସେ ରାଜନୈତିକ ପ୍ରଶ୍ନ ଉପରେ ତାଙ୍କ ସପକ୍ଷରେ ପ୍ରଭାବିତ କରିପାରୁଥିଲେ । ଗଞ୍ଜାମ, ପୁରୀ, କଟକ, ବାଲେଶ୍ୱର ଏହି ସମସ୍ତ ଉପକୂଳ ଅଞ୍ଚଳରୁ ଏକମାତ୍ର ସ୍ୱତନ୍ତ୍ର ପ୍ରାର୍ଥୀ ଭାବେ ହରପ୍ରସାଦ ମହାପାତ୍ର ବାଲେଶ୍ୱରରୁ ନିର୍ବାଚିତ ହୋଇଥିଲେ ଏବଂ ଅନ୍ୟ ସମସ୍ତ ପ୍ରାର୍ଥୀ ଗଡ଼ଜାତ ଅଞ୍ଚଳରୁ ନିର୍ବାଚିତ ହୋଇଥିଲେ ମଧ୍ୟ ଡକ୍ଟର ସପକାରଙ୍କ ପ୍ରଚେଷ୍ଟାରେ ହରପ୍ରସାଦ ମହାପାତ୍ର ଆଇନ୍ ମନ୍ତ୍ରୀ ହୋଇ ପାରିଥିଲେ । ଏଥିରୁ ତାଙ୍କର ଉଦାରତାର ପରିଚୟ ମିଳେ । ଆଞ୍ଚଳିକତାର ବର୍ଗ ବନ୍ଧନୀ ଭିତରେ ସେ ନିଜକୁ କେବେ ହେଲେ ଆବଦ୍ଧ କରି ରଖି ନଥିଲେ । ସେ ଯାହା ଠିକ୍ ଓ ନ୍ୟାୟ ବୋଲି ଅନୁଭବ କରୁଥିଲେ ତାକୁ ଯେକୌଣସି ପରିସ୍ଥିତିରେ ଯେକୌଣସି ମୂଲ୍ୟ ଦେଇ ଉପସ୍ଥାପିତ କରିପାରୁଥିଲେ । ଏହି ଦୃଢ଼ତା, ନିର୍ଭୀକତା ଏବଂ ସାଧୁତା ଯୋଗୁଁ ସେ ବିରୋଧୀ ଦଳର ନେତା ଭାବରେ ସମସ୍ତଙ୍କର ବିଶ୍ୱାସଭାଜନ ହୋଇପାରିଥିଲେ । ତାଙ୍କର ସଫଳତାର ବିସ୍ତୃତ ଦିଗନ୍ତକୁ ଆମେ ଦେଖିବାର ସ୍ପୃହା ନେଇ ତାଙ୍କର ଗୁଣାବଳୀ ଆଲୋଚନା କରୁଛୁ ଏବଂ ଆଶା କରୁଛୁ ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହେବା ପାଇଁ ଆମେ ସମସ୍ତେ ତାଙ୍କର ସାରସ୍ୱତ ପ୍ରତିଭାର ଗ୍ରାହକ ଭାବେ, ତାଙ୍କର ଆଦର୍ଶକୁ ପ୍ରତିଷ୍ଠା କରିବାର ଆଗ୍ରହୀ ହେବା ଉଚିତ ।

# ମୋର ଜାଣିବାରେ ଡ଼: ସୂପକାର

ଶ୍ରୀ ଭାଗବତ ପ୍ରସାଦ ବନ୍ଧ

ପରିଧାନ ଭିତରେ ଅଣ୍ଟୁଲୁଗ୍ନ ଧୋତିଟିଏ । ହାପସାର୍ଟ କିମ୍ବା ହାପ୍ ହବାଇନ । ଗୋଡରେ ଯୋତା କିମ୍ବା ଚପଲ । ମଙ୍ଗଳପୁର ଗଳଗଳିରେ ଗ୍ଭଲିଥିବେ । କେଉଁଠାରେ ନମସ୍କାରଟିଏ ତ ଆଉ କେଉଁଠାରେ ଟାହିଟାପରା "ବୁଢା ଲୋକଟିଏ । ଏତେ ପଇସାର ମାଲିକ ହୋଇ ଯୁନ୍ଦା ଦାମିକା ପୋଷାକଟିଏ ପିନ୍ଧୁ ନାହାନ୍ତି । ପଇସା ରଖି ଲାଭ କଣ ?" ଏସବୁ କଥା କାନରେ ବାଜିଲେ ମଧ୍ୟ ମନରେ ଚିନ୍ତା ନାହିଁ । କାରଣ ଜୀବନର ଦର୍ଶନ ହେଲା ସରଳ ଜୀବନଯାପନ କରିବା । ସବୁ ସମୟରେ । ବିରୋଧୀ ଦଳର ନେତା ଥିବା ସମୟରେ ଯେଉଁ ପୋଷାକ, ଦିଲ୍ଲୀରେ ଲୋକସଭା ଓ ରାଜ୍ୟସଭା ସଦସ୍ୟ ଥିବା ସମୟରେ ସେହି ପୋଷାକ, ଲକ୍ଷପତ ରାୟ ଆଇନ୍ ମହାବିଦ୍ୟାଳୟର, ଅଧ୍ୟକ୍ଷ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ସେହି ପୋଷାକ ଏବଂ ଜଣେ ସାଧାରଣ ନାଗରିକ ଭାବରେ ମଧ୍ୟ ସେହି ପୋଷାକ । ଏହିଟା ଗୋଟାଏ ସାଧାରଣ ଗୁଣ ନୁହେ । ଆମେ ଦେଖୁଛୁ ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବହୁ ବ୍ୟକ୍ତି କୌଣସି ପଦ ପଦବୀ ପାଇଗଲେ ଗ୍ଭଲିଚଳନରେ, ବ୍ୟବହାରରେ ଏବଂ ପୋଷାକ ପତ୍ରରେ ବହୁ ପରିବର୍ତ୍ତନ ହୋଇଯାଆନ୍ତି । ଚିହ୍ନା ଲୋକକୁ ବି ନଚିହ୍ନିଲା ପରି ହୁଅନ୍ତି । ଏହି ଅସାଧାରଣ ଗୁଣର ଅଧିକାରୀ ହେଲେ ଡଃ ଶ୍ରଦ୍ଧାକର ସୂପକାର । ଯେ ଥରେ ତାଙ୍କୁ ଦେଖିଛି ତାଙ୍କର ସରଳ ଜୀବନକୁ ଆଦର୍ଶ ଭାବରେ ଗ୍ରହଣ କରି ନେବାକୁ ମନ ଭିତରେ ପ୍ରୟାସ କରିଛି । କିଏ ସଫଳ ହୋଇ ପାରୁଛି ଆଉ କିଏ ସଫଳ ହୋଇ ପାରିନାହିଁ । ମୁଁ ଜାଣିଛି ଡକ୍ଟର ସୂପକାର ଯେତେବେଳେ ୧୯୮୪ ମସିହାରେ ବିଧାୟକ ଭାବରେ ନିର୍ବାଚିତ ହେଲେ ବହୁ ବନ୍ଧୁ ଏବଂ ସମ୍ପର୍କୀୟ କାର୍‌ଟିଏ କିଣିବାକୁ କହିଛନ୍ତି । କାର୍ କିଣିବାକୁ ଆର୍ଥିକ ଶକ୍ତି ଅଛି । ତଥାପି କିଣିବାକୁ ନାରାଜ । କାରଣ ସରଳ ଜୀବନଯାପନରେ ବ୍ୟତିକ୍ରମ ହୋଇଯିବ । ଏହିପରି ଆଦର୍ଶ କ୍ୱଚିତ ଦେଖିବାକୁ ମିଳେ । କେହି କେହି କହି ପାରନ୍ତି ବର୍ତ୍ତମାନ ଯୁଗରେ ଜନସାଧାରଣଙ୍କ ସହିତ ସମ୍ପର୍କ ରଖିବାକୁ ହେଲେ ଲୋକ ପ୍ରତିନିଧି ମାନଙ୍କୁ କାର୍ କିମ୍ବା ଜିପ୍‌ଟିଏ ନିହାତି ଦରକାର । ଏଥିରେ ମୁଁ ମଧ୍ୟ ସହମତ । କିନ୍ତୁ ଗାଡ଼ି ରଖିବା ଅପେକ୍ଷା ମନୋବୃତ୍ତି ଉପରେ ଅନେକ କଥା ନିର୍ଭର କରେ । ବହୁ ଲୋକପ୍ରତିନିଧି ମାନଙ୍କ ଠାରେ ଗାଡ଼ି ରହିଛି କିନ୍ତୁ ତାଙ୍କର ଲୋକସମ୍ପର୍କ ରଖିବାକୁ ଆଗ୍ରହ ନାହିଁ । ହାଓ୍ୟାରେ ଭୋଟ ଏବଂ ଦିଲ୍ଲୀରେ ଟିକଟ କହି ନିଜ ଦାୟିତ୍ୱରୁ ଖସି ଯାଆନ୍ତି । ଡଃ ସୂପକାର ବିନା ଗାଡ଼ିରେ ମଧ୍ୟ ଲୋକ ସମ୍ପର୍କ ଭଲଭାବରେ ରଖି ପାରିଥିଲେ । ଯାଇ ନ ପାରିଲେ କମ୍ ସେ କମ୍ ଚିଠି ଜରିଆରେ ଲୋକଙ୍କ ସହିତ ସମ୍ପର୍କ ରଖୁଥିଲେ । ଏହା କେହି ଅସ୍ୱୀକାର କରି ପାରିବେ କି ?

ଆମେ ଗଲୁଁ । ଡଃ ସୂପକାରଙ୍କୁ ଭେଟି ପାରିଲୁ ନାହିଁ । ଏହିପରି ଅଭିଯୋଗ ମୁଁ କମ୍ ଶୁଣିବାକୁ ପାଇଛି । ମୁଁ ତ ଭଲ ଭାବରେ ଜାଣେ ଡଃ ସୂପକାର ବହୁ ଲୋକଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ରଖିଥିଲେ ।

ଡଃ ସୂପକାର ଆଉ ଗୋଟିଏ ଗୁଣର ଅଧିକାରୀ ଥିଲେ । ସେହିଟା ହେଲା ପ୍ରତିଦିନ କିଛିନା କିଛି ଲେଖିବା । ଜୀବନର ଶେଷ ଦିନ ପର୍ଯ୍ୟନ୍ତ ସେ ଲେଖିଛନ୍ତି । ଓଡ଼ିଶାର ଜଣେ ବିଶିଷ୍ଟ ଲେଖକ । ବିଶିଷ୍ଟ ଲେଖକ ହେବାର ବଡ଼ ଗୁଣ ନୁହଁ, ପ୍ରତିଦିନ କିଛିନା କିଛି ଲେଖିବା ହେଉଛି ସବୁଠାରୁ ବଡ଼ଗୁଣ । ଓଡ଼ିଶାର ପ୍ରାୟ ସମସ୍ତ ପତ୍ର ପତ୍ରିକା ଓ ସ୍ମରଣିକାରେ ତାଙ୍କର ଲେଖା ପ୍ରକାଶ ପାଇଛି । ମୋର ମତରେ ସ୍ୱର୍ଗତ ଶଙ୍କର ପ୍ରସାଦ ପାତ୍ର ଓ ଡଃ ଶୁଭାକର ସୂପକାର ଯଦି ସମ୍ବଲପୁରରେ ଜନ୍ମ ଗ୍ରହଣ କରି ନଥାନ୍ତେ, ତେବେ ଏହି ଅଞ୍ଚଳର ଅନେକ କଥା ଅନ୍ୟ ଅଞ୍ଚଳର ଲୋକେ ଜାଣି ପାରି ନଥାନ୍ତେ । ଡଃ ସୂପକାର କ'ଣ ଲେଖି ନାହାନ୍ତି ! ପ୍ରବନ୍ଧ, ଗଳ୍ପ, ନାଟକ, ଇତିହାସ, ଜୀବନୀ ଏବଂ ଭ୍ରମଣ ବୃତ୍ତାନ୍ତ ସବୁକଥା ଲେଖିଛନ୍ତି । ଭାଷା ଅତି ସରଳ । ବୁଢ଼ାଠାରୁ ପିଲା ପର୍ଯ୍ୟନ୍ତ ସମସ୍ତେ ବୁଝି ପାରିବେ ।

ଡଃ ସୂପକାରଙ୍କର ପ୍ରତ୍ୟେକ କ୍ଷେତ୍ରରେ ଏକ ନିଜସ୍ୱ ମତ ରହିଥିଲା । କୌଣସି କଥା ତାଙ୍କ ମନକୁ ନ ପାଇଲେ ସେ ନିର୍ଭୀକ ଭାବରେ ତା'ର ସମାଲୋଚନା କରୁଥିଲେ । ଏହିପରି ହୋଇଛି ଗୋଟିଏ ଗୋଟିଏ ଘଟଣାରେ ସେ ଏକାକୀ ହୋଇଯାଇଛନ୍ତି । ତଥାପି ତାଙ୍କ ମନରେ ଦୁଃଖ ନାହିଁ । ନିଜର ମତରେ ଅଟଳ ରହିଛନ୍ତି । ବିଦ୍ୟାଳୟ ଗୁଡ଼ିକରେ ଅଧ୍ୟୟନର କିପରି ଅଧପତନ ହେଉଛି, ତାକୁ ସମାଲୋଚନା କରି ଏକ ଦୀର୍ଘ ପ୍ରବନ୍ଧ ଲେଖିଥିଲେ । ସେଥିପାଇଁ ତାଙ୍କୁ କେତେକ ବନ୍ଧୁ ଭୁଲ୍ ବୁଝିଥିଲେ । ସେହିପରି ୧୯୮୦ ମସିହା ଛାତ୍ର ଆନ୍ଦୋଳନ ସମୟରେ ନିଜର ମତ ଦେବାକୁ ସେ ଦୃଢ଼ତା ପ୍ରଦର୍ଶନ କରିଥିଲେ । ପ୍ରୟାଗଦତ୍ତ ଯୋଶୀ ଓ ନୀଳମାଧବ ପାଣିଗ୍ରାହୀଙ୍କ ସହିତ ବୌଦ୍ଧିକ ମତାନ୍ତର ହୋଇଥିଲା । ନିଜର ମତରେ ସେ ଦୃଢ ରହିଥିଲେ ।

ଡଃ ସୂପକାର ସାଂସ୍କୃତିକ ଚେତନାର ପ୍ରତୀକ ଥିଲେ । ଛୋଟ ଠାରୁ ବଡ଼ ପର୍ଯ୍ୟନ୍ତ ଯେତେ ସଭାସମିତି ହେଉଥିଲା ସବୁଥିରେ ସେ ଯୋଗ ଦେଉଥିଲେ । ସମ୍ବଲପୁର ଅଞ୍ଚଳର ପ୍ରାୟ ସବୁ ସଭାସମିତିକୁ ମୁଖ୍ୟ ଅତିଥି, ସମ୍ମାନୀତ ଅତିଥି କିମ୍ବା ମୁଖ୍ୟ ବକ୍ତା ଭାବରେ ନିମନ୍ତ୍ରିତ ସମ୍ମାନୀତ ହେଉଥିଲେ । ନିମନ୍ତ୍ରିତ ନହେଲେ ସୁଦ୍ଧା ସେ ସଭାସମିତିଗୁଡ଼ିକରେ ଯୋଗ ଦେବାକୁ କୁଣ୍ଠିତ ହେଉ ନ ଥିଲେ । ଏହିପରି ବ୍ୟକ୍ତିତ୍ୱ ମଧ୍ୟ କ୍ୱଚିତ୍ ଦେଖାଯାନ୍ତି ।

ଡଃ ସୂପକାରଙ୍କର ବଞ୍ଚି ରହିବାର ବହୁତ ଇଛା । ଯେତେ ବେମାର ପଡ଼ିଥିଲେ ସୁଦ୍ଧା ବେମାର ପଡ଼ିଛି ବୋଲି କେବେ ଦୁଃଖ ପ୍ରକାଶ କରି ନାହାନ୍ତି । ବରଂ କହିବେ ବର୍ତ୍ତମାନ ସାମାନ୍ୟ ଅସୁସ୍ଥବୋଧ କରୁଛି । ଅଳ୍ପ ଦିନ ପରେ ନିଶ୍ଚୟ ଆରୋଗ୍ୟ ହୋଇଯିବି

ଏବଂ ତୁମର ସଙ୍ଗରେ ଯୋଗଦେବି ବୋଲି ପ୍ରାୟ ସବୁବେଳେ କହୁଥିଲେ । ଅସୁସ୍ଥ ଥିବା ସତ୍ତ୍ୱେ ଡାକ୍ତର ଜନାର୍ଦ୍ଦନ ପୂଜାରୀ ଜନ୍ମ ଶତବାର୍ଷିକୀ ଉତ୍ସବରେ ଯୋଗ ଦେଇଥିଲେ । ସେଇଟା ବୋଧହୁଏ ତାଙ୍କ ଜୀବନର ଶେଷ ଉତ୍ସବ ।

ଦେଖୁ ଦେଖୁ ଡଃ ସୂପକାର ଇହଜଗତରୁ ବିଦାୟ ନେବାର ଏକ ବର୍ଷ ହେଇଗଲା । ତାଙ୍କ ପରି ଏକ ବ୍ୟକ୍ତିତ୍ୱର ସ୍ଥାନ କେବେ ପୂରଣ ହେବ କହି ହେଉ ନାହିଁ । ସେହି ମହାନ ବ୍ୟକ୍ତିତ୍ୱକୁ ମୋର ଆନ୍ତରିକ ଶ୍ରଦ୍ଧାଞ୍ଜଳି ।

ବୁଢାରଜା
ସମ୍ବଲପୁର-୭୬୮୦୦୪

# ସେଦିନର ସ୍ମୃତି

ଶ୍ରୀ ଦୁର୍ଗାମାଧବ ମିଶ୍ର

1973 ମସିହାର ଏକ କ୍ଲାନ୍ତ ଅପରାହ୍ନ । ସେଦିନ ଉପରବେଳା ସମ୍ବଲପୁରରେ ପହଞ୍ଚି ଡ଼ି. ଆଇ. ଜି. ହିସାବରେ ଯୋଗ ଦେଉଥାଏ । ବାରଣ୍ଡାରେ ବସିଛି । ଦେଖିଲି ଜଣେ ଭଦ୍ରଲୋକ ଖଦଡ଼ ଧୋତି, ଖଦଡ଼ କାମିଜ ପିନ୍ଧି ଆସୁଛନ୍ତି । ପ୍ରତି ପଦକ୍ଷେପରେ ତାଙ୍କର ଦୃଢ଼ତା । ଅଫିସ ସରିଲାପରେ ତ ସେଣ୍ଟ୍ରି ଅନୁମତି ନେଇ ଘରକୁ କେହି ଆଗନ୍ତୁକଙ୍କୁ ପଠାଇବା ନିୟମ । ଇଏ କିଏ ଓ କିପରି ଆସିଲେ ?

ସନ୍ଦେହ ମୋଚନ କରି ଆଗନ୍ତୁକ କହିଲେ, ମୋତେ ଆପଣ ଡକାଇଥିଲେ ?

ମୁଁ ଚକିତ ହେଲି । ମାତ୍ର ଦୁଇଘଣ୍ଟା ତଳେ ଏଠାର ଘର ଗ୍ରହଣ କରିଛି । କେତେବେଳେ କାହାକୁ ଡକାଇଲି ?

ମୋର ରଙ୍ଗଢଙ୍ଗରୁ ମୋର ମନ କଥା ବୁଝିନେଲେ ଆଗନ୍ତୁକ । "ମୁଁ ଶ୍ରଦ୍ଧାକର ସୂପକାର ।" ମୁଁ ଚମକି ପଡ଼ି ଚୌକିରୁ ଉଠି ପଡ଼ିଲି ଓ ବାରଣ୍ଡା ତଳକୁ ଆସି ଗଭୀର ସମ୍ମାନ ସହ ପାଛୋଟି ଆଣିଲି ଚୌକିକୁ ।

"ମୁଁ ଆପଣଙ୍କୁ ଡକେଇଲି ? ଏତେ ଆସ୍ପର୍ଦ୍ଧା ମୋର କେଉଁଦିନ ହେଲା ।" ହସି ହସି କହିଲି ମୁଁ ।

"ଆପଣ ସ୍ମରଣ କଲେ ତ । ଆଗେ କ'ଣ କେହି କାହାକୁ ଡକାଉଥିଲେ ? ନାରଦଙ୍କୁ ବିଷ୍ଣୁ ସ୍ମରଣ କଲାମାତ୍ରେ ନାରଦ ହାଜରହୋଇ ଯାଉ ନ ଥିଲେ କି ?"

ସତକଥା ଏତେବେଳେ ଜଣାପଡ଼ିଲା । ମନେ ପଡ଼ିଲା ଗ୍ରଜ ରିପୋର୍ଟରେ ଦସ୍ତଖତ କରି ସାରିଲା ପରେ ମୁଁ ସମ୍ବଲପୁର ଏସ. ପି.ଙ୍କୁ କହିଥିଲି, ଶ୍ରଦ୍ଧାକର ସୂପକାର କେଉଁଠି ରହନ୍ତି ଏବେ ସେ ଘରେ ଅଛନ୍ତି କି ନାହିଁ ବୁଝି କହିଲେ ମୁଁ ତାଙ୍କୁ ଦେଖା କରିବାକୁ ଯିବି । ସେ ହେବ ମୋର ସର୍ବପ୍ରଥମ କାମ । ପୂଜ୍ୟ ପୂଜା କରିସାରିଲା ପରେ ଅନ୍ୟ ଯେଉଁ କଥା ।

ଏସ. ପି., ଡ଼ି. ଏସ. ପି.ଙ୍କୁ, ଡ଼ି. ଏସ. ପି. ଇନ୍‌ସପେକ୍‌ଟରଙ୍କୁ, ଇନ୍‌ସପେକ୍ଟର ସବ୍‌-ଇନ୍‌ସପେକ୍‌ଟରଙ୍କୁ ଓ ସବ୍‌-ଇନ୍‌ସପେକ୍ଟର ଜଣେ ନାଲି ପଗଡ଼ି (ସେତେବେଳେ ନାଲି ପଗଡ଼ି ଥିଲା) ହାବିଲଦାରଙ୍କୁ ପଠାଇଦେଲେ । ସେ ଯାଇ ଶ୍ରଦ୍ଧାକର ବାବୁଙ୍କୁ କହିଲା, ଡ଼ି. ଆଇ. ଜି. ସାହେବଙ୍କୁ "ୟାଦ କିୟେ ହେଁ" (ଯାହାର ଓଡ଼ିଆ ଅର୍ଥ ଡକେଇଛନ୍ତି) । ହବିଲଦାର ବିହାରୀ । ଡକାଇ ପଠାଇବା ଏହି କାୟଦା ସେ ଜାଣିଛି । ମୁଁ ୟାଦ୍ କରିଥିଲି ସତ, ଡକାଇ ନଥିଲି । ମୁଁ ନିଜେ ଯିବି ବୋଲି କହିଥିଲି । କିନ୍ତୁ ଏତେ ସେଣାରେ ପାଣି ଉଠିବା ପରେ ପାଣି ଆଉ ପାଣି ହୋଇ ରହିଲା ନାହିଁ । ଦୂଷିତ ହୋଇଗଲା ।

ସେହିଦିନୁ ପୂଜ୍ୟ ଶ୍ରଦ୍ଧାକର ବାବୁଙ୍କ ସହିତ ନିଗୂଢ ସମ୍ପର୍କ । ହାତରେ ଧରିଥିବା ଥଳି ଭିତରୁ ସେ ବାହାରକଲେ, ମାଆ ସମଲେଶ୍ୱରୀଙ୍କର ସିନ୍ଦୂର ଓ ନିଜ ଲିଖିତ ଗୋଟିଏ ବହି । ତା'ପରେ କେତେ ବହି ସେ ମୋତେ ଦେଇଛନ୍ତି । କେତେ ସଭାରେ ଏକତ୍ର ମଞ୍ଚ ଉପରେ ବସିବାର ସୌଭାଗ୍ୟ ମୋତେ ମିଳିଛି । ହୃଦୟ ନିର୍ମଳ । ବଚନସ୍ପଷ୍ଟ । ଧୂଳିମଳି ନାହିଁ କଟକିଆ, ସମ୍ବଲପୁରୀଆ ଭେଦଭାବ ଯେ ସମ୍ବଲପୁର ନାହିଁ ଓ ମୁଁ ସେଠାକୁ ଯିବା ଆଗରୁ ମୋତେ ଯେ କୋବୁଆ ଭୟ ଦେଖାଉଥିଲେ- ତାହା ମନେପକାଇ ହସ ମାଡ଼ିଲା । ପ୍ରକୃତ ସ୍ନେହ ମୁଁ ପାଇଲି ଶ୍ରଦ୍ଧାକର ବାବୁଙ୍କ ପାଖରୁ । ନୂଆଖାଇରେ ତାଙ୍କ ଘରେ ନୂଆ ଖାଇଛି । କେବଳ ସେ ନୁହନ୍ତି, ସମ୍ବଲପୁରର ଅଜସ୍ର ପରିଚିତ ଗଣ୍ୟମାନ୍ୟ ବ୍ୟକ୍ତି ସ୍ନେହ ଦେଇଛନ୍ତି । କିନ୍ତୁ ଶ୍ରଦ୍ଧାକର ବାବୁ ସେମାନଙ୍କ ମଧ୍ୟରେ ଅଗ୍ରଣୀ ।

ବହୁମୁଖୀ ତାଙ୍କର ପ୍ରତିଭା । ଉଚ୍ଚଶିକ୍ଷିତ । ପରିଣତ ବୟସରେ ପାଠପଢି ଆଇନ ବିଦ୍ୟାରେ ଡକ୍ଟରେଟ୍ କଲେ । ଆଇନ୍ କଲେଜର ପ୍ରିନ୍‌ସପାଲ ହେଲେ । ସଦାସର୍ବଦା ଅଧ୍ୟୟନ ଓ ଲିଖନରତ । ତାହା ଛଡ଼ା, ରାଜନୀତି ତ ଅଛି । ସେ ବିଷୟ ମୁଁ କହିବି ନାହିଁ । କିନ୍ତୁ ଏତିକି ନିଶ୍ଚୟ କହିବି, ସେ କଳୁଷିତ ରାଜନୀତି ସହିତ ସଂପୃକ୍ତ ନ ଥିଲେ । ସାମାଜିକ ଚଳଣିରେ ଯେପରି ସାଦାସିଧା ଓ ସ୍ପଷ୍ଟବାଦୀ ରାଜନୀତିରେ ମଧ୍ୟ ଠିକ୍ ସେଇୟା । ସମସ୍ତେ ତାଙ୍କୁ ସମ୍ମାନ କରନ୍ତି ।

1975ରେ ସମ୍ବଲପୁର ଛାଡ଼ି ଆସିଲାବେଳେ, ଖବର ପାଇ ଶ୍ରଦ୍ଧାକର ବାବୁ ନିଜେ ଘରେ ଆସି ହାଜର । ମୁଁ ମାତ୍ର କେତେ ଘଣ୍ଟା ଭିତରେ କଟକ ଯିବା କଥା । ଇମର୍ଜେନ୍‌ସି ସମୟ । ବେତାର ଯୋଗେ ଆଦେଶ ଆସିଛି ଯେ ଯୋଗଦେବା ନିମନ୍ତେ, ଯେଉଁ ସାତଦିନ ପ୍ରସ୍ତୁତି ସମୟ ମିଳିବା ନିୟମ, ତାହା ମୋତେ ମିଳିବ ନାହିଁ । ଆଦେଶ ପାଇବା ମାତ୍ରେ ଆସି କଟକରେ ସି. ଆଇ. ଡ଼ି. ବିଭାଗର ଡ଼ି. ଆଇ. ଡ଼ି. ଭାବରେ ଯୋଗଦେବାକୁ ହେବ । ଶ୍ରଦ୍ଧାକର ବାବୁ କିଛି ଶୁଣିବାକୁ ନାରାଜ । ଯେଉଁ ଗାଡ଼ି କଟକ ଯିବାକୁ ପ୍ରସ୍ତୁତ ଥିଲା, ସେଥିରେ ବସି ତାଙ୍କ ଘରକୁ ଗଲି । ବାଟରେ କହିଲି "ମୁଁ ଯୋଗଦେଇ ତ ଆସିଥାନ୍ତି । ଦେଖା କରିଥାନ୍ତି ।" ନିଜର ଅନୁକରଣୀୟ ହସ ହସି ଶ୍ରଦ୍ଧାକର ବାବୁ କହିଲେ "କୋଇଲି ଲୋ ଗଲା ପୁତ୍ର ବାହୁଡ଼ି ନଇଲା ।" ସବୁ ତା' ଭିତରେ ରହିଗଲା । ତାଙ୍କ କଥା ସତ ହେଲା । ସମ୍ବଲପୁର ଫେରି ସ୍ତ୍ରୀ ପିଲାମାନଙ୍କୁ ନେଇ ପାରିଲି ନାହିଁ । ମୋ ସ୍ତ୍ରୀ ଏକାକୀ ଜିନିଷପତ୍ର ବାନ୍ଧି ଟ୍ରକରେ ଭରି କାରରେ ଆସିଲେ ।

ଅନେକ ଦିନ ଚାଲିଗଲି ଓଡ଼ିଶା ବାହାରକୁ । ଫେରିଲା ପରେ ଦିନେ ଦେଖାହେଲା ରାଜଭବନରେ । ମୋର ପହଞ୍ଚିବା ଟିକିଏ ବିଳମ୍ବ ହୋଇଯାଇଥାଏ । ଭାଗ୍ୟକୁ ଗଭର୍ଣ୍ଣର ସେ ସଭାକୁ ଆସି ନ ଥାନ୍ତି, ଶ୍ରଦ୍ଧାକର ବାବୁ ସବୁବେଳେ ଠିକ୍ ସମୟରେ ସବୁ ଆଡ଼େ

ଯାଆନ୍ତି । ସେ ଆସି ପ୍ରଥମ ଧାଡ଼ିରେ ବସିଛନ୍ତି । ମୋତେ ଦେଖିଦେଲେ । ମୁଁ ପଛରେ ଗୋଟିଏ ଚଉକିରେ ବସିବାକୁ ଯାଉଛି, ଦେଖିଲି ଶ୍ରଦ୍ଧାକର ବାବୁ ନିଜର ପ୍ରଥମଧାଡ଼ି ଚୌକି ଛାଡ଼ି ମୋ ପାଖକୁ ଆସୁଛନ୍ତି ଓ ଆସି ମୋ ପାଖରେ ବସିଗଲେ । ସେ ସନ୍ଧ୍ୟାରେ ଅନେକ ପୁରାତନ ସ୍ମୃତିର ଆଦାନ ପ୍ରଦାନ ହେଲା ।

ତାଙ୍କ ସହିତ ଶେଷ ଦେଖା ଡ଼ିସେମ୍ବର ମାସରେ । ତାରିଖଟା ମନେ ନାହିଁ । ସନ୍ଧ୍ୟାବେଳେ ଘରେ ବସିଛି, ଶ୍ରଦ୍ଧାକର ବାବୁଙ୍କ ଭାଇ କରୁଣାକର ବାବୁ ଆସି ହାଜର । "ଆଜ୍ଞା ଶୁଣନ୍ତୁ, ଭାଇ ଆସିଛନ୍ତି । ମୋତେ ଗାଡ଼ି ଦେଇ ପଠାଇଛନ୍ତି ନେଇ ଯିବାକୁ । କହିଲେ ସେ ଅବସର ନେଲେଣି । ଡ୍ରାଇଭର ନ ଥିବ । ନିଜେ ତ ଗାଡ଼ି ଚଳାଇବା ମନା...ବାଇପାସ୍ ସର୍ଜରୀ ପରେ ତୁ ଯାଇ ତାଙ୍କୁ ନେଇଆ । ମୁଁ ତ ଚୌକିରୁ ଉଠି ପାରୁନାହିଁ ନଚେତ ମୋତେ ନେଇଯାଇ ଥାଆନ୍ତୁ ତାଙ୍କ ପାଖକୁ ।" ସ୍ତବ୍ଧ ହୋଇଗଲି । କେତେ କଥା ମନେ ରଖିଛନ୍ତି ସେ । କେତେ ବିଚାରବନ୍ତ ବ୍ୟକ୍ତି । କେହି କାହା ପାଇଁ ଓ. ୟୁ. ଏ. ଟି. କଲୋନୀରୁ ଗାଡ଼ି ପଠାଇବ ? ତରତର ହୋଇ ମୋର ସଦ୍ୟ ଲିଖିତ କେତୋଟି ବହି ଓ ମୋରି ସମ୍ପାଦିତ 'ସମାରୋହ' ଓ ଦିବ୍ୟ ସନ୍ଦେଶ ପତ୍ରିକା ନେଇ ବାହାରି ପଡ଼ିଲି । ମୋର ସବୁ ପୁସ୍ତକ ତାଙ୍କୁ ଦେଇଛି । ସେ ତାଙ୍କର ସମସ୍ତ ପୁସ୍ତକ ମୋତେ ଦେଇଛନ୍ତି । ଯାହା ସେ ଦେଖି ନାହାନ୍ତି, ତାକୁ ସବୁ ନେଇ ତାଙ୍କ ହାତରେ ଅର୍ପଣ କରିଦେଲି । ବାରଣ୍ଡାରେ ଗୋଟିଏ ଆରାମ ଚୌକିରେ ଆଉଜି ଯାଇଛନ୍ତି ଶ୍ରଦ୍ଧାକର ବାବୁ । ମୋତେ ଦେଖି ଉଠି ପଡ଼ିବାକୁ ଚେଷ୍ଟା କଲେ । ମୁଁ ହାତ ଧରି ବସାଇଦେଲି । ବହି ଓ ପତ୍ରିକା ଦେଖି ଖୁସି ହୋଇଗଲେ ଓଲଟେଇ ଦେଇଗଲେ । ଅଜସ୍ର ଆଶୀର୍ବାଦ ତାଙ୍କର, ବୋଳି ହୋଇଗଲା ବହିଗୁଡ଼ିକରେ ।

'ଆପଣ ମୋତେ ଟପିଗଲେ ଦୁର୍ଗାମାଧବ ବାବୁ । ମୁଁ ମୋ ନୂଆ ବହି ଆଣିବାକୁ ଭୁଲି ଯାଇଛି ।"

ସେହି କଥାବାର୍ତ୍ତା । ସ୍ୱରରେ ଟିକିଏ କମ୍ପନ ନାହିଁ । ଦୁରାରୋଗ୍ୟ କ୍ୟାନସର ଯେ ତାଙ୍କ ଭିତରେ ଚରିଯାଇଛି କେହି ଏ କଥା ଭାବିପାରିବେ ନାହିଁ ।

ଆପଣଙ୍କର ଏ ପତ୍ରିକା ଦୁଇଟି ଦେଖି ଭାବୁଛି, ମୁଁ ସେହିପରି ଗୋଟିଏ ସମ୍ଭ୍ରାନ୍ତ ପତ୍ରିକା ସମ୍ଭଲପୁରରୁ ସମ୍ପାଦନା କରିବି ।" ଜୀବନର ଶେଷ ମୁହୂର୍ତ୍ତରେ ମଧ୍ୟ ଯୋଜନା !!!

ଦେଶରେ ହାଇଗୁଲ, କେଉଁ ଆଡକୁ ସମାଜ ଗତି କରୁଛି ସବୁ ଉପରେ ତାଙ୍କର ସ୍ପଷ୍ଟ ମତ ସେ ଅନର୍ଗଳ ଭାବେ କହି ଚାଲିଗଲେ । ଭାଇକୁ ଡାକି କହିଲେ, କ'ଣ ଗାଡ଼ି ପ୍ରସ୍ତୁତ ? ବାହାରିବା ?

ସେତେବେଳକୁ ରାତି ଆଠଟା ହେଲାଣି । କୁଆଡେ ଯିବେ । କରୁଣାକର ବାବୁ କାନରେ ଚୁପ୍ ଚୁପ୍ କହିଲେ, "ବର୍ତ୍ତମାନ ସମ୍ବଲପୁର ବାହାରିବେ ବୋଲି ବସିଛନ୍ତି । ଦିନବେଳେ ଛାତ୍ରମାନଙ୍କର ଷ୍ଟ୍ରାଇକ୍ ଓ ପୋଡାଜଳା ଯୋଗେ ଯାଇ ପାରୁନଲେ ନାହିଁ ବୋଲି ବ୍ୟସ୍ତ ହେଉଥିଲେ ।

ମୁଁ କହିଲି, "ରାତିରେ କାହିଁକି ଯିବେ ? ବିଶ୍ରାମ କରନ୍ତୁ । ପାହାନ୍ତିଆ ଗାଡ଼ିଟା ବେଳେ ଗଲେ, ଛାତ୍ରମାନେ ହିଂସାକାଣ୍ଡ ଆରମ୍ଭ କରିବା ଆଗରୁ ପହଞ୍ଚିଯିବେ ।"

କିଛି ସମୟ ଭାବିଲେ ।

"ହିଁ ସେଇଆ କଲେ ଭଲ ହେବ । ଆପଣ କହୁଛନ୍ତି । ମୁଁ ଅନ୍ୟଥା କରିପାରୁ ନାହିଁ ।"

ନମସ୍କାର ଜଣାଇ ଫେରିଲି । କରୁଣାକର ବାବୁ ବାଟରେ କହିଲେ, "ଆମେ ସମସ୍ତେ ସେହି କଥା କହି କହି ଥକି ଯାଇଥିଲୁଁ । ଆପଣ କହିଲେ ବୋଲି ଯାହାହେଉ ହିଁ କଲେ ।"

ଡ଼ିସେମ୍ବର ୨୦ରେ କରୁଣାକର ବାବୁ ପୁଣି ହାଜର । ମୁଁ ଡରିଗଲି ଅଶୁଭ ଖବର ନୁହେଁ ତ । ସେ ମୋତେ ବଢ଼ାଇଦେଲେ ଗୋଟିଏ ପ୍ୟାକେଟ ଓ ଗୋଟିଏ ଚିଠି । "ଭାଇ ପଠାଇଛନ୍ତି । ପ୍ୟାକେଟରେ ବହି ଦେଇଛନ୍ତି ବୋଧହୁଏ । ନିଜେ ବାନ୍ଧିଛନ୍ତି ପ୍ୟାକେଟଟି । ଆମକୁ ଛୁଆଁଇ ଦେଲେ ନାହିଁ ।"

ଏକାନ୍ତ ସ୍ନେହପୂର୍ଣ୍ଣ ଚିଠିଟି ସହ ନିଜ ଲିଖିତ ପୁସ୍ତକ ସେ ପଠାଇଛନ୍ତି ।

ବହୁମୁଖୀ ପ୍ରତିଭାଧର ଏହି ଦୁର୍ଲଭ ବ୍ୟକ୍ତିଙ୍କର ଦେହାବସାନ ହେଲା ପାଞ୍ଚ ଜାନୁଆରୀ ୧୯୯୩ ରାତିରେ । ଏକ ସ୍ୱୟଂ ସମ୍ପୂର୍ଣ୍ଣ, ନିର୍ଭୟ ଓ ସଫଳ ଜୀବନଯାପନ କରି ସେ ଚାଲିଗଲେ । ଏ ଅଭାଗା ତାଙ୍କର ଶେଷ ଚିଠିର ଉତ୍ତର ଦେଇପାରିଲା ନାହିଁ । ତାଙ୍କର ସ୍ନେହସିକ୍ତ ଅନୁଜ ହାତରେ ବହିଟକ ପହଞ୍ଚିଛି । ଶିବାନନ୍ଦ ସ୍କୁଲରେ ଜାତୀୟ ସଂହତି ଯୁବଶିବିର ପାଳନରେ ମୁଁ ଅହୋରାତ୍ର କାର୍ଯ୍ୟବ୍ୟସ୍ତ ରହି ତାଙ୍କୁ ଚିଠି ଦେଇ ପାରିଲି ନାହିଁ । ସେ ମୋତେ କ୍ଷମା କରନ୍ତୁ ଓ ତାଙ୍କର ଆଶୀର୍ବାଦଧାରା ମୋ ଉପରେ କେବଳ କାହିଁକି ସମଗ୍ର ଓଡ଼ିଆ ଜାତି ଉପରେ ଅନବରତ ବର୍ଷିଯାଉ । ଆମେ ସମସ୍ତେ ତାଙ୍କରି ପଦାଙ୍କ ଅନୁସରଣ କରିପାରିଲେ ସେ ଅମର ଆତ୍ମା ଶାନ୍ତି ପାଇବେ ।

"ଚନ୍ଦ୍ରାଲୋକ"
ପ୍ଲଟ ନଂ ଡ଼ି ୯, ବିଜେବି ନଗର
ଭୁବନେଶ୍ୱର-୭୫୧୦୧୪

# ସ୍ମୃତି ତର୍ପଣ

**ଡଃ ଶଶାଙ୍କର ସୂପକାର**

ଅସହଯୋଗ ଆନ୍ଦୋଳନର ବ୍ରାହ୍ମମୁହୂର୍ତ୍ତ, ମୋର ଜୀବନର ପ୍ରଭାତ ସମୟ ଥିଲା । ମହାତ୍ମାଗାନ୍ଧୀଙ୍କର ମୋହନ ମନ୍ତ୍ରରେ ସମସ୍ତ ଭାରତବର୍ଷ ଦୀକ୍ଷିତ ହୋଇଥିଲା । ବ୍ରିଟିଶ ସରକାରଙ୍କ ସହିତ ସମ୍ପୂର୍ଣ୍ଣ ଅସହଯୋଗ କରି ସ୍କୁଲ ଓ କଲେଜ ଛାତ୍ରଙ୍କୁ ସରକାରୀ ବିଦ୍ୟାଳୟ ବର୍ଜନ ଓ ଓକିଲମାନଙ୍କୁ କଚେରୀ ବର୍ଜନ କରିବାକୁ ମହାତ୍ମାଗାନ୍ଧୀ ଡାକରା ଦେଇଥାନ୍ତି । ସେ ଯୁଗରେ ଏ ଦେଶ ପାଇଁ ଇଂଲଣ୍ଡର ମାଞ୍ଚେଷ୍ଟରରୁ ଧୋତି, ଶାଢୀ ଓ ଅନ୍ୟାନ୍ୟସବୁ ରକମର ଲୁଗା ଆସି ଏ ଦେଶରେ ଶସ୍ତା ଓ ଜନପ୍ରିୟ ହୋଇଥିଲା, ମହାତ୍ମାଗାନ୍ଧୀ ବିଦେଶୀ ବର୍ଜନର ଆହ୍ୱାନ ଦେଇ ଖଦୀ ଲୁଗାକୁ ଲୋକପ୍ରିୟ କଲେ, ଦେଶର ଆର୍ଥିକ ପରାଧୀନତା ଦୂର କରିବା ପାଇଁ ।

୧୯୨୧ ମସିହା ଜାନୁଆରୀ ୧ ତାରିଖରେ ନାଗପୁର କଂଗ୍ରେସ ଅଧିବେଶନ ପରେ ଦେଶବ୍ୟାପୀ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଏହି ଆନ୍ଦୋଳନ ଓଡ଼ିଶା ମଧ୍ୟରେ ସମ୍ବଲପୁରଠାରେ ପ୍ରବଳ ରୂପ ଧାରଣ କଲା । ସେ ସମୟରେ ପଣ୍ଡିତ ନୀଳକଣ୍ଠ ଦାସ କଲିକତା ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟାପନା କାର୍ଯ୍ୟ କରୁଥିଲେ । ପଣ୍ଡିତ ମହାଶୟ ସ୍ଥିରକଲେ ସମ୍ବଲପୁର ଯାଇ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିବେ ।

ସେହି ଜାନୁଆରୀ ୬ ତାରିଖ ଦିନ ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ ନୀଳକଣ୍ଠ ସମ୍ବଲପୁରର ଭଗୀରଥ ମିଶ୍ରଙ୍କ ସହିତ ଆସି ସମ୍ବଲପୁରରେ ପହଞ୍ଚିଲେ ।

ଅଧ୍ୟାପକର ଶାନ୍ତମୟ ଜୀବନ ଛାଡ଼ି ଅନିଶ୍ଚିତ ରାଜନୀତିର ଝଡ଼ଝଞ୍ଜାରେ ଯୋଗଦେବା ପଣ୍ଡିତ ନୀଳକଣ୍ଠଙ୍କ ପକ୍ଷରେ କେତେ ତ୍ୟାଗର ସ୍ୱୀକୃତି, ତାହା ସହଜରେ ଅନୁମାନ କରାଯାଇପାରେ । ଆଜିକାଲି କଲିକତାର କେଉଁ ସ୍ନାତକୋତ୍ତର ଶ୍ରେଣୀର ଅଧ୍ୟାପକ ଏକ ମଫସଲ ସ୍କୁଲରେ ଶିକ୍ଷକ ହେବାକୁ ମନ ବଳାଇବ ? ପୁଣି ରାଜନୀତି କରି ସେତେବେଳର ବିଦେଶୀ ଦମନ ଲୀଳାର ଶରବ୍ୟ ହେବା ପାଇଁ ?

ସୁନାମଧନ୍ୟ ସହକର୍ମୀ ଅଧ୍ୟାପକ ଡଃ ରମେଶ ଚନ୍ଦ୍ର ମଜୁମଦାର ପଣ୍ଡିତ ନୀଳକଣ୍ଠଙ୍କୁ ସାଶ୍ରୁନୟନରେ ବିଦାୟ ଦେଇଥିଲେ । ସମ୍ବଲପୁରରେ ପହଞ୍ଚି ପଣ୍ଡିତେ ବିପୁଳ ସମ୍ବର୍ଦ୍ଧନା ପାଇଲେ । ସେ ଲେଖିଛନ୍ତି—

"ଷ୍ଟେସନରେ ଲୋକେ ଅପେକ୍ଷା କରିଛନ୍ତି । ଲୋକେ ମଧ୍ୟ ଖଣ୍ଡିଏ ମଟରକାର ଆଣିଥିଲେ । ସେଇଠାରୁ ବିରାଟ ଶୋଭାଯାତ୍ରାରେ ସମସ୍ତ ସମ୍ବଲପୁର ବୁଲିଥିଲୁ । ଦ୍ୱାରେ ଦ୍ୱାରେ ଅଭ୍ୟର୍ଥନା, ଫୁଲମାଳ, କିଏ ଚନ୍ଦନ ଦେଇ ମୁଣ୍ଡରେ ଗୁଣ୍ଡଲ ପକାଉଥାଏ ଓ

ଛଡ଼ା ନଡ଼ିଆ ଆଣି ମୁଣ୍ଡରେ ଲଗାଉଥାଏ । ଯୁବତୀମାନେ ଆସି ମୁଣ୍ଡରେ ଚନ୍ଦନ ସିନ୍ଦୁର ଦେଉଥାନ୍ତି । ସେ ଶୋଭଯାତ୍ରାର ଦୃଶ୍ୟ ଭୁଲିବାର ନୁହେଁ ।......"

'ସେ ମୋର ପିଲଦିନର କଥା ସମ୍ବଲପୁର ସହରରେ ଶୋଭଯାତ୍ରା । ବାଲିବନ୍ଧା ଘାଟରେ କେତେଥର ସଭା । ବିଦେଶୀ କପଡ଼ା ଜମା କରି ପୋଡ଼ିବାର ଦୃଶ୍ୟ । ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ଭଗୀରଥ ମିଶ୍ର, ଲକ୍ଷ୍ମୀନାରାୟଣ ମିଶ୍ର ଆଦିଙ୍କର ଓଜସ୍ୱିନୀ ବକ୍ତୃତା—ଅଳ୍ପ ଅଳ୍ପ ମନେ ଅଛି ।

ସମ୍ବଲପୁର ସହରରେ ଏକମାତ୍ର ଉଚ୍ଚ ଇଂରେଜୀ ସରକାରୀ ବିଦ୍ୟାଳୟ, ଜିଲ୍ଲା ସ୍କୁଲ । ସେ ସ୍କୁଲରୁ ଅନେକ ଛାତ୍ର ବାହାରି ଆସିଲେ ଅସହଯୋଗର ଡାକରା ପାଇ । ସେ ବିଷୟରେ ପଣ୍ଡିତ ମହାଶୟ ଲେଖିଛନ୍ତି:—

"ଏଣେ ସ୍କୁଲକୁ ଖାଲି କରି ଛାତ୍ରମାନଙ୍କୁ ଜାତୀୟ ବିଦ୍ୟାଳୟକୁ ଆଣିବାକୁ ହେବ । ଦିନକର ଶୋଭଯାତ୍ରା ମନେ ଅଛି । ମୁଁ ଆଗେ ଆଗେ ଚାଲିଥାଏ । ସହଯୋଗୀ ଓ ଛାତ୍ରମାନେ ପଛରେ ଚାଲୁଥାନ୍ତି । ମୁଁ ସେତେବେଳେ ଗୀତ ଲେଖୁଥାଏ । ସେ ଗୀତ ଶୋଭଯାତ୍ରାରେ ବୋଲ ହେଉଥାଏ । ଗୋଟିଏ ଗୀତ ମୋ ମନେ ପଡୁଛି । କାହିଁକିନା ସେ ଗୀତଟି ବୋଲି ପାଦ ପକାଇ ଚାଲିଲାବେଳେ ଛାତ୍ରମାନେ, ଜିଲ୍ଲା ସ୍କୁଲରୁ ହେଡମାଷ୍ଟର ଓ ଅନ୍ୟ ମାଷ୍ଟରମାନଙ୍କୁ ନମାନି ସ୍କୁଲରୁ ବାହାରି ଆମ ସଙ୍ଗେ ଚାଲିଲେ । ମନେ ଅଛି ପୁରୀ ଜିଲ୍ଲା ନିମାପଡ଼ାର ସ୍ୱର୍ଗତ ଶ୍ରୀ ମଧୁସୂଦନ ଦାଶ ଥାନ୍ତି ହେଡ଼ମାଷ୍ଟର । ସେ ମଧ୍ୟ ବାହାରକୁ ଆସି ଖାଲି ମତେ ଚାହିଁ ରହିଲେ । ପିଲାଏ ଛାଡ଼ି ଆସିବାରେ ତାଙ୍କ କରୁଣ ଦୃଶ୍ୟ ଓ ସମବେଦନା ବ୍ୟାପକ ଆଗ୍ରହ ବ୍ୟଞ୍ଜିତ ମୁଖ ଏବେ ବି ମନେ ପଡୁଛି । ସେ ଗୀତର ଦୁଇଟି ମାତ୍ର ପଦ ମନେ ହେଉଛି । ଗୀତଟି ଓଡ଼ିଆ ମିଶା ହିନ୍ଦୀରେ ଲେଖା ହିଦିଏ—

"ସ୍ୱରାଜ ଭୟା ଅଲବତ୍ ହୋଗା
ଛୋଡକେ ଆଓ ଗୋଲମୀ
ଭାରତ ଲଡ଼୍‌କ ଜୁଲମ ହୋକେ
କାହେ କରୋ ବଦନାମୀ । ୧ ।
ସ୍କୁଲ, କଚେରୀ, କାଉନସିଲ କୋ
ଇୟାଦ ରଖ୍‌ଖୋ ବାବୁଜୀ,
ମାୟା ଏସବ୍ ଗୋଲମୀକା
ଇସ୍‌ମେ ନାହିଁ ଭୁଲେଙ୍ଗୀ । ୨ ।

ସମ୍ବଲପୁର ଫ୍ରେଜର ବ୍ଲକରେ ଜାତୀୟ ବିଦ୍ୟାଳୟ ସ୍ଥାପିତ ହେଲା । ପଣ୍ଡିତ ମହାଶୟ ଏହାର ହେଡ୍‌ମାଷ୍ଟର ଥିଲେ । ଏ ବିଦ୍ୟାଳୟର ବିଶେଷତ୍ୱ ଥିଲା—ଏଥିରେ ପାଠ ସହିତ ଧନ୍ଦାମୂଳକ ଶିକ୍ଷା ଦିଆଯାଉଥିଲା । ସୂତାକଟା, ଲୁଗାବୁଣା ଓ ବଢ଼େଇ କାମ ମଧ୍ୟ ଏଠାରେ ଶିକ୍ଷା ଦିଆଯାଉଥିଲା ।

ମୋ ବାପା ଜଣେ ସ୍ୱଦେଶୀ ପ୍ରେମୀ ଥିଲେ । ସେ କଂଗ୍ରେସ ସଭ୍ୟ ସଂଗ୍ରହ କରିବାରେ ଖୁବ୍ ପରିଶ୍ରମ କରୁଥିଲେ । ଏ ବିଷୟଟି ମଧ୍ୟ ପଣ୍ଡିତ ମହାଶୟ ଉଲ୍ଲେଖ କରିଛନ୍ତି ।

ପଣ୍ଡିତ ନୀଳକଣ୍ଠ ସମ୍ବଲପୁରରେ ଜାତୀୟ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ରୂପେ ମାତ୍ର ନଅମାସକାଳ ହେଡ୍‌ମାଷ୍ଟର ଥିଲେ । ଏହି ଅଳ୍ପ ସମୟ ମଧ୍ୟରେ ସେ ପ୍ରଧାନ ଶିକ୍ଷକତା ଓ ରାଜନୈତିକ ଆନ୍ଦୋଳନ ଛଡ଼ା ସମାଜ ସେବାରେ ମଧ୍ୟ ଉଲ୍ଲେଖଯୋଗ୍ୟ ଆଦର୍ଶ ସ୍ଥାପନ କରିଥିଲେ । ସେ ବିଷୟରେ ସେ ଲେଖିଛନ୍ତି—

"ମଫସଲ ଗାଁମାନଙ୍କରେ ହଇଜା ଓ ବସନ୍ତ ପ୍ରଭୃତି ମହାମାରୀର ଭୀଷଣ ଭୟ ସେତେବେଳକୁ ବଡ଼ ତୀବ୍ର ଭାବରେ ଥାଏ । ସେ କଥା ଆଜି ଲୋକ କଳ୍ପନା କରି ପାରିବେ ନାହିଁ । କାହାକୁ ହଇଜା ହେବାର ଦେଖାଗଲେ ଲୋକେ ସେ ଘର ପାଖଆଖ ଛାଡ଼ି ପଳାନ୍ତି । ବେଳେ ବେଳେ ଗୋରୁରେ ଦଉଡ଼ା ବାନ୍ଧି ସେଥିରେ ହଇଜା ମଲାକୁ ବାନ୍ଧି ଛାଡ଼ି ଦିଅନ୍ତି ସେ ମଲା ଘୋଷାରି ହୋଇ ବାଟରେ ମରି ଗାଁ ବାହାରକୁ ଚାଲି-ଯାଏ । ରୋଗୀଙ୍କି କେହି ପାଣି ମୁନ୍ଦାଏ ହେଲେ ଦେବାକୁ ନ ଥାଏ ଆଉ ବର୍ଣ୍ଣନା କରି ପାରିବି ନାହିଁ । ଏହାର ବର୍ଣ୍ଣନା ଶୁଣିଲି । ଶୁଣିଲି ମଫସଲର ବଡ଼ଗାଁ ମାନପୁରରେ ହଇଜା ଲାଗିଛି । ସ୍କୁଲ ପିଲାଙ୍କୁ ସାଙ୍ଗରେ ଧରି ମୁଁ ହୋମିଓପାଥି ବାକ୍‌ସ ଆଉ ଫିନାଇଲ, ପଟାସପରମାଙ୍ଗାନେଟ କିଛି ଧରି ସେ ଗାଁକୁ ଚାଲିଲି । ଲୋକେ ତଟସ୍ଥ । କେବଳ ସହର ନୁହେଁ, ଦୂର ମଫସଲ ପିଲାଏ ବି ଅଛନ୍ତି । ବଡ଼ ଧନୀ ଲୋକଙ୍କ ପିଲାଏ ବି ସାଙ୍ଗରେ ଅଛନ୍ତି । କେହି କିଛି କହିଲେ ନାହିଁ । ମୁଁ ଯାଇ ରୋଗୀମାନଙ୍କୁ ଘରେ ଦେଖି ସବୁ ପରିଷ୍କାର କରି ଧୂପଦେଇ ରୋଗୀକୁ ପାଣି ଦେଲି, ତାଜା କଲି, ଫିନାଇଲ, ପଟାସ-ପରମାଙ୍ଗାନେଟ ପ୍ରଭୃତିର ବ୍ୟବହାର ଶିଖାଇଲି । ଔଷଧ ଯାହାବି ଦେଲି, ସେତ ନଇ ବଢିକି ଦିଅଙ୍କ ରାଣ । କିନ୍ତୁ ସେଥିରେ ଅଦ୍ଭୁତ ଫଳ ହେଲା । ଯେଉଁଠାରେ ମୁଁ ଯାହା କରୁଥିଲି, ଲୋକେ ସବୁ ମାନୁଥିଲେ । ଭୟ ଘୃଣା ଛାଡ଼ି କାମରେ ଲାଗି ଯାଉଥିଲେ ।"

ପଣ୍ଡିତଜୀ ସମ୍ବଲପୁରରେ ନଅମାସ ମାତ୍ର କାର୍ଯ୍ୟ କଲା ପରେ 1921 ମସିହା ସେପଟେମ୍ବର ବା ଅକ୍‌ଟୋବର ମାସରେ ସମ୍ବଲପୁର ଛାଡ଼ି ଚାଲିଗଲେ । ତାଙ୍କର ସମ୍ବଲପୁର ଅବସ୍ଥିତି କାଳରେ 'ସେବା' ନାମକ ଏକ ସାପ୍ତାହିକ ପତ୍ରିକା ଜାତୀୟ ଆନ୍ଦୋଳନର ମୁଖପତ୍ର ରୂପେ ଭଗୀରଥ ମିଶ୍ରଙ୍କର ସମ୍ପାଦନାରେ ପ୍ରକାଶିତ ହୋଇଥିଲା ।

1959 ମସିହାରେ ପଣ୍ଡିତ ମହାଶୟ "1921 ରେ ସମ୍ବଲପୁରରେ ନଅମାସ" ଶୀର୍ଷକ ଏକ ପ୍ରବନ୍ଧ ଲେଖିଥିଲେ ଓ ଏହି ପ୍ରବନ୍ଧଟି ସେ କାଳର ଛାତ୍ର ସଂସଦର ମୁଖପତ୍ର "କିଶଳୟ" ରେ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧରେ ପଣ୍ଡିତ ମହାଶୟଙ୍କର ଉକ୍ତ ପ୍ରବନ୍ଧରୁ ଉଦ୍ଧୃତିମାନ ଦିଆଯାଇଛି ।

ସେ ଯୁଗ ଥିଲା ତ୍ୟାଗର ଯୁଗ । ଉତ୍ସର୍ଗୀକୃତ ଜୀବନର ପରିଚୟ ଆମେ ପାଉ ତାଙ୍କର ଉପରିବର୍ଣ୍ଣିତ ପ୍ରବନ୍ଧରୁ । ଅଠତିରିଶି ବର୍ଷ ବୟସର ଯୁବକଙ୍କର ଆକାଂକ୍ଷା ଓ ଆଦର୍ଶ "ଦେଶ ପାଇଁ କିଛି କାମ କରିବା" —ଏଥିରେ ପ୍ରତିଫଳିତ ହୋଇଛି ।

—2—

ଆହୁରି ଷୋହଳ ବର୍ଷ ଆଗର କଥା । ପଣ୍ଡିତ ନୀଳକଣ୍ଠଙ୍କର ସହପାଠୀ ସମ୍ବଲପୁର (ବା ବଲାଙ୍ଗୀର)ର ସ୍ୱର୍ଗତ ଭରତଚନ୍ଦ୍ର ନାୟକଙ୍କର ପ୍ରଣୀତ "ମୋର ପୂର୍ବ ସ୍ମୃତି କଥା"ରେ ପଣ୍ଡିତ ମହାଶୟଙ୍କର ବିଷୟରେ ଯେଉଁ ଉଲ୍ଲେଖ ଅଛି, ତାହା ତାଙ୍କର ପ୍ରଥମ ଯୌବନରେ ସ୍ୱଦେଶ ପ୍ରେମର ପ୍ରଥମ ଉନ୍ମେଷର ପରିଚୟ ଦିଏ ।

1905 ମସିହା ଅକ୍ଟୋବର 16 ତାରିଖ । ଓଡ଼ିଶା ତଥା ଭାରତ ଇତିହାସରେ ଏକ ସ୍ମରଣୀୟ ଦିବସ । ସେତେବେଳେ ରେଭେନସା କଲେଜ କଟକ କାଠଯୋଡ଼ି ନଦୀ କୂଳରେ ଅବସ୍ଥିତ ଥିଲା । ନୀଳକଣ୍ଠ ଓ ଭରତଚନ୍ଦ୍ର ସେହି କଲେଜର ଦୁଇଜଣ ଛାତ୍ର ।

ସେହିଦିନଠାରୁ ସମ୍ବଲପୁର ଲୋକଙ୍କର ଆକାଂକ୍ଷା ପୂରଣ ହୋଇ ଜିଲ୍ଲାଟି ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ ହୋଇ ଓଡ଼ିଶାରେ ମିଶିଲା । କୋର୍ଟ, କଚେରୀରେ ହିନ୍ଦୀ ଭାଷାର ପ୍ରଚଳନ ବାଧ୍ୟତାମୂଳକ ହୋଇଥିବା ଆଦେଶକୁ ଉଠାଇ ନିଆଯାଇ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ହେଲା । ସମ୍ବଲପୁରୀ ଯୁବକ ଛାତ୍ରମାନଙ୍କ ମନରେ ଆନନ୍ଦର ପ୍ଲାବନ ହେବା ସ୍ୱାଭାବିକ । ସେଦିନ ପୁଣି ସ୍ୱତନ୍ତ୍ର ଉତ୍କଳପ୍ରଦେଶର ବୀଜ ବୁଣା ହେଲା ସମ୍ବଲପୁରରେ, ଯାହାର ଫଳ ଫଳିଲା 31 ବର୍ଷ ପରେ ।

ଯାହା ହେଉ, ଏଦିନ ବଙ୍ଗଦେଶକୁ ଦୁଇଭାଗ କରି ପଶ୍ଚିମବଙ୍ଗ, ବିହାର ଓ ଓଡ଼ିଶାକୁ ନେଇ ଏକ ପ୍ରଦେଶ ଓ ପୂର୍ବବଙ୍ଗ, ଆସାମ ଆଦି ଅଞ୍ଚଳ ନେଇ ପୂର୍ବବଙ୍ଗ-ପ୍ରଦେଶ ଗଠନ କରାଗଲା । ବଙ୍ଗଦେଶରେ ପ୍ରବଳ ଉତ୍ତେଜନା ଓ ଆନ୍ଦୋଳନ ଦେଖାଦେଲା । ଦେଶବ୍ୟାପୀ ପରାଧୀନତା ବିରୁଦ୍ଧରେ ଯେଉଁ ଜନଜାଗରଣ ଦେଖା-ଯାଉଥିଲା, ତାହାକୁ ବଙ୍ଗ ବିଭାଜନ ବିକ୍ଷୁବ୍ଧ କଲା । ଏଇ ବଙ୍ଗ ଆନ୍ଦୋଳନର ପ୍ରତିକ୍ରିୟା ରେଭେନସା କଲେଜରେ ମଧ୍ୟ ଦେଖାଦେଲା । ସେ ସମ୍ବନ୍ଧରେ ଏକ ସୁନ୍ଦର ବର୍ଣ୍ଣନା ଦେଇଛନ୍ତି, ଭରତଚନ୍ଦ୍ର ।

ସେ ଦିନ ସକାଳୁ ଦଳେ ବଙ୍ଗାଳୀ ଯୁବକ ଆସି ହଷ୍ଟେଲରେ ସବୁ ଛାତ୍ରମାନଙ୍କ ହାତରେ ରଖି ଫିନ୍ଧାଇ ଦେଇ କହିଲେ "ଆଜି ନଗ୍ନପଦରେ ନଦୀରୁ ଗାଧୋଇ ଆସି, ସାରଦିନ ଉପବାସ ରହିବାକୁ ହେବ !" ଏହି ବଙ୍ଗାଳୀ ଯୁବକମାନଙ୍କର ନେତୃତ୍ୱ ନେଇଥିଲେ ନୀଳକଣ୍ଠ । ନୀଳକଣ୍ଠ ସମ୍ବଲପୁରୀ ଛାତ୍ରମାନଙ୍କର ସହଯୋଗ କାମନା କରିଥିଲେ, ଏହି ବ୍ରତରେ । କିନ୍ତୁ ସମ୍ବଲପୁରୀ ଛାତ୍ରମାନେ ଏଥିରେ ରାଜି ହେଲେ ନାହିଁ, କାରଣ ସେ ଦିନ ଥିଲା, ତାଙ୍କର ଆନନ୍ଦର ଦିନ । ସେମାନେ ଶୋକ ପାଳନ କରିବାକୁ ପ୍ରସ୍ତୁତ ନ ଥିଲେ । ଏକୋଇଶି ବର୍ଷ ବୟସରେ ପଣ୍ଡିତ ମହାଶୟ ଛାତ୍ରମାନଙ୍କୁ ରାଜନୈତିକ ନେତୃତ୍ୱ ଦେଇଥିବାର ଏହା ଏକ ନିଦର୍ଶନ ।

—2—

ରାଜନୈତିକ ଜୀବନରେ ଅନେକ ସୁଖ ଦୁଃଖ ମଧ୍ୟରେ, ଅନେକ ଝଡ଼ଝଞ୍ଜା ଭିତରେ ପଣ୍ଡିତ ନୀଳକଣ୍ଠ ଗତି କରିଛନ୍ତି । ସେ ଯୁଗର ନେତାମାନଙ୍କ ପରି ତାଙ୍କୁ ବହୁଦିନ ଜେଲ ଭୋଗିବାକୁ ପଡ଼ିଛି । ସେ କେନ୍ଦ୍ର ବିଧାନସଭାରେ ଏକ ସମ୍ମାନନୀୟ ଆସନ ଲାଭ କରିଥିଲେ ଓ କଂଗ୍ରେସ ଦଳ ନେତା ସ୍ୱର୍ଗତ ବୁଲାଭାଇ ଦେଶାଇଙ୍କର ଦକ୍ଷିଣ ହସ୍ତ ରୂପେ କାର୍ଯ୍ୟ କରିଥିଲେ । ବହୁ ବର୍ଷ ବିଧାୟକର ଅଭିଜ୍ଞତା ତାଙ୍କର ପାଣ୍ଡିତ୍ୟ ଓ ବାଗ୍ମୀତା ଦ୍ୱାରା ସମୃଦ୍ଧ ଥିଲା ।

ତା'ପରେ ମନେ ପଡ଼େ, 1937 ର ନିର୍ବାଚନ କଥା । ଏହାହିଁ ଥିଲା ସର୍ବଭାରତୀୟ ସ୍ତରରେ ଜାତୀୟ କଂଗ୍ରେସ ଦଳର ଲୋକପ୍ରିୟତାର ଏକ ଅଗ୍ନି ପରୀକ୍ଷା । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ରୂପେ ପଣ୍ଡିତଙ୍କ ଉପରେ ନିର୍ବାଚନ ପରିଚାଳନାର ଦାୟିତ୍ୱ ନ୍ୟସ୍ତ ଥିଲା । ସେ ମାତ୍ର ୫ ହଜାର ଟଙ୍କାରେ ସମଗ୍ର ପ୍ରଦେଶର କଂଗ୍ରେସ ଦଳକୁ ଓଡ଼ିଶା ରାଜ୍ୟରେ ସଂଖ୍ୟା ଗରିଷ୍ଠତା ହାସଲ କରାଇ ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳ ଗଠନ କରାଇଲେ । ସମ୍ବଲପୁର ଜିଲ୍ଲାରେ ଫକୀର ବେହେରା, ପ୍ରହ୍ଲାଦ ରାୟ ଲାଠଙ୍କ ଭଳି ଅନାମଧେୟ ଅଥଚ ତ୍ୟାଗପୂତ କଂଗ୍ରେସ ପ୍ରାର୍ଥୀ, ମହାରଥୀ ପ୍ରତିଦ୍ୱନ୍ଦୀମାନଙ୍କୁ ପରାଜିତ କଲେ । ସେ ଯୁଗରେ ତ୍ୟାଗର ମର୍ଯ୍ୟାଦା ଅର୍ଥ ଆଭିଜାତ୍ୟ, ଶିକ୍ଷାଗତ ଯୋଗ୍ୟତା ଆଦିଠାରୁ ଲୋକଙ୍କର ହୃଦୟର ଉଚ୍ଚତର ଆସନ ଲାଭ କରିଥିଲା । ପଣ୍ଡିତ ନୀଳକଣ୍ଠ ଯେ ଯୋଗ୍ୟବ୍ୟକ୍ତିମାନଙ୍କୁ ପ୍ରାର୍ଥୀରୂପେ ବାଛିଥିଲେ ଓ ନିର୍ବାଚନ ଅଭିଯାନକୁ ସୁପରିଚାଳିତ କରି ପାରିଥିଲେ, ତାହା ପ୍ରମାଣିତ ହେଲା ।

ଦ୍ୱିତୀୟ ମହାଯୁଦ୍ଧ ଘୋଷଣା ପରେ ଦେଶରେ ସବୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ । ଏହାପରେ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ କଂଗ୍ରେସରୁ ଇସ୍ତଫା ଦେଲେ ଓ ପଣ୍ଡିତ ଗୋଦାବରୀଶ ପାରଳା ମନ୍ତ୍ରିମଣ୍ଡଳରେ ଶିକ୍ଷାମନ୍ତ୍ରୀ ଭାର ଗ୍ରହଣ କଲେ ।

1955 ମସିହାରେ ପଣ୍ଡିତ ନୀଳକଣ୍ଠ ବିରୋଧୀ ଦଳ ଛାଡ଼ି କଂଗ୍ରେସ ଦଳରେ ଯୋଗ ଦେଲେ । ଆମ୍ଭେମାନେ କ୍ଷୁବ୍ଧ ହେଲୁଁ । କିନ୍ତୁ ଉପାୟ କ'ଣ ? ସ୍ୱାଧୀନ ଜନସଂଘ ଦଳର ମୂଳଦୁଆ ଗଲେ । ଦଳଟି ଭାଙ୍ଗିଗଲା । ପଣ୍ଡିତ ଗୋଦାବରୀଶ ଆମର ଗଣତନ୍ତ୍ର ପରିଷଦରେ ଯୋଗଦେଲେ । ଆମେ ତାଙ୍କୁ ଦଳର ସଭାପତି କଲୁ । ସେ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ଆମ ଦଳର ସଭାପତି ହୋଇ ରହିଥିଲେ ।

1952 ମସିହା ଭୋଟରେ ଓଡ଼ିଶାରେ କଂଗ୍ରେସ ଦଳର ଦୁର୍ବଳତା ଜଣା ପଡ଼ିଥିଲା । 1957 ମସିହା ଭୋଟରେ କଂଗ୍ରେସ ଦଳ ଆହୁରି ଦୁର୍ବଳ ହୋଇପଡ଼ିଲା । ତଥାପି ପଣ୍ଡିତ ନୀଳକଣ୍ଠ କଂଗ୍ରେସ ଦଳରୁ ବିଧାନସଭାକୁ ନିର୍ଦ୍ୱନ୍ଦରେ ନିର୍ବାଚିତ ହେଲେ ଓ ବାଚସ୍ପତି ଆସନ ଅଳଙ୍କୃତ କଲେ ।

ପଣ୍ଡିତ ନୀଳକଣ୍ଠଙ୍କ ସାହିତ୍ୟ ସେବା ବିଷୟରେ ଲେଖିବା ମୋ ପକ୍ଷରେ ଧୃଷ୍ଟତା ମାତ୍ର । ତାଙ୍କ ପ୍ରଣୀତ ଗ୍ରନ୍ଥାବଳୀରୁ ତାଙ୍କର ପାଣ୍ଡିତ୍ୟ ତାଙ୍କର ସାହିତ୍ୟ ସାଧନାର ଯଥେଷ୍ଟ ପରିଚୟ ମିଳେ । ଓଡ଼ିଶାରେ ବହୁ ଅଳ୍ପ ଲୋକ ସାହିତ୍ୟ ଓ ରାଜନୀତି ଉଭୟ କ୍ଷେତ୍ରରେ ପାରଦର୍ଶିତା ଲାଭ କରିଛନ୍ତି । ଲୋକେ ରାଜନୈତିକ ଖ୍ୟାତିକୁ କାଳକ୍ରମେ ଭୁଲିଯାଆନ୍ତି । ସାହିତ୍ୟ ଚିରସ୍ଥାୟୀ ହୋଇ ରହେ । ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ଓ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ଛାଡ଼ି ଦେଲେ ଓଡ଼ିଶାରେ ଉଭୟ କ୍ଷେତ୍ରରେ ସ୍ମରଣୀୟ ହେବା ଭଳି ଆଉ କିଏ ଅଛନ୍ତି ?

ଯାହାହେଉ, ଏ ସ୍ମୃତିତର୍ପଣରେ କେତେକ ବ୍ୟକ୍ତିଗତ କଥା କହିବାକୁ ମନ ହେଉଛି । ପଣ୍ଡିତ ନୀଳକଣ୍ଠ 'ନବଭାରତ'ର ସମ୍ପାଦକ ଥିଲେ । ସେତେବେଳେ ମୁଁ କଲେଜରେ ଛାତ୍ର ଥିଲି । ଡକ୍ଟର ସଦାଶିବ ମିଶ୍ର (ସେତେବେଳକୁ ଡକ୍ଟର ହୋଇ ନ ଥାନ୍ତି) 'ଲୁଣକର' ବୋଲି ଏକ ପ୍ରବନ୍ଧ 'ନବଭାରତ'ରେ ପ୍ରକାଶ କଲେ ଲୁଣକରର ସମର୍ଥନରେ । ସେତେବେଳକୁ ମହାତ୍ମା ଗାନ୍ଧୀଙ୍କର ଲବଣ ସତ୍ୟାଗ୍ରହ ହୋଇ ସାରିଥାଏ । ମୁଁ ସେହି ସମୟରେ Economic Conquest of India ନାମକ ଏକ ପୁସ୍ତକ ପଢୁଥାଏ । ସେଥିରେ ଏ ଦେଶକୁ କିପରି ଓ କାହିଁକି ବିଲାତର ଲିଭରପୁଲରୁ ଲୁଣ ଆସି ଭାରତରେ ବିକ୍ରି ହେଉଥିଲା ଆବିଶ୍ୱାସ ହେଲେ ବି ସତ୍ୟ) ସେ ବିଷୟରେ ଓ ଅନ୍ୟାନ୍ୟ ଅନେକ ଚିତ୍ତାକର୍ଷକ ତଥ୍ୟଥିଲା । ମୁଁ ସେ ସବୁ ବିଷୟ ଲେଖି ଗୋଟିଏ ପ୍ରବନ୍ଧ 'ନବଭାରତ'ରେ ପ୍ରକାଶ ପାଇଁ ଦେଲି । ଏହା ପରେ 'ପ୍ରଥମ ମହାଯୁଦ୍ଧ ଓ ଭାରତ' ନାମକ ଆଉ ଏକ ଅର୍ଥନୀତି ସମ୍ପର୍କୀୟ ପ୍ରବନ୍ଧ ମୁଁ 'ନବଭାରତ'କୁ ପଠାଇଥିଲି ଓ ଉଭୟ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । 'ନବଭାରତ' ମାସିକ ପତ୍ରର ମାନ ଅତି ଉଚ୍ଚ ଥିଲା । ତେଣୁ ମୋ ଭଳି ଜଣେ ଯୁବକର ପ୍ରବନ୍ଧ ସେଥିରେ ପ୍ରକାଶିତ ହୋଇଥିବାରୁ ମୁଁ ବଡ଼ ଆତ୍ମପ୍ରସାଦ ଲାଭ କରିଥିଲି, ସେସବୁ ପଣ୍ଡିତ ନୀଳକଣ୍ଠଙ୍କର ଅନୁମୋଦନ ଲାଭ କରିଥିଲା ବୋଲି ।

ଆନୁଗତ୍ୟର ଦ୍ୱନ୍ଦ ରାଜନୀତିରେ ଅନେକ ସମୟରେ ଅପରିହାର୍ଯ୍ୟ ହୁଏ ଓ ସେଥିପାଇଁ ଲୋକପ୍ରିୟତା ମଧ୍ୟ ହରାଇବାକୁ ପଡ଼େ । ଓଡ଼ିଶାର ଦୁଇ ବିଶିଷ୍ଟ ପଣ୍ଡିତ ମହାଭାରତୀୟ ଆନୁଗତ୍ୟ ଛାଡ଼ି ଓଡ଼ିଶା ପ୍ରତି ଆନୁଗତ୍ୟ ପ୍ରକାଶ କରିବା ଶ୍ରେୟସ୍କର ମନେ କଲେ ।

ସେଥିପାଇଁ 1947 ନିର୍ବାଚନରେ ସେମାନେ ଭୋଟ ରାଜନୀତିରୁ ଦୂରେଇ ରହିଲେ ।

ମାତ୍ର 1952 ସାଧାରଣ ନିର୍ବାଚନ ପୂର୍ବରୁ ସେମାନେ ସ୍ୱାଧୀନ ଜନସଂଘ ନାମକ ଏକ ପ୍ରାଦେଶିକ ଦଳ ଗଠନ କଲେ ଏହି ଦଳର ଚାରିଜଣ ସଭ୍ୟ ମାତ୍ର ନିର୍ବାଚିତ ହେଲେ । ସାବାଳକ ଭୋଟରେ ନିର୍ବାଚିତ ହେବା କଠିନ ଥିଲା । ମାତ୍ର ଗୁଣାତ୍ମକ ଦୃଷ୍ଟିରୁ ଏହି ଦଳ ସଫଳ ଥିଲା ବୋଲି କୁହାଯାଇପାରେ, କାରଣ ଏ ଦଳରୁ ପୁରୀ ଜିଲ୍ଲାରୁ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ, ଗଞ୍ଜାମ ଜିଲ୍ଲାରୁ ଆଡଭୋକେଟ୍ ଶ୍ରୀ ରାମଚନ୍ଦ୍ର ମିଶ୍ର ଓ ଦଣ୍ଡପାଣି ଦାସ ନିର୍ବାଚିତ ହେଲେ ।

1952 ମସିହାର ଓଡ଼ିଶା ବିଧାନସଭା ଥିଲା ସମଗ୍ର ଓଡ଼ିଶାର ସାବାଳକ ଭୋଟ ଦ୍ୱାରା ନିର୍ବାଚିତ ପ୍ରଥମ ବିଧାନ ସଭା । ଏଥିରେ କଂଗ୍ରେସ ଦଳ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ଲାଭ ନକରି ମଧ୍ୟ ମନ୍ତ୍ରୀମଣ୍ଡଳ ଗଠନ କରିପାରିଥିଲା । ଏହି ବିଧାନସଭାକୁ ଓଡ଼ିଶାର ବହୁବିଶିଷ୍ଟ ବ୍ୟକ୍ତି ନିର୍ବାଚିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ପ୍ରାଣକୃଷ୍ଣ ପରିଜା, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରିଶ, ଦିବାକର ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ, ନିଶାମଣି ଖୁଣ୍ଟିଆ ଆଦି ବିରୋଧୀ ଦଳର ଆସନକୁ ଅଳଙ୍କୃତ କରିଥିଲେ । ମୁଁ ବିରୋଧୀ ଦଳର ନେତା ଥିଲି ଓ ବରିଷ୍ଠ ବିଧାୟକ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ଓ ଦିବାକର ବାବୁଙ୍କର ଅଭିଜ୍ଞତାରୁ ମୁଁ ଯଥେଷ୍ଟ ଉପକୃତ ହୋଇଥିଲି । ଉଭୟ ପଣ୍ଡିତ ମୋତେ ପୁତ୍ରତୁଲ୍ୟ ସ୍ନେହ କରୁଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଜ୍ୟେଷ୍ଠପୁତ୍ର ଅଶୋକ ମୋର ସହପାଠୀ ।

ପଣ୍ଡିତ ଗୋଦାବରିଶଙ୍କ ବସା ପାଖରେ ମୁଁ ରହୁଥିଲି ଓ ପଣ୍ଡିତ ନୀଳକଣ୍ଠଙ୍କ ଘରକୁ ମୁଁ ଅନେକ ଥର ଯାଇଛି । ଉଭୟ ପଣ୍ଡିତଙ୍କର ଦୈନନ୍ଦିନ ଜୀବନଯାତ୍ରାର ପାର୍ଥକ୍ୟ ମୋତେ ଅଭିଭୂତ କରିଥିଲା । ପଣ୍ଡିତ ନୀଳକଣ୍ଠଙ୍କର ବୟସ ସେତେବେଳେ 67 ବର୍ଷ । କିନ୍ତୁ ମୋର ମନେ ହୁଏ, ସେ ସ୍ୱାସ୍ଥ୍ୟରକ୍ଷାର କୌଣସି ନିୟମ ବୋଧହୁଏ ମାନୁ ନ ଥିଲେ । ବହୁତ ରାତି ପର୍ଯ୍ୟନ୍ତ ପଢିବା ତାଙ୍କର ଅଭ୍ୟାସ ଥିଲା । ତାଙ୍କର ଦୁଇଟି ମାତ୍ର ବ୍ୟସନ ପାଠ ଓ ମାଛ । ପଣ୍ଡିତ ଗୋଦାବରିଶଙ୍କ ଜୀବନଯାତ୍ରା ପ୍ରାୟ ଠିକ ଓଲଟା । ଅତି ସକାଳୁ ଉଠି ବୁଲନ୍ତି ଓ ସିଝା ପରିବା ଖାଆନ୍ତି । ନିୟମ ଓ ସମୟର ବଡ ଅନୁବର୍ତ୍ତୀ ହୋଇ ଚଳନ୍ତି । ସ୍ୱାସ୍ଥ୍ୟ ପ୍ରତି ଖୁବ୍ ସଚେତନ । ତଥାପି ପଣ୍ଡିତ ନୀଳକଣ୍ଠ 84 ବର୍ଷ ଆୟୁଷ ଘେନି ଅଧିକ ଦୀର୍ଘଜୀବୀ ହେଲେ । ପ୍ରୋଟିନ୍ ତାଙ୍କର ରକ୍ଷାକବଚ ଥିଲା ବୋଲି ମନେ ହୁଏ । ପଣ୍ଡିତ ଗୋଦାବରିଶ ତାଙ୍କର ବହୁ ପୂର୍ବରୁ 72 ବର୍ଷ ବୟସରେ ଦେହତ୍ୟାଗ କରିଥିଲେ ।

# ବାଲ୍ୟଶିକ୍ଷା ଓ ମଧୁସୂଦନ

ଡକ୍‌ଟର ଶ୍ରଦ୍ଧାକର ସୁପକାର

ଷାଠିଏ ବର୍ଷ ତଳର କଥା । ଆମେ ସେତେବେଳେ ନିମ୍ନପ୍ରାଥମିକ ଶ୍ରେଣୀର ଛାତ୍ର । ସେ ସମୟରେ ତହିଁର କେତେ ଦଶାବ୍ଦୀ ପୂର୍ବରୁ ଓ ତହିଁର ଅନେକ ବର୍ଷ ପରେ ମଧ୍ୟ ମଧୁସୂଦନ ରାଓଙ୍କ 'ବର୍ଣ୍ଣବୋଧ'ରୁ ଓଡ଼ିଆ ସ୍କୁଲରେ ପାଠ ଆରମ୍ଭ ହେଉଥିଲା । 'ବର୍ଣ୍ଣବୋଧ' ପରେ ତାଙ୍କ ଶିଶୁବୋଧ ଓ ଆଜିକାଲିର ଚତୁର୍ଥ ଶ୍ରେଣୀରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଓଡ଼ିଆଭାଷା ଓ ସାହିତ୍ୟ ଶିକ୍ଷାପାଇଁ ମଧୁବାବୁଙ୍କର 'ସାହିତ କୁସୁମ' ଓ 'ସାହିତ୍ୟ ପ୍ରସଙ୍ଗ' ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ ଥିଲା । ଆମେ କେବଳ ଆଜିର ଦ୍ୱିତୀୟ-ତୃତୀୟ ଶ୍ରେଣୀରେ ଚନ୍ଦ୍ରମୋହନ ମହାରଣାଙ୍କ 'କଥାବଳି' ପଢିଥିଲୁ ।

ନିମ୍ନଶ୍ରେଣୀର ପାଠ୍ୟ-ପୁସ୍ତକରେ କ୍ରମେ ପରିବର୍ତ୍ତନ ହୋଇ ପୂର୍ବେ 'ମା' 'ରମା' ଓ ଏବେ 'ଚଳ' 'ଅଖା'ରୁ ବର୍ଣ୍ଣ ପରିଚୟ ଆରମ୍ଭ ହେଉଛି । ଏ ଉଭୟ ପ୍ରଣାଳୀର ପାଠାରମ୍ଭର ଗୁଣାତ୍ମକ ତୁଳନା କରିବାର ଯୋଗ୍ୟତା ମୋର ନାହିଁ । ତେବେ ଏ କଥା ଜଣାଶୁଣା ଯେ ମଧୁସୂଦନଙ୍କ ସମୟରୁ ଓ ତହିଁ ପୂର୍ବରୁ ବହୁ ଶତାବ୍ଦୀଧରି ଓଡ଼ିଆ, ବଙ୍ଗଳା ଓ ଅନ୍ୟାନ୍ୟ ସଂସ୍କୃତଜ ଭାଷାରେ ବର୍ଣ୍ଣ ପରିଚୟରୁ ଭାଷା ଶିକ୍ଷା ହେଉଥିଲା । ଏବେ ମଧ୍ୟ ଇଂରାଜୀରେ A for Apple, B for Bell C for Cat ଇତ୍ୟାଦି ଆମର ଇଂରେଜୀ କିଣ୍ଡରଗାର୍ଟନ କ୍ଲାସ୍‌ମାନଙ୍କରେ ଶିକ୍ଷା ଦିଆଯାଉଛି ।

ପ୍ରାଚୀନ କାଳରେ ମଧ୍ୟ ଏ ଦେଶରେ ପ୍ରାଥମିକ ଶିକ୍ଷା ବର୍ଣ୍ଣ ପରିଚୟରୁ ଆରମ୍ଭ ହେଉଥିଲା । ସେଥିପାଇଁ ବେଦାଙ୍ଗର ପ୍ରଥମ ସୋପାନ ହେଲା 'ଶିକ୍ଷା' । ବ୍ୟାକରଣ ମଧ୍ୟ ବର୍ଣ୍ଣର ଉଚ୍ଚାରଣଗତ ବିଭାଗରୁ ଆରମ୍ଭ ହେଉଥିଲା । ପ୍ରାୟ ଶହେ ବର୍ଷ ପୂର୍ବେ 'ସିଦ୍ଧିରସ୍ତୁ' ଘୋଷିବାରେ ବିଦ୍ୟାରମ୍ଭ ହେଉଥିଲା । ଓଡ଼ିଆ ଭାଷାର ବର୍ଣ୍ଣମାଳା, ବିଜ୍ଞାନ ସମ୍ମତ ଓ ଲେଖା ଅକ୍ଷର ଦେଖିବାମାତ୍ରେ ପଢିବାରେ ବା ଉଚ୍ଚାରଣ କରିବାରେ କୌଣସି ଅସୁବିଧା ନାହିଁ । ଇଂରେଜୀ ଉର୍ଦ୍ଦୁ ଆଦି ଭାଷାରେ ବର୍ଣ୍ଣମାଳା ଓ ପଦବିନ୍ୟାସ ଜଟିଳ ।

'ବର୍ଣ୍ଣବୋଧ' ପଢିଲେ ବର୍ଣ୍ଣମାଳା ଓ ଯୁକ୍ତାକ୍ଷର ବିଷୟରେ ଉତ୍ତମ ଜ୍ଞାନ ହେଉଥିଲା । ଆମେ ସାଧାରଣତଃ ବର୍ଣ୍ଣାଶୁଦ୍ଧି ଓ ଯୁକ୍ତାକ୍ଷର ପଠନ ଓ ଲିଖନ ବିଷୟରେ ଆଧୁନିକ ଯୁଗରେ ବିଦ୍ୟାଳୟର ଉଚ୍ଚ ଶ୍ରେଣୀମାନଙ୍କରେ ମଧ୍ୟ ଯେଉଁ ପ୍ରମାଦ ଛାତ୍ରମାନଙ୍କ ମଧ୍ୟରେ ଦେଖିବାକୁ ପାଉ, ତାହା 'ବର୍ଣ୍ଣବୋଧ' ପଢ଼ା ହେଉଥିବା ସମୟରେ ଏତେ ମାତ୍ରାରେ ନ ଥିଲା । ଶବ୍ଦମାନଙ୍କରେ ତିନି ଶ' ଏବଂ ଜ ଓ ଯ ମଧ୍ୟରେ ଯେଉଁ ପାର୍ଥକ୍ୟ ତାହା ପାଠର ମୂଳଦୁଆରୁ ଶିଶୁମାନଙ୍କର ଧାରଣାରେ ପଶିଯାଉଥିଲା ।

ଅବଶ୍ୟ ଲିପି ସଂସ୍କାରକମାନେ କହିପାରନ୍ତି ଯେ ତିନୋଟି ଶ ଓ ଦୁଇଟି ଜ ର ଦରକାର ନାହିଁ । ମାତ୍ର ଏହି ଶ ସ ଷ ଅକ୍ଷର ଉପରେ ଆବଶ୍ୟକତା ସଂସ୍କୃତଜାତ ପ୍ରତ୍ୟେକ ଭାଷାରେ ରହିଛି । ଓଡ଼ିଆରେ ଅବଶ୍ୟ ଓଷ୍ଠ୍ୟ ବ ଓ ଅନ୍ତଃସ୍ଥ ଓ୍ ର ପ୍ରଭେଦ ଅସ୍ପଷ୍ଟ । ମାତ୍ର ତିନୋଟି ଶ କୁ ସର୍ବଂତୋଭାବେ ସମାନ କରିଦେଲେ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ । 'ନ' ଓ 'ଣ' କୁ ଯେପରି ଏକ କରିବା ସମ୍ଭବ ନୁହେଁ ସେହିପରି ଭୂଷଣ ବା ବିଷ୍ଣୁ ବା ପ୍ରଶ୍ନ ଲେଖିବା ପ୍ରାୟ ଅସମ୍ଭବ । କାର୍ଯ୍ୟ ଲେଖିଲେ ଅଡୁଆ ଲାଗେ ।

ଯୁକ୍ତାକ୍ଷର ବେଳକୁ ମଧ୍ୟ ସେହିପରି ଅସୁବିଧା । 'ପଣ୍ଡିତ' କୁ 'ପଂଡ଼ିତ' ଲେଖାଯାଇପାରେ; ମାତ୍ର କେହି କେହି ଏହାକୁ ପଂଡ଼ିତ ବୋଲି ପଢ଼ିପାରନ୍ତି । ଇଂରାଜୀରେ ଅବଶ୍ୟ ଛବିଶଟି ଅକ୍ଷର ଅଛି । ମାତ୍ର ସେ ଭାଷାରେ ଉଚ୍ଚାରଣ ଓ ବନାନର ଗୋଲକଧନ୍ଦା ଅଛି । ଓଡ଼ିଆରେ ମାତ୍ରା ଯୁକ୍ତାକ୍ଷର ଯୋଗୁଁ ଆମକୁ ଅନେକ ଅକ୍ଷର ଶିଖିବାକୁ ପଡୁଛି; ମାତ୍ର ପିଲାଦିନରୁ ଏସବୁ ଶିଖିଲେ ପରବର୍ତ୍ତୀ କାଳରେ ଅସୁବିଧା ହୁଏନାହିଁ ।

ମଧୁବାବୁ 'ବର୍ଣ୍ଣବୋଧ'ରୁ ଆରମ୍ଭ କରି ତାଙ୍କର ପାଠ୍ୟପୁସ୍ତକମାନଙ୍କରେ ଅନେକ ନୀତିଶିକ୍ଷା ଦେଇଛନ୍ତି । ପାଶ୍ଚାତ୍ୟ ଶିକ୍ଷାବିଦମାନଙ୍କ ମଧ୍ୟରୁ ପ୍ଲେଟୋ, କୋମେନିୟସ, ପେଷ୍ଟୋଲେଜି, ଫ୍ରୋୟେବେଲ ଆଦି ମନୀଷିମାନେ ଆଦର୍ଶବାଦୀ ଥିଲେ । ଆମ ଦେଶରେ ମଧ୍ୟ ପ୍ରାଚୀନ କାଳରୁ 'ସତ୍ୟଂ ବଦ' 'ଧର୍ମଂ ଚର' ଆଦି ଉଦ୍ଦେଶ୍ୟରେ ଶିକ୍ଷା ଆରମ୍ଭ ହେଉଥିଲା । ପେଷ୍ଟୋଲେଜି ଓ ଫ୍ରୋୟେବେଲ ଆଦି ଶିକ୍ଷାବିତ୍‌ମାନେ ଶିଶୁକୁ ଗଛଗଛ ଓ ଶିକ୍ଷକଙ୍କୁ ମାଳିସହିତ ତୁଳନା କରିଛନ୍ତି ଓ ମାଳୀକୁ ଗଛରାଗଛ ଯେପରି ଅନାବନା ନହୋଇ ସୁନ୍ଦର ଗୋଲପ ଗଛରେ ପରିଣତ ହୁଏ ସେଥିପ୍ରତି ଦୃଷ୍ଟି ଦେବାକୁ କହିଛନ୍ତି । ଜନ୍ ଡ୍ୟୁଇ ମଧ୍ୟ ଶିଶୁକୁ ସମାଜରେ ଏକ ଦାୟିତ୍ୱ ସମ୍ପନ୍ନ ନାଗରିକ ରୂପେ ଗଢ଼ିବା ଉପରେ ଜୋର୍ ଦେଇଛନ୍ତି । ସେହି ଦୃଷ୍ଟିରୁ ଅତି ଅଳ୍ପ ବୟସରୁ ଯଦି ପିଲାଙ୍କୁ ଗୀତରେ "ବାଟନେ ମୋର ବୋଲକର । ସତ୍ୟ କହିବ ନିରନ୍ତର ।" ବା "ବାଲ୍ୟକାଳୁ ଧର୍ମଧନ ମୁଁ ସଞ୍ଚିବି ଏ ଜୀବନ ଅନିଶ୍ଚିତ" ଆଦି ଶିକ୍ଷା ଦିଆଯାଏ ତେବେ ସେ ଗୀତର ଶିଶୁମନରେ କିଛି ପ୍ରଭାବ ପଡ଼ିବ ବୋଲି ଆଶା କରାଯାଏ । ଅବଶ୍ୟ ଆଜିକାଲି ଇଂରାଜୀରେ ପ୍ରାକ୍ ପ୍ରାଥମିକ ଶ୍ରେଣୀରେ Baa, baa black sheep have you any wool ? yes sir, yes sir, three bags full" ଶିକ୍ଷା ଦିଆଯାଉଛି । ଅଥଚ ଓଡ଼ିଶାରେ ମେଣ୍ଢା କମ, ଯେଉଁ ମେଣ୍ଢା ବା ଅଛନ୍ତି ସେମାନଙ୍କର ଦେହ ପଶମ ହୀନ । ସେହିପରି ଓଡ଼ିଆରେ—

"ଟେଲିଫୋନ୍‌ର ମଜା
ଶହେ କୋଶରୁ ଆଉ ସାଥିରେ
କଥା କହୁଛି ଅଜା"
ବା "ମାଙ୍କଡ଼ ଖାଏ କାଙ୍କଡ଼ କଷି
ବାଙ୍କ ବାବୁଙ୍କ ବାଡ଼ିରେ ପଶି"

ଯୁକ୍ତାକ୍ଷର ଶିକ୍ଷାପାଇଁ ପଢ଼ାଯାଉଛି । କିନ୍ତୁ ଏହା ସଙ୍ଗରେ ବିବିଧ ନୀତି ଶିକ୍ଷା ମଧ୍ୟ ଦିଆଯାଇ ପାରନ୍ତା ।

ମଧୁବାବୁଙ୍କର 'ବର୍ଣ୍ଣବୋଧ' ଓ 'ଶିଶୁବୋଧ'ରେ ହୁଏତ ପ୍ରକୃତିର ଯଥେଷ୍ଟ ପରିଚୟ ନାହିଁ । ହୁଏତ ସେ ଯୁଗରେ ବଙ୍ଗଳା ଓ ଅନ୍ୟାନ୍ୟ ଭାଷାରେ ମଧ୍ୟ ସେହି ପ୍ରକାର ପୁସ୍ତକ ପ୍ରଚଳିତ ଥିଲା । କିନ୍ତୁ ମଧୁବାବୁ ଅନ୍ତତଃ ତିରିଶ ଚାଳିଶ ବର୍ଷ ଧରି ପ୍ରାଥମିକ ଶ୍ରେଣୀର ପାଠ୍ୟ ପୁସ୍ତକମାନଙ୍କରେ ସେ ଯୁଗର ଶିଶୁମାନଙ୍କୁ ବର୍ଣ୍ଣଶିକ୍ଷା ସହିତ ନୀତିଶିକ୍ଷା ମଧ୍ୟ ସରଳ ଲଳିତ ଭାଷାରେ ଦେଇଥିଲେ । ସେହିଥିପାଇଁ ଆମେ ତାଙ୍କ ଗୌରବ ଉପଲବ୍ଧି କରୁ ।

ଆଉ ଟିକିଏ ଉପର ଶ୍ରେଣୀକୁ ଅସିଲେ ଆମେ ପଢୁ 'ସାହିତ୍ୟ କୁସୁମ' ଓ 'ସାହିତ୍ୟ ପ୍ରସଙ୍ଗ' । ସାହିତ୍ୟ କୁସୁମର ଋତୁ ବର୍ଣ୍ଣନା "ଆସଇ ବସନ୍ତ ଶିଶିର ଅନ୍ତେ, ଦିଶଇ ଧରଣୀ ରାଣୀ କେମନ୍ତେ" ଇତ୍ୟାଦିରେ ଅତି ସରଳ ଲଳିତ ଭାଷାରେ ଶିଶୁମନକୁ ପ୍ରକୃତିର ଶୋଭାପ୍ରତି ଆକୃଷ୍ଟ କରାଯାଇଛି ।

ସେ ଯୁଗରେ ନିମ୍ନ ପ୍ରାଥମିକ ଶ୍ରେଣୀରେ ପ୍ରକୃତି ପର୍ଯ୍ୟବେକ୍ଷଣ ପଢ଼ାଯାଉଥିଲା । କିଣ୍ଡରଗାର୍ଟେନ ନୀତି ଅନୁସାରେ ଗୀତ, ଅଙ୍ଗଚାଳନା ଓ ହସ୍ତକର୍ମ ସାହାଯ୍ୟରେ ଶିଶୁର ମନକୁ କ୍ରୀଡ଼ା ମାଧ୍ୟମରେ ପ୍ରକୃତି ପ୍ରତି ଆକୃଷ୍ଟ କରଯାଉଥିଲା । ଏହାର ସ୍ୱାଭାବିକ ବିକାଶ ବିଭିନ୍ନ ଋତୁ ମଧ୍ୟରେ ପାର୍ଥକ୍ୟ ଜ୍ଞାନ ସଙ୍ଗୀତମୟ କବିତାରେ ।

ଫ୍ରୋଏବେଲ ମଣ୍ଟେସର୍ରୀ ପ୍ରଭୃତି କିଛି ନୂଆ କଥା କହିନାହାନ୍ତି । କେବଳ ନୂଆ ଭାଷାରେ ପୁରୁଣା କଥାକୁ ପ୍ରକାଶ କରିଛନ୍ତି । ବାଳୁଙ୍ଗା ପିଲାଙ୍କୁ ମଣିଷ କରିବାର ସମସ୍ୟା ଯୁଗ ଯୁଗଧରି ଚାଲିଆସିଛି । ସେଥିପାଇଁ ପୂର୍ବକାଳରେ ସୁଦର୍ଶନ ନରପତି ଉନ୍ମାର୍ଗଗାମୀ ଅନଧିଗତଶାସ୍ତ୍ର ପୁତ୍ରମାନଙ୍କର ଭବିଷ୍ୟତ ବିଷୟରେ ଚିନ୍ତିତ ଥିଲେ ଓ ବିଷ୍ଣୁଶର୍ମା ସେମାନଙ୍କୁ କାକ କୂର୍ମ ମୃଗ ଆଦିମାନଙ୍କ କଥା କହି ବାଟକୁ ଆଣିଥିଲେ । ସେହିଥିରୁ ହିତୋପଦେଶ ଓ ପଞ୍ଚତନ୍ତ୍ର ଆଦିଗ୍ରନ୍ଥର ଉତ୍ପତ୍ତି । ଅସାମାଜିକ ପିଲାଙ୍କ ମନରେ ସାମାଜିକ ମୂଲ୍ୟବୋଧ ଜାଗ୍ରତ କରିବାରେ ସେ ଅନେକ ନୀତିଶିକ୍ଷାମୂଳକ ଗଳ୍ପ ଲେଖାଯାଇଥିଲା । ସେହିଥିରେ ପିଲାଙ୍କୁ ସାହିତ୍ୟ ଓ ବ୍ୟାକରଣର ମଧ୍ୟ ଶିକ୍ଷା ଦିଆଗଲା ।

ମଧୁବାବୁଙ୍କର

"ଏକେ ତ ଅଯୋଧ୍ୟା ରାଣୀ
ଦେବ ସଭା ମଧ୍ୟେ ଯେହ୍ନେ ଇନ୍ଦ୍ରାଣୀ
ସିନ୍ଧୁ ବକ୍ଷେ ଯଥା ରମା ସୁନ୍ଦରୀ
ସରଯୂର ଅଙ୍କେ ରମ୍ୟନଗରୀ ଯେ
ବିରାଜିତ ଲୀଳାରଙ୍ଗେ ।" ଆଦି

ଏବେ ମଧ୍ୟ ମନେ ଅଛି । ଆଜିକାଲି ପିଲାଙ୍କୁ ଏପରି ସୁନ୍ଦର ଭାଷାରେ ଆମ ପୁରାଣ କାବ୍ୟର ମହନୀୟ ଆଦର୍ଶ ଶିକ୍ଷା ଦେବାଭଳି ପୁସ୍ତକ ଅଛି କି ?

ସାହିତ୍ୟ ପ୍ରସଙ୍ଗରେ 'ଅଶୋକ' ବା 'ରାଣୀ ଦୁର୍ଗାବତୀ' ଭାରତ ଇତିହାସର, 'ରାମଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ' ରାମାୟଣର ଉପାଦେୟ ପାଠ । ସେସବୁ ଏବେ ଚଳୁନାହିଁ । ଅବଶ୍ୟ ମଧୁବାବୁଙ୍କର କେତେ ଲେଖା କଲେଜ ସ୍ତରରେ ପଢ଼ାଯାଉଛି ।

ଉତ୍ତମ ଶିକ୍ଷା କାର୍ଯ୍ୟକ୍ରମ ଶିଶୁର ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାହାର କୈଶୋର ଅବସ୍ଥାରେ ତାହାର ବ୍ୟକ୍ତିତ୍ୱ ବିକାଶ ସହିତ ତାହାର କଳ୍ପନାର ପରିପକ୍ୱତା ଆଣିବାରେ ସହାୟକ ହେବା ଉଚିତ । ଯୌବନର ପ୍ରଥମ ଦୁଆର ଆସିବାର ବହୁ ପୂର୍ବରୁ ତରୁଣ ତରୁଣୀ ମନରେ କଳ୍ପନାବିଳାସ, ଭାବପ୍ରବଣତା ଯେଉଁ ମାତ୍ରାରେ ଜାଗ୍ରତ ହୁଏ, ତାହା ଶିକ୍ଷା ଦ୍ୱାରା ପ୍ରଭାବିତ ହୋଇଥାଏ । କାବ୍ୟ, ପୁରାଣ, ଇତିହାସ, ଭୂଗୋଳ ଅଧ୍ୟୟନ କରିଥିବା କିଶୋର ମନର କଳ୍ପନାର ପରିସର ସାଧାରଣତଃ ଶିକ୍ଷାରୁ ବଞ୍ଚିତ ତରୁଣ ମନର କଳ୍ପନାର ପରିସରଠାରୁ ଅଧିକ ବ୍ୟାପକ । ସାହିତ୍ୟ ଶିକ୍ଷାର ଧର୍ମ ହେଉଛି ଏହି କଳ୍ପନା । ଏହି ଅନୁଭୂତିକୁ କିପରି ଅଧିକ ବ୍ୟାପକ ଓ ଅଧିକ ମାର୍ଜିତ କରିବା । କେବଳ ସେତିକି ନୁହେଁ ସେ କଳ୍ପନା ସେ ଅନୁଭୂତିର ସୂକ୍ଷ୍ମାତି ସୂକ୍ଷ୍ମ ବିଭବକୁ କଥିତ ଓ ଲିଖିତ ଭାଷାମାଧ୍ୟମରେ ମାର୍ଜିତ ରୂପେ କିପରି ଅଭିବ୍ୟକ୍ତ କରାଯାଇ ପାରିବ; ତାହା ମଧ୍ୟ ସାହିତ୍ୟ ଶିକ୍ଷାର ଧ୍ୟେୟ । ସେଥିପାଇଁ ପ୍ରୟୋଜନ ସମୃଦ୍ଧ ଶବ୍ଦ ସମ୍ଭାର, ସେଥିପାଇଁ ପ୍ରୟୋଜନ ମାର୍ଜିତ ଓ ଆକର୍ଷଣୀୟ ପ୍ରକାଶ ଭଙ୍ଗୀ ବା ଶୈଳୀ ।

ମଧୁସୂଦନ ଗଦ୍ୟ କବି ଥିଲେ । ମୁଖ୍ୟତଃ କବି ହୋଇ ସେ ଏହି ପାଠ୍ୟପୁସ୍ତକମାନ ଲେଖିଛନ୍ତି । ତେଣୁ ତାଙ୍କର ଗଦ୍ୟ ଓ ପଦ୍ୟ ଉଭୟ ଲେଖାରେ କଳ୍ପନାବିଳାସର ଚମତ୍କାରିତା ସହିତ ସମୃଦ୍ଧ ଶବ୍ଦସମ୍ଭାର ଦେଖାଯାଏ । ସେଥିରୁ ଛାତ୍ରମାନଙ୍କ ଅନେକ ଶିଖିବାର ଅଛି । ତାଙ୍କର ଏହି ପୁସ୍ତକ ପାଠ କରିଥିବା ଛାତ୍ରମାନଙ୍କ ପକ୍ଷରେ ନିଜର ସୂକ୍ଷ୍ମ ଭାବମାନ ଅଭିବ୍ୟକ୍ତ କରିବାରେ ଏହି ପୁସ୍ତକମାନ ସହାୟକ ହେଉଥିଲା ।

ଆଜିର ଶିକ୍ଷା ଅଧିକରୁ ଅଧିକ ଆତ୍ମକୈନ୍ଦ୍ରିକ ହେଉଛି । ନୀତିଶିକ୍ଷା ଓ ସାମାଜିକ ମୂଲ୍ୟବୋଧର ସ୍ତର କମିଯାଉଛି । ସେଥିପାଇଁ ଆଜି ସବୁ ସ୍ତରରେ ଏତେ କପି, ପରୀକ୍ଷକମାନଙ୍କ ମଧ୍ୟରେ ଏତେ ଆଳେ । ଏଥିରେ ଶିକ୍ଷାର ଉଦ୍ଦେଶ୍ୟ ବିଡ଼ମ୍ବିତ ହେଉଛି । କାଗଜ—ସର୍ବସ୍ୱ ଡିଗ୍ରୀ ପ୍ରକୃତ ଜ୍ଞାନାର୍ଜନଠାରୁ ଅଧିକ ମୂଲ୍ୟବାନ୍ ବୋଲି ସ୍ୱୀକୃତ ହେଉଛି ।

'Theory of the moral life'ରେ ସୁପ୍ରସିଦ୍ଧ ଶିକ୍ଷାବିତ୍ ଓ ଦାର୍ଶନିକ, ଜନ୍ ଡିଭଇ ଲେଖିଛନ୍ତି ।

Education should create an interest in all persons in furth ing the general good, so that they will find their own happine realised in what they can do to improve the condition of others.

'ବହୁଜନ ହିତାୟ, ବହୁଜନ ସୁଖାୟ' ଶିକ୍ଷାର ମୂଳମନ୍ତ୍ର ହେବା ଉଚିତ ମଧୁସୂଦନଙ୍କର ୮ଣୀତ ପାଠ୍ୟପୁସ୍ତକମାନଙ୍କରେ ଆତ୍ମକେନ୍ଦ୍ରିକ ବ୍ୟକ୍ତିତ୍ୱ ବିକାଶ ପରିବର୍ତ୍ତେ ସାମାଜିକ ମୂଲ୍ୟବୋଧ ପ୍ରତି ଅଧିକ ଦୃଷ୍ଟି ଦିଆଯାଇଛି ।

ମଧୁବାବୁଙ୍କର ପାଠ୍ୟପୁସ୍ତକ ପଢ଼ି ମଣିଷ ହୋଇଥିବା ମଣିଷମାନେ ଏବେପ୍ରା ସମସ୍ତେ ଜୀବନର ସାୟାହ୍ନରେ ଉପନୀତ ହେଲେଣି । ସେମାନେ ସମସ୍ତେ ନିଜ ନିଜ ଶିକ୍ଷକମାନଙ୍କ ଠାରେ ଯେତିକି ଋଣୀ, ମଧୁବାବୁଙ୍କର ସେତିକି ଋଣୀବୋଲି କୁହାଯାଇପାରେ ।

ମଧୁବାବୁଙ୍କ ନାମରେ ନାମିତ ଭକ୍ତମଧୁ ବିଦ୍ୟାପୀଠର ଶତବାର୍ଷିକ ପାଳି' ହେଉଥିବା ଆନନ୍ଦର କଥା । ଏ ଅନୁଷ୍ଠାନର ଛାତ୍ରମାନେ ନିଜ ନିଜର ଚରିତ୍ରବଳ ପ୍ରଜ୍ଞାଦ୍ୱାରା ଦେଶର ମୁଖ ଉଜ୍ଜ୍ୱଳ କରନ୍ତୁ—ଏହାହିଁ ଭଗବାନଙ୍କଠାରେ ପ୍ରାର୍ଥନା ।

## ସହାୟକ ଗ୍ରନ୍ଥ ସୂଚୀ (Bibliography)


1. A Brief History of Orissa Legislative Assembly 1937—9 Research, Information, Library and Training Secretariat of t Orissa Legislative Assembly, Bhubaneswar, 1995.
2. ଓଡ଼ିଶା ବିଧାନ ସଭା କାର୍ଯ୍ୟବିଧି ଓ କାର୍ଯ୍ୟପରିଚାଳନା ନିୟମାବଳୀ, ବିଧାନସ ସଚିବାଳୟ, ଭୁବନେଶ୍ୱର, 1995 ।
3. ସ୍ମରଣିକା ଡକ୍ଟର ଶ୍ରଦ୍ଧାକର ସୂପକାରଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀ, ଡଃ ଶ୍ରଦ୍ଧାକ ସୂପକାର ସ୍ମୃତି ସମିତି, ବୁଢ଼ାରଜା, ସମ୍ବଲପୁର, 1994.
4. ଆର୍ଟ ଆଣ୍ଡ ଆର୍ଟିଷ୍ଟ, ସମ୍ବଲପୁର, ଡଃ ଶ୍ରଦ୍ଧାକର ସୂପକାର ବିଶେଷାଙ୍କ
5. ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ, ଶ୍ରଦ୍ଧାଞ୍ଜଳି The Institute of Oriental & Oris Studies, Cuttack, 1994.
6. ଡଃ ଶ୍ରଦ୍ଧାକର ସୂପକାର ଅସ୍ତରାଗ ଆଶା ପୁସ୍ତକାଳୟ, ବ୍ରହ୍ମପୁର, 1993
7. ଡଃ ଶ୍ରଦ୍ଧାକର ସୂପକାର ମଧ୍ୟମ ପୁରୁଷ, ଗ୍ରନ୍ଥମନ୍ଦିର, ବିନୋଦ ବିହାରୀ, କଟ 1991.


OGP—M P-VI (L. A) 103—500—10—9—2001